# ଯଦୁମଣି ଗ୍ରନ୍ଥାବଳୀ

ଓ

## ଜୀବନ ଚରିତ

ଶ୍ରୀ ଚନ୍ଦ୍ରଧର ମହାପାତ୍ରଙ୍କ ଦ୍ୱାରା

ସଂକଳନ ଓ ବିଶୁଦ୍ଧ ପାଠ ବିଶଦ ବ୍ୟାଖ୍ୟା ସମ୍ବଳିତ

ପ୍ରକାଶକ

**ଦାସ ବ୍ରଦର୍ସ**

ବ୍ରହ୍ମପୁର : କଟକ

ସତ୍ତ୍ୱାଧିକାରୀ

ଦାସ ବ୍ରଦର୍ସ

ବ୍ରହ୍ମପୁର : କଟକ

ପ୍ରଥମ ସଂସ୍କରଣ

ବିଜୟା ଦଶମୀ

୧୯୭୫

**JADUMANI GRANTHABALEE**

*Compiler—*

**CHAKRADHARA MAHAPATRA**

*Published by—*

**DAS BROTHERS,**

BERHAMPUR : CUTTACK

**PRICE—Rs. 25.**



**ମୂଲ୍ୟ ୨୫ ଟଙ୍କା**

ମୁଦ୍ରାକର—

ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସ,

**ଗୋପୀନାଥ ପ୍ରେସ୍,**

ବ୍ରହ୍ମପୁର (ଗଞ୍ଜାମ)

# ପଦେ—

କବି ଯଦୁମଣିଙ୍କ ରଚନାବଳୀକୁ ଏକତ୍ରିତ କରି ତତ୍ସହ ତାଙ୍କ ଜୀବନୀକୁ ପ୍ରକାଶ କରି ଲୋକଚକ୍ଷୁକୁ ଆଣିବା ପାଇଁ ଆମେ ଦଶ ବର୍ଷ ତଳେ କଳ୍ପନା କରିଥିଲୁ । କିନ୍ତୁ କବିଙ୍କର ବିକ୍ଷିପ୍ତ ରଚନାବଳୀକୁ ସଂଗ୍ରହ କରିବା ପାଇଁ କେହି ହେଲେ ଆଗଭର ହେଲେ ନାହିଁ । କଷ୍ଟସ୍ୱୀକାର କରି ସମଗ୍ର ଗଡ଼ଜାତ ଅଞ୍ଚଳ ବୁଲି କବିଙ୍କର ଲେଖା-ଗୁଡ଼ିକ ସଂଗ୍ରହ କରିବା ଅତି କଷ୍ଟକର ବ୍ୟାପାର ବୋଲି ଅନେକଙ୍କ ଠାରୁ ଶୁଣିବାକୁ ପାଇଲୁ । ତଥାପି ଆମେ ଆଶା ନ ଛାଡ଼ି କବିଙ୍କର କାବ୍ୟ ଓ ହାସ୍ୟରସଗୁଡ଼ିକୁ ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବାକୁ ବରଂ ଦୃଢ଼ ସଂକଳ୍ପ କଲୁ ।

ଇତ୍ୟବସରରେ ଦୈବାତ୍ ଶ୍ରୀଯୁକ୍ତ ଫକୀରଚରଣ ଦାସ (ସମାଜର ଜେନେରାଲ ମାନେଜର ) ଆମକୁ ଏ ବିଗରେ ପ୍ରୋତ୍ସାହିତ କରି ସଂପାଦକ ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ରଙ୍କ ସହିତ ପରିଚୟ କରାଇ ଦେଲେ । ଏଥିପାଇଁ ତାଙ୍କ ନିକଟରେ ଆମେ ଚିର କୃତଜ୍ଞ । ଚକ୍ରଧର ବାବୁ ହିଁ ଏକମାତ୍ର ବ୍ୟକ୍ତି ଯେ କି ବହୁ କଷ୍ଟ ସ୍ୱୀକାର କରି କବିଙ୍କର ବିକ୍ଷିପ୍ତ ରଚନାବଳୀକୁ ସଂଗ୍ରହ କରି ସେଗୁଡ଼ିକର ଟୀକା କରି ପାରିଛନ୍ତି । ଆଉ ଯାହାସବୁ କବିଙ୍କର ରଚନାବଳୀରେ ଦିଆ ନ ଯାଇ ଅସଂପୂର୍ଣ୍ଣ ରହିଯାଇଛି ସେଗୁଡ଼ିକ ଯଦି କୌଣସି ସାହିତ୍ୟ ରସିକ ତଥା ସହୃଦୟ ବ୍ୟକ୍ତି ଆମକୁ ଯୋଗାଇ ଦେଇ ପାରନ୍ତି ତାହାହେଲେ ଆମେ ଉପକୃତ ହେବୁ ।

ଗ୍ରନ୍ଥାବଳୀର ପାଣ୍ଡୁଲିପିଟି ଅବସର ପ୍ରାପ୍ତ ଅଧ୍ୟାପକ ଶ୍ରୀଯୁକ୍ତ କରୁଣାକର କରଙ୍କଦ୍ୱାରା ସଂଶୋଧନ କରାଯାଇଛି ।

—ପ୍ରକାଶକ—

# ଆମୁଖ

ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥

କାବ୍ୟ ଓ ସାହିତ୍ୟ ହେଉଛନ୍ତି ଶବ୍ଦ ଓ ଅର୍ଥର ସୃଷ୍ଟି । ସାହିତ୍ୟ ଶବ୍ଦର ଅର୍ଥ ଏହି ଯେ—ତହିଁର ମଧ୍ୟରେ ଶବ୍ଦ ଓ ଅର୍ଥର ସଂଯୋଗ (ସହିତ) ରହିଛି । କାବ୍ୟ ଓ ସାହିତ୍ୟ ଯେଉଁ ସୌନ୍ଦର୍ଯ୍ୟର ସୃଷ୍ଟି କରେ ତାହାର ମଧ୍ୟ ବୈଶିଷ୍ଟ୍ୟ ଏହି ସାହିତ୍ୟ ଶବ୍ଦରେ ମିଳିଥାଏ । ନିସର୍ଗ ସୌନ୍ଦର୍ଯ୍ୟ ମନୁଷ୍ୟର ସୃଷ୍ଟି ନୁହେଁ, ତାହା ସାହିତ୍ୟ ଏବଂ ସକଳ ପ୍ରକାର ଶିଳ୍ପ କଳାର ସୌନ୍ଦର୍ଯ୍ୟଠାରୁ ଭିନ୍ନ । ସଙ୍ଗୀତ ଶବ୍ଦମୟ କିନ୍ତୁ ସଙ୍ଗୀତର ଶବ୍ଦରେ ଅର୍ଥ ରହିବାର ପ୍ରୟୋଜନ ନାହିଁ । ଅଧିକାଂଶ ସ୍ଥଳରେ ସଙ୍ଗୀତରେ ଅର୍ଥ ମଧ୍ୟ ରହି ନ ଥାଏ । ଚିତ୍ରକଳା, ସ୍ଥାପତ୍ୟ ଶିଳ୍ପ ପ୍ରଭୃତିରେ ଶବ୍ଦର ପ୍ରୟୋଗ ହୋଇ ନ ଥାଏ ତେଣୁ ତାହା ଶବ୍ଦାର୍ଥ ନୁହେଁ । ସୁତରାଂ ସାହିତ୍ୟରେ ଯେଉଁ ସୌନ୍ଦର୍ଯ୍ୟ ବୋଧହୁଏ– ତାହାର ସୂତ୍ର ଶବ୍ଦ ଓ ଅର୍ଥର ମାଧ୍ୟମରେ ନିହିତ ରହିଛି । ଶବ୍ଦ ଓ ଅର୍ଥର ମାଧ୍ୟମରେ ଅନୁସନ୍ଧାନ କଲେ ସାହିତ୍ୟରେ ସୌନ୍ଦର୍ଯ୍ୟ ବୋଧ ସହଜରେ ହୋଇଥାଏ ।

ସାହିତ୍ୟରେ ଶବ୍ଦଗୁଡ଼ିକ ଯେପରି ପରେ ପରେ ସଜା ହୋଇଥାଏ—ତାହା ମଧ୍ୟରେ ସୌନ୍ଦର୍ଯ୍ୟର ତାରତମ୍ୟ ରହିଥାଏ । ସ୍ଥଳେ ସ୍ଥଳେ ଶବ୍ଦର ସଜ୍ଜା ଖୁବ୍ ଯାକଜମକ ଭାବରେ ହୋଇଥାଏ । ସ୍ଥଳେ ସ୍ଥଳେ ଖୁବ୍ ଅନାଡ଼ମ୍ବର ଭାବରେ ହୋଇଥାଏ । ଏହିପରି ସାଜସଜ୍ଜାକୁ ବର୍ଣ୍ଣ ଓ ପଦର ସଂଘଟନା ଓ ରୀତି କହନ୍ତି । ପଦ ଏବଂ ବର୍ଣ୍ଣର ଏହିପରି ସଜ୍ଜାରେ ଲକ୍ଷ୍ୟ ହେଉଛି—ମାଧୁର୍ଯ୍ୟ, ଓଜସ୍ୱିତା ଏବଂ ପ୍ରସାଦ ପ୍ରଭୃତି ଗୁଣଲାଭ ଅର୍ଥାତ୍ ପଦର ସଂଯୋଜନା ଅନୁସାରେ ମାଧୁର୍ଯ୍ୟ, ଓଜଃ, ପ୍ରସାଦ ପ୍ରଭୃତି ଗୁଣ ପ୍ରକାଶିତ ହୋଇଥାଏ । ଏହାକୁ ବୃତ୍ତି ଓ ରୀତି ମଧ୍ୟ କୁହାଯାଏ । ବୃତ୍ତି ଓ ରୀତି କାବ୍ୟଶୋଭାର ନାମ ମାତ୍ର, କିନ୍ତୁ ସେହି ଶୋଭାର ସନ୍ଧାନ ସେମାନେ ଦେଇପାରନ୍ତି ନାହିଁ ।

କେବଳ ଗୁଣର ବ୍ୟାଖ୍ୟା କରିଲେ କାବ୍ୟତତ୍ତ୍ୱ ଉପଲବ୍ଧ ହୁଏ ନାହିଁ । ଗୁଣ ହେଉଛି ଗୁଣୀର ଧର୍ମ । ଗୁଣୀକୁ ନ ଜାଣିଲେ ଗୁଣର ପରିଚୟ ମିଳି ପାରିବ ନାହିଁ, ଯେପରି ଶୂରର ଗୁଣ ଶୌର୍ଯ୍ୟ, ଦୀପ୍ତିମାନର ଗୁଣ ଦୀପ୍ତି—ସେହିପରି ମାଧୁର୍ଯ୍ୟ ପ୍ରଭୃତି ଗୁଣ ଯେଉଁ ବିଶିଷ୍ଟ ଅର୍ଥ କିମ୍ବା କାବ୍ୟର ଆତ୍ମାକୁ ଆଶ୍ରୟ କରି ରହି-

ଥାଆନ୍ତି—ସେହି କାବ୍ୟର ଆତ୍ମାର ଅନୁସନ୍ଧାନ କଲେ କାବ୍ୟ ଶୋଭାର ରହସ୍ୟ ପ୍ରକଟିତ ହୋଇଥାଏ ।

କାବ୍ୟ ସୌନ୍ଦର୍ଯ୍ୟ ସୃଷ୍ଟି କରେ—ଏହା ଅନୁଭବ ସିଦ୍ଧ । ସୁତରାଂ ରମଣୀର ଦେହ ଯେପରି କଙ୍କଣ, ହାର କେୟୁରାଦି ଅଳଙ୍କାର ଦ୍ୱାରା ଶୋଭା—ସମନ୍ୱିତ ହୁଏ ସେହିପରି ଶବ୍ଦ ଓ ଅର୍ଥର କୌଶଳମୟ ପ୍ରୟୋଗ ଦ୍ୱାରା କାବ୍ୟ ସୌନ୍ଦର୍ଯ୍ୟ ଲାଭ କରିଥାଏ ବୋଲି ଅନୁମାନ କରାଯାଇ ପାରେ । କୌଣସି ସୌନ୍ଦର୍ଯ୍ୟଶାଳୀ ବାକ୍ୟର ବା ସନ୍ଦର୍ଭର ବିଶ୍ଳେଷଣ କରିଲେ କେତେଗୁଡ଼ିଏ ସାଧାରଣ ସୂତ୍ରର ସନ୍ଧାନ ମିଳିଯାଇପାରେ । ଏହି ସାମାନ୍ୟ ଧର୍ମଗୁଡ଼ିକର ନାମ ଅଳଙ୍କାର ଦିଆଯାଇଛି । କେତେକଙ୍କୁ କୁହାଯାଏ—ଶବ୍ଦାଳଙ୍କାର, ଯଥା—ଅନୁପ୍ରାସ ପ୍ରଭୃତି । କେତେକଙ୍କୁ କୁହାଯାଏ—ଅର୍ଥାଳଙ୍କାର ଯଥା—ଉପମା ରୂପକ ପ୍ରଭୃତି । ଏକଥା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଅନୁପ୍ରାସ—ଉପମା ପ୍ରଭୃତି ଅଳଙ୍କାର କାବ୍ୟର ଶୋଭାବର୍ଦ୍ଧନ କରେ । ସେଥିଲାଗି ଆମ ଦେଶରେ ସାହିତ୍ୟତତ୍ତ୍ୱକୁ ଅଳଙ୍କାର ଶାସ୍ତ୍ରର ଅନ୍ତର୍ଗତ ବୋଲି ନିର୍ଦ୍ଦେଶିତ ହୋଇଥାଏ, କିନ୍ତୁ ଏମତ ସମ୍ପୂର୍ଣ୍ଣଭାବରେ ଗ୍ରାହ୍ୟ ହୋଇପାରେ ନାହିଁ । ପ୍ରଥମତଃ ଅଳଙ୍କାର କହିଲେ ଅଳଙ୍କାର୍ଯ୍ୟ ନିଶ୍ଚୟ ରହିବ । କେହି ନିଜେ ନିଜର ଅଳଙ୍କାର ହୋଇପାରେ ନାହିଁ । ସୁତରାଂ ଗୁଣର ଅନ୍ତରାଳରେ ଯେପରି ଗୁଣୀକୁ ଖୋଜିବାକୁ ହେବ ସେହିପରି ଅଳଙ୍କାରର ଅନ୍ତରାଳରେ ଅଳଙ୍କାର୍ଯ୍ୟକୁ ମଧ୍ୟ ଖୋଜି ପାଇବାକୁ ହେବ । ଆହୁରି ମଧ୍ୟ ଜଗତରେ ଏପରି ଅନେକ ରୂପସୀ ଅଛନ୍ତି—ଯାହାଙ୍କର ରୂପଲାବଣ୍ୟ ନିରାଭରଣତା ମଧ୍ୟରେ ସମଧିକ ପରିସ୍ଫୁଟ ହୋଇ ଉଠିଥାଏ । ସେହିକଥା କାଳିଦାସ ଶକୁନ୍ତଳାଙ୍କ ରୂପ ବର୍ଣ୍ଣନବେଳେ କହିଛନ୍ତି—

"କିମିବ ହି ମଧୁରାଣାଂ ମଣ୍ଡନଂ ନାକୃତୀନାମ୍ ।"

ସେହିପରି ଏପରି ସୁନ୍ଦର କାବ୍ୟରାଜି ରହିଅଛି—ତାହା ମଧ୍ୟରେ କୌଣସି ପରିଚିତ ଅଳଙ୍କାର ନ ଥିଲେ ମଧ୍ୟ ତହିଁର କାବ୍ୟ—ସୌନ୍ଦର୍ଯ୍ୟର ଅଣୁମାତ୍ର ହାନି ହୁଏନାହିଁ । ଏ ପ୍ରସଙ୍ଗରେ ଆଚାର୍ଯ୍ୟ ମମ୍ମଟଭଟ୍ଟ ନିମ୍ନଲିଖିତ ଶ୍ଳୋକଟିର ଉଲ୍ଲେଖ କରିଛନ୍ତି—

"ଯଃ କୌମାରହରଃ ସ ଏବ ହି ବରସ୍ତା ଏବ ଚୈତ୍ରକ୍ଷପା—
ସ୍ତେ ଚୋନ୍ମୀଳିତମାଳତୀ-ସୁରଭୟଃ ପ୍ରୌଢ଼ାଃ କଦମ୍ବାନିଲାଃ ।
ସା ଚୈବାସ୍ମି, ତଥାପି ତତ୍ର ସୁରତବ୍ୟାପାରଲୀଳାବିଧୌ
ରେବାରୋଧସି ବେତସୀତରୁତଳେ ଚେତଃ ସମୁତ୍କଣ୍ଠତେ ।

"ଯେଉଁ ନାୟକ ମୋର କୁମାରୀତ୍ୱ ଅପହରଣ କରିଥିଲେ, ସେ ସେହିପରି ଅଛି । ସେହି ଚୈତ୍ର ରଜନୀ ମଧ୍ୟ ରହିଅଛି । ଉନ୍ମୀଳିତ ମାଳତୀକୁସୁମର ସୌରଭ-ବାହୀ କଦମ୍ବବନର ପ୍ରଗଲ୍‌ଭ ବାୟୁ ପୂର୍ବପରି ବହୁଅଛି । ମୁଁ ମଧ୍ୟ

ସେହିପରି ରହିଅଛି । ତଥାପି ରେବାନଦୀ ତୀରସ୍ଥିତ ବେତସବୃକ୍ଷତଳରେ ସୁରତଲୀଳାନିମିତ୍ତ ମୋର ଚିତ୍ତ ଉତ୍କଣ୍ଠିତ ହେଉଛି ।"

ଏହି କବିତାଟିର ସୌନ୍ଦର୍ଯ୍ୟ ଅପରୂପ କିନ୍ତୁ ଏହାର ମଧ୍ୟରେ କୌଣସି ଅଳଙ୍କାର ନାହିଁ । ଏହାର ସୌନ୍ଦର୍ଯ୍ୟକୁ ଆଶ୍ରୟ କରି ନୂତନ ଅଳଙ୍କାର ଉଦ୍ଭାବନା କରାଯାଇ ପାରେ । କିନ୍ତୁ ଏପରି ଭାବରେ ଅଗ୍ରସର ହେଲେ ଅଳଙ୍କାର ଅସଂଖ୍ୟ ହୋଇ ପଡ଼ିବ ଏବଂ ତାହାଦ୍ୱାରା କାବ୍ୟସୌନ୍ଦର୍ଯ୍ୟର କୌଣସି ସୁସଙ୍ଗତ ସ୍ଫୁରଣ ବା ବ୍ୟାଖ୍ୟା ମିଳିପାରିବ ନାହିଁ ।

ରମଣୀ ଦେହର ତୁଳନାଟି ସ୍ମରଣ ରଖିଲେ ଆଉ ଗୋଟିଏ ଯୁକ୍ତିର ଅବତାରଣା କରି ଅଳଙ୍କାରର ଅସମ୍ପୂର୍ଣ୍ଣତା ପ୍ରମାଣ କରାଯାଇ ପାରେ । ଅଳଙ୍କାର ବାହାରର ବସ୍ତୁ । କିନ୍ତୁ ରୂପସୀର ଅଳଙ୍କାର ଅପେକ୍ଷା ଅଧିକ ମନୋହାରୀ ହୋଇଥାଏ ତାହାର ଲାବଣ୍ୟ । ଏହି ଲାବଣ୍ୟ ଅବୟବମାନଙ୍କର ଗଠନ ଦ୍ୱାରା ଆକ୍ଷିପ୍ତ ହୋଇଥାଏ । କିନ୍ତୁ ଏହା ଅବୟବ ସଂସ୍ଥାନଠାରୁ ପୃଥକ୍‌ଭାବରେ ପରିଗଣିତ ହୋଇଥାଏ । ଅଳଙ୍କାର ଏହି ସୌନ୍ଦର୍ଯ୍ୟର ବୃଦ୍ଧି ସମ୍ପାଦନ କରିଥାଏ, କିନ୍ତୁ ଅଳଙ୍କାର ଏହି ସୌନ୍ଦର୍ଯ୍ୟର ପ୍ରାଣ ହୋଇପାରେ ନାହିଁ । ରମଣୀଦେହ ଅନେକ ସମୟରେ ଅଳଙ୍କାର ବାହୁଲ୍ୟରେ ଭାରାକ୍ରାନ୍ତ ହୋଇଥାଏ; ସେତେବେଳେ ସୌନ୍ଦର୍ଯ୍ୟର ଉପଚୟ ନ ହୋଇ ଅପଚୟ ମଧ୍ୟ ହୋଇଥାଏ । କିନ୍ତୁ କେହି କେବେ କହିବେ ନାହିଁ—ଯେ କୌଣସି ରମଣୀ ଲାବଣ୍ୟବାହୁଲ୍ୟରେ ଭାରାକ୍ରାନ୍ତ ହୋଇଛି । ସେହିପରି ଅନେକ କାବ୍ୟ ମଧ୍ୟ ଅଳଙ୍କାରର ବାହୁଲ୍ୟରେ ଭାରାକ୍ରାନ୍ତ ହୋଇଥାଏ କିନ୍ତୁ କୌଣସି ଶ୍ରେଷ୍ଠ କାବ୍ୟରେ ସୌନ୍ଦର୍ଯ୍ୟର ବାହୁଲ୍ୟ ଲକ୍ଷିତ ହୁଏ ନାହିଁ ।

ବର୍ତ୍ତମାନ ବିଚାର କରି ଦେଖିବାକୁ ହେବ—ଶବ୍ଦାର୍ଥ କୌଣସି ଶକ୍ତିର ବଳରେ କାବ୍ୟର ସୌନ୍ଦର୍ଯ୍ୟ ସୃଷ୍ଟି ହୋଇଥାଏ । ଗୋଟିଏ ଦୃଷ୍ଟାନ୍ତର ପରୀକ୍ଷା କରାଯାଉ—

"କୃତେ ବରକଥାଳାପେ କୁମାର୍ଯଃ ପୁଲକୋଦ୍‌ଗମୈଃ
ସୂଚୟନ୍ତି ସ୍ପୃହାମନ୍ତର୍ଲଜ୍ଜୟାଽବନତାନନାଃ ।"

"ଭାବୀ ବରର ବିଷୟ ଆଲୋଚିତ ହେଲେ—କୁମାରୀମାନେ ଲଜ୍ଜାରେ ମୁଖ ଅବନତ କରି ପୁଲକର ଉଦ୍‌ଗମଦ୍ୱାରା ନିଜ ନିଜର ଅନ୍ତଃସ୍ଥିତ ସ୍ପୃହାକୁ ସୂଚିତ କରିଥାନ୍ତି ।" ଏଠାରେ ବକ୍ତବ୍ୟ କଥାଟି ସହଜ ଭାବରେ ଏବଂ ସାଧାରଣ ଭାବରେ କୁହାଯାଇଛି । ଏ ଅର୍ଥଟି କାଳିଦାସ "କୁମାରସମ୍ଭବ" କାବ୍ୟରେ ଏପରିଭାବରେ ପ୍ରକାଶ କରିଛନ୍ତି—

ଏବଂ ବାଦିନି ଦେବର୍ଷୌ ପାର୍ଶ୍ୱେ ପିତୁରଧୋମୁଖୀ ।
ଲୀଲାକମଳପତ୍ରାଣି ଗଣୟାମାସ ପାର୍ବତୀ ॥

"ଦେବର୍ଷି ନାରଦ ପାର୍ବତୀଙ୍କର ଶିବଙ୍କ ସହିତ ବିବାହ କଥା କହିଲା-ବେଳେ ପାର୍ବତୀ ପିତାଙ୍କ ପାଖରେ ମୁହଁ ଅବନତ କରି ବସି ଲୀଳାପଦ୍ମର ଦଳ ଗଣିବାକୁ ଲାଗିଲେ ।"

ପ୍ରଥମ ଶ୍ଳୋକଟିକୁ କେହି ଶ୍ରେଷ୍ଠ କାବ୍ୟ କହିବେ ନାହିଁ । କିନ୍ତୁ ଏହାକୁ କାବ୍ୟ ବୋଲି ସ୍ୱୀକାର କରିବାକୁ ଅଧିକାଂଶ କାବ୍ୟ ରସିକ ଆପତ୍ତି କରିବେ । ଦ୍ୱିତୀୟ ଶ୍ଳୋକଟି ଯେ ସୁନ୍ଦର କାବ୍ୟ—ଏହା ସର୍ବବାଦି ସମ୍ମତ । ତେବେ ତାର କାବ୍ୟତ୍ୱ କେଉଁଠାରେ ? ପାର୍ବତୀଙ୍କର ପୂର୍ବ ଇତିହାସରୁ କାବ୍ୟତ୍ୱର କେତେକାଂଶ ଅନୁଭୂତ ହେଉଛି । ଯେଉଁମାନେ ପାର୍ବତୀଙ୍କର ବରପ୍ରାପ୍ତି ନିମିତ୍ତ ତପସ୍ୟା ପ୍ରଭୃତିର ବିଷୟ ଜାଣନ୍ତି ସେମାନେ ପାର୍ବତୀଙ୍କର ବ୍ୟବହାରର ତାତ୍ପର୍ଯ୍ୟ ବିଶେଷ ଭାବରେ ହୃଦୟଙ୍ଗମ କରିବେ । କାଳିଦାସଙ୍କର ଏହି ଶ୍ଳୋକଟି ଆଲୋଚନା କଲେ କେତୋଟି ବିଷୟ ବିଶେଷ ଭାବରେ ପ୍ରକଟିତ ହୋଇଥାଏ । ଏହି ଶ୍ଳୋକରେ ଲଜ୍ଜା ବା ସ୍ପୃହାର କଥା ସରଳଭାବରେ କୁହାଯାଇ ନାହିଁ । ଏହି ଶ୍ଳୋକରେ ଲଜ୍ଜା, ପୁଲକ, ସ୍ପୃହା ପ୍ରଭୃତି ଶବ୍ଦ ଯେ କେବଳ ବ୍ୟବହୃତ ହୋଇନାହିଁ ତାହା ନୁହେଁ; ଯେଉଁ ଶବ୍ଦ ବ୍ୟବହୃତ ହୋଇଛି ତହିଁର ଆକ୍ଷରିକ ଅର୍ଥ କରିଲେ ମଧ୍ୟ ସପୁଲକ ଲଜ୍ଜାବୋଧ ହେବନାହିଁ । ଏଠାରେ କେବଳ ମାତ୍ର ଲୀଳାପଦ୍ମର ପତ୍ର ଗଣନା ଉଲ୍ଲିଖିତ ହୋଇଛି, ଆଉ ଯେ କେହି ଅନନ୍ତ କାଳ ଧରି ଲୀଳାପଦ୍ମର ପତ୍ର ଗଣନା ମଧ୍ୟ କରିପାରେ । ପାର୍ବତୀ ମଧ୍ୟ ଅନ୍ୟସମୟରେ ଲୀଳାପଦ୍ମର ପାଖୁଡ଼ା ଗଣି ପାରନ୍ତି; କେହି କହିବେ ନାହିଁ ଯେ ତାହା ଲଜ୍ଜା ବା ସ୍ପୃହା ଅର୍ଥ ପ୍ରକାଶ କରିବ । କିନ୍ତୁ ଏଠାରେ ଅଧୋମୁଖ ହୋଇ ରହିବା ଏବଂ ଲୀଳାକମଳ ପତ୍ରର ଗଣନାର ସହଜ ବୋଧ ଅର୍ଥ ଗୌଣ ହୋଇଛି ଏବଂ ତାହା ସଲଜ୍ଜ ପ୍ରେମାତୁରତାର ପ୍ରାଧାନ୍ୟ ପ୍ରକାଶ କରୁଛି । ଏହି ପ୍ରାଧାନ୍ୟଭୂତ, ଦ୍ୱିତୀୟ ଅର୍ଥର ନାମ-ବ୍ୟଞ୍ଜନା ବା ଧ୍ୱନି । ଆଚାର୍ଯ୍ୟ ଆନନ୍ଦବର୍ଦ୍ଧନ ଅଭିନବ ଗୁପ୍ତଙ୍କ ମତରେ ଏହି ଧ୍ୱନି ବା ବ୍ୟଞ୍ଜନା ହେଉଛି କାବ୍ୟର ପ୍ରାଣ ।

ସୁତରାଂ ଦେଖାଯାଉଛି ଯେ କାବ୍ୟରେ ଶବ୍ଦର ୨ଟି ଅର୍ଥର ଉପଲବ୍ଧି ହୋଇପାରେ । ୧ମ ଶବ୍ଦଟିର ସହଜ, ସାଧାରଣ ଅର୍ଥ । ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ପ୍ରତ୍ୟେକ ଶବ୍ଦର ସଙ୍ଗରେ ଗୋଟିଏ ଅର୍ଥ ଗୁନ୍ଥା ହୋଇଥାଏ । ଏହି ଅର୍ଥକୁ କହନ୍ତି—ସାଙ୍କେତ । ଏହି ସାଙ୍କେତିକ ଅର୍ଥର ନାମ ବାଚ୍ୟାର୍ଥ । ଶବ୍ଦ ସାକ୍ଷାତ୍ ଭାବରେ ଏହି ସାଙ୍କେତିକ ଅର୍ଥ ପ୍ରକାଶ କରିଥାଏ । ଏହି ଅର୍ଥ ଏବଂ ଶବ୍ଦ ମଧ୍ୟରେ କୌଣସି ବ୍ୟବଧାନ ରହି ନ ଥାଏ ।

ଅନେକ ସମୟରେ ଏହି ବାଚ୍ୟାର୍ଥ ଗ୍ରହଣ କରିଲେ କୌଣସି ସଙ୍ଗତ ଅର୍ଥ ମିଳେ ନାହିଁ । ପୁରୁଷ ସିଂହ କହିଲେ ନରସିଂହ ଅବତାର ବୁଝାଏ ନାହିଁ କି, ପୁରୁଷ ମଧ୍ୟ ସିଂହ ନୁହେ । ତେଣୁ ପୁରୁଷସିଂହ ଶବ୍ଦ ତେଜସ୍ୱିତା ବୁଝାଇଥାଏ ।

ଆଜକାଲି କଳାବଜାର ଶବ୍ଦପ୍ରୟୋଗ ହୋଇଥାଏ । ବଜାର ସେ କାଳପଣ କଳା ଏ ଅର୍ଥ ବୁଝାଉ ନାହିଁ, ତାହା କେବଳ ଲୁଗୃଛପା କାରବାର କଥା ବା ଦୁର୍ନୀତି ବୁଝାଇଥାଏ । ଏହି ଜାତୀୟ ଅର୍ଥକୁ କହନ୍ତି ଲାକ୍ଷଣିକ ଅର୍ଥ । କିନ୍ତୁ ଏହି ଅର୍ଥଟି ମଧ୍ୟ ବାଚ୍ୟ ଅର୍ଥର ଅଙ୍ଗ । କାରଣ ପୁରୁଷସିଂହ ବା କଳାବଜାର କହିଲେ ପ୍ରଥମରେ ସିଂହତ୍ୱ ବା କୃଷ୍ଣତ୍ୱ ବୁଝାଇ ପରେ ତେଜସ୍ୱିତା ଓ ଦୁର୍ନୀତି ବୁଝାଏ । ପ୍ରାଥମିକ ବା ବାଚ୍ୟ ଅର୍ଥ ବାଧିତ ହେଲା ପରେ ଅଭିପ୍ରେତ ଅର୍ଥଟି ସରଳ ଭାବରେ ଲକ୍ଷିତ ହୁଏ । ଏହି ଲକ୍ଷିତ ଅର୍ଥ ପରେ ମଧ୍ୟ ଆଉ ଗୋଟିଏ ଅର୍ଥ ଦ୍ୟୋତିତ ହୋଇପାରେ କିମ୍ବା ହୋଇ ନ ପାରେ । କିନ୍ତୁ "ଏବଂ ବାଦିନ" ପବୋକ୍ତ କାଳିଦାସଙ୍କର ଶ୍ଳୋକଟିରେ ଯଦ୍ୟପି ଏ ଜାତୀୟ ଲାକ୍ଷଣିକ ଅର୍ଥ ଆଦୌ ନାହିଁ, ତଥାପି ପ୍ରଥମ ଅର୍ଥର ସଙ୍ଗେ ସଙ୍ଗେ ଦ୍ୱିତୀୟ ଅର୍ଥଟି ପ୍ରକାଶିତ ହୁଏ । ମନେ ରଖିବାକୁ ହେବ ଯେ, ଏଠାରେ ପ୍ରାଥମିକ ଅର୍ଥଟି ବାଧିତ ହୋଇ ନାହିଁ । କିନ୍ତୁ ପ୍ରାଥମିକ ଅର୍ଥ ପ୍ରକାଶିତ ହୋଇ ଦ୍ୱିତୀୟ ଅର୍ଥଟିକୁ ଆକ୍ଷିପ୍ତ କରୁଛି । ସୁତରାଂ ଜଣାଯାଏ ଯେ ଲାକ୍ଷଣିକ ଅର୍ଥ ଏପରି ପ୍ରସିଦ୍ଧି ଲାଭ କରିଛି ଯେ, ତାହା ସହଜରେ ଜଣାପଡ଼େ । ପ୍ରାଥମିକ ଅର୍ଥ ଏବଂ ଲାକ୍ଷଣିକ ଅର୍ଥ ମଧ୍ୟରେ କୌଣସି କ୍ରମ ରହେ ନାହିଁ । କାରଣ ପ୍ରାଥମିକ ବା ବାଚ୍ୟ ଅର୍ଥ ଉଦ୍‌ବୋଧିତ ହୁଏ ନାହିଁ । ସୁତରାଂ ଲାକ୍ଷଣିକ ଅର୍ଥ ହେଉଛି ବାଚ୍ୟ ଅର୍ଥର ଅଙ୍ଗ ।

"ଏବଂ ବାଦିନି ଦେବର୍ଷୌ" ଶ୍ଳୋକଟି ଖାଣ୍ଟି ବ୍ୟଞ୍ଜନାର ନିଦର୍ଶନ । ଏହାର ବିଶ୍ଳେଷଣ କଲେ ବାଚ୍ୟ ଅର୍ଥ ଏବଂ ବ୍ୟଙ୍ଗ୍ୟ ଅର୍ଥର ପ୍ରାର୍ଥକ୍ୟ ଏବଂ ବ୍ୟଞ୍ଜନାର ବୈଶିଷ୍ଟ୍ୟ ସହଜରେ ଜଣାପଡ଼େ । ବାଚ୍ୟ ଅର୍ଥଟି ସାକ୍ଷାତ୍ ଭାବରେ ଶବ୍ଦଦ୍ୱାରା କଥିତ ହୋଇଥାଏ । ଏହା ଶବ୍ଦର ସହିତ ଜଡ଼ିତ । କିନ୍ତୁ ବାଚ୍ୟ ଅର୍ଥ ଏବଂ ବ୍ୟଙ୍ଗ୍ୟ ଅର୍ଥର ମଧ୍ୟରେ କିଛି ବ୍ୟବଧାନ ରହିଥାଏ । ଏହି କ୍ରମ ସବୁ ସମୟରେ ଲକ୍ଷିତ ହୁଏ ନାହିଁ । ତଥାପି ବାଚ୍ୟ ଅର୍ଥ ଏବଂ ବ୍ୟଙ୍ଗ୍ୟ ଅର୍ଥର ଏହି ଦୂରତ୍ୱ ବା କ୍ରମ ଅବଶ୍ୟମ୍ଭାବୀ । "ଅଧୋମୁଖ ହୋଇ ରହିବା ଏବଂ ଲୀଳାପଦ୍ମ ପତ୍ରଗଣନା" ଅର୍ଥର ଉପଲବ୍‌ଧି ପରେ 'ଲଜ୍ଜା ଓ ସ୍ପୃହା' ରୂପ ବ୍ୟଙ୍ଗ୍ୟ ଅର୍ଥ ଦ୍ୟୋତିତ ହୁଏ । ଧ୍ୱନି ହେଉଛି ବ୍ୟଙ୍ଗ୍ୟ ଅର୍ଥର ନାମାନ୍ତର ମାତ୍ର । ଏହି ଧ୍ୱନିକୁ 'କାବ୍ୟର ଆତ୍ମା' ବୋଲି ଆନନ୍ଦବର୍ଦ୍ଧନ ପ୍ରଭୃତି ଆଚାର୍ଯ୍ୟମାନେ ସ୍ୱୀକାର କରିଛନ୍ତି ।

"କାବ୍ୟରସାତ୍ମକ ବାକ୍ୟ" ବୋଲି ବିଶ୍ୱନାଥ ମହାପାତ୍ର ପ୍ରଭୃତି ଆଚାର୍ଯ୍ୟମାନେ କାବ୍ୟର ଲକ୍ଷଣ କରିଛନ୍ତି । କିନ୍ତୁ ଏହି ରସ ବାଚ୍ୟ ଅର୍ଥ ଦ୍ୱାରା ପ୍ରତୀତ ହୁଏ ନାହିଁ । ଶୃଙ୍ଗାର ରସ, ବୀର ରସ କହିଲେ—ପ୍ରେମ, ପ୍ରୀତି ବା କ୍ରୋଧ ପ୍ରଭୃତି ଶବ୍ଦ ଉଚ୍ଚାରଣ କଲେ ରସର ପ୍ରତୀତ ହୁଏ ନାହିଁ କିନ୍ତୁ ତାହା ଦୋଷଯୁକ୍ତ (ସ୍ୱଶବ୍ଦ ବାଚ୍ୟତ୍ୱ) ହୁଏ । ଏହି ରସ କେବଳ ବ୍ୟଞ୍ଜନା ଦ୍ୱାରା ପ୍ରତୀତ ହୁଏ ।

ରସ କି ବସ୍ତୁ ? ରସ ବୋଧ ନିମିତ୍ତ ବ୍ୟଞ୍ଜନାର ବା ଧ୍ୱନିର କେତେ ଦୂର କିପରି ପ୍ରୟୋଜନ ଓ ଉପଯୋଗିତା ରହିଅଛି ?

ମାନବ ହୃଦୟରେ କେତେଗୁଡ଼ିଏ ପ୍ରବୃତ୍ତି ବା ଭାବ ନିହିତ ଅଛି—ଯଥା—ରତି, ଶୋକ, ଉତ୍ସାହ, କ୍ରୋଧ ପ୍ରଭୃତି । ଲୌକିକ ଜୀବନରେ ଏହି ଭାବଗୁଡ଼ିକ ଲୌକିକ କର୍ମ ମଧ୍ୟ ଦେଇ ପ୍ରକାଶିତ ହୋଇଥାଏ । ବୁଦ୍ଧି ଏ ଭାବମାନଙ୍କୁ ନିୟନ୍ତ୍ରିତ କରେ ଏବଂ ଭାବମାନଙ୍କ ଦ୍ୱାରା ନିୟନ୍ତ୍ରିତ ହୁଏ । ଯେତେବେଳେ ଲୌକିକ ଜୀବନରେ ଏହି ଭାବଗୁଡ଼ିକ ନିଷ୍କ୍ରିୟ ହୋଇଥାଏ ସେତେବେଳେ ପୂର୍ବ ସଂସ୍କାର ଫଳରେ ଏହି ଭାବଗୁଡ଼ିକ ବାସନା ରୂପରେ ଅନ୍ତରରେ ନିହିତ ରହିଥାଆନ୍ତି । ଲୌକିକ ଜୀବନରେ ପ୍ରତ୍ୟେକ ବ୍ୟକ୍ତି ନିଜର ଭାବଦ୍ୱାରା ଉଦ୍‌ବୋଧିତ ଓ ଚାଳିତ ହୋଇ କାର୍ଯ୍ୟରେ ନିଯୁକ୍ତ ଓ ବ୍ୟାପୃତ ରହେ । ଯେଉଁ ସବୁ ଭାବ ପରଗତ ଅର୍ଥାତ, ଯେଉଁ ଭାବ ସବୁ ପରର, ଯାହା ସହିତ ତାହାର ସମ୍ପର୍କ ନାହିଁ, ଯେଉଁ ଭାବଦ୍ୱାରା ସେ ସ୍ପୃଷ୍ଟ ହୁଏ ନାହିଁ; ସେ ଭାବ ସମ୍ପର୍କରେ ସେ ଉଦାସୀନ ରହିଥାଏ । ଲୌକିକ ଜଗତରେ ଇଷ୍ଟସିଦ୍ଧି ହେଉଛି ଏ ସବୁର ପ୍ରୟୋଜନ । ଏହି ସବୁ ଭାବ ଯଦି ଭାଷାରେ ପ୍ରକାଶ କରିବାକୁ ହୁଏ ତେବେ ବାଚ୍ୟ ଅର୍ଥ ହେଉଛି ତହିଁର ଯଥାର୍ଥରେ ଉପଯୋଗୀ, କାରଣ ବାଚ୍ୟ ଅର୍ଥ ଦ୍ୱାରା ଏହି ଭାବଗୁଡ଼ିକ ସାକ୍ଷାତ୍ ଭାବରେ ପ୍ରକାଶିତ ହୋଇ ପାରିବେ ।

କବି କେବଳ ଏକ ଅଲୌକିକ ଜଗତ ରଚନା କରେ । କବିର ସେ ଅଲୌକିକ ଜଗତରେ ଏହି ଭାବଗୁଡ଼ିକ ବ୍ୟକ୍ତିଗତ ଗଣ୍ଡି ଅତିକ୍ରମ କରିଥାଏ, ସେହି ଜଗତରେ ପରଗତ ଅନୁଭବ ବା ଭାବ ସମ୍ବନ୍ଧରେ ଆମ୍ଭେମାନେ ଉଦାସୀନ ରହିପାରୁ ନାହୁଁ । ସେହି ଅଲୌକିକ ଜଗତରେ ଇଷ୍ଟସିଦ୍ଧି ନିମିତ୍ତ ଏହି ଭାବଗୁଡ଼ିକୁ ସଙ୍କୁଚିତ କରିବାକୁ ପଡ଼େ ନାହିଁ । ସେହି ଜଗତରେ ଏହି ଭାବରାଶିର ସ୍ରୋତ କର୍ମର ବାଲୁକାରେ ବାଧାପ୍ରାପ୍ତ ହୁଏ ନାହିଁ । ଏହି କବିର ଜଗତଟି ହେଉଛି ରସର ଏବଂ କାବ୍ୟର ଜଗତ । ତାହା ଲୌକିକ ଜଗତଠାରୁ ସମ୍ପୂର୍ଣ୍ଣ ଭିନ୍ନ—ଅଲୌକିକ । ସେହି କଥା ଆଚାର୍ଯ୍ୟ ମମ୍ମଟଭଟ୍ଟ କହିଛନ୍ତି—

> "ନିୟତିକୃତନିୟମରହିତାଂ ହ୍ଲାଦୈକମୟୀମନନ୍ୟପରତନ୍ତ୍ରାମ୍ ।
> ନବରସରୁଚିରାଂ ନିର୍ମିତିମାଦଧତୀ କବେର୍ଜୟତି ॥"

ସଂକ୍ଷେପରେ ଶ୍ଳୋକଟିର ଅର୍ଥ ହେଉଛି—"କାବ୍ୟ ଜଗତ ଲୌକିକ ଜଗତଠାରୁ ଭିନ୍ନ । ଲୌକିକ ଜଗତରେ ସୁଖ ଦୁଃଖ ବିଷାଦର ଛାୟା ଜଡ଼ି ହୋଇ ଥାଏ—କିନ୍ତୁ କାବ୍ୟ ଜଗତ ହେଉଛି ସଦା ସର୍ବଦା ଆହ୍ଲାଦମୟ; କାର୍ଯ୍ୟ କାରଣ ଭାବରେ ଲୌକିକ ଜଗତ ଚାଳିତ ହୁଏ । କିନ୍ତୁ କବିର ଅଲୌକିକ ଜଗତରେ କାର୍ଯ୍ୟ କାରଣ ଭାବରେ ସ୍ଥିରତା ନାହିଁ । ଲୌକିକ ଜଗତ ପ୍ରକୃତିର ନିୟମରେ ପରିଚାଳିତ—

କିନ୍ତୁ କବିର ଜଗତଟି କବିର ଅଧୀନ । ଅନ୍ୟର ଅଧୀନ ନୁହେଁ । ଲୌକିକ ଜଗତରେ ମଧୁର କଟୁ, ଅମ୍ଳ, ପ୍ରଭୃତି ୬ଟି ରସର ଆସ୍ୱାଦନ ହୁଏ । କିନ୍ତୁ କବିର ଅଲୌକିକ ଜଗତରେ ଶୃଙ୍ଗାର ପ୍ରଭୃତି ୯ଟି ରସର ଆସ୍ୱାଦନ ହୁଏ ଏବଂ ସେହି ରସର ଆସ୍ୱାଦନ ସର୍ବଦା ଆନନ୍ଦମୟ । ଏହା ହେଉଛି କବିର ଅଲୌକିକ କାବ୍ୟ ଜଗତ ।" ମାନବର ଅନ୍ତର୍ନିହିତ ଭାବଗୁଡ଼ିକ ବ୍ୟକ୍ତିଗତ ଗଣ୍ଡି ଅତିକ୍ରମ କଲେ ରସରୂପତା ଲାଭ କରେ । ଆଦି କବି ବାଲ୍ମୀକି କାମ ମୋହିତ କ୍ରୌଞ୍ଚ ମିଥୁନରୁ ଜଣକର ମୃତ୍ୟୁରେ ଶୋକାତୁର ହୋଇ ଗାନ କରିଥିଲେ—

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ ।
ଯତ୍ କ୍ରୌଞ୍ଚ-ମିଥୁନା-ଦେକ ମବଧୀଃ କାମମୋହିତମ୍ ।।

ମୁନି ବାଲ୍ମୀକି କ୍ରୌଞ୍ଚ ମିଥୁନର ମୃତ୍ୟୁରେ ଶୋକରେ ଅଭିଭୂତ ହୋଇଥିଲେ । ସେହି ଶୋକ ବାଲ୍ମୀକିଙ୍କ ନିଜସ୍ୱ ଭାବ, ଏହା ଲୌକିକ ଜଗତରେ କୌଣସି ଭାବରେ ପ୍ରତିଫଳିତ ହୋଇଥିବ । କିନ୍ତୁ କବି ବାଲ୍ମୀକି ଯେତେବେଳେ କାବ୍ୟ ରଚନା କଲେ ସେତେବେଳେ ଏହା ଆଉ ତାଙ୍କର ନିଜସ୍ୱ ବ୍ୟକ୍ତିଗତ ଶୋକ ହୋଇ ରହିଲା ନାହିଁ । ଏହି ଭାବଟି ନିଖିଳ ମାନବର ଆନନ୍ଦନିଧାନ କରୁଣରସରେ ରୂପାନ୍ତରିତ ହେଲା । ପୂର୍ଣ୍ଣ କୁମ୍ଭରୁ ଜଳ ଯେପରି ଉଚ୍ଛୁଳି ପଡ଼େ ସେହିପରି ବାଲ୍ମୀକିଙ୍କର ପରିପୂର୍ଣ୍ଣ ଶୋକରୁ ଯେଉଁ ଶୋକର ଅଂଶଟି ଉଚ୍ଛୁଳି ପଡ଼ିଲା—ତାହା ବ୍ୟକ୍ତିବିଶେଷର ଶୋକ ମାତ୍ର ହୋଇ ରହିଲା ନାହିଁ । ତାହା ସର୍ବସାଧାରଣ ଶୋକରେ ପରିଣତ ହୋଇ ସମସ୍ତଙ୍କର ଉପଭୋଗ୍ୟ ବସ୍ତୁ ହୋଇପଡ଼ିଲା । ଏହି ପରିବର୍ତ୍ତନରେ କ୍ରୌଞ୍ଚର ମଧ୍ୟ କୌଣସି ବାସ୍ତବ ରୂପ ରହିଲା ନାହିଁ । ସେ ହେଲା କରୁଣ ରସର ଆଲମ୍ବନ ବିଭାବ ଅର୍ଥାତ୍ କ୍ରୌଞ୍ଚକୁ ଆଶ୍ରୟ କରି କରୁଣ ରସ ଉଦ୍ଭୂତହେଲା । ତେଣୁ ଲୌକିକ ଜଗତରେ ଯାହାକୁ କାରଣ କହନ୍ତି ଅଲୌକିକ ରସ ଜଗତରେ ତାହାକୁ କହନ୍ତି ବିଭାବ ।

ଆଉ ଗୋଟିଏ ଦୃଷ୍ଟାନ୍ତ ଦେଖାଯାଉ—

ଗ୍ରୀବାଭଙ୍ଗାଭିରାମଂ ମୁହୁରନୁପତତି ସ୍ୟନ୍ଦନେ ଦତ୍ତ ଦୃଷ୍ଟିଃ
ପଶ୍ଚାର୍ଦ୍ଧେନ ପ୍ରବିଷ୍ଟଃ ଶରପତନଭୟାଦ୍ ଭୂୟସା ପୂର୍ବକାୟମ୍ ।
ଦର୍ଭୈର୍ଦ୍ଧାବଲୀଢ଼ୈଃ ଶ୍ରମବିବୃତ—ମୁଖଭ୍ରଂଶିଭିଃ କୀର୍ଣ୍ଣବର୍ତ୍ମା
ପଶ୍ୟୋଦଗ୍ରପ୍ଲୁତତ୍ୱାତ୍ ବିୟତି ବହୁତରଂ ସ୍ତୋକମୁର୍ବ୍ୟାଂ ପ୍ରୟାତି ।

କବିବର ଗଙ୍ଗାଧର ମେହେର ପ୍ରଣୟ ବଲ୍ଲରୀରେ କାଳିଦାସଙ୍କ ଏହି ଶ୍ଳୋକର ଭାବ ଏହିପରି ବର୍ଣ୍ଣନା କରିଛନ୍ତି—

ସ୍ୱଭାବ ସୁଲଭ ଲମ୍ଫେ କୃଷ୍ଣସାର
ଗଗନେ ଅଧିକ ଯାଇ,
ଥରେ ଥରେ ମାତ୍ର ଦେଉଥାଏ ବନ
ଭୂମିରେ ପାଦ ପକାଇ ।
ପୁଚ୍ଛ ଲମ୍ପଟାଇ ସ୍ଫୀତ ସଙ୍କୁଚାଇ
ଆଶୁଗ-ପତନ-ଭୟେ,
ଗ୍ରୀବା ଭଙ୍ଗି ଥରେ ଥରେ ରଥେ ଚାହିଁ
ପଳାଏ ପୁଣି ଅଥୟେ ।
ଶ୍ରମ-ବିବୃତ- ମୁଖ-ଚ୍ୟୁତ-ଦର
କବଳିତ କୁଶମାନ
ଗଗନ ପଥରେ ଇତସ୍ତତଃ ପଡ଼ି
ଯାଉଥାଏ ସ୍ଥାନ ସ୍ଥାନ ।

[ ପ୍ରଣୟବଲ୍ଲରୀ ୧ମ ସର୍ଗ ୧ମ ପୃଷ୍ଠା ]

ଏହି ଭୟ କାହାର ଭୟ ? ମୃଗ ଶିଶୁର ଭୟ ବୋଲି କହିଲେ ଠିକ୍ ହେବ ନାହିଁ । କାରଣ ମୃଗଶିଶୁ ଭୟରେ ପଳାଉଛି । ଅବିରାମ ଗ୍ରୀବା ଭଙ୍ଗି ଦେଖିବାକୁ ତାହାର ଅବକାଶ ଓ ଅବସର ମଧ୍ୟ ନାହିଁ । ମୃଗଶିଶୁର ଭୟ ବର୍ଣ୍ଣିତ ହୋଇଛି ବୋଲି କହିଲେ—ଏ ପ୍ରକାର ବର୍ଣ୍ଣନା କବିର ବାକ୍‌ଚାତୁରୀ ବୋଲି ବର୍ଜିତ ହେବ । ତାହା ହେଲେ କେବଳ ସେ କଥା କହିଲେ ହେବ ମୃଗଶିଶୁ ଭୟରେ ପଳାଉଛି—ଏବଂ ସେ ସମ୍ପର୍କରେ ଆମ୍ଭେମାନେ ଉଦାସୀନ ରହିଥାନ୍ତୁ, ଯଦିବା କବି ବା ପାଠକର ଭୟ ବୋଲି କୁହାଯାଏ । ତାହା ମଧ୍ୟ ଠିକ୍ ହେବ ନାହିଁ; କାରଣ କବିର ଭୟ ହୋଇଥିଲେ ସେ ଭୟରେ ପଳାଇଥାନ୍ତେ, କିମ୍ବା ପାଠକର ଭୟ ହୋଇଥିଲେ ସେ ଭୟରେ ପଳାଇଥାନ୍ତେ କିନ୍ତୁ ସେ ସବୁ କିଛି ହୋଇ ନାହିଁ । ତହିଁ ପରିବର୍ତ୍ତରେ ଆମ୍ଭେମାନେ ମୃଗ ଶିଶୁର କାର୍ଯ୍ୟ କଳାପ କଳ୍ପନା ନେତ୍ରରେ ଦେଖି ଭୟାନକ ରସର ଉପଲବ୍‌ଧି କରିଥାଉଁ । ସ୍ଥାୟୀଭାବ ଭୟ ପ୍ରଭୃତିର ପ୍ରୟୋଗରେ ରସ ସୃଷ୍ଟି ହୁଏ ନାହିଁ । ରସ ସୃଷ୍ଟିର ଉପାୟ ହେଉଛି—ମୃଗଶିଶୁ ଯାହା କରୁଛି ଏବଂ ତାହାର ଅଙ୍ଗ ଭଙ୍ଗି ପ୍ରଭୃତି । ଅଲୌକିକ ରସ ଜଗତରେ ଏହାର ନାମ ଅନୁଭାବ । ମୂଳଭାବ ସହିତ ଯେଉଁ ସବୁ ସହକାରୀ ଭାବ ରହିଥାଏ ତାହାକୁ ଅଲୌକିକ ରସ ଜଗତରେ କହନ୍ତି ବ୍ୟଭିଚାରୀ ବା ସଞ୍ଚାରୀଭାବ । ଅର୍ଥାତ୍ ଲୌକିକ ଜଗତରେ ଯାହାକୁ ରସର କାରଣ, କାର୍ଯ୍ୟ ଓ ସହକାରୀ କହନ୍ତି, ଅଲୌକିକ କାବ୍ୟଜଗତରେ ତାହାକୁ ଯଥାକ୍ରମରେ ରସର ବିଭାବ, ଅନୁଭବ ଏବଂ ବ୍ୟଭିଚାରୀ ଭାବ କହନ୍ତି । "ବିଭାବାନୁଭାବ ବ୍ୟଭିଚାରୀ ସଂଯୋଗାତ୍ ରସ ନିଷ୍ପତ୍ତିଃ"—ବିଭାବ, ଅନୁଭାବ ଏବଂ ବ୍ୟଭିଚାରୀ ଭାବର ସଂଯୋଗରେ ରସ ନିଷ୍ପନ୍ନ ହୋଇଥାଏ ବୋଲି ଭରତ ମୁନି ପ୍ରକାଶ କରିଛନ୍ତି ।

ଏହି ରସ ଅଲୌକିକ ବସ୍ତୁ । କବିର ଶୋକ ରହିଲା କବିର ହୃଦୟରେ । କ୍ରୌଞ୍ଚର ଶୋକ ରହିଲା କ୍ରୌଞ୍ଚର ହୃଦୟରେ । କିନ୍ତୁ କ୍ରୌଞ୍ଚର କାତରତା ଓ କ୍ରନ୍ଦନ ପ୍ରଭୃତିର ସଂଯୋଗରେ କବିର ଶୋକର ଯେଉଁ ଅଂଶ ଉଦ୍‌ବେଳିତ ହୋଇ ବାହାରେ ଆସି ପ୍ରକାଶ ପାଇଲା—ତାହା କରୁଣ ରସ ସୃଷ୍ଟି କଲା । ଏଠାରେ କ୍ରୌଞ୍ଚ ହେଉଛି ବିଭାବ ମାତ୍ର । ତହିଁରୁ ଅତିରିକ୍ତ ମୂଲ୍ୟ ତାହାର ନାହିଁ । ରସ ମୁନିର ଶୋକ ନୁହେଁ କିମ୍ବା କ୍ରୌଞ୍ଚର ଶୋକ ନୁହେଁ । ଭୟ କବିର ନୁହେ କି ମୃଗଶିଶୁର ନୁହେ । ଭାବନା ବା ଦର୍ଶନ ବଳରେ କବି ଏବଂ ସହୃଦୟର ପ୍ରତିଷ୍ଠିତ ହେଉଛି କରୁଣ ଓ ଭୟାନକ ରସର ଆଧାର । କବି ଏବଂ ଭାବଗୁଡ଼ିକ ନିଜ ଚିତ୍ତରେ ଉପଲବ୍‌ଧି ହୁଏ ଏବଂ ସେହି ଉପଲବ୍‌ଧିମଧ୍ୟରେ ଏହି ଭାବଗୁଡ଼ିକର ସାଧାରଣୀକରଣ ହୋଇଥାଏ । ବାହାରର ବିଭାବ ଅନୁଭାବ ଏବଂ ବ୍ୟଭିଚାରୀ ଭାବର ସଂଯୋଗରେ କବିର ଏବଂ ସହୃଦୟଙ୍କର ହୃଦୟସ୍ଥିତ ଭାବ ରସରେ ପରିଣତ ହୁଏ । ରସ୍ୟତେ ଇତି ରସଃ—କେବଳ ଆସ୍ୱାଦ କରିବା ହେଉଛି ରସର ପ୍ରାଣ । ଏହା ହେଉଛି ରସ ନାମର ସାର୍ଥକତା । ପ୍ରତିଷ୍ଠିତ ବ୍ୟତିରିକ୍ତ ରସର ଅନ୍ୟ କୌଣସି ଆଧାର ନାହିଁ ବୋଲି ରସ ହେଉଛି ଅଲୌକିକ । ସେଥିଲାଗି ରସର ପ୍ରତିଷ୍ଠା ଓ ଅଭିବ୍ୟକ୍ତି ନିମିତ୍ତ ବ୍ୟଞ୍ଜନା ଏକାନ୍ତ ଆବଶ୍ୟକ । ବାଚ୍ୟ ଅର୍ଥ ଲୌକିକ ଜଗତର କାର୍ଯ୍ୟ ଓ ପ୍ରୟୋଜନ ପ୍ରକାଶ କରେ । ତେଣୁ ସେହି ବାଚ୍ୟ ଅର୍ଥଶାସ୍ତ୍ର ପ୍ରଭୃତିର ବାହନ ହୋଇ ସେ ଶାସ୍ତ୍ରମାନଙ୍କରେ ପ୍ରଯୁକ୍ତ ହୁଏ । ସେହି ବାଚ୍ୟ ଅର୍ଥ ଅଲୌକିକ ରସ ଜଗତର କାର୍ଯ୍ୟ ସମ୍ପାଦିତ କରିପାରେ ନାହିଁ । ତେଣୁ—ରସ ବ୍ୟଞ୍ଜନା ଦ୍ୱାରା ଲଭ୍ୟ ସୁତରାଂ ବ୍ୟଞ୍ଜନାର ବା ଧ୍ୱନି ଅର୍ଥର ପ୍ରାଧାନ୍ୟ ନ ରହିଲେ ରସ ସମ୍ପୂର୍ଣ୍ଣତା ଲାଭ କରିପାରେ ନାହିଁ ।

ବିଭାବ, ଅନୁଭାବ ଓ ବ୍ୟଭିଚାରୀ ଭାବଦ୍ୱାରା ରତି ପ୍ରଭୃତି ସ୍ଥାୟୀଭାବ ଚିତ୍ତରେ ବ୍ୟକ୍ତ ବା ଜାଗରିତ ହୁଏ । ଏହି ସ୍ଥାୟୀଭାବକୁ ରସ କହନ୍ତି । ବୀଜରେ ଅଙ୍କୁର ପରି ଯାହାଠାରେ ସ୍ଥାୟୀଭାବ ଜାଗରିତ, ଉଦ୍‌ବୁଦ୍ଧ ହୁଏ ତାହାର ରସାସ୍ୱାଦନ କରିବାର କଥା । କିନ୍ତୁ କାବ୍ୟ ନାଟକରେ ଆଲମ୍ବନ ବିଭାବରେ ଥିବା ରତି ପ୍ରଭୃତି ସ୍ଥାୟୀଭାବ ଶ୍ରୋତା ଏବଂ ଦ୍ରଷ୍ଟା ଲୋକଙ୍କ ବିଭିନ୍ନ ହୃଦୟରେ କିପରି ରସରୂପରେ ବ୍ୟକ୍ତ ହୁଏ ?

ଶ୍ରୋତା ଏବଂ ଦ୍ରଷ୍ଟାଙ୍କ (ସାମାଜିକ) ମନରେ ରତି ପ୍ରଭୃତି ସ୍ଥାୟୀଭାବ ବାସନା ରୂପରେ ରହିଥାଏ । ଏହି ସ୍ଥାୟୀଭାବ ବାସନାର ଉଦ୍‌ବୋଧନର ନାମ—ରସ । ରାମଚରିତ କାବ୍ୟ ନାଟକର ଆଲମ୍ବନ ବିଭାବ ହୋଇଥିଲେ ୧ମରେ ରାମ ସୀତାରୂପରେ ସେ ଦୁହେଁ ଜ୍ଞାତ ହୋଇଥାନ୍ତି, କିନ୍ତୁ ସହୃଦୟତା ଏବଂ ବ୍ୟଞ୍ଜନାବୃତ୍ତିଦ୍ୱାରା ସେ ଦୁହେଁ ପରେ ରାମ ସୀତା ରୂପରେ ପ୍ରତିଭାତ ହୁଅନ୍ତି ନାହିଁ । କିନ୍ତୁ ପରେ ସେମାନେ ନିଜ ନିଜର ବ୍ୟକ୍ତିତ୍ୱ ତ୍ୟାଗ କରି ସାମାନ୍ୟରୂପରେ ସର୍ବସାଧାରଣଙ୍କର ରତିପ୍ରଭୃତିର ଆଲମ୍ବନ ବିଭାବ ରୂପରେ ପ୍ରତିଭାତ ହୁଅନ୍ତି । ସେଥିଲାଗି ସାମାଜିକଙ୍କ ଚିତ୍ତରେ ରତି ପ୍ରଭୃତି ଯେଉଁସବୁ ବାସନା ଥାଏ—ତହିଁର ଉଦ୍‌ବୋଧ ବା ଜାଗରଣ ହୋଇଥାଏ । ଏହି

ସ୍ଥାୟୀଭାବର ଉଦ୍‌ବୋଧ ଓ ଆସ୍ୱାଦ ହେଉଛି—ରସ । ରସର ଏହି ଆସ୍ୱାଦ ପ୍ରକାରକୁ ସାଧାରଣୀକରଣ କହନ୍ତି । ସାଧାରଣୀକରଣର ଅର୍ଥ ହେଉଛି ବ୍ୟକ୍ତିତ୍ୱ, ଦେଶ ଓ କାଳର ବ୍ୟବଧାନ ଦୂର କରି ସର୍ବସାଧାରଣ ହେବା ଅର୍ଥାତ୍ ସଂକୀର୍ଣ୍ଣ ଗଣ୍ଡୀ ପରିତ୍ୟାଗ କରି ବ୍ୟାପକ ଆତ୍ମାର ଅନୁଭବ କରିବା ଅର୍ଥାତ୍ ଲୌକିକ ଜଗତ ସହିତ ସମ୍ପର୍କ ନ ରଖି ଦେଶ ଓ କାଳର ବ୍ୟବଧାନ ଦୂର କରି ବ୍ୟକ୍ତିବିଶେଷର ସମ୍ପର୍କ ମଧ୍ୟ ଦୂର କରି ସର୍ବସାଧାରଣ ଭାବରେ ଚିତ୍ତରେ ବିଭାବାଦିକୁ ପ୍ରତିଫଳିତ କଲେ ସ୍ଥାୟୀଭାବର ଉଦ୍‌ବୋଧ ହୁଏ । ଏହିପରି ସର୍ବସାଧାରଣ ହେବା କାର୍ଯ୍ୟକୁ ବିଭାବାଦିର ସାଧାରଣୀକରଣ ବ୍ୟାପାର କହନ୍ତି ।

## ନାଟ୍ୟ ରସର ଉଦାହରଣ—

ଆଲୋକମାଳାରେ ସୁସଜ୍ଜିତ ଉଜ୍ଜ୍ୱଳ ରଙ୍ଗମଞ୍ଚ ବାଦ୍ୟରେ ମୁଖରିତ । ଦର୍ଶକଗଣ ନାଟକ ଦେଖିବାକୁ ଉତ୍କର୍ଣ୍ଣ ହୋଇ ବସିଛନ୍ତି । ଯବନିକା ପତନପୂର୍ବରୁ ବିଭିନ୍ନ ଶ୍ରେଣୀର ଦର୍ଶକଗଣ ପ୍ରକୃତିରେ, ଜାତିରେ ବ୍ୟବସାୟରେ ଭିନ୍ନ ହେଲେ ମଧ୍ୟ ସମସ୍ତେ ନାଟକ ଦେଖିବା ସକାଶେ ଆଗ୍ରହରେ ଅଧୀର ହୋଇଥାନ୍ତି ।

ରଙ୍ଗାଳୟରେ ପ୍ରବେଶ ପୂର୍ବରୁ ସେମାନଙ୍କର ନିଜ ନିଜର ଯେଉଁସବୁ ବ୍ୟକ୍ତିଗତ ସୁଖଦୁଃଖର ଆଶା ଆକାଙ୍‌କ୍ଷାର ଭାବନାସ୍ରୋତ ରହିଥିଲା—ତାହା କ୍ରମେ କ୍ରମେ ଅପସରି ଯାଉଥାଏ । ସେମାନେ କ୍ରମେ କ୍ରମେ ନିଜ ନିଜର ବ୍ୟକ୍ତିତ୍ୱ ପରିହାର କରି ସର୍ବସାଧାରଣ ଦର୍ଶକଙ୍କ ସହିତ ଏକ ଭାବରେ ମିଳି ଯାଇଥାନ୍ତି । ସମସ୍ତ ଦର୍ଶକଙ୍କ ମଧ୍ୟରେ ଯେଉଁ ବ୍ୟକ୍ତିତ୍ୱର ପ୍ରାଚୀର ରହିଥିଲା—ତାହା କ୍ରମେ କ୍ରମେ ଭଗ୍ନ ହୋଇଯାଉଛି । ଯବନିକାର ଉତ୍ତୋଳନ ପରେ ପରେ ନଟନଟୀମାନେ ବିଭିନ୍ନ ବେଶଭୂଷାରେ ବିଭିନ୍ନ ପାତ୍ରଙ୍କର ଭୂମିକାରେ ଅବତୀର୍ଣ୍ଣ ହୋଇ ଅଭିନୟ କରି ଦର୍ଶକମାନଙ୍କୁ ଅଭିଭୂତ ଓ ଚମତ୍କୃତ କରିଥାନ୍ତି । ଦର୍ଶକମନଙ୍କ ମନରେ ୧ମରେ ଯେଉଁ ସାଧାରଣୀ କରଣ ଆରମ୍ଭ ହୋଇଥାଏ, ତାହା କ୍ରମେ କ୍ରମେ ପୂର୍ଣ୍ଣତା ଲାଭ କରେ । ଦର୍ଶକମାନଙ୍କର ଭିନ୍ନ ଭିନ୍ନ ବ୍ୟକ୍ତି ବୋଲି ଯେଉଁ ଅଭିମାନ ଥାଏ ସେ ପୃଥକ୍‌ବ୍ୟକ୍ତିତ୍ୱର ଅଭିମାନ କ୍ରମେ କ୍ରମେ ଅପସରି ଯାଏ । ସେ ସମୟରେ ସେମାନେ "ମୁଁ ଅମୁକ ଲୋକଙ୍କ ପୁଅ, ଅମୁକର ବନ୍ଧୁ, ଅମୁକର ସ୍ୱାମୀ, ମୁଁ ଧନୀ, ମୁଁ ଦରିଦ୍ର, ମୁଁ ଦୁଃଖୀ, ମୁଁ ଶରି ସୁଖୀ" ଏହି ସବୁ ସାଂସାରିକ ସମ୍ବନ୍ଧ ଓ ଚିନ୍ତାକୁ ବିସ୍ମୃତ ହୋଇଯାନ୍ତି । ସେ ସମୟରେ ଯେଉଁମାନେ ଅଭିନୟ କରୁଥାନ୍ତି ସେହି ନଟନଟୀଗଣ ଯେ—ନିଜଠାରୁ ଭିନ୍ନ ବା ଭିନ୍ନ ନୁହନ୍ତି କିମ୍ବା ଯେ ନଟନଟୀଙ୍କଠାରୁ ଭିନ୍ନ ବା ଭିନ୍ନ ନୁହେ, ଏହିପରି କୌଣସିଜ୍ଞାନ ଦର୍ଶକମାନଙ୍କ ମନରେ ସେ ସମୟରେ ରହେ ନାହିଁ । ରାମ ସୀତା ପ୍ରଭୃତିଙ୍କର କିମ୍ବା ନଟନଟୀଙ୍କର, ଭୂମିକାର ରାମ ସୀତା ପ୍ରଭୃତି ବିଭାବ ମଧ୍ୟ ରାମ ସୀତାଙ୍କର

କମ୍ପା ପରର, କମ୍ପା ନଜର'' ଏହିପରି ଜ୍ଞାନ ମଧ୍ୟ ଦର୍ଶକଙ୍କ ମନରେ ସେ ସମୟରେ ରହେ ନାହିଁ । କେବଳ ମୁଁ ଦେଖୁଛି, ଶୁଣୁଛି ଜ୍ଞାନ ରହିଥାଏ । ଏହା ହେଉଛି— ସାଧାରଣୀକରଣ ।

ଏହି ଅବସ୍ଥାରେ ନିଜ ନିଜର ପରିମିତ ବା ସୀମିତ ବ୍ୟକ୍ତିତ୍ୱର ଲୋପ ହୋଇଥାଏ । ସେ ସମୟରେ ସମସ୍ତ ସହୃଦୟ ଦର୍ଶକଙ୍କର ହୃଦୟ ଏକ ହୋଇଯାଏ । ପ୍ରତ୍ୟେକ ସହୃଦୟ ଦର୍ଶକ ସେ ସମୟରେ ନିଜ ନିଜର ବ୍ୟକ୍ତିତ୍ୱ ପରିହାର କରି ସମସ୍ତଙ୍କ ସହିତ ଏକ ହୋଇଯାନ୍ତି ବୋଲି ଅନୁଭବ କରନ୍ତି । ସେମାନେ ସମସ୍ତେ ସତ୍ତ୍ୱଚୈତନ୍ୟର ଭୂମିରେ ଅବତୀର୍ଣ୍ଣ ହୁଅନ୍ତି । ସେ ସମୟରେ ସମସ୍ତେ ମନ, ବଚନ, କର୍ମରେ ହୃଦୟରେ, ନୟନ କର୍ଣ୍ଣରେ ଏକ ହୋଇଗଲି ପରି ମନେ କରନ୍ତି । ଏହାକୁ ଆଚାର୍ଯ୍ୟ ମମ୍ମଟ କହିଛନ୍ତି—'ସକଳସହୃଦୟସମ୍ବାଦଭାଜା' ସେ ସମୟରେ ସହୃଦୟ ଦର୍ଶକ ମାନଙ୍କର ଭେଦଜ୍ଞାନ ରହେ ନାହିଁ ଏବଂ ସାଦୃଶ୍ୟ ଜ୍ଞାନ ମଧ୍ୟ ରହେ ନାହିଁ । ସେ ସମୟରେ ରାମ ସୀତା ପ୍ରଭୃତି ବ୍ୟକ୍ତିବିଶେଷରୂପରେ ଜ୍ଞାତ ହେଲେ ସେମାନଙ୍କର ଆରାଧିତା ପ୍ରଭୃତି ଜ୍ଞାନରୁ ରସିକଙ୍କ ଚିତ୍ତରେ ବାସନା ରୂପରେ ଅବସ୍ଥିତ ରତି ପ୍ରଭୃତି ସ୍ଥାୟୀ ଭାବରୁ ଉଦ୍‌ବୋଧ ହେବ ନାହିଁ । ଶତ୍ରୁ ଜ୍ଞାନ ହେଲେ ଈର୍ଷା ହେବ । ମିତ୍ର ଜ୍ଞାନ ହେଲେ କମ୍ପା ନିଜର ବୋଲି ଜ୍ଞାନ ହେଲେ ଲଜ୍ଜା ପ୍ରଭୃତି ଜାତ ହେବ । ସେତେବେଳେ—

କାବ୍ୟ ନାଟକ ବର୍ଣ୍ଣିତ ଚରିତ୍ର ଦୃଶ୍ୟ ପ୍ରଭୃତିରେ ଆଲୋଚନା ଦ୍ୱାରା ପାଠକ ଓ ଶ୍ରୋତା ନିଜ ନିଜର ଦେଶକାଳ ଅବସ୍ଥା ଏବଂ ନିଜ ନିଜର ବ୍ୟକ୍ତିତ୍ୱ ଓ ବୈଶିଷ୍ଟ୍ୟକୁ ବିସ୍ମୃତ ହୁଏ । ନିଜର ଅସାଧାରଣ ବ୍ୟକ୍ତିତ୍ୱ ପରିହାର କରି କାବ୍ୟ ନାଟକର ଚରିତ୍ର ବିଭାବାଦି ସହିତ ନିଜର ସାଧାରଣ ସମ୍ପର୍କ ସ୍ଥାପନ କରେ । ଏଣୁ ଏହାକୁ ସାଧାରଣୀ କରଣ କରନ୍ତି । ଏହି ଅବସ୍ଥାରେ ବିଭାବାଦିର ସାଧାରଣତ୍ୱ ଯୋଗୁଁ ସହୃଦୟ ରସିକ ଲୋକ ବିଭାବାଦି ସହିତ ତନ୍ମୟ ହୋଇଯାନ୍ତି । ତେଣୁ ବିଭାବାଦିଗତ ରତି ପ୍ରଭୃତି ସ୍ଥାୟୀଭାବ ରସିକ ଲୋକଙ୍କ ଚିତ୍ତରେ ସୂକ୍ଷ୍ମ ବାସନା-ରୂପରେ ଅବସ୍ଥିତ ରତି ପ୍ରଭୃତି ସ୍ଥାୟୀ ଭାବକୁ ଉଦ୍‌ବୋଧିତ କରେ । ତେଣୁ ସହୃଦୟ ରସିକ ଲୋକର "ନିଜର, ପରର, ଶତ୍ରୁର, ମିତ୍ର କମ୍ପା ନିଜର ନୁହେଁ ପରର ନୁହେ, ଶତ୍ରୁର ନୁହେ, ମିତ୍ରର ନୁହେ" ବୋଲି ଜ୍ଞାନ ରହେନାହିଁ । ସେହି କଥା ବିଶ୍ୱନାଥ ମହାପାତ୍ରେ କହିଛନ୍ତି ।

"ପରସ୍ୟ ନ ପରସ୍ୟେତି ମମେତି ନ ମମେତି ଚ ।
ତଦାସ୍ୱାଦେ ବିଭାବାଦେଃ ପରିଚ୍ଛେଦୋ ନ ବିଦ୍ୟତେ ।"

ବିଭାବାଦିର ଆସ୍ୱାଦନ କାଳରେ ଏହି ବିଭାବାଦି ବା ପରର ନୁହେଁ, ମୋ ନିଜର ବା ନିଜର ନୁହେ", ଏହିପରି କୌଣସି ବନ୍ଧନ ରହେ ନାହିଁ ।

"ବ୍ୟାପାରୋଽସ୍ତି ବିଭାବାଦେ ର୍ନାମ୍ନା ସାଧାରଣୀ କୃତଃ ।
ପ୍ରମାତାଯଦ ଭେଦେନ ସ୍ୱାତ୍ମାନଂ ପ୍ରତିପଦ୍ୟତେ । (ସାହିତ୍ୟ ଦର୍ପଣ)

ବିଭାବାଦିର ସାଧାରଣୀକରଣ ନାମରେ ଗୋଟିଏ ବ୍ୟାପାର ରହିଅଛି । ସେହି ବ୍ୟାପାର ବଳରେ ସହୃଦୟ ରସିକ ବିଭାବାଦି ସହିତ ନିଜକୁ ଅଭିନ୍ନ ବୋଲି ଜ୍ଞାନ କରେ । ସହୃଦୟ ଲୋକ ରସିକ, କବି, ନାୟକ, ନାୟିକା ଏବଂ ଅନ୍ୟାନ୍ୟ ଦର୍ଶକଙ୍କ ହୃଦୟ ସହିତ ନିଜ ହୃଦୟକୁ ଏକାକାର କରିଥାଏ । ସମାନଂ ହୃଦୟଂ ଯସ୍ୟ ସଃ ସହୃଦୟଃ । ଆମ୍ଭେମାନେ ସହୃଦୟ ଶବ୍ଦକୁ ଭାଷାରେ ଯେପରି ଅର୍ଥ କରିଥାଉଁ ସଂସ୍କୃତରେ ତାହା ନୁହେଁ । ସଂସ୍କୃତରେ ରସାନୁଭବୀ ଲୋକକୁ ସହୃଦୟ କହନ୍ତି— ଆଚାର୍ଯ୍ୟ ଅଭିନବ ଗୁପ୍ତ ସହୃଦୟର ଲକ୍ଷଣ କରିଛନ୍ତି—

"ଯେଷାଂ କାବ୍ୟାନୁଶୀଳନ ବଶାତ୍ ବିଶଦୀଭୂତେ
ମନୋମୁକୁରେ ବର୍ଣ୍ଣନୀୟ ତନ୍ମୟୀଭବନଯୋଗ୍ୟତା ତେ
ହୃଦୟ-ସମ୍ବାଦଭାଜଃ ସହୃଦୟାଃ (ଧ୍ୱନ୍ୟାଲୋ ୧।୧ ଟୀକା)

କାବ୍ୟ ଚର୍ଚ୍ଚାର ଅଭ୍ୟାସ ବଶରୁ ଯେଉଁମାନଙ୍କର ହୃଦୟରୂପକ ଦର୍ପଣ ସ୍ୱଚ୍ଛ ଓ ନିର୍ମଳ ହୋଇଥାଏ ଏବଂ ଯେଉଁମାନେ ବର୍ଣ୍ଣନୀୟ ବିଭାବାଦି ବିଷୟ ସହିତ ତନ୍ମୟତା ବା ଏକାତ୍ମତା ଲାଭ କରିଥାନ୍ତି ସେମାନେ ହେଉଛନ୍ତି ସହୃଦୟ । ଯେଉଁ ବିଭାବାଦି ହୃଦୟ-ସମ୍ବାଦୀ ଅର୍ଥାତ୍ ଯେଉଁ ବିଭାବ-ପ୍ରଭୃତି ଗୋଟିଏ ହୃଦୟ ସହିତ ଅନ୍ୟ ହୃଦୟର ମିଳନ ଘଟାଇପାରେ ସେହି ବିଭାବ-ପ୍ରଭୃତିର ଚର୍ବଣା ହେଉଛି ରସର ଅଭିବ୍ୟକ୍ତି । ଏହି ସାଧାରଣୀକରଣକୁ ଆବରଣଭଙ୍ଗ ବୋଲି ମଧ୍ୟ କେହି କେହି କହନ୍ତି । ରସ ଗଙ୍ଗାଧର-ରଚୟିତା ଜଗନ୍ନାଥ ରସକୁ "ଭଗ୍ନାବରଣ ଚୈତନ୍ୟ" ବୋଲି କହିଛନ୍ତି—ଅଖଣ୍ଡ ଚୈତନ୍ୟ ବା ଆତ୍ମା ହେଉଛି ବ୍ୟାପକ ପଦାର୍ଥ । ସେହି ଆତ୍ମା ଉପରେ ଆନନ୍ଦ ଓ ଜ୍ଞାନ ବୋଲି ଦୁଇଟି ଧର୍ମ କଳ୍ପିତ ହୋଇଥାଏ । ଏହି ଅଖଣ୍ଡ ଆନନ୍ଦ ଉପରେ ବ୍ୟକ୍ତିତ୍ୱ, ସସୀମତ୍ୱ, ରଜତମ ପ୍ରଭୃତି ଆବରଣ ରହିଅଛି । ଏହି ଆବରଣର ଭଙ୍ଗ ହେଲେ ବ୍ୟକ୍ତିତ୍ୱ, ରଜତମ, ପ୍ରଭୃତି ବାଧା ଦୂର ହେଲେ ଆନନ୍ଦମୟ ଶୁଦ୍ଧ ଚୈତ୍ୟ ବା ଆତ୍ମାର ଉପଲବ୍ଧି ହୁଏ । ତାହାର ନାମ ହେଉଛି ରସ । ବିଭାବ-ପ୍ରଭୃତିର ସାଧାରଣୀକରଣ ପ୍ରକ୍ରିୟା ଦ୍ୱାରା ଏହି ଆବରଣ ଦୂର ହୋଇଥାଏ ଏବଂ ରସର ଉପଲବ୍ଧି ହୁଏ । ଏହି ରସ ହେଉଛି ବ୍ରହ୍ମ । "ରସୋ ବୈ ସଃ, ଆନନ୍ଦଚିଦ୍ ଘନଃ ।" ତେଣୁ ରସକୁ କହନ୍ତି— ବ୍ରହ୍ମାନନ୍ଦ—ସହୋଦର ।

ଏହି ଧ୍ୱନିତତ୍ତ୍ୱ ଏବଂ ରସତତ୍ତ୍ୱର ଭିତ୍ତି ଉପରେ ସଂସ୍କୃତ ସାହିତ୍ୟର କାବ୍ୟ ସୌଧ ପ୍ରତିଷ୍ଠିତ । ଓଡ଼ିଆ ଭାଷାର ରୀତିଯୁଗର କାବ୍ୟ କବିତାମାନ ଅକ୍ଷରେ ଅକ୍ଷରେ ସଂସ୍କୃତ ସାହିତ୍ୟର ସରଣୀ ଅନୁସରଣ କରିଛନ୍ତି । ସେମାନଙ୍କର

ସଂସ୍କୃତ-ସାହିତ୍ୟ ଥିଲା ଏକମାତ୍ର ଆଦର୍ଶ । ସେଥିଲାଗି ମୁଁ ଏଠାରେ ଧ୍ୱନିତତ୍ତ୍ୱ ଏବଂ ରସତତ୍ତ୍ୱର ସଂକ୍ଷିପ୍ତ ସମୀକ୍ଷା ପ୍ରଦାନ କଲି । ଓଡ଼ିଆ ରୀତି ଯୁଗର କାବ୍ୟମାନଙ୍କୁ, କବିତାମାନଙ୍କୁ ଆଲୋଚନା କରିବାକୁ ହେଲେ ଧ୍ୱନି ଏବଂ ରସ ଦୃଷ୍ଟିରୁ କରିବାକୁ ହେବ ।

ଓଡ଼ିଆଭାଷା ସ୍ୱଭାବତଃ କୋମଳ ଏବଂ ମଧୁର । ପ୍ରତିଭା ସମ୍ପନ୍ନ କବିଙ୍କର ହାତରେ ପଡ଼ିଲେ ଏହି ଭାଷାରେ ଭାବ ପ୍ରକାଶନର ଅଦ୍‌ଭୁତ କ୍ଷମତା ହୋଇଥାଏ । ଭାବର ସୂକ୍ଷ୍ମତା ଏବଂ ମନୋବିକାରମାନଙ୍କର ପ୍ରକାଶରେ ଓଡ଼ିଆଭାଷା ନିତାନ୍ତ ସମର୍ଥ ଏବଂ କ୍ଷମ । ସଂସ୍କୃତ ଶବ୍ଦମାନଙ୍କର ମିଶ୍ରଣରେ ଓଡ଼ିଆ ଶବ୍ଦ ଭଣ୍ଡାର ପରିପୂର୍ଣ୍ଣ ହୋଇ ଅତି ବିଶାଳ ହୋଇଅଛି । ତେଣୁ ଓଡ଼ିଆ ଭାଷାରେ ରୀତିଯୁଗର କାବ୍ୟମାନଙ୍କରେ ଶବ୍ଦମାନଙ୍କର ସୌଷ୍ଠବ ପଦାବଳୀମାନଙ୍କର ମଧୁମୟ ବିନ୍ୟାସ ପଦମାନଙ୍କର କୋମଳ ଶଯ୍ୟା ଯେପରି ସୁନ୍ଦର ଭାବରେ ନିବଦ୍ଧ ହୋଇଛି—ତାହା ଦେଖିଲେ ଆଶ୍ଚର୍ଯ୍ୟ ଏବଂ ବିସ୍ମୟରେ ସ୍ତବ୍‌ଧ ଏବଂ ଚମତ୍କୃତ ହେବାକୁ ହୁଏ । ଯେଉଁ ଦେଶର କବି ଜୟଦେବ ସଂସ୍କୃତ ସାହିତ୍ୟରେ 'କାନ୍ତ କୋମଳ ପଦାବଳୀ'ରେ ଗୀତ ଗୋବିନ୍ଦର ରଚନା କରିଥିଲେ—ସେହି ଦେଶର କବିମାନଙ୍କର ସେ ପ୍ରଧାନ ଆଦର୍ଶ ଥିଲେ । ସେଥିଲାଗି ଓଡ଼ିଶାର କବିମାନଙ୍କର ରଚନାମାନଙ୍କରେ ସେହି କାନ୍ତ-କୋମଳ ପଦାବଳୀ ଦେଖିବାକୁ ମିଳେ, ସେହି ରୀତିଯୁଗର କବିମାନଙ୍କର ରଚନାରେ ବିଭିନ୍ନ ଅନୁପ୍ରାସ ଏବଂ ଭିନ୍ନ ଭିନ୍ନ ଯମକ ପ୍ରତିପଦରେ ପୂରି ରହିଛି ବୋଲି କହିଲେ ଚଳେ । ସେଥିଲାଗି ସେ କାବ୍ୟମାନ ଅତିଶ୍ରୁତି ସୁଖକର ହୋଇଥାଏ ଏବଂ ସାଧାରଣ ଲୋକେ ଅର୍ଥ ନ ବୁଝିଲେ ମଧ୍ୟ ଛନ୍ଦ ଏବଂ ପଦମାନଙ୍କର ଲାଳିତ୍ୟ ଏବଂ କମନୀୟତାରେ ମୁଗ୍‌ଧ ହୋଇ ମନକର୍ଣ୍ଣ ଦେଇ ସେହି କାବ୍ୟମାନ ଗାନ-କରିଥାନ୍ତି । ପାଲାମାନଙ୍କରେ ଯେତେ ଯେତେ ଲୋକଙ୍କର ସମାଗମ ଏବଂ ତନ୍ମୟତା ହୋଇଥାଏ ତାହା ଯେ ଦେଖିଛି ସେ ଅକ୍ଷରେ ଅକ୍ଷରେ ଏହି କଥାର ସତ୍ୟତା ଉପଲବ୍‌ଧି କରି ପାରିବ । ଶ୍ଳେଷ ଅଳଙ୍କାରର ବିନ୍ୟାସରେ ମଧ୍ୟ ସେମାନେ ସଂସ୍କୃତ ଏବଂ ଓଡ଼ିଆ ପଦମାନଙ୍କ ସମ୍ମିଶ୍ରଣରେ ଏକ କମନୀୟ କୌଶଳ ବ୍ୟବହାର କରିଛନ୍ତି ତାହା ସହୃଦୟ ସମାଲୋଚକମାନଙ୍କ ହୃଦୟାବର୍ଜକ । ସେ ଯୁଗର କବିମାନଙ୍କର ଶବ୍ଦ-ବିଭବ ଯେପରି ଅସୀମ ଥିଲା—ଭାବବିଭବ ଏବଂ ଅର୍ଥ ବିଭବ ମଧ୍ୟ ସେପରି ଅପରିସୀମ ଥିଲା । ହୃଦୟର କ୍ଷଣ କ୍ଷଣ ପରିବର୍ତ୍ତନଶୀଳ ଭାବମାନଙ୍କର ସେ କାବ୍ୟ-ମାନଙ୍କରେ ବିନ୍ୟାସ ହୋଇଥିବାରୁ ଗୋଟିଏ ଗୋଟିଏ ପଦ୍ୟ ମଧ୍ୟ ମନୋରମ ଚିତ୍ର ପରି ପ୍ରତୀତ ହୁଏ ।

ଯଦୁମଣି ମହାପାତ୍ର ହେଉଛନ୍ତି ଆମ୍ଭର ସେହି ରୀତିଯୁଗର କବି, ସେ କେବଳ ଜାତିରେ ବନ୍ଦୀଣୀ ନ ଥିଲେ କି କେବଳ ଜଣେ ହାସ୍ୟରସର କବି ନ ଥିଲେ, କିନ୍ତୁ ସେ ଜଣେ ରୀତି-ଯୁଗ-କାବ୍ୟର ଶ୍ରେଷ୍ଠ ବନ୍ଦୀଣୀ ଥିଲେ । ତାଙ୍କର

**ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର** ଏବଂ **ରାଘବ ବିଳାସ** ତାଙ୍କର ଶ୍ରେଷ୍ଠ ନିଦର୍ଶନ । ହାସ୍ୟରସ କବିତାମାନଙ୍କରେ ମଧ୍ୟ ସେହି ରୀତି-ଯୁଗର ଛାପ ପ୍ରତିଫଳିତ । ରୀତିଯୁଗର କାବ୍ୟ-ମାନଙ୍କ ରୀତି ଓ ଲକ୍ଷଣ ଯଦୁମଣି ମହାପାତ୍ରଙ୍କର କବିତା ଓ କାବ୍ୟମାନଙ୍କରେ ପ୍ରତିଷ୍ଠା ଲାଭ କରିଛି । କବିମାନଙ୍କର ଶବ୍ଦ ବିଭବ ଏବଂ ଅର୍ଥ ବିଭବ ଯେପରି ଅସରନ୍ତି—ଯଦୁମଣି ମହାପାତ୍ରଙ୍କ ଶବ୍ଦ ବିଭବ ଏବଂ ଅର୍ଥ ବିଭବ ମଧ୍ୟ ସେହିପରି ଅସୀମ ଏବଂ ବ୍ୟାପକ—ଯଦୁମଣି ମହାପାତ୍ରଙ୍କର କାବ୍ୟ ଏବଂ କବିତା ଭିନ୍ନ ଭିନ୍ନ ଅନୁପ୍ରାସ ଭିନ୍ନ ଭିନ୍ନ ଯମକ ଏବଂ ଶ୍ଳେଷ ପ୍ରଭୃତି ଶବ୍ଦାଳଙ୍କାର ଏବଂ ଲଳିତକାନ୍ତ କୋମଳ ପଦାବଳୀରେ ପରିପୂର୍ଣ୍ଣ । ତାଙ୍କର ଉଦାହରଣ ଏବଂ ସମୀକ୍ଷା ଶ୍ରୀ ଚକ୍ରଧର ମହାପାତ୍ରେ ଏହି ଗ୍ରନ୍ଥର ଅବତରଣିକାରେ ବିସ୍ତୃତ ଭାବରେ ଆଲୋଚନା କରି ଏବଂ କବିଙ୍କର ଜୀବନୀ ସଂଗ୍ରହ କରି ଲେଖି ମୋର କାର୍ଯ୍ୟଭାର ଲଘୁ କରିଛନ୍ତି ।

ଯଦୁମଣି ମହାପାତ୍ରେ ଯେପରି ମହାକବି ଥିଲେ ସେପରି ସେ ହାସ୍ୟରସ ରସିକ ଥିଲେ ଏବଂ ସେପରି ସେ ସତ୍ ସାହସୀ ଏବଂ ସତ୍ୟନିଷ୍ଠ ଏବଂ ନ୍ୟାୟପର ଥିଲେ । ଆଜୀବନ ଦାରିଦ୍ର୍ୟର କଷାଘାତରେ ଉତ୍ପୀଡ଼ିତ ହେଲେ ମଧ୍ୟ ସେ କଦାପି ଧର୍ମିକ ରାଜାମାନଙ୍କ ନିକଟରେ ନିଜର ସମ୍ମାନ ଓ ମହତ୍ତ୍ୱ ବିକ୍ରୟ କରି ନଥିଲେ ଏବଂ ପ୍ରତି ପଦରେ ସେମାନଙ୍କର ତୀବ୍ର ସମାଲୋଚନା କରିଥିଲେ ।

ଭାଗବତରେ କଥିତ ଅଛି—

ଚୀରାଣି କିଂ ପଥି ନ ସନ୍ତି ଦିଶନ୍ତି ଭିକ୍ଷାଂ
ନୈବାଙ୍ଘ୍ରିପାଃ ପରଭୃତଃ ସରିତୋଽପ୍ୟଶୁଷ୍ୟନ୍ ।
କସ୍ମାଦ୍ ଭଜନ୍ତି କବୟୋ ଧନଦୁର୍ମଦାନାମ୍ ।

ବାଟରେ କଣ ଚୀର କନା ନାହିଁ ? ଗଛର ଫଳ କଣ ଲୋକଙ୍କୁ ମିଳୁ ନାହିଁ ? ନଈ କଣ ସବୁ ଶୁଖି ଗଲଣି ? କାହିଁକି କବିମାନେ ଧନରେ ଦୁର୍ମଦ ଧନିକ ମାନଙ୍କର ସ୍ତୁତି ଗାନ କରୁଛନ୍ତି ?'' ଏହି କଥାଟି ଯଦୁମଣି ମହାପାତ୍ରଙ୍କଠାରେ ଅକ୍ଷରେ ଅକ୍ଷରେ ପ୍ରଯୋଜ୍ୟ ଥିଲା । ସେ ସଦା ସର୍ବଦା ନିଜ ସମ୍ମାନ ବଜାୟ ରଖିଥିଲେ କାହାରି ପାଖରେ ନିଜର ମସ୍ତକ କଦାପି ଅବନତ କରି ନ ଥିଲେ ।

ଏ ବିଷୟ ମଧ୍ୟ ଚକ୍ରଧର ମହାପାତ୍ରେ ତାଙ୍କ ଜୀବନୀରେ ପ୍ରତିପାଦିତ କରିଛନ୍ତି । ଧନ୍ୟ ସେ ସ୍ୱାଧୀନଚେତା କବି । ସେ ନିଜକୁ ଉତ୍କଳ ଦଣ୍ଡୀ ବୋଲି କହୁଥିଲେ । ଯେଉଁ ଦେଶରେ ଏପରି ସ୍ୱାଧୀନଚେତା ଉତ୍କଳ ଦଣ୍ଡୀଙ୍କର ଜନ୍ମ ସେ ଦେଶ ମଧ୍ୟ ଧନ୍ୟ । ମଲ୍ଲିନାଥ ଭାରବି ମହାକାବ୍ୟର ଟୀକା କଲାବେଳେ ୧ମରେ କହିଥିଲେ—

ନାରିକେଳଫଳ ସମ୍ମିତଂ ବଚୋ
ଭାରବେଃ ସପଦି ତଦ୍ ବିଭଜ୍ୟତେ ।
ସ୍ୱାଦୟନ୍ତୁ ରସଗର୍ଭ-ନିର୍ଭରଂ
ସାରମସ୍ୟ ରସିକା ଯଥେପ୍‌ସିତମ୍ ।

"ଭାରବଙ୍କର କବିତା ନଡ଼ିଆ ଫଳ ପରି ଉପରେ କଠିନ । ତାହାକୁ ବ୍ୟାଖ୍ୟା କରି ମୁଁ ଭାଙ୍ଗୁଅଛି । ନଡ଼ିଆ ଭାଙ୍ଗିଲେ ରସପରିପୂର୍ଣ୍ଣ ତାର ସାର ଯେପରି ଲୋକେ ଖାଆନ୍ତି — ସେହିପରି ରସିକମାନେ ଯଥେଚ୍ଛାଭାବରେ ଭାରବି କାବ୍ୟର ରସ ଆସ୍ୱାଦନ କରନ୍ତୁ ।"

ଯଥାର୍ଥରେ ଯଦୁମଣି ଉତ୍କଳ ଭାରବି ଥିଲେ । ତାଙ୍କର କାବ୍ୟ କବିତାମାନ ନାରିକେଳ ଫଳପରି ଉପରେ କଠିନ । **ଦାସ ବ୍ରଦର୍ସ** ଏବଂ ଚନ୍ଦ୍ରଧର ମହାପାତ୍ରେ ଏ ଗ୍ରନ୍ଥାବଳୀରେ ଉତ୍କଳ ଭାରବିଙ୍କର କାବ୍ୟ କବିତାମାନ ବ୍ୟାଖ୍ୟା କରି ସରଳ ତରଳ କରିଛନ୍ତି । ସହୃଦୟ ରସିକମାନେ ଯଥା-ଯଥ ଭାବରେ ତହିଁର ରସ ଆସ୍ୱାଦନ କରି ପାରିବେ ବୋଲି ମୋର ଏକମାତ୍ର ଆଶା ।

**ଦାସ ବ୍ରଦର୍ସଙ୍କର** ଅର୍ଥ ସାହାଯ୍ୟ ଏବଂ ପ୍ରରୋଚନାରେ ଚନ୍ଦ୍ରଧର ମହାପାତ୍ରେ ବହୁ ପରିଶ୍ରମ ଏବଂ କଷ୍ଟ ସହି ଉତ୍କଳଭାରବି ଯଦୁମଣି ମହାପାତ୍ରଙ୍କର ଜୀବନୀ ଏବଂ କାବ୍ୟ କବିତାମାନ ସଂଗ୍ରହ କରି ଓଡ଼ିଆ ସାହିତ୍ୟକୁ ଯେଉଁ ଅମୂଲ୍ୟଦାନ ପ୍ରଦାନ କରିଛନ୍ତି ତାହା ଅତୁଳନୀୟ । ସେଥିଲାଗି ସେ ସମସ୍ତଙ୍କର ଧନ୍ୟବାଦାର୍ହ । ସେଥିଲାଗି ମୁଁ ତାଙ୍କୁ ମୋର ଧନ୍ୟବାଦ ଜ୍ଞାପନ କରୁଛି । ଦାସ ବ୍ରଦର୍ସ ମଧ୍ୟ ଚନ୍ଦ୍ରଧର ମହାପାତ୍ରଙ୍କୁ ଧନ ଦେଇ ଏହି କାର୍ଯ୍ୟରେ ତାଙ୍କୁ ନିଯୁକ୍ତ କରି ଏହି ଗୁରୁ କାର୍ଯ୍ୟ ସମାହିତ କରି ଥିବାରୁ ସେ ମଧ୍ୟ ସମସ୍ତଙ୍କର ପ୍ରଶଂସା ଭାଜନ । ତେଣୁ ମୁଁ ଦାସ ବ୍ରଦର୍ସଙ୍କୁ ଅଶେଷ ଧନ୍ୟବାଦ ଦେଉଛି—ଏବଂ ଆଶାକରେ ସେ ଓଡ଼ିଆ ସାହିତ୍ୟର ଅମୂଲ୍ୟ ରତ୍ନଭଣ୍ଡାରରୁ ଏହିପରି ଲୁପ୍ତ ରତ୍ନମାନ ଉଦ୍ଧାର କରି ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିବେ ।

ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।

ଇତି

ଶମ୍

**ଶ୍ରୀ କରୁଣାକର କର**

## *JADUMANI MAHAPATRA*

**(*From History of Oriya Literature by Dr. M. Mansinha*)**

Best known as a wit in Orissa, like Birbal in northern India, Jadumani Mahapatra is the most entertaining literary legend in the land. In gatherings of rural folk in any part of Orissa, the witty sayings and practical jokes of Jadumani are frequently recalled for the innocent laughter and diversion they provide. His witticisms and jokes have been collected in Jadumani Rahasya, which is a perennial best-seller in rural areas. × × ×

But how does such a wit, readers may ask, come into the picture of Kavya-makers? The fact is, though a low-born carpenter, Jadumani was a finished scholar in Oriya and Sanskrit, proving, by the way, the width and depth of social culture in Orissa at that time. He has left behind a Kavya with the title of Prabandha-purnachandra (Full moon of poetic essays), narrating the episode of Krishna's marriage with Rukmini, with extra–ordinary skill in word-play, word–painting and metrical handling. He has indeed out–Bhanjaed Upendra Bhanja at his own game. Like Bhanja's poems and songs the Prabandha–purnachandra of Jadumani is also a favourite source book of the Palawalas, the wandering exponents of ancient poetry in Orissa villages.

Because of his wit, scholarship and other excellent social qualities, Jadumani was a favourite courtier at many courts in the ex-states areas of Orissa.

ଉତ୍ତର ଭାରତରେ ବୀରବଳଙ୍କ ପରି ଓଡ଼ିଶାରେ, ଯଦୁମଣି ମହାପାତ୍ର ଅସାଧାରଣ ପ୍ରତ୍ୟୁତ୍ପନ୍ନମତିର ଓ ଆଶୁ କବିତ୍ୱ ପାଇଁ ସର୍ବାଧିକ ଚିତ୍ତବିନୋଦକ ସାହିତ୍ୟିକ କାହାଣୀରେ ପରିଣତ ହୋଇଯାଇଛନ୍ତି । ସରଳ ହାସ୍ୟରସର ଉତ୍ସରୂପେ

ଓଡ଼ିଶାର ପଲ୍ଲୀଜନତା ମଧ୍ୟରେ ଯଦୁମଣିଙ୍କ ତୁରନ୍ତ-ଜବାବ ଓ ହାସ୍ୟୋଦ୍ରେକ ବିଦ୍ରୂପ-କଳାପସବୁ ବରାବର କଥୋପକଥନର ଅଂଶ ହୋଇଥାଏ । ଯଦୁମଣିଙ୍କର ଏହିସବୁ କୀର୍ତ୍ତି ବଜାରରେ 'ଯଦୁମଣି-ରହସ୍ୟ' ନାମରେ ସଂଗୃହୀତ ହୋଇ ବିକି ହେଉଛି ଓ ଏହାର ବିକିର ଶେଷ **ନାହିଁ** । × × ×

କିନ୍ତୁ ପ୍ରଶ୍ନ ହୋଇପାରେ ଯେ, ଏହି ଅଣ୍ଟା-ନବଙ୍ଗା ଲୋକର କଥା ଓଡ଼ିଆ ସାହିତ୍ୟର କାବ୍ୟସ୍ରଷ୍ଟାମାନଙ୍କ ସଙ୍ଗେ ବିଚାରିତ ହେଉଛି କିପରି ? ଘଟଣା ଏହି ଯେ ଯଦୁମଣି ସାଧାରଣ ବଢ଼େଇ କୁଳରେ ଜନ୍ମ ଗ୍ରହଣକରି ମଧ୍ୟ ଓଡ଼ିଆ ଓ ସଂସ୍କୃତ ଉଭୟରେ ଅତି ବ୍ୟୁତ୍ପନ୍ନ ଲୋକଥିଲେ ଯାହା ଦୃଢ଼ ଭାବରେ ପ୍ରମାଣ କରୁଛି, ସେକାଳରେ ଉତ୍କଳୀୟ ସମାଜରେ ସଂସ୍କୃତର ବ୍ୟାପ୍ତି ଓ ଗଭୀରତା । କୃଷ୍ଣ ଓ ରୁକ୍ମଣୀଙ୍କ ପରିଣୟକୁ ନେଇ ସେ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ନାମକ ଯେଉଁ କାବ୍ୟଗ୍ରନ୍ଥଟି ଛାଡ଼ିଯାଇଛନ୍ତି, ତାହା ତାଙ୍କର ଶବ୍ଦ-ଗଠନ, ଶବ୍ଦ-ଚୟନ ଓ ଛନ୍ଦ ପାଟବର ପରାକାଷ୍ଠା ପ୍ରଦର୍ଶନ କରେ । ବସ୍ତୁତଃ ସେ ଉପେନ୍ଦ୍ରଙ୍କ ଅନୁକରଣ କଲେ ବା କି ହେଲା ଯଦୁମଣି ଏହି କାବ୍ୟଯୋଗେ ଗୁରୁ ଭଞ୍ଜଙ୍କ ଶାବ୍ଦିକ ଚାତୁର୍ଯ୍ୟରେ ବଳି ଯାଇଛନ୍ତି କହିବାକୁ ହେବ । ଭଞ୍ଜଙ୍କ କାବ୍ୟ ଓ ସଙ୍ଗୀତ ପରି ଯଦୁମଣିଙ୍କ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ମଧ୍ୟ ଓଡ଼ିଶାର ପାଲ୍‌ବାଲ୍‌ମାନଙ୍କର ପ୍ରିୟ ଗଣ୍ଠିଧନ । ନିଜର ପାଣ୍ଡିତ୍ୟ, କବିତ୍ୱ ଓ ପ୍ରତ୍ୟୁତ୍ପନ୍ନମତିତ୍ୱ ଯୋଗୁଁ ଯଦୁମଣି ସମସାମୟିକ ବହୁ ସାମନ୍ତରାଜାମାନଙ୍କ ରାଜସଭାରେ ବହୁମାନ୍ୟତା ଲାଭ କରିଥିଲେ ।

[ଜାତୀୟ ସାହିତ୍ୟ ଏକାଡେମୀ ପ୍ରକାଶିତ ଓଡ଼ିଆ ସାହିତ୍ୟର ଇତିହାସ]

ଲେଖକ—**ଡକ୍ଟର ମାୟାଧର ମାନସିଂହ**

# ସୂଚୀପତ୍ର

## ପ୍ରଥମ ଖଣ୍ଡ

| ବିଷୟ | | | ପୃଷ୍ଠା |
|---|---|---|---|
| ରୂପସୀ ଝିଂଟିକମଣି | ... | ୧୩୩ | |
| ❊ ଛଅ କଳା— | ... | ... | ୧୩୪ |
| ପୁରୀ ଏବଂ ଗଜପତି ମୁକୁନ୍ଦଦେବ | ... | ୧୩୪ | |
| ସୁପଣ୍ଡିତା ଦେବଦାସୀ ତିଳୋତ୍ତମା ଓରଫ୍ ଫକିରୀ ମାହାରି | ... | ୧୩୬ | |
| ରାଣୀ କୁମୁଦିନୀ ଓ ରାଜା ବିନାୟକଙ୍କ ବିୟୋଗ | | ୧୩୭ | |
| ଅତି ଦୃଢ଼ତାରୁ ଜାଗିର ଉଚ୍ଛେଦ | ... | ୧୩୮ | |
| ଅନୁଗୁଳର ଶେଷ ରାଜା ସୋମନାଥ ଜଗଦେବ | | ୧୩୯ | |
| ଯଦୁମଣିଙ୍କ ଇନ୍ଦ୍ରଜାଲ ବାକସ | ... | ୧୪୨ | |
| ଦେବତା ଡାକିଲେ 'ଓ' କରନ୍ତି | ... | ୧୪୩ | |
| ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ରଚନା | ... | ୧୪୫ | |
| ଢେଙ୍କାନାଳ ରାଜା ଭଗୀରଥି | ... | ୧୪୫ | |
| ❊ ସାତ କଳା— | ... | ... | ୧୪୭ |
| ନୂଆଗଡ଼ ମେଳି | ... | ୧୪୭ | |
| ନୂଆଗଡ଼ ବନ୍ଦୋବସ୍ତ | ... | ୧୪୯ | |
| ସେକାଳ ସରକାରୀ ଦପ୍ତର ହୁକୁମନାମା | ... | ୧୫୦ | |
| ରଣପୁର ରାଜା ନରେନ୍ଦ୍ର | ... | ୧୫୨ | |
| ❊ ଆଠ କଳା— | ... | ... | ୧୫୪ |
| ଦଶପଲ୍ଲା ରାଜା ଦେଓଭଞ୍ଜ | ... | ୧୫୪ | |
| ବୌଦ୍ଧ ନୃପତି | ... | ୧୫୪ | |
| ଖଣ୍ଡପଡ଼ା ରାଜା ଭ୍ରମରବର | ... | ୧୫୫ | |
| ଖଞ୍ଜଣା ବିୟୋଗ | ... | ୧୫୬ | |
| ବାର୍ଦ୍ଧକ୍ୟରେ ଅସୀମ ଦାରିଦ୍ର୍ୟ ଓ ନଅଙ୍କ ଦୁର୍ଭିକ୍ଷ | | ୧୫୬ | |
| ନରସିଂହପୁରର ଯୁବକ ରାଜା ବ୍ରଜସୁନ୍ଦର | ... | ୧୫୭ | |
| ଦୁର୍ଦ୍ଦାନ୍ତ ପିଣ୍ଡାରୀ ସାନ୍ତ୍ୱନା | ... | ୧୫୯ | |
| ଅସହାୟ ଭାବେ କରାଳ କ୍ଷୁଧାରେ ଅସ୍ଥିରତା | | ୧୫୯ | |
| ରାଜଗୁରୁ ସାନ୍ତାଣୀ | ... | ୧୬୦ | |
| ମହାପ୍ରସ୍ଥାନ | ... | ୧୬୧ | |
| ଅନ୍ତ୍ୟେଷ୍ଟି କୃତ୍ୟ | ... | ୧୬୨ | |
| ଯଦୁମଣି ମହାପାତ୍ରଙ୍କ ବଂଶଲତା | ... | ... | ୧୬୪ |

ବିଷୟ ପୃଷ୍ଠା

# ଦ୍ୱିତୀୟ ଖଣ୍ଡ

ବିଷୟ　　　　　　　　　　　　　　　　　　　　ପୃଷ୍ଠା

| ବିଷୟ | | ପୃଷ୍ଠା |
|---|---|---|

## ଚଉପଦୀ-ମାଳା

### ଭଜନ—



### ଖଞ୍ଜନାଙ୍କ ପ୍ରତି—



### ସାମୟିକୀ—

| ବିଷୟ | | ପୃଷ୍ଠା |
|---|---|---|
| ଷଷ୍ଠ ଛନ୍ଦ | ... | ୫୪୭ |
| ସପ୍ତମ ଛନ୍ଦ | ... | ୫୫୭ |
| ଅଷ୍ଟମ ଛନ୍ଦ | ... | ୫୬୭ |
| ନବମ ଛନ୍ଦ | ... | ୫୭୫ |
| ଦଶମ ଛନ୍ଦ | ... | ୫୮୩ |
| ଏକାଦଶ ଛନ୍ଦ | ... | ୫୮୯ |
| ଦ୍ୱାଦଶ ଛନ୍ଦ | ... | ୫୯୭ |
| ତ୍ରୟୋଦଶ ଛନ୍ଦ | ... | ୬୦୧ |
| ଚତୁର୍ଦ୍ଦଶ ଛନ୍ଦ | ... | ୬୦୭ |
| ପଞ୍ଚଦଶ ଛନ୍ଦ | ... | ୬୧୩ |
| ଷୋଡ଼ଶ ଛନ୍ଦ | ... | ୬୨୩ |
| ଊନବିଂଶ ଛନ୍ଦ | ... | ୬୩୪ |
| ବିଂଶ ଛନ୍ଦ | ... | ୬୪୯ |
| ଏକବିଂଶ ଛନ୍ଦ | ... | ୬୫୯ |
| ଦ୍ୱାବିଂଶ ଛନ୍ଦ | ... | ୬୭୩ |
| ତ୍ରୟୋବିଂଶ ଛନ୍ଦ | ... | ୬୮୫ |
| ଚତୁଃବିଂଶ ଛନ୍ଦ | ... | ୬୯୧ |
| ପଞ୍ଚବିଂଶ ଛନ୍ଦ | ... | ୭୦୧ |
| ଷଟ୍‌ବିଂଶ ଛନ୍ଦ | ... | ୭୧୧ |
| ଏକଚତ୍ୱାରିଂଶ ଛନ୍ଦ | ... | ୭୩୧ |



# ଅବତରଣିକା

ସାଧାରଣତଃ କବି ଏବଂ ଲେଖକମାନଙ୍କ ଜୀବନାଲେଖ୍ୟ ସେମାନଙ୍କ ରଚନା ମଧ୍ୟରେ ଅଙ୍କିତ ହୋଇଥାଏ । କିନ୍ତୁ ଘଟଣାଚକ୍ରରେ ଅନେକ କବିଙ୍କର ଜୀବନଚରିତକୁ ସେ କାଳର ତଥ୍ୟବନ୍ତ ବିଦ୍ୱାନ୍ କେତେଜଣ ଏପରି ଧର୍ମ ଯୁଧିଷ୍ଠିର ଭାବରେ ଚିତ୍ରଣ କରିଅଛନ୍ତି, ଯାହା ପାଠ କଲେ ଉକ୍ତ କବିମାନେ ଯେ କିପରି ଶୃଙ୍ଗାର ରସର କାମୋଦ୍ଦୀପକ କବିତାମାନ ରଚନା କଲେ ତା' ଭାବି ହୁଏ ନାହିଁ । କାଳିଦାସଙ୍କୁ ଯେବେ ଆମେ ଶୁକଦେବ ବୋଲି ଚିତ୍ରଣ କରୁଁ, ତାହା ଅତୀବ ହାସ୍ୟାସ୍ପଦ ହୋଇପଡ଼ିବ । ତେଣୁ କାଳିଦାସ ବେଶ୍ୟାସକ୍ତ ଥିଲେ, ସେ ଲମ୍ପଟ ଥିଲେ, ସେ ରସିକାଗ୍ରଗଣ୍ୟ ଥିଲେ ବୋଲି ଚିତ୍ରଣ କରାଯାଇଛି ।

କବିବର ରାଧାନାଥ ରାୟ ଜଣେ ରସିକ ବ୍ୟକ୍ତି ଥିଲେ ବୋଲି ତାର କ୍ଷୀଣ ସୂଚନା ମଧ୍ୟ ଦିଆଯାଇ ନାହିଁ । ଅଥଚ ତାଙ୍କର କବିତାମାନଙ୍କରେ ଆଦ୍ୟ-ରସର ବ୍ୟଞ୍ଜନା ବିଶେଷ ଭାବରେ ପରିବେଷିତ ହୋଇଛି । ଭଞ୍ଜଙ୍କୁ ମଧ୍ୟ ଋଷିକଳ୍ପ ବୋଲି କେହି କେହି କହିଲେଣି ।

କବିସୂର୍ଯ୍ୟ ବଳଦେବ ରଥଙ୍କର ଜୀବନାଲେଖ୍ୟ ଯେଉଁ ବିଜ୍ଞ ପଣ୍ଡିତ ଲେଖିଲେ ସେ ତାଙ୍କ ନିଜର ଜୀବନାଲେଖ୍ୟକୁ ମିଳାଇ ଦେଖିଲେ ଯେ, କବିସୂର୍ଯ୍ୟ ନିଶ୍ଚୟ ମାଛୁକ ମ କହୁ ନ ଥିବେ କି ପାଣିକୁ ହାତ ବଢ଼ାଇ ନ ଥିବେ । କିନ୍ତୁ ନିଜ ରଚନା ଏବଂ କବିସୂର୍ଯ୍ୟଙ୍କ ରଚନା କେତେ ପୃଥକ୍ ଧରଣର, ତାହା ସେ ବିଚାରିବାକୁ ଭୁଲିଗଲେ । କେହି କେହି କହନ୍ତି, କବିସୂର୍ଯ୍ୟଙ୍କର ଫୁଲ୍ଲ କୋମଳ କବିତାମାନଙ୍କ ସାଥିକୁ ତାଙ୍କର ଜୀବନାଲେଖ୍ୟ ଗୋଟିଏ ଅସଡ଼ ପଥର ପରି ଯୋଡ଼ାଯାଇଛି । 'ମାର୍ଜିତ ରୁଚି', 'ସାହିତ୍ୟ ସେବା ବ୍ରତ' ଓ 'ଆରାଧ୍ୟ ଦେବତାର ଭକ୍ତି' ଦୃଷ୍ଟିରୁ ସେ ଜଣେ ପ୍ରକୃଷ୍ଟ ପ୍ରଣୟବର୍ଣ୍ଣନାକାରୀ ବୋଲି ଅଭିହିତ କରି ତାଙ୍କର ଚରିତ୍ରକୁ ଅତି କମନୀୟ ବୋଲି କହିବାକୁ ଯାଇ ଆମେ ତାଙ୍କୁ କ୍ଲୀବ କରୁ ନାହୁଁ କି ?

**କର କ୍ଷମାରେ, ରତି ପ୍ରତିମା ତୁ କର କ୍ଷମାରେ**
**ନ ଥିଲି ମାକଣା ବୋଲି ମୋତେ ଜଣା ।**

× × × × ×

**ରେ କିଶୋରୀ, ବୁଝିବାର ସିନା ଜାଣୁ**
**ରସ ଜଳଧିରେ ଅବଗାହି ଧୀରେ ତହୁଁ ତ ସାର ନ ଛାଣୁ ।**

ଏହିପରି ଗୀତମାନ କ'ଣ ବିଗ୍ରହରେ ରଚିତ ହୋଇପାରେ ନା କେଉଁ ପ୍ରଭୁର ମନଃତୁଷ୍ଟି ଲାଗି ରଚିତ ହୋଇପାରେ ? ଏଥିରେ ଲେଖକର ଦୈହିକ ଅନୁଭୂତି ସବୁ ଯେ ନାହିଁ ତା କିଏ ବା କିପରି କହିବ ?

ତାଙ୍କର ସମସାମୟିକ କବି ଯଦୁମଣି ମହାପାତ୍ର ଥରେ ପରିହାସରେ ଅତି ଅସଭ୍ୟ ଭାବରେ କହିଥିଲେ ଯେତେବେଳେ କବିସୂର୍ଯ୍ୟ ବଳଦେବ ରଥଙ୍କର ପ୍ରେମିକ ଜୀବନର ଦୁର୍ଦ୍ଦଶାର ସମ୍ବାଦ ଶୁଣି—

**ଭଲି ଗ୍ରହଣା**
**ଖମଣା ଖୋଲରେ ପାଇଲେ ହଣା ।**

ଏହି ଗ୍ରହଣାର ଗ୍ର କୁ ବଦଳାଇଲେ ଅତି ଅସଭ୍ୟ ଶୁଭିବ ଏବଂ ଅଚଳ ହେବା ଲକ୍ଷ୍ୟରେ ବହୁଦିନରୁ ଏହି ପ୍ରବାଦଟିକୁ ଏପରି କୁହା ଯାଉଛି ।

ଯେଉଁସବୁ ଶବ୍ଦ ସମାଜରେ ଅସଭ୍ୟ ବୋଲି ବିବେଚିତ, ଅନେକ ପଣ୍ଡିତ ବ୍ୟକ୍ତି ତାଙ୍କ ଅଭିଧାନରେ ତାହା ଭୁଲରେ ସୁଦ୍ଧା ଦେଇ ନାହାନ୍ତି; ଯେପରି ସେ ଶବ୍ଦମାନ ଓଡ଼ିଆଭାଷାରେ ନାହିଁ । କିନ୍ତୁ ପ୍ରହରାଜଙ୍କ ଭାଷା କୋଷରେ ତାର ଅଭାବ ନାହିଁ । ଯେବେ କବିସୂର୍ଯ୍ୟ ରଥେ ଭୂଜରୀପତ୍ର ଥିଲେ, ତେବେ ଏ ଅସଭ୍ୟ ପ୍ରବଚନ ଆସିଲା କେଉଁଠୁ ?

ଏପରି କ୍ଷେତ୍ରରେ କବି ଏବଂ କବିତା ପ୍ରତି ଦୃଷ୍ଟି ନ ଦେଇ ପ୍ରାଚୀନ କବିମାନଙ୍କୁ ନେଇ ଯେଉଁସବୁ ଜୀବନ କଥା ଲେଖା ହୋଇଛି ତାହାର ପୁନଃ ଲେଖନ କରାଯିବା ଉଚିତ ।

ବର୍ତ୍ତମାନ ସମାଜରେ ଜୀବିତ ଲୋକଙ୍କୁ ଅଭଲ ବୋଲି କହିବା ଯେପରି, ମୃତ୍ୟୁ ପରେ ସେ ସମସ୍ତଙ୍କୁ ଭଲ ବୋଲି କହିବା ସେପରି ଅନୈସର୍ଗିକ ଏବଂ ହାସ୍ୟାସ୍ପଦ ।

ତେଣୁ ଜୀବନଚରିତ ମାଧ୍ୟମରେ, କାବ୍ୟକବିତା ମାଧ୍ୟମରେ ତାର ପ୍ରକୃତ ସତ୍ୟ ଉଦ୍‌ଘାଟନ କରାଯିବା ପ୍ରତି ସଜାଗ ରହିବା ସାହିତ୍ୟିକର ସର୍ବାଗ୍ରେ ମୁଖ୍ୟ କର୍ତ୍ତବ୍ୟ ।

ଯଦୁମଣି ମହାପାତ୍ର ସାଧାରଣ ଜଣେ ବ୍ୟକ୍ତି ଥିଲେ ବୋଲି କହିବା ଅସମୀଚୀନ । କେବଳ ଅଭିଧାନ ମୁଖସ୍ଥ କରି ସେ କାବ୍ୟ କବିତା ଲେଖି ନାହାନ୍ତି । ନାନା ଶାସ୍ତ୍ରଜ୍ଞାନରେ ତାଙ୍କର ପାଣ୍ଡିତ୍ୟ ନିବଦ୍ଧ ଥିବାର ଜଣାଯାଏ । କିନ୍ତୁ ଏକଥା ନିଶ୍ଚିତ ଯେ ସେ ଜଣେ ହାସ୍ୟରସ-ରସିକ କବି ଥିଲେ ।

ଅତି ସୁଖର ବିଷୟ ଯେ କବି ଯଦୁମଣି ମହାପାତ୍ରଙ୍କର ଜୀବନ କଥାର ବହୁଅଂଶ ଜନ ସମାଜରେ ପ୍ରକାଶିତ ହୋଇଯାଇଛି । ସେ କ'ଣ ଥିଲେ, କ'ଣ ନ ଥିଲେ, ସେଥିରୁ ହାବଭାବ ସମ୍ଭାବ୍ୟ ଅସମ୍ଭବ୍ୟ ଘଟଣମାନ ମଧ୍ୟ ପୂର୍ବରୁ ଉଡ଼ିଆସିଛି । ସମଗ୍ର ସମାଜରେ ଯାହା ଚଳି ଆସିଛି, ତାକୁ ଘୋଡ଼େଇଦେବା ବା ଲୁଚେଇଦେବାର ସୁବିଧା ନାହିଁ ।

ପ୍ରତ୍ୟେକ ଜୀବନ କଥା ସତ୍ୟମୂଳକ ହେବା ସମୀଚୀନ । ମହାତ୍ମା ଗାନ୍ଧୀ ତାଙ୍କର ଜୀବନ କଥାକୁ 'ସତ୍ୟର ପରୀକ୍ଷା' ନାମ ଦେଇ ତହିଁରେ କୃତ ସତ୍ୟମାନ ଲିପିବଦ୍ଧ କରି ଯାଇଅଛନ୍ତି । ସେ କେବେ କାମାତୁର ଥାଇ ତାଙ୍କର ପିତାଙ୍କ ମୃତ୍ୟୁ ଜାଣିପାରି ନ ଥିଲେ, କେବେ ସେ ବେଶ୍ୟାଳୟକୁ ଯାଇଥିଲେ, କେବେ ସେ ଅସତ୍ ଚରିତ୍ରା ସ୍ତ୍ରୀ ପ୍ରତି ଖେଳୁ ଖେଳୁ ପ୍ରଲୁବ୍ଧ ଥିଲେ, ତାହା ଲେଖିବାରେ ଭୟ କରି ନାହାନ୍ତି । ଆମର ପଣ୍ଡିତ ଗୋଦାବରୀଶ ନିଜ ଜୀବନ କଥା ନିଜେ ଲେଖି ତାଙ୍କର ଚରିତ୍ର ସ୍ଖଳନକୁ କଦାପି ଘୋଡ଼ାଇ ଦେଇ ନାହାନ୍ତି ।

ଯେବେ କବିସୂର୍ଯ୍ୟ ରଥେ ଲବଣ୍ୟବତୀ-ସମା ଅପରୂପ ରୂପସୀ ଆଠଗଡ଼ ଜେମାଙ୍କଠାରେ ଆସକ୍ତ ଥିଲେ ବା ତାଙ୍କୁ ସେଥିପାଇଁ କଠୋର ଦଣ୍ଡର ସମ୍ମୁଖୀନ ହେବାକୁ ହୋଇଥିଲା, ତାହା ଲୁଚାଇ ଦେବାର ହେତୁ କ'ଣ ? ସେ ସବୁ ଲୁଚାଇ ଦେଲେ କ'ଣ ତାହା କେବେ ଲୁଚିଯିବ ? ବରଂ ତାହା ନିଶ୍ଚୟ ପ୍ରକାଶିତ ହେବ । ସ୍ୱୈରକବି ଗୁର୍ଜର ରାଜଜେମାଙ୍କୁ ପାଠ ପଢ଼ାଉ ପଢ଼ାଉ କାମଶାସ୍ତ୍ରରେ ନିର୍ଜିତ କରି ନିଜ ଆଡ଼କୁ ଟାଣି ଆଣି ଧରାପଡ଼ନ୍ତେ, ଶୂଳଯୋଗ୍ୟ ହୋଇ ଚୌର ପଞ୍ଚାଶିକା ଗାଇଥିଲେ—ମୃତ୍ୟୁ ପୂର୍ବରୁ । ତା' ତ ଭାରତବର୍ଷର ମନସ୍ୱୀ ସମାଜ ଗୋପନ କରି ନାହାନ୍ତି । କିନ୍ତୁ ବଳଦେବ ସେଭଳିପରି ଦୋଷରେ କବିତା ଲେଖି ଦଣ୍ଡ ହେବାକୁ ଦଣ୍ଡିତ ହୋଇ ପୁଣି ଛାଡ଼ପାଇ ପରେ କଠୋର ଦଣ୍ଡରେ ମୃତ୍ୟୁ ବରଣ କରିବା କଥାକୁ ଗୋପନ କରାଯାଉଛି କାହିଁକି ? ଏଥିରେ କ'ଣ ଓଡ଼ିଆ ଜାତିର ଗୌରବ ସୁରକ୍ଷିତ ହେବ ? ଜଣେ କବିର ଜୀବନ କଥା ଜଣେ ନିରାଡ଼ ଅରସିକ ପରି ବର୍ଣ୍ଣନା କରିଦେବାକୁ ଓଡ଼ିଆ ଜାତି କ'ଣ ମହତ୍ତ୍ୱ ବୋଲି ମନେ କରେ ? ଏତଦ୍ଦ୍ୱାରା ପ୍ରତିଭା ଏବଂ ପ୍ରଣୟ ପରି ସୁକୁମାର କଳାକୁ ହତ୍ୟା କରାଯାଉ ନାହିଁ କି ? ଏସବୁ କୁହାଯିବାର ଉଦ୍ଦେଶ୍ୟ ହେଲା, ଯଦୁମଣିଙ୍କର ଜୀବନ ଚରିତ୍ରକୁ ଅମେ ସତ ସତ ଭାବରେ ଯେ ପ୍ରକାଶ କରିବାକୁ ଯାଉଛୁ, ଆମକୁ କେହି ଦୋଷ ନ ଦେଉ ।

ଯଦୁମଣି ମହାପାତ୍ର ରସିକାଗ୍ରଗଣ୍ୟ ଥିଲେ । ଯୋଗକୁ ଅତି ସୁନ୍ଦରୀ ଚତୁରା ସ୍ତ୍ରୀଟିଏ ମଧ୍ୟ ପାଇଥିଲେ । ତାଙ୍କ ସ୍ତ୍ରୀ ତାଙ୍କୁ ଯେତେ ସନ୍ତୋଷ ଦେଲେ ମଧ୍ୟ ସେ ମନେ କରୁଥିଲେ ବାକି ବହୁତ ରହିଯାଉଛି । ବେଶ୍ୟାର ଉଲ୍ଲଙ୍ଗ ପ୍ରେମ ସେହି ରମଣୀଠୁ ପାଇବାକୁ ଲାଳାୟିତ ହୁଅନ୍ତେ, ତହିଁରେ ତାଙ୍କ ସ୍ତ୍ରୀ ଅସ୍ୱୀକୃତ ହୋଇଥିଲେ । ତେଣୁ ଯଦୁମଣି ସ୍ୱୀୟ ସ୍ତ୍ରୀ ପ୍ରତି କ୍ରୁଦ୍ଧ ହୋଇ ଯୌବନରେ ଥରେ ବେଶ୍ୟାଳୟକୁ ଯାଇଥିଲେ । ବେଶ୍ୟା ସ୍ୱୀକୃତ ଥିଲା । କିନ୍ତୁ ଏହି ସାଂଘାତିକ ରସିକଠାରେ କାଳେ ହାରିଯିବ ଏହି ଭୟରେ ସେ କପଟ ରଚନା କରି ଅନ୍ୟ ନାଗର ସହିତ ଅଛି କହି କହି ଫନ୍ଦି ପୁଆଇ ଦେଇଥିଲା । ତେଣୁ ସେ ବ୍ୟଥିତ ହୋଇ ଗୋପନରେ ଫେରିଆସି ନିଜର ରସିକା ଭାର୍ଯ୍ୟା ପାଦତଳେ ପଡ଼ି କ୍ଷମା ମାଗିଥିଲେ । ତାଙ୍କ ହାସ୍ୟରସରେ ଏ ସମ୍ପର୍କରେ ଯେଉଁ କବିତାଟି ଅଛି ତାହା ପଢ଼ିଲେ ତାଙ୍କ ମନୋଭାବ ଜଣାଯାଇ ପାରିବ ।

ଯଦୁମଣି ମହାପାତ୍ରଙ୍କୁ ଏବେ ମଧ୍ୟ ସମଗ୍ର ଉତ୍କଳରେ କେବଳ ଜଣେ ହାସ୍ୟରସିକ କବି ଭାବରେ ଗ୍ରହଣ କରାଯାଉଛି । ସେ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଏବଂ ରାଘବ ବିଳାସ ନାମକ ଦୁଇଟି କାବ୍ୟ ରଚନା କରିବାଦ୍ୱାରା ଯେ ଜଣେ ପ୍ରଖ୍ୟାତ ମହାକବି ଓ ପଣ୍ଡିତ, ଏ ଧାରଣା ସମାଜରେ ଗ୍ରହଣଯୋଗ୍ୟ ହୋଇପାରି ନାହିଁ । ସମସ୍ତେ ତାଙ୍କୁ ହାସ୍ୟରସର ଚମତ୍କାରିତାରେ ଜଣେ ଅଦ୍ୱିତୀୟ ଶିଳ୍ପୀ କହିବାରେ କୁଣ୍ଠିତ ନୁହନ୍ତି; କିନ୍ତୁ ତାଙ୍କର ଅସାଧାରଣ କବିତ୍ୱ ପ୍ରତି ସମ୍ମାନ ବୋଧ ଶିକ୍ଷିତ ସମାଜରେ ମଧ୍ୟ ଆଜିପର୍ଯ୍ୟନ୍ତ ଦେଖାଯାଇ ନାହିଁ । ସେହି ଭୟରେ ସେ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରରେ ଲେଖିଛନ୍ତି—

ଶୂଦ୍ରମୁଖୁଁ ଏ ହୋଇଛି ବାହାର
ରୌଦ୍ରତା ବହି କେହି ନ ବିଚାର
ବଧୂ ବଧୂ ନ୍ତୁଦ ଉଚ୍ଛିଷ୍ଟ କଣା
ଶିବେ କାଳେ ଚନ୍ଦ୍ରଚୂଡ଼ ବାଜଣା ସେ
ପଦ୍ମା-ପତିଙ୍କର ପଦ ଯେ
ସମ୍ଭବ ସମ୍ପଦ ପଦାର୍ଥରେ ବ୍ୟର୍ଥ ଖଣ୍ଡିବାର ଅପବାଦ ଯେ ।

"ଏହି ଗ୍ରନ୍ଥ (ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର) ଜଣେ ଶୂଦ୍ର ବ୍ୟକ୍ତିର ମୁଖରୁ ପ୍ରକାଶିତ ହୋଇଛନ୍ତି ବୋଲି କେହି ଖରାପ ଭାବ ଧରି ବିଚାର କର ନାହିଁ । ଅର୍ଥାତ୍ ଏ ଗ୍ରନ୍ଥର କବି ଜଣେ ଶୂଦ୍ର ବଢ଼େଇ ଜାତିର ଥିବାରୁ ତାଙ୍କ ମୁଖନିଃସୃତ ବାଣୀ ଶୂଦ୍ର ଅଇଣ୍ଠା ମନେକରି କେହି ବ୍ରାହ୍ମଣାଦି ଉଚ୍ଚ ବର୍ଣ୍ଣର ବ୍ୟକ୍ତି କୋପ ବା ଘୃଣା ପ୍ରକାଶ କର ନାହିଁ ।

ପରମ ଆହ୍ଲାଦକ ଚନ୍ଦ୍ରମା ଗୃଣ୍ଡାଳ ଗୃଦ୍ଧର ଉଚ୍ଛିଷ୍ଟ ବୋଲି ଜଣାଗଲେ ଏବଂ ଯେପରି ତାହାକୁ ମଣ୍ଡି ହୋଇ ଅନାଦି ଦେବତା ପରମେଶ୍ୱର ଶିବ, ଚନ୍ଦ୍ରଚୂଡ଼, ଚନ୍ଦ୍ରଶେଖର ନାମରେ ବିଦିତ ହୋଇଅଛନ୍ତି, ସେହିପରି ପଦ୍ମାପତି ଯେ-ମହାନ ଦେବତା ବିଷ୍ଣୁସ୍ୱରୂପୀ କୃଷ୍ଣ ତାଙ୍କ ବିଷୟ ଏ ଗ୍ରନ୍ଥରେ ବର୍ଣ୍ଣିତ ହୋଇଥିବାରୁ ଏହା ସମସ୍ତଙ୍କର ଶିରୋଧାର୍ଯ୍ୟ ହୋଇପାରିବ ।" ଏହିଭଳି ପ୍ରସଙ୍ଗରେ ଅଭିମନ୍ୟୁ ମଧ୍ୟ ଦୃଢ଼ତାର ସହିତ କହି ଅଛନ୍ତି—

"ଅମ୍ବୁ ଯେ ହେଉ ସେ ହେଉ, ଶାଳଗ୍ରାମ ସ୍ନାନେ,
ଅଗ୍ରାହ୍ୟ କାହାର ପାଦୋଦକ ନାମ ଜ୍ଞାନେ ।"

ଏକାନ୍ତ ସୁଖର ବିଷୟ ଯେ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କ ଇତିହାସରେ ପ୍ରାଚୀନ କବିମାନଙ୍କ ତାଳିକାରେ ଯଦୁମଣିଙ୍କ ନାମଟିକୁ ଉଚ୍ଚ ସ୍ଥାନ ଦେଇଅଛନ୍ତି । ଏତଦ୍ ବ୍ୟତୀତ "ପ୍ରାଚୀନ ଉତ୍କଳ" ଲେଖକ ସ୍ୱର୍ଗତ ଜଗବନ୍ଧୁ ସିଂହ ଯଦୁମଣିଙ୍କର ବ୍ୟଙ୍ଗ ସାହିତ୍ୟର ମଧ୍ୟ ଯଥାର୍ଥ ଆଲୋଚନା କରିଅଛନ୍ତି । ଅଧ୍ୟାପକ ବ୍ରଜକିଶୋର ବସୁ ତାଙ୍କ ଲିଖିତ 'ଓଡ଼ିଆ ସାହିତ୍ୟରେ ରଙ୍ଗରସ' ଶୀର୍ଷକ ପ୍ରବନ୍ଧରେ ଯଦୁମଣିଙ୍କ ସମ୍ବନ୍ଧରେ 'ଯଦୁମଣି ରହସ୍ୟ'ମାନଙ୍କ ମଧ୍ୟରୁ କେତେକ ଗ୍ରହଣ କରି ତାଙ୍କୁ ହାସ୍ୟରସର ଅଦ୍ୱିତୀୟ ଶିଳ୍ପୀ ଭାବରେ ବର୍ଣ୍ଣନା କରିଅଛନ୍ତି । ସେ ଲେଖିଛନ୍ତି—'ପ୍ରତ୍ୟୁତ୍ପନ୍ନମତି ଯଦୁମଣିଙ୍କ କବିତାଗୁଚ୍ଛ ଓଡ଼ିଆ ସାହିତ୍ୟର ଶୋଭା ବର୍ଦ୍ଧନକାରୀ ସନ୍ଦେହ ନାହିଁ । କିନ୍ତୁ ସାହିତ୍ୟ ଓ ସାହିତ୍ୟିକ ଲେଖିବାକୁ ଯାଇ ଯଦୁମଣିଙ୍କର କବିପ୍ରତିଭା ପ୍ରତି ଦୃଷ୍ଟି ଦେବାର ସୁଯୋଗ ସେ ମଧ୍ୟ ଲାଭ କରିପାରି ନାହାନ୍ତି । ପୃଥିବୀରେ ଗୋଟିଏ ମାତ୍ର କବିତା ଲେଖି କବି ଅମର ହୋଇଥିବାର ଦୃଷ୍ଟାନ୍ତ ବିରଳ ନୁହେ । ଅଥଚ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ପରି ରସପ୍ରଧାନ, ଅଳଙ୍କାର-ପ୍ରଧାନ, ଭାବ ପ୍ରଧାନ କବିତା ଯଦୁମଣି ଲେଖି ମଧ୍ୟ କାବ୍ୟଲେଖକ କବି ବୋଲି ପ୍ରସିଦ୍ଧି ପାଇପାରି ନାହାନ୍ତି, ଏହା ହିଁ ଦୁଃଖ ।

"କାବ୍ୟଞ୍ଚ ବିଲକ୍ଷଣ ରଚନୋପଲକ୍ଷିତୋ ବିବିଧଗୁଣଗୁମ୍ଫିତୋ ନାନାଳଙ୍କାରମଣ୍ଡିତୋ ରସଭାବାଦିପ୍ରଧାନୋ ବାକ୍ୟବିଶେଷଃ" ତାଙ୍କ କାବ୍ୟରେ ଏଥିରୁ କ'ଣ ବା ଊଣା ଅଛି ?

ଯଥା ସ୍ଥାନରେ ତାଙ୍କ କାବ୍ୟର ମହତ୍ତ୍ୱ ପ୍ରତିପାଦିତ ହେବ । ନିଷ୍ଠୁର ସତ୍ୟର ଉପାସକ, ଜାତୀୟତାର ପୂର୍ଣ୍ଣ ବିଗ୍ରହ, ମାନବ ଭାବରେ ନିଜକୁ ନିରନ୍ତର ପରିଚିତ କରିବାରେ ସୁଦୃଢ଼ ସ୍ୱତନ୍ତ୍ରସ୍ୱରୂପୀ ଏବଂ ଯଦୁମଣି ଅଭିଭାବକହୀନ ପୀଡ଼ିତ ମୂର୍ଚ୍ଛିତ ଦେଶରେ ପଞ୍ଚାଅଶୀ ବର୍ଷ କାଳ ଜୀବନରଥର ଜୟ-ପାନାରେ ସମର୍ଥ ହୋଇଥିଲେ, ତାଙ୍କର ସେ ନିର୍ଭୀକ, ଋଷିକଳ୍ପ ଜୀବନର ପୂଜା ଅମ୍ଭଙ୍କୁ ଯେ କେବେ

କରିବାକୁ ହେବ ତା ଶୁଣି ଦୁଏ ନାହିଁ । ଏହାଠାରୁ ପରିତାପର ବିଷୟ କ'ଣ ହୋଇପାରେ ?

ଯଦୁମଣି ସର୍ବଦା ନ୍ୟାୟ ଓ ନିର୍ଭୀକ ସତ୍ୟର ଉପାସକ ଥିଲେ । ଶକ୍ତିଶାଳୀ ରାଜାଙ୍କର ପ୍ରିୟପାତ୍ର ହୋଇ ମଧ୍ୟ ତାଙ୍କ ଅନ୍ୟାୟରେ ପ୍ରତିକାରସୂଚକ ମନ୍ତବ୍ୟ ଦେବାକୁ କେବେହେଲେ ପଶ୍ଚାତ୍‌ପଦ ହେଉ ନ ଥିଲେ । ନୂଆଗଡ଼ର ରାଜା ବିନାୟକ ସିଂହ ମାନଧାତା ତାଙ୍କୁ ଅତି ଆପଣାର କରିଥିଲେ, କିନ୍ତୁ ରାଜାଙ୍କର ଏକ ଅନ୍ୟାୟ ବ୍ୟବହାରରେ ସେ ଢୋଲ ଭିତରେ ରହି ନିଜକୁ ଲୁଚାଇ ରଖି ଯେପରି ଲୀଳା ଦେଖାଇ ରାଜାଙ୍କର ଗର୍ବଗଞ୍ଜନ କରିଥିଲେ, ସେପରି ଅସୀମ ସାହସିକତା ଅଳ୍ପ ଲୋକଙ୍କଠାରେ ଦେଖାଯାଏ । ରଣପୁର ରାଜାଙ୍କୁ କନ୍ଧ, ଅନ୍ଧ କନ୍ଧ ଗାଳିଦେବା, ଦଶପଲ୍ଲା ରାଜାଙ୍କୁ ପୂଜ୍ୟପୂଜାର ଅନୁପଯୁକ୍ତ ବୋଲି ସହସ୍ର ଜନତା ସମ୍ମୁଖରେ, ଏପରି କି ଦେବତା ସମ୍ମୁଖରେ ବ୍ୟକ୍ତ କରିବା, ବୌଦ୍ଧ ରାଜାଙ୍କୁ କୁତା ବୋଲି ନିର୍ଦ୍ଦେଶ କରିବା, ଢେଙ୍କାନାଳ ରାଜାଙ୍କୁ ଚଣ୍ଡାଳ କେନ୍ଦୁ ମୂଖ ବୋଲି ବର୍ଣ୍ଣନା କରିବା ଏମନ୍ତ କି ଦୁର୍ଦ୍ଧର୍ଷ ନୃପତି ହିନ୍ଦୁଳ ଜଗଦ୍ଦେବଙ୍କୁ ଛତା କାଟିବା ପ୍ରଭୃତି କାର୍ଯ୍ୟରୁ ତାଙ୍କ ନିର୍ଭୀକତା ଓ ସ୍ପଷ୍ଟବାଦିତାର ବହୁ ନିଦର୍ଶନ ମିଳେ ।

୧୮୧୭ ପାଇକ ବିଦ୍ରୋହକୁ ଯଦୁମଣି ସ୍ୱାଗତ କରିଛନ୍ତି । ଦେୱାନ କୃଷ୍ଣଚନ୍ଦ୍ର ଏବଂ ବକ୍‌ସି ଜଗବନ୍ଧୁଙ୍କୁ ଅରଣ୍ୟ ମଧ୍ୟରେ ନିରନ୍ତର ଭେଟି ଜୀବନକୁ ଫାଶିକୁଣ୍ଡରେ ରଖିଦେଇ, ପୁନଶ୍ଚ ନୟାଗଡ଼ ରାଜା ବ୍ରଜବଲ୍ଲଭ ଏବଂ ଲଣ୍ଡୁ କେଣଙ୍କ ଅତ୍ୟାଚାରର ପ୍ରତିକାର ପାଇଁ ସେ ମେଳି ସୃଷ୍ଟି କରିଛନ୍ତି । ଜଣେ ବିଧବାର ଜମି କେହି ଧନୀବ୍ୟକ୍ତି ଅନ୍ୟାୟରେ ନେଇଗଲା, ଯଦୁମଣି ସେଥିପାଇଁ ରାଜକର୍ମଚାରୀ ସହିତ ଲଢ଼ିଅଛନ୍ତି; ଅନାଥ ଶିଶୁ ତାର ସେବାପୂଜାରୁ ବଞ୍ଚିତ ହେବାରୁ ଯଦୁମଣି ତାର ସେବାପୂଜା ଫେରାଇ ଆଣିବାକୁ ନିଜ ସ୍ୱାର୍ଥ ଛାଡ଼ି ଅତ୍ୟାଚାର ମଧ୍ୟ ଭୋଗିଛନ୍ତି । ଏପରି କି ଯାହା ରୋଜଗାର କରିଛନ୍ତି ତାହା ଦୀନ ଦରିଦ୍ର, ବ୍ରାହ୍ମଣ, ବିଧବା, ଅନାଥ ଏବଂ ନିରକ୍ଷମାନଙ୍କୁ ଦେବାରେ ସର୍ବସ୍ୱ ସାରିଦେଇ ଚିର ଦାରିଦ୍ର୍ୟ ବରଣ କରିବାକୁ ପଛଘୁଞ୍ଚା ଦେଇ ନାହାନ୍ତି । ତେଣୁ ସେ ମୃତ୍ୟୁପୁରକୁ ଯାତ୍ରା କଲାବେଳେ ନୂଆଗଡ଼ର ଗ୍ରାମେ ଗ୍ରାମେ ଘରେ ଘରେ ଆର୍ତ୍ତ କୋଳାହଳ ଧ୍ୱନି ଉଠିଛି । ନିରାଶ୍ରୟ ଲୋକ ମାନେ ଭାବୁଥିଲେ ଯେ ଯଦୁମଣି ମହାପାତ୍ର ବସିଛି, କିଏ ମୋର କ'ଣ କରିବ ? ଏକଥା ଏକାନ୍ତ ନିଶ୍ଚିତ ସତ୍ୟ ଯେ ମାନବିକତାର ଜ୍ୱଳନ୍ତ ନିଷ୍ଠା ତାଙ୍କ ପରି କେହି ସେକାଳରେ ଦେଖାଇ ନ ଥିଲେ ।

ଜୀବନର ଅର୍ଦ୍ଧାଂଶ ପର୍ଯ୍ୟନ୍ତ ସେ ଈଶ୍ୱରବିଶ୍ୱାସୀ ନ ଥିଲେ । ତେଣୁ ମୂର୍ତ୍ତିପୂଜା ବିରୁଦ୍ଧରେ ତାଙ୍କର ଉକ୍ତି ଥିଲା—

**କେଉଁଠାରେ ଖଡ଼ୁ ଚଡ଼ୁ କେଉଁଠାରେ ମୁଦ**
**କେଉଁଠାରେ ବୋଲାଉଛି କରୁଣାବାରିଧି ।**

ଏହା ବୋଲି ସେ ଯେ ପୂର୍ଣ୍ଣ ନାସ୍ତିକ ଥିଲେ ତାହା କହିହେବ ନାହିଁ । ସେ ପଶୁଘାତର ଏକାନ୍ତ ବିରୋଧୀ ଥିଲେ । ତେଣୁ ସେ କହିଥିଲେ—

**କର୍କଶ କରି କରେ କଟାରି ଧରି**
**କ୍ରୋଧେ ହଣାଇ ଗଳକନ୍ଧରୁ କରି**
**ଖାଇଣ ମହାମାୟୀ ସନ୍ତୋଷ ହୋଇ**
**ଜନ୍ମ ଜନ୍ମକେ ହଣା ହୋଇବୁ ତୁହି ।**

ପରମାର୍ଥ ଧର୍ମ ପ୍ରତି ସ୍ୱତଃ ଆକୃଷ୍ଟ ହୋଇ ସେ ରାମ ଓ କୃଷ୍ଣ ଉଭୟଙ୍କ ବିଷୟରେ ଦୁଇଟି ସରସ କାବ୍ୟ ଲେଖିଅଛନ୍ତି । ଅବଶ୍ୟ ସେ ଉକ୍ତ ଗ୍ରନ୍ଥ ବର୍ଣ୍ଣନାରେ ଧର୍ମର କୌଣସି ବିଶେଷତ୍ୱ ବର୍ଣ୍ଣନା କରି ନାହାନ୍ତି । କବିତ୍ୱ ଓ ବର୍ଣ୍ଣନାସୌଷ୍ଠବ ହିଁ ତାଙ୍କର ଅଭିପ୍ରେତ ଥିଲା । ତାଙ୍କର ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଗ୍ରନ୍ଥ ବର୍ଣ୍ଣନାରେ ସେ କୃଷ୍ଣଙ୍କୁ ଜଗନ୍ନାଥ ବୋଲି ସମ୍ପୂର୍ଣ୍ଣ ବିଶ୍ୱାସ କରିଥିବାର ଦେଖାଯାଏ । ସେ ପ୍ରତି କଳା ବା ଛାନ୍ଦର ଶେଷରେ ଜଗନ୍ନାଥଙ୍କ ସମ୍ବନ୍ଧରେ ଏହିପରି ବର୍ଣ୍ଣନା କରିଥିବାର ଦେଖାଯାଏ । ଯଥା:—

**ପ୍ରଥମ କଳା:**—ଘୋଷ ଯାତ୍ରାରେ ତିନି ରଥର ଯେଉଁ ୪୨ ଚକ ତାହା ଗୁଣ୍ଡିଚା ବାହୁଡ଼ାରେ ମିଶି ୮୪ ଚକ ହେଉଥିବାରୁ ତାର ଧ୍ୱନିକୁ ଚଉରାଅଶି ଚକ୍ରର ଉତ୍ସବ ବୋଲି ବର୍ଣ୍ଣନା କରିଛନ୍ତି ।

**ଦ୍ୱିତୀୟ କଳା:**—ସ୍ୱୟଂ ଜଗନ୍ନାଥ ରତ୍ନସିଂହାସନ ତ୍ୟାଗ କରି ନନ୍ଦିଘୋଷ ରଥରେ ଚଢ଼ି ରଥଚକ୍ର ଧ୍ୱନିରେ ଆତ୍ମୀୟ ପାପ ନିବାରଣ କରିଥାନ୍ତି ।

**ତୃତୀୟ କଳା:**—ପୁଣି ସେହି ରଥଯାତ୍ରାର ବର୍ଣ୍ଣନା କରି ସେ ମହାପ୍ରଭୁଙ୍କୁ ଦୟାର ସାଗର ଅଟନ୍ତି ଏବଂ ତାଙ୍କ ଆଖି ଦୁଇଟି ଚନ୍ଦ୍ରପ୍ରାୟ ଅଟେ ବୋଲି ଲେଖିଛନ୍ତି ।

**ଚତୁର୍ଥ କଳା:**—ମିଥୁନ ମାସରେ ଯେ ରଥରେ ଭ୍ରମଣ କରନ୍ତି, ଉକ୍ତ ଜଗନ୍ନାଥ ସମସ୍ତଙ୍କ ମୋକ୍ଷଦାତା ଅଟନ୍ତି ବୋଲି ଲେଖିଛନ୍ତି ।

**ପଞ୍ଚମ କଳା:**—ଯେ ଦେବତା ସ୍ନାନ ବେଦୀ, ସନ୍ଧ୍ୟା ବେଦୀ ଏବଂ ରତ୍ନସିଂହାସନରେ ବସି ଭୋଜନ କରୁଥିବାରୁ ସୁଦର୍ଶନ ଚକ୍ର ବାମହସ୍ତରେ ଥାଏ କିନ୍ତୁ ରଥଯାତ୍ରାରେ ସେ ପ୍ରଭୁ ପତିତମାନଙ୍କୁ ଉଦ୍ଧାର କରିବାକୁ ଯାଉଥିବାରୁ ଚକ୍ର ତାଙ୍କର ଦକ୍ଷିଣ ହସ୍ତରେ ଶୋଭାପାଏ ବୋଲି ବର୍ଣ୍ଣନା କରିଛନ୍ତି ।

**ଷଷ୍ଠ କଳା:**—ସ୍ନାନ ବେଦୀରେ ବିଜେ ହେବା ବିଷୟ ବର୍ଣ୍ଣନା ଦେଇଛନ୍ତି ।

**ସପ୍ତମ କଳା:**—ରଥଯାତ୍ରାର ଚତୁର୍ଦ୍ଧାମୂର୍ତ୍ତି ବର୍ଣ୍ଣନା ଦେଇଛନ୍ତି ।

**ଅଷ୍ଟମ କଳା:**—ଲକ୍ଷ୍ମୀ-ନାରାୟଣ ଭେଟରେ ବର୍ଣ୍ଣନା କରିଛନ୍ତି ।

ଯଦୁମଣି ରଥଯାତ୍ରାରେ ଠାକୁରଙ୍କର ଅଣସର କାର୍ଯ୍ୟ ସ୍ୱହସ୍ତରେ କରୁଥିଲେ, ବିଶେଷରେ ସେ ବଡ଼େଇ ଥିବାରୁ ରଥଯାତ୍ରା-ବର୍ଣ୍ଣନାର ମହତ୍ତ୍ୱପୂର୍ଣ୍ଣତା ପ୍ରତି କଳାରେ ଦେଖାଇଅଛନ୍ତି ।

ଜଗନ୍ନାଥଙ୍କ ସମ୍ପର୍କରେ ସେ ନାରଦଙ୍କ ଉକ୍ତିରେ କୃଷ୍ଣଙ୍କୁ ପ୍ରତ୍ୟକ୍ଷ ଜଗନ୍ନାଥ ବୋଲି ସ୍ୱୀକାର କରି ଲେଖିଅଛନ୍ତି —

**ମଞ୍ଜୁଳ ନୀଳ ନିଚୋଳ ଚେଳ ମେଳ କୁଚ ନୀଳାଦ୍ରି ଶଙ୍ଖ ଗୋଳ**
**ଲପନନ୍ତି ଶତଦଳ କମଳ**
**ରତ୍ନ ସିଂହାସନ ଯତନ ଅଧର ମଧୁର ବିଶ୍ରାମସ୍ଥଳ, ହେ ମାଧବ**
**ବିକ୍ରମରେ ରଜିଲେ ନଗଦରେ**
**ବିକ୍ରମରେ ରଜିଲେ ନଗଦରେ**
**ଆଣିବ ତ ତାଙ୍କୁ ହୃଦସ୍ଥ ବାହୁକୁ ମାନବାକୁ ଆଶ୍ଳେଷରେ,**
**ହେ ମାଧବ । ୨୦ ।** (୪ର୍ଥ କଳା)

ଏ ପଦର ଅନ୍ୱୟ ହେଲା—

ହେ ମାଧବ ! (ଯେଉଁ ରୁକ୍ମିଣୀର) ମଞ୍ଜୁଳ ନୀଳ ନିଚୋଳ ଚେଳ ମେଳ କୁଚ ନୀଳାଦ୍ରି (ପ୍ରାପ୍ତ ଅଛି) । (ତାର କଣ୍ଠ) ଗୋଳ ଶଙ୍ଖ (ପ୍ରାପ୍ତ ଅଛି) । (ତା) ଲପନ ତ ଶତଦଳ କମଳ (ପ୍ରାପ୍ତ ଅଛି) । (ତାର) ଯତନ ଅଧର ମଧୁର ବିଶ୍ରାମସ୍ଥଳ (ହେତୁ) ରତ୍ନସିଂହାସନ (ସଦୃଶ ଅଛି) । ହେ ମାଧବ ! ବିକ୍ରମରେ ନଗଦରେ ରଜିଲେ (ତାଙ୍କ) ରଜିଲେ ନଗଦରେ ବିକ୍ରମରେ (ତାଙ୍କ) ହୃଦସ୍ଥ (ତୁମ୍ଭ) ବାହୁକୁ ଆଶ୍ଳେଷରେ ଶୋଭିତ କରିବ ତ ?

ଅର୍ଥ ହେଲା—

ହେ ମାଧବ ! ସେହି ରୂପସୀ ରୁକ୍ମିଣୀଙ୍କର ସୁନ୍ଦର ନୀଳ-ଶାଢ଼ୀ ସାଥିକୁ କାଞ୍ଚୁଲି ଯେଉଁଠି ଏକାଠି ହୋଇଛି ସେହି କୁଚଯୁଗ ତୁମ୍ଭର ନୀଳ ଶୈଳ ପ୍ରାପ୍ତ ଅଛି । ତାଙ୍କର ମୁଖ ତୁମ୍ଭର ଶତଦଳ କମଳାସନ ପରି ଅଛି । ତାଙ୍କର ସୁନ୍ଦର ଅଧର ମିଷ୍ଟତାର ବିଶ୍ରାମସ୍ଥଳ ହେତୁ ତୁମ୍ଭର ରତ୍ନ ସିଂହାସନ ସଦୃଶ ଅଛି ।

ହେ ମାଧବ ! ଜାଣିବ ଯେ ତୁମ୍ଭର ପ୍ରିୟ ବୈକୁଣ୍ଠ ଧାମ, ବିପରୀତ ଭାବରେ ତାଙ୍କଠାରେ ରହିଅଛି । କାରଣ ତୁମ୍ଭର ପ୍ରିୟପୁରୀ ଶଙ୍ଖ ଉପରେ ପର୍ବତ ରହିଛି ବିରାଜିତ, କିନ୍ତୁ ସେହି ଶୋଭାବତୀଙ୍କ କଣ୍ଠରୂପକ ଶଙ୍ଖ କୁଚରୂପୀ ପର୍ବତ ଉପରେ

---

ଶବ୍ଦାର୍ଥ । ନିଚୋଳ—ଶାଢ଼ୀ । ଚେଳ—କାଞ୍ଚୁଲା । ଲପନ—ମୁଖ । ଗୋଳ—ମଣ୍ଡଳାକାର କ୍ଷେତ୍ର, ବର୍ତ୍ତୁଳାକାର ପିଣ୍ଡ । ଯତନ—ସୁନ୍ଦର । ମଧୁ—ଅମୃତ, ମିଷ୍ଟ । ବି—ବିରୁଦ୍ଧ । ନଗ—ପର୍ବତ । ଦରେ—ଶଙ୍ଖରେ । ନଗଦରେ—ନିକଟରେ । ରଜିଲେ—ରଜିବେ, ସମ୍ମତରେ । ମାନବା—ଶୋଭମାନ ହେବା ।

ସ୍ଥାପିତ । ଏତିକି ମାତ୍ର ପ୍ରଭେଦ । ତୁମ୍ଭେ ତାଙ୍କର ସ୍ୱୀକୃତି ଲାଭ କରି, ସାହସର ସହିତ ନିକଟରେ ତାଙ୍କ ହୃଦୟକୁ ତୁମ୍ଭ ବାହୁଦ୍ୱୟର ଆଲିଙ୍ଗନରେ ଶୋଭିତ କରିବ ତ ?

ଏ ପଦକ ପାଠ କରିବା ପରେ ପାଠକମାନେ ଜାଣିପାରିବେ ଯେ କବି ଯଦୁମଣି, କୃଷ୍ଣଙ୍କୁ ଜଗନ୍ନାଥ ବୋଲି କିପରି ସମ୍ପୂର୍ଣ୍ଣ ଧାରଣା କରିଅଛନ୍ତି ।

କେହି କେହି କହିଥାନ୍ତି ଯେ ଜଗନ୍ନାଥ ଅତି ଆଦିମ ମୂର୍ତ୍ତି । ଦୀର୍ଘ ଅତୀତରେ କେଉଁ ଆଦିମ ଯୁଗରେ ଆର୍ଯ୍ୟଜନଙ୍କର ବ୍ରହ୍ମ ଧାରଣା ଆସିବା ବେଳେ ସେ ନିର୍ମିତ ହୋଇଥିଲେ ।

**ଅପାଣିପାଦୋ ଜବନୋ ଗ୍ରହୀତା**
**ପଶ୍ୟତ୍ୟଚକ୍ଷୁଃ ସଶୃଣୋତ୍ୟ କର୍ଣ୍ଣଃ**
**ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା**
**ତମା ହୁରଗ୍ର୍ୟଂ ପୁରୁଷଂ ମହାନ୍ତଂ ।**

'ସେହି ପରମାତ୍ମା ହସ୍ତପଦଶୂନ୍ୟ ହୋଇ ମଧ୍ୟ ବେଗବାନ ଓ ଗ୍ରହୀତା ଅଟନ୍ତି । ସେ ଅଚକ୍ଷୁ ହୋଇ ମଧ୍ୟ ଦର୍ଶନ କରନ୍ତି । ଅକର୍ଣ୍ଣ ହୋଇ ମଧ୍ୟ ଶ୍ରବଣ କରନ୍ତି । ସେ ଜ୍ଞେୟ ବିଷୟ ଜାଣନ୍ତି, କିନ୍ତୁ ତାଙ୍କର ଜ୍ଞାତା କେହି ନାହିଁ । ବ୍ରହ୍ମବାଦିଗଣ ତାହାଙ୍କୁ ଆଦି ଓ ମହାନ ପୁରୁଷ ବୋଲି କୀର୍ତ୍ତନ କରିଥାନ୍ତି ।' ଉପନିଷଦର ଏହି ଆଦି ପୁରୁଷଙ୍କ ବର୍ଣ୍ଣନା ଜଗନ୍ନାଥ ମୂର୍ତ୍ତିରେ ହିଁ ପ୍ରାୟ ପ୍ରକଟିତ ହୁଏ ।

ବାଲ୍ମୀକି ରାମାୟଣ ଉତ୍ତରକାଣ୍ଡ ସ୍ୱର୍ଗାରୋହଣ ଅଧ୍ୟାୟରେ ଲିଖିତ ଅଛି, ରାମଚନ୍ଦ୍ର ବିଭୀଷଣଙ୍କୁ କହିଛନ୍ତି—

**"ଆରାଧୟସ୍ୱ ଜଗନ୍ନାଥମିକ୍ଷାକୁକୁଳଦୈବତଂ**
**ଆରାଧନୀୟ୍ୱ ମନିଶଂ ଦେବୈରପି ସବା ସବୈଃ ।"**

ଜଗନ୍ନାଥଙ୍କୁ ଚିରନ୍ତନ ପରଂବ୍ରହ୍ମ ରୂପେ ଯଦୁମଣି ଆରାଧନା କରିଥିବା ତାଙ୍କ ଗ୍ରନ୍ଥମାନଙ୍କରେ ସୁସ୍ପଷ୍ଟ ହୋଇଛି । ତାଙ୍କ ସମ୍ବନ୍ଧରେ ଏପରି କେତେକ ଧାରଣା ଅଣାଯାଇପାରେ । କାଳକ୍ରମେ ତାଙ୍କ ସମ୍ବନ୍ଧରେ ଆଲୋଚନା ବିସ୍ତୃତରୁ ବିସ୍ତୃତ ନିଶ୍ଚୟ ହେବ ।

ଯଦୁମଣିଙ୍କର କାବ୍ୟ କବିତାଗୁଡ଼ିକୁ ମୁଖ୍ୟତଃ ଚାରି ଭାଗରେ ବିଭାଗ କରାଯାଇପାରେ । ଯଥା—

(୧) ହାସ୍ୟ ରସାତ୍ମକ କବିତାବଳୀ ।
(୨) କାବ୍ୟ, ରାଘବ ବିଳାସ ।
(୩) କାବ୍ୟ, ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ।
(୪) ଚଉପଦୀମାଳା ।

2

**ହାସ୍ୟରସ**—ଯଦୁମଣି ଯଦି ପଞ୍ଚାଅଶୀ ବର୍ଷ ବଞ୍ଚିଥିଲେ ମଧ୍ୟ ତାଙ୍କର ପ୍ରତିଭାମୟ ଜୀବନର ପ୍ରତ୍ୟେକ ଘଟଣା ଲିପିବଦ୍ଧ ହୋଇ ପାରି ନାହିଁ । ତାଙ୍କ ଜୀବନର ଯେଉଁ ଯେଉଁ ଘଟଣାବଳୀ ଜନସମାଜର ହୃଦୟ ସ୍ପର୍ଶ କରିଥିଲା ତାହା କାଳକ୍ରମେ ଗଳ୍ପ ଆକାରରେ ପ୍ରବାଦ ସୂତ୍ରରେ ଗ୍ରାମେ ଗ୍ରାମେ ଘରେ ଘରେ ପ୍ରଚଳିତ ହୋଇ ରହିଅଛି । ଯଦୁମଣିଙ୍କର ହାସ୍ୟରସ ସମ୍ବଳିତ 'ଯଦୁମଣି ରହସ୍ୟ' କେବେ କେଉଁଠି ଓ କିଏ ପ୍ରକାଶ କଲା, ତାହାର ଠିକ୍ ଖବରଣୀ ମିଳେ ନାହିଁ । ଏଥିରେ ଥିବା ହାସ୍ୟରସର ପ୍ରସଙ୍ଗ ଗୁଡ଼ିକ ଯଥାଯଥ ବୋଲି କହି ହେବ ନାହିଁ ।

ଏହି ଗ୍ରନ୍ଥାବଳୀର ସଂଗ୍ରାହକ ବହୁ ଯତ୍ନ କରି ନାନା ସ୍ଥାନରୁ ଶହେ ମାତ୍ର ହାସ୍ୟ ଗଳ୍ପ ସଂଗ୍ରହ କରି ପାରିଛନ୍ତି । ଆଉ କେତେ ଯେ ଲୁପ୍ତ ହେଲା ବା କେଉଁଠି ଅଛି ତାହା ବର୍ତ୍ତମାନ କହି ହେବ ନାହିଁ ।

ଏହି ହାସ୍ୟ ଶତକରେ ଏପରି ଉପାଦେୟତା ପୂରି ରହିଛି, ଯାହା ଯଥାବାଧ୍ୟ ସଂଶୋଧିତ ଓ ସଠିକ ଭାବରେ ସଂଗୃହୀତ କରାଯାଇଛି । ବହୁ ଅପ୍ରାପ୍ୟ ଗଳ୍ପ ମଧ୍ୟ ଏଥିରେ ସଂଯୋଜିତ ହୋଇ ଅଛି । ଏହି ଶତକ ସଂଗ୍ରହରେ ଠାକୁର ମୟୂାଧର ମାନସିଂହ, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ବାଣୀକଣ୍ଠ ନିମାଇଚରଣ ହରିଚନ୍ଦନ ଓ ଯଦୁମଣିଙ୍କ ଜନ୍ମସ୍ଥଳୀ ଇଟାମାଟିର ଶ୍ରୀ ବେଣୁଧର ପୃଷ୍ଟି ପ୍ରଭୃତି କେତୋଟି ସାହାଯ୍ୟ କରିଛନ୍ତି । ତଦ୍ ବ୍ୟତୀତ 'ଯଦୁମଣି ରହସ୍ୟ' 'ଯଦୁମଣି କଥା ରହସ୍ୟ' ବହି ଦୁଇଖଣ୍ଡରୁ କେତେକ ପ୍ରାଥମିକ ଉପାଦାନ ଓ ସନ୍ଧାନ ନିଆଯାଇଛି । ବିଶେଷରେ ହାସ୍ୟ ଶତକରେ ଦିଆଯାଇଥିବା କେତେକ ପ୍ରବାଦର ସଂପୂର୍ଣ୍ଣାଂଶ ଏବଂ ଚଉପଦୀମାନ (ପୂର୍ବ ଗଡ଼ଜାତ) ନରସିଂହପୁର (କଟକ)ର ଘଣ୍ଟପଡ଼ା ନିବାସୀ ଏବଂ ତତ୍ରତ୍ୟ ସାଧୁଚରଣ ସଂସ୍କୃତ ଟୋଲର ଛାତ୍ର ଥିବାବେଳେ ଶ୍ରୀମାନ୍ ନବଘନ ପ୍ରଧାନ ବହୁ କଷ୍ଟ ସହ୍ୟ କରି ଜଣେ ପୁରାତନ ପାଲାକାରର ଏକ ପୋଥିରୁ ସଂଗ୍ରହ କରି ଦେଇଛନ୍ତି ।

ଏ ଓଡ଼ିଆ ପାଲାକାରଙ୍କର ମୃତ୍ୟୁ ପାଖେଇ ଆସୁଥିଲେହେଁ ସେ ତାଙ୍କ ସଂଗୃହୀତ ଚଉପଦୀମାନଙ୍କର ଯେ ଥିଟିର ସନ୍ଧାନ ମଧ୍ୟ କାହାକୁ ଦେଇନାହାନ୍ତି । ସେ ମୃତ୍ୟୁ ପୂର୍ବରୁ ତାହା ବରଂ ନଷ୍ଟ କରିଦେବେ, କାହାକୁ କେବେ ଦେବେ ନାହିଁ, ଏହାହିଁ ତାଙ୍କର ପ୍ରବଳ ବାସନା । ତାଙ୍କର ଯୁକ୍ତି ଯେ—ସେ ପାଲା ଶିକ୍ଷା କରିବା ବେଳେ ତାଙ୍କୁ ସେ କାଳର ଲୋକ କେହି ସାହାଯ୍ୟ କରି ନାହିଁ, ବରଂ ଅପମାନିତ କରିଛନ୍ତି । ତେଣୁ ସେ ଏମନ୍ତ ପ୍ରତିଜ୍ଞା କରିଛନ୍ତି । ଶ୍ରୀମାନ ନବଘନ ତାଙ୍କଠାରୁ ସେ ଲେଖା ମଧ୍ୟ ନ ପାଇ ଅନ୍ୟ ସୂତ୍ରରେ ଅର୍ଥାତ୍ ତାଙ୍କ ବନ୍ଧୁଙ୍କ ଠାରୁ ପୋଥିଟି ଦେଖିବାକୁ ମାଗିଆଣି ଦୁଇଟି ରାତ୍ରରେ ସେମାନ ଲେଖି ପକାଇ ପୁଣି ପୋଥି ଫେରାଇ ଦେଇଛନ୍ତି । ଏହିତ ଏ ଦେଶର ଅବସ୍ଥା !

ଗୋଟିଏ ଦୁଇଟି ନୂତନ ଘଟଣାର ଉଦ୍ଧୃତାଂଶ କୁହାଯାଉଛି । ପାଠକ ପାଠିକା ଏହି ଘଟଣାରୁ ଯଦୁମଣିଙ୍କର କବିତ୍ୱ ଏବଂ ପ୍ରତ୍ୟୁତ୍ପନ୍ନମତିତ୍ୱ କେତେ ଅସାଧାରଣ ଥିଲା, ତାହା ହୃଦୟଙ୍ଗମ କରିପାରିବେ ।

ଢେଙ୍କାନାଳର ରାଜା ଭଗୀରଥି ମହେନ୍ଦ୍ର ବାହାଦୁର ଥରେ ଏକ ପଣ୍ଡିତ ସଭା ତାଙ୍କ ରାଜଧାନୀରେ କରାଇଥିଲେ । ସେଥିରେ ପଣ୍ଡିତମାନଙ୍କୁ ଯୋଗ ଦେବା ସକାଶେ ସେ ଚତୁଃପାର୍ଶ୍ୱ ଗଡ଼ଜାତର ରାଜାମାନଙ୍କୁ ଚିଠି ଲେଖିଥିଲେ । ଫଳରେ ନୟାଗଡ଼ର ତତ୍କାଳୀନ ରାଜା ଚିଠିପାଇ ତାହା ଯଦୁମଣି ମହାପାତ୍ରଙ୍କ ନିକଟକୁ ପଠାଇଥିଲେ ।

ଯଥାସମୟରେ ଯଦୁମଣି ସଭାଦ୍ୱାରରେ ଉପସ୍ଥିତ ହେଲେ । ରାଜା ସଭାଗୃହର ଦ୍ୱାରରେ ସ୍ୱୟଂ ଉପସ୍ଥିତ ରହି ପରିଚୟ ଅନୁସାରେ ପଣ୍ଡିତମାନଙ୍କୁ ଯଥା ସମ୍ମାନ ଅର୍ପଣ କରି ସ୍ୱାଗତ କରୁଥାନ୍ତି । ଯଦୁମଣି ଜଣେ ଶୂଦ୍ର ବଢ଼େଇକୁଳ ସମ୍ଭୂତ ବୋଲି ରାଜା ଜାଣନ୍ତି ଏବଂ ନୂଆଗଡ଼ ରାଜଦରବାରରେ ସେ ଜଣେ କବି ଥିବାର ମଧ୍ୟ ଜାଣନ୍ତି ।

ଯଦୁମଣି କାନରେ କୁଣ୍ଡଳ ଧାରଣ କରି, ସଭା ବାଳରେ ଚୁଟି ପକେଇ, ଉଣପୁଣ ପାଟହୋଡ଼ ପିନ୍ଧି ରାଜଦ୍ୱାରରେ ଉପସ୍ଥିତ ହେଲେ । ବଢ଼େଇକୁ ଏଠାରେ କେଉଁଠି ଆସନ ଦିଆଯିବ କେହି କେହି ବଙ୍କ ପଣ୍ଡିତ ଚର୍ଚ୍ଚା କରିବାକୁ ଲାଗିଲେ । ରାଜା ମଧ୍ୟ ତା ଶୁଣୁଥାନ୍ତି ।

ଏ ଘଟଣାରେ ମହେନ୍ଦ୍ର ବାହାଦୁରଙ୍କର ପରବର୍ତ୍ତୀ ସ୍ତାବକମାନେ କହୁଥାନ୍ତି ଯେ ହାସ୍ୟରସିକ ଯଦୁମଣିଙ୍କର ପ୍ରତ୍ୟୁତ୍ପନ୍ନମତିତ୍ୱ ପରୀକ୍ଷା ଲାଗି ରାଜା ତାଙ୍କୁ ଅପମାନ ସୂଚକ କଥା କହିଥିଲେ । ଏହା ସତ୍ୟ ହୋଇପାରେ । ତେବେ ଘଟଣା ଏଠାରେ ଏପରି ଘଟିଲା ଯେ ସଭାରେ ସମାସୀନ ଶତ ପଣ୍ଡିତଙ୍କ ସମକ୍ଷରେ ରାଜା ଭଗୀରଥି ମହେନ୍ଦ୍ର ବାହାଦୁର ଯଦୁମଣିଙ୍କୁ ଦେଖିବା ମାତ୍ରେ ଉଚିତର୍ଯ୍ୟା ବା ସ୍ୱାଗତ କରିବା ଦୂରେ ଥାଉ ହଠାତ୍ କହି ଉଠିଲେ—

କ୍ୟୋତ୍ରୁ ଏଠାରେ ପାଂଜି ବଢ଼େଇ ? ତୋର ଏଠାରେ କ'ଣ ସ୍ଥାନ ଅଛି । କ୍ୟୋତ୍ରୁ ?

କଠୋର ବ୍ୟଙ୍ଗାର୍ଥରେ ସେ କ୍ୟୋତ୍ରୁ କହନ୍ତେ ପଣ୍ଡିତମାନଙ୍କ ମଧ୍ୟରୁ କେହି କେହି ହସି ଉଠିଲେ । ମନ ଅବିଚଳିତ ଯଦୁମଣି ନିର୍ଭୀକ ସ୍ୱରରେ 'କ୍ୟୋତ୍ରୁ' ଶୁଣିବା ମାତ୍ରେ ସୁଲଳିତ କଣ୍ଠରେ ଗାଇ ଉଠିଲେ—

**ମନାସି କାଳୀ ମନ୍ଦିର ଅହୃତ**
**ଶୋଭୃଗ୍ର ଅଗ୍ରଫଲ ସଙ୍ଗେ ମିତ**
**ଚତୁର ଭଜନରେ ବଲବନ୍ତ**
**ସମାପ୍ତ ଋକ୍ଷ କନ୍ୟାର ବରତ**
**ସେ ଦେବଙ୍କ ଅନୁଗ୍ରହେ**
**ଶ୍ରୀ ଦେଉ ଶ୍ରୀମୁଖେ ବାନ୍ଧି ଦେଇଛନ୍ତି**
**ନବଗ୍ରହୁ ଏକ ଗ୍ରହେ ।**

ଢେଙ୍କାନାଳ ରାଜାଙ୍କର ଇଷ୍ଟଦେବତା ବଳଦେବ ଜୀଉ ଅଟନ୍ତି । ସେ ପୂର୍ବରୁ ଏହା ଚଦନ୍ତ କରି ଜାଣିଥିଲେ । ଏପରି କି ରାଜାଙ୍କର ବଂଶାବଳୀର ମଧ୍ୟ ପରିଚୟ ପାଇ ସାରିଥିଲେ । ତେଣୁ ଏ କବିତାରେ କହିଲେ—

ଯମୁନାରେ ଥିବା କାଳୀ ମନ୍ଦିର କି କାଳୀୟ ସର୍ପର ବାସସ୍ଥଳୀର ଯେ ଅହିତ କରି କାଳନ୍ଦି ଭେଦନ ନାମରେ ବିଖ୍ୟାତ, ବା କାଳୀ ମନ୍ଦିର ଯମୁନାର ବିଚୁଣ୍ଡାଚରଣ କରି ଅର୍ଥାତ୍ ବନ୍ୟାରୋଧନ କରି କୃଷିଭୂମି ଶ୍ୟାମଳ ଶସ୍ୟପୂର୍ଣ୍ଣ କରିଥିଲେ । ଶୋଭାଗ୍ର ଅଗ୍ରରେ ବା ଉଚ୍ଚତମ ଅଂଶରେ ଯେଉଁ ବୃକ୍ଷ ଶୋଭମାପୁ ତାର ଅଗ୍ରରେ ଯେଉଁ ଫଳ ଅର୍ଥାତ୍ ତାଳଫଳ ସଙ୍ଗେ ଯେ ମିତ୍ର ଅର୍ଥାତ୍ "ତାଳାଙ୍କ" ବା ତାଳ ଚିହ୍ନଧାରୀ ଅଟନ୍ତି । ଚତୁର କି ଯେଉଁ ଚତୁର୍ଦ୍ଧାମୂର୍ତ୍ତିକୁ ଅର୍ଥାତ୍ ଜଗନ୍ନାଥ ଆଦି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଭଜନ କରିଯାଏ, ତନ୍ମଧ୍ୟରେ ଯେ ବଳବନ୍ତ ବା ବଳରାମ ଅଟନ୍ତି ପୁନଶ୍ଚ ସମାପ୍ତ ଋକ୍ଷ ବା ନକ୍ଷତ୍ରମାନଙ୍କ ମଧ୍ୟରେ ଶେଷ ନକ୍ଷତ୍ର ରେବତୀ ନାମକ କନ୍ୟାର ଯେ ବର ବା ସ୍ୱାମୀ ଅଟନ୍ତି 'ତ' କି ନିଶ୍ଚୟ ସେହି ଦେବତା ଯେ ବଳଦେବ ଜୀଉ ତାଙ୍କ ଅନୁଗ୍ରହରୁ ଏହି ଶ୍ରୀ ଦେଉ କି ଶ୍ରୀଯୁକ୍ତ ରାଜା ବାହାଦୁରଙ୍କ ଶ୍ରୀ ମୁଖରେ ନବଗ୍ରହରୁ ଗୋଟିଏ ଗ୍ରହ ଯାହାକି ସେ "କେଂତୁ କେଂତୁ" କହିଲେ ଅର୍ଥାତ୍ ଚଣ୍ଡାଳ ବା ଦୂଷିତ ଗ୍ରହ କେତୁକୁ ତହିଁ ବାନ୍ଧି ଦେଇଛନ୍ତି ।

ଏହି ଜଟୀଳ ଅର୍ଥକୁ ଏକାନ୍ତ ସମର୍ଥିବା ଲାଗି ଏପରି ଭାବରେ ଲେଖାଗଲା । ନଚେତ୍ ସାଧାରଣ ଅର୍ଥରେ ହେଲା—

ଯେ ଯମୁନା ନଦୀର ଅହିତ ସାଧନରେ କାଳୀନ୍ଦି-ଭେଦନ ନାମରେ ବିଖ୍ୟାତ, ଯେ ତାଳାଙ୍କ ନାମରେ ତାଳ ସହିତ ମିତ୍ର ଅଟନ୍ତି, ଯେ ଚତୁର୍ଦ୍ଧାମୂର୍ତ୍ତି ମଧ୍ୟରୁ ବଳବନ୍ତ ବଳଭଦ୍ର ଅଟନ୍ତି ପୁନଶ୍ଚ ଯେ ଶେଷ ନକ୍ଷତ୍ର ନାମ ଦଶିଷ୍ଟା ରେବତୀଙ୍କର ସ୍ୱାମୀ ଅଟନ୍ତି, ସେଇ ଇଷ୍ଟଦେବତା ବଳଦେବ ଜୀଉ ତାଙ୍କ ଭକ୍ତ ଏହି ରାଜାଙ୍କ ମୁହଁରେ ଚଣ୍ଡାଳ ଗ୍ରହ କେତୁକୁ ବାନ୍ଧି ଦେଇଛନ୍ତି । ସେଥିପାଇଁ ସେ କେଂତୁ କେଂତୁ ହୋଇ ମୋ ପ୍ରତି ଅଭଦ୍ରତା ଦେଖାଇଛନ୍ତି ।

ସମଗ୍ର ପଣ୍ଡିତ ସମାଜ ସ୍ତମ୍ଭୀଭୂତ ହୋଇ ସ୍ତବ୍ଧ ହୋଇଗଲେ ଏବଂ ରାଜା ଭାଗୀରଥି ମହେନ୍ଦ୍ର ବାହାଦୂର ନିଜର ସମସ୍ତ ଅଭିଜାତ୍ୟ ଦୂରକୁ ଫିଙ୍ଗିଦେଇ କବିଙ୍କ ହାତଧରି କୁଣ୍ଢାଇ ପକାଇଲେ ନେଇ ନିଜର ଦକ୍ଷିଣରେ ନିଜର ଗୁରୁଦେବଙ୍କ ନିକଟରେ ବସାଇ ବହୁ ସମ୍ମାନ ଅର୍ପଣ କରିଥିଲେ ।

ଏଥିରୁ ଯଦୁମଣିଙ୍କର ପାଣ୍ଡିତ୍ୟର ପରାକାଷ୍ଠା ସେତେବେଳେ ମହାନ୍ ସଂସ୍କୃତଜ୍ଞମାନେ ଯେପରି ଅନୁଭବ କରିଥିଲେ ଆଜି ମଧ୍ୟ ବିଜ୍ଞ ସମାଜ ଅନୁଭବ କରିବେ ।

ଯଦୁମଣି କେତୋଟି ନାୟିକା ଅବଶ୍ୟ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ସିଦ୍ଧହସ୍ତତା ଦେଖାଇ ସତ କିନ୍ତୁ ଅଧିକାଂଶ କ୍ଷେତ୍ରରେ ସୁରୂପା ନାରୀକୁ ମଧ୍ୟ ବିଦ୍ରୂପ କରନ୍ତି । ଥରେ ତାଙ୍କର ପ୍ରିୟବନ୍ଧୁ ଜନୈକ ବନାୟକ ନିଜପତ୍ନୀଙ୍କ ସହିତ ସୁଖାସନରେ ବସିଥିବାବେଳେ ପଚାରିଲେ—'ଅଚ୍ଛା ଯଦୁମଣି, ତୁମ୍ଭେ ତ ସମସ୍ତଙ୍କୁ ଏପରି ବିଦ୍ରୂପ କରି କବିତା ଗଢ଼ୁଛ । କାହା ସମ୍ବନ୍ଧରେ ତୁମ୍ଭେ ପାତକ ଅନ୍ତର କରୁନାହଁ ବୋଲି କହୁଛ । ଅଚ୍ଛା ତୁମ୍ଭ ସ୍ତ୍ରୀ କପରି ଓ ନାମ କଣ ତାହା ଠିକଏ କହନ୍ତ ନାହିଁ ? ଯଦୁମଣି ତୁରନ୍ତ ଗାଇଲେ—

ଖଚର ଗତି ସାର ନିବର୍ଣ୍ଣରେ
ହେବ ବଦ୍ଧତ ତାର ସେ ନାମରେ
ଅଶୋକେ ବୈଦେହୀ ଧୃତି ସମରେ
ଉଦ୍‌ବେଗ ଥାଏ ମୋ ମନ କାମରେ
ବୋଲେ କମିତ ଖଞ୍ଜନାରେ
ଶ୍ରୀପତି କତରେ ଯତି ନିକରଙ୍କୁ
ପଡ଼ିଲେ ତା କାନ୍ତି ଅନାରେ ।

ପଦଟିର ଅନ୍ୱୟ ହେଲା—

ତାର ସେ ନାମରେ ଗତିସାର ଖ-ଚର ନିବର୍ଣ୍ଣରେ ବଦ୍ଧତ ହେବ । ସେ ଖଞ୍ଜନାରେ ବୋଲେ କମିତ ? ମୋ ମନ କାମରେ ଉଦ୍‌ବେଗ ଥାଏ (କିନ୍ତୁ ସେ) ଧୃତି ସମରେ ଅଶୋକେ ବୈଦେହୀ (ସମ ଅଟେ) ଏବଂ ଶ୍ରୀପତି କତିରେ ଯତି ନିକରଙ୍କୁ (ଥୋଇ ଦେଲେ) ତା କାନ୍ତି ପଡ଼ିଲେ ଅନାରେ । ଅର୍ଥାତ—ତା ନାଁ ତିନିରେ ସୁନ୍ଦର (ଗମନଂ କୁର୍ବନ୍ତି ରାଜହଂସ ଖଂଜନ ଗଂଜନଂ) (ଖ-ଆକାଶ-ଚର) ଗୋଟିଏ ପକ୍ଷୀର ନାମ ତିନୋଟି ବର୍ଣ୍ଣରେ ପ୍ରସିଦ୍ଧ ଅଟେ । ଅର୍ଥାତ୍ 'ଖଂଜନା' । ଶୁଣ ସେ ଖଂଜନା, କହୁଛୁ କପରି ଅଟେ ? ମୋର ମନ କାମ ଲାଳସାରେ ଯେତେ ଅଧୀର ଥାଏ, କିନ୍ତୁ ସେ ଅଶୋକ କାନନର ବନ୍ଦିନୀ ଜନକବତ୍ସା ସୀତାଙ୍କ ପରି ଏକାନ୍ତ ଧୈର୍ଯ୍ୟଶାଳୀ ଏବଂ ଆତ୍ମସଂଯମରେ ନିପୁଣା । ବିଂଶେଷରେ ବିଷ୍ଣୁଙ୍କ ସମ୍ମୁଖରେ ତାଙ୍କର ପରମ ଭକ୍ତ

ଛନ୍ଦମାନେ ଥାଇ ମଧ୍ୟ ଯେବେ ତା ସୌନ୍ଦର୍ଯ୍ୟ ସେମାନଙ୍କ ଆଖିରେ ପଡ଼ିଯିବ, ସେମାନେ ନିଶ୍ଚୟ ତାକୁ ଜନାଇଁ ଦେବେ । କେବେ ଚମ୍ପୂ'ର ରସ ପାଇବେ ନାହିଁ ।

ଏ ପୁସ୍ତକର ଟୀକା ବାହାର କରିବାକୁ ବହୁ ଶ୍ରମ ସ୍ୱୀକାର କରିବାକୁ ହୋଇଛି ।

ଏହି ହାସ୍ୟରଚନା ଯେତେବେଳେ ପ୍ରଚଳିତ ଥିଲା ତାହା ମଧ୍ୟ ଯୁକ୍ତଯୁକ୍ତ ଏବଂ ପ୍ରମାଦବର୍ଜ୍ଜିତ ନ ଥାଇ ଚଳି ଆସୁଥିଲା । ଅନେକର ଅର୍ଥ ମଧ୍ୟ ଜଣା ନ ଥାଇ ପ୍ରବାଦମୂଳକ ଭାବରେ ଚଳିଆସୁଥିଲା ।

ଯେପରି ସେ ଅମୂଳ ଦର୍ପଣି ଜଣକୁ ମାଗିଥିଲେ ଏହାଗାଇ—

**ଅଚ୍ୟୁତ ଖଣ୍ଡା ଚ୍ୟୁତ ହୋଇଥିବ**
**ଆନନ୍ଦମୂଳକ ଦ୍ୱିଖଣ୍ଡ ହେବ ।**

କିନ୍ତୁ ଏହାର ଅର୍ଥ ଜାଣିବାକୁ କେହି ଚେଷ୍ଟିତ ନ ଥିଲେ । ଅଚ୍ୟୁତ କ କୃଷ୍ଣଙ୍କ ଖଣ୍ଡାର ନାମ "ନନ୍ଦକ" ତାହା ଚ୍ୟୁତ ହୋଇଥିବ ଅର୍ଥାତ୍ ନ ଥିବ ଅର୍ଥାତ୍ ଆନନ୍ଦ ମୂଳକ ହେଉ 'ନନ୍ଦକ' କହିଲେ ଅମୂଳ ହେଉଛି । ଅମୂଳରୁ ଅମୂଲ ହୋଇଛି । ତେଣୁ ସେ ଅମୂଳ ବା ଅମୂଲ ଦୁଇଖଣ୍ଡ ମାଗିଛନ୍ତି ।

ବହୁ ଅସତ ପାଠ ବହୁ କଷ୍ଟରେ ବହୁବ୍ୟକ୍ତିଙ୍କ ସମ୍ପର୍କରେ ଆସିବାରୁ ସଂଶୋଧିତ କରାଯାଇଛି ।

ଏହି ହାସ୍ୟରଚନାରେ କେତେକ ପଦ୍ୟାଂଶ ଅଶ୍ଳୀଳ ବୀଭତ୍ସ ଭାବରେ ରହିଛି, ଯାହା ଲେଖି ନ ଆସିବାକୁ ମୋତେ କେହି କେହି ବାଧ୍ୟ କରିଛନ୍ତି । କିନ୍ତୁ ପୁରୀ କୋଣାର୍କ ଆଦି ମନ୍ଦିର ଗାତରେ ଉଲ୍ଲଙ୍ଗ ଯୌନଚିତ୍ର ଧର୍ମ ମନ୍ଦିରରେ ସ୍ଥାନ ପାଇବା ଯେପରି ନାନାମତ ପ୍ରକାଶିତ ହେଉଛି, ଏ କ୍ଷେତ୍ରରେ ସେପରି ନାନା ମୁନି ନାନା ମତ ଦେବେ । ମହାଭାରତରେ ବ୍ୟାସ ରୂପୋତ୍ତମା ବିଶ୍ୱସୁନ୍ଦରୀ କୃଷ୍ଣାଙ୍କୁ ବିବସନ କରାଇ ତାଙ୍କ ସମକ୍ଷରେ ମହାନ୍ ରାଜଦରବାର ଯେଉଁଠି ବୟସ୍କ ଗୁରୁଜନ ପିତୃପିତାମହ, ଋଷି, ସନ୍ଥ ଶ୍ରେଣିମାନେ ଆସନରେ ଅଛନ୍ତି, ସେଇଠି ଦୁର୍ଯ୍ୟୋଧନର ଉଲ୍ଲଙ୍ଗ ଉରୁ ବର୍ଣ୍ଣନା ସହିତ ଦେଖାଇବାରେ କୃପଣ ହୋଇନାହାନ୍ତି । ଦୁର୍ଯ୍ୟୋଧନ କୃଷ୍ଣାଙ୍କୁ ହାତଠାରି ତାହା ଦେଖାଇଛି ଏବଂ ଉକ୍ତ ଉରୁ ଭଗ୍ନ କରିବାକୁ ଭୀମ ମଧ୍ୟ ପ୍ରତିଜ୍ଞା କରିଛନ୍ତି । ବହୁ ଉଦାହରଣ ନିଷ୍ପ୍ରୟୋଜନ । ତେଣୁ ଯଦୁମଣି ଯେଉଁ ସମୟରେ ସେ ସବୁ ପ୍ରୟୋଗ କରିଥିଲେ, ଆମକୁ ସେହି ସମୟକୁ ଯିବାକୁ ହେବ । ନଚେତ୍ ପୁରୀର ଅତୀତ ଜାତୀୟ କଂଗ୍ରେସ ସଭା ହେବ ବୋଲି ଯୌନଚିତ୍ରଯୁକ୍ତ ପଥରଗୁଡ଼ିକ ମନ୍ଦିର ଗାତରେ କନାଗୁଡ଼ାଇ ଲୁଚାଇଦେବା ଆସିଥିବା ପ୍ରସ୍ତାବ ପରେ ଯେପରି ହାସ୍ୟାସ୍ପଦ ହୋଇଥିଲା ଏହା ନିଶ୍ଚୟ କେବେ କଏ ସମାଲୋଚନା

କରିବେ । ସଭ୍ୟତା ଅସଭ୍ୟତା ଯେଉଁ ଯେ ଦ୍ୱନ୍ଦ୍ୱ ସୃଜିଛି, ତାହା ସାମୟିକ ମାତ୍ର । ଭଞ୍ଜ କବିତାରେ ନବୀନ ବ୍ରାହ୍ମ ବିଶ୍ୱନାଥ କରଙ୍କ ନାସାକୁଞ୍ଚନ ଏବେ କଳଙ୍କଗୌରଙ୍କ ଯୋଗୁଁ କୁଆଡ଼େ ଉଭେଇ ଗଲାକି ?

ଏହି ହାସ୍ୟଶତକ ପାଠକଲେ କବିଙ୍କର ଜୀବନକଥା ଆଂଶିକ ଜଣାପିବ । ହେଲେହେଁ ଏହା ସମ୍ପୂର୍ଣ୍ଣ ଜୀବନାଲେଖ୍ୟ ନୁହେଁ । ତେଣୁ ତାଙ୍କର ସ୍ୱତନ୍ତ୍ର ଜୀବନ-ଚରିତ ଲେଖା ଯାଇଛି । ଅନେକ କ୍ଷେତ୍ରରେ ଏକା କଥା ଦୁଇଥର ପାଠକମାନଙ୍କୁ ପଢ଼ିବାକୁ ହେବ । ତାହା ଅନ୍ୟଥା କରିବାର ଉପାୟ ନାହିଁ । କାରଣ ଜୀବନଚରିତ ହିଁ ହାସ୍ୟଶତକର ରୂପାନ୍ତର ।

ନିଜର ଦାରିଦ୍ର୍ୟକୁ କବି କେବେ ଗୁପ୍ତକରି ନାହାନ୍ତି । କାରଣ ଠାଏ ସେ କହିଛନ୍ତି—

**ମଣିମା ମୋହର କରମଗାରେ**
**ସ୍ନେହ ନଛାଡ଼ିଲା କର ମଗାରେ ।**

ହେ ରାଜା ! ମୋର ଭାଗ୍ୟ ଲେଖାରେ ମୋର ହସ୍ତ ମାଗିବାରେ ସ୍ନେହ ତ୍ୟାଗ କରିପାରୁ ନାହିଁ । ଅଥଚ ପାଣ୍ଡିତ୍ୟ ଯେଉଁ ସ୍ଥାନେ ସେ ଗର୍ବିତ ହୋଇ କହିଛନ୍ତି—

**ହୟଗ୍ରୀବ ମହାପ୍ରଭୁ ପ୍ରତାପେ**
**ଥୋଡ଼ା ନୁହେଁ ଲୋଡ଼ା କରନ୍ତି ନୃପେ**
**ଯୋଡ଼ା ହୋଇ ମୋ ପ୍ରୌଢ଼ା କବିତାକୁ**
**ବଳି ବଳି ରସ ଦାନୀ କର୍ଣ୍ଣିକୁ**
**ଭଲେ ଭଲ ଖଣ୍ଡେ ଖଣ୍ଡ ଯେ**
**ନବ ଦୂ ବାଦଲ ଶ୍ୟାମଳ କୃପାରୁ**
**ମୋ ନାମ ଉତ୍କଳ ଘଣ୍ଟ ଯେ ।**

ଘଣ୍ଟ ଧ୍ୱନିରେ ଦୁନିଆ ଚମକିତ ହୁଏ । ମୁଁ ସେପରି ଉତ୍କଳର ଘଣ୍ଟ ପରି ଅଟେ । ନବଦୂର୍ବାଦଳ ଶ୍ୟାମଳ ବର୍ଣ୍ଣ ବିଶିଷ୍ଟ ହୟଗ୍ରୀବ (ବିଷ୍ଣୁ) ମହାପ୍ରଭୁଙ୍କ ପ୍ରତାପରୁ ମୋର ଯୋଡ଼ାହେବା ବିନିଷ୍ଟ କବିତାମାନ ସାଧାରଣ ଲୋକ ବୁଝନ୍ତି ରାଜାମାନେ ଅଧିକ ଆଦର ଦେଇଥାନ୍ତି । କାରଣ ମୋ କବିତାମାନ କାନକୁ ବଳି ବଳି ରସଦାନ କରିଥାଏ । କିନ୍ତୁ ଏତିକି କଥା ଯେ ମୁଁ ଭଲଠାରେ ଭଲ ଏବଂ ଖଣ୍ଡ ପାଖରେ ଖଣ୍ଡ ଅଟେ ।

ଥରେ ପ୍ରଭୁଙ୍କର ଗଜପତି ମୁକୁନ୍ଦଦେବଙ୍କୁ ସେ ଅରୁଣ ଖମ୍ବଠାରେ ସହସ୍ର ଜନତା ମଧ୍ୟରେ ଭେଟିଲେ । (୧। ୧। ତାରିଖ ବାନ୍ଦ୍ରୋହର ଦୁଇ ବର୍ଷ ଆଗରୁ) ମହାରାଜା ପଚାରିଥିଲେ "ମହାପାତ୍ରେ କ'ଣ ଇଚ୍ଛା ?" ଯଦୁମଣିଙ୍କୁ ପୂର୍ବରୁ ସେ ଥରେ ଚିହ୍ନିଥିଲେ ।

ଯଦୁମଣି ସହସ୍ର ଜନତାଙ୍କ ଆଗରେ କହିଲେ—

**ଧନୁମାସ ହେଲା ହନୁ ନ ଚଳିଲା କହିବାକୁ ବଡ଼ଲାଜ**
**ମୁଁ ଆଁ କରିଅଛି ମୁଆଁ ଖାଇବାକୁ**
**ଦେବା ହେଉ ମହାରାଜ ।**

ସାଧାରଣ ଅର୍ଥ ସମସ୍ତେ ଜାଣିଲେ ଯଦୁମଣି ଧନୁମୁଆଁ ଦିଅନ୍ତା ଖାଇବାକୁ ମାଗିଲେ । କିନ୍ତୁ ସେ ପ୍ରକୃତରେ କହିଲେ—

ହେ ମହାରାଜ ! ତୁମର ଧନୁ ମାସ ହେଲା କି ମଷାଏ ଓଜନର ଦୁର୍ବଳ ହେଲା । ହନୁ କି ଅସ୍ତ୍ର ନ ଚଳିଲା । ଏ କଥା କହିବାକୁ ବଡ଼ ଲଜ୍ଜା ଲାଗୁଛି । ମୁଁ-କି ମୁଚଫର୍କା (ବାଜେ କିଏ ନାଁ କିଏ ?) ତା ଅଧିକାର ଆଁ-କି ବସ୍ତୃତ କରି ଚାଲିଛି । ତାଙ୍କୁ ମୁଆ-ମୁଆଫି-ମାଫି ଖାଇବାକୁ 'ଦେବା' କି ବନ୍ଦ କରିବା ହେଉ ।

ବାଲିଭୂମି ଜଙ୍ଗଲର ଯୁଦ୍ଧାସ୍ତ୍ର ଏକାବେଳେ ଅଚଳ ହୋଇଗଲା । ଇଂରେଜ ନାମରେ କିଏ ନାଁ କିଏ ଆସି ରାଜ୍ୟ ବିସ୍ତାର କରୁଛି । ମାଫିରେ ମିଳିଥିବାରେ ରାଷ୍ଟ୍ର ଦଖଲ କରି ନେଉଛି । ଆପଣ ତାର ଏ ପ୍ରଭାବ ବନ୍ଦ କରନ୍ତୁ । ଏ ଅର୍ଥଟି ନୟାଗଡ଼ ବାଉଁଶି ଆପଡ଼ାର ଜଣେ ବାଣକାର ମାର୍କଣ୍ଡ ରାୟଗୁରୁ ଥରେ କହିଥିଲେ । ସେ ୧୭ ବର୍ଷରେ ଏବେ ତିନି ବର୍ଷ ତଳେ ମୃତ୍ୟୁ ଲଭିଛନ୍ତି । ଯଦୁମଣିଙ୍କ ମୃତ୍ୟୁ ସମୟରେ ତାଙ୍କ ବୟସ ଥିଲା ୧୭ ବର୍ଷ ମଧ୍ୟରେ । ସେ ତାଙ୍କ ପିତାଙ୍କଠାରୁ ଯଦୁମଣି ମହାପାତ୍ରଙ୍କର ବହୁକଥା ଶୁଣିଥିଲେ । ସେ କହନ୍ତି ନୂଆଗଡ଼ ରାଜ୍ୟରେ ଯଦୁମଣି ମରିବା ପରେ ପଚାଶ ବର୍ଷ ଧରି ଲୋକେ ତାଙ୍କୁ ସ୍ମରଣ କରି ଚାଲିଥିଲେ । ରାୟଗୁରୁ ନିଜେ ମଧ୍ୟ ଜଣେ କବି ଥିଲେ । ସେ ଆରବି, ଉର୍ଦ୍ଦୁ ଭାଷା ମିଶାଇ କବିତା ଗାଉଥିଲେ । ସେ କହୁଥିଲେ ଆରବି ଲବ୍‌ଜକୁ ସେକାଳେ ରାଜଦରବାରରେ ଅଧିକ ମର୍ଯ୍ୟାଦା ଦିଆଯାଉଥିଲା । ଏ କବିତାରେ ମୁଁ ମୁଚଫର୍କା, ମୁଆଫି ପ୍ରଭୃତି ଶବ୍ଦ ତାଙ୍କର ସୁନ୍ଦର ଧାରଣା ରହିଥିଲା । ବିଶେଷରେ ଅନେକ ସମୟରେ ଯେତେବେଳେ ମୁଣ୍ଡକାଟ ଶାସ୍ତି ଦଣ୍ଡକେ ଥିଆ, ସେତେବେଳେ ଯଦୁମଣିଙ୍କର ପ୍ରତ୍ୟୁତ୍ପନ୍ନମତିତ୍ୱ ସହିତ ସାହସିକତା ଦେଖିଲେ ସ୍ତମ୍ଭିତ ହେବାକୁ ହୁଏ । ବିନାୟକ ସିଂହ ମାନଧାତା କହିଲେ – ଯଦୁମଣି ଆସ ତୋଟାକୁ ଯିବା ଅର୍ଥାତ୍ ଶ୍ଳେଷରେ ତୋ ମୁଣ୍ଡ କାଟିବାକୁ ଯିବା । ଯଦୁମଣି କହିଲେ ଆଜ୍ଞା ! ମୁଁ ତୋ ରାଣୀ ସାରି ଆସେ । ଅର୍ଥାତ୍ ଶ୍ଳେଷରେ ତୋ ରାଣୀ ପାଖରୁ ସାରି କରି ଆସେ । ସେଥିକି ନୁହେଁ ରାଜା କହିଲେ—ତୁ ଯଦୁମଣି କୁକୁର । ଏହା ତାଙ୍କୁ ହସାଇବା ଲକ୍ଷରେ ରାଜା ନିଜ କୁଟୁମ୍ବର ହାସ୍ୟରୋଳ ମଧ୍ୟରେ କହନ୍ତେ, ଯଦୁମଣି ତୁରନ୍ତ କହିଲେ—ତୁମ୍ଭେ ଭୁଲଯାଇଛ ।

କୁକୁର ତୁଳସୀଗଛରେ ନିଶ୍ଚୟ ମୂତିଥାଏ । ରାଜା ଲଜ୍ଜିତ ହେଲେ ଏବଂ ରାଣୀ ଓ ପରିଷଦଏ ମଧ୍ୟ ଏ ଜବାବରେ ଚମକି ପଡ଼ିଲେ । ପୁଣି ରାଜା କହିଲେ "ଯଦୁମଣି, ସ୍ୱପ୍ନରେ ଦେଖିଲି ତୁମ ଦେହସାରା ବିଷ୍ଠା ବୋଳା ହୋଇଛି । ତାହା ଶୁଣି ପୁଣି ନାସ୍ତିଦଳ ହସିଉଠିଲେ । ଯଦୁମଣି ହସ ବନ୍ଦ କରିଦେଲେ ପଦେ କଥାରେ । "ଆଜ୍ଞା ! ମୁଁ ମଧ୍ୟ ସ୍ୱପ୍ନରେ ଦେଖିଲି, ତୁମ୍ଭଙ୍କ ଦେହରେ ମହାପ୍ରସାଦ ବୋଳା ହୋଇଛି । ମୁଁ ତୁମ୍ଭଙ୍କ ଶ୍ରୀଅଙ୍ଗ ଚାଟୁଛି, ତୁମ୍ଭେ ମୋ ଦେହ ଚାଟୁଛନ୍ତି ।" ଏପରି ଭାବରେ ଭାଷାରେ ମର୍ଯ୍ୟାଦା ଦେଇ ମଧ୍ୟ ଲଜ୍ଜିତ କରିବାର ଉତ୍ତର କିଏ ଦେଇଛି, ତାହା ସାଧାରଣତଃ ଶୁଣା ନାହିଁକି ଜଣା ନାହିଁ ।

ପାଠକମାନେ ଏହି ଗ୍ରନ୍ଥାବଳୀରେ ଦିଆଯାଇଥିବା ହାସ୍ୟଶତକ ଅଧ୍ୟୟନ କଲେ ସେ ସବୁରେ କବି ଯଦୁମଣିଙ୍କର ଅପୂର୍ବ ବୁଦ୍ଧିର ପରାକାଷ୍ଠା ଏବଂ ଲୀଳା ଦେଖି ନିଶ୍ଚୟ କହିବେ—ଏପରି କବିତା ବାସ୍ତବିକ କ୍ୱଚିତ୍ ଦେଖାଯାଇଥାଏ ।

ଏହି ରଙ୍ଗରହସ୍ୟ ସମ୍ବନ୍ଧରେ ସ୍ୱନାମଧନ୍ୟ ଲେଖକ ଏବଂ ଅଧ୍ୟାପକ ଶ୍ରୀଯୁକ୍ତ ରାଜକିଶୋର ରାୟ ଏକ ନିବନ୍ଧରେ ଯାହା ଲେଖିଅଛନ୍ତି ତାହା ଅତ୍ୟନ୍ତ ଆନନ୍ଦର ସହିତ ଏଠାରେ ଉଦ୍ଧାର କରାଯାଉଛି । କାରଣ ବର୍ତ୍ତମାନ ଯୁଗର ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ମଧ୍ୟରେ ଯଦୁମଣିଙ୍କର ପ୍ରତିଭା ପ୍ରତି କିପରି ସମ୍ମାନ ରହିଛି ତାହା ସେଥିରୁ ଅବଧାରଣା କରାଯାଇପାରିବ । ସେ ଲେଖିଛନ୍ତି—

"ଯଦୁମଣି ବୁଦ୍ଧିର ଚମତ୍କାରିତା ସହିତ ହାସ୍ୟରସ ପରିବେଷଣ କରିବାରେ ଏକ ଅଦ୍ୱିତୀୟ ଶିଳ୍ପୀ । ଯଦୁମଣିଙ୍କର ବ୍ୟଙ୍ଗ ରହସ୍ୟ ଓଡ଼ିଶାର ପୁର-ପଲ୍ଲୀରେ ପରିଚିତ ଓ ସମାଦୃତ । "ଯଦୁମଣି ରହସ୍ୟ" ଓଡ଼ିଶାର ଏକ ପ୍ରବାଦ ସୂତ୍ରରେ ଅତି ରୋମାଞ୍ଚକର ସାହିତ୍ୟ ରୂପେ ଗଣ୍ୟ ହୋଇଆସିଛି ।

"କବିଙ୍କୁ ଆଘାତ କରି କେହି କେବେ ଉଦ୍ଧାର ପାଉ ନ ଥିଲେ । ବାକ୍ୟ-ବାଣରେ ଏବଂ ତାହା କବିତାରେ ଏପରି ଯୋଜିତ ହେଉଥିଲା ଯେ, ବିଚକ୍ଷଣ ବୁଦ୍ଧିମାନ୍ ଲୋକ ମଧ୍ୟ ତାଙ୍କର ଚାବୁକ ଆଘାତରେ ମ୍ରିୟମାଣ ହୋଇ ଯାଉଥିଲେ । କବି ରାଜଦରବାରରେ ଆତିଥ୍ୟ ଗ୍ରହଣ କରୁଥିଲେ, ଓଡ଼ିଶାର ରାଜା-ରାଜୁଡ଼ା ତାଙ୍କୁ ସମ୍ମାନ ଦେଉଥିଲେ; କିନ୍ତୁ କେଉଁଠି ତ୍ରୁଟି ରହି ଯାଉଥିଲେ ଯଦୁମଣି ହାସ୍ୟମୟ କବିତା ରଚନା କରି ତାହା ଶୋଧନ କରି ଦେଉଥିଲେ ।

"ଯଦୁମଣି ଥରେ ଦଶପଲ୍ଲା ଯାଇଥିଲେ । ସେଠାରେ ରାଜା ଯଦୁମଣିଙ୍କୁ ଅନାଦର କରିବାରେ ସେ ବଡ଼ ବ୍ୟଥିତ ହୋଇଥିଲେ । ସେହି ସମୟରେ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠିତ ହୋଇ ସିଂହାସନରେ ବିଜେ ହେଲାରୁ ରାଜା ଜଗନ୍ନାଥ ଦର୍ଶନକୁ ଗଲେ । ଯଦୁମଣି ରାଜଅଙ୍ଗଣରେ ଯାଇ ଜଗନ୍ନାଥଙ୍କୁ ନିମ୍ନପ୍ରକାରେ ସ୍ତବ କରିଥିଲେ—

"କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ,
ରଥ ବୋଲି ଭଣ୍ଡିନେବେ ଶଗଡ଼େ ବସାଇ ।
ଭୋଗ ବୋଲି ଖଞ୍ଜିଦେବେ କଙ୍କଡ଼ା ମୁଆଁ,
ଧୂପ ବୋଲି ମାଡ଼ିଦେବେ ନିଆଁ ଖୁଣ୍ଟା ଧୂଆଁ ।

ରାଜା ଯଦୁମଣିଙ୍କର ଏ କବିତ୍ୱରେ ମୁଗ୍ଧ ହୋଇ ତାଙ୍କ ନାମରେ କେତେଗୋଟି ଚଉପଦୀ ରଚନା କରିବାକୁ ତାହାଙ୍କୁ ଅନୁରୋଧ କରିଥିଲେ । ପ୍ରତିଶୋଧ ନେବା ପାଇଁ ଯଦୁମଣି ସ୍ୱୀକାରୋକ୍ତି ପ୍ରକାଶ କରି ନିଜ ଘରେ ତେନ୍ତୁଆ ପତ୍ର ଠୋଲି ତିଆରି କରି ବୋଝେ ରାଜାଙ୍କ ପାଖକୁ ପଠାଇଦେଲେ ।

"ଥରେ ଯଦୁମଣି ଗୋଟିଏ ପ୍ରକାଣ୍ଡ ବିଷ୍ଣୁ ପ୍ରତିମାରେ ଅନେକ ପାଟକନା ଗୁଡ଼ାଇ ସ୍ଥୂଳାକୃତି କରି ରଣପୁର ରାଜାଙ୍କୁ ଭେଟିଲେ । ରାଜା ସ୍ୱହସ୍ତରେ ଦୁଇ ଗୁଡ଼ି ଖଣ୍ଡ କନା ଫିଟାଇଲେ, ମାତ୍ର ଯଦୁମଣିଙ୍କର ଠକ ସ୍ୱଭାବ ଜାଣିଥିବାରୁ ମନରେ ସେ କଅଣ ଭାବି ତାହା ତଳେ ପକାଇଦେବାରୁ ଯଦୁମଣି ଏହି କବିତାଟି ପାଠ କରିଥିଲେ—

"ଅନ୍ଧ ଦେଶକୁ ଗଲି ଦର୍ପଣ ବିକି,
କନ୍ଧ ହାତରେ ଦେଲି ଗୋଦାନ ଟେକି ।
କଡ଼ା ମଧୁରେ ଖଡ଼ା କଲି ରନ୍ଧନ,
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ ।
ହେ ରାଜା କି କଲି
ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲି ।

"ଏକ ସମୟରେ ଖଣ୍ଡପଡ଼ା ରାଜା ପାହାଡ଼ ଉପରେ ହାତୀରେ ଯାଉଥିଲେ । ସେହି ସମୟରେ ନୟାଗଡ଼ ରାଜା ସେହି ପାହାଡ଼ର ପାଦଦେଶରେ ସୁଆସିରେ ଯାଉଥିବାର ଦେଖି ଖଣ୍ଡପଡ଼ା ରାଜା ଓ ତାହାଙ୍କର ଅନୁଚରବର୍ଗ ହସିଲେ । ତହୁଁ ଯଦୁମଣି ନୟାଗଡ଼ ରାଜାଙ୍କ ପକ୍ଷ ଅବଲମ୍ବନ କରି ନିମ୍ନୋକ୍ତ କବିତାଟି ଗାଇଥିଲେ—

"ନିକିତି ତଉଲି ଯାନ ବଡ଼କୁ,
ଭାରୀ ଯେହୁ ସେହୁ ଯାଏ ତଳକୁ ।

"ଏପରି ଅପୂର୍ବ ବୁଦ୍ଧିର ଲୀଳା କବିତାକାରରେ କ୍ୱଚିତ୍ ପରିଦୃଷ୍ଟ ହୁଏ । ଯଦୁମଣିଙ୍କ ପ୍ରତିଭା ଅସାମାନ୍ୟ । ପ୍ରତିକୂଳ ଘଟଣାର ପୃଷ୍ଠଭୂମିକା ଉପରେ ତାଙ୍କର କବିତ୍ୱଶକ୍ତି ସ୍ଫୁରିତ ହୁଏ । ତେଣୁ ଯଦୁମଣିଙ୍କର ପ୍ରତି ପଦ୍ୟ ସହିତ ଗୋଟିଏ ଗଳ୍ପ ବା ଅବସ୍ଥା ବର୍ଣ୍ଣିତ ରହିଛି ।

"କବି ଚକ୍ରପାଣି ପଟ୍ଟନାୟକ ଯଦୁମଣିଙ୍କୁ ବହୁବାର ପରୀକ୍ଷା କରିଛନ୍ତି । ଥରେ ସେ ପଚାରିଲେ—"କାଣି ଗଣିକା" ଏହି ପଦ ବାମରୁ ଦକ୍ଷିଣକୁ ଏବଂ ଦକ୍ଷିଣରୁ ବାମକୁ ପଢ଼ିଲେ ଯେପରି ଏକ ପଦ ବୋଲି ବୋଧ ହେଉଛି ଏହାର ଦକ୍ଷିଣ ଓ ବାମ ପାର୍ଶ୍ୱରେ ସମାନ ସଂଖ୍ୟକ ବର୍ଣ୍ଣବିନ୍ୟାସକ ସେହିପରି ଗୋଟିଏ ବାକ୍ୟ ରଚନା କର । ତହୁଁ ଯଦୁମଣି କହିଲେ—

"କଡ଼ାକୁ କାଣି ଗଣିକାକୁ ଡାକ ।"

"ଥରେ ଯଦୁମଣିଙ୍କୁ ତାଙ୍କର ସଙ୍ଗାତ ନିମନ୍ତ୍ରଣ କରିଥିଲେ । ତରଡ଼ ଡାଲି ସିଝି ନ ଥିଲା; କେରଣ୍ଡି ମାଛ ତିଅଣରେ ପାଣି ବେଶୀ ହୋଇଥିଲା । ଯଦୁମଣି ଗୀତରେ କହିଲେ—

"ଦନ୍ତେ ବାଜନ୍ତେ ରୁଡ଼ୁ ମୁଡ଼ୁ ବାଜିଲା,
ଘୁଡ଼ୁ ଘୁଡ଼ୁ ବେଳରୁ ଓହ୍ଲାଇଥିଲା
ଦରଣ୍ଡି ଆଣିଥିଲା କେରଣ୍ଡି ମାଛ
କେ ରାଣ୍ଡି ରାନ୍ଧି ଅଛି ଦେଖଇ ସ୍ୱଚ୍ଛ ।

"ଏହିପରି ଅସଂଖ୍ୟ ଘଟଣା ଅବଲମ୍ବନରେ ଯଦୁମଣି ଓଡ଼ିଶାର ସାହିତ୍ୟ-କ୍ଷେତ୍ରରେ ହାସ୍ୟର ସ୍ରୋତ ବୁହାଇ ଯାଇଛନ୍ତି । ପ୍ରତ୍ୟୁତ୍ପନ୍ନମତି ଯଦୁମଣିଙ୍କ କବିତା-ଗୁଚ୍ଛ ଓଡ଼ିଆ ସାହିତ୍ୟର ଶୋଭାବର୍ଦ୍ଧନକାରୀ, ସନ୍ଦେହ ନାହିଁ ।" (ସାହିତ୍ୟ ଓ ସାହିତ୍ୟିକ)

## ରାଘବ ବିଳାସ

ରାଘବ ବିଳାସ ଘଟଣାଚକ୍ରରେ ସେ ଲେଖିଥିଲେ । ବ୍ରାହ୍ମଣମାନଙ୍କୁ ଅପମାନ ଦେବା ପରେ ତାଙ୍କର ଏକମାତ୍ର ପୁତ୍ର ଅଗ୍ନିଦଗ୍ଧ ହୋଇ ନଷ୍ଟହେବା ଘଟଣା ଏକୋନ୍ ପ୍ରତ୍ୟକ୍ଷବାଦୀ ନାସ୍ତିକ ଯଦୁମଣିଙ୍କ ଚିତ୍ତରେ ଭ୍ରାନ୍ତି ସଞ୍ଚାରିତ କରିଥିଲା । ରାଜା ବିନାୟକ ତାଙ୍କ ମାତୃଦେବୀଙ୍କର ମୃତ୍ୟୁପୂର୍ବର ବାସନା କଷିଆମ୍ବ ଯୋଗାଡ଼ କରିଦେଇ ନ ପାରିବାରୁ ଅନ୍ତ୍ୟେଷ୍ଟି ସମୟରେ ବ୍ରାହ୍ମଣ ପଣ୍ଡିତମାନଙ୍କୁ ବ୍ୟବସ୍ଥା ମାଗନ୍ତେ ପଣ୍ଡିତ-ମାନେ ଏକଶତ ଆଠଟି ସୁନାର ଆମ୍ବ ମାତୃପକ୍ଷରେ ଦାନକଲେ ତାଙ୍କର ଶେଷବାସନା ଚରିତାର୍ଥ ହେବ ବୋଲି ବ୍ୟବସ୍ଥା ଦେଇଥିଲେ । ଯଦୁମଣି ଏହା ଭଣ୍ଡାମି ବୋଲି ଅନୁଭବ କରି ବ୍ରାହ୍ମଣମାନଙ୍କଠୁ ପ୍ରତିଶୋଧ ଇଚ୍ଛା କରୁଥିଲେ । କାରଣ ସେ ପରକାଳ ବିଶ୍ୱାସ କରୁ ନ ଥିଲେ । ବ୍ରାହ୍ମଣମାନେ ସୁନାର ଆମ୍ବ ଠକିନେଲେ ବୋଲି ସେ ଧାରଣା କଲେ । ଯଦୁମଣିଙ୍କ ସେ ନାସ୍ତିକ ଧାରଣା ଆଜି ଭିତ୍ତିମୂଳକ ହେଲାଣି । ଏମନ୍ତ କି ପିତା, ପିତାମହୀ, ମାତା, ମାତାମହୀଙ୍କର ବାସନା ଚରିତାର୍ଥ ପାଇଁ ଧନ ଦାନ ଦୂରେ ଥାଉ ଜୀବଦ୍ଦଶାରେ ମଧ୍ୟ ତାଙ୍କୁ ଅନ୍ନବ୍ୟଞ୍ଜନ ଟିକିଏ ଦେବାକୁ ସନ୍ତାନ ଅନିଚ୍ଛୁକ ହେଲେଣି । କିମାଶ୍ଚର୍ଯ୍ୟମତଃ ପରଂ ।

ଯଦୁମଣିଙ୍କର ମାତୃଶ୍ରାଦ୍ଧ ଆସିଗଲା । ସେ ବିଶେଷ ଆୟୋଜନ କରି ପୂର୍ବୋକ୍ତ ୧୦୮ ବ୍ରାହ୍ମଣଙ୍କୁ ଆମନ୍ତ୍ରଣ କରି ସୁଖାଦ୍ୟ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଦେଇ ସନ୍ତୋଷ କରିସାରି ହାତଯୋଡ଼ି କହିଲେ,—"ମାଆଙ୍କର ଶିରବ୍ୟଥା ଥିଲା । ମୃତ୍ୟୁ ପୂର୍ବରୁ ତଡ଼ୁ ଦେବାକୁ ବାରମ୍ବାର କହିଥିଲେ । ତଡ଼୍‌କାଠି ଅଭାବରୁ ତାହା ଦେଇ ନପାରି ବୁଝୁଛି ଜନନୀଙ୍କର ପରଲୋକରେ ମୃତ୍ୟୁପୂର୍ବରୁ ବାସନା ଅତୃପ୍ତ ରହିବାରୁ ଅଶାନ୍ତିରେ ଅଛନ୍ତି । ଅନୁଗ୍ରହ ହେଲେ ସ୍ୱର୍ଗସ୍ଥ ଆତ୍ମାର ରାଜମାତାଙ୍କର ବାସନା ଚରିତାର୍ଥ ହେଲା ପରି ସ୍ୱର୍ଣ୍ଣତଡ଼୍‌ କାଠିରେ ଆପଣମାନଙ୍କୁ ସାମାନ୍ୟ ତଡ଼ୁସେକ ଦେଇ ମୁଁ ମୋ ମାତୃଦେବୀଙ୍କର ପାରଲୌକିକ ସନ୍ତୋଷ ଆଣିପାରିବି ।"

ସମସ୍ତ ପଣ୍ଡିତ ନୀରବ ରହିଲେ, ଧୂର୍ତ୍ତ ଭାବରେ ଯଦୁମଣି ମୌନଂ ସମ୍ମତି ଲକ୍ଷଣଂ ମନେକରି ଉତ୍ତପ୍ତ ତଡ଼ୁରେ ହେମ ସଦାଚାରସମ୍ପନ୍ନ ବୃଦ୍ଧ ବ୍ରାହ୍ମଣ ପଣ୍ଡିତ-ଗଣଙ୍କୁ ଦାଗ ଦେଇଗଲେ । ବିଧାତାର କି ବିଚିତ୍ର ଲୀଳା ! ପଣ୍ଡିତଗଣ ତା ନୀରବରେ ସହ୍ୟକରି ତଡ଼ୁ ସହିତ ଦକ୍ଷିଣା ନେଇ ବିଦାୟ ନେଲେ । କିନ୍ତୁ ଗୋଟିଏ ପକ୍ଷ ନଯାଉଣୁ ଦେଖାଗଲା ଯେ ଶିଶୁମାନଙ୍କର ଏକ କୌତୁକପୂର୍ଣ୍ଣ ଅଗ୍ନିଲୀଳାରେ ଯଦୁମଣିଙ୍କର ଏକମାତ୍ର ଶିଶୁ ଜୀବନ୍ତ ଦଗ୍ଧ ହୋଇ ଗୋଟିଏ ମାସ ଦିନରେ ନଷ୍ଟ ହୋଇଗଲା । ଏତେବେଳେ ଭୟ ପଶିଲା ଭୟଶୂନ୍ୟ ହୃଦୟରେ ।

ଏ ଯୁଗର ତେଜସ୍ୱୀ ବୈଜ୍ଞାନିକ ପ୍ରତ୍ୟକ୍ଷବାଦୀମାନେ ଅତି ଚତୁର, ଅତି ପ୍ରତ୍ୟକ୍ଷବାଦୀ ଯଦୁମଣିଙ୍କୁ ଏହାପରେ ସେ ନିଜର ବିଶ୍ୱାସ ପରିବର୍ତ୍ତିତ କରିଥିବାରୁ କ୍ଷୀଣ ବୁଦ୍ଧି ବା ଅଳ୍ପଶିକ୍ଷିତ ବୋଲି କହିପାରନ୍ତି । କିନ୍ତୁ ବୟସ ଅତିକ୍ରମ ହୋଇଯିବା ପରେ ବା ଅତି ଦୁଃଖ ଘୋଟିଆସିଲେ ଅତି ନିଷ୍ଠୁର ନାସ୍ତିକ ତୁଣ୍ଡରେ ମଧ୍ୟ ଈଶ୍ୱର-ଭଗବାନ ନାମ ଶୁଣାଯାଇଥାଏ ।

ଯଦୁମଣି ନିଜର ଦୋଷ ସ୍ୱୀକାର କଲେ । ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରି ଗାଇଲେ କରୁଣ କଣ୍ଠରେ—

**ଦେଲ ଯାହା ନେଲ ତାହା, ଏଥକୁ କିପାଇଁ**
**ମହା ଦାତାପଣେ ପତାକା ବାନ୍ଧିଛ ?**
**ନୀଳାଚଳ କଳାକର, ସତ କି ଏ ମିଛ ?**
**ପାତକୀ ମୁକୁଟ ଶ୍ରେଣୀ ଶିରୋମଣି ଯଦୁମଣି**
**ମନ ତଳେ ନେଇ ନ ପାରିବ**
**ଏବେ ଉଦ୍ଧାରଣେ ଯେବେ କୃପା ବସିଅଛ ଲବେ**
**ତେବେ ଯିନା ଦାତା ବୋଲାଇବ ।**

ତାପରେ ଘରକୁ ଫେରିଲେ । ରାଜାରାଣୀ କହିଲେ, ଏ ପାପରୁ ମୁକ୍ତି ପାଇଁ ରାମ ନାମ ନିଅନ୍ତୁ । ମନ ମାନିଲା । ପ୍ରତ୍ୟକ୍ଷବାଦ ଅଦୃଷ୍ଟବାଦରେ ରୂପାନ୍ତରିତ ହେଲା । କବିତା ବାହାରିଲା—

**ପ୍ରଥମୁଁ ବନ୍ଦଇ ଭୂଦେବ ଅଂଘ୍ରି ଅଘାରି ବକ୍ଷେ**
**ସପତ ସାଗର ଶୋଷକ ବଂଶ ଧ୍ୱଂସି ଅଲକ୍ଷେ ।**

କାବ୍ୟାରମ୍ଭରେ ପ୍ରଥମୁଁ ସପ୍ତସାଗର ଶୋଷକ ଅଗସ୍ତିଙ୍କ ଅନ୍ୱୟ, ଅଲକ୍ଷରେ ଯଦୁବଂଶଧ୍ୱଂସକ ଭୂଦେବବ୍ରାହ୍ମଣ ପାଦ ଯାହା ବିଷ୍ଣୁଙ୍କ ବକ୍ଷରେ ଶୋଭାପାଏ, ତାହା ମୁଁ ବନ୍ଦନା କରେ ବୋଲି ସେ ଲେଖିଲେ ।

ବିଶେଷରେ ୧୮୧୭ ବିଦ୍ରୋହକୁ ଲକ୍ଷ୍ୟକରି ସେ ସେଥିରେ ଲେଖିଲେ—

**ଗରିଷ୍ଟ ଦଶା ଏ ରାଷ୍ଟ୍ରର କଷ୍ଟ ଫେଡ଼ ଦୁସ୍ତର,**
**ଚକ୍ରପେଷି ଶକ୍ରବାହନ ଭ୍ରାତ ଅରି ସଂହାର ।**

କବି ଯଦୁମଣି କବିତ୍ୱରେ ଯେତିକି କୁହାଯାଇପାରେ ସେତିକି ମାତ୍ର କହିଲେ । ସେ ରାଷ୍ଟ୍ରର ଏପରି ଗରିଷ୍ଠ ଦଶାକୁ ନିବାରଣ କରିବା ଲାଗି ବିଷ୍ଣୁଚକ୍ରକୁ ଆଶ୍ରୟ କରିଦେଶବାସୀ ରାଜାଙ୍କ ଉଦ୍ଧାର ଲାଗି ଗ୍ରହସ୍ୱରୂପୀ ବିଦେଶୀଙ୍କୁ ହତ କରିବାକୁ ନିବେଦନ କରିଥିଲେ, କିନ୍ତୁ ବ୍ରହ୍ମା ବିଷ୍ଣୁ ମହେଶ୍ୱର କେହି ବୁଝିଲେ ନାହିଁ । କାରଣ ତାହା ଦୁର୍ବଳ କବିର ଗୁହାରି ମାତ୍ର ଥିଲା !

**ଦେବ ଆରାଧନେ ସ୍ୱଦେଶ ଉଦ୍ଧାର**
**ହେବନି ହେବନି ଖୋଲ ତରବାର ।** (ଜଣେ କବିଙ୍କ ଉକ୍ତି)

ଏହି ମନ୍ତ୍ରର ତରବାରି ଖେଳ ଚାଲିଲା । ବୀରଭୋଗ୍ୟା ବସୁନ୍ଧରା ନ ହୋଇ ବଞ୍ଚକ, ଶଠ, ଚକ୍ରାନ୍ତକାରୀର ଭୋଗ୍ୟା ହେଲା ଅବିକଳ, ସାହସିକ ଏ ଦେଶ ।

## ରାଘବ ବିଳାସର ପାଣ୍ଡୁଲିପି—

ଶୁଣାଯାଏ ଯଦୁମଣି ଏହି ରାଘବ ବିଳାସ ୫୨ ଛାନ୍ଦରେ ସମ୍ପୂର୍ଣ୍ଣ କରିଥିଲେ । କିନ୍ତୁ ତାହାର ପାଣ୍ଡୁଲିପି ଏକ ପୋଥିରେ କବି ସ୍ୱହସ୍ତରେ ଲେଖି ରାଜା ବିନାୟକଙ୍କର ପାଟରାଣୀଙ୍କୁ ଅର୍ପଣ କରିଥିଲେ । ରାଣୀ ତାହା ନିଜର ପୂଜା ଗୃହରେ ରଖିଥିଲେ । ଉକ୍ତ ଗ୍ରନ୍ଥ ୨୪ ବର୍ଷ ଲୀଳା ଆକାରରେ ରାଜବାଟୀରେ ପଠିତ ହୋଇଥିଲା । ସହସ୍ର ଜନତା ତାହା ପ୍ରତ୍ୟହ ଚୈତ୍ର ମାସର ରାମନବମୀଠାରୁ ଆରମ୍ଭ କରି ୨୧ ଦିନ ମଧ୍ୟରେ ଶୁଣୁଥିଲେ । ଉକ୍ତ ଗ୍ରନ୍ଥର କେତେ ଛାନ୍ଦ କେହି କେହି ଆବୃତ୍ତିରୁ ସ୍ମରଣ ରଖି ଲେଖି ନେଉଥିଲେ । ପାଲିକାର କେହି କେହି ମଧ୍ୟ ଛାନ୍ଦେ ଛାନ୍ଦେ ନେଇଥିଲେ ଯାହା ଯାହାକୁ ଭଲ ଲାଗିଲା ।

ହଠାତ୍ ବଣୀଙ୍କ ମୃତ୍ୟୁର ପୂର୍ବ ବର୍ଷ ଗ୍ରନ୍ଥ ଥିବା ଘର ଦଗ୍ଧ ହୋଇଯିବାରୁ ଏକାବେଳେ ତାହା ନଷ୍ଟ ହୋଇଗଲା । ଏ ଗ୍ରନ୍ଥ ଲେଖିବା ଯୋଗୁଁ କବିଙ୍କ ପ୍ରତି ବ୍ରାହ୍ମଣମାନେ ଅସନ୍ତୋଷ ହେତୁ ସଦୟ ହୋଇଥିବାର କମ୍ବଦନ୍ତୀ ଅଛି । ଶୁଣାଯାଏ ଉକ୍ତ ବୃଦ୍ଧ ପଣ୍ଡିତମାନେ ପୁନର୍ବାର ଆମନ୍ତ୍ରିତ ହୋଇ ତାଙ୍କର ବଂଶରକ୍ଷା ପାଇଁ ଆଶୀର୍ବାଦ ପ୍ରଦାନ କରିଥିଲେ । ଫଳରେ ତାଙ୍କର ଏକମାତ୍ର କନ୍ୟାଠାରୁ ପୁତ୍ରଟିଏ ଜନ୍ମିଥିଲା । ସେ ଉକ୍ତ କନ୍ୟାକୁ ନିଜ ଘରେ ରଖିଥିଲେ । ତେଣୁ ଦୌହିତ୍ରକୁ ନିଜର ପୁତ୍ର କରିଥିଲେ । ସେହି ବଂଶ ଶ୍ରୀ ଅଦ୍ୟାପି ରହିଅଛି ।

ରାଘବ ବିଳାସ ଆଉ ମିଳିବାର କଥା ନୁହେଁ । କିନ୍ତୁ ତାଙ୍କର ବଂଶଧର ଦାଶରଥି ମହାପାତ୍ର ବହୁ ଚେଷ୍ଟାରେ କେତେ ଛାନ୍ଦ ସଂଗ୍ରହ କରିଥିଲେ । ମୁଁ ଗୋଟିଏ କୃଷକଙ୍କ ସମ୍ପର୍କରୁ ଜଣେ ବ୍ରାହ୍ମଣଙ୍କଠାରୁ ମୂଳ କେତେ ଛାନ୍ଦ ପାଇଲି, ପାଲକାରମାନଙ୍କ-ଠାରୁ କିଛି କିଛି ମଧ୍ୟ ମିଳିଗଲା । ଏହିରୂ ମିଶି ୨୪ ଛାନ୍ଦ ଏକତ୍ର ହୋଇଅଛି । ଏ ମଧ୍ୟରୁ ପ୍ରଥମରୁ କେତେ ଛାନ୍ଦ ସଂଯୋଗ ରହିଥିବାର ଦେଖାଯାଏ । କିନ୍ତୁ ଶେଷାଂଶକୁ ବିଷୟର ଠିକଣା ନାହିଁ । ତେବେ ଏହାଠାରୁ ଅଧିକ ଆଉ ମିଳିବାର ସୁଯୋଗ ନ ଥିବାରୁ ଅସମ୍ପୂର୍ଣ୍ଣ ଭାବରେ କାବ୍ୟଟିକୁ ଦିଆଗଲା । ପାଲକାରମାନେ ରାଘବ ବିଳାସ ନାମରେ ଯେଉଁ ଛାନ୍ଦମାନ ଗାନ କରନ୍ତି ତାହା ସରସ ଅଟେ । କିନ୍ତୁ ପ୍ରଥମ ଛାନ୍ଦମାନ ସେତେ ଅଧିକ ଭାବପ୍ରଧାନ ହୋଇ ନାହିଁ । ତେଣୁ ତାହା ପୂର୍ବବର୍ତ୍ତୀ ରଚନାର ଗତାନୁଗତିକ ବୋଲି ଅନେକେ ମତଦିଅନ୍ତି ।

**ରାଘବ ବିଳାସର ବିଷୟବସ୍ତୁ:—**

ଏହି ଗ୍ରନ୍ଥ ସେ ତାଙ୍କର ଅତି ପ୍ରିୟତମ ରାଜା ବିନାୟକଙ୍କ ନାମ ପ୍ରଚାର କରିବା ଲକ୍ଷ୍ୟରେ ଲେଖିଥିବାର ପ୍ରଥମ ଛାନ୍ଦରେ ଜଣାଯାଏ—

**ସୀତା ରାମ ଅଂଘ୍ରି ଅବ୍ଜକୁ ହୃଦୟରେ ଧ୍ୟାୟିଣ**
**ରାଘବ ବିଳାସ ପ୍ରବନ୍ଧ ରଚନାକୁ କରଣ**
**ନବୀନ ଦୁର୍ଗେଶ ପ୍ରତାପୀ ବୀରାଗ୍ରେ ବୀରବର**
**ବିନାୟକ ସିଂହ ଶ୍ରୀ ମାନଧାତା ଗ୍ରନ୍ଥେ ପ୍ରଚାର ।**

ଶ୍ରୀ ବିନାୟକ ସିଂହ ମାନଧାତାଙ୍କ ନାମକୁ ଏ ଗ୍ରନ୍ଥ ଜରିଆରେ ପ୍ରଚାର କରୁଛି ବୋଲି ସେ ଯେ ଲେଖିଛନ୍ତି, ଏହାଦ୍ୱାରା ତାଙ୍କର ପ୍ରିୟତମ ରାଜପୁରୁଷଙ୍କ ନାମ ଧନ୍ୟ ହୋଇଅଛି । ମିଳିଥିବା ଛାନ୍ଦମାନଙ୍କର ବିବରଣ—

**ପ୍ରଥମ ଛାନ୍ଦ**—୧୨ଟି ପଦରେ ରାମକେରି ରାଗରେ ସମ୍ପୂର୍ଣ୍ଣ । ଏଥିରେ ରାମଚନ୍ଦ୍ରଙ୍କ ତାଙ୍କ ଜୀବନର ଆଖ୍ୟାୟିକାଦ୍ୱାରା ସାଧାରଣଭାବେ ବନ୍ଦନା କରାଯାଇଛି ।

**ଦ୍ୱିତୀୟ ଛାନ୍ଦ**—ଚକ୍ରକେଳି ବୃତ୍ତରେ ୧୬ ପଦରେ ଏହା ସମ୍ପୂର୍ଣ୍ଣ । ଏହି ଛାନ୍ଦର ବିଷୟର ବର୍ଣ୍ଣନା ହେଲା ଯେ ରାବଣର ଜନ୍ମ, ବିବାହ, ତାର ବରପ୍ରାପ୍ତି ଏବଂ ଦିଗ୍‌ବିଜୟରେ ଦେବତାମାନଙ୍କର ଅଶାନ୍ତି ଇତ୍ୟାଦି ।

କବିତାରେ ବୈଦପାଣ୍ଡିତ୍ୟ ଏବଂ ଖଣ୍ଡ ଯମକ, ସ୍ୱରଧରି ଗାଇବା ଲାଗି ମନୋହର ଭାବରେ ସଂଗୀତଗୁଣ ରଖାଯାଇଛି ମାତ୍ର ।

**ବିଶ୍ରବାଜ ବଂଶ ବାହା ଆମ୍ଭରେ କଣ୍ଟକ**
**ଅରି କର ! ଅରିଙ୍କର ଶୀଘ୍ର ବିନାଶକ,**
**ଭଣୁ ଭଣିଲେ କୌସ୍ତୁଭୁ**
**ମିତ୍ରବଂଶେ ନୃପକୁଳେ ଯାଇ ଜାତ ହେବୁ ।**

ବିଶ୍ରବାଙ୍କ ବଂଶଧର ବିଂଶବାହୁ ରାବଣ ଆମର ଶତ୍ରୁ ହୋଇଅଛି । ହେ ଚକ୍ରଧାରୀ ! ଉକ୍ତ ବୈରୀକୁ ତୁମ୍ଭେ ଶୀଘ୍ର ବିନାଶ କର । ଏ କଥା କହନ୍ତେ କୌସ୍ତୁଭ-ଧାରୀ ନାରାୟଣ କହିଲେ, ସୂର୍ଯ୍ୟବଂଶୀୟ ନୃପକୁଳରେ ଆମ୍ଭେ ଯାଇ ଜନ୍ମ ହେବୁ ।

ଏହି ଛାନ୍ଦରେ ସେ ଛାନ୍ଦଲେଖା ଅବିଘ୍ନରେ ପୂର୍ଣ୍ଣ ହେଲା ବୋଲି ଲେଖିଥିବାରୁ ମନେ ହୁଏ ଗ୍ରନ୍ଥରେ ବିଘ୍ନର ଆଶଙ୍କା ସେ ପୋଷଣ କରିଥିଲେ । ତେଣୁ ତାହା ହିଁ ପରବର୍ତ୍ତୀ ସମୟରେ ସମ୍ଭବିଥିଲା ।

**ତୃତୀୟ ଛାନ୍ଦ**—କଳସା ବୃତ୍ତରେ ୩୭ ପଦରେ ଏ ଛାନ୍ଦଟି ସଂପୂର୍ଣ୍ଣ ।

କଥାବସ୍ତୁ—ଲୋମପାଦ ରାଜାଙ୍କ ରାଜ୍ୟର ଦ୍ୱାଦଶ ବର୍ଷ ଅନାବୃଷ୍ଟି ଏବଂ ଜରତା ବେଶ୍ୟାଦ୍ୱାରା ଋଷ୍ୟଶୃଙ୍ଗଙ୍କ ଆଗମନ ବିଷୟ ଏଥିରେ ବର୍ଣ୍ଣିତ ହୋଇଛି । ଏଥିରେ କବିଙ୍କର ସ୍ୱଭାବବେଦନ ବର୍ଣ୍ଣନା ବିଶେଷତ୍ୱ କିଛି ନାହିଁ । ଚରିତଗତ ସମସ୍ୟା ହିଁ ଶବ୍ଦିତ ହୋଇଛି ମାତ୍ର ।

ଅଳଙ୍କାର— ସଂପୂର୍ଣ୍ଣ ଛାନ୍ଦଟିକୁ କବି ଆଦ୍ୟ ଯମକରେ ରଚନା କରିଅଛନ୍ତି ।

ଯେପରି—**ଜୀବନହୀନ ଦ୍ୱାଦଶ ସମ୍ବତ୍ସର ହେଲା**
**ଜୀବନ ଯିବ ଏଣିକି କି କରିବ ଭଲା ।**
**ଦ୍ୱିଜକୁଳରେ ପୁଚ୍ଛନ୍ତି କରକ ସଂଯୁକ୍ତେ**
**ଦ୍ୱିଜୋକ୍ତି ବିଭାଣ୍ଡକକୁ ଅଣାଅ ତୁରିତେ ।**
**ବନଜ ପିତାଜ୍ଞା ପାଳି ତପେଛନ୍ତି ରହି**
**ବନଜ ପ୍ରଦତ୍ତ ହେବ ତାଙ୍କ ଆଜ୍ଞା ପାଇ ।**
**ଶଚୀବର ପ୍ରାପ୍ୟ ରାଜା ମନକୁ ଆଇଲା**
**ସଚୀବରେ ଆଜ୍ଞାଦତ୍ତ ଏହା କର ଭଲା ।**

---

ଶବ୍ଦାର୍ଥ । ବିଶ୍ରବାଜ—ବିଶ୍ରବାତନୟ । ଅରି—ଚକ୍ର । ଅରି—ବୈରୀ, ଶୀଘ୍ର ବିନାଶକ ( ହୁଅ ) । କୌସ୍ତୁଭୁ—କୌସ୍ତୁଭଧାରଣକାରୀ । ମିତ୍ର—ସୂର୍ଯ୍ୟ ।

ଶବ୍ଦାର୍ଥ । ଜୀବନ—ଜଳ । ଜୀବନ—ପ୍ରାଣ । କରକ ସଂଯୁକ୍ତେ—କରଯୋଡ଼ି । ବିଭାଣ୍ଡଜ—ଋଷ୍ୟଶୃଙ୍ଗ । ବନଜ—ଅରଣ୍ୟ । ବନ—ଜଳ । ଶଚୀବର—ଇନ୍ଦ୍ର । ସଚୀବ—ମନ୍ତ୍ରୀ ।

ଶବ୍ଦପାଣ୍ଡିତ୍ୟ—ଉକ୍ତ ଯମକରେ ଅନ୍ୟ ପ୍ରକାର ମଧ୍ୟ କେତେ ପଦ ଦେଖାଯାଏ । ଯେପରି—

ପାଦପରେ ପାଦପରେ ଦେଇ ଅପସର
ବାରଙ୍ଗନା ବାରଙ୍ଗନା ମିଳିଲେ ପାଖର ।

**ଚତୁର୍ଥ ଛାନ୍ଦ**— ରସକୁଲ୍ୟା ରାଗରେ ଛାନ୍ଦଟି ୧୯ପଦରେ ଲେଖା ଯାଇଅଛି ।

କଥାବସ୍ତୁ—ବିଭାଣ୍ଡକ ଋଷ୍ୟଶୃଙ୍ଗଙ୍କ ଅଙ୍ଗସ୍ପର୍ଶରେ ତପସ୍ୱୀଜନ ଅନୁଚିତ ବସ୍ତୁ ଲକ୍ଷ୍ୟ କରି ପୁତ୍ରକୁ ସେ ପ୍ରସଙ୍ଗରୁ ବିରତ ହେବା ବିଷୟରେ ଉପଦେଶ ଦେଇ ପ୍ରାତଃ କାଳରେ ବନଗମନ କରନ୍ତେ, ଜରତୀ ଋଷ୍ୟଶୃଙ୍ଗଙ୍କୁ ନୌକାରେ ନେଇ ଚାଲିଆସିଛି ଏବଂ ଲୋମପାଦ ରାଜ୍ୟରେ ବର୍ଷା ହେବା ପରେ ଶାନ୍ତାର ବିବାହ ଏବଂ ଦଶରଥଙ୍କର ଆମନ୍ତ୍ରଣ ଏଥିରେ ସୂଚିତ କରାଯାଇଛି ।

ରଚନାରେ ପ୍ରଥମ ଦୁଇ ପଦ ପ୍ରାନ୍ତଯମକ ଓ ଅନ୍ୟାନ୍ୟ ୧୭ ପଦ ଆଦ୍ୟ-ଯମକରେ ରଚନା କରାଯାଇଛି ।

ବିଭାକର ଅସ୍ତାଚଳ ଉକୂତ
ବିଭାବରୀ ପ୍ରବେଶନ୍ତେ ତୁରିତ
ବିଭାଣ୍ଡକ ତପସ୍ଥାନୁ ଆଗତ
ବିଭାବ ମଣି ପୁତ୍ରାଙ୍ଗ ସ୍ପର୍ଶେତ
ବିରତି କେମନ୍ତ
ବିରାଗ କଲେ କୋଳରେ ଘେନିତ ।

**ପଞ୍ଚମ ଛାନ୍ଦ**—ରାଗ କାମୋଦୀ (ମତାନ୍ତରେ ଚକ୍ରକେଳି) । ୨୭ ପଦରେ ସମ୍ପୂର୍ଣ୍ଣ ।

କଥାବସ୍ତୁ—ଦଶରଥ ଋଷ୍ୟଶୃଙ୍ଗଙ୍କଦ୍ୱାରା ଯଜ୍ଞ କରି ରାମ ଆଦି ପୁତ୍ରମାନଙ୍କୁ ଲାଭ କରିବା ବର୍ଣ୍ଣିତ ହୋଇଛି । ରଚନାରେ ଶବ୍ଦପାଣ୍ଡିତ୍ୟ ରହିଛି । ଭଞ୍ଜଙ୍କ ଲାବଣ୍ୟବତୀ କାବ୍ୟର ପଦ ଅନୁସରଣ କରି ଗାଇଛନ୍ତି—"ଭ୍ରମେ ଭ୍ରମର ଭ୍ରମୁଛନ୍ତି ଉଲ୍ଲାସେ" ଏବଂ କାଳିଦାସଙ୍କ "ଦିନେ ଦିନେ ସା ପରିବର୍ଦ୍ଧମାନା" ଅନୁସରଣ କରି "ଦିନକୁ ଦିନ ସହି ନବ ବର୍ଦ୍ଧନ" ଅବା ରଚିତ ହୋଇଛି ବୋଲି ମନେ ହୁଏ ।

**ଷଷ୍ଠ ଛାନ୍ଦ** —ରାଗ ଆହାରୀ । ୨୩ ପଦରେ ସମ୍ପୂର୍ଣ୍ଣ ।

କଥାବସ୍ତୁ—ସୀତାଙ୍କର ଜନ୍ମ ଏବଂ ସ୍ୱୟଂମ୍ବର ପ୍ରତିଜ୍ଞା ଏବଂ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କର ବିଶ୍ୱାମିତ୍ରଙ୍କ ସହିତ ଯଜ୍ଞରକ୍ଷା ପାଇଁ ଗୃହତ୍ୟାଗ ଏଥିରେ ବର୍ଣ୍ଣିତ ହୋଇଛି । କବି ମହାସତୀ ଜନକନନ୍ଦିନୀଙ୍କର ଜନ୍ମ ଓ ଯୌବନ ବିବରଣ ପ୍ରଥମରୁ ପାଞ୍ଚଟି ପଦରେ ଅତି ବିଚକ୍ଷଣ ଭାବରେ ବର୍ଣ୍ଣନା କରିଅଛନ୍ତି । ବର୍ଣ୍ଣନାମାଧୁରୀ ପ୍ରତି ଆକୃଷ୍ଟ କରିବାକୁ ଉକ୍ତ ପାଞ୍ଚପଦ ଏଥିରେ ଉଦ୍ଧାର କରିବା ସଙ୍ଗତ ହେଉଛି—

"ଶୁଣ ସୁବଦ୍ଧୁଷ ସକଳ କଲ୍‌ବଷ ଅଙ୍ଗରୁ ହୋଇବ ଦହନ
ଜନକ ମୁନୀଶ କାଶ୍ୟପୀକି ଗୃଷ କରନ୍ତେ କର୍କଶ ବହନ
ସକାଳେ, ସଭଶାପେ ଖରେ ଅପୂର୍ବ
ଖରେ ଯାଉଁ ଯତ ଦେଖି ବଗ୍ଦ୍ରନ୍ତ ଦୁହିତା ହୋନ୍ତାଏ ମୋ ପର୍ବ । ୧ ।

ନଗରୀନର୍ତ୍ତକୀ ବ୍ରହ୍ମଣ୍ୟ ଭକ୍ତିକ ଜାଣି ପ୍ରକାଶଇ ରଭସେ
ଧରଣୀ ସମ୍ଭୂତା ହେବ ତୁମ୍ଭ ସୁତା ପୂର୍ବ ନାରୀ ପାର୍ଥିବୀ ପ୍ରକାଶେ
ଗଡାନ୍ତେ । ବେଧା ବାଧାନରେ ଉତ୍ପତ୍ତି
ସୁଫେଡ଼ା ଫଳାଗ୍ରେ ଦେଖି ଯତ ବ୍ୟଗ୍ରେ ବଦ୍ଧେ ଦୃଷ୍ଟି ପାତ ଝଟତି । ୨ ।

କାନ୍ତିକ ଲଷିତ ଲକ୍ଷଣେ ସଂଯୁକ୍ତ ଲକ୍ଷଣେ ସୁକ୍ଷେଣ ସୁଗତ
ଦୀନଜନ ନିଧି ପାଇଲ୍ ଅବଧି ସୁଧାପତ ସିଦ୍ଧି ପ୍ରାପତ
ତତ୍‌କାଳେ, ପବନ୍ଧାଙ୍ଗି ଧେନ ସଦନେ
ସୀମନ୍ତନୀ-ସୀମନ୍ତନୀ ଭୂଷା ମର୍ମେ ହୃଦୟାନନ୍ଦ ସେ ଭେସନେ । ୩ ।

ବନକସମ୍ଭୂତା ପର୍ଯ୍ୟେ ବର୍ଦ୍ଧିତା ପଦ ନଉଛାଇ ହୋଇଲ୍ଲି
ନୟନ ଚକୋରୀ ସୁଧା ପାନକର ବେରବେ ସର୍ବେ ଅଲକ୍ଷିକ୍ଷି
ବାତରେ, ଲତାଗ୍ର ଚଳଚଳ ମତ
ସୁମନା ଅଙ୍ଗରେ ସୁଶୋଭା ରଙ୍ଗରେ ଦେଳକୁ ବେଳ ସେ ବଦୀପ୍ତ । ୪ ।

ଧାତ୍ରୀ ଶିରୀ ଧାତ୍ରୀ କୋଳେ ସୁଶୋଭନ୍ତ ଯତ ଯତ ନାରୀ ଆନନ୍ଦ
କୁଳ ପବନ୍ଧାଣୀ ସମ୍ଭୂତା ଏ ପୁଣି ସୁମନା ଦର୍ଶନେ ପ୍ରମୋଦ
ଅଦେହ, ଅଦେହ ନଗ୍ରେ ଯାଙ୍କ ବାସ
ବାସରେ ବାସରେ ମଣ୍ଡିତ ହେବାରେ ସୁବାସ ବାସରେ ପ୍ରକାଶ ।୫।

---

ଶବ୍ଦାର୍ଥ । କକଣ କାଶ୍ୟପୀ—ଝାଡଭୂମି । ସଭ—ଇନ୍ଦ୍ର । 'ଖ' ରେ—ଶୀଘ୍ର, ଆକାଶରେ । ଯତ—ଜନକ ରାଜର୍ଷି । ନଗରୀନର୍ତ୍ତକୀ—ଅପ୍ସରା । ବ୍ରାହ୍ମଣ୍ୟ—ଋଷିଙ୍କ । ଭକ୍ତି—ସ୍ନେହ, ସମାଦର । ରଭସେ—ହର୍ଷରେ । ଗଡାନ୍ତେ—ଯିବାପରେ । ବେଧା—ବେଦବହିତ । ସୁଫେଡ଼ା-କାଠପେଡ଼ି । ଫଳାଗ୍ରେ—ଲଙ୍ଗଳଲୁହା ମୁନରେ । ବଦ୍ଧେ—ଋର୍ଙ୍ଗି, ଫିଟାଇ । ସୀମନ୍ତନୀ—ସୀମନ୍ତନୀ ଭୂଷା—ନାରୀ ଶିରୋମଣି । ବନକସମ୍ଭୂତା—ଲକ୍ଷ୍ମୀ । ନଉଛାଇ—ବନ୍ଦାଇ । ବେରବେ—ଅଙ୍ଗରେ । ଧାତ୍ରୀ ଶିରୀଧାତ୍ରୀ—ଧାଈମାନଙ୍କରେ ଅତି ସୁନ୍ଦରୀ ଧାଈ । ଯତ—ଋଷି, ଜନକ । ଯତନାରୀ—ଋଷିପତ୍ନୀ, ଜନକରାଣୀ । ସୁମନା—ଦେବତାମାନେ । ଅଦେହ—ବଦେହ ସ୍ୱର୍ଗ । ଅଦେହ ନଗ୍ର—ବଦେହ ନଗରୀ, ସ୍ୱର୍ଗପୁରୀ, ପାରଳ.ତଳ ।

**ସପ୍ତମ ଛାନ୍ଦ**—ରାଗ ରସକୁଲ୍ୟା, ୨୪ ପଦରେ ସଂପୂର୍ଣ୍ଣ ।

କଥାବସ୍ତୁ—ଏହି ଛନ୍ଦରେ ବିଶ୍ୱାମିତ୍ରଙ୍କ ସହିତ ରାମଚନ୍ଦ୍ର ଅରଣ୍ୟକୁ ଆସି ତାଡ଼କା ବଧକରି ଅହଲ୍ୟାକୁ ମୁକ୍ତିଦାନ କରିଅଛନ୍ତି ।

ଅହଲ୍ୟାସ୍ତବକୁ ଧନୁବନ୍ଧରେ ରଚନା କରି କବି ଆଳଙ୍କାରିକ ବିଶେଷତ୍ୱ ଦେଇଅଛନ୍ତି ।

**ସାଦରେ ବାରେ ହରିହର ଦର**
**ମୋହ ମୋହନ ମୋର ଦୂରକର**
**କଷ୍ଟ ନଷ୍ଟକ ଲୋକର ଭରସା**
**ଏଣୁ ଆଶା କରିଛି ସାରଦଶା ହେ**
**ଏ ଧନୁବନ୍ଧ ଛାୟାରେ ଯେ**
**ଅହଲ୍ୟା ରହିଣ ଶ୍ରୀରାମଚରଣ ସ୍ତବ କରନ୍ତି ଆଦରେ ଯେ ।**

ଧନୁ ଆକୃତିବିଶିଷ୍ଟ କ୍ଷେତ୍ର ଅଙ୍କନ କରି ଭିନ୍ନ ସ୍ଥାନରେ କୌଶଳପୂର୍ବକ ଗୀତ ଓ ବାକ୍ୟ ବିନ୍ୟାସ କଲେ ଚିତ୍ରକାବ୍ୟର ରୀତି ଅନୁସାରେ ଏହି ବନ୍ଧ ପରିଦୃଷ୍ଟ ହେବ ।

**ଅଷ୍ଟମ ଛାନ୍ଦ**—ରାଗ ଧନାଶ୍ରୀ । ୨୫ ପଦରେ ସଂପୂର୍ଣ୍ଣ । ନୃତ୍ୟ ଓ ଲୀଳା ସ୍ଥାନରେ ଏହି ବୃତ୍ତିଟି ତାଳ ଧରି ଗାଇବାରେ ଏକାନ୍ତ ସୁଶ୍ରାବ୍ୟ ହୋଇଥାଏ । ଏଥିରେ ଭଞ୍ଜଙ୍କ ବର୍ଣ୍ଣିତ ବିଷୟ କିଛି ଟିକିଏ ସ୍ୱତନ୍ତ୍ର ଭାବରେ ରଚିତ କରାଯାଇଛି ମାତ୍ର । ରାମଚନ୍ଦ୍ର ଗଙ୍ଗା ପାରି ହୋଇ ମିଥିଳା କଟକରେ ପହଞ୍ଚି ଜନକଙ୍କଦ୍ୱାରା ସମାଦୃତ ହେଲେ । କୈବର୍ତ୍ତ ଭାଗ୍ୟବଳରେ ତାରକ ବ୍ରହ୍ମ ଲାଭ କରିଛି ବୋଲି ସେ ଲେଖିଛନ୍ତି । ନଚେତ୍ ନୂତନତ୍ୱ କିଛି ନାହିଁ ।

**ନବମ ଛାନ୍ଦ**—କୁମ୍ଭ କାମୋଦି ବୃତ୍ତ । ୩୧ ପଦରେ ସଂପୂର୍ଣ୍ଣ ।

**କଥାବସ୍ତୁ**—ଏଥିରେ ସୀତାଙ୍କର ବେଶ ବର୍ଣ୍ଣିତ ହୋଇଛି ।

**ସୀମନ୍ତିନୀ—ସୀମନ୍ତିନୀ ସୀମନ୍ତରେ ସୀମନ୍ତ ଦେଖାନ୍ତେ**
**ଜାହ୍ନବୀ ଅର୍କଜା ଏକ ସ୍ଥାନେ ଦୁଜା ଗୋଚର ତେମନ୍ତେ ।**

(ନାରୀଶ୍ରେଷ୍ଠା ସୀତାଙ୍କ କେଶରେ ସୂକ୍ଷ୍ମ ଯାହା ଦେଖାଗଲା, ତାହା ଦେଖିଲେ ଜଣାଗଲା ଯେ ଗଙ୍ଗା ଯମୁନା ଦୁହେଁ ଏକ ସ୍ଥାନରେ ତେମନ୍ତ ଦେଖାଗଲା ।)

ଅନନ୍ତର ହରଧନୁକୁ ମଲ୍ଲମାନେ ସଭାରେ ସ୍ଥାପନ କରିଅଛନ୍ତି । ତାହାର ଏକ ମଞ୍ଜୁଳ ବର୍ଣ୍ଣନା କରାଯାଇଅଛି ।

**ଦଶମ ଛାନ୍ଦ**—ପଞ୍ଚମ ବରାଡ଼ି ବୃତ୍ତ । ଏହା ୩୩ ପଦରେ ସଂପୂର୍ଣ୍ଣ । ଭଞ୍ଜଙ୍କ "ବିଗ୍ରହରଇ ମାଳ ଯମକରେ କବି ମନେ" ବୃତ୍ତରେ ରଚିତ ।

କଥାବସ୍ତୁ—ରାମଚନ୍ଦ୍ର ହରଧନୁ ଭଗ୍ନ କରିଅଛନ୍ତି । ଏ ଛାନ୍ଦରେ ଶବ୍ଦ-ପାଣ୍ଡିତ୍ୟ ଯଥାସମ୍ଭବ ଦେଖାଯାଇଛି ।

**ଏକାଦଶ ଛାନ୍ଦ**—ରାଗ ପଞ୍ଚମ ବରାଡ଼ି ବୃତ୍ତ (ବିପ୍ରସିଂହାବାଣୀ) । ୧୮ ପଦରେ ସଂପୂର୍ଣ୍ଣ ।

କଥାବସ୍ତୁ—ଜନକ ନିଜ କନ୍ୟାର ବିବାହ ଲାଗି ଦଶରଥଙ୍କ ନିକଟକୁ ଦୂତ ପ୍ରେରଣ କରିଅଛନ୍ତି ଏବଂ ସେ ପୁତ୍ରମାନଙ୍କର ଧାତ୍ରୀ ଏବଂ ମାତାମାନଙ୍କ ସହିତ ଅନ୍ୟ ଦୁଇ ପୁତ୍ରଙ୍କୁ ସଙ୍ଗରେ ଧରି ସବିଧିରେ ଜନକାଳୟକୁ ବିଜେ କରିଛନ୍ତି ।

ରଚନାର ବୈଶିଷ୍ଟ୍ୟ ଏବଂ ପଦ ପ୍ରୟୋଗରେ ସ୍ୱାଧିକାର ଏଇ ଛାନ୍ଦରେ ବିଶେଷ ଲକ୍ଷ୍ୟ କରାଯାଏ ।

**ଦ୍ୱାଦଶ ଛାନ୍ଦ**—ମାଳବ ବୃତ୍ତ । ୧୭ ପଦରେ ସଂପୂର୍ଣ୍ଣ ।

କଥାବସ୍ତୁ—ଦଶରଥ କଟ୍ଟିବାଟ ପଦଯାତ୍ରାରେ ମିଥିଳା ସୀମାଯାଏଁ ଯାଇଛନ୍ତି । ରାମ ଲକ୍ଷ୍ମଣଙ୍କ ସହିତ ପିତାମାତା ଓ ଅନ୍ୟ ଭାଇ ଦୁହେଁ ମିଳିତ ହୋଇଛନ୍ତି ।

**ତ୍ରୟୋଦଶ ଛାନ୍ଦ**—ରାଗ କାଳୀ । ୫୦ ପଦରେ ସଂପୂର୍ଣ୍ଣ ।

କଥାବସ୍ତୁ—ଦଶରଥ ସ୍ୱତନ୍ତ୍ର ସ୍ଥାନରେ ରହିଲେ ଏବଂ ଜନକ ତାଙ୍କୁ ଦେଖାକଲେ । ବିବାହବିଧ ଯେଜ ମଣ୍ଡପାଦି ନିର୍ମାଣ ଓ ଜନଗହଳ ଯେନ ଉତ୍ସବାଦି ବର୍ଣ୍ଣିତ ହୋଇଅଛି । ଏଥିରେ ଆଦ୍ୟଯମକ ଓ ଯୋଡ଼ଯମକ ଅଳଙ୍କାର ଦେଖାଯାଏ ।

**ଚତୁର୍ଦ୍ଦଶ ଛାନ୍ଦ**—ରାଗ ମଙ୍ଗଳଗୁର୍ଜ୍ଜରୀ । ୫୦ ପଦରେ ସଂପୂର୍ଣ୍ଣ । ଏହି ଛାନ୍ଦରେ ବିବାହବିଧି ବର୍ଣ୍ଣିତ ହୋଇଛି ।

**ପଞ୍ଚଦଶ ଛାନ୍ଦ**—ରାଗ ଲଳିତ କାମୋଦି । ଏହି ଛାନ୍ଦ ୩୪ ପଦରେ ସଂପୂର୍ଣ୍ଣ ।

କଥାବସ୍ତୁ—ସ୍ୱତନ୍ତ୍ର ଶିବିରରେ ସୀତାଙ୍କର ମଧୁଶଯ୍ୟା ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି । ସୀତାଙ୍କର ବେଶ କବି ପୂର୍ବ ରୀତିରେ ବର୍ଣ୍ଣନା କରିଅଛନ୍ତି । ଏଥିରେ ରାମଙ୍କ ରଚନାରେ ସୀତାଙ୍କ ପ୍ରତି ଏକ ଅନ୍ତର୍ଲିପି ଦିଆଯାଇଛି ଏବଂ ସୀତାଙ୍କ ରଚନାରେ ଏକ ଆଦ୍ୟପ୍ରାନ୍ତ ଲୋପ ମଧ୍ୟାକ୍ଷର ଲିପି ରହିଛି । ଏସବୁ ରଚନାରେ ଭାଷାର ସୌନ୍ଦର୍ଯ୍ୟ, ଗୂଢ଼ାର୍ଥ୍ୟ, ବିଚିତ୍ରତା ଯଥାସମ୍ଭବ ରଖାଯାଇଛି । ପୂର୍ବୋକ୍ତ ବିଭିନ୍ନ ଛାନ୍ଦରେ ମାଳଯମକ, ମହାଯମକ, ସର୍ବଯମକ, ମଧ୍ୟଯମକ ଆଦି ମଧ୍ୟ ରହିଛି ।

ଅନ୍ତର୍ଲାପି—**ରଙ୍କ ହୋଇ**
**ଅଙ୍କରେ ମଣ୍ଡନ କରୁ ନେଇ**
**ପଙ୍କରୁହନେତ୍ରୀ ଏପା କହ୍ନ ଗୋ । ୧୭ ।**

ରଙ୍କ ହୋଇ ସୀତାଙ୍କୁ ରାମ କୋଳରେ ବସାଇବାରୁ ସେ ଲଜ୍ଜିତ ହେଲେ । ତେଣୁ ରାମ କହିଲେ—

| | |
|---|---|
| **ଅଶ୍ୱର କ ନାମ ଅଛୁ ସହି** | **ବାଜି** |
| **ନୂତନା ବୟସୀ କ ବୋଲାଇ ?** | **ନବ** |
| **ସିଂହ କାହିଁ ବାସ ବୁଝ ନାରୀଈଶ** | **ବନ** |
| **ଟେକ ଚନ୍ଦ୍ରାନନ ତୋଷ ବହି ଗୋ** | |
| **ଯତ୍ତନାମ** | **ସିଦ୍ଧ** |
| **ପିକ ଧ୍ୱନି କ କ ବୋଲ ଜନ** | **ସ୍ୱନ** |
| **ଜାଗ୍ରତ ଲୋକେ ଶୁଣି କା ଗାନ ଗୋ । ୧୮ ।** | **କୁଆ** |
| **ରବିତାପ ନାମ ହୁଏ କସ** | **ତେଜ** |
| **କୃଷକାନନ୍ଦ ପାଇ କା ରସ** | **ଘନ** |
| **ମନ୍ଦେ କେ ପାଳନ୍ତ ଛନ୍ଦ ନ ଘେନନ୍ତ** | **ପିକ** |
| **ହୃଦାନନ୍ଦେ ଘନ ହୋଇ ତୋଷ ଗୋ** | |
| **କାମଧର** | **ଶର** |
| **କ ନାମ ବୋଲାନ୍ତ ନାରୀବର** | **ରାମା** |
| **ତପୀ କ କରନ୍ତ ହୋଇ ସ୍ଥିର ଗୋ । ୧୯ ।** | **ଧ୍ୟାନ** |

ଏଥିରୁ ବାହାରିଲା 'ଜୀବନ ଧନ, ଆଜ ନ କର ମାନ' ଏହା ରାମ କହି ପ୍ରତାପ ଛୁଇଁ ନିୟମ କଲେ—"ମୋହର କାହାଠାରେ ଦୋଷ ନୋହି" ଅର୍ଥାତ୍ ମୁଁ କାହାଦ୍ୱାରା ଦୂଷିତ କେବେ ହେବିନି ।

ତହୁଁ ମୈଥିଳୀ ତା ପଢ଼ି ବୁଝି ହିବର୍ଣ୍ଣରେ ମଧ୍ୟ-ଅକ୍ଷର ଲିପିରେ ଲେଖି ଜଣାଇଲେ । କଣୋଣ ଅବସ୍ଥାରୁ ଏପରି ଠାରରେ ନିଜର ସଖୀମାନଙ୍କ ମଧ୍ୟରେ ପ୍ରକାଶ କରିବା ବିଧି ସେକାଳୁ ଏକାଳ ଯାଏ ରହିଆସିଛି । ତଦ୍ଦ୍ୱାରା ଯେପରି ସଂଯମ ଓ ମାଧୁର୍ଯ୍ୟ ଜୀବନ ସେଦିନ ଦେଖାଯାଏ, ସଂସର କଥାଭାଷାରେ ତାହା ହୁଏ ନାହିଁ । ଚିରନ୍ତନ ସୌହାର୍ଦ୍ଦ୍ୟର ଏହା ଏକ କୌଶଳ ଅଟେ ।

ଗ୍ରାମ୍ୟ ଗୀତରେ ଅଛି—"କଥା ନ କହିବୁ ଜେମା ମୁହଁକୁ ମୁହଁ" । ସର୍ବଦା ବଲବଲ ମୁହଁ କଥାଭାଷା କରିବାଦ୍ୱାରା କେବଳ ସୁନ୍ଦରୀ ନାରୀ ନୁହେଁ, ଯେ—କେହି ଅଶ୍ରଦ୍ଧାର ପାତ୍ର ହେବା ସ୍ୱାଭାବିକ । ତେଣୁ ଯଥାସମ୍ଭବ ସଂଯମ ମଧ୍ୟରେ ଚଳିବାକୁ ସବୁ କାଳ, ଧର୍ମରେ ନିର୍ଦ୍ଦେଶ ରହିଛି ।

| | |
|---|---|
| **ବାର୍ତ୍ତା ଶ୍ରବଣାନ୍ତେ କ ବୋଲନ୍ତି** | **ଉତ୍ତର** |
| **ଅନଳର ନାମ କ ପ୍ରବର୍ତ୍ତୀ** | **ପବନ** |
| **ହୁରଖେଳ ନାମ କସ ବୋଲି ଜନ** | |
| **ବର୍ଣ୍ଣନ୍ୟାସେ ଦେଇଥିବ ମତି ହେ** | **ଅବିର** |
| **ଜୀବ ହତେ** | **ବିନାଶ** |
| **ଅନ୍ଧ ପକ୍ଷ୍ୟଶାଳୀ କେହୁ ମର୍ତ୍ତେ** | **ବିଆଳ** |
| **ମୃଗେନ୍ଦ୍ରଙ୍କୁ ଜନେ କ ଭାଷନ୍ତେ ହେ ।୨୨।** | **ବନେଶ** |
| **ଅମାନତା ନରେ କସ ଭାଷ ?** | **ଘେନାଇ** |
| **ବଦାନ୍ୟରେ କେଉଁ କଥା ଘୋଷ ?** | **ଅହିଂସା** |
| **ସୁବାସରେ କଅ ହୁଅଇ ପ୍ରକାଶ** | **ଆମୋଦ** |
| **ବିରସ ନ ହୋଇ ଏଥି ରସ ହେ** | |
| **ବୀଣାଧାରୀ** | **ନାରଦ** |
| **ଅଦଭୁତର ନାମ କ ପ୍ରଚୁର** | **ବିଚିତ୍ର** |
| **ବିପଦାର୍ଥେ କେଉଁ ନାମ ସ୍ମର ହେ ।୨୩।** | **କାତର** |

"ତବ ବିନା ଆନେ ନାହିଁ ମୋର ଚିତ୍ତ" ସୀତାଙ୍କ ଉଚନାରୁ ଜଣାଯାନ୍ତେ ରାମଚନ୍ଦ୍ର ଆନନ୍ଦିତ ହେଲେ ଏବଂ ତତ୍ପରେ ଉଭୟେ ପ୍ରେମାସକ୍ତ ହେବାର ବର୍ଣ୍ଣନା ଦିଆଯାଇଛି ।

**ଷୋଡ଼ଶ ଛାନ୍ଦ**—ଚିନ୍ତା ଭୈରବ ରାଗ । ୬୭ ପଦରେ ସମ୍ପୂର୍ଣ୍ଣ ।

କଥାବସ୍ତୁ—ଦଶରଥ ନିଜର ଗୁରୁପୁତ୍ର ଏବଂ ବଧୂମାନଙ୍କ ସହିତ ନିଜ ଗୃହକୁ ଫେରିଲେ । ପଥରେ ରାମଚନ୍ଦ୍ର ପର୍ଶୁରାମଙ୍କର ଦର୍ପ ଦଳନ କରି ଅଯୋଧ୍ୟାରେ ପ୍ରବିଷ୍ଟ ହେଲେ ।

ଏହି ଟୀକାଳଗ୍ରନ୍ଥ ଖଣ୍ଡପଡ଼ାସ୍ଥ କୁମ୍ଭାରପଡ଼ାର ଜଣେ ବ୍ରାହ୍ମଣଙ୍କଠାରେ ରହିଥିଲା । ସେ ତାହା ବରପଲ୍ଲିର ଚିତ୍ରକାର ଜଣକୁ ବିକ୍ରୟ କରିଥିଲେ । ଏମନ୍ତ କି ପାଞ୍ଚଗଡ଼ର ଜଣେ ଓଡ଼ିଶା ବୁଢ଼ା ତାହାର ଉତ୍ତରାଧିକାରୀ ରହିଥିଲା । ସେ ତାହା କପଟ ପାଇଥିଲା, ତାର ଇତିହାସ ନାହିଁ । କିନ୍ତୁ ତାର ପୁଅର ପୋଥି ଖଟୁଲିରୁ ଦୁଇଟି ଖେଳା ଆକାରରେ ତାହା ମିଳିଥିଲା । ଯୋଗକୁ ଜଣେ ବ୍ରାହ୍ମଣ ତାହା କାଗଜରେ ଅଶୁଦ୍ଧ ଶୁଦ୍ଧ କରି ଉତାରିଥିଲେ । କି ଦୁର୍ଯୋଗ, ମୂଳ ପୋଥି ଘର ପୋଡ଼ରେ ମଧ୍ୟ ଦଗ୍ଧ ହୋଇଗଲା ।

କିନ୍ତୁ ହଠାତ୍ ଦେଖିଲି ରଣପୁରର ଜଣେ ପଣ୍ଡିତ ଗୋଟିଏ ବହି ଉକ୍ତ ଷୋଳ ଛାନ୍ଦରେ ପ୍ରକାଶ କରିଅଛନ୍ତି । ସାମାନ୍ୟ ସାମାନ୍ୟ ପ୍ରଭେଦ ଏ ସଂଗ୍ରହ ସହିତ ତାହାର ଦେଖାଯାଏ । ନରସିଂହପୁର ଘଣ୍ଟପଡ଼ାର ଏକ ପୁରାତନ ବୃଦ୍ଧ ପାଲିକାର କିନ୍ତୁ ଉକ୍ତ ଷୋଡ଼ଶ ଛାନ୍ଦ ମଧ୍ୟରୁ ଷଷ୍ଠ ଓ ସପ୍ତମ ଛାନ୍ଦର ପ୍ରାୟ ସମସ୍ତ ପଦ ମୁଖସ୍ଥ କରି ଗାଇପାରୁ ଥିବାର ଶୁଣି ତାହା ଜଣକ ଦ୍ୱାରା ମିଳାଇ ଦେଖିଲି କିଛି ଭେଦ ନାହିଁ । ଭିକାରୀ ନାମକ ନୂଆଗଡ଼ ଗଡ଼ର ଜଣେ ବ୍ୟକ୍ତି ମଧ୍ୟ କେତୋଟି ଛାନ୍ଦ ଛପାଇ ଅଶୁଦ୍ଧ ଭାବରେ ପ୍ରଚାର କରିବାର ଦେଖିଲି । ଏମନ୍ତ କି ଆଉ କେତୋଟି ଅଶୁଦ୍ଧ ଛାନ୍ଦ ଛପା ବହି ଥିବାର ମଧ୍ୟ ମୋ ଦୃଷ୍ଟିକୁ ଆସିଛି ।

ସମ୍ପୂର୍ଣ୍ଣ ୫୨ ଛାନ୍ଦ କୌଣସିମତେ ସଂଗ୍ରହ କରି ହେଲା ନାହିଁ । ତେବେ ଏହା ପରେ ଯେଉଁ ଛାନ୍ଦଗୁଡ଼ିକ ମିଳିଅଛି ତନ୍ମଧ୍ୟରେ—

୧—ସୀତାଙ୍କୁ ହରାଇବା ପରେ ରାମଚନ୍ଦ୍ରଙ୍କ ଶୋକ ଏବଂ ବାଳୀବଧ । ଏହାର ରାଗ କାମୋଦୀ । ଏହା ୨୦ ପଦରେ ସମ୍ପୂର୍ଣ୍ଣ । ଏହାର ମୂଳପଦ 'ସଲକ୍ଷଣ ଲକ୍ଷଣ' ।

୨—ସୁଗ୍ରୀବ ରାଜା ହୋଇ ମିତ୍ର ରାମଙ୍କୁ ଭୁଲିଯିବାରୁ ଲକ୍ଷ୍ମଣଙ୍କର କିଷ୍କିନ୍ଧ୍ୟା ରାଜପୁରୀ ଗମନ । ଏହାର ରାଗ ରେଖୀ । ଏହା ୧୬ ପଦରେ ସମ୍ପୂର୍ଣ୍ଣ । ଏହାର ମୂଳ ପଦ—'ବନଜଜିତ ବଦନ ।'

୩—ଦୂତମାନଙ୍କ ସହିତ ହନୁମାନର ଲଙ୍କା ଯାତ୍ରା ବିବରଣ । ଏହାର ରାଗ 'ରଣବିଜେ' ହରି ଚଉତିଶା । ଏହା ୨୬ ପଦ ମାତ୍ର । ଏହାର ମୂଳ ପଦ 'ମିତ୍ରକୁ ଏକାନ୍ତେ ।'

୪—ସୀତା ଭେଟ । ରାଗ ରଣବିଜେ ଚଉତିଶା । ପଦ ୧୬, ଅସମ୍ପୂର୍ଣ୍ଣ ଛାନ୍ଦ ।

୫—ହନୁମାନର ରାବଣକୁ କଟୂକ୍ତି । ରାଗ କାମୋଦୀ । ୧୦ ପଦରେ ଏ ଛାନ୍ଦ ସମ୍ପୂର୍ଣ୍ଣ ହୋଇଅଛି । ଏହାର ମୂଳ ପଦ 'ଦ୍ୟୁମଣିଙ୍କ ସମ୍ଭୂତ ।'

୬—ହନୁମାନଙ୍କର ଲଙ୍କା ଦଗ୍ଧ । ରାଗ କୁମ୍ଭ କାମୋଦୀ । ଏହା ୩୫ ପଦରେ ସମ୍ପୂର୍ଣ୍ଣ । ଏହାର ମୂଳ ପଦ 'ବୁଧ ଶୁଦ୍ଧ ବୋଧ ଚରିତ ପ୍ରସିଦ୍ଧ' ଅଟେ ।

୭—ରାମଙ୍କ ସୈନ୍ୟ ସିନ୍ଧୁ କୂଳରେ ପ୍ରବେଶ । ରାଗ ବଙ୍ଗଳାଶ୍ରୀ । ଏହା ୧୬ ପଦରେ ସମ୍ପୂର୍ଣ୍ଣ । ମୂଳ ପଦ 'ଦ୍ୱିଜବର ବରଚାରୁ ସ୍ୱଭାବର ।'

୮—ବିଭୀଷଣ ଶରଣ ବିବରଣ । ଏହା ୩୨ ପଦରେ ସମ୍ପୂର୍ଣ୍ଣ । ରାଗ ବସନ୍ତ ଆହାରି । ମୂଳ ପଦ 'ପୂର୍ବ ଦେବତା ଶତ୍ରୁର ଭର୍ତ୍ତା ଆଗେ ଦୂତ ବାର୍ତ୍ତା କଲା ପ୍ରକାଶ ।'

୯—ଲଙ୍କାରେ ପ୍ରାଥମିକ ଯୁଦ୍ଧ ବିବରଣ । ରାଗ ରେଖୀ । ୧୦ଟି ପଦରେ ସମ୍ପୂର୍ଣ୍ଣ । ଏହାର ମୂଳ ପଦ 'କପିବଳଙ୍କ ପ୍ରବଳ ଚହଳ ଶୁଣି ଚପଳ ।'

ରାମଚନ୍ଦ୍ରଙ୍କର ଯୌବରାଜ୍ୟ ଏବଂ ବନବାସ ବିବରଣକୁ ଯେବେ ୧୮ଟି ଛାନ୍ଦ ବୋଲି ଧରାଯାଏ, ଯହିଁରେ ସୀତା ଠାବ ଯାଏ ଥିବାର ଅନୁମାନ କରାଯାଇପାରେ,

ତେବେ ଲଙ୍କାର ଯୁଦ୍ଧ ଏବଂ ରାବଣ ବଧ ସାରି ରାମ ଅଯୋଧ୍ୟା ପ୍ରବେଶ କରି ରାଜ୍ୟ ଲାଭ ଯାଏ ୧୮ ଛାନ୍ଦ ହେଲେ, ଗ୍ରନ୍ଥଟି ୬୨ ଛାନ୍ଦରେ ଶେଷ ହେବା ସମ୍ଭବ କରାଯାଏ । କିନ୍ତୁ ଦୁଃଖର ବିଷୟ ସେସବୁ ହଠାତ୍ ମିଳିପାରିଲା ନାହିଁ । ଅଥବା ମିଳିବା ମଧ୍ୟ ଅସମ୍ଭବ ହୋଇପାରେ । ଏହି ୮ଟି ଛାନ୍ଦ ମଧ୍ୟରୁ ପାଲାକାରମାନେ କେତୋଟିର ବହୁପଦ ନିରନ୍ତର ଗାଉଥିବାର ଶୁଣାଯାଏ । ତେଣୁ "ପୂର୍ବ ଦେବତା ଶର୍ବାଣୀଭର୍ତ୍ତା ଆଗେ ଦୂତ ବାର୍ତ୍ତା କଲା ପ୍ରକାଶ" ବା 'ସଲକ୍ଷଣ ଲକ୍ଷଣ' ଏ ପଦଗୁଡ଼ିକ ଏତେ ଲୋକପ୍ରିୟ ଏବଂ ପ୍ରଚଳିତ ଯେ ସାଧାରଣତଃ ସହସ୍ର ଜନ ତୁଣ୍ଡରୁ ସେସବୁ ଶୁଣା ଯାଇଥାଏ । ବାସ୍ତବିକ କବି ଯଦୁମଣିଙ୍କ ରାଘବ ବିଳାସର ବହୁ ଅଂଶ ନ ମିଳୁଥିଲେହେଁ ଏହି ଗୋଟେ ଦୁଇଟି ଛାନ୍ଦରେ ସେ ଯେ ଅମର ହୋଇ ରହିଛନ୍ତି, ଏଥିରେ ସନ୍ଦେହ ନାହିଁ ।

ଏହି ଗ୍ରନ୍ଥର ପ୍ରଥମାଂଶ ପ୍ରତି ଜନସମାଜର ଯେତେ ଆଗ୍ରହ ଥିବାର ଦେଖା ନ ଯାଏ ଶେଷାଂଶ ପ୍ରତି ତାର ଦଶଗୁଣ ଅଧିକ ଆଗ୍ରହ ଥିବାର ଆମେ ଜାଣିଥାଉଁ । ତେଣୁ ମନେ ହୁଏ କବିଙ୍କର ଶେଷାଂଶ ଅତି ମୂଲ୍ୟବାନ ଏବଂ ଲୋକପ୍ରିୟ ଥିଲା ।

କବିଙ୍କର ଏ ଗ୍ରନ୍ଥଟିର ସମସ୍ତ ଅଂଶ ନ ମିଳିପାରିଲା ବୋଲି ଯେ ତାଙ୍କ ଜ୍ଞାନଗରିମାର ପରିଚୟ ଯେତିକି ମିଳିଛି ତହିଁରୁ ତାହା ବୋଧଗମ୍ୟ ହେଉନ, ସେପରି କେବେ ନୁହେଁ । କାରଣ 'ପୂର୍ବ ଦେବତା' ଆଦ୍ୟରେ ଲେଖାଥିବା ଛାନ୍ଦ ଗୋଟିକ ଥିଲେ ମଧ୍ୟ ଆମେ ତାଙ୍କର ଶାଶ୍ୱତ ପ୍ରତିଭା ସେଇଥିରୁ ପାଇଥାନ୍ତୁ ।

ଯେବେ ନ ମିଳୁଥିବା ଛାନ୍ଦଗୁଡ଼ିକ କେଉଁଠି କାହାଠି ଥାଏ, ଆଜି ଗୋପନ ନ କରି ପ୍ରକାଶ କରିଦେବା ବିଜ୍ଞତାର କାର୍ଯ୍ୟ ହେବ । କିନ୍ତୁ ଏକଥା ଶୁଣିବ କିଏ ? ଯେଉଁମାନଙ୍କଠାରେ ଏସବୁ ଥିବ ସେ ଘରପୋଡ଼ିରେ ନଷ୍ଟ କରି ଦେବେ ପଛକେ ଛୁଆଁଇ ଦେବେ ନାହିଁ । ଜଣେ ଭଦ୍ରବ୍ୟକ୍ତି ସ୍କୁଲ ମାଷ୍ଟର ନୟାଗଡ଼ର ଇତିହାସ ପାଖରେ ରଖିଅଛନ୍ତି । ମତେ ସାକ୍ଷାତରେ କହିଲେ—"ଯାହା ଆପଣ ପଚାରିବେ ମୁଁ ତାହା ଲେଖି ପଠାଇଦେବି" । ୧୦।୧୨ ଥର ଚେଷ୍ଟା କଲି—ନାନା ସୂତ୍ରରେ । ତା ସେ କେବେ ଦେଲେ ନାହିଁ । ସେପରି ନୂଆଗଡ଼ ରାଜବଂଶର ଇତିହାସ ଯେଉଁ ସେ କ'ଣ ଗୋଟାଏ କରି ପକାଇବେ । ଏଇ ତ ଆମ ଶିକ୍ଷିତଙ୍କ ମତିଗତି ।

ପଲ୍ଲୀ ଗାଆଁର ପାଲିକାର, ଛାନ୍ଦ ଗାୟକ, ଠୁଣୁଠୁଣୁକିଆ ପଣ୍ଡିତ ତାଙ୍କ ପାଣ୍ଡି କେବେ କାହାକୁ ଦେଖାଇଦେବେ ? ଏ ଦେଶର ଏପରି ବହୁ ଦୁର୍ମୂଲ୍ୟ ଗ୍ରନ୍ଥ ନଷ୍ଟ ହେଲାଣି । ଏପରି କି ଏବେ ମଧ୍ୟ ହେଉଛି । ସେମାନେ ଛୁଆଁଇଦେବା ଦୂରେ ଥାଉ ଦେଖାଇ ଦେବେନ । ଏପରି ପୋଥି ଲୁଚେଇ ରଖିଥିବା ବ୍ରାହ୍ମଣମାନଙ୍କୁ ଏ ବିଷୟରେ ଅନେକେ ଟାଳି ଦେଇଥାନ୍ତି । ଏବେ ପଣ୍ଡିତ ବିନାୟକ ମିଶ୍ରଙ୍କ ସହିତ ଦିନେ ସାକ୍ଷାତ ହେଲି । ଶୁଣିଲି ପଣ୍ଡିତ ମହାଶୟ ରାଘବ ବିଳାସରୁ ୩୭ ଛାନ୍ଦ

ଯାଇଛନ୍ତି ଏବଂ ତାହା ପ୍ରକାଶିତ କରିବା ଇଚ୍ଛାରେ ଅଛନ୍ତି । ଏହା ଏକ ସୁସମ୍ବାଦ । ମୁଁ ଦେଖିଲି ଗାଁ ଗହଳର କି ବ୍ରାହ୍ମଣ, କି ଯାଏକ, କି ଚଷା, କି କରଣ, କି ଗୋପାଳ ସମସ୍ତେ ଲୋପ କରିଦେବେ ପଛେ, ତାଙ୍କ ନିକଟରେ ଥିବା ପୋଥି, ଖେଳା କାହାକୁ ଦେଖାଇ ଦେବେ ନାହିଁ । ଅଶିକ୍ଷା, କୁସଂସ୍କାର ସମୁଦାୟ ଦେଶର ପ୍ରତି ସ୍ତରେ ମାଡ଼ିବସିଛି । କେତେକ ଅତି ଶିକ୍ଷିତ ଯେ ଏଥିରୁ ସ୍ୱତନ୍ତ୍ର, ତା ମଧ୍ୟ ବିଶ୍ୱାସ କରି ହୁଏନି । ସମ୍ବଲପୁରର ଏକ ପ୍ରାଚୀନ ଇତିହାସ ଜଣେ ଅତି ଉଚ୍ଚଶିକ୍ଷିତ ବ୍ୟକ୍ତି ନିଜେ ଲେଖିବେ ବୋଲି କାହାକୁ ଦେଖାଇ ଦେଲେନି କି ନିଜେ ଲେଖିଲେ ନାହିଁ । ସେ ମଲେ, ତାଙ୍କ ସାଥିରେ ସେ ଇତିହାସ ମଧ୍ୟ ଲୁଚିଗଲା । ବହୁକଷ୍ଟରେ ରାତି ରାତି ମୁଁ କପି କରି ଆଣିଲି ।

ମୁଁ ନିଜେ ଦେଖିଛି ଖଣ୍ଡପଡ଼ାର ଜଣେ ପଣ୍ଡିତ ବାଣୀଭୂଷଣ ଯେ କି ସକାଳୁ ନିତ୍ୟକର୍ମ ସାରିଦେଇ ବିନା ଶୁଳ୍କରେ ବିଦ୍ୟା ଦାନ ଦେବାକୁ ଦୁଆର ଦୁଆର ତାଙ୍କ ଜୀବ ଥିବାଯାଏ ବୁଲନ୍ତି, ତାଙ୍କର ଏ ଅନୁକମ୍ପାକୁ ଲୋକେ ମୂର୍ଖତା ଦୋଷରୁ ପରିହାସ କରି ଆଜି ଏପରି ହୋଇ ପଡ଼ିଛନ୍ତି ଯେ, ଯେଉଁଠି ସଂସ୍କୃତ ବିଦ୍ୟାର କେନ୍ଦ୍ର ଥିଲା, ପାଞ୍ଚ ପଚିଶ ମହାନ ପଣ୍ଡିତଙ୍କୁ ଧରି କରଣ, ମାଳୀ, ଚଷା ମଧ୍ୟ ବ୍ରାହ୍ମଣଙ୍କ ସହିତ ନ୍ୟାୟ, ତର୍କ, ଜ୍ୟୋତିଃଶାସ୍ତ୍ର ଚର୍ଚ୍ଚା କରୁଥିଲେ, ଆଜି ଖୋଜିଲେ ସେଠାରେ ଜଣେ ମଧ୍ୟ ମିଳିବେ ନାହିଁ । ଯେ ଜଣେ ଅଧେ ଅଛନ୍ତି ସେ ମଧ୍ୟ ଅବହେଳିତ ।

ସେ କାଳ ପଣ୍ଡିତ ଥିଲେ କ'ଣ ? ପୁଣି ଏବର ଐତିହାସିକ, ସାହିତ୍ୟିକ, ପ୍ରତ୍ନତତ୍ତ୍ୱଜ୍ଞ, ଆଦି ପଣ୍ଡିତଙ୍କୁ ସଂଶୟ ମୋଚନ ଲାଗି ପାଞ୍ଚ ଖଣ୍ଡ ଚିଠି ଲେଖିଲେ, ନୂଆ ପାଞ୍ଚ ପଇସା ଖର୍ଚ୍ଚ କରିବାକୁ ସେ ଅମେମାନ ମଣୁଛନ୍ତି । ଶାସ୍ତ୍ର, ଜ୍ଞାନ, ଗୀତ, ଧର୍ମ ଏସବୁ ସହଜଲଭ୍ୟ ନ ହେଲେ ଆପେ ଆପେ ଲୁପ୍ତ ହୋଇଯାଏ । ଏଠାରେ ତାହା ହିଁ ହେଉଛି ।

ଯଦୁମଣିଙ୍କର ଚଉପଦୀ କେତେ ଥିଲା କହିହେବ ନାହିଁ । ଅଥଚ ମୁଁ ବହୁ କଷ୍ଟରେ ସେଥିରୁ ମୋଟେ ୩୦ ଗୋଟି ସଂଗ୍ରହ କରିପାରିଲି । ଓହୋ ! ସେ ସଂଗ୍ରହରେ ମୁଁ ଏପରି ଭାବରେ ଏକ ହୃଦୟହୀନ ଲୋକର ଦ୍ୱାରସ୍ଥ ଦଶ ପଚିଶ ଥର ହୋଇ ନିରସ୍ତ ହେଲି । ସେ ମୋଠୁ ମୁଁ ତାଙ୍କ ରାଜ୍ୟର ଦେବୋତ୍ତର ମାନେଜର ହେତୁ ଏକ ଉପକାର ଯାଚଞ୍ଚା କଲେ । ତାହା ମଧ୍ୟ ମୁଁ କରିଦେଲି । ଦେଖିଲି ସେ ପୁଣି ମତେ ଠକିଲେ । ଇଚ୍ଛା କରିଥିଲେ ମୁଁ ତାଙ୍କୁ ଯେଉଁ ସୁବିଧା କରି ଦେଇଥିଲି, ତାହା ଖାରଜ କରିଦେଇ ପାରିଥାନ୍ତି । କିନ୍ତୁ ସେପରି ଅନୈତିକତା ମତେ କରି ଆସେନି । ଲଜ୍ଜାରେ ମୁଣ୍ଡ ତଳକୁ ହେଲା । ପାଠକ ତାଙ୍କର ନାମଟି ଜାଣିବାକୁ ଇଚ୍ଛା କରି ପାରନ୍ତି । ସେ ନରସିଂହପୁର କୋକଳବା ଗ୍ରାମର ପ୍ରଖ୍ୟାତ ଗାୟକ ଜଣେ ଶାସନୀ । ସେ ତ ଦେଲେ ନାହିଁ, ଭାବିଲି ଚେତେବେ ଏ ସଂଗ୍ରହରେ କ'ଣ ଚଉପଦୀ ବା

ଖଣ୍ଡଗୀତ ଏକାବେଳେ ଅଭାବ ରହିଯିବ ? ଏପରି ଦୁଶ୍ଚିନ୍ତାରେ ଅଛି, ଗୋଟିଏ ତରୁଣ କୃଷକ ସନ୍ତାନ ମୋର ଏ ବୈକଲ୍ୟ ଅନୁଭବ କରି ଜଣେ ପ୍ରବୀଣ ପାଲକାରଙ୍କ ଠାରୁ ସେ ଏପରି ନିଗୂଢ଼ ଚେଷ୍ଟାକଲା, ଯାହା ଫଳରେ ମୁଁ ଆଶାନୁରୂପ ଚଉପଦୀ ତାହାଠୁ ପାଇଗଲି । ଏଥିରେ ଜଣେ ମୂର୍ଖ ନାରୀ ପୋଥିଟିକୁ ସେ ତରୁଣଙ୍କୁ ଗୋପନରେ ଦିଅନ୍ତି, ପୁଣି ତାହା ସୁବିଧା ଦେଖି ଫେରସ୍ତ ନିଅନ୍ତି । ଏପରି ତିନି ଦିନରେ ସେ ଶ୍ରଦ୍ଧାସ୍ପଦ ଯୁବାଟି କାଗଜରେ ଲେଖି ମତେ ଯେପରି ଏହା ଯୋଗାଇଛନ୍ତି, ତାହା ଭୁଲିବାର ନୁହେଁ । ବହିରେ ଚୌପଦୀ ଅଂଶ ଛପା ସରିବା ପରେ ଆଉ ୨୦ଟି ଯାଏ ଗୋଟିଏ ସ୍ଥାନରେ ଥିବାର ମୁଁ ସନ୍ଧାନ ପାଇଲି । ସେ ସବୁ ଏହି ସଂସ୍କରଣରେ ଦିଆଯାଇ ପାରିଲା ନାହିଁ । ଦ୍ୱିତୀୟ ମୁଦ୍ରଣରେ ଯୋଗ କରାଯିବ ।

ଏଇ ହେଲା ସତ୍ୟ ସଂଗ୍ରହର ଇତିହାସ । ପ୍ରକୃତ ରଚନା ପ୍ରକାଶ କରିବା ଲାଗି ଚେଷ୍ଟା ନ କରି କେବଳ ଭୂମିକା ଲେଖି ଅଥବା ନିଜର ଶୁଷ୍କ ପ୍ରାଧାନ୍ୟଦ୍ୱାରା ଯାହା ଆମେ କରିଯିବା ତା ଦିନେ ନିଶ୍ଚୟ ଆମ ଯୋଗ୍ୟ ସନ୍ତାନଙ୍କଦ୍ୱାରା ଫିଙ୍ଗା ହେବ, ଏହା ମୋର ବିଶ୍ୱାସ । ଏପରି ଯେତେ ଠକେଇଆ କାମ ହୋଇଛି, ସେସବୁ ମାଟିରେ ମିଶିଯାଇଛି । କିନ୍ତୁ ଯାହା ମଣି ପରି ସମୁଜ୍ଜ୍ୱଳ ତାହା ଯେତେ ଲୁଚିଥିଲେହେଁ ଦିନେ ନିଜ ଜ୍ୟୋତିରେ ପ୍ରକାଶିତ ହୋଇଯିବ । ଅଢ଼େଇ ହଜାର ବର୍ଷ ତଳର ବୁଦ୍ଧ ପୁଣି ଚେଇଁ ଉଠିଛନ୍ତି । ବିଶ୍ୱଜଗତ ଅଶୋକଙ୍କ ଅନୁଶାସନ ପଢ଼ି ବିସ୍ମିତ ହେଉଛି—ଓହୋ ! କି ମନସ୍ୱିତା ସେହି ମହାନ ବ୍ୟକ୍ତିଙ୍କଠାରେ ରହିଥିଲା । ଯେ ଏତେବଡ଼ ସମ୍ଭ୍ରାନ୍ତ ଆସନରେ ବସି ଲେଖିଛନ୍ତି—ଲିପିକାର ପ୍ରମାଦରୁ ବା ରଚନା ଦୋଷରୁ ଏବଂ ଶୁଣିବା ବୁଝିବା ଗଲତିରୁ ମୋର ଏ ଅନୁଶାସନରେ ପ୍ରମାଦ ରହିପାରେ କିନ୍ତୁ ମୋର ନୁହେଁ । ବାସ୍ତବିକ ତାଙ୍କର କି ହୃଦୟବତ୍ତା, କି ଦୂରଦର୍ଶିତା ନ ଥିଲା ।

ସେ ଯାହାହେଉ—ରାଘବ ବଳାସର ଯେଉଁ ୨୪ଟି ଗୀତ ସଂଗୃହୀତ ହୋଇଛି ତାହା ଏପରି ଅସଂବଦ୍ଧ ଥିଲା ଯେ ତାହାକୁ ଶୃଙ୍ଖଳାକୁ ଆଣିବାକୁ ବହୁତ କଷ୍ଟ ସ୍ୱୀକାର କରିବାକୁ ହୋଇଛି । ପୁନଶ୍ଚ ପାଠାନ୍ତର ଏତେ ଅଧିକ ଯେ କେଉଁଟି ଠିକ୍ ଧରିବା ସହଜ ହୁଏ ନାହିଁ । ଧରାଯାଉ ଗୋଟିଏ ଗୋଟିଏ ପଦକୁ ପାଞ୍ଚ ପ୍ରକାର କରି ବିଭିନ୍ନ ସଂଗ୍ରହ ସ୍ଥଳୀରୁ ମିଳିଛି । ଗୋଟିଏ ସରଳ ପଦକୁ ନିଜରରୂପେ ଦେଲେ ତାହା ସହଜରେ ଜଣାଯିବ ।

'ନାରୀ ବହୀନେ ବାରଧି ଖାସେ ତନୁ ନାଶିବ ବୋଲ ଆସିଥିବ' । ଏହାକୁ ବିଭିନ୍ନ ପାଲକାର ତଳ ଲେଖାନୁସାରେ କପରି ପଢ଼ନ୍ତି ଦେଖାଯାଉ—

**ନାରୀ ବହୀନେ ବାରଧିନାଶେ ତନୁ ଖାସିବା ଇଚ୍ଛି ଆସିଥିବ,**
**ନାରୀ ବହୀନେ ବାରଧିନୀରେ ତନୁ ଖାସିବ ବୋଲି ଅସିଥିବ ।**

**ନାରୀ ବହୀନେ ବାଣଧ୍ୱ ନାଶେ ତନ୍ ଝାସିବା ଆଣେ ଅସିଥିବ,**
**ନାରୀ ବହୀନେ ବାଣଧ୍ୱନୀରେ ତନ୍ ନାଶିବା ଆଣେ ଆସିଥିବ ।**

ଏଥିରୁ କେଉଁଟି ଯେ କବ ଲେଖିଥିଲେ ସ୍ଥିର କରିବା ମୁସ୍କିଲ୍ ।

ନାଶେ, ଝାସେ, ମାରେ, ପୁନଶ୍ଚ ଝାସିବା ଇଚ୍ଛି, ନାଶିବ ବୋଲ, ଝାସିବ ବୋଲ, ଝାସିବା ଆଶେ, ନାଶିବା ଆଶେ ଇତ୍ୟାଦି ପ୍ରୟୋଗ ମଧ୍ୟରୁ—'ନାସ୍ତ ବହ୍ନୀନେ ବାଣଧ୍ୱ ଝାସେ ତନୁ ନାଶିବ ବୋଲ ଆସିଥିବ' ପ୍ରୟୋଗ ଯୁକ୍ତିଯୁକ୍ତ ବୋଲ ମନେ ହେଉଛି । ପଣ୍ଡିତ ବନାୟକ ମିଶ୍ର ତାଙ୍କର ଏକ ପ୍ରବନ୍ଧରେ ଏହାହିଁ ଲିପିବଦ୍ଧ କରିଛନ୍ତି । ତା'ଛଡ଼ା ଏପରି ଲିପି ମଧ୍ୟ ଏକ ତାଳପତ୍ର ଖୋଜାରୁ ମିଳିଅଛି ।

ଏହାଛଡ଼ା ତାଙ୍କ ବଭିନ୍ନ ରଚନାରେ ପ୍ରମାଦ ଶତ ଶତ ଯେପରି ଥିଲା ତାହା ମଧ୍ୟରୁ ଗୋଟିଏ ମାତ୍ର ଉଦାହରଣ ଦେଲେ ଜଣାପିବ ଯେ, ପ୍ରକୃତ ରଚନା କପରି ଭାବରେ ଭ୍ରଷ୍ଟ ହୋଇ ଯାଇଥିଲା । ଗୋଟିଏ ଛପା ବହିରେ ଏ ଚଉପଦୀଟି ଥିଲା—

**ଓଜଶୀଲ ଭୁଜ ଗଜ ଜୀବନ ହରଣେ ଗଜ**
**ଅର୍ପଣ କଲ କୃପଣ ନୋହି**
**ଜଳ ଗ୍ରହଣେ କୁମ୍ଭୀର ମଳଗ୍ରହଣେ କୁମ୍ଭୀର**
**ରକ୍ଷା କଲ ସିନା କକ୍ଷା ବହି ହେ ମହାପ୍ରଭୁ !**

କନ୍ତୁ ଏହାର ଅର୍ଥ କପରି ଲୋକେ ସମଝିଲେ ମୁଁ ଜାଣେନ । ମୁଁ ଶତ-ଚେଷ୍ଟାରେ ବ୍ୟର୍ଥ ହୋଇଥିଲି । ହଠାତ୍ ପୋଥିରୁ ପଦ୍ୟଟି ପାଇଯିବାରୁ ସମଝିଲି ।

**ଓଜଶୀଳ ଭୋଜଗଜ ଜୀବନ ହରଣେ ତେଜ**
**ଅର୍ପଣ କଲ କୃପଣ ନୋହି**
**ଗଭୀର ଜଳେ କୁମ୍ଭୀର ଗଳ ଗ୍ରହଣେ କୁମ୍ଭୀର**
**ଜୀବ ରକ୍ଷାକଲ କକ୍ଷା ବହି ହେ ।**

ବଶେଷରେ ଯଦୁମଣି ତାଙ୍କର କବତାମାନ ଲେଖନ ତାଳପତ୍ରରେ ଲେଖିଥିଲେ । ସେ ଏକା କାହିଁକ ତାଙ୍କର ସମସାମୟିକ ଏମନ୍ତ କ ତାଙ୍କ ପୂର୍ବଜ ଭଞ୍ଜ, ଧନକୃଷ୍ଣ, ସାମନ୍ତସିଂହାର ଆଦ ସମସ୍ତଙ୍କର ତାଳପତ୍ର ଓ ଲେଖନ ହିଁ ଲେଖିବାର ଏକମାତ୍ର ଆଧାର ରହିଥିଲା । ଏବ କଥା—୧୯୧୯ ଯାଏଁ ତାଳପତ୍ର ଓ ଲେଖନ ପାଠ ଲେଖି ଶିଖିବାକୁ ଗଡ଼ଜାତ ଅଞ୍ଚଳ ସ୍କୁଲରେ ମଧ୍ୟ ଚଳୁଥିଲା । ସେ ଅଭ୍ୟାସ ଶିଶୁମାନଙ୍କଠାରେ ହସ୍ତକର୍ମ ଭାବରେ ରଖାଯାଇଥିଲା । ଇଂରେଜ ଆସିବା ପୂର୍ବରୁ କାଗଜର ପ୍ରଚଳନ ହୋଇଥିଲେହେଁ, ତାହା ରାଜକୀୟ ଭାବରେ

ସ୍ୱଳ୍ପ ମାତ୍ର ଥିଲା । ଯେଉଁ ଗଜପତି ହରେକୃଷ୍ଣ ଦେବ ହରେକୃଷ୍ଣପୁର ଶାସନ ବସାଇଥିଲେ (୧୭୨୫), ତାଙ୍କ ପୁତ୍ର ଗୋପୀନାଥ ଦେବ କାଗଜରେ ଯେଉଁ ସନନ୍ଦ ଲେଖିଥିଲେ ତାହା ମଧ୍ୟ ମୋଟାରେ ରହିଛି । ବୋଧ ହୁଏ ତା ପୂର୍ବରୁ ଓଡ଼ିଶାରେ ମଧ୍ୟ କାଗଜର ପ୍ରଚଳନ ହୋଇଥିଲା । କିନ୍ତୁ ସର୍ବତ୍ର ଲେଖନ ତାଳପତ୍ର ଥିଲା ପତ୍ର ଏବଂ ମସୀ । ବନ୍ଦୋବସ୍ତର ଉତ୍ତରଆମାନ ୧୮୯୭ ବନ୍ଦୋବସ୍ତରେ ତାଳପତ୍ରରେ ଲେଖାଥିବାର ପ୍ରମାଣ ଏବେ ମଧ୍ୟ ଅଛି । ତେଣୁ କାଗଜ ସର୍ବବ୍ୟାପକ ହୋଇ ପାରି ନ ଥିଲା ।

ଯଦୁମଣି ମହାପାତ୍ର ୧୮୭୭ ମସିହାରେ ସ୍ୱର୍ଗାରୋହଣ କରିଥିଲେ । ସେ ବଞ୍ଚିଥିବା ଯାଏ କାଗଜ କଲମ ପ୍ରତି ଆଦର କରି ନଥିଲେ । କାରଣ ତାଙ୍କର ପରବର୍ତ୍ତୀ ରଚନା ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ତାଳପତ୍ର ପୋଥିରେ ଲେଖାହୋଇ ରହିଛି । ସେ ମଧ୍ୟ ସୁନ୍ଦର ଭାବେ ତାଳପତ୍ରରେ ଲେଖିପାରୁଥିଲେ । ଏହି ତାଳପତ୍ର ଲେଖିବା ବିଧି ମଧ୍ୟ ପ୍ରତି ଓଡ଼ିଆ ଘରେ ଦଶହରା ଦିନ ୧୦ ବର୍ଷ ତଳେ ହେଉଥିଲା । ଏବେ ଅନେକ ଅଛି ।

ଏବେ ସ୍ୱାଧୀନତା ପାଇବା ପରେ ତାଳପତ୍ର ଯାତକ ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର, ଅଙ୍କ, ଶ୍ରୀ ଶୁଭମସ୍ତୁ, ନିମନ୍ତ୍ରଣ ପତ୍ରିକା, ଚିଠୋଉ, ଘଣ୍ଟାକର୍ଣ୍ଣ ରକ୍ଷାମନ୍ତ୍ର ଆଦିକୁ ଅସଭ୍ୟତାର ଦୃଷ୍ଟାନ୍ତ ବୋଲି ଲୋପ କରି ଦିଆଗଲେଣି । ସଭ୍ୟତା ତା ବଦଳରେ କ'ଣ ଆସିଲା ଜାଣି ହେଉନି । ଏଥିରୁ କେହି ଠିକ୍ କି ନ ବୁଝନ୍ତୁ ଯେ ଲେଖକ ଏ ପ୍ଲାଷ୍ଟିକ୍ ବା ମନୁଷ୍ୟର ଶୂନ୍ୟମଣ୍ଡଳ ପରିକ୍ରମା ଯୁଗରେ ତାଳପତ୍ର କୁଡ଼ିଆକୁ ଫେରିଯିବାକୁ ସଭ୍ୟତା ମନେ କରୁଛନ୍ତି । ଉଦ୍ଦେଶ୍ୟ ଆମର ସମୁଜ୍ଜ୍ୱଳ ଅତୀତର ସେହି ସେହି ସୁନ୍ଦର କୃଷ୍ଟି ଓ ସଂସ୍କୃତିମାନ ଏପରି ଅବହେଳାରେ ଫିଙ୍ଗିଦେବା କାହିଁକି ?

ସେ ଯାହାହେଉ ଯଦୁମଣି ମହାପାତ୍ର ତାଳପତ୍ରରେ ତାଙ୍କ ଗ୍ରନ୍ଥ ଲେଖିଥିଲେ । ତାହା କିଏ କମିତି ଶ୍ରଦ୍ଧାରେ ଗ୍ରନ୍ଥ ଅଧେ ଲେଖି ନେଇଥିଲେ— ତାଳପତ୍ରରେ । ଗଜବାଟୀ ପୋଡ଼ିରେ ତାଳପତ୍ର ପୋଥି ପୋଡ଼ିଗଲା । ମହାପାତ୍ରଙ୍କ କୃତି ମଧ୍ୟ ଅଧା ଛିଣ୍ଡାଥିଆ ହୋଇଗଲା ।

ବଡ଼ ଦୁଃଖର ବିଷୟ ଯେ—ପ୍ରଖ୍ୟାତ ଐତିହାସିକ ପଣ୍ଡିତ ବିନାୟକ ମିଶ୍ର ରାଘବ ବିଳାସ ସମ୍ବନ୍ଧରେ ତାଙ୍କର ମତାମତ ଦେବାକୁ ଯାଇ ଠାଏ ଲେଖିଛନ୍ତି—

"ଶ୍ଳେଷାଳଙ୍କାରର ଆଡ଼ମ୍ବର ନ ରଖି ବୈଦଗ୍ଧ ଭାଷା ବ୍ୟବହାର କଲେ ମଧ୍ୟ ପରିହାସ ପ୍ରଭୃତି କଥାରେ ଗୂଢ଼ତ୍ୱ, ରଚନାରେ କି ପ୍ରକାର ଫୁଟିପାରେ, ତାହା ମଧ୍ୟ ଯଦୁମଣି ଦେଖାଇଅଛନ୍ତି । ଯେତେବେଳେ ରାବଣ ପାରିଷଦଗଣରେ ବସିଥିଲା ସେତେବେଳେ ରାମ ଦାଶରଥିଙ୍କ କୂଳରେ ପହଞ୍ଚିବାର ସମ୍ବାଦ ଦୂତ ଦେଲା । ତାହା ଶୁଣି ରାବଣ ଯାହା କହିଲା ତହିଁର ଦୃଷ୍ଟୋକ୍ତି ବିଭୀଷଣ ମୁଖରୁ "ରାଘବ ବିଳାସ"ରେ ଯଦୁମଣି ଶୁଣାଇଅଛନ୍ତି—

ପୂର୍ବ ଦେବତା ଶର୍ବରୀ ଭର୍ତ୍ତା ଆଗେ
ଦୂତ ବାର୍ତ୍ତା କଲା ପ୍ରବେଶ
ଅଶୋକ ବନେ ସଶୋକେ ଥିବା ବଧୂ-
ବନ୍ଧୁ ସିନ୍ଧୁ କୂଳେ ପ୍ରବେଶ ।
ହାସ୍ୟ ରସରେ—
ଭାଷି ବୋଲଇ ଦଶଗ୍ରୀବ
ନାରୀ ବହୀନେ ବାରଧି-ଝାସେ ତନୁ ନାଶିବ ବୋଲି ଆସିଥିବ ।
ବଦତ ଅନୁଜ ପବନ ତନୁଜ ଆଗମନୁ ଯାଉଛୁ ଦେଖା
ଟେକିଲା ଗାତ୍ର ସେ ଗୋତ୍ରାନ୍ତକ ଜିତ କୋପେ ପ୍ରଜ୍ୱଳ ଅଗ୍ନି ଶିଖା ।
କର୍ମ ଲଙ୍କେଶ୍ୱର
ତହୁଁ ଅନାଇଲା ନନ୍ଦନେ
ପ୍ରଶସ୍ତ ମସ୍ତକେ ହସ୍ତେ ନ୍ୟସ୍ତ କରି ବହିଲା ଏ ଭାଷା ବଦନେ ।

ଅଶୋକ ବନରେ ଶୋକରେ ଥିବା ବଧୂର ସ୍ୱାମୀ ସିନ୍ଧୁ କୂଳରେ ପହଞ୍ଚିବାର ବାର୍ତ୍ତା ଦୂତ ପହଞ୍ଚାଇବାରୁ ଅସୁର କୁଳଚନ୍ଦ୍ର (ପୂର୍ବଦେବତା—ଶର୍ବରୀଭର୍ତ୍ତା) ରାବଣ କହିଲା, 'ସ୍ତ୍ରୀ ବିଚ୍ଛେଦଜନିତ ଶୋକ ହେତୁରୁ ସମୁଦ୍ର ଗର୍ଭରେ ଝାସ ଦେବାକୁ ଆସିଥିବ ।' ବିଭୀଷଣ (ରାବଣଅନୁଜ) କହିଲେ "ହନୁମାନ ଆସିବା ଦିନରୁ ତାହା ଜଣା ପଡ଼ିଲାଣି ।"

ଯେ କାପୁରୁଷ, ସେ ଲାଞ୍ଛନା ସହି ନ ପାରି ଆତ୍ମହତ୍ୟା କରେ । ବୀର ପୁରୁଷ ଲାଞ୍ଛନାର ପ୍ରତିଶୋଧ ନେବାପାଇଁ ଅକ୍ଲାନ୍ତ ଭାବରେ କର୍ମ କରେ । ଯାହାର ମାଙ୍କଡ଼ଟାଏ ଯାହାର ଦୂତ ହୋଇ ଲଙ୍କା ଛାରଖାର କରିଦେଲା, ତାହାକୁ କାପୁରୁଷ ମଣି ସେ ସମୁଦ୍ରରେ ଝାସ ଦେବା ପାଇଁ ଆସିଥିବ ବୋଲି ଅନୁମାନ କରିବା ଅବିବେକତାର ପରିଚୟ—ଏହା ବିଭୀଷଣ ରାବଣକୁ ଚେତାଇ ଦେଲେ । ଏଥିରେ ରାବଣର କ୍ରୋଧ ଜାତ ହେଲା ।

ଭାଷା ଶୃଙ୍ଖଳା କବି ପ୍ରତିଭାର ବଡ଼ ଲକ୍ଷଣ । ଏହାର ବିକାଶ ପାଇଁ ଆଳଙ୍କାରିକମାନେ ଏହାର ଶ୍ରେଣୀ ବିଭାଗ କରନ୍ତି । ଭାଷା ଶୃଙ୍ଖଳାକୁ କେହି ସୀମାବଦ୍ଧ କରି ନ ପାରେ । ବିଭୀଷଣ ଶରଣ ପଶିବା ଉତ୍ତାରୁ ରାବଣକୁ ମାରି ବିଭୀଷଣକୁ ଲଙ୍କାର ରାଜା କରିଦେବେ ବୋଲି ରାମ ଶପଥ କରିବାରୁ ସୁଗ୍ରୀବ ଓ ରାମଙ୍କ ମଧ୍ୟରେ ଘଟିଥିବା ପ୍ରଶ୍ନୋତ୍ତର ଯଦୁମଣି 'ରାଘବ ବିଳାସ'ରେ କିପରି ବର୍ଣ୍ଣନା କରି ଅଛନ୍ତି, ତାହାହିଁ ଭାଷା ଶୃଙ୍ଖଳାର ଅନ୍ୟ ଏକ ଉଦାହରଣ ।

**କହେ ମିତ୍ର ପୁତ୍ର ହୋଇଲା ବିଚିତ୍ର**
**ଚିତ୍ରଭାନୁ କୁଳାମ୍ବୁଜକୁ**
**ସମର୍ପି ଜନକ-ତନୁଜା କନକ-**
**ମହୀନ୍ଦ୍ର ଚରଣାମ୍ବୁଜକୁ**
**କଲେ ଆଶ୍ରିତ**
**କି ହେବ ଶ୍ରବଣେ ରାଘବ,**
**ଭଣିଲେ ଜାଣିବା ବିଧି ବିଧି ନାହିଁ**
**ରାଜ୍ୟ ଭ୍ରଷ୍ଟ କଷ୍ଟ ଲାଘବ ।**

ସୁଗ୍ରୀବ (ମିତ୍ରପୁତ୍ର— ସୂର୍ଯ୍ୟପୁତ୍ର) କହିଲେ— "ସୂର୍ଯ୍ୟବଂଶର ପଦ୍ମସ୍ୱରୂପ (ଚିତ୍ର ଭାନୁକୁଳ ମ୍ବୁଜ) ଆପଣଙ୍କ ନିକଟରେ ଏ ଶପଥ ବଡ଼ ବିଚିତ୍ର ଅଟେ । କାରଣ ଆପଣ ଭବ ଚିନ୍ତା ଏ ଶପଥ କରିନାହାନ୍ତି । ସ୍ୱର୍ଣ୍ଣଭୂମିର ରାଜା (କନକ ମହୀନ୍ଦ୍ର) ରାବଣ ସୀତାଙ୍କୁ ଫେରାଇ ଆପଣଙ୍କ ପାଦପଦ୍ମରେ ଶରଣ ପଶିଲେ ଆପଣ ବିଭୀଷଣଙ୍କୁ ରାଜତ୍ୱ ଦେଇ ନ ପାରି ସୂର୍ଯ୍ୟବଂଶରେ ଜାତ ହୋଇ ଶପଥ-ଭଙ୍ଗର କଳଙ୍କ ଅର୍ଜିବେ ।" ରାମ କହିଲେ, "ସେତେବେଳେ ମୁଁ ବୁଝିବି ଯେ, ବିଧାତା ମୋ ଭାଗ୍ୟରେ ରାଜ୍ୟଭ୍ରଷ୍ଟ-କଷ୍ଟ ଊଣା ହେବା ପାଇଁ ଲେଖି ନାହାଁନ୍ତି । ଅର୍ଥାତ୍ ଅଯୋଧ୍ୟାର ରାଜତ୍ୱ ଦେଇ ମୁଁ ଆଜୀବନ ବନବାସୀ ହେବି ।"

## ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର

ଏହା ତାଙ୍କର ଦ୍ୱିତୀୟ କାବ୍ୟଗ୍ରନ୍ଥ । ସେ ଗୌଡ଼ୀୟ ବୈଷ୍ଣବ ଦୀକ୍ଷା ଗ୍ରହଣ କରି ନିଷ୍ପାପ ହେବା ମାନସରେ କୃଷ୍ଣ ଚରିତ ଆରମ୍ଭ କରି ଷୋଡ଼ଶ କଳାରେ ରୁକ୍ମିଣୀଙ୍କ ଚରିତକୁ ଲେଖିବାକୁ ଭାବନା କରି ଗ୍ରନ୍ଥର ନାମ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଦେଇଥିଲେ । ଯେଉଁ ପ୍ରବନ୍ଧ ବା କବିତା ପୂର୍ଣ୍ଣଚନ୍ଦ୍ର ପରି ମାଧୁର୍ଯ୍ୟସମ୍ପନ୍ନ ଏବଂ ମନୋହାରୀ, ତାହା ଷୋଳ କଳାରେ ସମ୍ପୂର୍ଣ୍ଣ ହେବ । କିନ୍ତୁ ଆଠ କଳାରେ ରୁକ୍ମିଣୀଙ୍କୁ ବିବାହ କରାଇ ସାରି ତେଣିକି କଣ କରିବେ ହୁଏତ ସ୍ଥିର କରି ନ ପାରି ବା ଦାରିଦ୍ର୍ୟର କଷାଘାତରେ କଳ୍ପନା ମଧ୍ୟ ଭୁଲି ଯାଇଛନ୍ତି । ଅନ୍ୟ ଆଠ କଳାରେ ଜରାସନ୍ଧ ବଧଯାଏ ଅଥବା ରୁକ୍ମିଣୀଙ୍କ ବିହାର କ୍ରୀଡ଼ା ଆଦି ରସିକ କବି ବର୍ଣ୍ଣନା କରି ସନ୍ତାନସନ୍ତତି ଜନ୍ମ ବିବରଣ ଦେଇଥାନ୍ତେ । କିନ୍ତୁ ଜଣାଯାଏ ତାହା ସେ ଆଦୌ ଏହି ଆଠ ଛାନ୍ଦ ପରେ ଲେଖି ନାହାନ୍ତି । କାରଣ ତାଙ୍କ ଘରେ ଥିବା ତାଙ୍କ ଲିଖିତ ପୋଥି ଖଣ୍ଡି ଆଠଟି କଳାରେ ସମ୍ପୂର୍ଣ୍ଣ ଅଟେ ।

ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଖଣ୍ଡିକ ସେ ଲେଖିଥିଲେ, ସାହିତ୍ୟିକ ଏବଂ କବି ହିସାବରେ ଅତି ଶ୍ରେଷ୍ଠତମ ଆସନ ସେ ଉତ୍କଳ ସାହିତ୍ୟ କାହିଁକି ବିଶ୍ୱ ସାହିତ୍ୟରେ ଲାଭ କରିଥାନ୍ତେ, ଏହା ନିଃସନ୍ଦେହ । ତାଙ୍କର ରଚନାର ବିଷୟବସ୍ତୁ ପୁରାତନ ଚର୍ବିତ ଚର୍ବଣ । ତେଣୁ କେହି କହିପାରେ କି ନୂତନତା ସେଥିରେ ଅଛି ? କିନ୍ତୁ ତାଙ୍କର ଏହି ଆଠଟି କଳା ବା ଗ୍ରନ୍ଥ ରଚନାର ପ୍ରତିପଦ ହିଁ ଆର ସମସ୍ତ ରଚନାରୁ ସ୍ୱତନ୍ତ୍ରତା ଦାବି କରେ । ତାଙ୍କର ଲେଖନୀ ଭଙ୍ଗି ଏତେ ସ୍ୱତନ୍ତ୍ର ଯେ ତାହା କେଉଁ ସଂସ୍କୃତ ସାହିତ୍ୟ ସହିତ ମଧ୍ୟ ସାମ୍ୟ ରଖି ନ ଥାଏ, ଅବଶ୍ୟ ତାଙ୍କ ରଚନାରେ ଅତ୍ୟଧିକ ଅଦ୍ଭୁତ ରସର ଅଳଙ୍କାର ଦେଖାଯାଏ, ମାଘ କାବ୍ୟ ଅଧ୍ୟୟନ କରି ସେ ଅତ୍ୟଦ୍ଭୁତ ରସ ପ୍ରତି ଅଧିକ ଢଳି ପଡ଼ିଥିଲେ ବୋଲି ଜଣାଯାଏ । ଯାହାହେଲେ ମଧ୍ୟ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟର ସେ ନିଶ୍ଚୟ ଅନୁସରଣ କରିଛନ୍ତି ।

ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରର ଆଠଟି କଳା ମଧ୍ୟରୁ ଏହିପରି ବିଷୟବସ୍ତୁ ସୂଚିତ ହୁଏ ।

**୧ମ କଳା**— ପୁସ୍ତକର ନାମକରଣ ଏବଂ ବିଷ୍ଣୁପଦର ସ୍ୱତନ୍ତ୍ର ମହାତ୍ମ୍ୟ ପୁଣି ଦ୍ୱାରକାପୁରର ବର୍ଣ୍ଣନା ଏଥିରେ ରହିଛି । ଏହା ରସକୁଲ୍ୟା ରାଗରେ ୩୭ ପଦରେ ସମ୍ପୂର୍ଣ୍ଣ ।

**୨ୟ କଳା**—ଦ୍ୱାରକାର ଭାଟ କର୍ତ୍ତୃକ ବିଦର୍ଭର ନଗରୀ କୁଣ୍ଡିନଟକର ମହତ୍ତ୍ୱ ବର୍ଣ୍ଣନା ଏବଂ ବିଦର୍ଭ ରାଜା ଭୀଷ୍ମକଙ୍କ ନିକଟରେ କୃଷ୍ଣଙ୍କର କୀର୍ତ୍ତି, ରୂପ, ଗଠନ ବର୍ଣ୍ଣନାରେ ରୁକ୍ମିଣୀଙ୍କର ତାଙ୍କୁ ଭର୍ତ୍ତା ଭାବେ ପାଇବାର ଅଭିଳାଷ । ଏହା ଆଷାଢ଼ ଶୁକ ରାଗରେ ୫୨ ପଦରେ ସମାପ୍ତ ।

**୩ୟ କଳା**—ଆହାରି ରାଗରେ ୪୦ ପଦରେ ରଚିତ । ବିଦର୍ଭ ଜେମାମଣି ରୁକ୍ମିଣୀଙ୍କର ସଖିଦଳ ସହିତ ବନ ବିହାର ବର୍ଣ୍ଣନା ଏବଂ ଦେବର୍ଷି ନାରଦ ଉକ୍ତ ଜେମାଙ୍କ ସାକ୍ଷାତ ଲଭି କୃଷ୍ଣଙ୍କୁ ବରଭାବରେ ପାଇବାକୁ ତାଙ୍କୁ ଆଶୀର୍ବାଦ ଜ୍ଞାପନ ।

**୪ର୍ଥ କଳା**—ରାଗ କନଡ଼ା । ୨୨ ପଦରେ ସମ୍ପୂର୍ଣ୍ଣ । କୃଷ୍ଣଙ୍କୁ ଏକ ଉପବନରେ ନାରଦ ଭେଟି, କୌଶଳରେ ତାଙ୍କଠାରେ ରୁକ୍ମିଣୀଙ୍କ ପ୍ରତି ପ୍ରଲୋଭନ ସଞ୍ଚାର କରି ବିଦାୟ ନେଲେ ।

**୫ମ କଳା**—ବ୍ଳେଶୀ ରାଗରେ ୩୫ ପଦରେ ଏ କଳାଟି ଲେଖାଯାଇଛି । (ବର୍ଣ୍ଣନା)—ବିଦର୍ଭ ନରପତି ଭୀଷ୍ମକ ନିଜଜେମାଙ୍କ ବିବାହ ପାଇଁ ବ୍ୟଗ୍ର ହେବା ବେଳେ ଏବଂ କୃଷ୍ଣଙ୍କୁ ଜ୍ୱାଇଁ କରିବାକୁ ଇଚ୍ଛା କରନ୍ତେ ତାଙ୍କର ଜ୍ୟେଷ୍ଠପୁତ୍ର ରୁକ୍ମୀ କୃଷ୍ଣଙ୍କର ନିନ୍ଦାକରି ଶିଶୁପାଳଙ୍କୁ ବରଣ କରିବାକୁ ପ୍ରବର୍ତ୍ତାଇଛନ୍ତି । ଫଳରେ ଭୀଷ୍ମକ ପୁତ୍ର ଭୟରେ ନିମନ୍ତ୍ରଣ କରନ୍ତେ ଶିଶୁପାଳ ବରଭାବେ ବିଦର୍ଭକୁ ଆସିଛନ୍ତି । ତା ଦେଖି ରୁକ୍ମିଣୀ କୃଷ୍ଣ ପ୍ରେମରେ ମଜ୍ଜିତ ରହି ଦୁଃଖାଭିଭୂତ ହୋଇ ପଡ଼ିଛନ୍ତି ।

**୬ଷ୍ଠ କଳା**—କାମୋଦ ରାଗରେ ୩୭ ପଦରେ ସଂପୂର୍ଣ୍ଣ । (ବର୍ଣ୍ଣନା)—ରୁକ୍ମଣୀ ସଖିମାନଙ୍କ ପ୍ରବର୍ତ୍ତନାରେ ଖଣ୍ଡିଏ ଚିଠି କୃଷ୍ଣଙ୍କୁ ଲେଖିଛନ୍ତି ଏବଂ ତାହା ଜଣେ ବିଶ୍ୱାସୀ ବ୍ରାହ୍ମଣ ନେଇ ଦ୍ୱାରକାରେ ଯଥା ସମୟରେ ପହଞ୍ଚାଇ, କୃଷ୍ଣଙ୍କୁ ରୁକ୍ମଣୀଙ୍କ ପ୍ରତି ବିଶେଷ ପ୍ରଲୋଭନ ଅଣାଇଛନ୍ତି । ଏପରିକି କୃଷ୍ଣ ଏକାକୀ ରଥ ଏବଂ ସାରଥୀ ସହିତ ବିଦର୍ଭାଭିମୁଖରେ ବାହାରିଛନ୍ତି ।

**୭ମ କଳା**—କଳହଂସକେଦାର ରାଗରେ ୫୧ ପଦରେ ସଂପୂର୍ଣ୍ଣ । ଏଥିରେ ବର୍ଣ୍ଣିତ ଅଛି ଯେ କୃଷ୍ଣ ଏକାକୀ ବିଦର୍ଭ ଅଭିମୁଖରେ ଚାଲିଯିବା ଖବର ଚରମାନଙ୍କଠାରୁ ଜାଣି, ବଳରାମ ମହାସମାରୋହରେ ରଥୀମାନଙ୍କ ସହିତ ବିଦର୍ଭରେ ପହଞ୍ଚି କୃଷ୍ଣଙ୍କୁ ଭେଟିଛନ୍ତି । ଏବଂ ସେମାନେ ଏକ ଉପବନରେ ବିଶ୍ରାମ କରିଛନ୍ତି । ଏହା ମଧ୍ୟ ଶିଶୁପାଳ, ରୁକ୍ମ ଜାଣିପାରିଛନ୍ତି । (ପରଂପରା ଚରଣଠାରୁ କବି ଏଠାରେ ନିଜର ସ୍ୱାତନ୍ତ୍ୟ ରକ୍ଷାକରି, କୃଷ୍ଣ ଅତ୍ୟନ୍ତ ଗୋପନରେ ରୁକ୍ମଣୀଙ୍କୁ ହରଣ କରି ନେବାକୁ ସମର୍ଥନ କରିନାହାନ୍ତି । ଲୋକଙ୍କ ଜ୍ଞାତସାରରେ ସେ ଆସିଥିବା କଥା ଜଣାଇଁ ଦେଇ କନ୍ୟା ହରଣ କରାଇଛନ୍ତି ।)

**୮ମ କଳା**—ଏହା ବସନ୍ତ ବୃତ୍ତରେ ୫୭ ପଦରେ ଲେଖାଯାଇଛି । (ବର୍ଣ୍ଣନା)—କୃଷ୍ଣ କାଲେ ନ ଆସିବେ ଏହି ଚିନ୍ତାରେ ବିବାହ ପୂର୍ବଦିନ ରୁକ୍ମଣୀ ହତଚେତନ ହୋଇଗଲେ । ତା ପରେ ସଖିଏ ଚେତାକରି ଦ୍ୱାରକାରୁ ଫେରିଥିବା ବ୍ରାହ୍ମଣଙ୍କ ଦ୍ୱାରା ଆଶ୍ୱାସ ସମ୍ବାଦ ଦେବାରୁ ସେ ଧୈର୍ଯ୍ୟ ଧରିଲେ । ଏହାପରେ ଜେମା ବିଧି ବିଧାନରେ ହିଅଁ ମଙ୍ଗଳାକୁ ବିଜେକଲେ । ସେଇଠି କୃଷ୍ଣ ଲୁଚିଥିଲେ । ରୁକ୍ମଣୀ ଦେବୀ ଦର୍ଶନ କରି ଫେରିବା ବେଳେ ତାଙ୍କୁ ରଥକୁ ନେଇ ଚାଲିଗଲେ । ଫଳରେ ବହୁ ସୈନ୍ୟ ସାମନ୍ତ ତାଙ୍କୁ ଘେରିଲେ । କିନ୍ତୁ ବଳରାମ ସେମାନଙ୍କୁ ଅଟକାଇ ଦେଲେ । ଦର୍ପି ରୁକ୍ମ ନମାନି ଚାଲିଯାଇ କୃଷ୍ଣଙ୍କୁ ଖିଷଣ ଗାଳିଦେଇ ଯୁଦ୍ଧ କରିବାକୁ ବାହାରିଲେ । କିନ୍ତୁ କୃଷ୍ଣ ତାଙ୍କୁ ଏକାନ୍ତ ଅପମାନ ଦେଇ ବନ୍ଦିକଲେ । ପଛରୁ ବଳରାମ ପହଞ୍ଚି ବନ୍ଧୁ ବୋଲି ପୁଣି ଉକ୍ତ ରୁକ୍ମଙ୍କୁ ମୁକ୍ତଦେଲେ । ତା ପରେ କୃଷ୍ଣ ଦ୍ୱାରକାକୁ ଯାଇ ରୁକ୍ମଣୀଙ୍କୁ ବିବାହ କରି ସୁଖୀ ହେଲେ ।

ଏ ହେଲା ସାଧାରଣ ବିଷୟ ବସ୍ତୁ । ଏ କାବ୍ୟଟି ଯତ୍ନ ସହିତ ପଢ଼ିଲେ ଜଣାଯିବ ଯେ ପ୍ରକୃତ ପାଣ୍ଡିତ୍ୟ ଯାହାକୁ କହନ୍ତି, ତାହା ଯଦୁମଣିଙ୍କଠାରେ ହିଁ ସମ୍ଭବିଥିଲା । ଶାସ୍ତ୍ରୋଜ୍ଜ୍ୱଳା ବୁଦ୍ଧି ଏପରି ଭାବରେ ପ୍ରତିଭା ସମ୍ମିଶ୍ରଣରେ ତାଙ୍କଠାରେ କିପରି ଫୁଟି ଉଠିଥିଲା, ତାହା ଭାବି ହୁଏନାହିଁ । ସେ ସମଗ୍ର ଶାସ୍ତ୍ର—ସମୁଦ୍ରକୁ ଯେପରି ମନ୍ଥନ କରି ତହିଁରୁ ଏ ଅମୃତ ସରସ୍ୱତୀ ଜାତ କରାଇ ଥିଲେ, ତା ସହିତ ପାରିଜାତ କୁଞ୍ଜର ଲକ୍ଷ୍ମୀଙ୍କୁ ମଧ୍ୟ ଜନ୍ମ ଦେଇଥିଲେ । ରୁକ୍ମଣୀ ସେପ କ ପୂର୍ଣ୍ଣବ୍ରହ୍ମ, ପରମପ୍ରେମିକ, ପରମ ପୁରୁଷ, ପରମ ପଣ୍ଡିତ, ଭାରତ ଇତିହାସର ପରମ ପ୍ରାଣପ୍ରାମାଣ୍ୟ, ପରମ

ସାମ୍ରାଜ୍ୟ ସଂସ୍ଥାପକ, ଚରମ ଦାର୍ଶନିକ, ଚରମ ଜ୍ଞାନୀ, ପରମ ଯୋଗୀ, ପରମ ନୀତିବିତ୍, ପରମ ତ୍ୟାଗୀ, ପରମ ଧର୍ମବେତ୍ତା, ସକଳ ସତ୍ୟତତ୍ତ୍ୱଜ୍ଞାତା ଏମନ୍ତ କି ସତ୍ୟ ସ୍ୱରୂପ କୃଷ୍ଣଙ୍କର ପ୍ରିୟତମା ପତ୍ନୀ, ଯେ କି ତାଙ୍କର ସଚିବ, ସଖୀ ପ୍ରିୟଶିଷ୍ୟା, ଗୃହିଣୀ ଏବଂ ଲଳିତକଳା ବିଧାୟିନୀ ଅଟନ୍ତି, ସେ କିପରି ବିଚକ୍ଷଣା ଥିଲେ, ତାହା ହିଁ ଯଦୁମଣିଙ୍କ ରଚନାରେ ଏକାନ୍ତ ଉପାଦେୟ ଭାବରେ ଏ ଗ୍ରନ୍ଥରେ ପ୍ରକଟିତ ହୋଇ ପାରିଛି ।

ଯଦୁମଣି ତାଙ୍କ ଗ୍ରନ୍ଥରେ ବିଚକ୍ଷଣା ରୂପସୀ ରୁକ୍ମିଣୀଙ୍କୁ ଅତ୍ୟୁଚ୍ଚ ଏକ କୋଠା ଉପରେ ତାଙ୍କର ପ୍ରିୟତମ ସଙ୍ଗିନୀଙ୍କ ମେଳରେ ହସଖେଳରେ ମାତିଥିବା ବେଳେ ପାଠକର ଦୃଷ୍ଟି ଆକର୍ଷଣ କରିଛନ୍ତି । ଯେ କି କ୍ରୀଡ଼ାରେ ରତ ଥାଇ ମଧ୍ୟ ନିମ୍ନତଳରେ ହେଉଥିବା ରାଜଦରବାରରେ କଣ ହେଉଛି ତା ଲକ୍ଷ୍ୟ କରୁଥିଲେ । ଶତ ଶତ ଭାଟ ନିଜ ରାଜ୍ୟର ଯୁବକ ରାଜା, ଯୁବରାଜଙ୍କ ପ୍ରଶଂସା କରନ୍ତି, କିନ୍ତୁ ସେଦିନ ନବପ୍ରତିଷ୍ଠିତ ଦ୍ୱାରକାର ଜଣେ ଭାଟ ଏପରି କଥାମାନ କହିଲା ଯହିଁରେ ସେ ଅଭିଭୂତ ହୋଇ ଏପରି ଅପାଙ୍ଗ ଢ଼ାଳିଦେଲେ ଯେ, ସଖିଏ ତା ଦେଖି କହିଲେ — ଜେମା ତୁ ଏକା ଶୁଣିନାହୁଁ, ଆମେ ବି ସେ ସୁନ୍ଦର ପୁରୁଷର ପ୍ରଶଂସା ଶୁଣିଛୁଁ । ହେଲେ ସେ ତ ଏଠାରେ ନାହିଁ, ଏହା କଥା ମାତ୍ର । ତୁ ଏପରି ଭାବରେ ଅପାଙ୍ଗ ଢ଼ାଳିଲୁ ଯେ ସେ ପୁରୁଷଟି ଏଠି ଥିଲେ ତ ତାହା ଦେଖି ସେ ମରି ଯାଇଥାନ୍ତା । ଏହା ଶୁଣି ଜଣେ ସଖି ବଙ୍କାଇ କହିଲା — 'ମରନ୍ତା କିପରି ? ରୁକ୍ମିଣୀର ହାସ୍ୟ ଅମୃତ ଅଛିତ ? ସେଥିରେ ସେ ବଞ୍ଚି ଆସନ୍ତା ନାହିଁକି ?'

**"ଅବରୋଧ ପ୍ରିୟ ସଙ୍ଗି ସଙ୍ଗରେ**
**ତୁଙ୍ଗ ଅଟ୍ଟାଳ ଉତ୍ସଙ୍ଗେ ରଙ୍ଗରେ**
**ଥିଲେ ଯେ ରୁକ୍ମିଣୀ କର୍ଣ୍ଣେ ବାଜିଲା**
**ଉଲ୍ଲାସ ତା ଭ୍ରୂଲତାରେ ରାଜିଲା**
**ସମସ୍ତେ ସଖୀଙ୍କୁ**
**ଚାହିଁ କର୍ଣ୍ଣାୟତ୍ତ କଲେ ଆଖିକୁ"** ।

କିନ୍ତୁ କବି ତାପରେ ଅନ୍ୟ କଳାରେ ବର୍ଣ୍ଣନା କରିଛନ୍ତି —

**କ୍ଷୀର ସାଗର ଉଦର ଆଦରିଛି ନବ ମନ୍ଦର ଜ୍ୟୋତି ସଙ୍ଗ**
**ଚନ୍ଦ୍ରୀ ନିଟିଧବ ଧବଳେ ମିଶିଛି ଅଧବଳ ବିଷ କୁରଙ୍ଗ .**
**ହାସେ ରମାର**
**ନୀଳିମାର ନାହିଁ ସଂଚର**
**ଏପରି ବିଦଗ୍ଧ କୀର୍ତ୍ତି ଯାର ଶୁଦ୍ଧ ସେହି ଏହି କଳା ବିଗ୍ରହ ।**

ଦୁଗ୍ଧ ସମୁଦ୍ର ସମ୍ପୂର୍ଣ୍ଣ ଧବଳ ନୁହେଁ । କାରଣ ତା ମଧ୍ୟରେ ବିଷ୍ଣୁଙ୍କ ନୀଳମେଘ ଭଙ୍ଗିମା ଅଙ୍ଗ ରହିଛି । ଶିବ ରଜତଗିରି ନିଭ ଧବଳ ହେଲେହେଁ ତାଙ୍କ କଣ୍ଠ ନୀଳହେତୁ ସେ ମଧ୍ୟ ଧବଳ ନୁହନ୍ତି । ନିଶିଧବ ଚନ୍ଦ୍ରମା ସମ୍ପୂର୍ଣ୍ଣ ଧବଳ ହେଲେହେଁ, ତାଙ୍କ ଅଙ୍ଗରେ କଳଙ୍କ ଚିହ୍ନ ରହିଛି । କିନ୍ତୁ ପୂର୍ବ ବର୍ଣ୍ଣିତ ନାୟିକା କେମାମଣି ରୁକ୍ମିଣୀର ହସରେ ଟିକେ ହେଲେ ମଳିମା ନାହିଁ । ଅର୍ଥାତ୍ ସେ ମୁଖ, ସେ ଦନ୍ତ, ସେ ମାଧୁର୍ଯ୍ୟରେ କଳଙ୍କର ବିନ୍ଦୁ ମଧ୍ୟ ନାହିଁ । ପୁନଶ୍ଚ ସେ ଏମନ୍ତ ସ୍ୱଚ୍ଛ ଏବଂ ମାଦକ ଯେ ତା ଦେଖିଲେ ବିଶ୍ୱ ପ୍ରଲୋଭିତ ହୋଇ ପଡ଼ିବ । ଏ କଥାର ବିସ୍ତାର ହେଲା ଏହି ଯେ ଯାହାର ବିଦଗ୍ଧ କାନ୍ତି ଏପରି ଶୁଦ୍ଧ ତା'ର କଥା ଲେଖାଯାଇଛି । ଏଥିରୁ ଜଣାଯିବ କବି ରୁକ୍ମିଣୀଙ୍କ ସମ୍ବନ୍ଧରେ କେତେ ଉଚ୍ଚଧାରଣା ପୋଷଣ କରିଛନ୍ତି ?

ତା ଛଡ଼ା କବିଙ୍କ ରଚନା ଦୃଷ୍ଟାନ୍ତ କଳାରେ ବହୁଳ ଭାବେ ବର୍ଣ୍ଣିତ ଅଛି ଯେ ରୁକ୍ମିଣୀ ବାହାରିଲାବେଳେ ପଥରେ ବକୁଳ ଫୁଲ ଝଡ଼ି ପଡ଼ିବା ଦେଖି ହୋଇ ତା ଉପରେ କେତକୀ ଫୁଲ ଭିତର ଧୂଳି ପିଞ୍ଜି ପାଉଥିଲା । ଏହା ଅବଶ୍ୟ ଭଞ୍ଜଙ୍କ ଅନୁକରଣ । (ଲାବଣ୍ୟବତୀ)

"ପରିଚାରି ବର୍ଗ ଆଚରିଲେ ମାର୍ଗ ମାର୍ଜନା ସିଦ୍ଧି ବେଗକରି
ଶିଳ୍ପ କଳ୍ପନାରେ କମଳ କୋମଳ ଦଳ ବହଳ କରିପାରି
ତହିଁ ଉପରେ, କେତକୀ ଗର୍ଭସ୍ଥ ରଜକୁ
ସୁପଟେ ପିଞ୍ଜୁଥିଲେ କରାଇଲେ ବିଜେ ଅବଳା ସମାଜ ରାଜକୁ । ୫ ।
( ଦୃଷ୍ଟାନ୍ତ କଳା )

ଏତଦ୍‌ବ୍ୟତୀତ ଜେମା ରୁକ୍ମିଣୀ କେଉଁ ଏକ ଭୂମିରେ ଜନ୍ମିଥିଲେ, ତାର ବର୍ଣ୍ଣନା ଯେପରି ସର୍ବୋତ୍ତମ ହୋଇଛି କୃଷ୍ଣଙ୍କର ଦ୍ୱାରକା ଏବଂ ସେ ନଗର କିପରି, ତାହା କବି ଅତି ନିଗୂଢ଼, ଶ୍ଳେଷମୟ ଭାଷାରେ ବର୍ଣ୍ଣନା କରି କବିତ୍ୱକୁ ଏକାବେଳକେ ନିଜସ୍ୱ କରି ନେଇଛନ୍ତି । ତାଙ୍କର କବିତାମାନଙ୍କ ମଧ୍ୟରୁ—

"ଲକ୍ଷ୍ମୀ ବିଳାସ ବିନ୍ୟାସ ବିନା ଲେଶ
ଲସିବ ନାହିଁ ଏ ମାରକ"
"ନେଲେ ହରି ହରି ହରିଣ ନେତ୍ରାକୁ
ବିହରି ଗଲା ଏହି ହରି"
"ପୁରୋଧା ନନ୍ଦନା ସାରି ବନ୍ଦାପନା
ମନ୍ତ୍ରିଦେଇ ଧନ୍ତ୍ରି-ପ୍ରସାଦ"
"ନନ୍ଦିଘୋଷକୁ ଇନ୍ଦିବର ସୁନ୍ଦର
ରୂଚାଇଡ ଥିଲେ ଅନନ୍ତେ"

—ଏପରି ଶତ ଶତ ପଦ ଆଜି ମଧ୍ୟ ଲୋକେ ପ୍ରବଚନ ଭାବରେ ଗାଁ ଗାଁରେ ଗାଉଥାନ୍ତି । ସୁର ଧରି ତାଙ୍କ କବିତା ଗାଇଦେଲେ ପର୍ବତରେ ଗଛରୁ ଫୁଲ ଝଡ଼ିପଡ଼ିବ । ପଥର ତରଳିଯିବ, ବାଘଭାଲୁ ଅପ୍ରତିହୋଇ ରହିଯିବେ ବୋଲି ପ୍ରବାଦଅଛି ।

**ମହେନ୍ଦ୍ର ମଣି ସୁନ୍ଦର ଯଦୁବୃନ୍ଦ ପୁରନ୍ଦର ଚୌର୍ଯ୍ୟ କନ୍ଦର**
**ନାଥ ଯା ପାଥୋଜ ପଦାଙ୍କେ ପକାନ୍ତି ମଥାମୁଦି ନେତ୍ର ପନ୍ଦର**
**ଅଷ୍ଟ ନେତ୍ରର**
**କଷ୍ଟ ହରଣେ ସେ କୁଶଳ**
**ଯାହା ରୋମମାଳ ଲତା ଆଲବାଳ ସଦୃଶ ବ୍ରହ୍ମାଣ୍ଡ ମଣ୍ଡଳ** (୩।୨୩)

କବି ତାଙ୍କ କବିତାରେ ଆଧୁନିକତାକୁ ମଧ୍ୟ ନିପୁଣ ଭାବେ ଯୁକ୍ତଯୁକ୍ତ ଭାବରେ ରଖିଛନ୍ତି । କିନ୍ତୁ ସେ ଏ କାବ୍ୟରେ ପ୍ରୟୋଜନମାତ୍ର-ଶବ୍ଦ ରକ୍ଷାକୁ କେବେହେଲେ ଭୁଲିନାହାନ୍ତି । କାରଣ ସେ ଶୃଙ୍ଗାରର ବୈଦର୍ଭୀ ରଚନାରେ ମାଧୁର୍ଯ୍ୟ ବ୍ୟଞ୍ଜିତ ବର୍ଣ୍ଣ ବିନ୍ୟାସ ଓ ଗୌଡ଼ୀ ରଚନାରେ ଓଜ-ପ୍ରକାଶକ ବର୍ଣ୍ଣ ଓ ଆଡ଼ମ୍ବରଯୁକ୍ତ ସମାସ ବହୁଳ ରଚନା ଏମନ୍ତକି ସୁଖବୋଧ, ସାଡ଼ମ୍ବର, ସାଳଙ୍କାର ବର୍ଣ୍ଣନା ଭରି ଦେଇଛନ୍ତି । ଉଦାହରଣ ସ୍ୱରୂପ—

"ଧରାଧର ପୟୋଧର ଧୀରବୃନ୍ଦ, ପଙ୍କ ଶଙ୍ଖଶଣ ଗର୍ବ ବିମର୍ଦ୍ଦନ ହାସ, ସ୍ୱର୍ଗସରଣୀ ବିଳାସିନୀ ଗର୍ବିଳସୀ ରାଜହଂସୀ ଗମନ ଶୋଭା" ଇତ୍ୟାଦିକୁ ପାଠକ ପଢ଼ି ଜାଣିବେ । ତାଙ୍କର ଏହି ରଚନାରେ ଅଶ୍ଳୀଳ ବର୍ଣ୍ଣନା ଗୋଟିଏ ଧାଡ଼ି ହେଲେ ସେ ରଖିନାହାନ୍ତି । ଯାହା ବା ଆଦିରସାତ୍ମକ ବର୍ଣ୍ଣନା ରହିଛି, ଏପରି ଶ୍ଳେଷରେ ବ୍ୟଞ୍ଜିତ ଯେ ବରଂ ତା ପଢ଼ି ଜଣେ ଯୋଗୀମଧ୍ୟ ଆନନ୍ଦ ପ୍ରକାଶ କରିବ । ଦ୍ୱିତୀୟ କଳାର ୧୨, ୧୩, ୧୪ ପଦଗୁଡ଼ିମାନ ପାଠକଲେ ପାଠକ ତାହା ସମର୍ଥିବେ ।

ଏହି ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରର କବି ନିଶ୍ଚୟ ଯେ ସଂସ୍କୃତରେ ପଣ୍ଡିତ ଥିଲେ ଏହା କହିବା ଅନାବଶ୍ୟକ । କିନ୍ତୁ ରଚନାକୁ ସେ ଏପରି ନିଜସ୍ୱ କରିଛନ୍ତି ଯେ, ତାହା ଧରି ଦେବାର ସୁବିଧା ହୁଏ ନାହିଁ । ତେବେ ବହୁ ଆଲୋଚନାର ପରେ ପଣ୍ଡିତମାନେ ତାହା ନିଶ୍ଚୟ ଜାଣିପିବେ । ସେ ପାଣିନୀଙ୍କ ବ୍ୟାକରଣଠାରୁ ଆରମ୍ଭ କରି ଅଳଙ୍କାର ଶାସ୍ତ୍ର, ଭେଷଜ ଶାସ୍ତ୍ର, ଜ୍ୟୋତିଶାସ୍ତ୍ର, ଭକ୍ତିଶାସ୍ତ୍ର ଏବଂ ନିଗୂଢ଼ ଦର୍ଶନ ଆଦିର ବହୁ ଉଦାହରଣ ଦେଇଛନ୍ତି । ସେ ସବୁ ପାଠକ ତାଙ୍କ ଗ୍ରନ୍ଥ ପାଠ କରି ନିଶ୍ଚୟ ଜାଣିବେ । ଉଦାହରଣ ଦେବା ନିଷ୍ପ୍ରୟୋଜନ ।

କବିତ୍ୱ ଏବଂ ପ୍ରତିଭା ଏକତ୍ର ସନ୍ନିଷ୍ଟ ନ ହେଲେ ଏପରି ଚିନ୍ତା ଏବଂ କବିତ୍ୱ ପ୍ରକଟିତ ହେବା ଅସମ୍ଭବ ମନେ ହୁଏ । ରୁକ୍ମଣୀ ପରିଣୟର ବିବରଣ ଆମେ ଦଶଥର ବିଭିନ୍ନ କାବ୍ୟ ପୁରାଣାଦିରୁ ପାଠ କରି ସାରି, ଯେବେ ଯଦୁମଣିଙ୍କ ରଚନା ପାଠକରୁଁ ତେବେ ଆମେ ତାହା ନୂଆ ପଢ଼ିଲୁ ବୋଲି ନିଶ୍ଚୟ ମନେ ହେବ ।

କବି ତାଙ୍କ କାବ୍ୟରେ ଶୃଙ୍ଗାର, କରୁଣ, ଶାନ୍ତ, ରୌଦ୍ର ବୀର, ଅଦ୍‌ଭୁତ, ହାସ୍ୟ, ଭୟାନକ, ବୀଭତ୍ସ ରସମାନଙ୍କୁ ଯେପରି ଯଥାସ୍ଥାନରେ ଅବସ୍ଥାନ୍ତର ଭେଦରେ ରଞ୍ଜିଛନ୍ତି ସେପରି ସ୍ଥାୟୀ ଭାବର ଲକ୍ଷଣମାନ ଯଥା ରତି, ଶୋକ, ନିର୍ବେଦ, କ୍ରୋଧ, ଉତ୍ସାହ, ବିସ୍ମୟ, ହାସ୍ୟ, ଭୟ, ଜୁଗୁପ୍‌ସା ଆଦିକୁ ମଧ୍ୟ ସୁନ୍ଦର ଭାବରେ ଥୋଇପାରିଛନ୍ତି । ତାଙ୍କର ଅପରାନ୍ତର ବର୍ଣ୍ଣନାରେ ଅର୍ଥାତ ଦଶଗୁଣ ମଧ୍ୟରେ— ଶ୍ଳେଷ, ପ୍ରସାଦ, ସମତା, ମାଧୂର୍ଯ୍ୟ, ସୁକୁମାରତା, ଅର୍ଥବ୍ୟକ୍ତି, ଉଦାରତା, ଓଜ, କାନ୍ତି, ସମାଧି ସବୁହିଁ ପୂରି ରହିଛି । ଏମନ୍ତ କି ଭାବ ବର୍ଣ୍ଣନାରେ ହର୍ଷ, ସ୍ମୃତି, ବ୍ରୀଡ଼ା, ମୋହ, ଧୃତି, ଶଙ୍କା, ଗ୍ଲାନି, ଦୈନ୍ୟ, ଚିନ୍ତା, ମଦ, ଶ୍ରମ, ଗର୍ବ, ନିଦ୍ରା, ମତି, ବ୍ୟାଧି, ତ୍ରାସ, ସୁପ୍ତି, ବିବୋଧ, ଅମର୍ଷ, ଅବହିତ୍ଥ, ଉଗ୍ରତା, ଉନ୍ମାଦ, ମରଣ, ବିତର୍କ, ବିଷାଦ, ଔତ୍ସୁକ୍ୟ, ଆବେଗ, ଜଡ଼ତା, ଆଳସ୍ୟ, ଅସୂୟା, ଅପସ୍ମାର, ଚପଳତା, ନିର୍ବେଦ, ଦେବପ୍ରୀତି ଆଦି ଖଞ୍ଜିବାରେ ସେ ଅତ୍ୟନ୍ତ ନିପୁଣ ସାମର୍ଥ୍ୟ ପ୍ରକାଶିତ କରିପାରିଛନ୍ତି ।

ଏପରି ବିସ୍ତୃତଭାବରେ ଭାବରେ ସେ ନାୟିକାମାନଙ୍କୁ ବର୍ଣ୍ଣନା କରିଛନ୍ତି ଯେ ଜଣାଯାଏ କାମଶାସ୍ତ୍ରରେ ତାଙ୍କର ଅସୀମ ଦକ୍ଷତା ଜନ୍ମିଥିଲା । ଅବଶ୍ୟ ରାଜକୁମାରୀଙ୍କୁ ପଦ୍ମିନୀ ଭାବରେ ଏବଂ ସଖୀମାନଙ୍କ ମଧ୍ୟରେ ଅନ୍ୟାନ୍ୟମାନଙ୍କୁ ଚିତ୍ରିଣୀ, ଶଙ୍ଖିନୀ ଭାବରେ ସେ ଚିତ୍ରିତ କରିଛନ୍ତି ।

ବିଶେଷ ଭାବରେ ଦେଖିବାର କଥା ଯେ ରୁକ୍ମିଣୀ ଯେଉଁ ପତ୍ରଟିଏ କୃଷ୍ଣଙ୍କୁ ଲେଖିଛନ୍ତି, ତାହା ସାତଟି ପଦରେ ସମ୍ପୂର୍ଣ୍ଣ । ଏବଂ ଏତେ ପ୍ରଲୋଭନମୟ ଯେ ବଡ଼ ବଡ଼ ଗ୍ରନ୍ଥ କର୍ତ୍ତାମାନଙ୍କର ଯେପରି ଏକ ଏକ ଅଂଶ ଚଉପଦୀ ରୂପରେ ଜନସମାଜରେ ରହିଆସିଅଛି । ଏ ସବୁ ଏବେ ମଧ୍ୟ ଗ୍ରାମେ ଗ୍ରାମେ ଭୁଣ୍ଡେ ଭୁଣ୍ଡେ ବୋଲା ହେଉଥିବାର ଶୁଣାଯାଏ ।

"ରୁକ୍ମିଣୀ କୃଷ୍ଣଙ୍କ ରୂପ, ଗୁଣାଦି ଭାଟଠୁଁ ଶୁଣି ତାଙ୍କଠାରେ ଆତ୍ମାର୍ପଣ କରି-ଦେଇଥିଲେ । ଅବଶ୍ୟ କଂସବଧ, ଯେଉଁ ଜରାସନ୍ଧ ଦୌରାତ୍ମ୍ୟରେ ଦ୍ୱାରକାପୁରୀର ନିର୍ମାଣ ଆଦି ସେତେବେଳେ ପ୍ରଶଂସିତ ହୋଇଥିଲା । କୃଷ୍ଣ ଜଣେ ପରମପୁରୁଷ ଏ ସମ୍ବାଦ ମଧ୍ୟ ଲୁଚି ନଥିଲା । ଶିଶୁପାଳ ଜଣେ ଘୃଣ୍ୟ, ଅତ୍ୟାଚାରୀ ନିଷ୍ଠୁର ବ୍ୟକ୍ତି ବୋଲି ରୁକ୍ମିଣୀଙ୍କୁ ମଧ୍ୟ ଜଣାଥିଲା । ତେଣୁ ସେ ନିଜର ଭାଗ୍ୟ ନିଜେ ଗଢ଼ିବାକୁ ଯେତେବେଳେ ଗଲେ, କଣ କରିବେ ନାରୀର ଯେଉଁ ନୈତିକତା ତାହା ଜଣେ ଅପରିଚିତ ପୁରୁଷଠାରେ ସମର୍ପି ଦେବାକୁ ବାଧ୍ୟ ହୋଇଥିଲେ । ତେବେ ସେ ତାହା ଅପାତ୍ରରେ ଦାନ କରି ନ ଥିଲେ । ତାଙ୍କ ଚିଠି ରଚନା ଏହିପରି—

ପ୍ରଥମ ପଦ—ନିଗମ ଉଦ୍ଧାର    ଫୁଲଗର୍ଭ ଶିଖର
ମଂଜୁ ବଞ୍ଜୁଳ-କଳଗୁଚ୍ଛ
ପଦାଙ୍ଗୁଳିରୁ ଢ଼ାଳି    ବ୍ରହ୍ମଦଳୀଳ ଶୂଳି
ଗରଳ ଜ୍ୱାଳା କଲ ତୁଚ୍ଛ
ହେ ଯଦୁବତ୍ସ !
ଧାତା ଚନ୍ଦ୍ରାକୁ ହେଲ ମତ୍ସ୍ୟ
ସିନ୍ଧୁ ସିନ୍ଧୁକ ହେଲ ତୁଚ୍ଛ
ଶକ୍ର ଆର୍ତ୍ତି କର୍ତ୍ତନ    କର୍ତ୍ତରୀ କଲବନ
ନର୍ତ୍ତନକାରୀ ହର ଅଚ୍ଛ ହେ । ୭।୭ ।

ଟେରେ— ବ୍ୟାଜ ନୁହେ ଏ ଟୀର    ତ୍ୟାଗ କର ନପାର
ପଦ୍ମର ପ୍ରାଣରେ ସ୍ୱଚ୍ଛ
ମଥା ପୋତିଲେ ବ୍ୟଥା    ଲଭିବଟି ସର୍ବଥା
ମିଥ୍ୟା ଏ ନୁହନ୍ତ ଶ୍ରୀବତ୍ସ
ହେ ! କେକୀ ପୁଚ୍ଛ—
ମୁକୁନ୍ଦ ! ନ କରିବ ମିଛ
ସଂକଟକୁ ମୋ ନାହିଁ କଚ୍ଛ
ତୁମ୍ଭଙ୍କୁ ଦେଲି ବହି    ବହିବା ପାଇଁ ସ୍ନେହ
ବହି ତ ହୋଇଥିଲ କଚ୍ଛ । ୭।୧୨ ।

ଉକ୍ତ ଲିଖିତ ୭ଟି ପଦର ସାରାଂଶ ହେଲା—"ହେ ଯଦୁବର ! ତୁମ୍ଭେ ଥରେ ସ୍ୱ ଅଙ୍ଗୁଳି ଦ୍ୱାରରେ ଜଟେଶ୍ୱରୀ ଗଙ୍ଗାଙ୍କୁ ଜନ୍ମାଇ ସେଥିରେ ଶିବଙ୍କ ଗରଳ ଜ୍ୱାଳା ନିବାରଣ କରିଥିଲ । ଥରେ ମତ୍ସ୍ୟ ରୂପରେ ବ୍ରହ୍ମାଙ୍କ ବେଦକୁ ଅପାର ସମୁଦ୍ରରୁ ଉଦ୍ଧାର କରିଥିଲ, ପୁଣି ଥରେ ଖ୍ୟାତ ଇନ୍ଦ୍ରଙ୍କ ଲାଗି ମର୍କଟ ଓ ଭଲ୍ଲୁକଙ୍କ ସଙ୍ଗରେ ରହି ରାବଣ ବଧ କରିଥିଲ ସତ କିନ୍ତୁ ଏ କାର୍ଯ୍ୟରେ ତୁମର ପ୍ରଶଂସା କିଣ ହେବ ? କାରଣ ତୁମ୍ଭେ ହରିହର ଏକାତ୍ମା ହେତୁ ଏକତନୁ । ତୁମ୍ଭ ନାଭି କମଳରୁ ବ୍ରହ୍ମା ଜନ୍ମିବାରୁ ସେ ତୁମର ତନୁଜ । ଇନ୍ଦ୍ର ଉପେନ୍ଦ୍ର ତୁମ୍ଭେ ଦୁଇଭାଇ ହେତୁ ଇନ୍ଦ୍ର ତୁମର ଭାଇ । ତା ଛଡ଼ା ପ୍ରଳୟ ଧୁଆଁରେ ତୁମ୍ଭେ ମାର୍କଣ୍ଡେୟଙ୍କୁ ଯେ ରକ୍ଷା କରିଥିଲ ସେଥିରେ ମଧ୍ୟ ତମର ପ୍ରଶଂସା ନାହିଁ । କାରଣ ତାଙ୍କୁ ତ ତୁମ୍ଭେ ତୁମଠୁ ସ୍ୱତନ୍ତ୍ର ଜଣେ ବୋଲି କହ ନାହିଁ । ପୁନଶ୍ଚ ଗୋପୀମାନଙ୍କ ପ୍ରେମରେ ମତ୍ତ ଥିବାରୁ ଗୋବର୍ଦ୍ଧନ ପାହାଡ଼ ଧରିଥିଲ, ଏଥିରେ ବା କି ପ୍ରଶଂସା ତୁମର ଅଛି ? ହସ୍ତୀକୁ ରକ୍ଷା କଲ ବୋଲି ଲୋକେ

ପ୍ରଶଂସା କରିଥାନ୍ତି । ମୁଁ ଶୁଣୁଛି ତୁମ୍ଭେ କାନ୍ତା (ନାରୀ) ସ୍ନେହୀ ହେବାରୁ ହସ୍ତୀଟାରେ ଧୀର ଗମନ ଦେଖି ତାକୁ ନିଶ୍ଚୟ ରକ୍ଷା କରିବ । ଏଠି କବି କହିପାରେ, କୁବଳୟା ତ ପୃଷ୍ଠି ଏକ ଗଜ ଥିଲା । ତାର କଣ ଧୀର ଗମନ ନ ଥିଲା କି ? ତାକୁ ତା ଦାନ୍ତ ଉପାଡ଼ି କାହିଁ ମାରିଲ ? ମନେ ହୁଏ ଯେଉଁ ଗଜକୁ ତୁମେ ରଖିଲ ସେ ରଖ ରଖ ବୋଲି କରୁଣ ଧ୍ୱନି କରିଥିଲା । ଏଥିରୁ ଜଣେ ଗଲା ତୁମ୍ଭଙ୍କୁ ନିକଟରେ ନ ଡାକିଲେ ତୁମ୍ଭେ ନାରୀ ସ୍ନେହୀ ହୃଦରେ ନାରୀର ଲକ୍ଷଣ ଦେଖି ମଧ୍ୟ ଦୟାର୍ଦ୍ର ହୋଇ ନ ଥାଅ । ବସ୍ତୁତଃ ନାରୀ ପ୍ରତି ପୁରୁଷ ସର୍ବଦା ଆକାଂକ୍ଷୀ ହୋଇଥାଏ । କିନ୍ତୁ ଜଣେ କବି ଏପରି ଅସୁବିଧାରେ ମୁଁ ପଡ଼ିଛି ଯେ, ତୁମ୍ଭଙ୍କୁ ବୋଧହୁଏ ନିକଟରେ ନ ଡାକିଲେ ତୁମ୍ଭେ ମୋ ଡାକ ଶୁଣିବ ନାହିଁ । ତେବେ ଶୁଣ— ନାରଦ ଯେଉଁ ମତେ ଅର୍ଥ ବାଦ କଲେ ଯେ ମୁଁ ତୁମକୁ ଲଭିବ । ଭଗବାନ୍, ପଣ୍ଡିତ ଗାଙ୍ଗ ନଶ ଦେବେଙ୍କି ବଚନ କଣ ମିଥ୍ୟା ହେବ ?— ମୋ ଜୀବ ବୃକ୍ଷକୁ କଣ ତିକ୍ଷ୍ଣ ନାନା ଗୁଣକ ଜୋସ୍ ମଧ୍ୟରେ ଗ୍ରୀଷ୍ମରେ ପୋଡ଼ି ଦେଇପାରିବ ? ମୋର ଆଶା, ତୁମ୍ଭେ ନିଶ୍ଚୟ ନବନ ମେଘ ହୋଇ ବର୍ଷାଦାନରେ ମୋତେ ବଞ୍ଚାଇବ । ମନେ ରଖ, ଗୋଟିଏ ଅନ୍ୟପୁରୁଷବରଣୀ ଯୁବତୀର ଏହା କେବେ କାମ୍ୟ ନୁହେଁ । ମୁଁ ତୁମର ଟିକି ଦିନର କଥା ସବୁ ବହୁତ ଶୁଣିଛି । ତେଣୁ ଜାଣିଛି ଯେ— ତୁମ୍ଭେ କେବେ ଜଣେ ଅସହାୟା ଯୁବତୀ ପ୍ରତି ନିର୍ଦ୍ଦୟ ହେବନି । ତେଣୁ ଗୋଟିଏ ନାରୀ ବାଳିକାର ଭାର ତୁମ୍ଭେ ବହନ କର । କାରଣ ମହା ଘୋର ବନରେ ତୁମ୍ଭେ ଯେ ଜଣେ କଚ୍ଛପ ରୂପ ଧରିଥିଲ ? ନ ହେଲେ ମୋର ମୃତ୍ୟୁ ସୁନିଶ୍ଚିତ ଜାଣିବ ।

ରୂପ ଗର୍ବିଣୀ ରମଣୀ କେବେ କାହାକୁ ସ୍ୱାମୀ ରୂପେ ପାଇବା ଲାଗି ନିବେଦନ କରି ନ ଥାଏ । ଅବା ସାଧାରଣଙ୍କ ଦେଖା ଦେଇ ଚାହିଁଥାଏ । କିନ୍ତୁ ଘଟଣା ଚକ୍ରରେ ମୃତ୍ୟୁ ବରଣ କରିବା ଅପେକ୍ଷା ଏପରି ନିବେଦନ କରିବାକୁ ରୁକ୍ମିଣୀ ସମୀଚୀନ ବୋଲି ମନେ କରିଛନ୍ତି ।

ଏହି କାବ୍ୟ ଗ୍ରନ୍ଥର ଛନ୍ଦ ପ୍ରୟୋଗରେ ଏକାକ୍ଷର, ଦ୍ୱ୍ୟକ୍ଷର, ନିରୋଷ୍ଠ୍ୟ, ଅଥବା ପ୍ରଭୃତି ଶୈଳୀଗୁଡ଼ିକର ଉଦାହରଣ ନ ଥାଇ ପାରେ; କିନ୍ତୁ ଉପମା, ଅନୁପ୍ରାସ, ଯମକ, ଶ୍ଳେଷ, ଅଦ୍ଭୁତୋପମା, ଅନ୍ୟଲିପି, ଦ୍ୱୀଲିପି ଆଦି ଦେଇ ଗ୍ରନ୍ଥକର୍ତ୍ତା ନିଜ ଗ୍ରନ୍ଥରେ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ବୈଚିତ୍ର୍ୟ ସୃଷ୍ଟି କରି ପାଠିକା ପାଠକମାନଙ୍କୁ ମୁଗ୍ଧ ଓ ମୋହିତ କରି ପାରିଛନ୍ତି ।

ଏହି ଗ୍ରନ୍ଥରେ କବି ନିଜକୁ ଶୂଦ୍ର ବୋଲି ବର୍ଣ୍ଣିତ କରି ତାଙ୍କର ମୁଖୋଚ୍ଛିଷ୍ଟ ସ୍ୱରୂପ କବିତାମାନ ସର୍ବସାଧାରଣ ଗ୍ରହଣ କରିବାର ଯେଉଁ ଯୁକ୍ତି ଦେଇଛନ୍ତି ତାହା ଏ ଗ୍ରନ୍ଥରେ ବହୁ ସ୍ଥାନରେ ବର୍ଣ୍ଣିତ ହୋଇଅଛି । ସେଥିରୁ ତାଙ୍କର ମାହାତ୍ମ୍ୟ ପ୍ରତିପାଦିତ ହେବ ।

ପୂର୍ବୋକ୍ତ ଏହି କାବ୍ୟ ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର ସେନ ସ୍ୱନାମଧନ୍ୟ ପଣ୍ଡିତ ବିନାୟକ ମିଶ୍ର ଯେଉଁ ଆଲୋଚନା କରିଛନ୍ତି, ପାଠ କଲେ ତାହା ପାଠିକା ଏବଂ ପାଠକମାନେ କବିଙ୍କର ଏକ ବିଶେଷ ମହତ୍ତ୍ୱ ଉପଲବ୍ଧି କରିପାରିବେ । ତେଣୁ ଏଥିରେ ତାହା ଉଦ୍ଧାର କରଗଲା ।

ସେ ଲେଖିଛନ୍ତି—

"ଶ୍ଳେଷାଳଙ୍କାର, ଯଦୁମଣି ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରରେ ବହୁଳ ପରିମାଣରେ ବ୍ୟବହାର କରିଅଛନ୍ତି । ବୃକ୍ଷ ଓ ଋଷି ଉଭୟ ନାମବାଚକ ଏକ ଏକ ଶବ୍ଦକୁ ରୈବତ ପର୍ବତର ବର୍ଣ୍ଣନାରେ ବ୍ୟବହାର କରିଅଛନ୍ତି । ଏଠାରେ ପ୍ରଶ୍ନ ଉଠେ, ଏକ ହିଁ ବୃକ୍ଷ ଓ ଋଷି ଉଭୟ ନାମବାଚକ ହେବାର କାରଣ କଣ ? ବୌଦ୍ଧ ସନ୍ନ୍ୟାସୀମାନଙ୍କୁ କେତେକ ବୃକ୍ଷ ମୂଳରେ ବାସ କରିବା ପାଇଁ ବୌଦ୍ଧ ଶାସ୍ତ୍ରରେ ନିର୍ଦ୍ଦେଶ ଦିଆଯାଇଅଛି । ଏଣୁ ଅନୁମିତ ହୁଏ ଯେ ଯେଉଁ ଋଷି ଯେଉଁ ବୃକ୍ଷମୂଳରେ ବାସ କରୁଥିଲେ ସେହି ଋଷିଙ୍କ ନାମ ଅନୁସାରେ ସେହି ବୃକ୍ଷର ନାମକରଣ ହୋଇଅଛି । ଏହିପରି ଉକ୍ତ ସୂତ୍ର ପ୍ରଣେତା ଋଷିଙ୍କ ନାମ ଶାଣ୍ଡିଲ୍ୟ ଓ ବେଲଗଛର ନାମ ଶାଣ୍ଡିଲ୍ୟ ।

ମାତଙ୍ଗ କୁମ୍ଭ ଅଗସ୍ତୀ ସଂସର୍ଗୀ
ଭୃଗୁ କପିଳ ମରିଚ ସରଗୀ
ଶାଣ୍ଡିଲ୍ୟ କଉଶିକ ଡ଼ାକେ ବ୍ୟାସ
ଭରଦ୍ୱାଜ ଶୁକ ହାରିତ ବଂଶ ସେ
ବରାହ ରୋମାଞ୍ଚ ସଙ୍ଗ ଯେ
ରାମ ଶତାନନ୍ଦ ପବିତ୍ର ବିଦିତ
ଜନକ ସଂସାର ଭଙ୍ଗ ଯେ ।

(ପଣ୍ଡିତ ମିଶ୍ର ତାଙ୍କ ଲେଖାରେ ଏହି ପଦଟି ଦେଇ ନାହାନ୍ତି କିନ୍ତୁ ଏହି ପଦ ଲକ୍ଷରେ ସେ ଲେଖିଥିବାରୁ ଏଠାରେ ଉଦ୍ଧାର କରାଯାଇଛି । ଏହାର ଟୀକା ଗ୍ରନ୍ଥରେ ଦ୍ରଷ୍ଟବ୍ୟ—ଗ୍ର ୧-୧୦ ପୃଷ୍ଠା)

'ନାୟିକାର ବନବିହାର ପ୍ରସଙ୍ଗରେ ଯଦୁମଣି ଯେପରି ଶ୍ଳେଷାଳଙ୍କାର ବ୍ୟବହାର କରିଅଛନ୍ତି, ସେପରି ଅର୍ଥ—ବିଶିଷ୍ଟତାର ଶ୍ଳେଷ ଅନ୍ୟ କୌଣସି କାବ୍ୟରେ ବୋଧହୁଏ ନାହିଁ ।

ଟେକ କହ୍ଲାର ନାଗେଶ୍ୱର ପଦ୍ମତୋଳା
ବିଦ୍ୟାରେ ନରେନ୍ଦ୍ର ମୁଁ ଅଟେ
ଶୁଣି ବେନି ଅଥ ମଣି ରମଣୀଏ
ବେନି ଅର୍ଥକୁ ରଖି ରଟେ
ତେବେ ଯୋଗୀର
ବିହାର ବିଧାନ କରିବୁ
ରଜନୀ କର ଗ୍ଲାନିଲେ ସେ ନାଗର ଉଗ୍ର ପରିତାପ ହରିବୁ ।

"ନାଗେଶ୍ୱର ଓ ପଦ୍ମଫୁଲ ତୋଳିବା ବିଦ୍ୟା ଏବଂ ନାଗେଶ୍ୱର ବଜାଇବା ଓ ପଦ୍ମତୋଳା ଗାଇବା ବିଦ୍ୟା । ଭୋଗୀ-ବିଳାସୀ ଓ ସର୍ପ, ବିଳାସୀର ଫୁଲ, ସର୍ପର ବାଜାଗୀତ ଲୋଡ଼ା । ରଜନୀକର ଷ୍ଟୂଳିଲେ—ଚନ୍ଦ୍ର ଷ୍ଟୂଳନା କଲେ ଓ ଧୂଳି ସମୁଦ୍ର (ରତ୍ନାକର) ମନ୍ତ୍ର ଫିଙ୍ଗିଲେ । ନାଗ-ରସିକର ଓ ସର୍ପର ।

"ଅନ୍ୟାନ୍ୟ କବିଙ୍କ ପରି କେବଳ ଫୁଲ ଓ ଶିବ ଅର୍ଥରେ ଯଦୁମଣି 'ନାଗେଶ୍ୱର' ଶବ୍ଦ ବ୍ୟବହାର କରି ନାହାନ୍ତି । ଆହୁରି ଭିନ୍ନ ପ୍ରକାରର ଶ୍ଳେଷ ମଧ୍ୟ ତାଙ୍କ କାବ୍ୟରେ ଦେଖାଯାଏ ।

**ଶଙ୍କର ପର-ଜରେ ପଡ଼ିରହିଲେ ଯୋଗ ଆଶାବରୀ ଗଉରୀ**
**ଲଳିତ ବସନ୍ତ ଭୈରବ ଦେବାରୁ ବହିବ କୋଲାହଳ ପୁରୀ**
**ମାଳବରେ ଯେ. ହୋଇବ ଶଙ୍କରାଭରଣ**
**ବିଷ ଆହାର ହୋଇବୁ ନ ଭେଟିଲେ ମୋହନ ମଙ୍ଗଳ କଲ୍ୟାଣ !**

ଶଙ୍କରପର-ଜରେ-କାମଜ୍ୱରରେ, କେବଳ ଆଶାକୁ ବରଣ କରିବା ଯୋଗୀ (ଆଶାବରୀ) ଗୌରୀ ବା ପାର୍ବତୀ ପଡ଼ି ରହିଥିଲେ । (ସେପରି ପଡ଼ି ରହିଲେ ଏ ନାୟିକା ପାର୍ବତୀ ହେବ । କିନ୍ତୁ ଲଳିତ ବସନ୍ତ ଋତୁ ଭୈରବ (ଭୟ) ଦେବାରୁ ଏ ପୁରୀରେ କୋଳାହଳ ପଡ଼ିଛି । ମାଳ-ଶ୍ରେଷ୍ଠ ଦ୍ୱାରା ଶିବଙ୍କର ଅଳଙ୍କାର ହେବ । ମଙ୍ଗଳ କଲ୍ୟାଣ ମୋହନଙ୍କୁ ନ ଭେଟିଲେ ବିଷାହାରୀ ହେବୁ ବା ବିଷ ଖାଇବୁଁ । ଏହି ସାଧାରଣ ଅର୍ଥ ଛଡ଼ା ଶଙ୍କର ପରଜ ରାଗରୁ କପରି ଆଶାବରୀ ଓ ଗୌରୀ, ଲଳିତ ବସନ୍ତ ରାଗରୁ ଭୈରବ ପ୍ରଭୃତି ରାଗର ଉତ୍ପତ୍ତି ଘଟିଛି, ତହିଁର ସୂଚନା ମଧ୍ୟ ଅଛି । ସଙ୍ଗୀତଜ୍ଞମାନେ ଏହାକୁ ଆଲୋଚନା କରିବା ଉଚିତ ।"

(ଓଡ଼ିଆ ସାହିତ୍ୟର ଇତିହାସ ।)

## ଚଉପଦୀମାଳା—

ଯଦୁମଣିଙ୍କର ଚଉପଦୀମାଳା କେତେକ ଅନବଦ୍ୟ କବିତାର ସମଷ୍ଟି । କପରି ତାହା ସଂଗ୍ରହ କରାଯାଇଛି ତାର ଇତିହାସ ପୂର୍ବରୁ ଦିଆଯାଇଛି ।

୨୮ଟି କବିତାରୁ ୪ଟି କବିତା ଭଜନ ଭାବରେ ଗ୍ରହଣ କରାଯାଏ । ଏହି ଭଜନ ମଧ୍ୟରେ ପୁତ୍ରଶୋକାତୁର ଯଦୁମଣି 'ଦେଲ ଯାହା ନେଲ ତାହା' କବିତାଟି ଏକାନ୍ତ ଯୁକ୍ତିଯୁକ୍ତ ଓ ମଧୁର ଭାବରେ ଗାଇଛନ୍ତି । କବିତାଟିର ମର୍ମ ହେଲା—

ଯେପରି କଂସ ଗଜକୁ ମାଇଲ, ସେପରି କୁମ୍ଭୀରଠାରୁ ଗଜ ଏକ ରକ୍ଷା କଲ । ଯେପରି ବଳୀର ଦାନ ବିଭୂତିକୁ ଲୋପକଲ, ସେପରି ଅକିଞ୍ଚନ ସୁଦାମକୁ ପ୍ରଚୁର ଦାନକଲ । ଯେପରି ଗୋପୀଙ୍କ ମହତ୍ତ୍ୱ ନେଲ, ସେପରି କୃଷ୍ଣାଙ୍କୁ କୁରୁସଭାରେ ମହତ୍ତ୍ୱ ଦାନକଲ ।

କିନ୍ତୁ—

ପାତକୀ ମୁକୁଟ ଶ୍ରେଣୀ
ଶିରୋମଣି ଯଦୁମଣି
ମନ ତଳେ ନେଇ ନ ପାରିବ

ଏହା ଉଚ୍ଚାରଣେ ଯେବେ
ଶତ୍ରୁ ଦେଇପାରି ଲବେ
ତେବେସିନା ଦାତା ବୋଲାଇବ

ନୀଳାଚଳ କଳାକର
ନେଲ ଯାହା ଦେଲ ତାହା
ଏଥିକୁ କିପାଇଁ ମହା-
ଦାତା ପଣେ ପତକା ବାନ୍ଧିଛ ?

ସେ ଜଗନ୍ନାଥଙ୍କ ନିକଟରେ କବିତାଟି ଦେଲ ଯାହା ନେଲ ତାହା ଏହି ଭାବରେ ଗାନ କରିଥିଲେ । କିନ୍ତୁ ରାଜା ବିନାୟକ ତାଙ୍କୁ କହିଥିଲେ, ତାଙ୍କର କିଏଁ କଣ ଭୁଲି ପାଇଁ ଯଦୁମଣି ଏତିକାରେ ସରିଗଲ ? ତହୁଁ ସେ ଭାବଟିକୁ ପରେ ପରେ "ନେଲ ଯାହା-ଦେଲ ତାହା" ଭାବରେ ପରିବର୍ତ୍ତନ କରି ପ୍ରଚାର କରିଥିଲେ ।

ଅନୁପ୍ରାସ ଖଞ୍ଜିବାରେ ସେ ଜଣେ ବିଚକ୍ଷଣ କବି ଥିଲେ । ଉଦାହରଣ ସ୍ୱରୂପ କଜା, ବଜା, ଦଜା, ଉଜା, ଧକ୍‌ଜା, ପକ୍‌କା, ଏକା ଏବଂ ବରଞ୍ଚ, ବିପଞ୍ଚ, ମୁଞ୍ଚ, କୁଞ୍ଚତ, ବଂଚୁଥିଲ, ଫଂଚତ, ଫଞ୍ଚୁଚତ, କଂଚତ, ଗୁଞ୍ଚ, ଚହଞ୍ଚ ଆଦି ପ୍ରୟୋଗରେ ସେ ଏପରି ସିଦ୍ଧହସ୍ତ ଯେ କବିତାମାନ ଗାନକରିବାବେଳେ ଅର୍ଥ ବୁଝିବା ନବୁଝି ସ୍ୱତଃ ମୂର୍ଖଠାରେ ମଧ୍ୟ ଆନନ୍ଦ ଫୁଟିଉଠେ ।

ତାଙ୍କ ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ ସେ ଯେଉଁ ସାତଟି କବିତା ଲେଖିଛନ୍ତି, ତନ୍ମଧ୍ୟରୁ ଚୋଟିଏ ପଦ ଏଠାରେ ଦିଆଯାଉଛି ।

ପୟୋଧରାରେ
ଚର ଅଚର ବିଯୁସୀ ତୁ ଏ ଧରାରେ । ୦ ।
ଖଞ୍ଜା ତୋ ଖଞ୍ଜନା
ଖଞ୍ଜାଅ ଗଞ୍ଜନା
ଖଳୁ ଖଞ୍ଜା ଯଦୁମଣି ତୋ ଖଟଣି ପରାରେ ।

ଅର୍ଥାତ ରେ ଖଞ୍ଜନା (ଖଞ୍ଜନା ନାମ ଧାରଣୀ) ଖଞ୍ଜା ଅର୍ଥାତ୍ ମୁଁ ତୋ ସେବାରେ ନଯୁକ୍ତ । ଅଥବା ତୁ ଖଞ୍ଜନ ଖଞ୍ଜା—ଖଞ୍ଜନା ନାମକ ଉଗିଣୀକୁ ଗାନକର, ମୋର ଗଞ୍ଜନାକୁ ଖଞ୍ଜାଅ—ଶୂନ୍ୟକର । ମୋ ମନୋବେଦନା ଦୂରକର । 'ଖ' କୁ— ସ୍ୱର୍ଗକୁ—ବା ଆକାଶକୁ, ଖଞ୍ଜା—ସମୁଦ୍ରବାସୀ ମାଛ ବିଶେଷ ଯେପରି ଅତି ଅନୁପଯୁକ୍ତ, ସେହିପରି ସେବା ବିଷୟରେ ଅତି ଅନୁପଯୁକ୍ତ ହେଲେ ସୁଦ୍ଧା ଯଦୁମଣି ତୋ ଖଞ୍ଜଣୀ—ଭୃତ୍ୟ ପରି ? ଅର୍ଥାତ ତୁ ସ୍ୱର୍ଗପରି ଅତି ଉଚ୍ଚରେ ହେଲେ ମୁଁ ସମୁଦ୍ରବାସୀ ଜୀବପରି ଅତି ନିମ୍ନରେ । ତଥାପି ସର୍ବଦା ତୋର ଭୃତ୍ୟ ଅଟେ । ତେଣୁ ତୁ ଖଞ୍ଜନା ରାଗିଣୀ ଗାଇ ମୋର ମାନସିକ ଗଞ୍ଜନା ଦୂରକର ।

(ପଣ୍ଡିତ ଗୋପୀନାଥ ମିଶ୍ରଙ୍କ ଟୀକା)

ଏହିସବୁ ସଙ୍ଗୀତ ମଧ୍ୟରେ ତାଙ୍କ ସ୍ତ୍ରୀଙ୍କୁ ସେ ଯେତେ ପ୍ରକାର ବନ୍ଦନା କରିଛନ୍ତି, ତନ୍ମଧ୍ୟରେ ତାଙ୍କର ଗୋଟିଏ କବିତାରେ ଭାର୍ଯ୍ୟାଙ୍କ ବହୁ ସଦ୍‌ଗୁଣକୁ ବହୁ ସୁଖାଦ୍ୟ ସହିତ ତୁଳନା କରି ଲେଖିଛନ୍ତି—

ତୁ ମୋ ପ୍ରୀତି ମୋଦକୀ ପସରାରେ
ମୁଁ ତୋ ଲଗୁଆ ଗ୍ରାହକ ପରା । ୦ ।
ଗୁମାନକୁ ତୋର ଗୁଡ଼ସାର ମଣେ
ସନମାନଟି ତୋ ଛେନା କାକରା । ୧ ।
ଇଙ୍ଗିତ ଭଙ୍ଗି ତୋ ସୁରସ ଆରିସା
ସମାଦର ସରପୁଳି କାକରା । ୨ ।
ଗାଳି ପଦକ ତୋ ମଧୁରସାବଳୀ
ରୁଷାଣି ଠାଣିଟି ବଲ୍ଲଭ କୋରା । ୩ ।
ପରିରମ୍ଭଣ ତୋ କନ୍ତାରି ଦୋରୁଅ,
ମଦନ ତୃଷାହାରୀ ମନୋହରା । ୪ ।
ଲାବଣ୍ୟ ଜଳଧି ଭାବହାବ ଲାଭ
ଆଣେ ଯଦୁମଣି ମନଟାକରା । ୫ ।

ଅର୍ଥାତ୍—ହେ ସଖି ! ତୁ ମୋର ପ୍ରୀତିରୂପକ ଗୁଡ଼ିଆ ପସରା ଅଟୁ । ମୁଁ ତୋର ଲଗୁଆ ଗ୍ରାହକ ଅଟେ—ଏହା ଜାଣ ।

ତୁ ଯେତେବେଳେ ଗୁମାନ କରୁ ମୁଁ ତାକୁ ଉକ୍ତ ପସରାର ଗୁଡ଼ସାର ମନେକରେ । ଏବଂ ମୋ ପ୍ରତି ଯେବେ ତୁ ସମ୍ମାନ ଦେଉ ମୁଁ ତାହା ଛେନାକାକରା

ପର ମଣେ । ମୋ ପ୍ରତି ତୋର ଇଙ୍ଗିତ ଏବଂ ଲଙ୍ଗକୁ ଖଣ୍ଡିଯିଅର ଅଶ୍ରସା ଓ ମୋ ପ୍ରତି ଭୁ ସ୍ନେହକଲେ ମୁଁ ତାକୁ ସହପୁଳ ଓ ସାଜସ୍ର ପ୍ରାପ୍ତ ମନେକରେ । ତୋର ଗାଳ-ପଦକ ମୁଁ ମଧୁ ରସାବଳୀ ଓ ରୁଷ୍ଟ'ଢ଼ଙ୍ଗକୁ ବଲ୍ଲଭ କେସ ପଣ ଭାବେ । ମଦନଭୂଷା ହରକୋଣରେ ମନୋହର ! ତୋର ଆଲିଙ୍ଗନାନ୍ଦ ପ୍ରୀତିସମ୍ପନ୍ନ କାର୍ଯ୍ୟକୁ ମୁଁ କନ୍ଦାର ଅଖୁ ଦୋରୁଅ ପର ମଣେ । ତୋ ଲବଣ୍ୟ ଜଳଧିର ଭାବହାବ ଆଶାରେ ଯଦୁମଣି ମନ ଟାକସ୍ର ହୋଇଯାଉଛି ।

ତାଙ୍କର ସଙ୍ଗୀତମାନ ସେ ରାଗ ଓ ତାଳ ସଂଯୋଗରେ ଲେଖି-ଥିବାର ଦେଖାଯାଏ । ଏସବୁ କବିତାମାନ ତତ୍କାଳୀନ ମନୋବୃତ୍ତି ଉପରେ ନାରୀପ୍ରତି ଆକାଙ୍‌କ୍ଷା ରଖି ଅବଶ୍ୟ ଲେଖାଯାଇଛି । ସବୁକାଳେ ତ ନାରୀହିଁ କବିର ପରମ ଆଶ୍ରୟ ହୋଇଛନ୍ତି । କବି କାହିଁକି ବିଶ୍ୱଜଗତରେ ମଧ୍ୟ ନାରୀ ପରମ ଧର୍ମ ବୋଲି କାଳ କାଳ ପୂଜିତ ହେଉଛନ୍ତି । କାଳିଦାସ ହୁଅନ୍ତୁ, ରାଧାନାଥ ହୁଅନ୍ତୁ, ସବୁଠାରେ ନାରୀର ଅଙ୍ଗଗଠନ, ତାର କୋମଳତା, ତାର ପ୍ରେମ, ତା ପ୍ରତି ଆକାଙ୍‌କ୍ଷା ବର୍ଣ୍ଣିତ ହୋଇଅଛି । ନାରୀଭିନ୍ନ ବିଶ୍ୱ-ସାହିତ୍ୟରେ ଉଚ୍ଚାଙ୍ଗ କବିତା ନାହିଁ । ତେଣୁ ତାଙ୍କ କବିତା ଯେ ଅନୁପାଦେୟ ବା ହେୟ ଏପରି ମତ କେହି ଦେଇ ନ ପାରେ ।

ସମସ୍ତ କବିତାମାନଙ୍କ ମଧ୍ୟରୁ ନୂଆଁଗଡ଼ ରାଜାଙ୍କ ଭଣିତରେ ୭ ଗୋଟି, ଖଣ୍ଡପଡ଼ା ରାଜାଙ୍କ ଭଣିତରେ ୭ ଗୋଟି, ନିଜନାମ ଭଣିତରେ ସ୍ୱ ସ୍ତ୍ରୀଙ୍କ ପ୍ରତି ୨ଟି ଏବଂ ଅନ୍ୟପ୍ରତି ୩ଟି ଏବଂ ଘଟଣା ଚକ୍ରରେ ୧ଟି ଏପରି ୨୦ଟି ଏବଂ ଭଜନ ୪ଟି ମିଶି ୨୪ଟି ଲେଖାଯାଇଛି । ଏହା ବ୍ୟତୀତ ଚଉପଦୀ ଅସଂଖ୍ୟ ଥିବ ।

ଏହି ହେଲା ତାଙ୍କର ସମସ୍ତଲୁପ୍ତ ରଚନାର ପରିଚୟ ଏବଂ ବିବରଣୀ । ତାଙ୍କର ଜୀବନ କଥା ସ୍ୱତନ୍ତ୍ର ପ୍ରକାଶିତ ଅଛି, ତାହା ପାଠକଲେ ସେ କଣ ଥିଲେ, ନ ଥିଲେ ତାହା ସମସ୍ତେ ଜାଣିପାରିବେ । ଆଉ ଅଧିକ ତାଙ୍କ ସମ୍ବନ୍ଧରେ କଣ ବା କୁହାଯାଇ ପାରେ ?

ଏହି ସ୍ୱର୍ଗାଦପି ଗରୀୟସୀ ଉତ୍କଳ ଭୂମି କୋଳରେ ଜନ୍ମି କେତେ ସୁସନ୍ତାନ ଆମ ଜନନୀର ଭାଷା ସମୃଦ୍ଧି ଓ ସଂରକ୍ଷଣ ଲାଗି କେତେ ଅମୂଲ୍ୟନିଧି କାବ୍ୟ କବିତାଦି ଯେ ଦାନକରି ଯାଇଛନ୍ତି, ସେ ସମୁଜ୍ଜ୍ୱଳ ରତ୍ନମାନ ଏବେ ମଧ୍ୟ ଆମେ ଏକତ୍ର ଦେଖିବାର ସୁଯୋଗ ପାଇପାରି ନାହୁଁ । କାଳ ଅନନ୍ତ, ବ୍ୟବଚ୍ଛେଦ ଦୁର୍ନିରୀକ୍ଷ; ସୁତରାଂ ଏହି ପ୍ରାଚୀନତମ ପ୍ରତିଷ୍ଠିତ ଭୂମିର ନିଦର୍ଶନମାନ ଶାସ୍ତ୍ର ମାଧ୍ୟମରେ, କଳା ମାଧ୍ୟମରେ, ଲିପି ମାଧ୍ୟମରେ ସ୍ଥୂଳଦୃଷ୍ଟିର ଅଧିଗମ୍ୟ ନୁହେଁ । ତେଣୁ ଏ ରାଜ୍ୟର ଇତିହାସ ଏବେ ମଧ୍ୟ ଲେଖା ଆରମ୍ଭ ହୋଇନାହିଁ । ଏ ଜାତିର ସଂସ୍କୃତି, ଏ ଜାତି ସାହିତ୍ୟର ଇତିହାସ ଏବେ ମଧ୍ୟ ବିସ୍ମୃତିଗର୍ଭରେ ଲୁଚି ରହିଛି । ତାର ଆଲୋଡ଼ନ ଲାଗି

ସ୍ୱୟଂ ଉତ୍କଳ ସନ୍ତାନ ମଧ୍ୟ ତାର ଜନନୀ ପ୍ରତି ବିଶ୍ୱାସୀ ଓ ପ୍ରୀତିମନ ହୋଇପାରନ୍ତି । ଯାହା ହୋଇଛି ତା ସମୁଦ୍ରକୁ ଶଙ୍ଖେ ପାଣି ପରି ।

ନିର୍ଯ୍ୟାତନ, ନିଷ୍ଠୁରତମ ଉତ୍ପୀଡ଼ନ, ନିଜର ଦେଶଂପ୍ରତି ପ୍ରତି ବିଶ୍ୱାସ ନ ଆଣି ଆମେ ଉତ୍କଳୀୟ ଏପରି ଧନହୀନ କାପୁରୁଷ ହୋଇଯାଇଛୁଁ ଯେ ଜଣେ ଅଧିକନ୍ତୁତମ ପଦ୍ମମଣି ମହାପାତ୍ର ଏବେଣି ଲୋଡ଼ା ହେଉଛନ୍ତି—ଯେ କି ହିମାଳୟଠାରୁ କୁମାରିକା ମଧ୍ୟରେ ଏ ଜାତିର ମହତ୍ତ୍ୱ ଓ କୀର୍ତ୍ତି ଅତି ନିର୍ଭୀକ ଏବଂ ଦକ୍ଷତାର ସହିତ ପ୍ରଚାର କରିପାରିବେ ।

ରଜା କହିଲେ 'ଠୋ' ଟାକୁ ପିବା—ପଦ୍ମମଣି କହିଥିଲେ—'ଠୋ ଗଣୀ' ସାର ଅଟେ । ମୁଣ୍ଡ କଟୁ ପଛେ ଏପରି ଯେପରିକୁ ତେଜା ନୀତିରେ ଦମ୍ଭ ନ ଧରିଲେ, ରାଜପୁରୁଷମାନେ ପୂର୍ବେ ଯାହା କରୁଥିଲେ ବର୍ତ୍ତମାନ ମଧ୍ୟ ତା କରିବେ । ଯାହା କରୁଛନ୍ତି ତା କରୁଥିବେ । ଆକବରଙ୍କ ପାପ ଇଚ୍ଛା ଦୂରହେଲା, କବି ପୃଥ୍ୱୀରାଜଙ୍କ ସ୍ତ୍ରୀଙ୍କ ସୂତେଲ ଛଟି ଆଘାତରେ । ପଦ୍ମମଣି ରାଜାର ପାପ ଇଚ୍ଛା ଦୂର କରିଥିଲେ—ମାପୁଲ ଦେଖାଇ ।

ମରଣକୁ ଡରି ଡରି ଏ ଜାତି ଅବିବେକ ଧର୍ମାବତାରଙ୍କ ତୁଣ୍ଡରୁ 'ତୁମେ ବଡ଼ ଭଲ, ତୁମେ ବଡ଼ ଶାନ୍ତ ଶିଷ୍ଟ' ଶୁଣି ଶୁଣି ଲୋପ ହେବାକୁ ଯାଉଛି । ତାର ସୀମା ବିଲୁପ୍ତ, ତାର ଭାଷା ବିଦେହପ୍ରାପ୍ତ, ତାର ସଂସ୍କୃତି ଧ୍ୱଂସପ୍ରାପ୍ତ, ତାର ଧର୍ମ, ତାର ମଣିଷ ପଣ ବଞ୍ଚିବା ମଧ୍ୟ ଅନିଶ୍ଚିତ ହୋଇଯାଉଛି । ସେ ବିଶ୍ୱଜଗତରେ ଚଟିଆ, ମେଣ୍ଟବୁଢ଼ା, କୁଳି ଓଡ଼ିଆ ବୋଲି ଏବେ ମଧ୍ୟ ଅଭିନବ ଛନ୍ଦ ମଧ୍ୟରେ ପରିଚିତ ହେଉଛି ।

ହାୟରେ ହାୟ, ଏ କଥା ଏ ଦେଶର ଶିକ୍ଷିତ ଯୁବକମାନେ ମଧ୍ୟ ହୃଦୟଙ୍ଗମ କରୁନାହାନ୍ତି । ଦେଶର ହିତ ଲାଗି, ଜାତିର ମଙ୍ଗଳ ଲାଗି ପଦ୍ମମଣି ଅଶେଷ ଦୁଃଖ ଭୋଗି ମରିଛନ୍ତି । ଏବେ ମଧ୍ୟ ତାଙ୍କ ସ୍ମୃତି ଉଦ୍‌ଯାପିତ ହୋଇନି । ସେ ଦୁଃଖରେ ମଲେ ହେଁ ଅମର ହୋଇ ରହିଛନ୍ତି । ଉତ୍ତମ ବୟସରେ ଯେଉଁମାନେ ତାଙ୍କୁ ଅର୍ଥାଗମର ପ୍ରବଳଧାରୁ ବଞ୍ଚିତ କରି ଅପମାନିତ କରିଥିଲେ, ସେ ମଲେଣି ଯେଉଁକାଳୁ, କିନ୍ତୁ ସଦ୍‌ବୁଦ୍ଧି ପ୍ରେରିତ ସମଦର୍ଶୀ ବିଧାନ ଦୃଷ୍ଟିରେ ପଦ୍ମମଣି ଆଜି ଓଡ଼ିଆ ଗାଁ ଗହଳର ଘରେ ଘରେ ବନ୍ଦନୀୟ ହୃଦପୀଠରେ ଆସନ ପାଇ ରହିଛନ୍ତି । ଆହୁରି ପାଇବେ ।

ଭବଭୂତିଙ୍କ ଭାଷାରେ—

ଉପତ୍ସ୍ୟତେଽସ୍ତି ମମକୋପି ସମାନ ଧର୍ମା ।
କାଳୋ ହ୍ୟୟଂ ନିରବଧିର୍ବିପୁଳା ଚ ପୃଥ୍ୱୀ

କାଳ ଅନନ୍ତ, ପୃଥିବୀ ବିପୁଳ, ମୋ ସମାନ ଧର୍ମୀ କେହି ଏହି ସଂସାରରେ ଜନ୍ମିବେ । ତାଙ୍କ ଲଗି ମୁଁ ଏ ପରିଶ୍ରମ କରୁଛି ।

ପଦୁମଣି ଯେଉଁ ପରିଶ୍ରମ କରିଛନ୍ତି, ସେ ଯେଉଁ ଆତ୍ମଦାନ ଦେଇଛନ୍ତି, ତବେ ତାହା ସାଧାରଣ ସର୍ବଜନରେ ଗର୍ବିତ ପୌରଜନରେ ନିଶ୍ଚୟ ସମ୍ମାନିତ ହେବ ।

ସୁଖସ୍ୟାନନ୍ତରଂ ଦୁଃଖଂ ଦୁଃଖସ୍ୟାନନ୍ତରଂ ସୁଖଂ
ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ ।



# ଉତ୍ସର୍ଗପତ୍ର

ସ୍ୱର୍ଗତ ଆଦର୍ଶ ରାଜପୁରୁଷ, ପରମ ନୈଷ୍ଠିକ ଶ୍ରୀବନମାଳୀ କ୍ଷତ୍ରିୟ ବୀରବର ଚମୂପତି ସିଂହ ମହାପାତ୍ର ଏବଂ

ସ୍ୱର୍ଗତ ଆଦର୍ଶ ମାନବ, ବହୁ ସଦ୍‌ଗୁଣଭୂଷଣ ମଣ୍ଡିତ କପିଳେଶ୍ୱର ବଡ଼ପଣ୍ଡା, ଝିଗିରିଆ ଦୁର୍ଗଙ୍କ

କରକମଳରେ ଉତ୍ସର୍ଗୀକୃତ ।

ଆପଣ ଦୁହେଁ ଥିଲେ ଏକାତ୍ମୀୟ । ଜଣେ ସର୍ବସ୍ୱ କର୍ତ୍ତୃତ୍ୱସମ୍ପନ୍ନ ରାଜା ହୋଇ ଶ୍ୟାଳକ ଏବଂ ଜଣେ କୌଳିନ୍ୟସମ୍ପନ୍ନ କୁଳୀନ ଉଚ୍ଚଜାତ ବ୍ରାହ୍ମଣ ହୋଇ ତାଙ୍କର ଭଣେଇ । ଏଠି ରହସ୍ୟ ଥିଲା ଏତିକି ଯେ ରାଜାଙ୍କ ଗୁରୁଗୋସେଇଁଙ୍କ ଜେମାଙ୍କୁ ବିବାହ କରିବାରୁ ଏହି ସମ୍ବନ୍ଧ ସାଧାରଣ ସମ୍ବନ୍ଧ ପ୍ରାପ୍ତ ହୋଇ ଆସିଥିଲା । ପୁନଶ୍ଚ ନାରୀ ହିସାବରେ 'ଶ୍ରୀମତୀ' ଶ୍ରୀଙ୍କ ପରି ସର୍ବଗୁଣାଳଂକୃତା ଥିଲେ । ଉକ୍ତ ଶ୍ରୀମତୀଙ୍କ ସାନ କନ୍ୟାଙ୍କୁ ମୁଁ ୧୯୨୯ରେ ବିବାହ କରିବା ପୂର୍ବଦିନ ଢଣ୍ଢୋଚାବରେ ଯଦୁମଣିଙ୍କ ସୁନ୍ଦର ଏକ ଶ୍ଳୋକ ହେ ରାଜପୁରୁଷ ! ତୁମେ ଶୁଣିଥିଲ; ପୁଣି ସାତ ମଙ୍ଗଳା ମଧ୍ୟରେ ତୁମର ନବ୍ୟ ଆତିଥ୍ୟ ଲଭିବାବେଳେ ତୁମ ଦୁହିଁଙ୍କଠାରୁ ଯଦୁମଣିଙ୍କ ଝିଗିରିଆ ରହଣି ଗଳ୍ପ ଶୁଣି ଆଚମ୍ବିତ ହେଉଥିଲ ।

ହେ ଚମୂପତି ! ତୁମେ ପରିହାସରେ ପଚାରିଥିଲ—'ହଇହେ ବାବୁ ! ପଣ୍ଡିତ, କବି ତ ହୋଇଛ; ବହି ତ ଲେଖୁଛ, ଆଚ୍ଛା ଯଦୁମଣି ମହାପାତ୍ରଙ୍କ କବିତା ଅର୍ଥ କରିପାରିବତ ?'

ହେ ବଡ଼ପଣ୍ଡା ! ତୁମେ କହିଥିଲ—'ଯାଃ, ଅର୍ଥ କରିବେ କ'ଣ, 'ଯଥାର୍ଥ ଭାଷ୍ୟ ଦେଇ ତାକୁ ଏକାଠି ଗୁନ୍ଥି ଗ୍ରନ୍ଥାବଳୀ କରିଦେବେ । କ'ଣ ବିଚାରିଛନ୍ତି କି ? ରାଜଗୁରୁ ବଷ୍ଠ'ନ ମହାପାତ୍ରଙ୍କ ଅନୁଦୃଷ୍ଟି ସେ ?'

ଚମୂପତି, ତା'ଶୁଣି ତୁମେ କହିଥିଲ—'ସତେ ! ତେବେ ଏ ଦକ୍ଷତା କେବେ ଦେଖିବା ?'

ହେ ଅଦୂଷିତ ସରଳ ମହାନ ଜୀବନ ଯୁଗଳ ! ତୁମ ଦୁହିଁଙ୍କ କଥା ଏବେ ମନେ ପଡ଼ୁଛି । ତୁମମାନଙ୍କ ପାଖରୁ ଦୂରେଇ ହୋଇ ଯଦୁମଣିଙ୍କ ରଚନା ଆଦିକୁ ମୁଁ ସଂଗ୍ରହ କରିବାକୁ ଯେବେ ସେତେବେଳେ ଲଜ୍ଜାର ବିଷୟ ଭାବୁଥିଲି । କିନ୍ତୁ ସେ ଲଜ୍ଜା ଏବେ ଦୂର ହୋଇଗଲା ।

ଏବେ ଏତେଦିନେ ତା ସତ୍ୟ ହେଲା । ହେ ବନ୍ଧୁ ଯୁଗଳ ! ସାଥି ହୋଇ ପରଲୋକରେ ତୁମର ଭାବନା ଏବଂ ଆକାଂକ୍ଷା ପୂରଣ ହୋଇଥିବାରୁ ସନ୍ତୋଷ ଲାଭ କର ।

ସାନ ଜୁଆଇଁ

# ଏ କାର୍ଯ୍ୟ କିପରି ସମ୍ଭବ ହେଲା ?

ଏକଥା କିପରି ସମ୍ଭବ ହେଲା, ଏକ୍ଷଣି ଆଦୌ ଭାବି ହେଉନାହିଁ। ଜଗମଣି ପଦ୍ମମଣି ମହାପାତ୍ରଙ୍କୁ ମୁଁ କେବେ ଭୁଲରେ ମଧ୍ୟ ଜାଣେନା। ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ରର 'ଶୁଦ୍ଧ ମୂର୍ଖ ଏ ହୋଇଛି ବାହାର, ବୈଦ୍ୟତା ବଳି କେହ୍ନେ ନ ବୁଝିର'— ଏହା ଟିଗିରିଆର ବରେଣ୍ୟ କପିଳେଶ୍ୱର ବଡ଼ଜେନାଙ୍କ ତୁଣ୍ଡରୁ ଏବଂ 'ନେଲେ ହରି ହରି ହରିଣ ନେତ୍ରାକୁ ବିହରିଗଲେ ଏହି ଦୂର' ଏହି ପଦକ ଉକ୍ତ ଟିଗିରିଆର ମହାମାନ୍ୟ ରାଜପୁରୁଷ ନୈୟାୟିକ ଷଡ଼ଦର୍ଶନ ବିରବର ଚମୂପତି ମହାପାତ୍ରଙ୍କ ତୁଣ୍ଡରୁ ଶୁଣି ମୁଁ ତାହା ମୁଖସ୍ଥ କରି ଗଲି।—ବେଶ୍, ଏତିକିରେ ପଦ୍ମମଣିଙ୍କ ସହିତ ମୋର ପରିଚୟ ଶେଷ। ତାଙ୍କର ଅନେକ ହାସ୍ୟ କବିତା ଶୁଣିଥିବି। କିନ୍ତୁ ସେ ପ୍ରତି ମୋର ଆଦର ନ ଥାଏ।

ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରର ଉକ୍ତ ଦୁଇଟି ପଦ ଯେଉଁ ଘଟଣାରୁ ମୁଁ ଶୁଣି ତତ୍ପ୍ରତି ମନଯୋଗ ଆଣିଥିଲି, ସେ ଘଟଣାଟି ସଂକ୍ଷେପରେ କହିଲେ ଏଠାରେ ଭଲ ହେବ। ମୁଁ ୧୯୨୯ରେ ଖଦଡ଼ପିନ୍ଧା ଏକ ପୂର୍ଣ୍ଣ ସ୍ୱାଧୀନତାପିପାସୀ ସମାଜସଂସ୍କାରକ ଯୁବକ ଭାବରେ ଟିଗିରିଆ ଦୁର୍ଗରେ ବିବାହ କରେ। ଘଟଣା ସେ ସମୟରେ ଚମକ୍ ଆଣିବା ସ୍ୱାଭାବିକ। କାରଣ ବର ସ୍ୱୟଂ କନ୍ୟା ଦେଖି ଆସିବାଠାରୁ ନିଜର ନିସ୍ଥାପର ଆଭିଜାତ୍ୟ ବର୍ଜନ କରି ଗାଡ଼ି କେତେ ଖଣ୍ଡରେ ସାମଗ୍ରୀ ଧରି ବିବାହ କରି ଆସିବା ବାସ୍ତବିକ୍ ନୂତନ ଜଣାଯାଉଥାଏ। ଟିଗିରିଆ ଗଡ଼ର ଶ୍ରୀଯୁକ୍ତ ମଧୁସୂଦନ ପଟ୍ଟନାୟକ ଏହା ତତ୍କାଳରେ କେବଳ ସମର୍ଥନ କରନ୍ତି। ମୁଁ ଏତେ ନିଷ୍ଠୁର ଥିଲି ଯେ ସମଗ୍ର ଗ୍ରାମର ଅନୁରୋଧ ଉପରୋଧ ଭାଙ୍ଗି ସଂସ୍କାର ପ୍ରତି ଜିଗର କରି ଏହି ଘଟଣାରେ ବ୍ୟଥିତ ଥିବା ମୋର ବଡ଼ମାଆଙ୍କୁ ମୋ ବିବାହର ହଟମଙ୍ଗଳା ଦିନ ହରିଚାଲି ପଠାଇ, ରାଜଗୁରୁ ସାଟୋପରେ, ବରବେଶରେ କଦାପି ଘନ୍ତୁ ଆସି ନ ଥିଲି।

ଟିଗିରିଆ ଦୁର୍ଗ ସମ୍ଭ୍ରାନ୍ତ କରଣବହୁଳ ଏକ ଜନପଦ। ଘରେ ଘରେ ଚର୍ଚ୍ଚା ଚାଲିଥାଏ କପିଳେଶ୍ୱର ବଡ଼ଜେନାଙ୍କୁ ଦୁର୍ବୁଦ୍ଧି ଘୋଟିବାରୁ ସେ ତାରଫଗ କନ୍ୟାଟିକୁ ଭସେଇଦେଲେ। କନ୍ୟାର ନାମ କନକ ମଞ୍ଜରୀ। ସତେ କି ପାଗଳା ବାବାଜୀ କଥାରେ ସେ ଅତୁଳ୍ୟ ରୂପବତୀ ଜେମା। ପୁରୀ ଜଗନ୍ନାଥଙ୍କ ପଣ୍ଡାଠୁ ଶୁଣିଲି ସେ ରାଜରାଜେଶ୍ୱରୀ କନ୍ୟା। ସେହି କନ୍ୟାର ବର କିନ୍ତୁ ନରସିଂହପୁରରେ ଥିବା ବସ୍ତ୍ରବନ୍ଦ୍ୟ ଗଜପତିଙ୍କ ରାଜଗୁରୁ ବଂଶଜ ହୋଇ ପଦାର ଗୁଳ ବଣ ହୋଇ ଆସିବ, ତାଙ୍କୁ ନିଜକୁ ମୁକ୍ତଦେବାର ପାପ ନାହିଁନ୍ତି, ଏହି ବିଷୟଟି ଉକ୍ତ ଜନପଦକୁ ବିବ୍ରତ କରିଥାଏ।

ବିବାହ ପୂର୍ବଦିନ ରାତିରେ ମୁଁ ବାର ଏହି ଜିଗର ଭାଙ୍ଗିବା ଲାଗି ଅଭିଜାତ ଶିରୋମଣି ମହାମାନ୍ୟ ପରମପୂଜ୍ୟ ବୃଦ୍ଧ ରାଜା ଗୁଣ୍ଡିଚା ମଣ୍ଡପକୁ ବିଜେ ହେଲେ। ତାହା

ହେରା ପଞ୍ଚମୀର ପୂର୍ବ ଦିବସ । ମୋତେ ସେଠାକୁ ଡକାଇ ଆଣିଲେ । ନିକାଞ୍ଚନରେ ତାଙ୍କଠୁ ଗୁରୁ ଗମ୍ଭୀର ଧ୍ୱନିରେ ବାଣୀ ଫୁଟି ଉଠିଲା—

'ଓ ହୋ, କି କଥା ଯେ । କାହାର ପରଂପରା ନାହିଁ ବା ନ ଥିଲା ହେ ? ଯେ କି ସମାଜ ସଂସ୍କାର ?'

ତାଙ୍କର ଗମ୍ଭୀର ମୂର୍ତ୍ତି ଦେଖି ମହାଦାମ୍ଭିକ ଯୁବକ ମୁଁ, ଭୟରୁ ନୁହେଁ, ଏକ ଅହେତୁକ ମମତା ଯେନ ମୋର ସ୍ୱେଚ୍ଛାଚାରିତାର ଦୁର୍ଗ ଭୁଷୁଡ଼ି ପଡ଼ିଲା । କିନ୍ତୁ ପିତୃହୀନ ସନ୍ତାନର ଜଗତର ସବଂଶ ବଡ଼ ବେଶୀ ଦେଖାଯାଏ ।

ଭବିଷ୍ୟତକୁ ଶ୍ୱଶୁର ନାମରେ ଯେ ଚିହ୍ନିତ ହେବେ, ସେ କହିଲେ— ଜାଣନ୍ତି ଆଜ୍ଞା ! ଅତି ଉଚ୍ଚକୁଳରେ ଜନ୍ମିଛନ୍ତି ।

ରାଜା କହିଲେ—'ସାନ ଜୁଆଇଁଙ୍କର ଏହା ବଂଶୋଚିତ ହୋଇନି ।' ଏହା କହି ସେ ମୋର ଓଠ ମୁଖ ଆଉଁସି ଦେଲେ । ପୁଣି କହିଲେ—'ହେଉ ତୁମ କଥା ରହୁ—ଆମ କଥା ରହୁ । ମୋର ମାନ ରଖ ।'

ମୁଁ କହିଲି—'ବେଦାଙ୍ଗ ନ ଯାଜ୍ଞିକ କଣ ବର କେଉଁଥି ହୁଏ ?' ରାଜା ମୋର ଚିତ୍ତ ବଦଳିଛି ମନେକରି, କି ଆଶ୍ଚର୍ଯ୍ୟ, ସେଠାରେ ସାଧାରଣ ବ୍ୟକ୍ତି ପରି ସ୍ୱର ଧରି ଗାଇଦେଲେ—

**ଧପଟେ ଲମ୍ପଟ କରାଇ ତାହାକୁ**
**ପରମ କପଟୀ ଶେଖର**
**ଝଟକରି ଉଠି ଧଇଲେ ରତନ**
**କଣ୍ଟକ ଶୋଭିନୀର କର**
**ନିଃଶଙ୍କେ**
**ନେଇ କଲେ ଅଙ୍କ ବିହାରୀ**
**ନେଲେ ହରି ହରି ହରଣ ନେହାକୁ**
**ବିହରିଗଲା ଏହି ହୁରି ।**

ପୁଣି କହିଲେ—ଆହେ ଚଞ୍ଚଳମନା ! ଜୁଆଇଁ ତ ହୋଇନ, କେଉଁ ସାହସରେ ଆମ ଜେମକୁ ଦେଖି ତୁମେ ବିବାହ କରିବ ବୋଲି କହି ଯାଇଥିଲ ? ପୁଣି ପଛର ଝୋଣ ବାଟ କେଉଁ ଆଶା ଧରି ଧାଇଁଛ ? ବାବୁ, ତମ ଚୁଟିକିଟାଙ୍କ କଥା ଆମକୁ ଜଣା । ତମ ମନ ଯେ—ଦାଣ୍ଡରେ ସିଧା ଚାଲିଯାଇ ହାତଧରି ନେଇ ଚାଲିଯାନ୍ତ । ଏପ୍ରାତ ? ସତରେ କମିକ ବଡ଼ପଣ୍ଡାଠେଇ ବିଶ୍ୱାସ ନାହିଁ । ସେ ତାହା କରିପାରନ୍ତି । କିନ୍ତୁ ମୁଁ ଥିବାଯାଏ ତା କେବେ କରାଇ ଦେବିନି ।'

ତାଙ୍କର କଥା ରହିଲା । ବିବାଦ ସରିଲା । ନିତ ଡାକରା ଆସିଲା—'ଗୁମୁଁଙ୍କ ପାଖକୁ ଆସନ୍ତୁ ।' ନାନା ଭଳିର ଜଳଖିଆ ଖୁଆନ୍ତି ନିତିକୁ ନିତି । ସବୁଦିନ ନାନା ଶାସ୍ତ୍ରଚର୍ଚ୍ଚା । ମଧ୍ୟରେ ଯଦୁମଣି କଥା ମଧ୍ୟ କହନ୍ତି । ଏମନ୍ତ କି ବଡ଼ପଣ୍ଡା ମଧ୍ୟ ସେ ଚର୍ଚ୍ଚାରେ ଯୋଗଦେଇ କେତେ ପଦ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରରୁ ଗାନ କରନ୍ତି ।

ଯଦୁମଣିଙ୍କ ସହିତ ପରିଚୟର ଏହା ହିଁ ପ୍ରାଥମିକ ସମସ୍ୟା ହେଲେହେଁ— ଏ କଥା କୋଉ କାଳ କଥା, କୁଆଡ଼େ ମନରେ ଲୁଚିଗଲା । ଅବଶ୍ୟ ମୁଁ ସେତେବେଳେ ଗର୍ବିତ ହୋଇ ଟିଗିରିଆର ସେ ଦୁଇ ଜଣ ମନସ୍ୱୀଙ୍କୁ କହିଥିଲି—ମୁଁ ଇଚ୍ଛାକଲେ ଯଦୁମଣି ମହାପାତ୍ରଙ୍କ କାବ୍ୟ କବିତାର ଏକ ସୁନ୍ଦରରୁ ସଂଗ୍ରହ କରି ଦେଇପାରେ ।

ଯଦୁମଣିଙ୍କ ସମ୍ପର୍କରେ ଏପରି ଦୃଢ଼ତା ଦେଖାଇ କହିବାର ତାତ୍ପର୍ଯ୍ୟ ଥିଲା ଏହି ଯେ—ଦୁଇ ଜଣ ସେ କାଳର ବୃଦ୍ଧ ବିଜ୍ଞଜନଙ୍କ ନିକଟରେ ନିଜର ଅର୍ବାଚୀନ ବଡ଼େଇ ଦେଖେଇହେବା । କିନ୍ତୁ ଯଦୁମଣିଙ୍କ ସମ୍ବନ୍ଧରେ 'ଅ' 'ଆ' ମୋତେ ପ୍ରକୃତରେ ଯେପରି ସେତେବେଳେ ଜଣା ନ ଥିଲା, ସେପରି ମୁଁ ତାଙ୍କୁ ବାସ୍ତବିକ ଶ୍ରଦ୍ଧା ମଧ୍ୟ କରିପାରୁ ନ ଥିଲି । ୧୯୦୭ ପରେ ଏ ଶ୍ରଦ୍ଧା ଆପେ ସମଗ୍ର ମନ ଉପରେ ପ୍ରଭାବିତ ହେଲା ।

ଏବେ କଟକର ପଡ଼ୋଶୀ ଭାବରେ ସ୍ୱନାମଧନ୍ୟ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ମତେ ଗଡ଼ଜାତର ବ୍ୟକ୍ତି ବୋଲି କହି ବସିଲେ—'ଆପଣ ସଂଗ୍ରାହକ ଭାବରେ ଯେ ସିଦ୍ଧି ଦେଖାଇଲେ, ତାହା ଯଦୁମଣି ମହାପାତ୍ରଙ୍କଠାରେ ପ୍ରୟୋଗ କଲେ ହୁଅନ୍ତା ନାହିଁ କି ?' ସେ କହିଲେ—'ମୋର ମନେ ହେଉଛି ସେ କେବଳ ଜଣେ ରଙ୍ଗରସିକ ନ ଥିଲେ, ସେ ଜଣେ ବିଜ୍ଞ ପଣ୍ଡିତ ମଧ୍ୟ ଥିଲେ ।'

ମୁଁ ତାଙ୍କୁ ତୁରନ୍ତ ନାହିଁ କଲି ଏହି କାରଣରୁ ଯେ—

'ବ୍ରହ୍ମା, ମୁଁ ତାଙ୍କ ସମ୍ବନ୍ଧରେ କିଛି ମାତ୍ର ଜାଣେନି । ମୋଦ୍ୱାରା ତାହା ହୋଇପାରିବ ନାହିଁ । ମୋର ମଧ୍ୟ ସେ ଯୋଗ୍ୟତା ନାହିଁ ।'

ସେ ତଥାପି କହିଲେ—'କେବେ ଆପଣ ମୋ କଥାଟା ମନେ ରଖିଥାନ୍ତୁ ।'

ତେବେହେଁ ମୁଁ ସେ କଥା ସମ୍ପୂର୍ଣ୍ଣ ମନକୁ ନେଲି ନାହିଁ । କିନ୍ତୁ "ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର"ଛପା ବହି ଖଣ୍ଡେ ସଂଗ୍ରହ କରି ପଢ଼ିବା ଆରମ୍ଭ କରି ଦେଖିଲି ସେ ମୂଳ ରଚନା ଏବଂ ଟୀକାରୁ ମୁଁ କିଛି ବୁଝି ସନ୍ତୋଷ ଲଭି ପାରୁନ । ମୋର ଜଣେ ଗ୍ରାମ୍ୟ ବନ୍ଧୁ ରଘୁନାଥ ରଥଙ୍କଠାରୁ ତାଙ୍କ ହାତଲେଖା ପାଣ୍ଡୁଲିପି ଆଣି କିଛି ସମନ୍ୱିଲି, କିନ୍ତୁ ସେଥିରେ ତୃପ୍ତି ମଧ୍ୟ ଲଭିପାରିଲି ନାହିଁ । ବର୍ଷେ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଡ଼ିଗ୍ରୀ ଉପାଧିକୁ ଆସିଥିବା ବଲାଙ୍ଗିର ରାଜେନ୍ଦ୍ର କଲେଜର ଜଣେ ସଂସ୍କୃତ ଅଧ୍ୟାପକଙ୍କ

ଅଗଷ୍ଟ ୭ ଡିସେମ୍ବର ୧୯୫୯ ରେ ହଠାତ୍ ରେଲଷ୍ଟେସନରେ ଦେଖାହେଲା । ସେ ଯଦୁମଣି ମହାପାତ୍ରଙ୍କର ଏହି ପଦକୁ ଏପରି ଅର୍ଥ କରୁଥାନ୍ତି, ମତେ ସତରେ ଅତ୍ୟନ୍ତ ଭଲ ଲାଗିଲା । କିନ୍ତୁ ଘରକୁ ଫେରି ତା' ସବୁ ଭୁଲିଗଲି । ମୋ ଦ୍ୱାରା ବାସ୍ତବିକ୍ ହେବ ନାହିଁ ସିଦ୍ଧାନ୍ତ କରି ସେ ଆଲୋଚନା ଏକାବେଳେ ଛାଡିଦେଲି ।

ଏପରି ଭାବରେ କେତେକାଳ ଚାଲିଗଲା । ବର୍ଷେ ବସନ୍ତ ପଞ୍ଚମୀ ପୂର୍ବଦିନ ତା ୧୧-୨-୫୯ ବୁଧବାର ଏକ ହତାଶ ଜୀବନ ନେଇ ବକ୍‌ସିବଜାର ପାର୍କେଟ ପାଖ ଦେଇ ରିକ୍‌ସାରେ ଚାଲିଯାଉଥାଏ । ଏପରି ଦୁଃଖପ୍ରଦ ଜୀବନ, ଏପରି ଅସହାୟତା ଅନୁଭବ କରିନ ଜେବେହେଲେ ଜୀବନରେ ଦିନକ ପାଇଁ । ପ୍ରିୟତମା କନକ ମଞ୍ଜରୀ ମୋଲେ ନିରନ୍ତର ଜାଗ୍ରତ ପ୍ରହରୀ ପରି ଜଗି ରହିଥାନ୍ତି । ସର୍ବଦା ଭରସା ଦେଇ ଚାଲିଥାନ୍ତି— 'ତୁମେ ଏତେ ଅଧୈର୍ଯ୍ୟ ହୁଅନ, ନିଶ୍ଚୟ ତୁମର ଅସୁବିଧା ଦୂର ହେବ ।' ବାସ୍ତବିକ କହଇ ଯେ ତାଙ୍କ କଥା ସତ୍ୟ ହୁଏ, ମୁଁ ସ୍ତମ୍ଭୀଭୂତ ହୋଇଥାଏ । ମୁଁ ଶୁଷ୍କ ମୁଖରେ ନିରାଶ ହୃଦୟରେ ଜଣେ ପରିଚିତଙ୍କ ପାଖକୁ ସମସ୍ତ ଲଜ୍ଜା ବିସର୍ଜନ ଦେଇ ଏକ ପରାମର୍ଶ ମାଗି ଯାଉଛି, ପଛରୁ ଶୁଭିଲା - -

'ଚକ୍ରଧର ବାବୁ ! କ'ଣ ଏମିତି ଏମିତି ଚାଲିଯିବେ କି ?'—ସେ ଡାକିଲେ ସେ ମୋର ଜଣେ ବହୁଦିନର ପୁରାତନ ହିତୈଷୀ ବନ୍ଧୁ ଓ ଗୁରୁଜନ । ପଛକୁ ଅନାଇଁ ଦେଖିଲି ସତ୍ୟବାଦୀ ପ୍ରେସର ଜେନେରଲ ମ୍ୟାନେଜର ଶ୍ରୀଯୁକ୍ତ ଫକୀରଚରଣ ଦାସ । ଆମର ଫକୀର ବାବୁ । ସବୁଦିନେ ସମାନ ଗଠନ । ସମାନ ବ୍ୟବହାର । ସମାନ ଢଙ୍ଗଢାଙ୍ଗ । ସମାନ ବେଶଭୂଷା । ସ୍ପଷ୍ଟଭାଷୀ । ସ୍ୱଳ୍ପଭାଷୀ । କେହି କହିପାରନ୍ତି ବଢେଇ କରି କହୁଛି । କିନ୍ତୁ ଏହା ହିଁ ସତ୍ୟ—ନିରାଟ ସତ୍ୟ । ସେ ଡାକିବା ମାତ୍ରେ ମନରେ ଭାବିନେଲି 'ଲଜ୍ଜା-ନିବାରଣ' ମୋର ଲଜ୍ଜା ଏତିକିବେଳେ ନିବାରଣ କଲେ କି ?

ଆମ ବଂଶର ଏକ ପ୍ରବଚନକୁ ମୋ ଜନନୀ ସର୍ବଦା କହୁଥାନ୍ତି—'ସଦୈ ରଙ୍ଗ ରଙ୍ଗ ।' ଯେଉଁ ରଙ୍ଗ ସର୍ବଦା ସମାନ ତାହା ହିଁ ବରଣୀୟ । ଆଜି ଯାନବାହନରେ ଫୁଲମାଳରେ, କାଲି ନିର୍ଧୂମ ଖରାରେ ଖାଲି ପାଦରେ ଘର୍ମ ମୁଣ୍ଡରେ, ଏହା ସୁବ୍ୟ ଅଭିଜାତ ପସନ୍ଦ କରୁ ନ ଥିଲେ । ଆମର ଫକୀର ବାବୁ ହେଲେ—'ସଦୈ ରଙ୍ଗ ରଙ୍ଗ ।'

ଶ୍ରୀଯୁକ୍ତ ଫକୀର ବାବୁ କହିଲେ—'କାଲି ଆପଣ ଏଠି ଅଛନ୍ତି ?' ମୁଁ ହଁ କରିବାରୁ କହିଲେ—''ସମାଜ ତରଫରୁ ମୋର ନିମନ୍ତ୍ରଣ, କାଲି ଆପଣ ଠିକଏ ନିଶ୍ଚୟ ଆସିବେ । କଣ ନିମନ୍ତ୍ରଣ ପତ୍ର ପଠାଇବି ?''

ମୁଁ ନତ ବଦନରେ କହିଲି—'ନିମନ୍ତ୍ରଣ ପତ୍ର ଏହାଠୁ କଣ ଅଧିକ ହେବ ?' ମୁଁ କଣ ଭାବି ଘରକୁ ଫେରିଆସିଲି ସେଦିନ । ଆଉ କାହିଁ ଗଲି ନାହିଁ ।

ପ୍ରଖ୍ୟାତ 'ସମାଜ' ସହିତ ମୁଁ ୧୯୨୭।୨୮ରୁ ସମ୍ପୃକ୍ତ । ମାନନୀୟ ରାଧାନାଥ ରଥଙ୍କ ସହିତ ପିଲାଦିନରୁ ମୋର ଘନିଷ୍ଠ ସମ୍ପର୍କ । ତାଙ୍କୁ ମୁଁ ନିରନ୍ତର ପୂଜ୍ୟ ଭାବରେ ଦେଖିଆସିଛି । 'ସମାଜ'ର ଯୁଗ୍ମ ସମ୍ପାଦକ ଶ୍ରୀଯୁକ୍ତ ଶ୍ରୀହର୍ଷ ବାବୁ, ହୃଦୟନାଥ ବାବୁ ପ୍ରଭୃତି ମତେ ଯଥେଷ୍ଟ ଶ୍ରଦ୍ଧା କରିଥାନ୍ତି । ଏ ନିମନ୍ତ୍ରଣରେ ଯୋଗ ଦେଇ ବହୁ ବନ୍ଧୁ ବାନ୍ଧବଙ୍କର ଦର୍ଶନ ଲାଭ କରି ଆନନ୍ଦିତ ହେଲି । କିନ୍ତୁ ଅର୍ଥ କଷ୍ଟ ଏପରି ଯନ୍ତ୍ରଣାଦାୟକ ଯେ ବାଣୀକଣ୍ଠ ନିମେଇ ହରିଚନ୍ଦନଙ୍କ ମୋ ପ୍ରତି ଅଗାଧ ଶ୍ରଦ୍ଧା ଏବଂ ତାଙ୍କର ସଙ୍ଗୀତ ଧ୍ୱନି ମଧ୍ୟ ମୋତେ ଶୁଣିବାକୁ ଅଲଣା ଲାଗୁଥାଏ । ଭକ୍ତଙ୍କର ବହୁ ସମ୍ମାନାସ୍ପଦ ବ୍ୟକ୍ତିଙ୍କର ଦର୍ଶନ ମିଳିଲା । ଶ୍ରୀଯୁକ୍ତ ରାଧାନାଥ ରଥ, ଶ୍ରୀଯୁକ୍ତ ବୈକୁଣ୍ଠନାଥ ପଟ୍ଟନାୟକ, ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ ମତେ ଦୁଃଖ ସୁଖ ପଚାରିଲେ । ମହାପ୍ରସାଦ ଭୋଜନ ହେଲା । ଏତେ ସତ୍ତ୍ୱେ ମୁଁ ନିରାଶ ମନଧରି ରହିଥାଏ ।

ହଠାତ୍ ସମୀରବାବୁ ନିକାଞ୍ଚନ ଦେଖି ଡାକି କହିଲେ—"ଆପଣ ଚାହିବେ ବୋଲି ମୁଁ "ଦାସ ବ୍ରଦର୍ସ"ଙ୍କୁ ଜବାବ୍ ଦେଇ ଦେଇଛି । ଚିଠି ଲେଖିଥାନ୍ତି, କିନ୍ତୁ ଦେଖାତ ହୋଇଗଲା ଆଜି ତ ସୁବିଧା ହେବ ନାହିଁ । କାଲି ସକାଳ ନଅଟା ପରେ ଆପଣ ଏଠିକୁ ଆସିଲେ ସବୁ ତୁଟିଯିବ । ଆପଣ ସଦୁମଣି ମହାପାତ୍ରଙ୍କ କାର୍ଯ୍ୟାବଳୀ ସଂଗ୍ରହ କରି ଗ୍ରନ୍ଥାବଳୀଟିଏ ନିଶ୍ଚୟ କରିବେ ।"

ମନ୍ତ୍ର ଲେଉଟୁଥିଲା କାକର ପାଣି
କଇଦ କହିଲା ବଡ଼ ଚୋରାଣି—

ସତ ଯେ, ଆଛା କଥାରେ ପଡ଼ିଲି । କହିଲି—'କାଲି କହିବି ।'

ଘରକୁ ଫେରିଲି । କନକ ମଞ୍ଜରୀ କହିଲେ—'ନିଶ୍ଚୟ କରିବାକୁ ହେବ । ତେବେ କଣ ପିଲାଏ ପରୀକ୍ଷା ଦେବେ ନାହିଁ, ନାଁ ଲେଖାଇବେ ନାହିଁ ? ଏତେ ବାଟ ନିଜ ଦମ୍ଭରେ ଚାଲି ଆସିଲ । ଏଇଠି ଅଟକି ଯିବ ? ତୁମେ ଚୁକ୍ତି କରି ଟଙ୍କା ଆଣ । ଦେଖ, ତୁମର ସବୁ ସଫଳ ହୋଇଯିବ । ସେ ଅସମୟରେ ଆମକୁ ଯାହା ଦେବେ, ତା ଆମର ଲକ୍ଷେ ଟଙ୍କା । ଦେଖ, ଏହା ଦେବତାର ଆଶୀର୍ବାଦ ।'

ଦିନ ତମାମ, ରାତି ତମାମ ଦୁଶ୍ଚିନ୍ତାରେ ଥାଏ । କ୍ରୋଧରେ ଅନ୍ଧ ହୋଇ କହିଲି—ମୁଁ ଯେଉଁ ବିଷୟ ଭଲ ପାଏନି ପୁଣି ଜାଣେନି, ସେଥିପାଇଁ ମୁଁ ଦ୍ରବ୍ୟ ନେଇ ଆସିବିନି? ଶେଷକୁ ଉଜାଏତ ହେବ ତ ?

ପତ୍ନୀ କହିଲେ—ହଁ, ହଁ, ମୋ ପାଇଁ ତୁମକୁ ଉଜାଏତ ହେବାକୁ ହେବ । ମିଥ୍ୟାବାଦୀ ହେବାକୁ ହେବ । ତୁମେ ନିର୍ଭୀକ ଭାବରେ ଚୁକ୍ତି ସଂପାଦନ କର । ମୁଁ ନିଶ୍ଚିତ କହୁଛି, ମୁଁ ଥିବା ଯାଏ ତୁମ ଚରିତ୍ରରେ କଳଙ୍କର ଦାଗ ତ ଦାଗ

ବନ୍ଧୁ ମଧ୍ୟ କେବେ ସ୍ପର୍ଶ କରିବ ନାହିଁ । ସାହସୀ ହୁଅ । ଯାହା ଆମେ ନିରନ୍ତର ତ୍ୟାଗ କରି ଚାଲିଛୁ, ସେ ଆମ ପାଖକୁ ବାରମ୍ବାର ଆସୁଛି । ତେଣୁ ଏଥିରେ ଆମର ଜୟ ସୁନିଶ୍ଚିତ ।

ଦେଖିଲି—'ଦାସ ବ୍ରଦର୍ସ'ର ପ୍ରୋପ୍ରାଇଟର ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ଦାସ ଏବଂ ମାନେଜର ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମିଶ୍ର ଆଗରୁ ଆସି ବସିଛନ୍ତି । ଫକୀର ବାବୁଙ୍କ କଥା ତ ପାଟିରୁ ବାହାରିଲେ ହେଲା । ଚୁକ୍ତି ହୋଇଗଲା । ନଗଦ ମୁଦ୍ରା ୨'ଶ ପଚାଶଟିର ମୂଲ୍ୟରେ ବହୁ ଯୁବକସୁଲଭ ଉନ୍ମାଦନା ନେଇ ଚାଲିଲି ଭୁବନେଶ୍ୱର, ଖୋର୍ଦ୍ଧା, ସୁନାଖଳା, ବୋଲଗଡ଼, ବାଉଁଶିଆପଡ଼ା, ଗୋବିନ୍ଦପୁର, ଇଟାମାଟି, ନୂଆଗଡ଼, ମାନ୍ଧାତାପୁର, ଓଡ଼ଗାଁ, ଶରଣକୁଳ, ରଣପୁର, ଆଠଗଡ଼, ଗଞ୍ଜାମ, ଦଶପଲ୍ଲା, ଖଣ୍ଡପଡ଼ା, ବାଘମାରି, ପୁରୀ, ଝିଗିରିଆ, କଡ଼ାମ୍ବା, ନରସିଂହପୁର, କୈାଦ, ଅନୁଗୁଳ, ଢେଙ୍କାନାଳ ଇତ୍ୟାଦି ସର୍ବତ୍ର ଖୋଜି ଚାଲିଲି ।

ଯଦୁମଣିଙ୍କ ଅଣନାତି ଦାଶରଥି, ଚନ୍ଦ୍ରଭାନୁ, ଉଦେଭାନୁ ତିନି ଭାଇ, ତାଙ୍କ ସାଇର ଶିକ୍ଷିତ ଯୁବକ ବେଣୁଧର, ନରସିଂହପୁରର ଜଣେ ଟୋଲ ଛାତ୍ର ନବଘନ ଏପରି ବହୁ ପ୍ରିୟଜନ ସାମଗ୍ରୀ ଯୋଗାଇଲେ । ଯଦୁମଣିଙ୍କ ହାତଲେଖା ପୋଥି, ଚିତ୍ରିତ ମୂର୍ତ୍ତି, ତାଙ୍କର ଜମିର ସରକାରୀ ଦସ୍ତାବିଜର ନକଲ ସବୁ ଦେଖିଲି ।

ବାସ୍ତବିକ୍ ବୁଲୁଁ ବୁଲୁଁ ଚାରି ମାସ ମଧ୍ୟରେ ନାନା ସମ୍ଭାର ମିଳିଗଲା । କି ଆଶ୍ଚର୍ଯ୍ୟ ! ବିଚିତ୍ର ଭାବରେ ମୁଁ ବୁଡ଼ା ହୋଇଗଲି । ଯାହା ଭାବି ନ ଥିଲି, ତାହା ହୋଇ ଚାଲିଲା ।

ଗୋଟିଏ ଗୋଟିଏ ଜଟିଳ ପଦ ପାଇଁ ମତେ ସକାଳୁ ସଞ୍ଜଯାଏ ଭାବିବାକୁ ହୁଏ । ପୁଣି ତାର ଅର୍ଥ ମିଳିଯାଏ । କିପରି ମିଳେ ଭାବି ମୁଁ ଆଶ୍ଚର୍ଯ୍ୟ ହୋଇଥାଏ । ଏପରି କଠୋର ପରିଶ୍ରମ କିପରି ମୁଁ କଲି ତାହା ଆଜି ଭାବି ସ୍ତମ୍ଭୀଭୂତ ହେଉଛି ।

ଏହା ହିଁ ହେଲା ସଂଗ୍ରହର ଇତିହାସ । ପୁଣି ଟୀକା କରିବାରେ, ସଠିକ ଭାବରେ ପଦମାନ ଜାଣିବାରେ ମୁଁ କିପରି ପରିଶ୍ରମ କଲି ତାହା ଏକ୍ଷଣି ଭାବିପାରୁନି । ଏପରି ଅଶୁଦ୍ଧ ଗ୍ରନ୍ଥ, ଅଶୁଦ୍ଧ ପଦସବୁ ମିଳିଲା ଯେ ଦିନେ ଦିନେ ମୁଁ ବାଉଳା ପରି ହୋଇଯାଏ । ଜନକ ମଞ୍ଜରୀଙ୍କର କି ମେଧା, ସେ ମୋର ସଂଶୟ ଦୂର କରିଦିଅନ୍ତି । ଅନ୍ୟାନ୍ୟ କୋଷ ଗ୍ରନ୍ଥ ଅପେକ୍ଷା ମହାମାନ୍ୟ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷ ଏଥିରେ ମୋତେ ବହୁ ସାହାଯ୍ୟ କରିଛି ।

ଏ କାର୍ଯ୍ୟରେ ଉତ୍କଳର ବହୁ ଜନମାନବ ମତେ ଉତ୍ସାହିତ କରିଛନ୍ତି । ଏ ଦେଶର ବରିଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରେ ସ୍ୱନାମଧନ୍ୟ ପ୍ରଖ୍ୟାତ କବି ଉତ୍କଳର ମାୟାଧର ମାନସିଂ ସେଉଁଦିନ ଏଗ୍ରନ୍ଥର ପ୍ରକାଶକଙ୍କୁ କହିଥିଲେ ଯେ—

'ଆପଣ ବିଶ୍ୱସ୍ତ ଏବଂ ଉପଯୁକ୍ତ ବ୍ୟକ୍ତିଙ୍କ ହାତରେ ସେ ଭାର ଅର୍ପଣ କରିଛନ୍ତି ।' ତାହା ଶୁଣି ମୁଁ ଅସୀମ ଶକ୍ତିରେ ଜାଗି ଉଠିଥିଲି ।

ଯଦୁମଣିଙ୍କର ରଚନା ମଧ୍ୟରେ ଅନେକ ବାକ୍ୟ ଆଧୁନିକ ପାଠକ ପାଠିକାମାନଙ୍କୁ ଅଶ୍ଳୀଳ ବିଶୃଙ୍ଖଳ ବୋଧ ହେବ । କିନ୍ତୁ ବସ୍ତୁ ବିଶ୍ୱରେ ତାହା ଲୁଗ୍ଭଇ ହଆସିବା ଅସମୀଚୀନ ବୋଲି ବ୍ୟକ୍ତ ହେବାରୁ ଯେପରି ପ୍ରଚଳିତ ଅଛି, ସେପରି ରଖାଯାଇଅଛି ।

ଶ୍ରଦ୍ଧେୟ ଫକୀର ବାବୁ ଏ ଗ୍ରନ୍ଥର ମୂଳରୁ ଶେଷଯାଏ ମତେ ସାହାଯ୍ୟ, ସହାନୁଭୂତି, ନିର୍ଦ୍ଦେଶ ଏବଂ ଧୈର୍ଯ୍ୟ ଦେଇଥିବାରୁ ତାଙ୍କ ନିକଟରେ ମୋର ଗଭୀର କୃତଜ୍ଞତା ଜଣାଉଛି ।

ଏମନ୍ତ କି ପ୍ରକାଶକ ଶ୍ରଦ୍ଧେୟ ଦାସ ବ୍ରଦର୍ସଙ୍କର ବଚନରକ୍ଷା ମଧ୍ୟ ଏହି କାର୍ଯ୍ୟର ଉଦ୍ୟମର ସଫଳତା ଯେ ଆଣିଦେଇଛି, ତେଣୁ ସେ ମୋର ବିଶ୍ୱାସ ଏବଂ ଶ୍ରଦ୍ଧା ଗ୍ରହଣ କରନ୍ତୁ । ଲେଖକ ତାର କଠୋର ପରିଶ୍ରମ ତୁଳନାରେ ଏଯାଏ ଏ ଦେଶରେ ପ୍ରକୃତ ମୂଲ୍ୟ ପାଏନି । ତେଣୁ ପ୍ରକାଶକ ବନ୍ଧୁଭାବରେ କୃତକାର୍ଯ୍ୟ ହେଲେ ଉଦାରତାପ୍ରଯୁକ୍ତ ଲେଖକ ପ୍ରତି ଦୃଷ୍ଟି ଆଣିବା ସ୍ୱାଭାବିକ ମନେ ହୁଏ ।

ଯେଉଁମାନେ ମୋତେ ଏ କାର୍ଯ୍ୟରେ ପଦେ କଥା କହି ମଧ୍ୟ ଉତ୍ସାହିତ କରିଛନ୍ତି, ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଅଛି ।

ବିଶେଷରେ ମୋର ଅର୍ଦ୍ଧାଙ୍ଗିନୀ ଭାର୍ଯ୍ୟା—କାଯ୍ଥାର ଛାୟା, ଚନ୍ଦନର ଗନ୍ଧ, ରଙ୍ଗର ରଙ୍ଗିମା, ନୈଶାନ୍ଧକାରର ଦୀପ ଶିଖା, ଚନ୍ଦ୍ରମାର କୌମୁଦୀ, ମେଘର ଚକ୍ରି, ତାଙ୍କୁ ବା କ'ଣ କୃତଜ୍ଞତା ଜଣାଇବି ? ସେ ଏ ଲେଖାର ମୂଳରୁ ଶେଷଯାଏ ମତେ ତାଙ୍କର ନିପୁଣ କୃତିତ୍ୱରେ ମୁଗ୍ଧ କରି ଏହାକୁ ଯଥାସମ୍ଭବ ମନୋହାରୀ କରିପାରିଛନ୍ତି । ଏପରି କି ସେ ଏଥିରୁ କିୟଦଂଶର ପାଣ୍ଡୁଲିପି ଲେଖିଛନ୍ତି ।

ତା ଛଡ଼ା ମୋର ପିଲାଏ ଏହି ରଚନାଟିକୁ ନକଲ କରିଦେଇ ମୋର ଶ୍ରମ ଲାଘବ କରିନାହାନ୍ତି କେବଳ, ମୋର ତ୍ରୁଟି ବିଚ୍ୟୁତି ମଧ୍ୟ ଧରାଇ ଦେଇଛନ୍ତି । ବିଭିନ୍ନ ପୁସ୍ତକାଳୟରେ କେଉଁଠି ଯଦୁମଣି ସମ୍ବନ୍ଧରେ ଲେଖାଟିଏ ବା ସମାଲୋଚନାଟିଏ ପାଇଲେ ତାହା ମତେ ଯୋଗାଇଛନ୍ତି । ଶୁଦ୍ଧ ବଢ଼େଇ କୁଳ ଚନ୍ଦ୍ରମାର ଆଶୀର୍ବାଦ ଲାଭକରି ସେମାନେ ଯେ 'ଆମେ ସବୁଠୁ ବଡ଼' ଏପରି ଧାରଣା ପରମ୍ପରା ଦୋଷରୁ ଭୁଲି ନାହାନ୍ତି, ତାହା ଏବେ ଭୁଲିଯାନ୍ତୁ ଏବଂ ସମସ୍ତଙ୍କ ସହିତ ଜଣେ ଜଣେ ହୋଇ ସୁଖୀ ହୁଅନ୍ତୁ ।

ଏହି ସଂଗ୍ରହ ପଦ୍ମମଣିଙ୍କ ସମ୍ବନ୍ଧରେ ସଂପୂର୍ଣ୍ଣ ବୋଲି ଏପରି ବାବଦୂକତା ଦେଖାଇବା ମୋ ମତରେ ଅସମୀଚୀନ ଅଟେ । ଏହା ଗୋଟିଏ ମାତ୍ର ବର୍ଷର ପରିଶ୍ରମ । ଏ ଗ୍ରନ୍ଥ ପ୍ରକାଶିତ ହେବା ପରେ ଆଉ ଯାହା ଥିବ, ତାହା ନିଶ୍ଚୟ ସମୟକ୍ରମେ ପ୍ରକାଶିତ ହେବାର ସୁଯୋଗ ଆସିଯିବ ।

ମନୁଷ୍ୟ ମାତ୍ରେ ତ୍ରୁଟି ଓ ଦୋଷସଂପନ୍ନ । ତେଣୁ ଏହି ଜାତୀୟ ଉଦ୍ୟମରେ ଯେଉଁ ତ୍ରୁଟି ବା ଦୋଷ ପରିଲକ୍ଷିତ ହେବ, ତାହା ପାଠିକା ପାଠକମାନେ ସୌଜନ୍ୟ ଯୋଗୁଁ କ୍ଷମାଦେଇ ଗୁଣ ମାତ୍ର ଗ୍ରହଣ କରିବେ ।

ସଜ୍ଜନା ଗୁଣମିଚ୍ଛନ୍ତି, ଦୋଷମିଚ୍ଛନ୍ତି ଦୁର୍ଜନା
ଦ୍ୱିରେଫା ମଧୁ ମିଚ୍ଛନ୍ତି, ବ୍ରଣ ମିଚ୍ଛନ୍ତି ମକ୍ଷିକା ।

ଚକ୍ରଧର ମହାପାତ୍ର
ଦରିପୁର ରୋଡ଼, କଟକ-୧
୧୪-୫-୬୧, ସାବିତ୍ରୀବ୍ରତ

---

# ଯଦୁମଣି ଜୀବନାଲେଖ୍ୟ

## ପହିଲି କଳା—

ଓଡ଼ିଶାର ଅତି ଦୁଃଖପ୍ରଦ ସମୟରେ ଯଦୁମଣି ଜନ୍ମଗ୍ରହଣ କରିଥିଲେ । ସେତେବେଳେ ମରହଟ୍ଟା ଏବଂ ଇଂରେଜଙ୍କ ମଧ୍ୟରେ ବଳ କଷାକଷି ଚାଲିଥାଏ । ଖୋର୍ଦ୍ଧାରେ ରାଜା ଥାଆନ୍ତି—ବୀର କେଶରୀ ଦେବ । ସେ ଅର୍ଦ୍ଧପାଗଳ ବୋଲି ବିବେଚିତ ହେଉଥିଲେ । କିନ୍ତୁ ସମ୍ପୂର୍ଣ୍ଣ ପାଗଳ ଭାବରେ ତାଙ୍କର ମୃତ୍ୟୁ ହୋଇଥିଲା କେତେ ବର୍ଷ ପରେ ବନ୍ଦୀ ଅବସ୍ଥାରେ ।

୧୭୭୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାବ୍ୟାପୀ ଭୀଷଣ ଦୁର୍ଭିକ୍ଷ । ଚିମନାଜୀ ବାପୁ ଗାଦି ମାଡ଼ି ବସିଥାନ୍ତି । ସେ ଜଣେ ଭଲ ଲୋକର ପୁଅ । ଇଂରେଜଙ୍କୁ ଭାରତରୁ ନିକାଲି ଦେବା ଲାଗି ଯେଉଁ ନାନାଫଡ଼ନବିଶ ପ୍ରଥମେ ୧୭୭୯ରେ ବିପ୍ଳବ ଆରମ୍ଭ କରିଥିଲେ, ସେ ଜଣକ ତାଙ୍କର ଯୁବକ ପୁତ୍ର । ବୟସ ୨୦ ବା ୨୧ ହେବ । ତାଙ୍କର ଲୋଡ଼ା କେବଳ ଟଙ୍କା । ଲୋକ କଥା କିଏ ପଚାରେ ? ରାଜ୍ୟର ଶାନ୍ତିଶୃଙ୍ଖଳା କିଏ ଚାହୁଁଲେ ? ଯେ ଟାଣ ହେଲା ସେ ରାଜ୍ୟରେ ରହିଲା । ରାଜାମାନେ ମନଇଚ୍ଛା ଶାସନ କରୁଥାନ୍ତି । ମଝିରେ ମଝିରେ ମରହଟ୍ଟା ସୈନ୍ୟ ଟଙ୍କା ନ ପାଇଲେ ରାଜାମାନଙ୍କୁ ଗାଦିରୁ ତଡ଼ି ଦିଅନ୍ତି ବା ଗ୍ରାମ, ନଗର ଲୁଣ୍ଠନ କରି ବୁଲନ୍ତି । ରାଜାମାନଙ୍କ ମଧ୍ୟରେ ମଧ୍ୟ ସ୍ନେହ ସଦ୍ଭାବ ଆଦୌ ନ ଥାଏ ।

ଏହିପରି ବିଦ୍ରୋହ, ଏହିପରି ଦୁର୍ଭିକ୍ଷର ଅତୀବ ଦୁଃଖଦାୟକ ଅବସ୍ଥା ମଧ୍ୟରେ ଇଂରେଜ ସୈନ୍ୟମାନେ ବାରମ୍ବାର ଓଡ଼ିଶା ଭିତରେ ଗତି କରିବା ଫଳରେ ଏକ ନୂତନ ଭୟ ସଞ୍ଚରିତ ହେଉଥିବାବେଳେ ଗଞ୍ଜାମ ଆଠଗଡ଼ ଜିଲାରେ ରାଜା ଥିଲେ ବୃନ୍ଦାବନ ହରିଚନ୍ଦନ ଜଗଦ୍ଦେବ ।

## ବଂଶ ପରିଚୟ ଓ ଜନ୍ମସ୍ଥାନ—

ଆଠଗଡ଼ ରାଜାଙ୍କ ଇତିହାସ ଅତୀବ ପ୍ରତିଷ୍ଠାପନ୍ନ ଥିଲା । ୧୫୪୦ରେ ପ୍ରତାପରୁଦ୍ରଙ୍କ ମୃତ୍ୟୁ ପରେ ତାଙ୍କର ଥଟ ସେନାପତି ଥିଲେ ବେନୁ ଷଡ଼ିବର ସିଂହ । ତାଙ୍କର ଏକମାତ୍ର ପୁତ୍ର ଯଦୁନାଥ ଓଡ଼ିଶା ରାଜ୍ୟ ଅରାଜକତା ସମୟରେ ଗୁମୁସର ରାଜାଙ୍କଠାରୁ ତାଙ୍କର ଆଠଟି ଦୁର୍ଗ ଛଡ଼ାଇ ଆଣି ନିଜକୁ ପରମ ବୈଷ୍ଣବ ବୋଲି ପରିଚୟ ଦେଇ ରାଜା ହୋଇଥିଲେ । ଫଳରେ ଋଷିକୁଲ୍ୟା ନଦୀର ବିଚ୍ଛିନ୍ନ ସ୍ରୋତ ଯୋଗୁଁ ନୂତନ ଆଠଗଡ଼ ଅତୀବ ସମୃଦ୍ଧିଶାଳୀ ହୋଇଥିଲା । ବିପଦରୁ ସୁରକ୍ଷା ପାଇଁ ଯଦୁନାଥ ତାଙ୍କର ରାଜଧାନୀକୁ ଅରଣ୍ୟ ଏବଂ ଅତ୍ୟୁଚ୍ଚ ପର୍ବତ ସମାଚ୍ଛାଦିତ ଉପତ୍ୟକା ଭୂଖଣ୍ଡରେ ଗିରିବର୍ଦ୍ଧ, ନିର୍ମାଣ କରି ସ୍ଥାପନ କରିଥିଲେ ।

ଉକ୍ତ ବଂଶର ଅଠ ପୁରୁଷ ପରେ ରଘୁନାଥ ଜଗଦ୍ଦେବ ଆଠଗଡ଼ ସିଂହାସନ ଆରୋହଣ କରିଥିଲେ । ମହମ୍ମଦ ତକୀ ଖାଁର ଆକ୍ରମଣରେ ଖୋର୍ଦ୍ଧା ରାଜା ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବ କଟକ ବାରବାଟୀ ଦୁର୍ଗରେ ବନ୍ଦୀ ହୋଇଥିଲେ । ତାଙ୍କର ରାଜଗୁରୁ ବସ୍ତ୍ରବଂଶୀୟ ପରମଲକ୍ଷ୍ମୀଙ୍କ ତତ୍ତ୍ୱାବଧାନରେ ଉକ୍ତ ଗଜପତିଙ୍କ ପରିବାର ଏବଂ ସ୍ୱୟଂ ଜଗନ୍ନାଥ ମୂର୍ତ୍ତିମାନଙ୍କୁ ଅତି ସାହସରେ ରଘୁନାଥ ଜଗଦ୍ଦେବ ଯେପରି ଭାବରେ ଆଶ୍ରୟ ଦେଇଥିଲେ ତାହା କଳ୍ପନାର ବହିର୍ଭୂତ ଥିଲା । ମଥୁରା ନାମକ ଗ୍ରାମର ସନ୍ନିକଟରେ ଥିବା ପଣ୍ଡିପଡ଼ାରେ ରାଜପରିବାର ଏବଂ ଦିଅଁ ଭୂଗର୍ଭରେ ଯେପରି ଆଶ୍ରୟ କଲେ, ତାର ସନ୍ଧାନ ମିଳିବା ସେତେବେଳେ ଦୁଷ୍କର ଥିଲା । 'ମାରଦା'ରେ ଏବେ ଠାକୁରଙ୍କ ଚକା ଏବଂ ବେଢ଼ା ପୂଜା ପାଉଛି ।

ଉକ୍ତ ପ୍ରଧାନ ମନ୍ତ୍ରୀ ରାଜଗୁରୁ ପଦ୍ମଲକ୍ଷ୍ମୀ ମହାପାତ୍ରଙ୍କ ଅନନ୍ତ ଚେଷ୍ଟାରେ ରାମଚନ୍ଦ୍ର ଦେବ ମୁକ୍ତ ହୋଇ ନଥିବାରୁ ଦୁର୍ଗରେ ଅଭିଷିକ୍ତ ହୋଇ ରଘୁନାଥ ଜଗଦ୍ଦେବଙ୍କୁ ଗାଢ଼ କୋଳ ଆଲିଙ୍ଗନ କରିଥିଲେ ଏବଂ ଆଠଗଡ଼ ଦୁର୍ଗରେ ଜଗନ୍ନାଥ ମନ୍ଦିର ସ୍ଥାପନ କରିବାକୁ ଅନୁମତି ଦେଇ ଉକ୍ତ ରାଜ୍ୟକୁ ଶରଣ ରାଜ୍ୟ ବା ଶରଣ ଧରଣୀ ନାମରେ ଅଭିହିତ କରିଥିଲେ ଏବଂ ରଘୁନାଥଙ୍କୁ ମାନୋଦ୍ଧାରଣ ଶରଣପଞ୍ଜର ବିରଧି ଖାରବର ରାଇ ଶ୍ରୀ ହରିଚନ୍ଦନ ଜଗଦ୍ଦେବ ମହାପାତ୍ର ରାଜା ବାହାଦୁର ପଦବୀ ଦାନ କରିଥିଲେ ।

ଏହି ଆଠଗଡ଼ରେ ରାଜମୁଣ୍ଡି ଠାକୁରାଣୀ ଅରଣ୍ୟରେ ଥାଇ ଇଷ୍ଟଦେବୀ ଭାବରେ ପୂଜିତ ହେଲେ । ନାଗପୁଣୀଙ୍କୁ ମଧ୍ୟ କ୍ଷେତ୍ରର ଲୋକେ ଇଷ୍ଟ ଭାବରେ ପୂଜା କଲେ । ରାଜମହଲରେ କନକ ଦୁର୍ଗାଙ୍କର ପର୍ବ ପୂଜା ମହା ସମାରୋହରେ ଶରତ ଓ ବସନ୍ତ କାଳରେ କରାଗଲା । ତା ଛଡ଼ା ଗୋପାଳସ୍ୱାମୀ ମନ୍ଦିରର ଝଞ୍ଜା ବାଡ଼ ଅତି ଉତ୍କୃଷ୍ଟ ଧରଣରେ କରାଗଲା । କାରଣ ଏହି ଦେବାଦେବୀଙ୍କୁ ରାଜା ଯାଚଣା କରି ଗଜପତି ବଂଶ ଏବଂ ଜଗନ୍ନାଥ ମୂର୍ତ୍ତିମାନଙ୍କୁ ଆଶ୍ରୟ ଦେବାରେ ସକ୍ଷମ ହୋଇଥିଲେ । ଏମନ୍ତକି ଉକ୍ତ ରାଜ୍ୟର ଅପୂର୍ବ କୀର୍ତ୍ତି ପ୍ରସ୍ତର ନିର୍ମିତ 'ସଭାମଣ୍ଡପ'କୁ ଗଜପତି ରାମଚନ୍ଦ୍ର ଦେବ ଉଦ୍‌ଘାଟନ କରି ଉକ୍ତ ରାଜ୍ୟକୁ ଉତ୍କଳ ବିଶ୍ରୁତ କରିଥିଲେ ।

ତତ୍ପରେ ରାଜା ରଘୁନାଥ ସେଠାରେ ଜଗନ୍ନାଥ ମନ୍ଦିର ଗଢ଼ି ଦେଇଥିଲେ । ନୂତନ ନିର୍ମିତ ଜଗନ୍ନାଥ ମୂର୍ତ୍ତି ଯେଉଁ ଦୁଇଜଣ ବିଶ୍ୱକର୍ମା ଗଢ଼ିଥିଲେ, ସେମାନେ ଜମି ଭୂମି ଜାଗିର ପାଇ ଉକ୍ତ ଗଡ଼ରେ ବାସ୍ତୁ ନିର୍ମାଣ କରି ରହିଥିଲେ । ସେମାନେ ପୁରୀ ନଗରୀରୁ ଆସିଥିବାରୁ ଜୀବିତ ଥିବାଯାଏ ସେମାନଙ୍କର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରହିଥିଲା ।

କାଳକ୍ରମେ ସେଥିରୁ ଜଣେ 'ଆର୍ତ୍ତବନ୍ଧୁ'ଙ୍କର ସମ୍ପତ୍ତି ସରିଆସିଲା । ବିଶେଷରେ ତାଙ୍କର କୌଣସି ସନ୍ତାନ ସନ୍ତତି ନ ଥିଲେ । ଗୋଟି-ଟଙ୍କା ସାହାରେ ଉକ୍ତ ପରିବାର 'ରଘୁମଣି' ନାମରେ ଗୋଟିଏ ପୋଷ୍ୟପୁତ୍ର କରି ମରିଗଲେ । ଆଶ୍ଚର୍ଯ୍ୟ କଥା ଯେ ଅନ୍ୟ ବଂଶଟି ଦେବୀବଳ ବେଶ୍ ବଢ଼ି ଚାଲିଲା ।

## ପିତା ଓ ମାତା –

ରାଜା ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ରଘୁମଣିଙ୍କୁ ଶାଢ଼ୀ ପୌରୁଷ ଦେଇ ତାଙ୍କଦ୍ୱାରା ରାଧାବଲ୍ଲଭ ମୂର୍ତ୍ତି ଖୋଦନ କରାଇ କେତେକ ଜମି ଭୂମି ଦାନ କରିଥିଲେ । କିନ୍ତୁ ଜଗନ୍ନାଥଙ୍କ ପୁତ୍ର ମଧୁସୂଦନ ସନନ୍ଦ-ନ ଥିବାରୁ ରଘୁମଣିଙ୍କ ଜ୍ଞାତି ଶତ୍ରୁଙ୍କ ମନ୍ତ୍ରଣାରେ ଉକ୍ତ ଭୂ ସମ୍ପତ୍ତି ଖାରଜ କରିଦେଲେ । ଫଳରେ ରଘୁମଣି ଆଠଗଡ଼ ତ୍ୟାଗ କରି ରଣପୁର ନରେନ୍ଦ୍ରଙ୍କ ଆଶ୍ରୟରେ ରହି ସୁନାଖଳା ଗ୍ରାମରେ ମରିଥିଲେ । ରଘୁମଣିଙ୍କର ଯୁବକ ପୁତ୍ର ବନ୍ଧୁ କଷ୍ଟ ଭୋଗି ବିଧବା ମାତାଙ୍କୁ ଧରି ମଧୁସୂଦନଙ୍କ ପୁତ୍ର ବୃନ୍ଦାବନ ଜଗଦ୍ଦେବଙ୍କ ଶରଣ ନେଇଥିଲେ । ବୃନ୍ଦାବନ ଏକାନ୍ତ ଦୟାଳୁ ଏବଂ ପରୋପକାରୀ ଥିଲେ । ତେଣୁ ରାଜ ଅନ୍ତଃପୁରରେ ରଘୁମଣିଙ୍କ ପୁତ୍ର ମୁକୁନ୍ଦ ଚଳି ଯାଉଥିଲେ ।

ସେ ନୟପୁର ଗଡ଼ରେ ଯୋଷୀ ରତ୍ନଙ୍କ କନ୍ୟା ଶୋଭା ଦେଈଙ୍କର ପାଣି ଗ୍ରହଣ କରିଥିଲେ । ଶୋଭା ଦେଈ ଯେପରି ରୂପବତୀ ଥିଲେ, ସେପରି ଗୁଣବତୀ ଥିଲେ । ଏହି ମୁକୁନ୍ଦ ଏବଂ ଶୋଭା କବିମଣି ଯଦୁମଣିଙ୍କର ଥିଲେ ପିତର ଏବଂ ଜନନୀ ।

ଏହି ପରିବାର'ର ବଂଶଗତ କୌଳିକ ବୃତ୍ତି ଥିଲା ପାଷାଣ କାଟି ମୂର୍ତ୍ତି ଗଢ଼ିବା, କାଷ୍ଠରେ ପ୍ରତିମା ନିର୍ମାଣ କରିବା ଏବଂ ଦେବବିଗ୍ରହମାନ ଚିତ୍ରଣ କରିବା । ପଟି ଦାଆଁ, ମନ୍ଦିର ଗାତ୍ରରେ ଉପାଖ୍ୟାନ ଚିତ୍ରଣ, ପୋଥି ପତ୍ରରେ ଲେଖନଦ୍ୱାରା ବର୍ଣ୍ଣବୈଭବରେ ଚିତ୍ରଣ ଆଦି ନାନା କଳାକୃତିରେ ସେମାନେ ଜୀବିକା ଚଳାଉଥିଲେ । ୧୭୭୫ ଖ୍ରୀ: ରେ ମୁକୁନ୍ଦ ମହାପାତ୍ର ନୟରେ ଅଠଗଡ଼ ଗଡ଼ରେ ଉକ୍ତ ଚିତ୍ରକାର ଅତି ପ୍ରତିପତ୍ତିଶାଳୀ ହୋଇ ଉଠିଥିଲେ । ଦୁଃଖର ବିଷୟ ଯେ, ବିବାହର ପାଞ୍ଚ ବର୍ଷ ପରେ ମଧ୍ୟ ଶୋଭା ଜନନୀ ହୋଇପାରି ନ ଥିଲେ ।

ଶୋଭା ଏକାନ୍ତ ଆଳସ୍ୟପରାୟଣା ଥିଲେ । ତାଙ୍କର ବିଧବା ଶାଶୁ, ଯେ କି ଦଶପଲ୍ଲୀ ଗଡ଼ର ଝିଅ ଦୁଲଣା ଦେଈ ଥିଲେ, ସେ ବୋହୂକୁ ନିଜ ଝିଅଠୁଁ ଅଧିକ କରି ଦେଖୁଥିଲେ । ତାଙ୍କସମେ ଘରେ ଧନ ପଦାର୍ଥ ଭରିଥିଲେ । ଯାହା ଲାଗି ଘରସୁନ୍ଦର ତା'କାହିଁ ? କେତେକ ଦରିଦ୍ର ତାଙ୍କର କୁଟୁମ୍ବୀ ବିଧବାମାନେ ଦୁଲଣାଙ୍କୁ ସର୍ବଦା ଭୟ ଦେଇ କହୁଥାନ୍ତି, ଜଗନ୍ନାଥ ପ୍ରତିମା ଗଢ଼ିଲେ ତିନିପୁରୁଷରେ ବଂଶ ଲୋପ ହେବ । ଏକଥା ଶୁଣି ମୁକୁନ୍ଦଙ୍କ ମଆ ଦୁଲଣା ଭୟରେ ଥରହୋଉଥାନ୍ତି । କିନ୍ତୁ ଯେଉଁ ଦୁଇଜଣ ଚିତ୍ରକାର ଏ ମୂର୍ତ୍ତି ଗଢ଼ିଥିଲେ ତହିଁରୁ ଜଣକର ବଂଶ ପ୍ରକାରାନ୍ତରେ ବଢ଼ି ଚାଲିଥାଏ । କିନ୍ତୁ ବିଧବା ଥାଆନ୍ତି ସେ ବଂଶରେ ଅଧିକ ।

ଦୁଲଣା ରାତି ଥାଉ ଥାଉ ବୋହୂକୁ ଧରି ସ୍ନାନ କରିଯାଆନ୍ତି । ତାଙ୍କ ସାହି ପାରି ହେଲେ ଧବଳ ପୁଷ୍କରିଣୀ କେତେ ଦୂର । ପୁଷ୍କରିଣୀ କୂଳରେ ନୀଳକଣ୍ଠ ଶିବ ମନ୍ଦିର । ଶୋଭା କେତେବର୍ଷ ହେଲାଣି ରାତି ଦୁଇଘଡ଼ି ଥାଉଁ ଥାଉଁ ଶାଶୁଙ୍କ ସହିତ ସ୍ନାନ କରିବାକୁ ଯାଉଥିଲେ । କିନ୍ତୁ ଦିନେ ଝଳହେଲି ହେବାରୁ ନ ଯାଇ ତାରି ସାହିର ଆଉ କେତୋଟି ଝିଅବୋହୂଙ୍କ ସାଥିରେ ଗୋଟି ଟୋକା ସାହି ମୁଣ୍ଡରେ ଥିବା ପଡ଼ିଆରେ ତାଷେଇ ପକେଇ ଅଛନ୍ତି ।

## ଜନ୍ମ ବିବରଣ—

ଦୁଇବର୍ଷ ହେବ ଉକ୍ତ ଯଦୁକେଶିଆ ପାହାଡ଼ ମୂଳ କଡ଼କୁ ପୋଖରୀ ଭୁଡ଼ା ଉପରେ ଜଣେ ଚନ୍ଦ୍ରିମା ବୈଷ୍ଣବୀ ମାଠ ଗୋଟିଏ ନିର୍ମାଣ କରିଥିଲେ । ମନ୍ଦିରରେ ଏକ ଦାରୁନିର୍ମିତ କୃଷ୍ଣ ମୂର୍ତ୍ତିକୁ ସେ ପୂଜା କରୁଥିଲେ । ମୂର୍ତ୍ତିର ନାମ "ମଦନକୃଷ୍ଣ" । ନିମାର୍କ ମଦ୍ଭକ୍ତ ବୈଷ୍ଣବ ମଠ କହୁଥିଲେ । ମଠ ସ୍ଥାନ ପାଇବା ପରେ ଝିଅ ବୋହୂମାନଙ୍କୁ ନିଜ ଧର୍ମ ଦର୍ଶନ କରାଉଥିଲେ । ଶୋଭାଙ୍କୁ ସେ ଏ ମଧ୍ୟରେ

ଅଧିକ ଭାବରେ ନଜର କରି ନେଉଥିଲେ । ଶୋଭା ଏତେ ଅଜଣେଶ ହୋଇ ମଧ୍ୟ ସେ ବର୍ଷ ଦର୍ଶନ ନ କଲେ ଫେରନ୍ତେ ନାହିଁ । ଅପମାନିତା ଶୋଭା ନଜର ଦୁଃଖ ଏହି ନୂତନ ଠାକୁରଙ୍କୁ ନିତି ଜଣାଉଥିଲେ । ହଠାତ୍ ତାଙ୍କର ଗର୍ଭୋଦୟ ହେଲା । ପେଟରେ ପିଲା ପାଞ୍ଚମାସ ଥିବାବେଳେ ଘୋର ଦୁର୍ଭିକ୍ଷ ଆସିଗଲା ।

ଏତେବେଳେ ରାଜା ବୃନ୍ଦାବନ ନିଜକୁ ଅସହାୟ ମନେ କରୁଥିଲେ । ଶ୍ୱେର ଡକାୟତ ମାଡ଼ି ଆସିଲେ । ଅନାହାରରେ ଜନମୃତ୍ୟୁ ସାଙ୍ଗକୁ ସକଳ ବ୍ୟକ୍ତିମାନଙ୍କ ଉପରେ ଉପଦ୍ରବ ଦେଖି ରାଜା କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । ଦିନେ ଟେହଡାର ମୁକୁନ୍ଦଙ୍କୁ ମାଡ଼ି ଚଢ଼େଇ ଡକାୟତମାନେ ତାଙ୍କର ସର୍ବସ୍ୱ ଲୁଣ୍ଠନ କରି ନେଇଗଲେ ।

ହା ହତୋସ୍ମି ଅବସ୍ଥାରେ ମୁକୁନ୍ଦ ହତୋତ୍ସାହ ହୋଇପଡ଼ିଲେ ଏବଂ ଭାବିଲେ ଯେ ରାଜା ଅନୁଗ୍ରହ କରି ତାଙ୍କର ଅବସ୍ଥା ସୁଧାରିଦେବେ । କିନ୍ତୁ ଡକାୟତ ଦଳଦ୍ୱାରା ରାଜଗୃହ ମଧ୍ୟ ଲୁଣ୍ଠିତ ହେଲା । ଚଉଦିଗରେ ହାହାକାର ପଡ଼ିଗଲା । ଫଳରେ ରାଜପୁତ୍ର ଧନଞ୍ଜୟ ଗୋଟିଏ ପାଇକଦଳ ଗଢ଼ି ଏହି ଦୁର୍ଦ୍ଦଶା ନିବାରଣ କଲେ । କିନ୍ତୁ ଡକାୟତମାନେ ଧରା ପଡ଼ିଲେ ନାହିଁ । ସମ୍ପତ୍ତି ଆଉ ମିଳିଲା ନାହିଁ । ଭକ୍ତ ମାତାର ମଧ୍ୟ ସନ୍ଧାନ ମିଳିଲା ନାହିଁ । ଅପୂଜାରେ ଯଦୁକୃଷ୍ଣ ନିମ୍ବାର୍କ ପଡ଼ି ରହିଲେ । ଆଶ୍ଚର୍ଯ୍ୟ ବିଷୟ ଯେ ବଧୂ 'ଶୋଭା' ଗୋପନରେ ରାତ୍ର ଅଉଁ ଥଉଁ ପଡ଼ ଢେଢ଼ଆକୁ ଯାଇ ସ୍ନାନସାରି ଠାକୁରଙ୍କୁ ସ୍ନାନ କରାଇ ଚନ୍ଦନ ଲେପନ କରି ଭେଟବୋଡ଼ି ରଖି ଆସୁଥିଲେ ।

ସାହିର କେହି କେହି ଏ ଦେବତା ସମ୍ପର୍କରେ ଖବର ରଖୁଥିଲେ । କେହି କେହି ପ୍ରତ୍ୟହ ସଦ୍ୟ ପୁଷ୍ପ, ଚନ୍ଦନ, ଭୋଗ ଦେଖି ଭାବୁଥିଲେ ଅରଣ୍ୟ ମଧ୍ୟରେ ମାତା ବନ୍ଦ୍ୱ ନିଶ୍ଚୟ ଏ ପୂଜା ଭୋଗ ଦେଉଛନ୍ତି ।

ଏ କାନରୁ ସେ କାନ ହୋଇ ଯୁବରାଜ ଧନଞ୍ଜୟଙ୍କର ଏ କଥା କର୍ଣ୍ଣ-ଗୋଚର ହେଲା । ସେ ସହସ୍ର ବର୍ଚ୍ଛାଧାରୀ ପାଇକ ସମବୃତ ହୋଇ ଦିନେ ଜଗି ରହିଲେ । ଶୋଭା ପୂଜା ସାରିବା ବେଳେ ହଠାତ୍ ପାଇକମାନଙ୍କର ଝନତ୍କାରରେ ସେ ସ୍ଥାନ କମ୍ପିତ ହେଲା । କୋମଳାଙ୍ଗୀ ଶୋଭା ଭୟରେ ଏକାନ୍ତ ଅସ୍ଥିର ହୋଇଉଠିଲେ । କିନ୍ତୁ ମନରେ ସାହସ ବାନ୍ଧିଲେ, କାଳେ ଏ ଦୌରାତ୍ମ୍ୟ ମଧ୍ୟରୁ ନିଜର ମନରଖି ଝଟିଯିବେ । କିନ୍ତୁ ତାଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା ! ଶେଷକୁ ସେଇ ମନ୍ଦିର ବିରାଜିତ ମୂର୍ତ୍ତି ସମ୍ମୁଖରେ ଗୋଟିଏ ଶିଶୁ କୁଆଁ କୁଆଁ ଧ୍ୱନି କରିଉଠିଲା ।

ଯୁବରାଜ ଧନଞ୍ଜୟ ହଠାତ୍ ପାଇକ ଦଳ ସହିତ ଲୁଚିଗଲେ, ରାଜା ବୃନ୍ଦାବନ ଜାଣିଲେ କଣ କହିବେ ? କିନ୍ତୁ ସାଧାରଣ ବେଶରେ ଥିବା ଜଣେ ପାଇକ-ଦ୍ୱାରା ସମ୍ବାଦ ରାଜ୍ୟରେ ପ୍ରଚାର କରିଦେଲା ! ବୁଲଡା ଦରୁଡ଼ ଆଉ ନିଜ ବଂଶର ଶୁଭ ଫଳ ଦେଖି ଆନନ୍ଦରେ ନାଚିଉଠିଲେ ।

ସେ ଦିନ ବର କିଶୋର ଦେବଙ୍କ ୫୫ ଅଙ୍କ ଧନୁ ୨୮ ଦିନ ପୌଷ ଶୁକ୍ଳ ତ୍ରୟୋଦଶୀ ସୋମବାର ଇଂରେଜି ସନରେ ୧୮୮୯ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୮ ତାରିଖ ଏବଂ ୧୧୮୮ ସାଲ ଚନ୍ଦ୍ର ଲଗ୍ନରେ ଥାଇ ଅର୍ଦ୍ଧ ମିଥୁନ ରାଶିର ଜନ୍ମ ନଷ୍ଟ ହେବାର ଜ୍ୟୋତିଷ ନିରୂପଣ କଲେ । ଶିଶୁର ଜନ୍ମପତ୍ରିକା ଏହିପରି କରା ହୋଇଥିଲା ।




ଜନ୍ମ ସମୟକୁ ରାହୁ ମହାଦଶା ବାକି ଥିଲା ବ ୧।୭।୩।୧୭ ଦଣ୍ଡ, ଜ୍ୟୋତିଷ ମତରେ ରାହୁ ୧୮ ବର୍ଷ, ବୃହସ୍ପତି ୧୬ ବର୍ଷ, ଶନି ୧୯ ବର୍ଷ, ବୁଧ ୧୭ ବର୍ଷ, କେତୁ ୭ ବର୍ଷ, ଶୁକ୍ର ୨୦ ବର୍ଷ ଅଟେ । ଏ ଶିଶୁର ରାହୁ ମହାଦଶାରେ ଜନ୍ମ । ଶୁକ୍ର ମହାଦଶାରେ ଶନି ଅନ୍ତର ବେଳେ ମୃତ୍ୟୁ ଘୋଷିତ ହୋଇଥିଲା । ଏପରି କେତେଟି ଘଟଣା ସତ୍ୟ ହୋଇଥିବାରୁ ଫଳିତ ଜ୍ୟୋତିଷ ପ୍ରତି ଅଦ୍ୟାପି ଆଦର ରହିଛି । କିନ୍ତୁ ଅଧିକାଂଶ ଠିକ୍ ନ ଥାଏ ।

ଏ ଜନ୍ମ ଚକ୍ରରେ ଜ୍ୟୋତିଷ ବଚନ ହେଲା—

ରାହୁ ଦଶରେ ଜନ୍ମ ଗ୍ରହଣ କରିଥିବାରୁ ଶୁକ୍ର ବ୍ୟୟାଧିପ ସପ୍ତମ କେନ୍ଦ୍ରରେ ଥିବାରୁ କେନ୍ଦ୍ରାଧିପତି ଦୋଷ ଯୋଗୁଁ ଶୁକ୍ରର ଶନି ଅନ୍ତର ଦଶରେ ମୃତ୍ୟୁ ହେବାର ଆଶଙ୍କା ହୁଏ । ଲଗ୍ନରେ ଶନି ଥିବାରୁ ବିଦ୍ୟା ଓ ବୁଦ୍ଧି ଏବଂ ବାଦ୍ୟ ନୃତ୍ୟ ପ୍ରିୟ ହୋଇଥାଇ । ସପ୍ତମରେ ରବି, ବୁଧ, ଶୁକ୍ରଯୁକ୍ତ ଯୋଗୁଁ ଧନୀ, ବହୁପ୍ରିୟ, ଗୁଣବାନ୍; ସ୍ତ୍ରୀ ରୂପବତୀ ହୁଅଇ । ବୃହସ୍ପତି ଦଶମରେ ଥିବାରୁ ପିତୃ ମାତୃ କଷ୍ଟ । ଶନି

ପଞ୍ଚମରେ ଥିବାରୁ ଅଳ୍ପ ସନ୍ତାନ । ଶନି ଦଶାରେ ପୁତ୍ର କଷ୍ଟ । ମିଥୁନ ଲଗ୍ନରେ ଥିବାରୁ ପରୋପକାରୀ, ପଣ୍ଡିତ, ମଳିନ ବେଶଯୁକ୍ତ, ଗୀତ ବାଦ୍ୟରେ ଆସକ୍ତ, ଚତୁର, ବୁଦ୍ଧିମାନ, ମିଷ୍ଟାନ୍ନ ଭୋଗୀ, ରାଜପ୍ରିୟ, ବଚନ ଚତୁର ଓ ମଧ୍ୟମ, ବହୁପଣ୍ଡିତ ହୁଅଇ । ବାଲ୍ୟକାଳରେ ସୁଖୀ, ମଧ୍ୟ ଭାଗରେ ମଧ୍ୟମ ଏବଂ ଶେଷ ଭାଗରେ ବହୁ କଷ୍ଟ ଭୋଗଇ । ସ୍ୱଳ୍ପ ପୁତ୍ର କନ୍ୟା ପ୍ରାପ୍ତ ହୁଅଇ ।

ଚଞ୍ଚମ ଅଠଗଡ଼ ଗେଟି ଷଡ଼କା ସାନ୍ନି ନିବାସୀ ମୁକୁନ୍ଦ ମହାପାତ୍ର ଶର୍ମାଙ୍କର ସ୍ୱପତ୍ନୀ ଶୋଭା ଦେଈ ଗର୍ଭସମ୍ଭୂତ ଏକମାତ୍ର ବଂଶଧର ଏବଂ ଦେଉଳକୁ ସ୍ୱନାମଧନ୍ୟ ହାସ୍ୟରସିକ, ଦୃଢ଼ମନା, ବାଣୀନିର୍ଭୀକ, ବାଣୀସେବକ କବିମଣି ଯଦୁମଣି ମହାପାତ୍ର ।

## ନାମକରଣ ଓ ଶିକ୍ଷାଲାଭ—

ମୁକୁନ୍ଦ ଏବଂ ଶୋଭା, ଏ ଦୁହିଁଙ୍କର ମନ ଭାରି ବଡ଼ । "ହାତରେ ନ ଥାଇ ଧନ—ପୁଅ ବାହାକଲା ମନ ।" ପୁଅ ଏକୋଇଶା କରିବାକୁ ବ୍ରହ୍ମପୁରରୁ ତେଲଙ୍ଗି ବାଜା ଅଣାଇ ବସିଲେ । ଜମି ବନ୍ଧକ ଦେଇ ପଇଠ ଆର ହେଲା । ଏହି ଶୁଭ କାର୍ଯ୍ୟରେ ରଣପୁର ଗଡ଼—ମାମୁଁ ଘର, ଦଶପଲ୍ଲା ଗଡ଼—ମାମୁଁ ଅଜା ଘର, ବିଭିନ୍ନ ବନ୍ଧୁ ଘର—ବଡ଼ଖେମୁଣ୍ଡି, ଧରାକୋଟ, ଶେରଗଡ଼, ପାରଳା, ସାନଖେମୁଣ୍ଡି, ଦାମୋଦରପୁର, ରଘୁନାଥପୁର, ଚନ୍ଦନପୁରରୁ ବନ୍ଧୁବାନ୍ଧବ ମାନେ ଆସିଲେ ।

ଶୋଭାଙ୍କ ମତ ନେଇ ପୁଅ ନାଁ ଯଦୁମଣି ଦିଆଗଲା । ରାଜା ବୃନ୍ଦାବନ ଯଦୁକୃଷ୍ଣଙ୍କର ସେବା ପୂଜା ପାଇଁ କିଛି ଜମି ଖଞ୍ଜା କରିଦେଲେ । ଦର୍ପ ଶରୀର ହେଲେ କି ତ ସେ ଦର୍ପ ! କିନ୍ତୁ ମୁକୁନ୍ଦଙ୍କ ସମ୍ପତ୍ତି ତ ଭୋର ସମସ୍ତ ନେଇଥିଲେ । ବାକି ଯାହା ଥିଲା ପୁଅ ଏକୋଇଶିଆ ଆଡ଼ମ୍ବରରେ ସବୁ ସରିଗଲା । ଦୈନିକ ମଜୁରି ଖଟି ମୁକୁନ୍ଦ କାଳ କଟାଇଲେ । ରାଜା ମଧ୍ୟ ଦରିଦ୍ର ହୋଇ ଯାଇଥିଲେ । ସେ ଯତ୍-ସାମାନ୍ୟ ଦଉ ବର୍ତ୍ତନ ଦେଉଥିଲେ ।

ଅତ୍ୟଧିକ ଦାରିଦ୍ର୍ୟ ହେତୁ ଦିନେ ଦିନେ ଏମାନେ ଦରିବାର ଉପବାସ ମଧ୍ୟ ରହୁଥିଲେ ।

ଯଦୁମଣିଙ୍କ ବାଲ୍ୟଜୀବନ ଦିନରେ ଖଡ଼ିଛୁଆଁ ହେଲା । ଅତ୍ୟଧିକ ଗେଲବସର ହୋଇଁ ଯଦୁମଣି ଭଲରକମ ପଢ଼ୁ ନ ଥିଲେ । ଦାଣ୍ଡର ଜଳ ପ୍ରତ୍ୟହ ଘରକୁ ଆଣୁଥିଲେ । ଅତି ଶ୍ରେଷ୍ଠ ହିନ୍ଦୁ ସେ ପିଲା ସାଥିରେ ଜବାବରେ କେହି ପାରୁ ନ ଥିଲେ । ସ୍ୱର ଧରି ଗୀତ ଗାଇବା, ସାଇପଡ଼ଶା ମାଇପିଙ୍କ ନାମରେ ରହସ୍ୟମୂଳକ ଉଗଡ଼ମନ୍ତ କରିବାରେ ଏ ଶିଶୁ ଅଗ୍ରଣୀ ହୋଇଥିଲେ ।

ଦୁଲଣା ଯଦୁମଣିଙ୍କୁ ପାଞ୍ଚ ବର୍ଷ ହେଲାବେଳେ ମୃତ୍ୟୁ ଲଭିଥିଲେ । ଦୁଲଣାଙ୍କର ମୃତ୍ୟୁରେ ଶିଶୁ ଯଦୁମଣି ବହୁଦିନ ଧରି କାନ୍ଦୁଥିଲେ । ତା ବୁଢ଼ୀ ମାଆକୁ ନ ଦେଖି ପୋଡ଼ି ଦିଆଗଲା କାହିଁକି, ଏଥିପାଇଁ ସେ କ୍ରୋଧରେ ଅସ୍ଥିର ହୋଇ ନିରନ୍ତର କାନ୍ଦୁଥିଲେ । କିନ୍ତୁ ଏହି ଆଘାତରେ ସେ ସ୍ଥିରଧୀ ହୋଇଥିଲେ ।

ମାମୁଁ ଘର ନଆଗଡ଼ର ମାଳୀ ସାହି ଢ଼େଙ୍କଣା ଗ୍ରାମରେ କୁଟୀର ରଚନା କରି ରହିଲେ । ତାଙ୍କର ମାମୁଁ ନିଜ ଦୁର୍ଗରେ ଆଶ୍ରୟ ଦେଇଥିଲେହେଁ, ନୀଳକଣ୍ଠ ଗୋପନରେ ରହିବାକୁ ଇଚ୍ଛା କରିବାରୁ ତାଙ୍କ ଇଚ୍ଛାନୁସାରେ ଢ଼େଙ୍କଣା ମାଳୀ ସାହିସ୍ଥ ରଘୁନାଥ ମନ୍ଦିର ସମ୍ମୁଖରେ ସମସ୍ତ ସୁବିଧା କରି ଦିଆଗଲା । ନୀଳକଣ୍ଠ ଏ ଦୁଃଖବେଳେ ଅପମାନିତ ହେବେ ବୋଲି ନିଜ ପୁଅକୁ ପାଖରୁ କାହିଁ ଛାଡ଼ୁ ନ ଥିଲେ । ଉପେନ୍ଦ୍ର ଅଶ୍ୱାରୋହଣ, ଘାରଧି, ଧନୁଶର, ଖଣ୍ଡା, ତରବାରି, ବନ୍ଧୁକ ଆଦି ଚାଳନାରେ ଅବଶ୍ୟ ଧୁରନ୍ଧର ହୋଇଥିଲେ ।

ଅନନ୍ତର ଢ଼େଙ୍କଣାରେ ଉପେନ୍ଦ୍ରଙ୍କର ପିତୃମାତୃ ବିୟୋଗ ଘଟିଗଲା । ୧୭୦୪ରେ ତାଙ୍କ ପିତା ଦେଶାନ୍ତରୀ ହୋଇଥିଲେ ଏବଂ ୧୭୦୮ରେ ତାଙ୍କର ମୃତ୍ୟୁ ହେଲା । ତେଣୁ ଏଗାର ବର୍ଷ ବେଳେ ଉପେନ୍ଦ୍ର ଦେଶାନ୍ତରୀ ହେଲୁ ତାଙ୍କୁ ପିତାଙ୍କ ମୃତ୍ୟୁ ସମୟରେ ୧୫ ବର୍ଷ ମାତ୍ର ହୋଇଥିଲା । ଫଳରେ ମାମୁଁ ତାଙ୍କୁ ନିରାଶ୍ରୟ ଦେଖି ନିଜ ଗୃହରେ ଆଶ୍ରୟ ଦେଇ ବର୍ଷକ ପରେ ମରିଯିବାରୁ ମୂର୍ଖ ଉପେନ୍ଦ୍ର ଭଞ୍ଜଙ୍କ ଭାଗ୍ୟ ଏକ ସୂତାଖିଅରେ ଝୁଲୁଥିଲା ।

ନୂଆଗଡ଼ରେ ପୁରୁଷୋତ୍ତମ ମାନଧାତା ରାଜା ହେଲେ । ସେ ବାଣପୁର ରାଜକୁମାରୀ ଶୋଭାବତୀଙ୍କୁ ବିବାହ କରିଥିଲେ । ପୁରୁଷୋତ୍ତମଙ୍କର ଗୋଟିଏ ଭଉଣୀ ଥିଲେ । ସେ ପାଟଦେଈ ଲାବଣ୍ୟବତୀ ନାମରେ ପରିଚିତ । ଲାବଣ୍ୟବତୀ ଭାଇଙ୍କ ପରି ଗୁରୁ ବିଦ୍ୟାରେ ସମ୍ପୂର୍ଣ୍ଣ ଥିଲେ । ସଂସ୍କୃତ ସାହିତ୍ୟରେ ଭାଇ ଭଉଣୀଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଏମନ୍ତକି ତାଙ୍କ ଭାଉଜ ଶୋଭାବତୀ ମଧ୍ୟ ଭୁଣ୍ଡେ ଭୁଣ୍ଡେ ନୈଷଧ ଟୀକା କରୁଥିଲେ ।

ନାରୀ ଯେତେ ଗୁଣବତୀ ଶିକ୍ଷିତା ହେଲେହେଁ ଅନେକ ସମୟରେ ପୁରୁଷ ଶୌର୍ଯ୍ୟରେ ଏବଂ ରୂପ ତେଜରେ ଭାସିଯାଏ । ସେଥିପାଇଁ ଲାବଣ୍ୟବତୀ ଉପେନ୍ଦ୍ରଙ୍କୁ ତାଙ୍କର ଅନୁପମ ରୂପ ଲାବଣ୍ୟ ଦାନ କରିବାକୁ କୁଣ୍ଠିତ ହେଲେ ନାହିଁ । ସେ ବୋଧହୁଏ ଭାବିଲେ—ଉପେନ୍ଦ୍ର ମହାନ ପଣ୍ଡିତ ନ ହେଲେ ମଧ୍ୟ ଶିକ୍ଷିତ ଥିବେ । କିନ୍ତୁ ଅକ୍ଷର ଜ୍ଞାନ ଯାହା ଥିଲା ସେ ତା' ଭୁଲିଯାଇ ଥିଲେ ।

ଘନ ଭଞ୍ଜଙ୍କ ସହିତ ପୁରୁଷୋତ୍ତମ ମାନ୍ଧାତା ଦୂତ ପ୍ରେରଣ କରି ଉପେନ୍ଦ୍ରଙ୍କ ଲାଗି କୁଲାଡ଼ ଦୁର୍ଗରେ ସ୍ଥାନ କରି ନିଜ ଭଗିନୀଙ୍କୁ ମହା ସମାରୋହରେ ବିବାହ ଦେଇ ବହୁବିଧ ଯୌତୁକ ସହିତ ପ୍ରେରଣ କରିଦେଲେ । ଅଠର ବର୍ଷର ଉପେନ୍ଦ୍ର ଏବଂ ୧୭ ବର୍ଷର ଲାବଣ୍ୟବତୀ ଗୋଟିଏ ବର୍ଷ ପରମ ସୁଖରେ କାଳଯାପନ କଲେ । ପ୍ରଥମେ ପ୍ରଥମେ ଜେମା ଲାବଣ୍ୟବତୀଙ୍କ ନାମରେ ଚିଠିମାନ ପୁରୁଷୋତ୍ତମ ଏବଂ ଶୋଭାବତୀଙ୍କ ନିକଟରୁ ଆସୁଥିଲା । ରାଜକୀୟ ଭାବରେ ଯେଉଁ ଚିଠି ପୁରୁଷୋତ୍ତମ ଉପେନ୍ଦ୍ରଙ୍କୁ ଲେଖୁଥିଲେ, ତାହା ପାଞ୍ଜିଆ ଗୁମୁକରଣ ପଢ଼ି ଶୁଣାଇ ଦେଉଥିଲେ ।

କିନ୍ତୁ ଏବେ ପୁରୁଷୋତ୍ତମଙ୍କ ପ୍ରଣୀତ "ଶୋଭାବତୀ" ନାମକ କାବ୍ୟ ଏବଂ ଶଳା ଭାଉଜ ଶୋଭାବତୀଙ୍କର ଏକ ଚିଠି ଉପେନ୍ଦ୍ରଙ୍କ ନାମରେ ଆସି ପହଞ୍ଚିଲା ।

ଲାବଣ୍ୟବତୀ ଉକ୍ତ କାବ୍ୟଟି ଦେଖି ଈର୍ଷା ବିଶ୍ଳୁପ୍ତ କଲେ । ଶୋଭାବତୀ ସୁନ୍ଦରୀ ଗୁଣବତୀ ହେଲେ ହେଁ, ଲାବଣ୍ୟବତୀ ଭାବଲେ ତାଙ୍କ ପରି ତ ନୁହନ୍ତି । ତାଙ୍କ ସ୍ୱାମୀ ତ ସେପରି ନୁହନ୍ତି, ସେ କାହିଁ 'ଲାବଣ୍ୟବତୀ' ବା ଲେଖିବେ ? ଭାଉଜଙ୍କର ପରିହାସ ମୂଳକ ଚିଠିଟି ତାଙ୍କୁ ଶେଳ ପରି ଲାଗିଲା । ସେ ନିଜର ଅତି ପ୍ରିୟ ହାରଟି ଏବଂ କଟୀର ଓଡ଼ଆଣୀଟି ସଙ୍ଗେ ସଙ୍ଗେ ଅଙ୍ଗରୁ ଉତାରି ଗନ୍ତାଘରେ ରଖିଦେଲେ । ସେହି ମନସ୍ୱିନୀ ରମଣୀମଣି ତପସ୍ୱିନୀ ପରି ନିଜକୁ ଗଢ଼ିନେଇ ହତୋତ୍ସାହ ଜୀବନ ଆରମ୍ଭ କରିଦେଲେ ।

ଉପେନ୍ଦ୍ର ମୃଗୟାରୁ ଫେରି ଦେଖିଲେ—'କେମାମଣି ଅଙ୍ଗ ନିରାଭରଣା ହୋଇଛନ୍ତି । ସେ ତାଙ୍କୁ କେମାମଣି ସମ୍ବୋଧନ କରୁଥିଲେ ପଚାରିଲେ–'କାହିଁକି ?' ଲାବଣ୍ୟବତୀ କହିଲେ—'କାହିଁ,କିଛି ନାହିଁ ତ ? ତୁମ ଶଳା ଭାଉଜ ଚିଠି ଦେଇଛନ୍ତି— ତୁମ ପାଖକୁ; ଆଉ ତାଙ୍କ ବିଷୟରେ ଭାଇ ଯେଉଁ କାବ୍ୟ ଲେଖିଛନ୍ତି ତାହା ପଠାଇଛନ୍ତି; ହେଇ ନିଅ ପଢ଼ । ଏହି କାବ୍ୟ ନାଁ 'ଶୋଭାବତୀ' ।

ଭଞ୍ଜ କହିଲେ—'ଆଣ, ଟିକିଏ ପଢ଼ିଦିଅ ।' 'ଲାବଣ୍ୟ କହିଲେ—'କାହିଁକି ତୁମେ ପଢୁନାହିଁ ?'

ଭଞ୍ଜଙ୍କ ଦେହରେ କଣ୍ଟା ଉଠିଗଲା । ଲାବଣ୍ୟବତୀର ଅସୌଜନ୍ୟ, ଅଳଙ୍କାରବିହୀନ ରୂପ ପୁଣି ତାଙ୍କ ନିଜର ମୂର୍ଖତା ତାଙ୍କୁ ବ୍ୟାକୁଳ କରିଦେଲା । ସେ କୁଆଡ଼େ ବାହାରିଲେ । ଲାବଣ୍ୟବତୀ ପଚାରିଲେ—'କୁଆଡ଼େ ଯିବ କି ?'

'ଏଇ ଆସୁଛି' କହି ଘୋର ଅରଣ୍ୟ ମଧ୍ୟରେ ପଶିଗଲେ । ବାଘୁଣୀ ଦେବୀଙ୍କ ଚରଣରେ ଉପାସ ଶୋକରେ ଅଧିଆ ପଡ଼ି ସ୍ୱପ୍ନରେ ଦେବୀଙ୍କୁ ଦେଖି ତାଙ୍କଠୁ ଶୁଣିଲେ—"ଶୈଶବକାଳ ଯେଉଁ ରଘୁନାଥଙ୍କ ପାଦପଦ୍ମରେ କଟାଇଛୁ, ସେଇଠିକି ଯା, ସେଇ ତୋର ସାହା ହେବେ ।"

ଶୁଷ୍କମୁଖ ଉପବାସୀ ଉପେନ୍ଦ୍ର ପୁଣି ଗ୍ଲାଲେ ଆଶା ଧରି ଡେଙ୍କଣା ମାଳୀ ସାହି । ପାଷାଣ ପ୍ରତିମା ରଘୁନାଥଙ୍କ ଚରଣ ତଳେ ଅଧିଆ ପଡ଼ିଥାନ୍ତି ।

ଏଣେ ବିଶ୍ୱରୂପସୀ ଲାବଣ୍ୟବତୀ ଦଣ୍ଡେ, ଘଡ଼ିଏ, ଦୁଇ ଘଡ଼ି ଅପେକ୍ଷା କଲେ । ନିଜ କର୍ମକୁ ଧିକ୍କାର ଦେଲେ—'ଛି, ସ୍ୱାମୀଙ୍କୁ ହତାଦର କଲି ! ଜାଣିଥିଲି ତ, ସ୍ତ୍ରୀ କାହିଁକି କଲି ପାପିନୀ ?'

## ଗୁମୁସର ରାଜବଂଶର କେତୋଟି କଥା—

ଯେତେବେଳେ ଗୋଟିଏ ଗଳ୍ପ ସବୁଆଡ଼େ ପ୍ରଚଳିତ ହେଉଥାଏ, "ଧନଆ ଉତ୍ତାରେ ଘନଆ ରାଜା ହେଲା ।" ଯଦୁମଣି ବୟସବୃଦ୍ଧି ସଂଗେ ଏ ଲୋକଟିକୁ କହିବାର ଅଭ୍ୟାସ କରି କହୁଥିଲେ । ଏହି ଗଳ୍ପରୁ ତାଙ୍କର କବିପ୍ରତିଭା ଜାଗ୍ରତ ହୋଇଥିଲା ବୋଲି ସମ୍ଭବ ହୁଏ ।

ଲୋକଟି ହେଲା ଗୁମୁସର ରାଜବଂଶର ଇତିହାସ । ଗୁମୁସର ଅଠଗଡ଼କୁ ଲାଗି ଅତି ପ୍ରାଚୀନ ରାଜବଂଶ । ସେମାନେ ଓଡ଼ିଶା ଗଜପତିଙ୍କ ପ୍ରଦତ୍ତ ଛାମିପୂର୍ବକ ଉପାଧିରେ ବିଭୂଷିତ । ୫୦ ପୁରୁଷ ପରେ ଧନଞ୍ଜୟ ଭଞ୍ଜ ନାମରେ ଜଣେ ରାଜା ୧୬୩୭ ଖ୍ରୀଷ୍ଟାବ୍ଦରେ ସିଂହାସନରେ ବସିଥିଲେ । ତାଙ୍କର କେତୋଟି ରାଣୀ ଥିଲେ । ସାନ ରାଣୀ ନୂଆଗଡ଼ ରାଜଜେମା ମଣ୍ଡା ଦେବୀ । ମଣ୍ଡା ଦେବୀଙ୍କର ପୁତ୍ର ନୀଳକଣ୍ଠ, ସେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଜନକ । ତାଙ୍କୁ ରାଜା କରିବାକୁ ମଣ୍ଡା ଦେବୀ ପ୍ରତ୍ୟହ ରାଜାଙ୍କୁ ପ୍ରବର୍ତ୍ତାଉଥିଲେ । କିନ୍ତୁ ବଡ଼ ପୁଅ ଥାଉ ଥାଉ କିପରି କଣ କରିବେ ବୋଲି ରାଜା ନିଷ୍ପତ୍ତି କରିପାରୁ ନ ଥିଲେ । କାରଣ ସେ ମଣ୍ଡା ଦେବୀଙ୍କୁ ଅତି ଭଲ ପାଉଥିଲେ ।

ଧନଞ୍ଜୟଙ୍କର ବାର ପୁଅ ଥିଲେ । ପୁଣି ନିଜ ଭାଇ ଗୋବିନ୍ଦ ଭଞ୍ଜଙ୍କୁ ଥାଟରାଜା ବା ସେନାପତି କରିଥିଲେ । ଏହି ଥାଟରାଜାଙ୍କର ସର୍ବଶେଷ ପୁଅ ନାଆଁ ଥିଲା ଘନ । ଘନ ଯେପରି ବୀର ଥିଲେ, ସେପରି ଦୁର୍ଦ୍ଧର୍ଷ ଓ ସାହସୀ ଥିଲେ ।

ଜ୍ୟୋତିଷ ଜଣେ ରାଜ୍ୟକୁ ଆସିଥିଲେ । ତାଙ୍କୁ ବୃଦ୍ଧରାଜା ବଡ଼ କୌତୂହଳୀ ହୋଇ ପଚାରିଲେ—ମୁଁ ବୃଦ୍ଧ ହେଲି । ମୋ ପରେ କିଏ ଏ ରାଜ୍ୟର ରାଜା ହେବ ? ଜ୍ୟୋତିଷ ଚିତ୍ରକ୍ଷଣାରୁ କହିଥିଲେ—'ଧନଆ ଉତ୍ତାରେ ଘନଆ ରାଜା ହେବ ।' ତାଙ୍କ ନାମ ଧନଞ୍ଜୟ ଥିବାରୁ ଧନଆ ବୋଲି ଯେପରି ଜଣାପଡ଼ୁଥିଲା, ତାଙ୍କ ଭାଇ ଥାଟରାଜାଙ୍କ ସାନ ପୁଅ ଘନଙ୍କୁ ଘନଆ ବୋଲି ସେ ସେପରି ଜାଣିପାରିଥିଲେ । ଅତି କୃଷ୍ଣ ବର୍ଣ୍ଣର-'ଘନ' ଶେଷକୁ ରାଜାହେବ ଭାବି ରାଜା ଶଙ୍କିତ ହେଲେ । ତେଣୁ ଏହା ପରେ ପୁତ୍ରମାନଙ୍କୁ ବହୁ ଅଂଶ ବଣ୍ଟନ କରିଦେଲେ ।

ଧନଞ୍ଜୟ ଭଞ୍ଜ ପ୍ରତାପ ଧନଞ୍ଜୟ ଭଞ୍ଜ ନାମରେ ବିଖ୍ୟାତ ଥିଲେ । ସେ ଜଣେ କବି ଥିଲେ । ନାତି ଉପେନ୍ଦ୍ର ଭଞ୍ଜଙ୍କୁ ସେ ଅତ୍ୟନ୍ତ ଭଲ ପାଉଥିଲେ । ନଅ ବର୍ଷ ବୟସପାଏ ଉପେନ୍ଦ୍ର ଜେଜବାପଙ୍କର ଯେତିକି ସ୍ନେହ ସମାଦର ଲଭିଥିଲେ । ଅତି ଶୈଶବର ହେଉ ସେ ବର୍ଣ୍ଣଶିକ୍ଷା ଆରମ୍ଭ କରିଥିଲେ ସେତେବେଳେ ମାତ୍ର । କିନ୍ତୁ ବୁଢ଼ାବାପାଙ୍କ ରଘୁନାଥ ବିଳାସ ଗ୍ରନ୍ଥର କବିତାମାନ ସେ ମୁଖସ୍ଥରେ ଗାଇ-ପାରୁଥିଲେ । ତେଣୁ ରାଜକବି ପ୍ରତାପ ଧନଞ୍ଜୟ ତାଙ୍କୁ କବି ହେବାର ଆଶୀର୍ବାଦ ଦେଇଥିଲେ ।

ତେଣୁ କବିସମ୍ରାଟ ଭଞ୍ଜ ତାଙ୍କ ଗ୍ରନ୍ଥରେ ପିତାମହ ଧନଞ୍ଜୟଙ୍କ କବିପ୍ରତିଭାର ସୂଚନା ଦେଇଅଛନ୍ତି ।

ମଣ୍ଡା ଦେବୀ ଷଡ଼ଯନ୍ତ୍ର ରଚିଲେ ଯେ, ଆଠ ରାଜାଙ୍କ ପୁଅମାନେ ବଡ଼ପୁଅ ଗଙ୍ଗାଧରଙ୍କ ସହିତ ମିଶି ରାଜାଙ୍କୁ ହତ୍ୟାକରି ରାଜ୍ୟ ଦଖଲ କଥା ଭାବୁଛନ୍ତି । ଫଳରେ ରାଜା ସେମାନଙ୍କୁ ଦେଶାନ୍ତର କରିଦେଲେ । ଘନ ଭଞ୍ଜ ଧଳାକୋଟରେ ଆଶ୍ରୟ ନେଲେ । ଆଉମାନେ କଏ କେଉଁଆଡ଼େ ରହିଲେ ।

କେତେଦିନ ପରେ ୧୭୦୧ ଖ୍ରୀଷ୍ଟାବ୍ଦରେ ମଣ୍ଡା ଦେବୀ ବ୍ରାହ୍ମଣୀ ନାମୀଦ୍ୱାରା ନିଜ ପ୍ରିୟତମ ବୃଦ୍ଧ ସ୍ୱାମୀଙ୍କୁ ବିଷଦେଇ ହତ୍ୟାକଲେ । ପୁଅ ନୀଳକଣ୍ଠକୁ ସମ୍ବାଦ ଦେଇ ସିଂହାସନରେ ବସାଇଦେଲେ ଏବଂ ପୁଅକୁ ଶିଖାଇ ଧନଞ୍ଜୟଙ୍କ ଅନ୍ୟ ରାଣୀଙ୍କ ବଡ଼ପୁଅ ଗଙ୍ଗାଧରଙ୍କୁ ତାଙ୍କ ପୁଅ ସହିତ ହତ୍ୟା ମଧ୍ୟ କରିଦେଲେ । ଗଙ୍ଗାଧରଙ୍କ ପୁଅ ଶତ୍ରୁଞ୍ଜୟଙ୍କ ସ୍ତ୍ରୀ ପ୍ରତିମା ଦେବୀ ଗର୍ଭବତୀ ଥିଲେ । ସେ ଏକାନ୍ତ ଶିକ୍ଷିତା ଏବଂ ଚତୁରୀ ଥିବାରୁ ଦାସଦାସୀଙ୍କ ସାହାଯ୍ୟରେ ବହୁ କଷ୍ଟ ଭୋଗି କରଡ଼ା ରାଜ୍ୟରେ ଆଶ୍ରୟ ନେଲେ । ସେଇଠ ପ୍ରତିମାଙ୍କଠାରୁ ଏକ କୁମାର ଜନ୍ମହେଲା । ସେ କୁମାରକୁ ରଣ ଭଞ୍ଜ ନାମ ଦେଇଥିଲେ । ଘନ ଭଞ୍ଜ ଧଳାକୋଟରୁ ଯାଇ ପ୍ରତିମାଙ୍କୁ ଶିଖାଇଲେ ଯେ, ମୋ ସହିତ କୁମାରକୁ ଧରିଆସ; ମୁଁ ତୁମକୁ ରାଜେଶ୍ୱରୀ କରିଦେବି । ଏହି ରୂପବତୀ ଯୁବତୀଟି ବିଧବା ଥିଲେହେଁ କରଡ଼ାର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ କଥା ନ ମାନି ଘନଙ୍କ କଥାରେ ବିଶ୍ୱାସ ଦେଲେ । ଘନଦ୍ୱାରା ନିଜର ପାପ-ତୃଷା ମେଣ୍ଟାଇଲେ । କାରଣ ଘନ ଅତି ବଳବନ୍ତ ଏବଂ ଦୁର୍ଦ୍ଧର୍ଷ ଥିଲେ ।

ଶେଷକୁ ଘନ ଭଞ୍ଜ ରାଣୀ ଓ କୁମାରଙ୍କୁ କହି, ପାଣ ପ୍ରଜାମାନଙ୍କୁ ଦେଖାଇ ଆୟତ୍ତ କରି ନେଇ ରଣଯଜ୍ଞରେ ନୀଳକଣ୍ଠଙ୍କୁ ଆକ୍ରମଣ କଲେ । ନୀଳକଣ୍ଠ ସକୁଟୁମ୍ବରେ ରାଜ୍ୟ ତ୍ୟାଗ କରି ମାମୁଁଘର ଅଭିମୁଖରେ ପଳାଇଲେ । ଯେ ପର୍ଯ୍ୟନ୍ତ ପ୍ରତିମାଙ୍କଠାରେ ରୂପ ତୃଷ୍ଣା ଥିଲା, ସେଦିନଯାଏ ଘନ ତାଙ୍କୁ ଭୋଗ କରିସାରି ଦିନେ କୁମାର ରଣଙ୍କୁ ହତ୍ୟାକରି ନିଜେ ସିଂହାସନରେ ବସିଗଲେ । ଅପମାନରେ ନିଜ ପୁତ୍ର ହତହେବାର ଜାଣି ବଞ୍ଚିତା ରୂପବତୀ 'ପ୍ରତିମା' ବିଷପାନ କରି ଆତ୍ମହତ୍ୟା କଲେ । ଇଚ୍ଛାପୁରର ମୁସଲମାନ ନବାବ ଏସବୁ ସମ୍ବାଦ ପାଇ ଘନ ଭଞ୍ଜଙ୍କୁ ବନ୍ଦୀ କଲେ । କିନ୍ତୁ ନବାବଙ୍କର ଏକ ଦୁର୍ଦ୍ଧର୍ଷ ଅଶ୍ୱକୁ ବନ୍ଦୀ ଘନ ଭଞ୍ଜ ଆୟତ୍ତ କରିବାରୁ ତାଙ୍କୁ ପୁଣି ଘୁମୁସର ରାଜତ୍ୱ ୧୭୧୨ରେ ମିଳିଗଲା । ଏହାଙ୍କ ସମୟରେ ଗଜପତି ରାଜା ଦିବ୍ୟସିଂହ ରାମଚନ୍ଦ୍ର ଦେବଙ୍କ ପରିବାର ଆଠଗଡ଼ରେ ଜଗନ୍ନାଥଙ୍କ ସହିତ ରହିଥିଲେ । ସେଥିରେ ଘନ ଭଞ୍ଜ ବହୁ ଉପକାର କରିଥିବାରୁ ତାଙ୍କୁ ମହାରାଜା "କ୍ଷତ୍ରିୟବର" ଉପାଧି ପ୍ରଦାନ କଲେ ।

**କବିସମ୍ରାଟ ଉପେନ୍ଦ୍ର ଭଞ୍ଜ -**

ନୀଳକଣ୍ଠ ରାଜ୍ୟ ଛାଡ଼ି ପ୍ରଥମେ ଧଳାକୋଟ, ତାପରେ ଆଠଗଡ଼ରେ ଆଶ୍ରୟ ନେଇଥିଲେ । ଆଠଗଡ଼ର ରାଜା ତାଙ୍କ ପକ୍ଷରେ ଲଜ୍ଜାକରି ମନେକରି ନିଜ

ମାମୁଁ ଘର ନଆଗଡ଼ର ମାଳୀ ସାହି ଡେଙ୍କଣା ଗ୍ରାମରେ କୁଟୀର ରଚନା କରି ରହିଲେ । ତାଙ୍କର ମାମୁଁ ନିଜ ଦୁର୍ଗରେ ଆଶ୍ରୟ ଦେଉଥିଲେହେଁ, ନୀଳକଣ୍ଠ ଗୋପନରେ ରହିବାକୁ ଇଚ୍ଛା କରିବାରୁ ତାଙ୍କ ଇଚ୍ଛାନୁକ୍ରମେ ଡେଙ୍କଣା ମାଳୀ ସାହିସ୍ଥ ରଘୁନାଥ ମନ୍ଦିର ସମ୍ମୁଖରେ ସମସ୍ତ ସୁବିଧା କରି ଦିଆଗଲା । ନୀଳକଣ୍ଠ ଏ ଦୁଃଖବେଳେ ଅପମାନିତ ହେବେ ବୋଲି ନିଜ ପୁଅକୁ ପାଖରୁ କାହିଁ ଛାଡ଼ୁ ନ ଥିଲେ । ଉପେନ୍ଦ୍ର ଅଶ୍ୱାରୋହଣ, ପାରିଧି, ଧନୁଶର, ଖଣ୍ଡା, ତରବାରି, ବନ୍ଧୁକ ଆଦି ଚାଳନାରେ ଅବଶ୍ୟ ଧୁରନ୍ଧର ହୋଇଥିଲେ ।

ଅନନ୍ତର ଡେଙ୍କଣାରେ ଉପେନ୍ଦ୍ରଙ୍କର ପିତୃମାତୃ ବିୟୋଗ ଘଟିଗଲା । ୧୬୦୪ରେ ତାଙ୍କ ପିତା ଦେଶାନ୍ତରୀ ହୋଇଥିଲେ ଏବଂ ୧୬୦୮ରେ ତାଙ୍କର ମୃତ୍ୟୁ ହେଲା । ତେଣୁ ଏଗାର ବର୍ଷ ବେଳେ ଉପେନ୍ଦ୍ର ଦେଶାନ୍ତରୀ ହେଲୁ ତାଙ୍କୁ ପିତାଙ୍କ ମୃତ୍ୟୁ ସମୟରେ ୧୫ ବର୍ଷ ମାତ୍ର ହୋଇଥିଲା । ଫଳରେ ମାମୁଁ ତାଙ୍କୁ ନିରାଶ୍ରୟ ଦେଖି ନିଜ ଗୃହରେ ଆଶ୍ରୟ ଦେଇ ବର୍ଷକ ପରେ ମରିଯିବାରୁ ମୂର୍ଖ ଉପେନ୍ଦ୍ର ଭଞ୍ଜଙ୍କ ଭାଗ୍ୟ ଏକ ସୂତାଖିଅରେ ଝୁଲୁଥିଲା ।

ନୂଆଗଡ଼ରେ ପୁରୁଷୋତ୍ତମ ମାନଧାତା ରାଜା ହେଲେ । ସେ ବାଣପୁର ରାଜକୁମାରୀ ଶୋଭାବତୀଙ୍କୁ ବିବାହ କରିଥିଲେ । ପୁରୁଷୋତ୍ତମଙ୍କର ଗୋଟିଏ ଭଉଣୀ ଥିଲେ । ସେ ପାଟଜେମା ଲାବଣ୍ୟବତୀ ନାମରେ ପରିଚିତ । ଲାବଣ୍ୟବତୀ ଭାଇଙ୍କ ପରି ଗୁରୁ ବିଦ୍ୟାରେ ସମ୍ପୂର୍ଣ୍ଣ ଥିଲେ । ସଂସ୍କୃତ ସାହିତ୍ୟରେ ଭାଇ ଭଉଣୀଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଏମନ୍ତକି ତାଙ୍କ ଭାଉଜ ଶୋଭାବତୀ ମଧ୍ୟ ଲୁଣ୍ଠେ ଲୁଣ୍ଠେ ନୈଷଧ ଟୀକା କରୁଥିଲେ ।

ନାରୀ ଯେତେ ଗୁଣବତୀ ଶିକ୍ଷିତା ହେଲେହେଁ ଅନେକ ସମୟରେ ପୁରୁଷ ଶୌର୍ଯ୍ୟରେ ଏବଂ ରୂପ ତେଜରେ ଭାସିଯାଏ । ସେଥିପାଇଁ ଲାବଣ୍ୟବତୀ ଉପେନ୍ଦ୍ରଙ୍କୁ ତାଙ୍କର ଅନୁପମ ରୂପ ଲାବଣ୍ୟ ଦାନ କରିବାକୁ କୁଣ୍ଠିତ ହେଲେ ନାହିଁ । ସେ ବୋଧହୁଏ ଭାବିଲେ—ଉପେନ୍ଦ୍ର ମହାନ ପଣ୍ଡିତ ନ ହେଲେ ମଧ୍ୟ ଶିକ୍ଷିତ ଥିବେ । କିନ୍ତୁ ଅକ୍ଷର ଜ୍ଞାନ ଯାହା ଥିଲା ସେ ତା' ଭୁଲିଯାଇ ଥିଲେ ।

ରାଜ ଭଞ୍ଜଙ୍କ ସହିତ ପୁରୁଷୋତ୍ତମ ମାନ୍ଧାତା ଦୂତ ପ୍ରେରଣ କରି ଉପେନ୍ଦ୍ରଙ୍କ ଲାଗି କୁଳଡ଼ ଦୁର୍ଗରେ ସ୍ଥାନ କରି ନିଜ ଭଗିନୀଙ୍କୁ ମହା ସମାରୋହରେ ବିବାହ ଦେଇ ବହୁବିଧ ଯୌତୁକ ସହିତ ପ୍ରେରଣ କରିଦେଲେ । ଅଠର ବର୍ଷର ଉପେନ୍ଦ୍ର ଏବଂ ୧୬ ବର୍ଷର ଲାବଣ୍ୟବତୀ ଗୋଟିଏ ବର୍ଷ ପରମ ସୁଖରେ କାଳଯାପନ କଲେ । ପ୍ରଥମେ ପ୍ରଥମେ ଜେମା ଲାବଣ୍ୟବତୀଙ୍କ ନାମରେ ଚିଠିମାନ ପୁରୁଷୋତ୍ତମ ଏବଂ ଶୋଭାବତୀଙ୍କ ନିକଟରୁ ଆସୁଥିଲା । ରାଜକୀୟ ଭାବରେ ଯେଉଁ ଚିଠି ପୁରୁଷୋତ୍ତମ ଉପେନ୍ଦ୍ରଙ୍କୁ ଲେଖୁଥିଲେ, ତାହା ପାଞ୍ଜିଆ ଗୁମ୍ଫକରଣ ପଢ଼ି ଶୁଣାଇ ଦେଉଥିଲେ ।

କିନ୍ତୁ ଏବେ ପୁରୁଷୋତ୍ତମଙ୍କ ପ୍ରଣୀତ ''ଶୋଭାବତୀ'' ନାମକ କାବ୍ୟ ଏବଂ ଶଳା ଭଞ୍ଜ ଶୋଭାବତୀଙ୍କର ଏକ ଚିଠି ଉପେନ୍ଦ୍ରଙ୍କ ନାମରେ ଆସି ପହଞ୍ଚିଲା ।

ଲାବଣ୍ୟବତୀ ଉକ୍ତ କାବ୍ୟଟି ଦେଖି ଈର୍ଷା ନିଷ୍ଟପୃ କଲେ । ଶୋଭାବତୀ ସୁନ୍ଦରୀ ଗୁଣବତୀ ହେଲେ ହେଁ, ଲାବଣ୍ୟବତୀ ଭାବିଲେ ତାଙ୍କ ପରି ତ ନୁହନ୍ତି । ତାଙ୍କ ସ୍ୱାମୀ ତ ସେପରି ନୁହନ୍ତି, ସେ କାହିଁ 'ଲାବଣ୍ୟବତୀ' ବା ଲେଖିବେ ? ଭଞ୍ଜଙ୍କର ପରିହାସ ମୂଳକ ଚିଠିଟି ତାଙ୍କୁ ଶେଳ ପରି ଲାଗିଲା । ସେ ନିଜର ଅତି ପ୍ରିୟ ହାରଟି ଏବଂ କଣ୍ଠୀର ଓଢ଼ଣୀଟି ସଙ୍ଗେ ସଙ୍ଗେ ଅଙ୍ଗରୁ ଉତାରି ଗନ୍ତାଘରେ ରଖିଦେଲେ । ସେହି ମନସ୍ୱିନୀ ରମଣୀମଣି ତପସ୍ୱିନୀ ପରି ନିଜକୁ ଗଢ଼ିନେଇ ହତୋତ୍ସାହ ଜୀବନ ଆରମ୍ଭ କରିଦେଲେ ।

ଉପେନ୍ଦ୍ର ମୃଗୟାରୁ ଫେରି ଦେଖିଲେ—'କେମାମଣି ଆଜି ନିରାଭରଣା ହୋଇଛନ୍ତି । ସେ ତାଙ୍କୁ କେମାମଣି ସମ୍ବୋଧନ କରୁଥିଲେ ପଚାରିଲେ-- 'କାହିଁକି ?' ଲାବଣ୍ୟବତୀ କହିଲେ—'କାହିଁ,କିଛି ନାହିଁ ତ ? ତୁମ ଶଳା ଭଞ୍ଜ ଚିଠି ଦେଇଛନ୍ତି—ତୁମ ପାଖକୁ; ଆଉ ତାଙ୍କ ବିଷୟରେ ଭାଇ ଯେଉଁ କାବ୍ୟ ଲେଖିଛନ୍ତି ତାହା ପଠାଇଛନ୍ତି; ନେଇ ନିଅ ପଢ଼ । ଏହି କାବ୍ୟ ନାଁ 'ଶୋଭାବତୀ' ।

ଭଞ୍ଜ କହିଲେ—'ଆଣ, ଟିକିଏ ପଢ଼ିଦିଅ ।' 'ଲାବଣ୍ୟ କହିଲେ—'କାହିଁକି ତୁମେ ପଢୁନାହଁ ?'

ଭଞ୍ଜଙ୍କ ଦେହରେ କଣ୍ଟା ଗଳିଗଲା । ଲାବଣ୍ୟବତୀର ଅସୌଜନ୍ୟ, ଅଳଙ୍କାରବିହୀନ ରୂପ ପୁଣି ତାଙ୍କ ନିଜର ମୂର୍ଖତା ତାଙ୍କୁ ବ୍ୟାକୁଳ କରିଦେଲା । ସେ କୁଆଡ଼େ ବାହାରିଲେ । ଲାବଣ୍ୟବତୀ ପଚାରିଲେ—'କୁଆଡ଼େ ଯିବ କି ?'

'ଏଇ ଆସୁଛି' କହି ଘୋର ଅରଣ୍ୟ ମଧ୍ୟରେ ପଶିଗଲେ । ବାଘୁଣୀ ଦେବୀଙ୍କ ଚରଣରେ ଉପାସ ଭୋକରେ ଅଧିଆ ପଡ଼ି ସ୍ୱପ୍ନରେ ଦେବୀଙ୍କୁ ଦେଖି ତାଙ୍କଠୁ ଶୁଣିଲେ—''ଶୈଶବକାଳ ଯେଉଁ ରଘୁନାଥଙ୍କ ପାଦପଦ୍ମରେ କଟାଇଛୁ, ସେଇଠିକି ଯା, ସେଇ ତୋର ସାହା ହେବେ ।''

ଶୁଷ୍କମୁଖ ଉପବାସୀ ଉପେନ୍ଦ୍ର ପୁଣି ଚାଲିଲେ ଆଶା ଧରି ଢେଙ୍କଣା ମାଳୀ ସାହି । ପାଷାଣ ପ୍ରତିମା ରଘୁନାଥଙ୍କ ଚରଣ ତଳେ ଅଧିଆ ପଡ଼ିଥାନ୍ତି ।

ଏଣେ ବିଶ୍ୱରୂପସୀ ଲାବଣ୍ୟବତୀ ଦଣ୍ଡେ, ଘଡ଼ିଏ, ଦୁଇ ଘଡ଼ି ଅପେକ୍ଷା କଲେ । ନିଜ କର୍ମକୁ ଧିକ୍କାର ଦେଲେ—'ଛି, ସ୍ୱାମୀଙ୍କୁ ହତାଦର କଲି ! ଜାଣିଥିଲି ତ, ଯା କାହିଁକି କଲି ପାପିନୀ ?'

ଏହା ଶୁଣି ସନ୍ଧାନ ବାଣ ବାଣ ପାଳଙ୍କିରେ ବସି ପ୍ରଥମେ ବାଘୁଣୀ ଠାକୁରାଣୀଙ୍କ ପୀଠକୁ ଯାଇ ଦେହୁରୀ ଠାରୁ ଶୁଣିଲେ ଯେ—'ସେ ପାଗଳ ହୋଇ ଯାଇଛନ୍ତି । କେବଳ କହୁଛନ୍ତି—'ମୁଁ ଲାବଣ୍ୟବତୀର କପନ୍ନ ଉପଯୁକ୍ତ ହେବି ?''

ଜେମା ବହୁତ କାନ୍ଦିଲେ । ସେଇଠି ଗଜଲଗ୍ନବାସରେ ଗୁହାରିଆ ପଡ଼ିଛନ୍ତି, ସମ୍ବାଦ ପାଇଲେ ଯେ, ଉପେନ୍ଦ୍ର ତାଙ୍କର ପିତୃଭୂମିକୁ ଯାଇଛନ୍ତି— ଯେଉଁଠି ଶୈଶବରେ ସେ ରଘୁନାଥଙ୍କ ନିକଟରେ ଥିଲେ ! ତହୁଁ ଜେମା ମାଳ ସାହିରେ ପହଞ୍ଚି ସ୍ୱାମୀଙ୍କ ପାଦଦ୍ୱୟ ଧରି ବହୁତ ବେଳ କାନ୍ଦିଲେ । ତାଙ୍କୁ ନିଜ କୋଳରେ ରଖି ସୁଖାଦ୍ୟ ନିଜ ହସ୍ତରେ ଖୁଆଇଦେଲେ ।

ଉପେନ୍ଦ୍ର କହିଲେ—ତୁମେ ମୋତେ ଶିକ୍ଷା ଦେବ, ପାଠ ପଢ଼େଇବ । ଏହା ଦେବତାର ଆଦେଶ ।' ତାହା ଶୁଣି ଜେମା ଆନନ୍ଦରେ ଅଧୀର ହୋଇଗଲେ । ଉପରି ବାଡ଼ ବନାଦେଲା— ଅରଣ୍ୟ ମଧ୍ୟରେ । ସମସ୍ତଙ୍କ ଅଜ୍ଞାତରେ ଜେମା ଲାବଣ୍ୟବତୀ ଉପେନ୍ଦ୍ରଙ୍କୁ ବିଦ୍ୟା ଶିକ୍ଷା ଦେଲେ । ରାମ ତାରକ ମନ୍ତ୍ର ସାଧନାରେ ସିଦ୍ଧି ଲଭି ତିନି ବର୍ଷ ମଧ୍ୟରେ ସମସ୍ତ ସଂସ୍କୃତ ବିଦ୍ୟାରେ ପାରଦର୍ଶୀ ହୋଇ ଦୁଇମାସ ମଧ୍ୟରେ 'ଲାବଣ୍ୟବତୀ' କାବ୍ୟ ନିଜର ମନ୍ତ୍ରମାମୟୀ ଶୋଭାବତୀ ଜାୟାଙ୍କ ଚରଣ ତଳେ ସମର୍ପଣ କରି ତାର ଏକ ପ୍ରସ୍ଥ ନୂଆଗଡ଼ ରଜା ଓ ରାଣୀଙ୍କ ନିକଟକୁ ପଠାଇ ଦେଲେ । କବିବର ଉପେନ୍ଦ୍ର ଲାବଣ୍ୟବତୀଙ୍କୁ ଦୈବ ବିଡ଼ମ୍ବନାରୁ ହିନେ ହରାଇ ଅନନ୍ତର ଅଚିରାତ ତାଙ୍କ ଶଳାଭାଉଜଙ୍କ ସାନ ଭଉଣୀ ବାଣପୁର ଜେମା'କୋଟି ବ୍ରହ୍ମାଣ୍ଡସୁନ୍ଦରୀଙ୍କର' ଦ୍ୱିତୀୟବାର ପାଣିଗ୍ରହଣ କରିଥିଲେ ।

ପଦୁମଣି ଶୈଶବରେ ଏ ଗଳ୍ପ ବାରମ୍ବାର ଶୁଣିବାକୁ ଯେପରି ଭଲ ପାଉଥିଲେ, ତା ସାଙ୍ଗକୁ ଭଞ୍ଜଙ୍କର କବିତା ମଧ୍ୟ ସ୍ୱର ଧରି ଗାଉଥିଲେ । ଗ୍ରାମର ନର ନାରୀ ପଦୁମଣିଙ୍କ ସୁନ୍ଦର ଗୋରା ତୋରା ଗଠନ ମାଧୁରୀ ସାଙ୍ଗକୁ ଭଞ୍ଜଙ୍କ ସୁମଧୁର ଛାନ୍ଦ ଶୁଣି ଚମତ୍କୃତ ହେଉଥିଲେ । ଭଞ୍ଜ ଏବଂ ଭଞ୍ଜ ସାହିତ୍ୟ ହିଁ ପଦୁମଣିଙ୍କୁ **ସାହିତ୍ୟର ମୌଳିକ ଉପାଦାନ** ଯୋଗାଇଥିଲା । ଏ କଥା ନିଶ୍ଚିତ ଭାବରେ କୁହାଯିବ ଯେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ହିଁ ତାଙ୍କର ପ୍ରକୃତ କବିଗୁରୁ ଥିଲେ ।

---

# ଦୋଅଡ଼ କଳା

୧୭୯୧ ମସିହାରେ ପୁଣ୍ୟଶ୍ଳୋକ ରାଜା ବୃନ୍ଦାବନ ସ୍ୱର୍ଗାରୋହଣ କଲେ। ରାଜା ହେଲେ ବଡ଼ ପୁଅ 'ଧନଞ୍ଜୟ' ଆଠଗଡ଼ ଗାଦିରେ। ନୂତନ ରାଜାଙ୍କ ରାଜତ୍ୱର ଆରମ୍ଭରୁ ଦୁର୍ଭିକ୍ଷ ଏପରି ହେଲା ଯେ, ବସ୍ତି ଅହମ୍ମାଳ ହୋଇ ଉଠିଲା। ମହାରଣା ମୁକୁନ୍ଦର ପରିବାର ଖାଦ୍ୟ ସଂଗ୍ରହ କରିପାରିଲେ ନାହିଁ। ଦିନୁଁଦିନ ଦୁର୍ଶ୍ଚିନ୍ତା ମାଡ଼ି ଆସିଲା। ସେ ଭଗବତ୍ ଧ୍ୟାନରେ ଦିନେ ସମ୍ପୂର୍ଣ୍ଣ ଉପବାସୀ ରହିବା ପରେ ହଠାତ୍ ନୟାଗଡ଼ ମାନଧାତାଙ୍କର ଏକ ଡକରା ଚିଠୋଉରୁ ଧନଞ୍ଜୟ ମୁକୁନ୍ଦଙ୍କୁ ନୂଆଗଡ଼ ପଠାଇଦେଲେ। ଗୋଟିଏ ନୂତନ ମୂର୍ତ୍ତି ପଥରରେ ଗଢ଼ିବା ଲାଗି ତାଙ୍କୁ ଏହି ଡକରା ହୋଇଥିଲା।

## ଦେଶାନ୍ତର ଗମନ—

ମୁକୁନ୍ଦ ମହାପାତ୍ର ନିଜର ଜାୟା ଶୋଭା ଓ ୧୦ ବର୍ଷର ପୁତ୍ର ଯଦୁମଣି ସହିତ ୧୧୯୯ ସାଲ ଭାଦ୍ର ଶୁକ୍ଳ ଦ୍ୱାଦଶୀ ବାମନ ଜନ୍ମ ଦିନ "ସର୍ବସିଦ୍ଧା-ତ୍ରୟୋଦଶୀ" କହି (୧୭୯୧ ମସିହା ସେପ୍ଟେମ୍ବର ୯ ତାରିଖରେ) ପୁଣ୍ୟତମ ଅଠଗଡ଼ର କେତକୀ ଝର ନାଗେଶ୍ୱର ବନ, ଗୋଷ୍ଠିନିଭଳା ସାହି ଏବଂ ଯଦୁକୃଷ୍ଣ ନିମ୍ବାର୍କ ଦେବତା ପୀଠ ତ୍ୟାଗ କରି ନୂତନ ଭାଗ୍ୟ ଅନ୍ୱେଷଣରେ ଚାଲି ଆସିଲେ। ଏଇଠି ସେ ରାଜଗୃହରୁ ସଞ୍ଜା ବସା ପାଇ ପରମ ସୁଖରେ ଜୀବନ କଟାଇଲେ।

ଯେଉଁ ନୂଆଗଡ଼ରେ ରାଜକବି ପୁରୁଷୋତ୍ତମ ମାନ୍ଧାତା ଦିନେ ନିଜ ଜାୟାଙ୍କ ଲାଗି 'ଶୋଭାବତୀ' ନାମକ କାବ୍ୟ ଲେଖି ଅମର ହୋଇଥିଲେ, ଯେଉଁ ନୟାଗଡ଼ର ଶରଣକୂଳ ନିବାସୀ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ପ୍ରେମ ଲହରୀ, ଯୁଗଳ ରସାମୃତ ଲହରୀ, ପ୍ରେମ କଳ୍ପଲତା, ନିସ୍ତାର ନୀଳମଣି ଆଦି ସୁମଧୁର ଜନପ୍ରିୟ ବୈଷ୍ଣବ କବିତାମାନ ଲେଖି ଗ୍ରାମେ ଗ୍ରାମେ ଘରେ ଘରେ ପ୍ରସିଦ୍ଧି ଲଭିଥିଲେ, ଯେଉଁ ନୂଆଗଡ଼ର ଆଦି ବିଗ୍ରହ ଢେଙ୍କଣା ମାଳୀସାହି ବିରାଜିତ ମଣି ବିଗ୍ରହ ରଘୁନାଥଙ୍କ ପାଦପଦ୍ମ ତଳେ ଦିନେ କବିସମ୍ରାଟ, ଉପେନ୍ଦ୍ରଭଞ୍ଜ ତାଙ୍କର ପ୍ରିୟତମା ବିଶ୍ୱ ଶୋଭାରାଣୀ ଲାବଣ୍ୟବତୀ ନାମରେ ଲାବଣ୍ୟବତୀ ମହାକାବ୍ୟ ରଚନା କରିଥିଲେ, ସେଇ ପୁଣ୍ୟତମ ଭୂମିକୁ ଶିଶୁ ଯଦୁମଣି ଚାଲିଆସିଲେ। ସେ ଏଇଠୁ ନୂଆଗଡ଼ ରାଜ୍ୟର ଅଧିବାସୀ ବୋଲି ପରିଚିତ ହେଲେ। ଅଠଗଡ଼ର ମୃତ୍ତିକା ଏବଂ ନୂଆଗଡ଼ର ପାଣି ପବନ, ଆଲୋକରେ ଯଦୁମଣି ବୃନ୍ତିଟି ପୁଷ୍ପିତ, ଫଳବନ୍ତ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ।

୧୭-୯-୧୭୯୩ ଖ୍ରୀ: ରେ ବୀରକିଶୋର ଦେବଙ୍କର ୭୧ ଅଙ୍କ ଶେଷ ହେଲା। ତାଙ୍କ ପରେ ଦିବ୍ୟସିଂହ ଦେବ ଗଜପତି ଭାବରେ ଦେଶରେ ପରିଗଣିତ ହେଲେ। ଚାଟଶାଳୀ ପାଠ ଶେଷ ହେବାରୁ ଯଦୁମଣି ନୂତନ ସୁନ୍ଦରଆ ଦିନ ସଂସ୍କୃତ

ପାଠ ଜଣେ ସଂସ୍କୃତ ପଣ୍ଡିତ ବିଦ୍ୟାକର ମହାପାତ୍ର (ଘଡ଼ୁଆଳ ପଣ୍ଡିତ)ଙ୍କ ଚଉପାଢ଼ୀରେ ପଢ଼ିବାକୁ ପିତାଙ୍କୁ ଜଣାଇଲେ । ତାଙ୍କର ପିତା ମାନ୍ଧାତାପୁରକୁ ଯାଇ ସବୁ ସୁବିଧା କରିଦେଇ ଅସିଲେ । ତେଣୁ ୧୨ ବର୍ଷ ବୟସରେ ସେ ସଂସ୍କୃତ ଶିକ୍ଷା ଆରମ୍ଭ କରି ପ୍ରଥମେ ଅମର କୋଷ ମୁଖସ୍ଥ କରିସାରି ତାପରେ ବ୍ୟାକରଣ ଅଧ୍ୟୟନ କଲେ । ସେ ଉକ୍ତ ଚଉପାଢ଼ୀରେ ପଢ଼ିବା ବେଳେ ନାନା ବ୍ୟଙ୍ଗ କବିତା ଗଢ଼ି ନିଜ ସାଥୀ ପିଲାଙ୍କୁ ଚିଡ଼ାଉଥିଲେ । ଏପରି କି ଗ୍ରାମର ନରନାରୀଙ୍କ ନାମରେ ମଧ୍ୟ ବ୍ୟଙ୍ଗ କବିତା ମୁଖେ ମୁଖେ ଗଢ଼ି ଗାଉଥିଲେ । ତାଙ୍କ ସାହିର ଗୋଟିଏ ବୃଦ୍ଧାକୁ ସେ ଚିଡ଼ାଉଥିଲେ ଗାଇ ଗାଇ—

**ଇଟାମାଟି, ଝଙ୍କା ଝାଟି**
**ଛୁଡ଼ାପଟିରେ**
**ଗୋବରା ମା ଯା ଚହଟି ।**

ସରୁ ଅରୁଆ ଓ ଉସୁଆ ଚାଉଳ, ମୁଗ, ହରଡ଼, ଚଣା ଆଦି ବିଭିନ୍ନ କିସମର ଡାଲି, ଖାଣ୍ଟି ତେଲ, ଘିଅ, ଦହି, ଦୁଧ, ଓଗର ଛେନା, ବିଭିନ୍ନ ଶାକ ସବ୍‌ଜି, ନଡ଼ିଆ, କଦଳୀ, ବିଭିନ୍ନ କିସମର ବଡ଼ି, ଆଚୁର, ବିଭିନ୍ନ ଜଳଖିଆ, ରଜାଘରୁ ଗ୍ରସିଆସେ— ତାଙ୍କ ଘରକୁ । ଗୋଟିଏ ବୋଲି ପୁଅ । ଠାକୁରଙ୍କ ଭୋଗ କଦଳୀ ଚଣା କୁଣ୍ଡିକ ଚଇସାଏ, ଯହିଁରେ ଫୁଲିଏ ଓଟର ଛେନା ଥିବ । ଠାକୁର ଭୋଗ ଖୁରୁମୁଆଁ ଅଣାକର କିଣିଲେ ବଂଶଯାକ ଖାଇପାରିବେ ନାହିଁ । ସେତେବେଳେ ଟଙ୍କାକୁ ଧାନ ୬୪ ତାମ୍ବି, କଟକା ମାପରେ ୧୬ ସେର । ଖାଣ୍ଟି ଗୁଆ ଓ ମଇଁଷି ଘିଅ ଯଥାକ୍ରମେ ଟଙ୍କାରେ ୭° ଓ ୬° ପଳ । ମୁକୁନ୍ଦ ମହାପାତ୍ରଙ୍କୁ ବସ୍ତ୍ର, ପଡ଼, ବର୍ତ୍ତନ, ନୂତନ ବସ୍ତ୍ର ନାନା ସୂତ୍ରରେ ନାନା ଉପଢୌକନ ମିଳୁଥିଲା । ବାଳକ ଯଦୁମଣି ଏଇଠି ଶୈଶବର ଉପବାସ ଦୁଃଖ ଭୁଲି ଯାଇଥିଲେ । ପରମ ସୁଖରେ କାଳ ଯାପନ କରୁଥିଲେ । ସାଥିମାନଙ୍କୁ ଆମ୍ବ ବଣରେ ମୂଲ୍ୟବାନ ଆମ୍ବ, ଛେନା ଖଜା, ଖୁରୁମୁଆଁ, ପିଠା ଆଦି ଜିନିଷ ଯେପରି ବାଣ୍ଟୁଥିଲେ, ସେପରି ଗୁରୁଦେବ ବ୍ରାହ୍ମଣ ପଣ୍ଡିତଙ୍କୁ ମଧ୍ୟ ନାନା ଜିନିଷ ଆଣିଦେଇ ଗୁରୁ ମାଅଙ୍କୁ ସନ୍ତୁଷ୍ଟ କରୁଥିଲେ ।

ରାଧାମୋହନ ମୂର୍ତ୍ତି ଓ ମନ୍ଦିର ନିର୍ମାଣ ୩ ବର୍ଷ ମଧ୍ୟରେ ଶେଷ ହେଲା । ଯୁବକ ରାଜା ବିନାୟକ ମାନ୍ଧାତା ମୁକୁନ୍ଦ ମହାପାତ୍ରଙ୍କର ସ୍ଥପତିକଳା କୁଶଳତାରେ ମୁଗ୍ଧ ହୋଇ ତାଙ୍କୁ ସ୍ଥାୟୀ ଭାବରେ ରଖିନେଲେ । ମୂର୍ତ୍ତି ପ୍ରତିଷ୍ଠା ପରେ ଅନ୍ୟାନ୍ୟ ବିଭିନ୍ନ ମୂର୍ତ୍ତି, ଚନ୍ଦଣ ବିମାନ ତିଆରି କରୁଥିଲେ । ତେଣୁ ମୁକୁନ୍ଦ ମହାପାତ୍ରେ ସୁଖରେ ଦିନ ଯାଉଥିଲେ । ଏଣେ ଯଦୁମଣି ବିଦ୍ୟାଶିକ୍ଷାରେ ସଂସ୍କୃତ ଆଦିରେ ଯଥା ସମ୍ଭବ ଜ୍ଞାନ ଅର୍ଜନ କରି କପରି ଜଣେ ଭଞ୍ଜଙ୍କ ପରି କବି ହେବେ, ଏପରି ଆଶା ପୋଷଣ କରି ଚାଲିଲେ । ଚଟଶାଳୀରେ ପଢ଼ୁ ପଢ଼ୁ ପଦ ଯୋଡ଼ି କବିତା ମଧ୍ୟ ରଚନା କରି ଚାଲିଲେ ।

**କବି ହେବାର ବାସନା**—

ତାଙ୍କୁ ସେତେବେଳକୁ ବୟସ ୧୬ ବର୍ଷ । ଗୁରୁଙ୍କୁ ଏହା କହନ୍ତେ ସେ ଘୁମୁସର ପଞ୍ଚମୁଖ ଭଗବାନକବିଗଜବାନ୍ଧମୀପତିଙ୍କ ନିକଟକୁ ପଠାଇଲେ । ବ୍ରାହ୍ମଣମାନେ ସେତେବେଳେ ସେ ଅଞ୍ଚଳରେ ଶୂଦ୍ର ରଚିତ କବିତାରେ ଘୃଣା ପ୍ରକାଶ କରୁଥିଲେ । ଶାରଳା ଦାସ ନିଜକୁ ଶୂଦ୍ରମୁନି ବୋଲି ଅଭିହିତ କରୁଥିଲେ ମଧ୍ୟ, ତାଙ୍କର ମହାକାବ୍ୟ ଘରେ ଘରେ ପୂଜିତ ହେଉଥିଲେହେଁ ବ୍ରାହ୍ମଣମାନେ ତତ୍‌ପ୍ରତି ଘୃଣା କରିବାର ଦେଖାଯାଉଥିଲା । ଫଳରେ ସଙ୍କୋଚ ଶୂଦ୍ର ବାଳକମାନଙ୍କର ସ୍ୱତଃ ଆସୁଥିଲା । ଚଞ୍ଚୁଃପାଠୀରେ ଅଳ୍ପ ଶିକ୍ଷିତ ଅଥବା ନାମଧାରୀ କୁହାଳିଆ ବ୍ରାହ୍ମଣ ପଦାର୍ଥ ପଗ୍ଭରୁଥିଲେ—'ମହାଶୟ ! ଏଇଟି କିଏ ?' ହଁ, ସେ ଅମୁକ ଶାସନର ଗାର୍ଗ ଗୋତ୍ରୀୟ ଅମୁକ ଷଡ଼ଙ୍ଗୀଙ୍କ ପୁଅ ।—ସେଇଟି ? ସେ ବୈଦିକ ଭରଦ୍ୱାଜ ମିଶ୍ରଙ୍କ ନାତି ।—'ସେ' ? ସେଇଟି ଗୋଟିଏ ବର୍ଦ୍ଧକୀ (ବଢ଼େଇ) ସନ୍ତାନ । ସଙ୍ଗେ ସଙ୍ଗେ ଉତ୍ତର ହେଲା—'ହିଁ, ହିଁ, କାଳସ୍ୟ କୁଟିଳା ଗତିଃ । ଦେବଭାଷା ସଂସ୍କୃତ ବର୍ତ୍ତମାନକୁ ଶୂଦ୍ର କଣ, ଅଛୁଆ ପିଲାଏ ତ ଶିକ୍ଷା କଲେଣି ! କିସ ପୁଣି ଦେଖା ନ ଯାଏ ବଞ୍ଚିଥିଲେ ଜୀବନେ ।'

ଅଥଚ 'ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ,' 'ଜଗତଃ ପିତରୌ ବନ୍ଦେ' ଏସବୁ ଯେଉଁ ଜାତିର ଧ୍ୱନି ସେହି ଜାତିରେ ଅଶିକ୍ଷାର ମୋହ ଏ କୁରୁଚିର ପ୍ରବୃତ୍ତିକ ଭାବରେ ଅଳ୍ପ ବହୁତ ରହି ଆସିଥିଲା । ମାନଧାତାପୁରର ପଣ୍ଡିତ ବିଦ୍ୟାକର ମହାପାତ୍ର ବୈୟାକରଣିକ ନିଜର ପ୍ରିୟତମ ଶିଷ୍ୟକୁ ପଞ୍ଚମୁଖ ଗ୍ରାମ ବାନ୍ଧମୀପତିଙ୍କ ନିକଟକୁ ଯିବାର ସମସ୍ତ ସୁବିଧା କରାଇ ଦେଲେ । ଏହି ବ୍ରାହ୍ମଣ ପଣ୍ଡିତଙ୍କର ଉଦାରତା ହିଁ ଯଦୁମଣିଙ୍କୁ ଏତେ ମହାନ୍ କରିପାରିଥିଲା ।

**ବିଷ୍ଣୁଚକ୍ର ଗ୍ରାମ**—

ବାଳକ ଯଦୁମଣି ଘୁମୁସର ତାଲୁକାର ବିଷ୍ଣୁଚକ୍ର ଗ୍ରାମକୁ ବାହାରିଲେ । ନିଜର ଖାଇବା ବାସନ, ତାଳ, ପୋଥିପତ୍ର ଚୂଡ଼ା ଗୁଡ଼ଳର ଗଣ୍ଠି ମୁଣ୍ଡାଇ କବିତ୍ୱ ସିଦ୍ଧିଲାଭ ଉଦ୍ଦେଶ୍ୟରେ ଗ୍ରାମରୁ ଗ୍ରାମାନ୍ତର ପଗ୍ଭରି ପଗ୍ଭରି ଗ୍ଭଲିଲେ । ତାଙ୍କର ପିତାମାତା ସଙ୍ଗରେ ଜଣେ ଲୋକ ଯିବାକୁ ତାଙ୍କୁ ବାଧ କଲେହେଁ ଗୁରୁଙ୍କ କଥିତମତେ ସେ ଏକାକୀ ସାଧନାରେ ସିଦ୍ଧି ଲଭିବାକୁ ସାହସ ଧରି ଗ୍ଭଲିଲେ ।

ତାଙ୍କର ବାସ ସ୍ଥାନ ଇଟାମାଟି ଏକାନ୍ତ ରମଣୀୟ ସ୍ଥାନ ଥିଲା । ସୁଦୂର ପ୍ରସାରି ଡୋଙ୍ଗା, ପଡ଼ିଆ, ବିଲମାନରେ ଚଉଦିଗ ପୂର୍ଣ୍ଣ । ତାଙ୍କର ଗ୍ରାମ ଗୋଟିଏ ବିଶିଷ୍ଟ ଜନପଦ । କାଳେ କାଳେ ତାହା ନୂଆଗଡ଼ ରାଜ୍ୟର ଧନୀକ ବ୍ୟବସାୟୀଙ୍କର କେନ୍ଦ୍ରଭୂମି ଥିଲା । ବିରାଟ ଅଠରଶହ ପରିବାର ଥିବା ଜନପଦର ଚଉଦିଗରେ

ଏତେ ପଡ଼ିଚ ଭୂମି ଯେ ଟିକିଏ ସଙ୍କୋଚ ଜଣାପାଏ ନାହିଁ । କୂପ, ପୁଷ୍କରିଣୀ ପର୍ଯ୍ୟାପ୍ତ । ଏକାନ୍ତ ସ୍ୱାସ୍ଥ୍ୟକର ପରିବେଶ । ପଧାନ ସାହିର ମୁଣ୍ଡରେ ମୁକ୍ତ ଏକ ବିସ୍ତୃତ ଭୂମିକୁ ଲଗି ତାଙ୍କ ପିତାଙ୍କ ବାସ୍ତୁ ଭୂମି ଅତି ରମଣୀୟ । ପରମ ସୁଖରେ ଥିବାବେଳେ ନିଜର ସିଦ୍ଧି ବା ଭାଗ୍ୟ ପରୀକ୍ଷା ଲଗି ସେ ସ୍ଥାନ ଛାଡ଼ି ଚାଲିଯିବା ହେତୁ ମୁକୁନ୍ଦଙ୍କ ଗୃହ ଶୂନ୍ୟ ଶୂନ୍ୟ ଦେଖାଗଲା । ମା'ଆ କହନ୍ତି—ପୁଅ ତାଙ୍କର ବାୟା ବାଉଳା ହୋଇଛି ।

ଯଦୁମଣି ପଥ ପଚାରି ବିଷ୍ଣୁଚକ୍ରରେ ପହଞ୍ଚିଲେ । ଘୋର ଅରଣ୍ୟ ସମାଚ୍ଛାଦିତ ଭୂଖଣ୍ଡ । ସେତେବେଳେ ଘୁମୁସରରେ ରଜା ଥିଲେ ଲକ୍ଷ୍ମଣ ଭଞ୍ଜଙ୍କ ପୁଅ ଶ୍ରୀକର ଭଞ୍ଜ । ସେ ସେହି ସମୟରେ ବିଷ୍ଣୁଚକ୍ର ଗ୍ରାମ ଅଦୂରବର୍ତ୍ତୀ ଏକ ଦୁର୍ଗରେ ଛାଉଣୀ ପକାଇ ରହିଥିଲେ । ତାଙ୍କର ନିଜ ପୁତ୍ର ଯୁବରାଜ ଧନଞ୍ଜୟଙ୍କ ସହିତ ଅପଡ଼ ହୋଇଥିଲା । ଯୁବରାଜ ବାପଙ୍କ ବିରୁଦ୍ଧରେ ନାନା ଷଡ଼ଯନ୍ତ୍ର କରି ପ୍ରଜାମାନଙ୍କୁ ମତାଉ ଥିବାରୁ ରଜା ବିଭିନ୍ନ ଅଞ୍ଚଳରେ ଶିବିର ସ୍ଥାପନ କରି ରହି ପ୍ରଜାମାନଙ୍କର ମନୋଭାବ ପରିବର୍ତ୍ତନ କରଉଥିଲେ । ପଞ୍ଚମୁଖ ବାହିମାପତିଙ୍କ ପ୍ରତି ରଜାଙ୍କର ସନ୍ତୋଷ ନ ଥିଲା । ସେ ଯୁବରାଜଙ୍କର ପକ୍ଷ ଧରୁଥିବାର ଶୁଣାଯାଉଥିଲା । ତଥାପି ବାହିମାପତି ତାନ୍ତ୍ରିକ ସିଦ୍ଧ ପୁରୁଷ ଥିବାରୁ ତାଙ୍କୁ କୌଣସି ପ୍ରକାର କଟୂକ୍ତି ବା ତାଙ୍କ ସମକ୍ଷରେ ପ୍ରଶ୍ନ ମଧ୍ୟ ରଜା ଉଠାଉ ନ ଥିଲେ ।

କିଶୋର ଯଦୁମଣିଙ୍କର ସ୍ୱଭାବ ସିଦ୍ଧ ମନୋହର ବପୁଟି ଯେ କେହି ଲୋକର ଆକର୍ଷଣୀୟ ଥିଲା । ଗୁରୁକୁଳ ଯାତ୍ରୀ ଏହି କିଶୋରଟିକୁ ରଜା ଶ୍ରୀକର ଦେଖି ପାଖକୁ ଡାକି ସମସ୍ତ କଥା ବୁଝିଥିଲେ ଏବଂ କହିଥିଲେ ଯେ—ତୁମ୍ଭେ ଭକ୍ତ ବ୍ରାହ୍ମଣଙ୍କ ଠାରୁ ଶିକ୍ଷା ଗ୍ରହଣ କରି ମନ୍ତ୍ରସାଧନା କରିବ ସତ୍ୟ, କିନ୍ତୁ ସମୟେ ସମୟେ ସେଥିରେ ଲୋକ ବାଉଳା ହେବାର ଦେଖାଯାଉଛି । ମୋର ଯୁବରାଜ ମଧ୍ୟ ପାରଳାକିମେଡ଼ିବାସୀ ଯୋଗେଶ ପରମଗୁରୁ ତନ୍ତ୍ରସିଦ୍ଧଙ୍କ ନିକଟରେ ଏହିପରି ମନ୍ତ୍ରସାଧନା କରି ବାଉଳା ହୋଇଥିଲା ।

ଏସବୁ ଶୁଣି ଯଦୁମଣିଙ୍କ ମନରେ ଭୟ ସଞ୍ଚାରିତ ହୋଇଥିଲା । ସେ ଉପେନ୍ଦ୍ର ଭଞ୍ଜଙ୍କ ପରି କୌଣସି ମନ୍ତ୍ରରେ ସିଦ୍ଧି ଲଭିବା ଆଶାରେ ଆସିଥିଲେ । କିନ୍ତୁ ପ୍ରଖ୍ୟାତ ଘୁମୁସର ରଜାଙ୍କଠାରୁ ଏପରି କଥା ଶୁଣି ଭୟ କରିଗଲେ । ସେହି ଶିବିରରେ ଦୁଇଦିନ ରହି ଉପେନ୍ଦ୍ରଙ୍କ ଛାନ୍ଦ ଗାଇ—ଅର୍ଥ କରି ସମସ୍ତଙ୍କୁ ମୁଗ୍ଧ କରିଦେଲେ । ଫଳରେ ରଜା ଶିଶୁଟିର କିଛି ଉପକାର କରିବାକୁ ଇଚ୍ଛା କଲେ । କିନ୍ତୁ ଯଦୁମଣି ମୂକପରି ରହି କୌଣସି କଥା କହିଲେ ନାହିଁ । ହଠାତ୍ ରାଣୀଙ୍କର ଭଉଣୀଙ୍କୁ ସୁରଙ୍ଗୀରଜା ଗଡ଼ରେ ପହଞ୍ଚିବା ଖବର ଆସିବାରୁ ଛାଉଣୀ ଭାଙ୍ଗିଗଲା । ରଜା ଯଦୁମଣିଙ୍କୁ ପାଞ୍ଚୋଟି ଟଙ୍କା ମାତ୍ର ବିଦାକ ଦେଲେ । ସେ ଉକ୍ତ ଶିବିରରେ ଏ ଦୁଇ ଦିନ ଭୋଜନ କରି ରହିଥିଲେ । ହଠାତ୍ ଶିବିର ରହି ଥାଉ ଭାଙ୍ଗିଗଲା ।

ଯଦୁମଣି କ'ଣ କରିବେ କ'ଣ କରିବେ ଭାବି ଗୋଟିଏ ବହୁଶାଖାଯୁକ୍ତ ଆମ୍ବ ଗଛ ମୂଳରେ ବସି ରହିଲେ । ବିଷ୍ଣୁଚକ୍ର ଗ୍ରାମକୁ ଯିବେ ନା ଘରକୁ ଫେରି ଆସିବେ ? ତାଙ୍କ ଜନନୀର କାତର ମୁଖ ବାରମ୍ବାର ଆଖିରେ ତାଙ୍କର ନାଚି ଉଠିଲା ।

## ଗୁରୁଙ୍କ ପରିଚୟ—

କିନ୍ତୁ ହଠାତ୍ ଅଦ୍ଭୁତପୂର୍ବ ଘଟଣା ଘଟିଲା । ସେ ଯାହାଙ୍କ ନିକଟକୁ ଏତେ କ୍ଳେଶ ସହି ଆସିଥିଲେ ସେହି ଗୁରୁଦେବ ଜଣେ ଶିଷ୍ୟ ସହିତ କଥୋପକଥନ ହୋଇ ଯାଉ ଯାଉ ଯଦୁମଣିଙ୍କର ସୁନ୍ଦର ଅବୟବଟିକୁ ଦେଖି ଦୟାର୍ଦ୍ର ହୋଇ ଛିଡ଼ା ହୋଇଗଲେ । ସେ କଥାଭାଷା ହୋଇ ଆସୁଥିଲେ । ଘଟଣା ଚକ୍ରରେ କଥା ମଧ୍ୟରେ ଶ୍ଳୋକଟିଏ ଗାଇଲେ –

କନ୍ୟା ପିତୃ ଗୃହେ ନୈବ ସୁଚିରଂ ବାସ ମର୍ହତି
ଲୋକାପବାଦଃ ସୁମହାନ୍ ଜାୟତେ ପିତୃ ବେଶ୍ମନି ।

ଯଦୁମଣି ମାନ୍ଧାତା ପୁରରେ ବିଦ୍ୟାଧ୍ୟୟନ ସମୟରେ ଶ୍ଳୋକାନ୍ତରେ ଅନ୍ତ ପ୍ରବୀଣ ଥିଲେ । ସେ କାଳାକାଳ ପାତ୍ରାପାତ୍ର ଉପରେ ଦୃଷ୍ଟି ନ ଦେଇ ଅନ୍ତେବାସୀମାନଙ୍କ ସହିତ ଥିବା ପରି ହଠାତ୍ କହିଲେ ଓ ଗାଇଲେ—

ବେଶ୍ମନି,— ତେବେ 'ନି' ତ ? ହେଉ ।
ନିଶାବସାନେ ସୁରତାବସାନେ
ଯତ୍ ପାଣ୍ଡ୍ୟତେ ଶ୍ରମ କବେଷ୍ଟ ପତ୍ନ୍ୟା ।
ତଦ୍ ଗନ୍ଧ ମାଘ୍ରାୟ ଚକାର ଶ୍ରମ
ହୁଁହିଁ ହୁଁହୁଁହୁଁ ହୁଁହୁଁହୁଁ ହୁଁହୁଁହୁଁ ।

ପଥଶ୍ରାନ୍ତ ଗୁରୁଶିଷ୍ୟ ଏକ ଅର୍ବାଚୀନ ବାଳକର ଏପରି ଅସମ୍ଭାବିତ କାଣ୍ଡ ଦେଖି ସ୍ତମ୍ଭିତ ହୋଇଥିଲେ । କିନ୍ତୁ ତତ୍‌ପ୍ରତି ଦୃଷ୍ଟି ନ ଦେଇ ଗଳ୍ପ କରି ଚାଲିଥିଲେ । ଶକୁନ୍ତଳା ଚରିତରେ ମହାଭାରତ, ପଦ୍ମପୁରାଣ ଓ କାଳିଦାସ ରଚନାର ତୁଳନାତ୍ମକ ଆଲୋଚନା ହେଉଥିଲା । ଶିଷ୍ୟର କୌଣସି ପ୍ରଶ୍ନର ଉତ୍ତରରେ ପୁରଶ୍ଚରଣ ବିଶାରଦ ପଞ୍ଚମୁଖ ପୁଣି ଗାଇଲେ--

ବିଶ୍ୱାସୀ ଚ ଘୃତାଚୀ ଚ ଷଡ଼େତେ ବାପ୍‌ସରସାଂବରାଃ
ତାସାଂ ଚ ମେନକା ନାମ ବ୍ରହ୍ମଯୋନିବରାପସ୍‌ରା ।

ପୁଣି ବାଳକ ଯଦୁମଣି କହି ଉଠିଲେ—

ବରାପସ୍‌ରା—ରା , ଆଚ୍ଛା—
ରମାଭିଷେକେ ମଦବିହ୍ୱଳାୟା
କଷଚ୍ୟୁତୋ ହେମ ଘଟ ସ୍ତରୁଣ୍ୟାଃ ।
ସୋପାନ ମାରୁହ୍ୟ କରୋତିଶବ୍ଦଂ
ଠ ଠଂ ଠଂଠଂଠଂ ଠଠଠଂ ଠଠଂଠଃ ।

ବୃଦ୍ଧ ବାଣ୍ଟମାପଣ୍ଡ ଶିଷ୍ଯର ଏକାନ୍ତ ଦେଖି ହସି ପକାଇଲେ । ପାଖକୁ ଡାକ କୁଶଳ ସମ୍ବାଦ ପଚ୍ଚରି, ବୁଝିଲେ ଯେ ସେ ତାଙ୍କର ନିକଟକୁ ଆସିଛି । ପଣ୍ଡିତଙ୍କ ସ୍ନେହବତ୍ସଳତାରେ ସଦୁମଣି ସବୁ ଭୟ ଭୁଲି ଯାଇଥିଲେ । ଗୁରୁ କହିଲେ—ବତ୍ସ !

ଗୁରୋର୍ଗିରଃ ପଞ୍ଚ ଦିନାନ୍ୟଧୀତ୍ୟ
ବେଦାନ୍ତ ଶାସ୍ତ୍ରାଣି ଦିନତ୍ରୟଂ ଚ ।
ଅମୀ ସମାଘ୍ରାୟ ଚ ତର୍କବାଦାନ୍
ସମାଗତାଃ କୁକ୍କୁଟ ମିଶ୍ର ପାଦାଃ ।

ତୋତେ ଦେଖି, ତୋ କଥା ଶୁଣି ମୁଁ ତୋ ସହିତ ମଧ୍ଯ ପରିହାସିକ ହୋଇ ପଡ଼ିଛି । ମୀମାଂସା ଶାସ୍ତ୍ରକୁ ଗୁରୁଙ୍କ ଉପଦେଶରେ ପାଞ୍ଚ ଦିନ ମଧ୍ଯରେ ଶେଷ କରି, ତିନ ଦିନରେ ବେଦାନ୍ତ ଶାସ୍ତ୍ର ପଢ଼ା ଶେଷ କରି, ତର୍କ ଶାସ୍ତ୍ରକୁ ଆଘ୍ରାଣ ମାତ୍ର କରି କୁକ୍କୁଟ ପକ୍ଷି ନାମରେ ନାମିତ କୁକ୍କୁଟମିଶ୍ରପାଦ ସମାଗତ ହେଲେ । ଏଣୁ ତାଙ୍କୁ ପ୍ରଧାନ ଉପାଧ୍ଯାୟ ଆସନ ଦିଆଯାଉ । ତୁ ସେହିପରି ସମାଗତ ହୋଇଛୁ ତ ? ଯାହାହେଉ ତୋର ପ୍ରଚ୍ଛନ୍ନ ହାସ୍ୟରସ ମତେ ମୁଗ୍ଧ କରି ଦେଇଛି । 'ଅକାମ୍ପଂ ହସିତଂ ଶ୍ରେଷ୍ଠଂ ମୀଳିତାକ୍ଷ ମଧ୍ଯମଂ । ଅସକୃଦ୍ ହସିତଂ ଦୁଷ୍ଟେତ୍ୟତ୍ର ଉନ୍ମାଦସ୍ୟ ଲକ୍ଷଣଂ ।' ସ୍ପନ୍ଦନହୀନ ହାସ୍ୟହିଁ ଶ୍ରେଷ୍ଠ । ଆଖିବୁଜ ହସିଲେ ପାପ ଦୂର ହୁଏ । ବାରମ୍ବାର ହସିଲେ ବଡ଼ ଦୋଷ । କାରଣ ତାହା ଉନ୍ମାଦ ବା ବାତୁଳର ସ୍ବଭାବ ଅଟେ ।

ଏହାପରେ ସଦୁମଣିଙ୍କ ଠାରୁ ସମସ୍ତ ଘଟଣା ଜାଣିସାରି, ପୁଣି କହିଲେ— "ଶମୀ କଦମ୍ବ ନିଂବାମ୍ର ମଧୁକା ବୃକ୍ଷ ଶାଖିନଃ ।"

—"ଯେତେବେଳେ ଆମ୍ର ବୃକ୍ଷ ତଳେ ତୋତେ ଭେଟିଛି, ତୋର ସାହସିକ ଶ୍ଳୋକାନ୍ତରେ ହାସ୍ୟରସ ଶୁଣିଛି, ତୋତେ ନିଶ୍ଚୟ ତୋର ଉଦ୍ଦେଶ୍ୟ ସଫଳ ଲାଗି ଯତ୍ନ କରିବି ।"

ଶେଷରେ ମନ୍ତ୍ର ପ୍ରୟୋଗ ପାଇଁ ବାଣ୍ଟମାପଣ୍ଡ କୃତସଂକଳ୍ପ ହେଲେ । ଜଣେ ସିଦ୍ଧ ସାଧୁ ସେ ସମୟରେ ସେଠାରେ ପହଞ୍ଚିଲେ । ପହଞ୍ଚି ଏସବୁ କଥା ଶୁଣି ସେ ସଦୁମଣିଙ୍କୁ ପଚ୍ଚରିଲେ—ବତ୍ସ ! ବଂଶ ଶୁଦ୍ଧ ନା ନାମ ଶୁଦ୍ଧ ? ସଦୁମଣି କହିଲେ—ନାମ ଶୁଦ୍ଧ । ତହୁଁ ସେ ଭଗବାନ ବଳଭଦ୍ରଙ୍କୁ ହୟଗ୍ରୀବ ମନ୍ତ୍ର ଦେବାକୁ କହିଗଲେ । ଆଶ୍ବିନ ମାସର ଶେଷପାଦରେ ସଦୁମଣି ଏଠାରେ ପହଞ୍ଚିଥିଲେ । ତେଣୁ ସେ କିପରି ଉପଯୁକ୍ତ ହେବେ ତାହା ଗୋଟିଏ ପକ୍ଷ ମଧ୍ଯରେ ଗୁରୁ ପ୍ରଥମେ ପରୀକ୍ଷା କରି ନେଲେ ।

ସଦୁମଣି ଗୁରୁଙ୍କ ପ୍ରତି ଏପରି ଭକ୍ତି, ଶ୍ରଦ୍ଧା ଏବଂ ଶୁଶ୍ରୂଷା କଲେ ଯେ ଗୁରୁ ଦିନେ କହିଲେ—ବତ୍ସ ! ତୁ ଶୂଦ୍ର କୁଳରେ ଜନ୍ମ ଲଭିଥିଲେ ହେଁ ପାବନ ମନ୍ତ୍ର ଗ୍ରହଣ ପାଇଁ ଏକାନ୍ତ ଉପଯୁକ୍ତ ଅଟୁ । ସାଧଙ୍କୁ କଥା ରଖିବି । କାରଣ —

—ନଦେୟ ମର୍ଥ ଲୁବ୍ଧାୟ ପିଶୁନାୟାସ୍ତିକାୟ ଚ
ଭକ୍ତି ଶ୍ରଦ୍ଧା ବିହୀନାୟ ଶୁଶ୍ରୂଷା-ବିମୁଖାୟ ଚ ।

## ହୟଗ୍ରୀବ ମନ୍ତ୍ର ସାଧନାର ପ୍ରାଥମିକ ଚର୍ଚ୍ଚା—

ବର୍ତ୍ତମାନ ଦୀକ୍ଷା ଗ୍ରହଣର ଶୁଭ ସମୟ ସମାଗତ ।
—ବୈଶାଖେ ଶ୍ରାବଣେ ବାପି ଆଶ୍ୱିନେ କାର୍ତ୍ତିକେଽଥବା
ଫାଲ୍‌ଗୁନେ ମାର୍ଗଶୀର୍ଷେ ବା କୁର୍ଯ୍ୟାନ୍ ମନ୍ତ୍ରସ୍ୟ ଦୀକ୍ଷଣମ୍ ।
ଏହା କାର୍ତ୍ତିକ ମାସ, ବିଶେଷରେ ଶରତ ଋତୁ ଥିବାରୁ—
ଶରତ୍ କାଳେ ତ ମନ୍ତ୍ରସ୍ୟ ଦୀକ୍ଷାଶ୍ରେଷ୍ଠ ଫଳପ୍ରଦା
ଫାଲ୍‌ଗୁନେ ମାର୍ଗଶୀର୍ଷ ଚ ଜ୍ୟେଷ୍ଠେ ଦୀକ୍ଷା ତୁ ମଧ୍ୟମା
ଆଷାଢ଼େ ଶ୍ରାବଣେ ମାଘେ କନିଷ୍ଠା ସର୍ବ୍ବଦୃତା
ନନ୍ଦିତଶ୍ଚାଧମାସସ୍ତୁ ପୌଷେ ଭାଦ୍ରପଦସ୍ତଥା ।

ଅତି ଭଲ ସମୟ ହୋଇଅଛି । ତୁ ତୋ'ର ଉଦ୍ଦେଶ୍ୟ ଜ୍ଞାପନ କଲେ ମୁଁ ତିଥି ବାର ସ୍ଥିର କରିବି ।

ଗୁରୁ ଏହା କହନ୍ତେ ପଦ୍ମମଣି କରଯୋଡ଼ି ଜଣାଇଲେ—ମୁଁ କବିତ୍ୱ ଆଶାରେ ଆସିଛି ଆଜ୍ଞା । ତହୁଁ ଗୁରୁ କହିଲେ—

ମୁକ୍ତିକାମୈଃ କୃଷ୍ଣ ପକ୍ଷେ ଭୁକ୍ତିକାମୈଃ ସିତେସଦା ।
ତେବେ ଭୁକ୍ତି କାମନା ଥିବାରୁ ଶୁକ୍ଳପକ୍ଷ ପ୍ରଶସ୍ତ ଅଟେ ।
ପୂର୍ଣ୍ଣିମା ପଞ୍ଚମୀ ଚୈବ ଦ୍ୱିତୀୟା ସପ୍ତମୀ ତଥା
ତ୍ରୟୋଦଶୀ ଚ ଦଶମୀ ପ୍ରଶସ୍ତାଃ ସର୍ବକାମଦାଃ
ରବୌ ଗୁରୌ ବିଧୌ ଦୀକ୍ଷା କର୍ତ୍ତବ୍ୟା ବୁଧ ଶୁକ୍ରୟୋଃ

ତ୍ରୟୋଦଶୀ ଦିନ ଦୀକ୍ଷା ନେଲେ ଭଲ ହେବ । ବିଶେଷରେ ତୁଳା ମାସ ଚାଲୁଥିବାରୁ ଅତି ଭଲ ହେବ ।

ମେଷ କର୍କଟ କନ୍ୟାସୁ ତୁଳାୟାଂ ବୃଶ୍ଚିକେ ତଥା
ମକରେ କୁମ୍ଭକେ ଚୈବ ଦୀକ୍ଷା ସର୍ବ ଶୁଭାବହା ।

କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ବା ଦଶମୀରେ ବାର ଭଲ ହେଉ ନାହିଁ । ତେଣୁ ନବମୀ ଶୁକ୍ରବାରରେ ଦୀକ୍ଷା ଦିଆଯିବ ।

କାର୍ତ୍ତିକେ ନବମୀ ଶୁକ୍ଳା ତୀର୍ଥ କୋଟି ଫଳାନି ଚ ।

ତାହାହିଁ ସ୍ଥିର ହେଲା ।

ପଦ୍ମମଣି ନିଷ୍କମ୍ପ ପ୍ରଦୀପ ଭଳି ଗୁରୁ ଦେବତାଙ୍କ ପାଦ ପଦ୍ମରେ ଚିତ୍ତ ଦେଇ ଶୁଣିଲେ—ପ୍ରତ୍ୟହ କପଡ଼ ତିନି ଥର ସ୍ନାନ କରିବେ । କାରଣ ଅସ୍ନାତସ୍ୟ ଫଳଂ ନାସ୍ତି । ତା'ପରେ ତିଳକ କପଡ଼ ଧାରଣ କରିବେ । କାରଣ ସେ ହୟଗ୍ରୀବ ବିଷ୍ଣୁ ମନ୍ତ୍ର ଗ୍ରହଣ କରିବା ସ୍ଥିର ହେବାରୁ—

'ଶଙ୍ଖ ଚକ୍ରଂ ଭୁଜଦ୍ୱନ୍ଦେ ଶାର୍ଙ୍ଗବାଣଂ ଚ ମୂର୍ଦ୍ଧନି' ଜପରେ କରିବେ ଶିଖିନେଲେ ।

ଏହି କଠୋର ସାଧନାରେ ଭିକ୍ଷା କରିବାକୁ ହେବ । ଯେଉଁ ଭିକ୍ଷା ସଂଗୃହୀତ ହେବ, ତାହାଦ୍ୱାରା ହବିଷ୍ୟ କିପରି କରିବାକୁ ହେବ, ତାହା ମଧ୍ୟ ଶିଖିନେଲେ ।

ଭକ୍ଷଂ ହବିଷ୍ୟଂ ଶାକାନି ବିହିତାନି ଫଳଂ ପୟଃ
ଚରୁ ମୂଳ ଫଳଂ କ୍ଷୀର ଦଧି ଭିକ୍ଷାନ୍ନ ସକ୍ତବଃ ।
ଭିକ୍ଷାନ୍ନଂ ଶୁଦ୍ଧମାଦାୟ କୃତ୍ୱା ଭାଗ ଚତୁଷ୍ଟୟଂ
ଏକୋଭାଗୋ ଦ୍ୱିଜେ ଭକ୍ତ୍ୟା ଦତ୍ତୋ ଗ୍ରାସେ ଚ ଦ୍ୱିତୀୟକଂ
ଅତିଥିଭ୍ୟ ସ୍ତୃତୀୟସ୍ତୁ କୃତ୍ୱା ଗ୍ରାସ ବିଧିଂ ସମାଚର୍ ।

ଭୋଜନ କୁକ୍କୁଟାଣ୍ଡ ପ୍ରମାଣରୁ ଅଟକେ ଅଧିକ କରିବ ନାହିଁ ।

କୁକ୍କୁଟାଣ୍ଡ ପ୍ରମାଣଂ ତୁ ଗ୍ରାସମାନଂ ବିଧୀୟତେ
ଅଷ୍ଟୌ ଗ୍ରାସାନ୍ ଗୃହସ୍ଥସ୍ତ ବ୍ରହ୍ମଚାରୀ ଯଥେଷ୍ଟତଃ ।

ତେଣୁ କୁକ୍କୁଟାଣ୍ଡ ପ୍ରମାଣରେ ଗ୍ରାସ ସେ ବ୍ରହ୍ମଚାରୀ ଥିବାରୁ ଯଥେଷ୍ଟ । ଏହାଙ୍କ ହବିଷ୍ୟ ବେଳେ ଭୋଜନ ଲାଗି ବ୍ୟବସ୍ଥା ଥିଲା । କିନ୍ତୁ ସେ ଖାଇ ସନ୍ତୋଷ ଲଭି ପାରୁ ନ ଥିଲେ ।

ଦେବାଳୟରେ ସେ ମନ୍ତ୍ର ଜପ କରିବାକୁ ସିଦ୍ଧାନ୍ତ କରାଯାଇଥିଲା—

ଗୃହେ ଶତ ଗୁଣଂ ବିଦ୍ୟାଦ୍‌ଗୋଷ୍ଠେ ଲକ୍ଷ ଗୁଣଂ ଭବେତ୍
କୋଟି ଦେବାଳୟେ ପୁଣ୍ୟମନନ୍ତଂ ଶିବ ସନ୍ନିଧୌ ।

ଆସନ ଖଣ୍ଡିଏ ସେ ବ୍ୟାଘ୍ରଚର୍ମର ନ ପାଇ ପାରିବାରୁ ବାଉଁଶ ତଲେଇଟିଏ ପକାଇ ଜପ କରୁଥିଲେ । ଆସନ ସମ୍ବନ୍ଧରେ ତାଙ୍କର କୌଣସି ଧାରଣା ନ ଥିବାରୁ ସେ ଫଳରେ "ବଂଶାସନେ ଦରିଦ୍ରତ୍ୱଂ" ଚିରଦିନ ଦାରିଦ୍ର୍ୟ ଭୋଗ କରିଥିଲେ ।

କାର୍ତ୍ତିକ ଶୁକ୍ଳ ଅଷ୍ଟମୀ ଦିନ ଗୁରୁଦେବ ଯଦୁମଣିଙ୍କୁ ନିଜ ଆସନ ନିକଟରେ ବସାଇ କହିଥିଲେ—"ବତ୍ସ ! ବିଦ୍ୟାର ଦେବତା ହେଉଛନ୍ତି ହୟଗ୍ରୀବ । ତାଙ୍କର ମନ୍ତ୍ର ତୁମେ ବତିଶ ଲକ୍ଷ ଥର ଜପ କରିବାକୁ ହେବ । ତେବେ ଯାଇ ସିଦ୍ଧି ଲଭିବ । ଉକ୍ତ ହୟଗ୍ରୀବ ମନ୍ତ୍ର ମଧ୍ୟ ବତିଶ ଅକ୍ଷର ବିଶିଷ୍ଟ ଅଟେ । କିନ୍ତୁ ଉକ୍ତ ହୟଗ୍ରୀବ ମନ୍ତ୍ରର ଏକାଦଶାକ୍ଷର ମନ୍ତ୍ର ପ୍ରୟୋଗ ଅଛି । ସେଥିରେ ଚାରି ଲକ୍ଷ ଜପ କରାଯାଏ । ତାହା ସେପରି ଦୃଢ଼ ନୁହେଁ । ଅତ୍ୟନ୍ତ ଶୁଦ୍ଧଚିତ୍ତ ନ ହେଲେ ଦେବତାର ଦର୍ଶନ ସମ୍ଭବ ହୁଏ ନାହିଁ । ତେଣୁ ତୁମ୍ଭେ କଣ କରିବ ମୋତେ ଜଣାଅ ।"

ଯଦୁମଣି ବତିଶି ଅକ୍ଷର ବିଶିଷ୍ଟ ମନ୍ତ୍ର ଜପ କରିବାକୁ ଉତ୍ସାହିତ ହୋଇ ତାହା ଗ୍ରହଣ କରିବାକୁ ବ୍ୟାକୁଳ ହୋଇ ଉଠିଥିଲେ ।

ଗୁରୁ କହିଥିଲେ— ବତ୍ସ ! ମୁଁ ତୋତେ ପରୀକ୍ଷା କରିବାକୁ ସମ୍ବତ୍ସର କାଳ ଖଟେଇ ଦେଇଥାନ୍ତି । କାରଣ ଶାସ୍ତ୍ର ପ୍ରମାଣ ଅନୁସାରେ—

ଜ୍ଞାନେନ ବିଦ୍ୟୟା ବାପି ଗୁରୁଃ ଶିଷ୍ୟଂ ପରୀକ୍ଷୟେତ୍
ସମ୍ବତ୍ସରଂ ତଦର୍ଦ୍ଧଂ ବା ତଦର୍ଦ୍ଧଂ ବା ପ୍ରଯତ୍ନତଃ ।

କିନ୍ତୁ ତୋର ସୁଦର୍ଶନ ଅବୟବ ଏବଂ ସେବା ଶୁଶ୍ରୂଷାରେ ମୁଁ ମୋହିତ ହୋଇଛି—ଅତି ଶୀଘ୍ର । ତେବେ ତୁ ଗୁରୁଙ୍କୁ ପରମେଶ୍ୱର ବୋଲି ମନେ କରିବୁ ।

ଶ୍ରୀ ଗୁରୁଃ ପରମେଶାନ ଶୁଦ୍ଧବେଶୋ ମନୋହରଃ
ସର୍ବଲକ୍ଷଣ ସମ୍ପନ୍ନଃ ସର୍ବାବୟବ ଶୋଭିତଃ ।

ବିଦ୍ୟାର୍ଥୀ ଶିଷ୍ୟ ଶୂଦ୍ର ହେଲେ, କିଛି ଚିନ୍ତା ନାହିଁ । ମୁଁ ତୋଠାରେ ସନ୍ତୋଷ ହୋଇଅଛି । ତୁ ଦୀକ୍ଷା ଲାଭ କର । "ଶିଷ୍ୟ ଶୂଦ୍ରଂ ବିଦ୍ୟାର୍ଥିନଂ ।"

ଏହାପରେ ଗୁରୁଦେବ ମଧୁକୈଟଭ ବଧାର୍ଥେ ବିଷ୍ଣୁଙ୍କର ହୟଗ୍ରୀବ ଅବତାର ବର୍ଣ୍ଣନା ସୁସ୍ପଷ୍ଟ କରିବାକୁ ଆଦେଶ କଲେ ।

ସୁ ନାସିକେନ କାୟେନ ଭୂତ୍ୱା ଚନ୍ଦ୍ର ପ୍ରଭସ୍ତଦା
କୃତ୍ୱା ହୟଶିରଃ ଶୁଭ୍ରଂ ବେଦାନାମାଳୟଂ ପ୍ରଭୁଃ
ତସ୍ୟ ମୂର୍ଦ୍ଧା ସମଭବଦ୍ ଦ୍ୟୌଃ ସନକ୍ଷତ୍ର ତାରକା
କେଶାଶ୍ଚାସ୍ୟାଭବନ୍ଦୀର୍ଘା ରବେରଂଶୁ ସମପ୍ରଭାଃ
କର୍ଣ୍ଣାବାକାଶ ପାତାଳେ ଲଲାଟଂ ଭୂତଧାରିଣୀ
ଗଙ୍ଗା ସରସ୍ୱତୀ ଶ୍ରୋଣ୍ୟୌ ଭ୍ରୁବାବାସ୍ତାଂ ମହୋଦଧୀ ।
ଚକ୍ଷୁଷୀ ସୋମ ସୂର୍ଯ୍ୟୌତେ ନାସା ସନ୍ଧ୍ୟା ପୁନଃଶ୍ରୁତା
ପ୍ରଣବ ସ୍ତ୍ୱଥ ସଂସ୍କାରୋ ବିଦ୍ୟୁ ଜ୍ଜିହ୍ୱା ଚ ନିର୍ମିତା
ଦନ୍ତାଶ୍ଚ ପିତରୋ ରାଜନ୍ ସୋମପା ଇତି ବିଶ୍ରୁତାଃ
ଗୋଲୋକୋ ବ୍ରହ୍ମଲୋକଶ୍ଚ ଓଷ୍ଠାବାସ୍ତାଂ ମହାତ୍ମନଃ
ଗ୍ରୀବା ଚାସ୍ୟାଭବ ଦ୍ରାଜନ୍ କାଳ ରାତ୍ରି ର୍ଗୁଣୋତ୍ତରା
ଏତନ୍ ହୟ ଶିରଃ କୃତ୍ୱା ନାନା ମୂର୍ତ୍ତିଭିରାବୃତମ୍ ।

ଅର୍ଥାତ୍— ଭଗବାନ ନିଜକୁ ନାନା ମୂର୍ତ୍ତିଦ୍ୱାରା ଆବୃତ କରି ହୟଶିରଃ (ହୟଗ୍ରୀବ) ଅବତାର ଧାରଣ କରିଥିଲେ । ତାଙ୍କ ଶରୀର ସୁନ୍ଦର ନାସାଯୁକ୍ତ ହୋଇଥିଲା । ତାଙ୍କର ଚନ୍ଦ୍ର ସଦୃଶ ପ୍ରଭା ଓ ସମସ୍ତ ବେଦର ଆଳୟ ସ୍ୱରୂପ ଶୁଭ୍ର ବର୍ଣ୍ଣ ହୟଶିରଃ (ଅଶ୍ୱ ମସ୍ତକ) ହୋଇଥିଲା । (ସେ) ମସ୍ତକ ସମସ୍ତ ନକ୍ଷତ୍ର ତାରକାଯୁକ୍ତ ଆକାଶ ହେଲା । କେଶଗୁଡ଼ିକ ସୂର୍ଯ୍ୟକିରଣ ସଦୃଶ ଦୀର୍ଘ ଥିଲା । ସେ ମୂର୍ତ୍ତିର ଆକାଶ ଓ ପାତାଳ ଉଭୟ କର୍ଣ୍ଣ । ଭୂତଧାରିଣୀ (ପୃଥିବୀ) ଲଲାଟ । ଗଙ୍ଗା ଓ ସରସ୍ୱତୀ ଉଭୟ ଶ୍ରୋଣୀ । ପୂର୍ବ ପଶ୍ଚିମ ସାଗର ଦ୍ୱୟ (ମହୋଦଧି) ଭ୍ରୂଯୁଗ୍ମ । ଚନ୍ଦ୍ର ସୂର୍ଯ୍ୟ ଚକ୍ଷୁଦ୍ୱୟ ଓ ସନ୍ଧ୍ୟା ନାସିକା ହୋଇଥିଲେ । ପ୍ରଣବ ସେ ଶରୀରର ସଂସ୍କାର ଥିଲା । ବିଦ୍ୟୁତ୍ ଜିହ୍ୱା ରୂପ ହୋଇଥିଲା ।

ସୋମପା ପିତୃମାନେ ତନ୍ତ ହୋଇଥିଲେ । ସେ ମହାତ୍ମାଙ୍କର ଉଭୟ ଓଷ୍ଠ ହୋଇଥିଲେ ଗୋଲୋକ ଓ ବ୍ରହ୍ମଲୋକ । ଗୁଣାଧିକ୍ୟା କାଳରାତ୍ରି ଗ୍ରୀବା ହୋଇଥିଲା ।

ଯଦୁମଣି ଏହି ବର୍ଣ୍ଣନା ଅତି ଶୀଘ୍ର ଧରିନେଇ ତାହା ମୁଖସ୍ଥ କରି ଦେଇଥିଲେ ।

ଅଷ୍ଟମୀ ନିଶା ଅନ୍ତେ ହେବା ପରେ ବ୍ରାହ୍ମ ମୁହୂର୍ତ୍ତରେ ସ୍ନାନାଦି କରି ଶ୍ରୀ ଗୁରୁଦେବଙ୍କ ଚରଣାମୃତ ପାନକରି ଯଦୁମଣି ମନ୍ତ୍ରଗ୍ରହଣ ଲାଗି କଠୋର ନିଷ୍ଠା ଅବଲମ୍ବନ କଲେ । ଯଥା ସମୟରେ ମନ୍ତ୍ର ପୁରଶ୍ଚରଣ କର୍ମ କରାଯାଇଲା । ଗୁରୁଦେବ ଏହି ପ୍ରକାରେ ମନ୍ତ୍ର ଦାନ କଲେ ।

## ହୟଗ୍ରୀବ ମନ୍ତ୍ରଦୀକ୍ଷା—

ଅସ୍ୟ ଦ୍ୱିଚତ୍ୱାରିଂଶ ଦକ୍ଷରସ୍ୟ ହୟଗ୍ରୀବ ମନ୍ତ୍ରସ୍ୟ

| | |
|---|---|
| ବ୍ରହ୍ମା | ଋଷିଃ |
| ଅନୁଷ୍ଟୁପ୍ | ଛନ୍ଦଃ |
| ହୟଗ୍ରୀବୋ | ଦେବତା |
| ସର୍ବେଷ୍ଟସିଦ୍ଧୟେ ଜପେ | ବିନିଯୋଗଃ । |

ବ୍ରହ୍ମଣ ଋଷୟେ ନମଃ ଶିରସି
ଅନୁଷ୍ଟୁପ୍ ଛନ୍ଦ ନମଃ ମୁଖେ
ହୟଗ୍ରୀବାୟ ଦେବତାୟୈ ନମଃ ହୃଦି
ବିନିଯୋଗାୟ ନମଃ ସର୍ବାଙ୍ଗେ ଇତି ଋଷ୍ୟାଦି ନ୍ୟାସଃ ।

| | |
|---|---|
| ହଂସଃ ସୋଽହଂ | ଅଙ୍ଗୁଷ୍ଠାଭ୍ୟାଂ ନମଃ । |
| ବିଶ୍ୱୋତ୍ତୀର୍ଣ୍ଣ ସ୍ୱରୂପାୟ | ତର୍ଜନୀଭ୍ୟାଂ ନମଃ । |
| ଚିନ୍ମୟାନନ୍ଦ ରୂପିଣେ | ମଧ୍ୟମାଭ୍ୟା ନମଃ । |
| ତୁଭ୍ୟଂ ନମୋ ହୟଗ୍ରୀବ | ଅନାମିକାଭ୍ୟାଂ ନମଃ । |
| ବିଦ୍ୟା ରାଜାୟ ବିଷ୍ଣବେ | କନିଷ୍ଠାଭ୍ୟାଂ ନମଃ । |
| ସ୍ୱାହା ହଂସଃ ସୋଽହଂ | କରତଳ କରପୃଷ୍ଠାଭ୍ୟାଂ ନମଃ । |

ଇତି କରନ୍ୟାସଂ ।

| | |
|---|---|
| ହଂସ ସୋଽହଂ | ହୃଦୟାୟ ନମଃ |
| ବିଶ୍ୱ ତ୍ତୀର୍ଣ୍ଣ ସ୍ୱରୂପାୟ | ଶିରସେ ସ୍ୱାହା |
| ଚିନ୍ମୟାନନ୍ଦ ରୂପିଣେ | ଶିଖାୟୈ ବଷଟ୍ |
| ତୁଭ୍ୟ ନମୋ ହୟଗ୍ରୀବ | କବଚାୟ ହୁଁ |
| ବିଦ୍ୟାରାଜାୟ ବିଷ୍ଣବେ | ନେତ୍ର ତ୍ରୟାୟ ବୌଷଟ୍ |
| ସ୍ୱାହା ହଂସଃ ସୋଽହଂ | ଅସ୍ତ୍ରାୟ ଫଟ୍ । |

ଇତି ହୃଦୟାଦି ଷଡ଼ଙ୍ଗ ନ୍ୟାସଃ ।

ଏବଂ ନ୍ୟାସ ବିଧିଂ କୃତ୍ୱା ଧ୍ୟାୟେତ୍

ଶରଚ୍ଛଶାଂକପ୍ରଭମଶ୍ୱବକ୍ତ୍ରଂ
ମୁକ୍ତାମୟୈ ସର୍ବଭରଣୈ ରୁପେତମ୍
ରଥାଂଗଶଂଖାଂଚିତ ବାହୁଯୁଗ୍ମଂ
ଜାନୁଦ୍ୱୟ ନ୍ୟସ୍ତ କରଂ ଭଜାମଃ ।

ଇତି ଧ୍ୟାୟେତ୍ ।

ହଂସଃ ସୋଽହଂ ବିଶ୍ୱୋତ୍ତୀର୍ଣ୍ଣ ସ୍ୱରୂପାୟ ଚିନ୍ମୟାନନ୍ଦ ରୂପିଣେ
ତୁଭ୍ୟଂ ନମୋ ହୟଗ୍ରୀବ ବିଦ୍ୟାରାଜାୟ ବିଷ୍ଣବେ ସ୍ୱାହା ହଂସଃ ସୋଽହଂ ।
ଇତି ଦ୍ୱିଚତ୍ୱାରିଂଶଦକ୍ଷରେ ହୟଗ୍ରୀବ ମନ୍ତ୍ରଃ । (ତନ୍ତ୍ରସାରେ)

## ହୟଗ୍ରୀବ ପୂଜନ ଯନ୍ତ୍ରଂ




ତତଃ ପୀଠାଦୌ ସର୍ବତୋଭଦ୍ର ମଣ୍ଡଳେ

"ଓଁ ମଂ ମଂଡୂକାଦ୍ୟ ପରତତ୍ତ୍ୱାଂତ ପୀଠ ଦେବତାଭ୍ୟୋ ନମଃ"
ଇତି ପୀଠଦେବତାଃ ସଂପୂଜ୍ୟ ନବପୀଠଶକ୍ତିଂ ପୂଜୟେତ୍ ।

ତଦ୍ୟଥା — ଓଁ କମଳାୟୈ ନମଃ
ଓଁ ଉତ୍କର୍ଷିଣ୍ୟୈ ନମଃ
ଓଁ ଜ୍ଞାନାୟୈ ନମଃ
ଓଁ କ୍ରିୟାୟୈ ନମଃ
ଓଁ ଯୋଗାୟୈ ନମଃ
ଓଁ ପ୍ରହ୍ୱ୍ୟୈ ନମଃ
ଓଁ ସତ୍ୟାୟୈ ନମଃ
ଓଁ ଈଶାନାୟୈ ନମଃ
ମଧ୍ୟେ— ଓଁ ଅନୁଗ୍ରହାୟୈ ନମଃ । ଇତି ପୂଜୟେତ୍ ।

ତତଃ ସ୍ୱର୍ଣ୍ଣାଦି ନିର୍ମ୍ମିତ ଯନ୍ତ୍ରଂ ମୂର୍ତ୍ତିଂ ବା ତାମ୍ରପାତ୍ରେ ଘୃତେନାଭ୍ୟଜ୍ୟ ତଦୁପରି ଦୁଗ୍ଧଧାରାଂ ଜଳଧାରାଂ ଚ ଦତ୍ତ୍ୱା ସ୍ୱଚ୍ଛ ବସ୍ତ୍ରେଣ ସଂଶୋଷ୍ୟ
"ଓଁ ନମୋ ଭଗବତେ ହୟଗ୍ରୀବାୟ ସର୍ବ ଭୂତାତ୍ମନେ
ବାସୁଦେବାୟ ସର୍ବାତ୍ମ ସଂଯୋଗ ପଦ୍ମପୀଠାତ୍ମନେ ନମଃ"

ଇତି ମନ୍ତ୍ରେଣ ପୁଷ୍ପାଦ୍ୟାସନଂ ଦତ୍ତ୍ୱା ପୀଠମଧ୍ୟେ ସଂସ୍ଥାପ୍ୟ ପ୍ରତିଷ୍ଠାଂ ଚ କୃତ୍ୱା ପୁନର୍ଧ୍ୟାତ୍ୱା (ହ୍ସୂଂ) ଇତି ବୀଜମନ୍ତ୍ରେଣ ମୂର୍ତ୍ତିଂ ପ୍ରକଳ୍ପ୍ୟ ପାଦ୍ୟାଦି ପୁଷ୍ପାଂ ତୈ ରୁପଚାରୈଃ ସଂପୂଜ୍ୟ ଦେବାଜ୍ଞାଂ ଗୃହୀତ୍ୱା ଆବରଣ ପୂଜାଂ କୁର୍ଯ୍ୟାତ୍ ।

ତଦ୍ୟଥା—

ପୁଷ୍ପାଞ୍ଜଳିମାଦାୟ—

ଓଁ ସମ୍ବିନ୍ମୟଃ ପରେ ଦେବଃ ପରାମୃତ ରସପ୍ରିୟ
ଅନୁଜ୍ଞାଂ ଦେହି ମେ ଦେବ ପରିବାରାର୍ଚ୍ଚନାୟ ତେ ।

ଇତି ପଠିତ୍ୱା ପୁଷ୍ପାଞ୍ଜଳିଂ ଚ ଦତ୍ତ୍ୱା ଆବରଣ ପୂଜାମାରଭେତ୍ ।

ଷଟ୍ କୋଣ କେଶରେଷୁ ଆଗ୍ନେୟାଦି କ୍ରମେଣ ମଧ୍ୟେ ଦିକ୍ଷୁ ଚ ଷଡଙ୍ଗାନି ପୂଜୟେତ୍ । ଇତି ପ୍ରଥମା ବରଣମ୍ ।

ତତୋଽଷ୍ଟ ଦଳେ ପୂଜ୍ୟ ପୂଜକୟୋରନ୍ତରାଳେ ପ୍ରାଚୀଂ ତଦନୁସାରେଣ ଅନ୍ୟା ଦିଶଃ ପ୍ରକଳ୍ପ୍ୟ—

ପୂର୍ବେ ଓଁ ଋଗ୍ବେଦାୟ ନମଃ
ଦକ୍ଷିଣେ ଓଁ ଯଜୁର୍ବେଦାୟ ନମଃ
ପଶ୍ଚିମେ ଓଁ ସାମବେଦାୟ ନମଃ
ଉତ୍ତରେ ଓଁ ଅଥର୍ବବେଦାୟ ନମଃ
ଅଗ୍ନିକୋଣେ ଓଁ ସର୍ବସ୍ମୃତିଭ୍ୟୋ ନମଃ
ନୈଋତେ ଓଁ ସର୍ବନ୍ୟାୟଶାସ୍ତ୍ରେଭ୍ୟୋ ନମଃ
ବାୟବ୍ୟେ ଓଁ ସର୍ବଧର୍ମଶାସ୍ତ୍ରେଭ୍ୟୋ ନମଃ
ଐଶାନ୍ୟେ ଓଁ ସର୍ବପୁରାଣଶାସ୍ତ୍ରେଭ୍ୟୋ ନମଃ

ଇତି ପୂଜୟେତ୍ ।

ତତଃ ପୁଷ୍ପାଞ୍ଜଳିମାଦାୟ ମୂଳମୁଚ୍ଚାର୍ଯ୍ୟ

ଓଁ ଅଭୀଷ୍ଟସିଦ୍ଧିଂ ମେ ଦେହି ଶରଣାଗତବତ୍ସଳ
ଭକ୍ତ୍ୟା ସମର୍ପୟେ ତୁଭ୍ୟଂ ଦ୍ୱିତୀୟା ବରଣାର୍ଚ୍ଚନମ୍ ।

ଇତି ପଠିତ୍ୱା ପୁଷ୍ପାଞ୍ଜଳିଂ ଚ ଦତ୍ତ୍ୱା ପୂଜିତା ସ୍ତର୍ପିତା ସନ୍ତୁ ଇତି ବଦେତ୍ ।

ଇତି ଦ୍ୱିତୀୟା ବରଣମ୍ ।

ଅନ୍ୟାବରଣଂ ସର୍ବଂ ପୂର୍ବବତ୍ ସମ୍ପୂଜ୍ୟ ଜପଂ କୁର୍ଯ୍ୟାତ୍ ।

ଅସ୍ୟ ପୁରଶ୍ଚରଣଂ ଦ୍ୱିଚତ୍ୱାରିଂଶଲ୍ଲକ୍ଷ ଜପଃ ।

ତଥା ଚ—

ବର୍ଣ୍ଣ ଲକ୍ଷଂ ଜପେନ୍ମନ୍ତ୍ରଂ କୁନ୍ଦ ପୁଷ୍ପୈର୍ମଧୂପ୍ଲୁତୈଃ
ଦଶାଂଶଂ ବୈଷ୍ଣବେ ବହ୍ନୌ ଜୁହୁୟାନ୍ମନ୍ତ୍ର ସିଦ୍ଧୟେ
ଏବଂ ଯୋ ଭଜତେ ଦେବଂ ସ ସଦ୍ୱାଗୀଶ୍ୱରୋ ଭବେତ୍
ଵଲ୍କୈଃ ଫଳୈଃ କୃତା ହୋମଃ ଶ୍ରୀକରଃ ପରକୀର୍ତ୍ତିତ ।

କୁନ୍ଦ ପୁଷ୍ପାଣି ଜୁହୁୟା ଦ୍ଦଚ୍ଛନ୍ ବାକ୍‌ଶ୍ରିୟ ମବ୍ୟୟମ୍
ମନୁନା ନେନ ସଂଜପ୍ତଂ ଘୃତଂ ବ୍ରାହ୍ମୀରସେ ଶୃତମ୍
ଜବତାମାହରେତ୍ ପୁଂସାମନର୍ଗଳ ବଚୋନ୍ନତିମ୍
ବନ୍ଧ୍ୟ ମନେନ ସଂଜପ୍ତାଂ ଭକ୍ଷୟେତ୍ ପ୍ରାତରନ୍ୱହମ୍ ।
ସର୍ବବେଦାଗମାଦୀନାଂ ବ୍ୟାଖ୍ୟାତା ଜାୟତେ ଚିରାତ୍
ମନୋରଥସ୍ୟ ସମୋ ନାସ୍ତି ଜ୍ଞାନେଷ୍ଟ୍ୟର୍ଯ୍ୟ ପ୍ରଦେଽପରଃ ।

ଏହି କ୍ରମରେ ସେ ମନ୍ତ୍ର ଦେବାଳୟ ମଧ୍ୟରେ ପ୍ରତିଦିନ ଜପ କରିବାକୁ ଲାଗିଲେ । ଭିକ୍ଷା କରି ହବିଷ୍ୟ କରି ଠିକ୍ ବିଧି ରକ୍ଷା କରି ଚାଲିଥାନ୍ତି ।

ଜପ ଆଉ ଦଶ ଲକ୍ଷ ବାକି ଅଛି ଯଦୁମଣିଙ୍କୁ ଜ୍ୱର ଗ୍ରାସ କଲା । ସେ ଏକାନ୍ତ ଅସମର୍ଥ ହୋଇ ନିଷ୍ଠା ତ୍ୟାଗ କରି ଏମନ୍ତ କି ଜପବିଧି ମଧ୍ୟ ତ୍ୟାଗ କରିବାକୁ ବାଧ୍ୟ ହେଲେ । ଏହା ମଧ୍ୟରେ ଶରୀର ଦଶ ଦିନ କେସ ଦମ୍ଭ ଧରି ଚାଲିଥିଲେ । ବିଫଳ ହେବାରୁ ଗୁରୁଙ୍କ ମନରେ ବହୁ ଦୁଃଖ ହେଲା ।

ପୁଣି ଶରୀର ସୁସ୍ଥ ହେବାରୁ ଗୁରୁଦେବ ପ୍ରିୟ ଶିଷ୍ୟଙ୍କୁ କବିତା ଲାଭ ଲାଗି ହୟଗ୍ରୀବଙ୍କର ଏକାଦଶାକ୍ଷର ମନ୍ତ୍ର ପ୍ରୟୋଗ ଦୀକ୍ଷା ଦାନ କଲେ ।

## ପୁନର୍ବାର ଦୀକ୍ଷା ଗ୍ରହଣ –

ଏହି ମନ୍ତ୍ରଟି ହେଉଛି—"ଓଁ ହୟଗ୍ରୀବାୟ ନମଃ ସ୍ୱାହା ଓଁ"

ଧ୍ୟାନ ହେଲା—ଧବଳ ନଳିନନିଷ୍ଠଂ କ୍ଷୀରଗୌରଂ କରାଗ୍ରୈ—

ର୍ଜପବଳୟ ସରୋଜେ ପୁସ୍ତକାଭୀଷ୍ଟ ଦାନୈଃ
ଦଧତମମଳ ବସ୍ତ୍ରାକଳ୍ପଦାନ ଭିରାମଂ
ତୁରଗ ବଦନ ବିଷ୍ଣୁଂ ନୌମି ବିଦ୍ୟାଧିରାଜମ୍ ।

ତୁଷ୍ଟି ଦସ୍ବ, ମେଧା ଦସ୍ବ, ସୁଷ୍ଟି ଦସ୍ବ, ବିଦ୍ୟା ଦସ୍ବ, ଲକ୍ଷ୍ମୀ ଦସ୍ବ,
ବାଗୀଶୀ ଦସ୍ବ, ବିଦ୍ୟାବିଶାଳ ଦସ୍ବ, ନାମ ବିମର୍ଦ୍ଦନ ଦସ୍ବେ ।
ଲକ୍ଷ୍ମୀ ସରସ୍ୱତୀ ରତି ପ୍ରୀତି କୀର୍ତ୍ତି କାନ୍ତି ତୁଷ୍ଟି ପୁଷ୍ଟି ଭିଃ

ଅସ୍ୟ ପୁରଶ୍ଚରଂ ଲକ୍ଷ ଚତୁଷ୍ଟୟଂ ଜପଃ ।

ଏ ଜପ ଆଷାଢ଼ ଶୁକ୍ଳ ଦଶମୀ ଦିନ ଶେଷ ହେଲା । ଯଦୁମଣି ତନ୍ଦ୍ରା ମଧ୍ୟରେ ସ୍ପଷ୍ଟ ଅବା ଦେଖିଲେ ଅଶ୍ୱମୁଖ ବିଶିଷ୍ଟ ବିଷ୍ଣୁ ଶଂଖ, ଚକ୍ର, ଗଦା ଓ ପଦ୍ମ ଧରି ତାଙ୍କ ସମ୍ମୁଖରେ ଉଭା ହୋଇଛନ୍ତି । ସେ ଏ ମୂର୍ତ୍ତି ଦେଖି ହସି ଉଠିଲେ । କହିଲେ—

ହେ ପ୍ରଭୁ ! ତୁମକୁ କି ବର ମାଗିବି ? ତୁମେ ଆଗେ କହ, ତୁମ ସ୍ତ୍ରୀର ହାତରେ କିଏସି ପଦାର୍ଥ ସର୍ବଦା ରହିଛି । ତୁମେ ନାକ ତ ସର୍ବଦା ସୁଡ଼୍ ସୁଡ଼୍ କରୁଛ । ସିଂଘାଣି କିପରି ପୋଛୁଛ ?

## ମନରେ ଦୈବୀମାୟା—

ଦେବତା ହସି ଉଠିଲେ । କହିଲେ—ବତ୍ସ ! ତୁ ନିଶ୍ଚୟ ପଣ୍ଡିତ ହୋଇବୁ । ତୋର ସାଧନା ସମ୍ପୂର୍ଣ୍ଣ ନ ହେଲେହେଁ ତୁ ମୋତେ ଯେତେବେଳେ ପରିହାସ କରିଚୁ ତୁ ଜଣେ ନିଶ୍ଚିତ ହାସ୍ୟରସିକ ଭାବରେ ଧରଣୀ ତଳରେ ପ୍ରତିଷ୍ଠା ଲାଭ କରିବୁ । ହେଇ ଦେଖ ! ତୋର ପରିହାସରେ କୁପିତ ହୋଇ ମୋର ବାମାଙ୍ଗରୁ ପଦ୍ମାଳୟା ଲକ୍ଷ୍ମୀ ଚାଲିଗଲେଣି । ସରସ୍ୱତୀ, ରତି ପ୍ରୀତି, କୀର୍ତ୍ତି, କାନ୍ତି, ତୁଷ୍ଟି ତୋତେ ନିଶ୍ଚୟ ବରଦାୟକ ହେବେ ।

ତନ୍ଦ୍ରା ଭାଙ୍ଗିଯିବା ପରେ ସାଧକ ଯଦୁମଣି ଟଳି ପଡ଼ିଲେ । ତାଙ୍କର ଚୈତନ୍ୟ ଲୋପ ହୋଇଗଲା । ସେ କେତେବେଳୁ ପଡ଼ିଥିଲେ, ଜାଣନ୍ତି ନାହିଁ ।

ଯଦୁମଣି ଗୃହତ୍ୟାଗ କରି ଆସିବା ଦିନୁଁ ତାଙ୍କ ପିତାମାତାଙ୍କର ମନରେ ଆଦୌ ସୁଖ ନ ଥିଲା । ତାଙ୍କର ଜନନୀ ରୂପବତୀ ହେଲେହେଁ ବୁଦ୍ଧିମତୀ ନ ଥିଲେ । ତେଣୁ ଏକମାତ୍ର ପୁତ୍ରର ଏପରି ଅସାଧ ଚେଷ୍ଟାକୁ ରହିତ କରି ପାରି ନ ଥିଲେ ।

କ ଈପ୍ସିତାର୍ଥ—ସ୍ଥିର ନିଶ୍ଚୟଂ ମନଃ

ପୟଶ୍ଚ ନିମ୍ନାଭିମୁଖଂ ପ୍ରତିପଯେତ୍ ?

ସେ ବା କ'ଣ କରନ୍ତେ ? ଯଦୁମଣି ବା କୋଉ ମାନିବା ଜନ୍ତୁ ? ସାହା ହେଉ ମାସ ପରେ ମାସ ଗତ କରି ଚାଲିଲା । ଆଶିଣ ମାସରୁ ପିଲା ଗଲା ସେ ଜଗନ୍ନାଥେ ରଥରେ ବସିଲେଣି, ତାର ଦେଖା ନାହିଁ । ମୁକୁନ୍ଦ ମହାପାତ୍ରଙ୍କ ମାମୁଁପୁଅ ଭାଇ 'ରଥୀ ଘରରେ' ଗୁଣ୍ଡିଚା କାମ ସାରି ନୂଆକଡ଼ି ଆସି ଭାଇ ଭାଉଜଙ୍କ ଗୁହାରୀ ଶୁଣି ଅସମ୍ଭାଳ ହୋଇ ଯାଇଥିଲେ । ହେରା ପଞ୍ଚମୀ ଦିନ ଭାଇ ଭାଉଜଙ୍କୁ ସାଥିରେ ଧରି ପୁତୁରାର ଅନ୍ୱେଷଣରେ ବାହାରିଲେ ।

## ଗୃହ ପ୍ରବେଶ—

ମାନ୍ଧାତାପୁର ମହାପାତ୍ରଙ୍କଠାରୁ ତଥ୍ୟ ବୁଝି ସେମାନେ ଧୂମ୍ରନଗର ରାଜ୍ୟର ବଷ୍ଟୁଚନ୍ଦ ଗ୍ରାମରେ ପହଞ୍ଚି ଜନାକନ୍ଦା ଆରମ୍ଭ କରିଦେଲେ । ବାହ୍ମଣପଣ୍ଡିତଙ୍କର ଅନ୍ୟ ଶିଷ୍ୟମାନେ ସନ୍ଧାନ ଦେବାରୁ ସେମାନେ ଗୋସାଂଣୀ ମନ୍ଦିରରେ ହତ-ଚୈତନ୍ୟ ଯଦୁମଣିଙ୍କୁ ଦେଖି ଅବସନ୍ନ ହୋଇଯାଇଥିଲେ । ତାଙ୍କୁ ବହୁ କଷ୍ଟରେ ଚେତା କରି ସାରି ସାଙ୍ଗରେ ଘେନି ଏକମୁହାଁ ଗ୍ରାମକୁ ଫେରି ଆସିଲେ ।

ସେତେବେଳେ ଯଦୁମଣିଙ୍କ ଶରୀରରେ ହାଡ଼ ଛଡ଼ା ମାଂସ ଏକ ପଳ ମଧ୍ୟ ନ ଥିଲା । ରଥୀ ଭ୍ରାତାଙ୍କରେ କଷ୍ଟସ୍ୱନ ଇଟାମାଟିରେ ଲିପ୍ତ ତାପରେ ତରୁଣ ଯଦୁମଣିଙ୍କୁ ସାଥିରେ ଗୋଟିଏ ବଳଦ ଗାଡ଼ିରେ ଧରି ନିଜ ଗ୍ରାମରେ ପହଞ୍ଚିଥିଲେ ।

ସିଦ୍ଧିଲାଭ କରିବାକୁ ସେକାଳେ ବହୁ ବିଦ୍ୟାବନ୍ତ ମଧ୍ୟ ଏ ପ୍ରକାର ମନ୍ତ୍ରଦୀକ୍ଷା ଗ୍ରହଣ କରି ଜୀବନକୁ ପଳେ ପଳେ ଧ୍ୱଂସ କରିଦେବା ବା ଅଶିକ୍ଷିତ କେତେ କେତେ ଠାକୁରଙ୍କ ମନ୍ଦିରରେ ଜିଭ କାଟି, ବେକ କାଟି, ଗୁହାରିଆ ତଳିଦ ଦ୍ୱନ, ଏକୋଇଶି ଦ୍ୱନ, ମାସାବଧି ନିର୍ଜଳ ଉପବାସୀ ଭାବରେ ପଡ଼ିବା ବିଧି ପ୍ରସିଦ୍ଧି ଲଭି ଆସୁଥିଲା । କାବ୍ୟ କବିତାରେ, ବୈଦ୍ୟ ବ୍ୟବସାୟରେ, ଶିଳ୍ପ ଶାସ୍ତ୍ରରେ, ସଙ୍ଗୀତ ବିଦ୍ୟାରେ, ପୁରାଣ ପାଠରେ କେହି ଉନ୍ନତି କଲେ ଲୋକେ ତାହା ସମ୍ବନ୍ଧରେ ଏପରି ଗଳ୍ପମାନ ସୃଷ୍ଟି କରୁଥିଲେ, ଯାହା କି ପରବର୍ତ୍ତୀ ବ୍ୟକ୍ତିମାନଙ୍କୁ ଏକାନ୍ତ ପ୍ରଲୁବ୍ଧ କରୁଥିଲା । ଉକ୍ତଙ୍କର ଚମତ୍କାରକ ମନ୍ତ୍ରଦୀକ୍ଷାର ସିଦ୍ଧିରେ ଯଦୁମଣି ଏକାନ୍ତ ଆକୃଷ୍ଟ ହୋଇ ଏପରି ଏକ ଅପରାଧ ସାଧନ କରିବାକୁ ଯାଇ ଜୀବନ ପ୍ରାୟ ହରାଇଥିଲେ । ନିର୍ଜନ ଶୂନ୍ୟ ମନ୍ଦିର ମଧ୍ୟରେ ହତ-ଚୈତନ୍ୟ ହୋଇ ପଡ଼ି ପଡ଼ି ଦୁଇ ତ ତାଙ୍କର ପ୍ରାଣବାୟୁ ନିର୍ଗତ ହେବା ବିଚିତ୍ର ନ ଥିଲା । କିନ୍ତୁ ଦୈବର ବିଧାନ ଅନ୍ୟ ପ୍ରକାର ଥିବାରୁ ସେ ସେଥିର ବଞ୍ଚି ଯାଇଥିଲେ ।



# ଚଉଷଠି କଳା

ରଥୀ ଭାସ୍କରଙ୍କ ଗୃହ ଦଶପଲ୍ଲା କୁଞ୍ଜବନ ଗଡ଼ରେ ପ୍ରସିଦ୍ଧ ରହିଥିଲା । ଉତ୍ତର ଦକ୍ଷିଣ ହୋଇ ଗଡ଼ଟିଏ ଅବସ୍ଥିତ । ଉତ୍ତର ମୁଣ୍ଡକୁ ରଜାଘର । ରଜାଘର ନିକଟରେ ଜଗନ୍ନାଥ ମନ୍ଦିର । କିଛି ଦୂରରେ ପଶ୍ଚିମ ସାହି ପାଖେ ରଘୁନାଥ ମନ୍ଦିର । ମଝି ଛକ ପାଖ ପାଖି ଚିତ୍ରକାର ରଘୁନାଥ ସୂତ୍ରଧାରଙ୍କ ଘର ।

**କୁଞ୍ଜବନ ଗଡ଼—**

ରଘୁନାଥ ସୂତ୍ରଧାର ସେତେବେଳେ ଦଶପଲ୍ଲା'ରେ ଜଣେ ଖାନଦା'ନ୍ ଲୋକ । ବଂଶଘର ଘୋଡ଼ା ସେ ତାଙ୍କ ନିଜ ଶାଳରେ ରଖିଥାନ୍ତି । କେତେ ପୁରୁଷ ପୂର୍ବେ ତାଙ୍କ ପିତୃବାର ଜୋବ୍ରାମରୁ ଏ ରାଜ୍ୟକୁ ଆସିଥିଲେ ।

ରଘୁନାଥ ସୂତ୍ରଧାର ଶିଳ୍ପକଳାରେ ଜଣେ ଅଦ୍ୱିତୀୟ ଭାସ୍କର । କାଠ ଖୋଳ ସେ ନାନା ପୌରାଣିକ ଚିତ୍ର ଏପରି ସୁନ୍ଦର ଭାବରେ ଅଙ୍କନ କରନ୍ତି ଯେ, ତାହା ସ ତପୋବଣ, ଯାହାକି ଗଡ଼ ନିକଟବର୍ତ୍ତୀ ବ୍ୟବସାୟୀ ଗ୍ରାମ, ସେଠାର କୁମୁଟି ସୌଦାଗରମାନଙ୍କଦ୍ୱାରା ଦେଶ ବିଦେଶରେ ବିକ୍ରୟ ହୋଇଥାଏ ବହୁ ଚଡ଼ା-ଦରରେ । ତେଣୁ ସୂତ୍ରଧାର ପରଂପରା ଧରି ବହୁ ଧନର ମାଲିକ ଥାନ୍ତି । ତେଣୁ ରାଜପରିବାରର ଭଞ୍ଜ ନୃପତିମାନେ ତାଙ୍କ ପରିବାରକୁ ଖାତିର କରନ୍ତି ।

ତାଙ୍କ ଘର ପଶ୍ଚିମ ସାହି ବଡ଼ ପୋଖରୀ ହୁଡ଼ାକୁ ଲଗିଥାଏ । ବଡ଼ ପୋଖରୀର ଉତ୍ତର ପାଖେ କାଞ୍ଚଣ ଲଟି । ଦକ୍ଷିଣ ପାଖେ ବଳମାଳ ଏବଂ ପଠାଣ କେତେ ଘର ସେଠାରେ ଥାନ୍ତି । ପଠାଣମାନେ ପାଇକ ବୃତ୍ତିକରି ପେଟ ପୋଷନ୍ତି । ପଠାଣ ସାହି ଉପରକୁ ନାହାକ ପଡ଼ା ଗଉଡ଼ ସାହି । ଦୁଧ, ଦହି, ଛେନା, ଲହୁଣୀ, ଲବଣୀ, ସର, ଘିଅ ଯାହା ଖୋଜ, ଆଠ ପ୍ରହର ମିଳିବ । ବିଶେଷରେ ପୂର୍ବ ସାହିରେ ଗଡ଼ର ମଝି ଛକ କଡ଼କୁ ରଥୀ ଭାସ୍କରଙ୍କ ଘର ପାଖାପାଖି ଯେଉଁ ନୀଳକଣ୍ଠ ଶିବ ଥାନ୍ତି, ତାଙ୍କଠାରେ ରାତି ପାହିଲେ ରାତି ଦୁଇଦଣ୍ଡ ଯାଏ ଦହି ଉଖୁଡ଼ା ଭୋଗ ଲାଗେ । ଟିକି ଫାଳ ସାଙ୍ଗକୁ ଲହୁଣୀ ମେଞ୍ଚାଏ ନିଶ୍ଚୟ ମଞ୍ଜନ (ଘଷିବା) ଲାଗି ଲୋଡ଼ା ହୁଏ । ଏଣେ ପାର୍ବତୀଙ୍କ ମାର୍ଜଣା ଲାଗି ଫଟା ସିନ୍ଦୂର ସାଥିକୁ ଘିଅ ମେଞ୍ଚାଏ ଲୋଡ଼ା ହୁଏ । ଘିଅ ଦୀପ ଦିନରାତି ଜଳେ । ମନ କାମନା ଯେ ଯାହା କରୁ ସଫଳ ହୁଏ, ଏକଥା ବାଜି ବଜା । ଯେତେବେଳେ ବ୍ରାହ୍ମ ମୁହୂର୍ତ୍ତରୁ ଶଙ୍ଖ ଧ୍ୱନି ପରେ ସେବାୟୀ ମାଳୀ ମହାପାତ୍ର "ଗଙ୍ଗାଧର ହେ ! ସର୍ବାରିଷ୍ଟ ଖଣ୍ଡିବାକୁ ଆଜ୍ଞା ହେଉ" ବୋଲି ପାଟିକରେ, ସେ ଧ୍ୱନି ଶୁଣି ପ୍ରସନ୍ନ ମନରେ ଗଡ଼ର ନରନାରୀ ମଙ୍ଗଳମୟ ଶିବ ସର୍ବାରିଷ୍ଟ ଖଣ୍ଡିଲେ ବୋଲି ଭାବି ନିଦ୍ରାତ୍ୟାଗ କରି ଶଯ୍ୟାତ୍ୟାଗ କରିଥାନ୍ତି । ସେଇଥିପାଇଁ ଗଉଡ଼ ସାହିରେ ନିତି କାରବାର ଲାଗିଥାଏ । ତେଣୁ ସେଠା ଦହି, ଘିଅ ବିଶୁଦ୍ଧ । ଠାକୁର ଲାଗି

ଟେର୍ଥରେ କପଟ କଲେ, ବଂଶ ବୁଡ଼ିଯିବ ବୋଲି ଗଉଡ଼ ସାକ୍ଷରେ ନିତ୍ୟ ପ୍ରବଚନ । ଦହି ହାଥୀକୁ ପକ୍‌କା ଚଉଲ ଲଡ୍ଡୁ ନଡ଼ିଆ ପାଗ ପକାଇ ଗୁଡ଼ିଆ ଘର ଅତି ଶୌଚରେ ହାଣ୍ଡିରେ ସାଇତି ରଖିଥାଏ । ତା ସାଙ୍ଗକୁ ଘିଅ ଖୁଟୁମୁଆଁ ।

ବାଉଁଶ ଲଟି ଡେଉଁଲେ ଜମି ଭୂମି । ଏଣେ ଗୃହକୋଣ ଆଗନ୍ତୁର ଅମ୍ବତୋଟା ବଡ଼ ପୋଖରୀଠୁ ଦେଖାଯାଏ । ଏ ତୋଟାରେ ପଶିଲେ ପୁତ୍ରଶୋକ ଦୂର ହୋଇଯିବ । ତୋଟାଟିଏ ଚଳେ ହାତ କୁଢ଼େଇ ଖାଇହେବ । ଟିକିଏ ଅସଫା ଦେଖିବ ନାହିଁ—ଗୃହ କୋଣ ଆଖାଡ଼ାପାଟ । ନନ୍ଦେ ମାଳକଣ୍ଠ ପାଟଶାଙ୍କୁ ଯେଉଁ ତୋଟା ଭ୍ରମଣ କରନ୍ତି, ଏହା ଲୋକେ ଆଖିରେ ଦେଖିଥିବାର କହନ୍ତି । ଥରେ ଅସ୍ତ୍ର କୋଉ ପଠାଣ ସେହି ତୋଟା ଭିତରେ ମଇଳା କରିଥିଲା । ସେ ମଇଳା କରିସାରି ବଡ଼ ପୋଖରୀକୁ ଅସି ଶୌଚ ହେବାକୁ ବସିଥିଲା । ଉପରେମୁହାଁ ପଠାଣ ଆସୁ ଅସୁ ଗୋଖର ସାପ ମାରିଲା ଡିନ ଚୋଟ । ମୁହୂର୍ତ୍ତକେ ସେ ଖତମ । ତେଣୁ ପର୍ଯ୍ୟନ୍ତ ଧରି ସେ ତୋଟାକୁ ଦେବତାର ବିଚରଣ ଭୂମି ମନେକରି ଲୋକେ ବରଂ ସଫା ସୁତୁରା କରୁଥିଲେ, କେହି ମଇଳା କରିବାର ଶୁଣା ନ ଥିଲା । ଖରାଦିନରେ ବିଶେଷରେ ବସନ୍ତଠାରୁ ବର୍ଷାଯାଏ ସେ ତୋଟାରେ ଲୀଳା ଲାଗିଥାଏ । ଦେଖିବ ରଜାପୁଅ, ରଜାଝିଅଠୁ ସେଠି କିଏ ଯେ ନ ଥାନ୍ତି, ତା ନାହିଁ । ଗୀତ ଭାଗବତଠୁ ଆରମ୍ଭ କରି ଶାସ୍ତ୍ର ପୁରାଣ ଯାଏ ସେଠି ଚର୍ଚ୍ଚା ହୁଏ । ସେ ଗୃହ ମାସ ଏବେ ଲୋକେ ତ୍ରାସ୍ତ ରହନ୍ତି ନାହିଁ । ଅସହ୍ୟ ଗ୍ରୀଷ୍ମ ମଧ୍ୟ ସେ ତୋଟାରେ ପଶିଲେ ଲୋକ ଭୁଲିଯାଏ ।

ଏହି ତୋଟାରେ ଗଡ଼ର ବ୍ରାହ୍ମଣମାନେ ଶୀତଳଷଷ୍ଠୀ ପର୍ବ କରିଥାନ୍ତି । ସେଠି ହାବେଳଠାରୁ ଆରମ୍ଭ କରି ଚନ୍ଦ୍ରଉଦଆ, କୁର୍ମି, ଚଷ ଆଦି ବାଣର ଆତସବାଜି ଦୁନିଆକୁ ମୁଗ୍‌ଧ କରିଦିଏ । ପ୍ରଭୁ ମଳକଣ୍ଠ ଯେତେବେଳେ ପାଟଶାଙ୍କୁ କୋଳରେ ଧରି ବିଜେ ହୁଅନ୍ତି, ଗାଁ, ଦାଣ୍ଡ, ବାଟଘାଟ ବି ବନ ଆଗରୁ ଚକ୍ ଚକ୍ ହୋଇଉଠେ । ପଥରେ ଚୂନ ଢାଳାଯାଏ । ଚନ୍ଦନ ଛେରା ପଡ଼େ, ଫୁଲପାଖୁଡ଼ା ବିଛାଯାଏ । ରଜା ଛତି କାହାଳୀ ଧରି ଆଗରେ ପଥ କଡ଼ାନ୍ତି । ବାଦ୍ୟ ନାଦରେ ପୃଥ୍ୱୀ କମ୍ପିତ ହୁଏ । ପ୍ରଭୁ ବିଜେ ହୁଅନ୍ତି । ତୋଟା ମଝିରେ ସହସ୍ର ତରୁଣୀ ଶଙ୍ଖ, ହୁଳହୁଳି ଧ୍ୱନି କରି ଉଠନ୍ତି । ଛାମୟାନରେ ବିଣୀ ବିଜେ ହୁଅନ୍ତି ।

ସେ ଦିନକ ଶ୍ରେଷ୍ଠ ବ୍ରାହ୍ମଣ ପୂଜା କରନ୍ତି । ଲକ୍ଷ ଗଣ୍ଡେ ଅମ୍ବ ଭୋଗ ଲାଗେ । ହଜାର ହଜାର ଜନତା ପ୍ରସାଦ ସେଇଠି ଖାନ୍ତି । ସେ ଆନନ୍ଦ କୋଳାହଳ କ'ଣ ବର୍ଣ୍ଣନା କରିହୁଏ ?

ମାଳକଣ୍ଠଙ୍କ ଦେଉଳ ବଡ଼ ପୋଖରୀ ସିଧାରେ ପ୍ରବେଶ ଦାଇ ମଝି କାନ୍ଥକୁ ଲାଗି । ଦେଉଳ ପାଖରେ ପୋଖରୀଟିଏ । ଜଳକୁ ଖାଲି ବଉଳ ଗଛର କଣ । ବଉଳ

ବଣରେ ଯେ ପଶିଲା, ସେ ବାହାରିବାକୁ ଇଚ୍ଛା କରିବ ନାହିଁ । ଫୁଲ ଫୁଟିଲେ ମହ ମହ ବାସନା । ଫଳ ଫଳ ଭଅଁରଙ୍କ ସଙ୍ଗୀତ ଧ୍ୱନି । ଫୁଲ ଶୁଖିଗଲେ ମଧ୍ୟ ସେହି ମହ ମହ ବାସନା ।

ଏଇ କୁଞ୍ଜବନ ଗଡ଼ରେ ୧୭।୧୮ ବର୍ଷରେ ଯଦୁମଣି ମାମୁଁ ଅଜା ରଥୀ ଭାସ୍କରଙ୍କ ଘରେ ପରମ ସୁଖରେ ରହିଲେ । ମାଇଁ ଆଈ ନିତ ସବ ମାହିଲେ ପରିହାସ କରନ୍ତି । ପରିହାସ ହିଁ ବଡ଼ଘର କଥା ।

ଦୁଇ ତିନି ମାସ ପରେ ଯଦୁମଣିଙ୍କ ସ୍ୱାସ୍ଥ୍ୟ ପୂର୍ଣ୍ଣାଙ୍ଗ ହୋଇଗଲା । ଦାଣ୍ଡରେ ଅତି ମଧୁର ସ୍ୱରରେ ଛନ୍ଦେ, ଭଜନଙ୍କ ଗୁନ ଆବୃତ୍ତି ଶୁଣି ସର୍ବସାଧାରଣ ଲୋକଙ୍କର ନଜର ପଡ଼ିଲା ଏହି ଯୁବକ ଉପରେ ।

## ପିଣ୍ଡିକ ରାୟଗୁରୁ—

ସେତେବେଳେ ପିଣ୍ଡିକ ରାୟଗୁରୁ ଦଣ୍ଡପାଟ କୁଞ୍ଜବନ ଗଡ଼ରେ ବଡ଼ା ଲୋକ । ସଂସ୍କୃତ ଭାଷାରେ ଯେମିତି ପ୍ରବୀଣ, ଓଡ଼ିଆ ଭାଷାରେ ତହୁଁ ବଳି । ରାଜ୍ୟ ଅର୍ଥ କରିଛନ୍ତି— ଭୂ-ଭାରତ । ତାଙ୍କର ଗୋଟିଏ ଦୋଷ ଯେ ସେ ଷାଠିଏ ବର୍ଷ ବୟସରେ ନରସିଂହପୁର ଗଡ଼ ହରିଚନ୍ଦନପୁର ଶାସନ ଗ୍ରାମର ମିଚ୍ଛୁ ମିଶ୍ରଙ୍କ କନ୍ୟା ଦାଉ-ବରତୀ ପାଟକୁ ବିଭା ହେଲେ । ବିଭା ହେବାର ଆଠ ବର୍ଷ ହୋଇଯାଇଥାଏ । ତଥାପି ଅପବାଦ ତୁଟି ନ ଥାଏ । ବୁଢ଼ା ଅତି ବୀର ପୁରୁଷ । ଖଣ୍ଡା ଧରି ଯୁଝି ପାରନ୍ତି । ରାଗ ପାଇଲେ ମୃଦଙ୍ଗରେ ବୋଲନ୍ତି । ଏଇ ଅଠସ୍ତରୀ ବର୍ଷରେ ଯୁବା ତାଙ୍କ ପାଖରେ ଛୁଡ଼ା ହୋଇପାରିବେ ନାହିଁ । ପାରିବ ଏବେ ବୟସ କୋଡ଼ିଏ । ପୁଅ ଝିଅ ତିନୋଟିର ମାଆ ସେ ହେଲାଣି । କିନ୍ତୁ ରାୟଗୁରୁଙ୍କର ଅପବାଦ ସେମିତି ଥାଏ । ତାର ପର ଟେକାଟା ଆଉ କେତେବର୍ଷ ଭୋଗିବ ? ବୁଢ଼ାଟା ଦିନେ ଟୋକନା ମରିଯିବ । ଏପରି ହୁରୁର ଚାଲିଥାଏ ।

ନୀଳକଣ୍ଠଙ୍କ ବଞ୍ଜୁଳବନରେ ଯଦୁମଣିଙ୍କ ମଧୁର ଧ୍ୱନି ଶୁଣି ରାୟଗୁରୁପତ୍ନୀ ପାରି ଦେବୀ ବିଚଳିତ ହୋଇ ସ୍ୱାମୀଙ୍କୁ କହିଥିଲେ ଯେ ସେଇ ପିଲାଠାରୁ ସେ ଜଗନ୍ମୋହନ ରାମାୟଣ ଟିକେ ଶୁଣନ୍ତେ । ବୃଦ୍ଧ ରାୟଗୁରୁ ନବୀନା ଜାୟାର ସବୁ ଅନୁରୋଧ ରକ୍ଷା କରୁଥିଲେ । ସେ ଦେଖିଲେ ସୁକୁମାର ଚିତ୍ରକାର ପିଲା । ରଥୀ ଭାସ୍କରଙ୍କୁ କହି ସେହି ଯଦୁମଣିଙ୍କୁ ଘରକୁ ନେଇଗଲେ ।

ବ୍ରାହ୍ମଣ ସିନା ସଙ୍କଳ୍ପ କରି ପୁରାଣ ପଢ଼ନ୍ତି । କିନ୍ତୁ ମହାପଣ୍ଡିତ ରାୟଗୁରୁଙ୍କ ଘରେ ଅଭିନବ ଘଟଣା ଘଟିଲା । ଶୂଦ୍ର ଚିତ୍ରୁହୋର ଟେକେସ ରାମାୟଣ ଚରିତ ବ୍ରାହ୍ମଣ ଘରେ ପଠିତ ହେଲା । ଅଜ୍ଞାଧୀନ ଯଦୁମଣି ଏଇଠି ଉତ୍ତମ ଖାଦ୍ୟ, ଉତ୍ତମ ବ୍ୟବହାରରେ ନିରନ୍ତର ମୋହିତ ହୋଇ ମାମୁଁ ଅଜା ଘରଠାରୁ ରାୟଗୁରୁଙ୍କ ଘରକୁ ଅଧିକ ମନେ କଲେ । ରଥୀ ଭାସ୍କରଙ୍କର ରାୟଗୁରୁ ସଙ୍ଗାତ ଓ ବନ୍ଧୁ । ତେଣୁ ଯଦୁମଣିଙ୍କ ମାଇଁ ଆଈ

ପିଲା ଯେଣୁ କିଛି ଚିନ୍ତିତ ନ ଥିଲେ । ବରଂ ଗୁରୁଙ୍କ ଯୋଗୁଁ ପିଲାର ପାଠ ଶାସ୍ତ୍ରରେ ଉନ୍ନତ ହେବ ବୋଲି ଜାଣି ଆନନ୍ଦିତ ଥିଲେ ।

ଦିନରେ ଗୁରୁ ବିଭିନ୍ନ ସଂସ୍କୃତ କାବ୍ୟ ସହିତ ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ସୁଭଦ୍ରା ପରିଣୟ ଆଦି ଭଞ୍ଜଙ୍କ କାବ୍ୟକବିତା ପଦ୍ମମଣିକୁ ଅର୍ଥକରି ବୁଝାନ୍ତି । ପଦ୍ମମଣି ଅତି ନିବିଡ଼ ଭାବରେ ତାହା ବୁଝନ୍ତି ଯେପରି, ମନେ ରଖନ୍ତି ମଧ୍ୟ ସେହିପରି । ହୟଗ୍ରୀବ କୃପାରୁ ତାଙ୍କର ସ୍ମୃତିଶକ୍ତି ଓ ବୁଦ୍ଧିଶକ୍ତି ଅତି ପ୍ରଖର ଥାଏ । ସଞ୍ଜ ହେଲେ ରାମାୟଣ ପାଠ ହୁଏ । ରାତିର ବହୁ ଝିଅବୋହୂ ଶୁଣିବାକୁ ଆସନ୍ତି । ଯେପରି ଗୋଟିଏ ଯାତ୍ରା ବସେ ।

ଗୁରୁଙ୍କ ପଡ଼ିଶା ଘର ହେଉଛନ୍ତି ରଘୁନାଥ ସୂହସ୍ପ । ତାଙ୍କ ଘରକୁ ବାଡ଼ ପାଖେ ବାଟ ଥାଏ । ଧନବନ୍ତ ସୂହସ୍ପଙ୍କ ବୈଠା ସ୍ତ୍ରୀ କେବେ ଗୁରୁଙ୍କ ଖୁଆଡ଼କୁ ଆସିବାର ଦେଖା ନ ଥାଏ । କାରଣ ସେ ଶାହୁକାର ଘରର ରମଣୀ ହେଲେହେଁ ଅତି ମାତିଫପନ୍ନା ଥାଆନ୍ତି । ଗୁରୁ ତିନ ତିନୋଟି ବିବାହ କଲେ, ତାଙ୍କୁ ଅଣ୍ଟିଲା ନାହିଁ । ତିନ ଥରରେ ଧର୍ମ ଗୁଡ଼ । ତଥାପି ଗୁରୁ ଚତୁର୍ଥ ଥର ବିବାହ କରିବାରୁ ପୁଣି ଏକ ପରମା ସୁନ୍ଦରୀ ଷୋଡ଼ଶୀ ଯୁବତୀକୁ ବଧୂ କରି ଆଣିବାରୁ ସେ ଅସନ୍ତୁଷ୍ଟ ଥାନ୍ତି । ଅବଶ୍ୟ ଧନ ଲୋଭରେ ତାର ପିତା ପିନା ବିକ୍ରୟ କରିଦେଲେ । ବୁଢ଼ା ମୃତ୍ୟୁ ପରେ ଯେ ବାଳିକା କପାଳ କ'ଣ କରିବ ଭାବ ସେ ଅସ୍ଥିର ଥାନ୍ତି । ଏଣେ ଗ୍ରାମ, ଗଡ଼ ସବୁଆଡ଼େ ଲୋକେ ପ୍ରବଚନ ଗଢ଼ି ଗାଉଥାନ୍ତି –

ଆଲୋ ପାରିବ
ବୁଢ଼ା ଘଇତାକୁ ଏଡ଼େ ଗରବ !
ବୁଢ଼ା ଘଇତାଟି ମରି ଯାଆନ୍ତା
ପାରିବ ଗରବ ଭାଙ୍ଗି ଯାଆନ୍ତା ।

ସୂହସ୍ପଙ୍କ କାମିନୀ ମୁକ୍ତା ଦେଈ ବାଡ଼ ସନ୍ଧିରେ ଉଣ୍ଡି ପାରିର ମଧୁର ରୂପଶ୍ରୀ କେତେ ଥର ଦେଖି ବ୍ୟାକୁଳ ହୋଇଛନ୍ତି—ଟିକିଏ ଦୁଃଖ ସୁଖ ହୁଅନ୍ତେ । ପାରିର ଗୀତ ଭାଗବତ ମଧ୍ୟ ସେ କେତେଥର ଶୁଣିଥାନ୍ତି । କାରଣ ପାରି ପାଠଶାଠରେ ନିର୍ଜିତ ଥାଏ । ଯାହାବା ନ ଥିଲା ତାକୁ ଚଉଷଠୀ କଳାରେ ଗୁରୁ ନିର୍ଜିତ କରିଛନ୍ତି । ସେ ଆଠ ବର୍ଷ ହେଲା ଆସି ଏଇଠି ଅଛି । ଏଇଠି ସେ ଯୁବତୀ ହୋଇଛି । ଏଇଠି ସେ ଗୁରୁଙ୍କଠାରୁ ସବୁ ଶିକ୍ଷା କରିଛି ।

ଏ ଯୁବକଟି କିଏ ? ଏଇ ସୁନ୍ଦର ତରୁଣଟି କା'ର ? ରୂପ ସାଥିକୁ ତାର ମଧୁର ଧ୍ୱନିରେ ସୂହସ୍ପଙ୍କ ପରିବାର ଉଚ୍ଛନ୍ନ ହୋଇଉଠିଲେ । ସେମାନେ ଧନବନ୍ତର ଆଭିଜାତ୍ୟକୁ ଭୁଲି ଦିନେ ଗୁରୁଙ୍କ ଅଗଣାକୁ ବାଟ ଫିଟାଇ ଏକ କବାଟ ଦୁଆରବନ୍ଧ ଲଗାଇଲେ । ଗୁରୁ ଓ ପାରିର ଆନନ୍ଦ ଦେଖେ କିଏ ? ସେହି ସୂହସ୍ପଙ୍କ ବିଶାଳ ପରିବାରର ପୁଅ କନ୍ୟାମାନେ ମାଡ଼ି ଆସିଲେ । ଯେଉଁଦିନ

ସୂତ୍ରଧରପୁଙ୍କ ପତ୍ନୀ ମୁକ୍ତା ଦେଈ ପାତ୍ରର ପହଣ୍ଡରେ ପାଦ ଦେଲେ, ସବୁ ଦୁଃଖ ସେ ଭୁଲିଗଲେ । ରାଜଗୁରୁ ଆସନ ପକାଇଦେଲେ । ମୁକ୍ତା ଦେଈ ବୃଦ୍ଧ ରାଜଗୁରୁଙ୍କୁ ପ୍ରଣାମ କଲେ । ରାଜଗୁରୁ ଆଶୀର୍ବାଦ କଲେ—"ମନୋବାଞ୍ଛା ସିଦ୍ଧିରସ୍ତୁ, ଅଦ୍ୟ ସୁଲକ୍ଷଣୀ ଭବ ।"

**ଖଞ୍ଜନା ତାଙ୍କୁ ଭଲ ପାଏ—**

ସେହି ପରିବାର ମଧ୍ୟରେ ମୁକ୍ତାଙ୍କ ଗର୍ଭସମ୍ଭୂତା ଖଞ୍ଜନା ଯେପରି ରୂପ-ଗର୍ବିଣୀ ଥିଲା, ସେପରି ଗୁଣଗର୍ବିଣୀ ଥିଲା । ସେ ନିଜେ ସଙ୍ଗୀତ ନୃତ୍ୟରେ ପାରଦର୍ଶିନୀ ହୋଇ ମଧ୍ୟ ତରୁଣ ଯଦୁମଣିଙ୍କ ସ୍ୱର ଓ ରୂପକୁ ଅତି ଭଲ ପାଉଥିଲା ଭିତରେ ଭିତରେ । କିନ୍ତୁ ବାହାରେ କହୁଥାଏ—"ଏଇଟା କିଏ ମ ? ଏ ମାଙ୍କଡ଼ଟା କିଏ ମ ? ଏମିତି ବେଙ୍ଗରଡ଼ି କିଆଁ କରୁଛି ?"

ଦିନେ ତାର ପରିହାସୀ ଭାଉଜ କହିଲେ—"ଖଞ୍ଜନା ! କେହି ନ ଜାଣିଲେ ମୁଁ ତ ଜାଣେ ତୁମକୁ । ଯାହାକୁ ତୁମେ ଭଲପାଅ, ତା ବିରୁଦ୍ଧରେ ବେଶୀ କରି କହ । ଯାହା ତୁମେ ଲଗେଇବାକୁ ବେଶୀ ଇଚ୍ଛାକର, ତାକୁ ବେଶୀ ଘୃଣା ଦେଖାଅ । ଯେଉଁ ଖାଦ୍ୟ ତୁମର ବେଶୀ ପ୍ରିୟ, ତା ବିରୁଦ୍ଧରେ ଅଧିକ କହିଥାଅ ।"

ରାଗରେ ୧୨ ବର୍ଷର ଖଞ୍ଜନା ଦୁଇଦିନ ରୁଷିଲା । ଯାଏ କୁଆଡ଼େ ! ବାପ, ମାଆ, ଦାସ ଅବଧାନେ ତା ଶିକ୍ଷକ ଯେତେ ବୁଝାଇଲେ ସେ ବୁଝିଲା ନାହିଁ । ଶେଷକୁ ଭାଉଜ କହିଲେ—"ତୁମେ ସେଇ ମାଙ୍କଡ଼ଟାକୁ କିଆଁ ଭଲ ପାଇବ ମ ! ତୁମେ ତା ବେଙ୍ଗରଡ଼ି କିଆଁ ଶୁଣିବ ମ !"—ଏହା କହନ୍ତେ ରୁଷା ଭାଙ୍ଗିଲା । ଠା' ପାଣି ହେଲା ।

କାହିଁ ଦରିଦ୍ର ମୁକୁନ୍ଦ ମହାପାତ୍ର ପୁତ୍ର ଯଦୁମଣି ! କାହିଁ ବା ବିଶାଳ ଧନବନ୍ତ ସୂତ୍ରଧରପୁଙ୍କ ଗେହ୍ଲା କନ୍ୟା ଖଞ୍ଜନା !

ଦିନେ ଦ୍ୱିପ୍ରହର ଘଟଣା । ମାଳକଣ୍ଠ ମଠର ବଉଳବଣରେ ପ୍ରତ୍ୟହ ଦ୍ୱିପ୍ରହରେ ଯଦୁମଣି ଏକାକୀ ବସି କ'ଣ ଭାବୁଥାନ୍ତି । କେହି କାହିଁ ନ ଥାନ୍ତି । ସେହି ନିଶୂନ ଶାନ୍ତ ତପୋବନରେ ହଠାତ୍ ଉଚ୍ଛନ୍ନ ଅବସ୍ଥାରେ ଖଞ୍ଜନା ଆସି ପହଞ୍ଚିଗଲା । କିଶୋରୀ ଖଞ୍ଜନାକୁ ଯୁବା ଯଦୁମଣି ନିରୋଳାରେ ଦେଖିବାକୁ ଓ ଭେଟିବାକୁ ବ୍ୟାକୁଳ ହେଉଥିଲେ । କିନ୍ତୁ ନିକାଞ୍ଚନରେ ନିକଟରେ ଦେଖି ମଧ୍ୟ ସାହସ କରିପାରିଲେ ନାହିଁ । କେବଳ ଚାହିଁରହିଲେ କିଛୁକ୍ଷଣ । ତା ପରେ ତାଙ୍କ ଆଖିରୁ ଲୁହ ଝରି ପଡ଼ିଲା ।

କିଶୋରୀ ଖଞ୍ଜନା, ସେ କି ଜାଣେ ! ଜଣଙ୍କର କ୍ରନ୍ଦନରେ ତା ଗର୍ବ ଭାଙ୍ଗିଗଲା । ସେ ଯେଉଁ ଘଟଣାର ବିରୁଦ୍ଧରେ କୁପିତ ହୋଇ ଏଠାକୁ ଚାଲିଆସିଥିଲା, ଆସି ତାରି ହାବୁଡ଼େ ପଡ଼ିଗଲା । ପୁଣି ତାର ଆଖିରୁ ଲୁହ ଝରିବା ଦେଖି ସେ ସ୍ୱତଃ-ପ୍ରବୃତ୍ତ ଭାବରେ ନିଜ କୋମଳ ଅଞ୍ଚଳରେ ଲୁହ ପୋଛି ଦେଇଥିଲା । ହରିଗୌରୀ

ମଧର ଦୁଆରେ ରହି ଅବା ଏ ଦୃଶ୍ୟ ଦେଖୁଥିଲେ । କେହି କାହାକୁ କିଛି କହୁନେ ନାହିଁ । କେବଳ ଯଦୁମଣି ନଇଁପଡ଼ି ଞ୍ଜେନର କୋମଳ ସୁନ୍ଦର ପାଦକୁ ଚୁମ୍ବନ କରିଦେଲେ ।

ଏହାପରେ ଞ୍ଜେନା କାଠ ଚଉ ହୋଇଗଲେ । ଯଦୁମଣି କଏ ଆସୁଛୁ ଏପରି ଧାରଣା କରି ଉପରେ ସେଠାରୁ ଚଳାଇ ଯାଇଥିଲେ । ଞ୍ଜେନା ଏହାପରେ ସେଇଠି ବସି ପଡ଼ିଥିଲ । ଶିଶୁ ମନ କଣ ଭାବୁଥିଲା । କେମନ୍ତ କ ଏ ଘଟଣା ତାର ସ୍ମୃତିପୋଟ୍ଟିଓ୍ସ ବେଳେ ସେ କ'ଣ ଭାବୁଥିବ, ତା ମଧ କହି ପାରି ନ ଥିବ । ସେ ସେତେବେଳେ ଏତିକି କହୁଥିବ ଯେ ସେ ଭାବୁଥିବ—ମାଆ ତ କହନ୍ତି 'ବାପ,ମା ଅନ୍ଧ, ପ୍ରଜାପତି ସମ୍ବନ୍ଧ' ।

**ମଙ୍ଗଳକୃତ୍ୟର ଶଙ୍ଖ ବାଜିଲା—**

ବାନେ ସତକୁ ସତ ମଙ୍ଗଳ ଗୀତ ଜଳ ଉଠିଥିଲା । ମଙ୍ଗଳ ବାଦ୍ୟ ବାଜି ଉଠିଥିଲା । କଣ୍ଠମାନଙ୍କର ବେଦପାଠ ଧ୍ୱନି ଚାରି କୋଣ ଯାଏ କମ୍ପି ଉଠିଥିଲା । କାଶୀଶ ଖଞ୍ଜନା ହାତରେ ଯଦୁମଣିଙ୍କ ହାତ କୁଶକଣ୍ଡିରେ ବୃଦ୍ଧ ବସ୍ତ୍ରରୁ ବାନ୍ଧିଦେଇ କହୁଥିଲେ—ଯଥା ନଳସ୍ୟ ଦମୟନ୍ତୀ, ରାମଚନ୍ଦ୍ରସ୍ୟ ସୀତା, ଗୌତମସ୍ୟ ଅହଲ୍ୟା ।

ପିଲାକନ୍ୟା ବିବାହରେ ମଧ୍ୟ ମଧୁଚନ୍ଦ୍ରର ଘର ଯୁକ୍ତି ବିବାଦ ପଡ଼ି ହୁଏ । ପ୍ରଥମ ଦିନ ଶଯ୍ୟା ପକାଇ କନ୍ୟାକୁ ଶୁଆଇ ଦିଆଗଲେ । ଯଦୁମଣି ବର ଭାବରେ ଶଯ୍ୟାକୁ ଗାଡିରେ ଛୁଇଁ ସେ ବ୍ୟା କରୁଥିବା ସ୍ଥାନକୁ ଲେଉଟି ଯିବାର କଥା । ଅତି ବଡ଼ ତେବେ ସେ କବାଟ କଳଣି ଦେଇ ସୁନ୍ଦର ଶୋଇ ହେଲେ । ବାରବର୍ଷର କନ୍ୟାକୁ ପଚିଶ ଭାବରେ ଆଲିଙ୍ଗନ କରି ସେ ଶୋଇଥିବା କଥା କେବଳ ତାଙ୍କଠାରେ ସମ୍ଭବ ହୋଇଥିଲା । ଏହି ଘଟଣାରେ ସୁଦ୍ଧା ପରିବାର ବିଚଳିତ ନ ହୋଇ କନ୍ୟାର ଭାଗ୍ୟ ଭଲ ବୋଲି ଭାବଚନା କରିଥିଲେ । କିନ୍ତୁ ସମାଜ ଭିତରେ ଏହାର ନିନ୍ଦା ଅତି ଜଘନ୍ୟ ଭାବରେ ବ୍ୟାପି ଯାଇଥିଲା । କଷ୍ଟେମଷ୍ଟେ ସାତଦିନରେ ସାତମଙ୍ଗଳା ଶେଷ ହେଲା ।

ଅଷ୍ଟମଙ୍ଗଳା ଦିନ ଜୁଆଁଙ୍କ ଘରେ ଯଦୁମଣି ଲୁଚି ରହିବାର କଥା । ସେଦିନ ଶ୍ୱଶୁର ଘରର କେହି ଜୁଆଁର ମୁହଁ ଚାହିଁବା ନିଷେଧ । ସେତେବେଳେକୁ କୁଞ୍ଜବନ ଗଡ଼ରେ ଯଦୁମଣିର ଏପରି ନିନ୍ଦା ବ୍ୟାପୁ ହୋଇ ଯାଇଥିଲା ଯେ ସେ ଦଣ୍ଡକୁ ବାହାରିବାକୁ ଭୟ କରୁଥିଲ । ବାଳଗଡ଼ରେ ବିପ୍ରଗୁରୁଙ୍କ କନ୍ୟା-ମଙ୍ଗଳ ଯୁକ୍ତି ଘର ସେତେ ତାର ମନ ସନ୍ଦର୍ଭ ଅଛି, ଏହା ମଧ୍ୟ ଲୋକେ ପ୍ରଚାର କରିବାକୁ ଭୁଲି ନ ଥିଲେ । ଯଦୁମଣି ଅଷ୍ଟମଙ୍ଗଳାରେ ଲୁଚିବାକୁ ଯାଇ ଏକାବେଳେକେ ଲୁଚି ପୁଣି ପଳାଇଥିଲେ ।

ହାତରେ ପଇସା ଏ ନାହିଁ । ତଥାପି ସେ କୌଣସି ପ୍ରକାରେ ପୁରୀରେ ଯାଇ ପହଞ୍ଚିଥିଲେ । କେଉଁଠି ରହିବେ, କେଉଁଠି ଖାଇବେ, ଠିକଣା ନ ଥାଏ ।

ନଦୀରେ, ଏ ପାଖେ ନିତ୍ୟକର୍ମ ସାରି ଜଗନ୍ନାଥଙ୍କ ଦେଉଳକୁ ବୁଲିଯାଆନ୍ତି । ସେଠି ଭକ୍ତଙ୍କ ଗୀତ ବୋଲନ୍ତି । ମୁଠେ ଆହାର ମିଳିଯାଏ । ଦିନେ ସେ ଏକାବେଳେ ଉପବାସ ରହି ଅପରାହ୍ଣରୁ ଦାସ ସୁଆର ବୋଲି ଗୋଟିଏ ସେବକ ହାତରେ ପଡ଼ିଲେ । ସେ ମୁଠେ ଖାଇବାକୁ ଦେଇ ନିଜ ଘରକୁ ଡାକି ନେଇଥିଲା । ତା ଘରେ ତାର ଭୃତ୍ୟ ଓ ଯୁବା ସ୍ତ୍ରୀ ଚନ୍ଦ୍ରିକା ବ୍ୟତୀତ ଅନ୍ୟ କେହି ନ ଥିଲେ । ଚନ୍ଦ୍ରିକା ଚରିତ୍ରରେ ସନ୍ଦେହ ପୋଷଣ କରି ପ୍ରୌଢ଼ ସୁଆର ଏହି ଯୁବକକୁ ଜଗୁଆଳୀ ରଖିବାକୁ ଭାବିଲା । କିନ୍ତୁ ସୁଆର ଅନୁପସ୍ଥିତିରେ ସେ ସ୍ତ୍ରୀ ନିଜେ ଖାଇ ନିଶ୍ଚିନ୍ତରେ ଶୋଇଲା । ଯଦୁମଣିଙ୍କୁ କଥା କହିଲା ନାହିଁକି ମୁଠେ ଆହାର ମଧ୍ୟ ଦେଲା ନାହିଁ ।

ତତ୍‌କ୍ଷଣ ଯଦୁମଣି କ୍ଷୁଧାରେ ଆତୁର ହୋଇ ଶେଷକୁ ଏକ ବୁଦ୍ଧି ପାଞ୍ଚିଲେ । ବାହାର କବାଟରେ ଝିଞ୍ଜିରି ଲଗାଇଦେଲେ । ନିଶାର୍ଦ୍ଧରେ ଘଅଁଙ୍କ ମାତ ବଢ଼ିବା ପରେ ସୁଆର ତାର ଖେଉଧରି ଅସି ପହଞ୍ଚି ଦେଖେ ଯେ ଯେତେ ଡାକିଲେ କବାଟ ଖୋଲୁ ନାହିଁ । ତେଣୁ ସେ କବାଟରେ ପ୍ରଚଣ୍ଡ ଆଘାତ କରିବାରୁ ଯଦୁମଣି ଭିତରୁ ପଚାରିଲେ—'କିଏ ?'

ସୁଆର ବାହାରୁ କହିଲା—ଆରେ, ମୁଁ ଏଇ ଘର ମାଲିକ । ତହୁଁ ଯଦୁମଣି ତାର ତରୁଣୀ ଭାର୍ଯ୍ୟାକୁ ମଜ୍ଜା ଖୁଆଇବା ଲକ୍ଷ୍ୟରେ କହିଲେ—'ବାବା ! ମୁଁ କବାଟ ଫିଟାଇ ଫିଟାଇ ହାଲିଆ । ଏମିତି ତ ଘର ମାଲିକ କହି କହି କେତେ ଜଣ ଗଲେଣି । ତୁମକୁ ମିଶାଇ ଏବେ ପାଞ୍ଚ ଜଣ ହେବେ ।'

ସୁଆର ଘରକୁ ପଶିଯାଇ କ୍ରୋଧରେ ଅଜ୍ଞାନ ହୋଇ ଯୁବତୀକୁ ଘୋଡ଼ା କୋରଡ଼ାରେ ପିଟି ଚାଲିଛି । ଯଦୁମଣି ଖଡ଼ି ଗୋଟାକରେ ଗୀତ ପଦେ ଲେଖି ସେଠାରୁ ପଳାଇଲେ ।

ସେହି ଗୀତ ହିଁ ତାଙ୍କର ଉଦ୍‌ଭଟ ପ୍ରଥମ କବିତା । ଛନ୍ଦରେ ତାହା ସେ ଲେଖିଥିଲେ । ଶବ୍ଦଚାତୁର୍ଯ୍ୟ ସେତେବେଳକୁ ଅଧିକ ବିକଶିତ ହୋଇ ନ ଥିଲା । ସେ ଗୀତକୁ ସାହିର ଟୋକାମାନେ ପରେ ଜାଣିପାରି ମୁଖସ୍ଥ କରିଥିଲେ ।

ଏହାପରେ ଯଦୁମଣି ଚକ୍ରତୀର୍ଥରେ ଜଣେ ପଣ୍ଡିତଙ୍କ ଆଶ୍ରୟରେ ଅନେକ ଦିନ ରହି ସଂସ୍କୃତ କାବ୍ୟମାନ ପାଠ କରିବାର ସୁଯୋଗ ଲଭିଥିଲେ । ସେ ନିଜର ସହିତ ବିଦ୍ୟାକୁ ଗୋଟି ଗୋଟି କରି ଆବୃତ୍ତ ନ କରି ପଲ୍ଲବଗ୍ରାହିତା ଗୁଣରେ ତରତରରେ ସମସ୍ତ ବୁଝିବାକୁ ପସନ୍ଦ କରୁଥିଲେ । ଏହି ପଣ୍ଡିତ ଅତି ବୃଦ୍ଧ ହେଲୁ ଯଦୁମଣିଙ୍କ ସେବାରେ ମୁଗ୍ଧ ହୋଇ ତାଙ୍କୁ ବିଦ୍ୟାଦାନରେ ଏକାନ୍ତ କୁଶଳୀ ଥିଲେ । ପଣ୍ଡିତଙ୍କ ନାମ ଥିଲା ହରିହର ନନ୍ଦ । ତାଙ୍କ ଘର ଜଷୂନା ବରପଦା ନାମକ ଶାସନରେ ପୂର୍ବେ ଥିଲା । ସେ ସକୁଟୁମ୍ବ ହରଇ ଚକ୍ରତୀର୍ଥ ସନ୍ନିକଟ ଏକ ବସ୍ତି

ମଧ୍ୟରେ ଅଶ୍ରୟ ନେଇଥିଲେ । ମୟୂରଭଞ୍ଜର ମହାରାଜାଙ୍କଠାରୁ ଯଥୋଚିତ ବୃତ୍ତି ପାଇ ପଣ୍ଡିତେ ଜୀବିକା ଚଳାଉଥିଲେ । ଯଦୁମଣି ଏହି ଗୋଟିଏ ସୁନ୍ଦର, ଶାନ୍ତ, ନିଭୃତ ଅନ୍ତେବାସୀ ଲଭନ୍ତ ପଣ୍ଡିତ ମହାଶୟ ଅନନ୍ତ ହୋଇଗଲେ । ସେ ଏଠାରେ ମାଘ କାବ୍ୟରୁ ଠାଏ ବସନ୍ତ ବର୍ଣ୍ଣନା ଗାନ କରୁଥିଲେ ।

## ମାଘ କାବ୍ୟ ଓ ସଂସ୍କୃତ ଚର୍ଚ୍ଚା:—

ମଧୁରୟା ମଧୁ ବୋଧିତ ମାଧବୀ
ମଧୁ ସମୃଦ୍ଧି-ସମେଧିତ ମେଧୟା
ମଧୁ କରାଙ୍ଗନୟା ମୁହୁରୁନ୍ମଦ
ଧ୍ୱନି ଭୃତା ନିଭୃତା କ୍ଷରମୁଜ୍ଜଗେ ।
× × ×
ଅରୁଣିତାଖିଳ ଶୈଳବନା ମୁହୁ—
ର୍ବିଦଧତୀ ପଥିକାନ୍ ପରିତାପିନଃ
ବିକଚ କିଂଶୁକ ସଂହତି ରୁଚ କୈ
ରୁଦବହଦ୍ଧବହବ୍ୟ ବହ ଶ୍ରିୟମ୍ ।
× × ×
ନବ ପଲାଶ ପଲାଶ ବନଂ ପୁରଃ
ସ୍ଫୁଟପରାଗପରାଗତପଙ୍କଜମ୍
ମୃଦୁ ଲତା ନ୍ତ ଲତାନ୍ତ ମଲୋକୟତ୍
ସ ସୁରଭିଂ ସୁରଭିଂ ସୁମନୋଭରୈଃ ।

ଯଦୁମଣି ସେଥିରେ ଏତେ ଲୁବ୍ଧ ହୋଇ ଯାଇଥିଲେ ଯେ ପଣ୍ଡିତଙ୍କଠାରୁ ସମ୍ପୂର୍ଣ୍ଣ ମାଘ କାବ୍ୟ ସେ ମାସଗୁଡ଼ାକରେ ବୁଝି ଯାଇଥିଲେ । ମାଘ କାବ୍ୟ କ୍ଷିଁ ତାଙ୍କର ପରବର୍ତ୍ତୀ ରଚନା ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଭିତରେ ପ୍ରତିଫଳିତ ହୋଇଅଛି ।

## ରୈବତକ ବର୍ଣ୍ଣନାରେ:—

ଗ୍ରସ୍ତାଂ ନନସ୍ପୀ ଚନ୍ଦ୍ରିକା ଲସନ୍ତାଂ
ମନ୍ଦେନ କାଞ୍ଚନଚନ୍ଦ୍ରିକା ଲସାନମ୍,
କ୍ୱଣ୍ଟମୂର୍ଚ୍ଛପିଞ୍ଜଳ ଜାତ ପଙ୍କ୍ତି—
ର୍ବିହଙ୍ଗମାନାଂ ଜଳ ଜାତପଙ୍କ୍ତିଃ ।

ଅନୁପ୍ରାସ, ଯମକ ପ୍ରତି ସେ ଏଇଠୁ ଲୁବ୍ଧ ହୋଇଥିଲେ । ଏହି ଗ୍ରନ୍ଥ ସମ୍ବନ୍ଧରେ କଥିତ ଅଛି ଯେ—

'ନବ ସର୍ଗେ ଗତେ ମାଘେ ନବ ଶବ୍ଦୋ ନ ବିଦ୍ୟତେ' । ଏଥିରୁ ନଉଟି ସର୍ଗ ପାଠ କଲେ ଆଉ ସଂସ୍କୃତ ସାହିତ୍ୟରେ ନୂତନ ଶବ୍ଦ ନ ଥିବାର ଜଣାପଡ଼େ । ଶବ୍ଦ-ପାଣ୍ଡିତ୍ୟ କବିଙ୍କ ଭାଷାରେ କେତେ ପ୍ରକାଶ ଏଥିରୁ ଅନୁମାନଯୋଗ୍ୟ । ମାଘେ ସନ୍ତି ତ୍ରୟୋଗୁଣାଃ । ଉପମା, ଅର୍ଥଗୌରବ, ପଦଲାଳିତ୍ୟ ସବୁ ଏଥିରେ ପରିପୂର୍ଣ୍ଣ ।

ଅବଶ୍ୟ ଏ ଗ୍ରନ୍ଥର ଏକାକ୍ଷର ପାଦ, ସର୍ବତୋଭଦ୍ର, ମୁରଜ ବନ୍ଧ, ଭ୍ରଷ୍ଟ ଶ୍ଲେଷ ନୂଆଶ୍ଲେଷ ପାଦ, ଚକ୍ର, ଗୋମୂତ୍ରିକା, ସମୁଦ୍ର-ଯମକ, ଅଙ୍ଗ ଗୋପ, ଅର୍ଦ୍ଧଭ୍ରମକ, ଗତ ପ୍ରତ୍ୟାଗତ, ଗୂଢ଼ ଚତୁର୍ଥ, ଏକାକ୍ଷର, ଦ୍ୟକ୍ଷର-ପାଦ, ଅତାଳବ୍ୟ, ଅର୍ଥ ତ୍ରୟବାଚୀ ସମ୍ବନ୍ଧ, ବହୁଶ୍ଲେଷ ଇତ୍ୟାଦି ଚିତ୍ର ସେ ମନଃଯୋଗ ଅଭିମାନ ନ ଥିଲେ—ସଦା ଭାବରେ ଭକ୍ତି ଅଧିକ ବସ୍ତୁ ଦେଖାଇଥାନ୍ତି । କିନ୍ତୁ ସେ ତାହାଁର ସ୍ୱାଦ ଗ୍ରହଣ ନ ଥିଲେ ।

ସଂସ୍କୃତ ଗ୍ରନ୍ଥର ଶେଷ ଶେଷ ସର୍ଗରୁ ପାଠକଙ୍କ କୌତୂହଳ ବଢ଼ାଇବା ଲାଗି କେତୋଟିର ଦୃଷ୍ଟାନ୍ତ ଦିଆଗଲା ।

ଏକାକ୍ଷର

ଦାଦଦୌ ଦୁଦ୍ଦୁ ଦୁଦ୍ଦୁ'ଦା          ଦାଦାଦୋ ଦୁଦଦୀଦଦୋଃ
ଦୁଦ୍ଦାଦଂ ଦଦଦେ ଦୁଦ୍ଦେ          ଦଦାଦଦ ଦଦୋଽଦଦଃ ।

ଏକାକ୍ଷର ପାଦ

ଜଜୌଜୋଜାଜିଜିଜ୍ଜାଜୀ          ତଂ ତତୋଽତିତତାତତୁତ୍
ଭାଭୋଽଭୀଭାଭିଭୂଭାଭୂ          ରାରାରିରରିରୀରରଃ ।

ମୁରଜ ବନ୍ଧ

| | | | | | | | |
|---|---|---|---|---|---|---|---|
| ସା | ସେ | ନା | ଗ | ସ | ନା | ର | ମ୍ଭେ |
| ର | ସେ | ନା | ସୀ | ଦ | ନା | ର | ତା |
| ତା | ର | ନା | ଦ | ଜ | ନା | ମ | ଊ |
| ଧୀ | ର | ନା | ଗ | ମ | ନା | ମ | ସ୍ୱା |

ଏଗୁଡ଼ିକ ପଦ୍ମମଣି ତାଙ୍କର ପୋଥିରେ ଲେଖି ରଖିଥିଲେ ଏବଂ ଏହାର ପ୍ରଶଂସା ଅତି ଚମତ୍କାର ଭାବରେ କରିପାରୁଥିଲେ । ସଂସ୍କୃତ ସାହିତ୍ୟରେ ପ୍ରବିଷ୍ଟ ହୋଇଲେହେଁ ସଂସ୍କୃତ ରଚନା କରିବାରେ ଦକ୍ଷତା ନ ଥିବାରୁ ସେ ଚଞ୍ଚଳ ହୋଇ-ଉଠିଲେ । ତଥାପି ସେ ଆଗେଇଲେ । ବିଦ୍ୱାନ ଯେଉଁ ଭାବରେ ବୃଦ୍ଧଙ୍କ ନିକଟରେ ରହିବାର ଜନ୍ମ ହୋଇଥିବେ । ସଂସ୍କୃତ ଶ୍ରୀମଦ୍ ଭାଗବତର କିୟଦଂଶ ସେ ଏଠି ମଧ୍ୟ ଜାଣିପାରିଥିଲେ । ତାର ଫଳରେ ତାଙ୍କୁ ପରବର୍ତ୍ତୀ କାଳରେ ଶାସ୍ତ୍ର ଚର୍ଚ୍ଚା କରିବା ସୁଗମ ହୋଇଥିଲା ।

ସେ ଯେପରି ବୁଦ୍ଧିମାନ ଥିଲେ, ସଂସ୍କୃତ ଚର୍ଚ୍ଚାରେ ଦୁଇଟି ବର୍ଷ ଅତିବାହିତ କରିଥିଲେ ସେ ସମଗ୍ର କବିସମାଜକୁ ଟପି ଯାଇଥାନ୍ତେ ।

ଗୁଣ୍ଡିଚା ରଥଯାତ୍ରାରେ ସେ ଗୁଜରାଟୀ ବହୁ ରୂପବତୀ ରମଣୀମାନଙ୍କର ମୂର୍ତ୍ତି ଦେଖି ଶିକ୍ଷା କ୍ଷେତ୍ରରେ ବାନ୍ଧି ହେବାକୁ ଆଉ ମନ ନ କଲେ, ସାମାନ୍ୟ ସେ ଘଟଣାରେ କୋଡ଼ିଏ ବର୍ଷର ସୁନ୍ଦରୀ ରମଣୀ ସହିତ ପୁରୀରୁ ଖସି ପଳାଇ ଆସିଲେ ।

## ତୁ ମୋର ଦଅର—

ଗୁଣ୍ଡିଚା ମଣ୍ଡପ ପାଖରେ ଜଗନ୍ନାଥେ ଦର୍ଶନ ନ ହେବା ଆଗରୁ ସ୍ତ୍ରୀଲୋକ ଭିଡ଼ରେ କୋଡ଼ିଏ ବର୍ଷ ବୟସ୍କ ରୂପସୀ ଯୁବତୀ ତାର ଶ୍ରେଷ୍ଠ ଦଅର ସହିତ ଛୁଟା ହେବା ବେଳେ ଯଦୁମଣି ତାର ଦଅର ହେବାକୁ ବ୍ୟାକୁଳିତ ପୁଚ୍ଛାଇ କୋଡ଼ିଏ ଟଙ୍କା ଦେଇଥିଲେ । ସେ ଦେବତାଙ୍କ ଦର୍ଶନ କରିଥିଲେ—ଦିଅଁ ଦେହରେ ଲାଗେ ହେଉଛନ୍ତି । ତୁ ମୋର ଦଅର ବୋଲି ମୁଁ ବି ହଁ କରେ ତାର ଘୋଡ଼ା ଚୋଟେ କଥା କହନ୍ତି । ସେହି ଯୁବତୀ ପିଲା ହେଲେ ମୋହ ଦେଖାଇ ଦେଖାଇ ଦେଶକୁ ବହୁ ଜନତା ମଧ୍ୟରେ ହଜିଗଲେ ଘେନି ସେମାନେ ହଜିଥିଲେ । କିନ୍ତୁ ରମଣୀ ଏକାନ୍ତ ଦେଖା ହେଲା । ସେ ରମଣୀ ଯଦୁମଣିଙ୍କ ହାତ ଧରିନେଇ ରଥ ଛୁଆଇଁ ଶପଥ କରାଇଲା ଯେ—‘ତୁ ମୋର ଦଅର ।’ ସେହି ଯୁବତୀର ନାମ ଥିଲା—ମନୋରମା । ତାର ଘର ଥିଲା ବାଲେଶ୍ୱର । ସେ ଜାତିରେ ଖଣ୍ଡାୟତ ଥିଲା । ସେହି ଯୁବତୀର ମାୟାରେ ସେ ତାର ସ୍ନେହବର୍ତ୍ତୀ ହୋଇ ତା ଘରକୁ ଯାଇ ପର୍ଣ୍ଣକୁଟୀର ନିର୍ମାଣ କରିଥିଲେ । ଯୁବତୀ ବାଳ ବିଧବାରେ ସମ୍ଭବତଃ ଥିଲା । ତା ସ୍ୱାମୀ ତାର ଅନୁଗତ ରହିଥିଲା । କୋଡ଼ିଏ ବର୍ଷ ବୟସ୍କା ମଧ୍ୟବର୍ତ୍ତୀ ପରିବାରର ସେ କନ୍ୟା ଥାଇ ପିତୃଗୃହରେ ଅଧିକ ଦିନ ଥିବାରୁ ତା ପ୍ରତି କେହି ବିଦ୍ୱେଷୀ ନ ଥିଲେ ।

ଯଦୁମଣିଙ୍କୁ ତାଙ୍କର ଶ୍ୱଶୁର, ପିତା, ମାମୁଁ ଆଦି ଏମନ୍ତ କ ପିଣ୍ଡିକ ବନ୍ଧୁବର୍ଗ ଖୋଜ ଖୋଜ ଅସ୍ଥିର ହୋଇଗଲେ । ତାଙ୍କର କୌଣସି ସନ୍ଧାନ ମିଳିଲେ ନାହିଁ । ତୀର୍ଥଭୂମି ମଧ୍ୟ ବୁଲିସିଲେ । ସ୍ନେହନାଥ ହୃଦୟେ ତାଙ୍କର ପ୍ରିୟତମା କନ୍ୟା ଖଞ୍ଜନା ଲାଗି ବହୁ ଅର୍ଥ ବ୍ୟୟ କରି ହତାଶ ହୋଇ ଥରେ ସେ କଟକରୁ ଫେରି ଦେଇ ଫେରିଲେ । ସେ ବାଲେଶ୍ୱର ଖାଖା ଦାଖି ବନ୍ଧୁଙ୍କୁ ଯାଇ ସନ୍ଧାନ ନେବା ଲକ୍ଷ୍ୟରେ ବାଲେଶ୍ୱର ବାଟେ କଣ୍ଟାଇଲେ ଦେଇ ନଦୀ ପାର ହେବା ମନସ୍ଥ କରିଥିଲେ । ଅଶ୍ୱପୃଷ୍ଠରେ ଧୀରେ ଗତି କରିବା ବେଳେ ସେ ବାଲେଶ୍ୱର ଗ୍ରାମର ଉପାନ୍ତରେ କୋଠିଏ କୋଠା-ଘରର ଚୂଳ ଚଉତରାରେ ଯଦୁମଣିଙ୍କୁ ଭେଟି କୁଣ୍ଡାଇ ଧରି କାନ୍ଦିଥିଲେ । ପ୍ରାୟ ଦୁଇ ବର୍ଷ ପରେ ତାଙ୍କର ପ୍ରିୟତମା କନ୍ୟା ଖଞ୍ଜନାର ସ୍ୱାମୀଙ୍କୁ ଭେଟି ସେ ଏ ସମ୍ବାଦ କପରି ବନ୍ଧୁଙ୍କ ବେଗରେ ଘରେ ପହଞ୍ଚାଇବେ, ତାହା ହିଁ ଭାବୁଥିଲେ । ସେଠାରେ କିଛି ସମୟ ରହି ଯଦୁମଣିଙ୍କ ଅବସ୍ଥାନ ରହସ୍ୟ ଜାଣିଥିଲେ ।

**ଖଞ୍ଜନା ଲାଭ—**

ଚନ୍ଦ୍ରମଣି କିଛି ନ କହି ସୁପ୍ରଭାତରେ ଶ୍ୱଶୁରଙ୍କ ସହିତ ଆସିଥିଲେ ଏବଂ ସୂର୍ଯ୍ୟଦେବ ତାଙ୍କୁ ନିଜ ଘରକୁ ନେଇ ବହୁ ଅର୍ଥ ଗୋପନରେ ଦେଇ ମୁକୁନ୍ଦ ଏବଂ ଶୋଭାଙ୍କ ଜିମା ତାଙ୍କୁ ଦେଇ ନିଜ ଘରକୁ ଫେରି ଯାଇଥିଲେ । ଏମନ୍ତ କି ସେ ଧନବାର କିଛି ନ ସମଝି ଖଞ୍ଜନାଙ୍କୁ ସ୍ୱାମୀ ସଦନକୁ ମହା ଆଡ଼ମ୍ବରରେ ଶୁଭ ବେଳାରେ ପଠାଇ ଦେଇ ଶାନ୍ତି ଲାଭ କରିଥିଲେ; କାରଣ 'ସ୍ତ୍ରୀ ଜନମ ସିନା ପରଘରକୁ' ବା 'କନ୍ୟା ପରକୀୟ ଏବ' ଏହି ପ୍ରବଚନମାନ ସ୍ମରଣ ଯୋଗ୍ୟଥିଲା ।

ଖଞ୍ଜନା ସହିତ ଦିନେ ମଧ୍ୟାହ୍ନରେ ଏକ ଶଯ୍ୟାରେ ଶୋଇ ଚନ୍ଦ୍ରମଣି ସ୍ୱଚ୍ଛନ୍ଦ ହୋଇ ଦୁଃସ୍ୱପ୍ନ ଦେଖିଥିଲେ । ଚନ୍ଦ୍ରଦର୍ଶୀ ଖଞ୍ଜନାର ପ୍ରେମ ପାଶ ଅଠାରେ ଏହି ଦୁର୍ଲଭ ସହଚରୀଟି ହେଲେ, ଯାହା କି ପୂର୍ଣ୍ଣ ଜୀବନ କାଳରେ ଏକନିଷ୍ଠ ପ୍ରେମ ଧର୍ମ ଧରି ଅକ୍ଷୁଣ୍ଣ ହୋଇଥିଲା । ଅବଶ୍ୟ ଖଞ୍ଜନାଙ୍କ ସମ୍ବନ୍ଧରେ ପ୍ରବାସରେ ଥିବାବେଳେ ସେ ଏକାନ୍ତ ବିରହ ଦୁଃଖରେ ଅଧୀର ହୋଇ ଯେଉଁ କବିତାଟି ଲେଖିଥିଲେ ତାହା ତାଙ୍କର ପ୍ରଥମ ରଚନା ।

କେତେ କାଳ ହୋଇଲା ଅସି ରେ
ବର ସାରଙ୍ଗନେତ୍ରୀ ଯିବ ଭାସି ରେ ।
(ଚଉପଦୀମାଳା ଦ୍ରଷ୍ଟବ୍ୟ)

ତାହା ସେ ତାଙ୍କର ନବୋଢ଼ା ଯୁବତୀଙ୍କୁ ଭେଟି ଦେଇଥିଲେ । କିନ୍ତୁ ସେତେବେଳେ ଖଞ୍ଜନା ତାହା ଭଲ ସମଝି ନ ଥିଲେ । ପରେ ସମଝିପାରି ସ୍ୱାମୀଙ୍କ ପ୍ରତି ଥିବା ସନ୍ଦେହ ଭୁଲି ଯାଇଥିଲେ ।



# ଚଉଠୀ କଳା

ଏଣିକି ପ୍ରକୃତ ସଂସାର ଜୀବନ ଆରମ୍ଭ ହେଲା । କିନ୍ତୁ ଶ୍ୱଶୁରଙ୍କଠାରୁ ମିଳିଥିବା ଧନ ଶେଷ ହୋଇଆସିଲା । ଶିଳ୍ପ କାର୍ଯ୍ୟ ଭିତରେ କାଠ କାମ କରି ଯାହା ମିଳେ ତାହା ହିଁ ଭରସା । ପୁଣି କାହା ଦୁଆରକୁ ଯାଇ କାର୍ଯ୍ୟ କରିବାକୁ ବାପ ପୁଅ ଦୁହେଁ ଅମଙ୍ଗ । ନିଜ ଘରେ କାମ କରି ଯେତିକି ହୁଅନ୍ତି । ଲୋକେ ତାହା ନେଇଯାନ୍ତି । ପିଢ଼ୁଆ ଢେଙ୍କି ଚଉକି କରି ତାହାକୁ ଯାହା ଉତ୍ସବରେ ବିକ୍ରୟ କରନ୍ତି । ସେଥିରେ ମଧ୍ୟ କିଛି ଲାଭ ହୁଏ ।

## ଗୃହସ୍ଥ ଜୀବନ—

ରାଜା ବିନାୟକ ଜମି ଖଣ୍ଡିଏ ମୁକୁନ୍ଦଙ୍କୁ ଦେବାକୁ କହି କହି ଅଜ ହେଲେ ନାହିଁ । ଶେଷକୁ ଜଗନ୍ନାଥ ଠାକୁରଙ୍କ ଜମିରୁ ବାଟିଏ ଜମିର ରୈୟତ କରିଦେଲେ । ଖଜଣା ଦେଇ ତାହା ମୁକୁନ୍ଦ ଦଖଲ କରନ୍ତି । ଯଦୁମଣି ମୁହେଁ ମୁହେଁ ଠୋଠା କହିବା ଯୋଗୁଁ ରାଜଦ୍ୱାରରେ ବହୁତ ଶତ୍ରୁ । ଫଳରେ ଉକ୍ତ ଭିଟା ଜମି ଚାଷକରି ଯାହା ପାଆନ୍ତି, ତାହାର ବହୁ ଅଂଶ ଟଙ୍କି ଖଜଣାରେ ଚାଲିଯାଏ । ଖଜଣା ମାଣ ଆଠଣା ହେଲେ ବାଟିକୁ ଦଶ ଟଙ୍କା । କଟକୀ ଦରରେ ହଜାରେ ଦର ଥିଲେ ଯାଇ ହେବ ଦଶ ଟଙ୍କା । ଏ ବାଟିକ ଜମି ୧୬ ଦସ୍ତୁରର ଜମି । ତେଣୁ ଜମି ୭।୮ ଏକର ହେବ କି ନା ଅସମ୍ଭବ । କ୍ଷେତ ହେବା-ବର୍ଷ ଫଳିଲେ ଅଢ଼େଇ ହଜାର ସେର ଧାନ ଫଳିବ । କିନ୍ତୁ ଖଜଣା, ପିଆଦା ଖର୍ଚ୍ଚରେ ଅଧାରୁ ବେଶୀ ଚାଲିଯାଏ । କୁଟୁମ୍ବ କ'ଣ ଖାଇବେ ?

ଆଗେ ଖଞ୍ଜନା ତାଙ୍କ ବାପଘରକୁ ଯାଇ ମାଆଙ୍କଠାରୁ ବହୁଧନ ସଂଗ୍ରହ କରି ଆଣିବା ଯୋଗୁଁ ଏ ପରିବାର ନିଜର ମହତ୍ତ୍ୱ ଧରି ଚଳି ଯାଉଥିଲେ । ଆଉ ସେପରି ସୁଯୋଗ ଘଟିଲା । ସେ ସୁଯୋଗ ସୁବିଧାରୁ ବଞ୍ଚିତ ହେଲେ । ଯଦୁମଣି ଦୁଇଟି ଘଟଣାରେ ଉଗର ଦ୍ୱାରା କେବଳ ରାଜଦ୍ୱାରକୁ ଟଣା ହୋଇ ଯାଇଥିଲେ । ଥରେ ଗୋଟିଏ ଗଉଡ଼ୁଣୀ ତା ନିଜ ଶାଢ଼ୀ ଅଞ୍ଚଳରେ ସିଙ୍ଘାଣି ପୋଛୁଥିଲେ, ଯଦୁମଣି ତାହାକୁ ସିଙ୍ଘାଣିପୋଛା କନା କହି ନିଜ ସିଙ୍ଘାଣି ସେଥିରେ ପୋଛିବାରୁ ଉକ୍ତ ଗଉଡ଼ୁଣୀ ରାଜାଙ୍କୁ ଆପତ୍ତି କଲା । ଫଳରେ ସେ ଧରାହୋଇ ଯାଇ ସେଥିରୁ କୌଣସିମତେ ରକ୍ଷା ପାଇଥିଲେ ।

## ରାଜା ବିନାୟକଙ୍କ ସହିତ ପରିଚୟ —

ଆଉ ଥରେ ତାଙ୍କ ଗ୍ରାମର ନିଧି ମହାପାତ୍ର ନାମକ ଏକ ତେଲି ମହାଜନ ରାଜାଙ୍କ ଅନୁଗ୍ରହରେ ରାଜକୋଷରୁ ଧନ ଆଣି ପ୍ରଜାଙ୍କୁ ବେଠି କରାଇ ଗୋଟିଏ ଦେବତାଙ୍କର ମଣ୍ଡପ ଗଢ଼ିଥିଲା । ଉକ୍ତ ମଣ୍ଡପ ଉକ୍ତ ତେଲି ନାମରେ ପ୍ରତିଷ୍ଠା

କରିପିବାରୁ ଲୋକଙ୍କ ଅସନ୍ତୁଷ୍ଟି ରୁ ସେ ଏକ ଚଉତା ଲେଖି ସାନ୍ଧି ପିଲଙ୍କୁ ଶିଖାଇ ବୋଲାଇବା ଫଳରେ ଅନୁଗୁଳିଆ ଲୋକ ରାଜାଙ୍କୁ କଥା କାନ ଦ୍ଵାରା ଜଣାଇଲେ ସମ୍ପର୍କ ପୂର୍ବବାର ପଦ୍ମମଣିଙ୍କୁ ଡକାଇ ନେଇଥିଲେ । ପଦ୍ମମଣି ସ୍ପଷ୍ଟ ଭାବରେ ଚଉତାର ଅର୍ଥ କହିଦେଲେ ଯେ—'ରଜାଙ୍କ ଧନ ସରିବ; ପ୍ରଜା ଦେଶ ଛାଡ଼ିବେ; ଅଥଚ ଦେଶ ନିକଟରେ କାହିଁକି ମଣ୍ଡପ ପ୍ରତିଷ୍ଠା ହେବ ? ରଜାଙ୍କ ମନ୍ଦିର କରିପିବା ସମୀଚୀନ ।'

ସତ୍ୟ ଘଟଣା ଜାଣି ପଦ୍ମମଣିଙ୍କୁ ରାଜା ମୁକ୍ତ କରିଦେଇ କହିଥିଲେ— 'ଏହିସବୁ କରୁଛ ନା ଆଉ କ'ଣ ହେଉଛି ?' ପଦ୍ମମଣି କହିଥିଲେ—'କୁଟୁମ୍ବ ପୋଷିବାକୁ ନିଜ ବିଦ୍ୟା ଯାହା କରୁଛି ।'

ଉକ୍ତ ଘଟଣାରୁ ଯୁବକ ରାଜ ଯୁବକ ପଦ୍ମମଣିଙ୍କୁ ଚିହ୍ନିଥିଲେ ସତ କିନ୍ତୁ କୌଣସି ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠିତ ହୋଇ ନ ଥିଲା । ବିଶେଷରେ ରାଜଦରବାରେ କରଣମାନେ ସେତେବେଳେ ସମ୍ପୂର୍ଣ୍ଣ ଗାଦି ମାଡ଼ି ବସିଥିବାରୁ ସେମାନେ ତାଙ୍କ ପାଖାପାଖି ହେବାକୁ ସ୍ଥାନ ନ ଦେବାକୁ ନାନା ଷଡ଼ଯନ୍ତ୍ର କରୁଥିଲେ । ବ୍ରାହ୍ମଣମାନଙ୍କ ମଧ୍ୟରେ ଯେଉଁମାନେ ପଣ୍ଡିତ ଥିଲେ ବା ରାଜଗୁରୁ, ପୁରୋହିତ ବୃତ୍ତି ପ୍ରତିଷ୍ଠାପନ୍ନ ଥିଲେ, ସେମାନେ ସରକାରୀ ଅନୁଷ୍ଠାନ ମଧ୍ୟରେ ନ ଥିଲେ । କେବଳ କରଣମାନେ ଅର୍ଥନୈତିକ ଦିଗର ସବୁ ମୁଣ୍ଡି କରି ରହିଥିଲେ । କେଣୁ ପଦ୍ମମଣି ସତ କଥା ସେମାନଙ୍କର ଅଶୁଭର ଶାନ୍ତ ହୋଇଥିଲେ । ଅତି କଷ୍ଟ କ୍ରମନକ କଥାଟିଏ ଯୋଡ଼ା କରଣଙ୍କ ସମ୍ପର୍କରେ କହି କହୁଥିବା ସେମାନଙ୍କ ସହିତ ଅପଡ଼ ରହୁଥିଲେ । ସେ ଥରେ ଗୋଟିଏ ଘଟଣାରେ—

"କରଣ କୁଳକୁ ମରଣ ନାହିଁ
ନାଚନ୍ତି ଗାଣ୍ଡିରେ ଭୂଲଚା ଦେଇ"

କହି ସେମାନଙ୍କ ପ୍ରତି ଅଶ୍ଳୀଳ ବ୍ୟବହାର ପ୍ରକାଶ କରିଦେଇଥିଲେ । ଫଳରେ ପ୍ରତ୍ୟକ୍ଷ ଶତ୍ରୁତା ବଢ଼ି ଉଠିଥିଲା ।

କିଛିଦିନ ପରେ ୧୮୦୩ ରେ ତାଙ୍କର ଜନନୀ ଶୋଚ୍ୟ ଦେବୀଙ୍କର ଦାରିଦ୍ର୍ୟ ନିପୀଡ଼ନରୁ ଭୀଷଣ ରୋଗ ହେଲା । ସେ ଅସମୟରେ ଖାଇ ଗ୍ରହଣୀ ଧରିଗଲେ । ସେତେବେଳେ ଖଞ୍ଜନା ଗର୍ଭବତୀ ଥିଲେ । ଦାରିଦ୍ର୍ୟ ମଧ୍ୟରେ କନ୍ୟାଟିଏ ଜନ୍ମ ହେଲା । ଯଥାବିଧି ଶିଶୁର ସଂସ୍କାର ହୋଇ ନାମ 'ରମା' ଦିଆଗଲା ।

ପଦ୍ମମଣିଙ୍କ ପିତା ଏକାନ୍ତ ବଦ୍ଧଚାରୀ ଥିଲେ । ପୁଅ ଘରେ ନ ଥିଲେ ମଧ୍ୟ କେତୁ ଜନକ କଣି ପକାଇ କହୁଥିଲେ ସେ ଆସିଲେ ପଇସା ଦେବ । ଏଣେ ପଇସା ଘରେ ନ ଥାଏ । ଫଳରେ ବାପ ପୁଅଙ୍କ ମଧ୍ୟରେ ଏହି ଘଟଣାରେ ମନାନ୍ତର ସୃଷ୍ଟି ହେଉଥିଲା । କିନ୍ତୁ ବିଚକ୍ଷଣା ଖଞ୍ଜନା ମଝିରେ ଛିଡ଼ା ହୋଇ ଶ୍ୱଶୁରଙ୍କର ସମ୍ମାନ ରକ୍ଷା କରୁଥିଲେ ।

ଥରେ ଖଞ୍ଜନା ବାପଘରକୁ ଦଶ ବାର ଦିନ ଲଗି ଯାଇଥିଲେ । ଯଦୁମଣି ତାଙ୍କୁ ଗୃହ ମୁହୂର୍ତ୍ତେ ଛଡ଼ା ପାରୁ ନ ଥିଲେ । ତେଣୁ ପରିହାସିମାନେ ଖଞ୍ଜନାଙ୍କୁ ଅଯଥା ଲଜ୍ଜା ଦେଉଥିଲେ । ସେହି ଲଜ୍ଜାକୁ ସେ ରମଣୀ ଜନକ ଚନ୍ଦନ ପରି ନଜରେ ସୌଭାଗ୍ୟ ମନେ କରୁଥିଲେ ।

## ପିତାଙ୍କ ସହିତ ଅପଡ଼—

ଖଞ୍ଜନା ଘରେ ନ ଥିବା ବେଳେ ବାପ ପୁଅ ମଧ୍ୟରେ ଅଶାନ୍ତି ହେବାରୁ ଯଦୁମଣି ଅପମାନିତ କଥା କହିଲେ । ଫଳରେ ବୃଦ୍ଧ ମୁକୁନ୍ଦ ସେ କଥା ଦ୍ୱାରର ଜଣେ ପୁରୋହିତ ବ୍ରାହ୍ମଣଙ୍କୁ କହନ୍ତେ ସେ ଯେପରି ମନ୍ତ୍ରଣା ଦେଲେ ତଦନୁସାରେ ସେ ଯାଇ ରାଜାଙ୍କୁ ଜଣାଇଲେ । ଯୁବକ ରାଜା ବନାୟକ ଯଦୁମଣିଙ୍କଠାରୁ ବୟସରେ ୧୧ ବର୍ଷ ବଡ଼ ଥିଲେ । ଉକ୍ତ ରାଜା ସିଂହଭୂମିର ନଟପତି ଘନଶ୍ୟାମ ସିଂହଙ୍କର ଭଗିନୀ ପାଟକେମା କୁମୁଦମା ଦେବୀଙ୍କୁ ବିବାହ କରିଥିଲେ । କୁମୁଦମା ଶାସ୍ତ୍ରକୁଶଳା ଏବଂ କଳାବତୀ ଥିଲେ । ଏପରି କି ନୃତ୍ୟରଙ୍ଗରେ ମଧ୍ୟ ପଟୁତା ଅର୍ଜିଥିଲେ । ବନାୟକ ଏକାନ୍ତ ରସିକ ପୁରୁଷ ଥିଲେ ।

ଏହା ଯେଉଁ ସମୟର ଘଟଣା ସେତେବେଳକୁ ଇଂରେଜ କମ୍ପାନୀ ଅଧିକାରୁ ଓଡ଼ିଶା ଦଖଲ ସାରିଥାଏ । କର୍ଣ୍ଣେଲ୍ ହର୍କଟ୍ ଯେପରି ୧୮୦୩ ସେପ୍ଟେମ୍ବର ୮ ରେ ଗଞ୍ଜାମ ଦେଇ କଲିକତାବାଟେ ମାଣିକ ପାଟଣା ୧୬ ତାରିଖରେ ପହଞ୍ଚିଲେ— ତାହା ଗ୍ରାମେ ଗ୍ରାମେ ହୁରୁଡ଼ିମ୍ପ ଆଣୁଥାଏ । ୧୮ ତାରିଖରେ ପୁରୀରେ ମହାରାଜା ସେମାନଙ୍କ ଶରଣକୁ କପଟ ରାଜି ହେଲେ ଏହା ମଧ୍ୟ ଶୁଣାଗଲା । ଅକ୍ଟୋବର ୧୪ କାର୍ତ୍ତିକ ମାସ ଠେଇ ଶୁଣାଗଲା—ଇଂରେଜର ହେଲା ଓଡ଼ିଶା ମୁଲକ । ଫଳରେ ଇଂରେଜ ସାଙ୍ଗରେ ବାଧ୍ୟ ହୋଇ ସନ୍ଧି କଲେ ବନାୟକ ମନଧାତା । ପେଶ୍‌କସ୍ ଲୁଟିଗଲା । ଅଡ଼୍ୟା ଭୁଟେଇ ଶାନ୍ତ ଖୋଜୁଛନ୍ତି, ଏପରି ଅବସରରେ ମୁକୁନ୍ଦଙ୍କ ଆପତ୍ତିରେ ବ୍ୟସ୍ତ ହୋଇ ଯଦୁମଣିଙ୍କୁ ତଲବ କରିବାକୁ ଲୋକ ପଠାଇଲେ । କିନ୍ତୁ ଯଦୁମଣି ହାଜର ନ ହୋଇ ଗୋଟିଏ କବିତା ଲେଖି ପଠାଇଦେଲେ । ରାଜା ଉତ୍ତେଜିତ ହୋଇଥିଲେ । କିନ୍ତୁ ଯେଉଁ କରଣମାନଙ୍କୁ ଯଦୁମଣି ଘୃଣା କରୁଥିଲେ, ସେହିମାନଙ୍କ ଅନୁଗ୍ରହରୁ ତାଙ୍କ କବିତାଟି ବେବର୍ତ୍ତା ପଟ୍ଟନାୟକ ପାଠକରି ରାଜାଙ୍କର ଉତ୍ତେଜନା ହ୍ରାସ କରାଇ ମୁକୁନ୍ଦଙ୍କୁ ଯତ୍କିଞ୍ଚିତ ସାମାନ୍ୟ ଅର୍ଥ ଦାନ କରି ଶାନ୍ତିରେ ଚଳିବାକୁ ବୁଝାଇ ଫେରାଇଦେଲେ । ସେ ଦିନୁ କରଣ ଜାତିର ବିଦ୍ୱେଷ ଯଦୁମଣିଙ୍କଠାରୁ ଦୂରହୋଇ ବ୍ରାହ୍ମଣ ଉପରେ ନ୍ୟସ୍ତ ହେଲା । କାରଣ ମୁକୁନ୍ଦଙ୍କର ଗୁହାରି କରିବା ମନ୍ତ୍ରଣା ମୂଳରେ ଜଣେ ବ୍ରାହ୍ମଣ ଥିଲେ ।

ଅକସ୍ମାତ୍ ଖଞ୍ଜନା ବାପଘରୁ ଆସିପିବାରୁ ବିବାଦ ଆଉ ଦେଖାଗଲା ନାହିଁ । ଘଟଣାଚକ୍ରରେ କେତେଗୁଡ଼ିଏ ପଟି ତଥ ସଣୀଧାହେବାଙ୍କର ପ୍ରୟୋଜନ

ହେଲା । ରାଜା ତାଙ୍କର ମୁଖ୍ୟ କାରିଗର ମୁକୁନ୍ଦଙ୍କୁ ଡକାଇ ବରାଦ କଲେ । ମୁକୁନ୍ଦ ମହାପାତ୍ର ତାହା ଏକାନ୍ତ ସତର୍କତାର ସହିତ ତିଆରି କରି ରାଜଦ୍ୱାରକୁ ନେବାକୁ ବାହାରି ଦେଖନ୍ତି ଯେ ତାଙ୍କ ଗହଣାଠାରୁ ଅଧିକ ରମଣୀୟ ସେହି ଏକା ଗହଣାଗୁଡ଼ିଏ ଯଦୁମଣି ଅଙ୍କନ କରି ଖଞ୍ଜନା ଜମା ଦେଇସାଇଅଛନ୍ତି । ମୁକୁନ୍ଦ ପୁତ୍ରର ଏ କୃତିତ୍ୱ ଦେଖି ତାହା ମଧ୍ୟ ସାଙ୍ଗରେ ନେଇଗଲେ ।

ଯଦୁମଣିଙ୍କ ଗହଣାଗୁଡ଼ିକ ଅନ୍ତଃପୁର ପୂଜା ଦେଉଳରେ ଶୋଭା ପାଇଲେ । ମୁକୁନ୍ଦଙ୍କ ଗହଣାଗୁଡ଼ିକ ଫେରି ଆସିଲା । ମୁକୁନ୍ଦ ତାହା ଫେରାଇନେବା ଅପମାନଜନକ ହେବ ବୋଲି ରାଜା ତାହା ଜଗନ୍ନାଥ ମନ୍ଦିରରେ ରଖାଇଦେଲେ । ଯଦୁମଣିର ଗହଣାଗୁଡ଼ିକର ସ୍ୱରୂପତାରେ ମୁଗ୍ଧ ହୋଇ ମହାରାଣୀ ସେଦିନୁଁ ସେ ଜଣେ ଭଲ ଚିତ୍ରକର ବୋଲି ପ୍ରଶଂସା କରି ଗ୍ଲୁଲେ । କିନ୍ତୁ ସେଟା କେଡ଼ ଦୁଷ୍ଟ, ଅସାଧ ବୋଲି କହି କହି ରାଜାଙ୍କର ସ୍ନେହ ପାରିଷଦମାନେ ଆଣି ଦେଲେ ନାହିଁ ।

ତଥାପି ରାଜା ମଝିରେ ମଝିରେ ଯଦୁମଣିଙ୍କୁ ଦେଖା ଦେଉଥିଲେ । ଦରିଦ୍ର, ବେଶଭୂଷାବିହୀନ ଏହି ଚତୁରଟି କୋଟିଏ ରତ୍ନ, ତାହା ସେ ଯାଏ ଜଣା ନ ଥିଲା ।

## ପିତୃ ବିୟୋଗ—

ହଠାତ୍ ୧୮୦୮ ମସିହାରେ ମୁକୁନ୍ଦଙ୍କର ମୃତ୍ୟୁ ହେଲା । ପିତାଙ୍କ ପ୍ରତି ଦୁଇ ପ୍ରାଣୀ ଯଥୋଚିତ ସେବା କଲେ । ଖଞ୍ଜନା ଶାଶୁଙ୍କର ଯେପରି ପେଟରୁ ଜନ୍ମିତ କନ୍ୟା ପରି ରହିଥିଲେ, ଶ୍ୱଶୁରଙ୍କର ସେହିପରି ଔରସ କନ୍ୟା ପରି ରହିଥିଲେ । ଏତେ ଦାରିଦ୍ର୍ୟ ମଧ୍ୟରେ ମଧ୍ୟ ଯଦୁମଣି ବା ତାଙ୍କ ପିତା ଖଞ୍ଜନାର ବେଶଭୂଷାରେ କଦାପି ତ୍ରୁଟି କରି ନ ଥିଲେ । ତେଣୁ ଖଞ୍ଜନା ନିଜକୁ ଦରିଦ୍ରର କନ୍ୟା ବା ବଧୂ ବୋଲି ମନେ କରୁ ନ ଥିଲେ ।

ମୁକୁନ୍ଦଙ୍କର ଶବ ରାତି ଅର୍ଦ୍ଧରାତ୍ରରେ କୌଣସି ପ୍ରକାରେ ଦାହ କରିସାରି ଯଦୁମଣି ଏ ଅନ୍ତ୍ୟେଷ୍ଟି କୃତ୍ୟ କିପରି କରିବେ ବୋଲି ଚିନ୍ତାରେ ଅସ୍ଥିର ହେଲେ । 'ତାଙ୍କୁ ଏକ ବୁଦ୍ଧି ଦେଖାଗଲା । ସେ ମୁଁ ଆସୁଛି, ବୋଲି ସ୍ତ୍ରୀଙ୍କୁ କହି ଅନ୍ଧକାର' ରାତିରେ ଗୋଟିଏ ବୃଦ୍ଧର ଘୋଡ଼ ହୋଇ ଗଡ଼ରେ ପହଞ୍ଚି ତାଙ୍କ ପିତାଙ୍କ ନିର୍ମିତ ଦେଉଳ ରାଧାମୋହନଙ୍କ ମୁଖ୍ୟଦ୍ୱାରରେ ପଡ଼ି ରହିଲେ ।

ପାହାନ୍ତାରୁ ଅବକାଶ କଟାଇବାକୁ ପଣ୍ଡା ଆସି 'କିଏ ଶୋଇଛୁ ଉଠିଯାଅ' ବୋଲି ଡାକ ଛାଡ଼ିଲେ । କିନ୍ତୁ ଯଦୁମଣି ନ ଉଠି ଅଧିକ ଭାବେ ସର୍ବାଙ୍ଗ ଆବୃତ କରି-ଦେଲେ । ଫଳରେ ପଣ୍ଡା, ଟହଲ ଆଦି ଏକଥା ରାଜଗୁରୁଙ୍କୁ ଜଣାନ୍ତେ ସେ ଆସି ବୁଝିଲେ ଯେ ଉତ୍ସବର ମୁକୁନ୍ଦ ମହାପାତ୍ର ଉତ୍ସବରୁ ମୃତ । ତାଙ୍କ ପୁତ୍ର ଯଦୁମଣି ଏ କାଣ୍ଡ କରିଛନ୍ତି । ତେଣୁ ରାଜାଙ୍କୁ ସିଧା ମଣାଇ ଆଣିଲେ । ରାଜାଙ୍କ ପ୍ରତିଷ୍ଠିତ ପ୍ରିୟ ଦେବତାଙ୍କ ପାଇଁ ବାଧା ପାଉଛି; ତେଣୁ ରାଜା ତୁରନ୍ତ ଆସି ପଚାରିଲେ—'କିଏ ସେ ! ଉଠ, କ'ଣ କହୁ ?'

ଯଦୁମଣି କହିଲେ—'ମୁଁ ଠାକୁର ରାଧାମୋହନଙ୍କ ଭାଇ, ମୋର ନାମ ଯଦୁମଣି । ମୋର ପିତା ମୁକୁନ୍ଦ ମହାପାତ୍ର କାଲି ରାତିରେ ମରିଗଲେ । ମୁଁ ପିତାଙ୍କୁ ମୃତ୍ୟୁ ଯାଏ ନିଜ ଅଯତ୍ନରେ ପାଳିଥିଲି । ରାଧାମୋହନ ଏ ଶୁଦ୍ଧିକାର୍ଯ୍ୟ ନ ଉଠାଇଲେ କିପରି ହେବ ? ବିଦେଶରେ ତାଙ୍କର କିର୍ତ୍ତିତା ଦେଖୁଛନ୍ତି ଜନ୍ମଦାତା ପିତା ଦୁଃଖ । ସେ ତ ପୁଣି ଅହୋରାତ୍ର ଉପବାସ ଯାଜନା କରିବେ ?'

ରାଜା ଏ ଘଟଣାରେ ବିରକ୍ତ ନ ହୋଇ ସନ୍ତୋଷରେ ସହାସ କହିଲେ—'କ'ଣ ଇଚ୍ଛା କରୁଛ ?' ଯଦୁମଣି କହିଲେ—'ଅଜ୍ଞା, ରାଧାମୋହନ ଦାଦାନ୍ତୁ କ ଗ୍ରାମୁ ବଦାନ୍ତୁ । ମୁଁ ମୋର ଏ କାର୍ଯ୍ୟରେ ଦୁଇଶତ ମୁଦ୍ରା ଖର୍ଚ୍ଚ ହେବ । ମୋ ହାତରେ ଗୋଟିଏ କପର୍ଦ୍ଦକ ନାହିଁ ।

ତହୁଁ ରାଜା ତୁରନ୍ତ ଦୁଇଶତ ମୁଦ୍ରା ଦେଇ କହିଲେ—'ମୋର ପ୍ରିୟ ହସ୍ତରେ କାର୍ଯ୍ୟ ଯଥାବିଧି କର ।' ଯଦୁମଣି ମୁଦ୍ରାକୁ ଅଣ୍ଟିରେ ଧରି ଜଣାଇଲେ— 'ଗ୍ରାମୁ ବଳେ ହେବା ହୁଅନ୍ତୁ । କାଳେ ମୋର ବସ୍ତ୍ର ଚିରିଯିବ ।' ତହୁଁ ରାଜା ଅଦୃଶ୍ୟ ହୁଅନ୍ତେ ଯଦୁମଣି ଚାଲି ଯାଇଥିଲେ । ରାଜା ପାରିଷଦମାନଙ୍କୁ କହିଥିଲେ— 'ପ୍ରାଚୀନ ସାତମାଡ ଅଖିର ବସ୍ତ୍ର ରଖିବାରେ ମୁକୁନ୍ଦ ମହାପାତ୍ରଙ୍କ ପୁଅ ଯଦୁମଣି ଯେପରି ସର୍ବାଙ୍ଗ ଆବୃତ କରି ରଖିଥିଲା, ତାକୁ ଆସ୍ଥାନ ବୋଲି କିପରି କହୁଥିଲ ?' ତାହା ଶୁଣି ସମସ୍ତ ସଭାସଦ୍ ଲଜ୍ଜିତ ହୋଇଥିଲେ । ମୃତ୍ତିକା ଶୌଚରେ ଦେହ ଧନ ନ ଗଲେ ରାଜଦର୍ଶନ ନିଷେଧ ଥିଲା ।

ମୁକୁନ୍ଦଙ୍କର ଶୁଦ୍ଧିକାର୍ଯ୍ୟ ମହାସମାରୋହରେ ଯଦୁମଣି କଲେ । ପିତୃ ସମ୍ବନ୍ଧରେ ସେ ଏକାନ୍ତ ନିର୍ଗୁଣ ହୋଇ ଦମ୍ଭରେ ଶେଷକୁ ସ୍ପଷ୍ଟ ହୋଇ ବୁନ୍ଦାଚଳ କଲେ । ହାସ୍ୟରସାତ୍ମକ ତାଙ୍କର ବାକ୍ୟମାନ ନୟାଗଡ଼ରୁ ଚନ୍ଦ୍ରାମ ଅଞ୍ଚଳକୁ ସେତେବେଳକୁ ଅଧିକ ବ୍ୟାପିଲାଣି । ତାଙ୍କର କୌଣସି କୌଣସି କବିତା ମଧ୍ୟ ଘଟଣା-ଚକ୍ରରେ ଲୋକେ ପ୍ରବଚନରେ ବ୍ୟବହାର କରୁନରୁ ଜାଣିଲେଣି ଯେ ଯଦୁମଣି ମହାପାତ୍ର ବୋଲି ନୂଆଗଡ଼ରେ ଜଣେ ଯୁବକ ଅଛନ୍ତି; ଏହା ତାଙ୍କର କବିତା ।

କିନ୍ତୁ ଏହି ୧୮୦୯ ମସିହାର କେତୋଟି ମାସ ତାଙ୍କ ପକ୍ଷରେ ପ୍ରକୃତ ଅଶୁଭଦାୟକ ଥିଲା । ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ରାଜା ଦୁଇଶତ ଟଙ୍କା ଦେଇଥିଲେ । ସ୍ତ୍ରୀଙ୍କର ସ୍ୱତଃପ୍ରବୃତ୍ତ ଦାନ ହାର ଦୁଇଟି ବନ୍ଧକ କରି ଏଥିରେ ଏକଶତ ଟଙ୍କା ଲଗାଇଲେ । କୃତ୍ୟ ଶେଷ ବେଳକୁ ତାଙ୍କ ଘରେ ଅଦୁଆ ବ୍ୟଞ୍ଜନ ଖୁଦ ମଧ୍ୟ ନ ଥିଲା । ବନ୍ଧୁବାନ୍ଧବ ବଡ଼ ରାଜ୍ୟରୁ ଆସି ଦ ପ୍ରାଣୀଙ୍କର ଉଦାରତା ଏବଂ ସାଧୁତାର ସୁଯୋଗ ନେଇ ଲୁଟି କରିଦେଲେ । ଯଦୁମଣି ଓ କନ୍ୟା ରମା ବେମାରରେ ପଡ଼ିଲେ । ଯୁବତୀ ଲଞ୍ଜନା କିଛୁପାୟ ହୋଇ ସ୍ୱାମୀ ଓ କନ୍ୟାଙ୍କୁ ବଞ୍ଚାଇବାକୁ ନିଜର ଯାହା ଅଳଙ୍କାର ଥିଲା, ଗୋଟି ଗୋଟି କରି ବିକ ଦେଲେ । ଶ୍ୱଶୁରଙ୍କ ଅନ୍ତ୍ୟେଷ୍ଟିକୁ ତାଙ୍କ ପିତା ଆସିଥିଲେ । ସେ ଏ ବିପୁଳ ଖର୍ଚ୍ଚ ଦେଖି କ୍ରୋଧରେ ଅଜ ମୁହଁ ଫୁଲାଇ

ନାହିଁ କଷ୍ଟ କରି ଯାଉଥିଲେ । ତଥାପି ଝଞ୍ଜନା ବାପଘରକୁ ଲୋକ ପଠାଇଲେ । ଝିଅ ଛିଡା କରୁ ଦେଲେ ନାହିଁ । ମାଆ ଯାହା କରୁ ପଠାଉଥିଲେ । ନାନା ଉପାୟ କରି କରି ହେସ୍ତ ଦେଉ ନେଇ ମଧ୍ୟ ଦୋଷଣୀ ଦୂର ହେଲେ ନାହିଁ । କିନ୍ତୁ ଗମର ଦେହ ଭଲ ହେଲା । ବନେ ଏବେ ଦୁଃଖ ହେଲା ଯେ ଝଞ୍ଜନା ତାଙ୍କର ଅତିପ୍ରିୟ ଦକ୍ଷିଣୀ ଝଳନା ଦଣ୍ଡିଙ୍କୁ ତାଙ୍କ ପାଖର ଗୋଟିଏ ସ୍ତ୍ରୀଲୋକକୁ ବନ୍ଧପ୍ତ କରି କ୍ରୁଦ୍ଧ ଲୁଚାଇଲେ ଏବଂ ଚେଷ୍ଟା କଲେ, ଆଜ ସେ ଏହା ବ୍ୟବହାର କରିବେ ନାହିଁ । ସେହିଦିନଠୁଁ ସେ ମୃତ୍ୟୁ ଯାଏ ଆଉ ଦଣ୍ଡି ବ୍ୟବହାର କରି ନ ଥିଲେ । ଏହି କଷ୍ଟପ୍ରଦ ସମସ୍ତ କଣେ ଚାହେବେ, ତାହା ତାଙ୍କର ଧାରଣା ନ ଥିଲା ।

ହଠାତ୍ କଣେ ଉପାଚତା ନାଶର ଦୟାରୁ ସେ ଏପରି ଦୁଃଖରୁ ରକ୍ଷା ପାଇଲେ । ପେକେଟତ ବାଦେମର ଗ୍ରାମର ମନୋରମା ନାମକ ଝଣ୍ଡାପୁଡ ରମଣୀ ଅଜସ୍ରାତ କରି ଏ ଦମ୍ପତିଙ୍କୁ ଅଯାଚିତ ଭାବରେ ଯଥୋଚିତ ଅର୍ଥ ସାହାଯ୍ୟ କରିଥିଲା । ପେନେନ୍ତି ଧନ ନାମରେ ଗୋଟିଏ ଚଷା ଜାତିର ଯୁବକ ସହିତ ଯଦୁମଣି ସଙ୍ଗାତ ହୋଇଥିଲେ । ପେନେନ୍ତିର ସ୍ତ୍ରୀ ସୋ ବାଣୀ ଗୋଟିଏ ସରଳା ସ୍ତ୍ରୀଲୋକ । ସେ ସଙ୍ଗାତ ଘରେ ଏ ଅବସ୍ଥା ଦେଖି ଯାଇ ସ୍ୱାମୀଙ୍କୁ କହିଲେ ସେମାନେ ମଧ୍ୟ ଯଥେଷ୍ଟ ଧାନ, ମୁଗ, ସେ ଋତୁ ଅଦ ଫସଲ ସାହାଯ୍ୟ କରିଥିଲେ । ଏ ଦିନରୁ ଯଦୁମଣିଙ୍କ ସହିତ ଝେଡ଼ାହାଟ କଣେ ଜଣେ ଶ୍ରେଷ୍ଠ ହାମଗ୍ରୀ ।

ଯଦୁମଣିଙ୍କଠାରୁ ସମସ୍ତେ ଆଶା ତ୍ୟାଗ କରି ବସିଥିଲେ । ସେ ଗ୍ରାମର ଜଣେ ତେଲୀ ବୃଦ୍ଧ ଅଚେତ ହେବେ ତ କହେ । ସେ ନିଶ୍ଚିତ ସମୟରେ ମରିବ ବୋଲି ଲୋକ ସବୁ ବରିପିବ ବୋଲି କହୁଥିଲା । କିନ୍ତୁ ଦୁର୍ଭିକ୍ଷରେ ଯଦୁମଣି ସେହିଦିନ କ୍ଷଣ ହରଇ ପୁଣି ମୃତ୍ୟୁମୁଖରୁ ଫେରି ଆସିଥିଲେ ।

ଝଞ୍ଜନାର ଶ୍ୱଶୁର ପିତା ବୃଦ୍ଧବୟସ୍କ ବଚଳିତ ହୋଇ ଏସବୁ ଖବର ଶୁଣି ଧାଇଁ ଆସିଲେ । ସେ ଏ ବିବାହରେ ଆଦୌ ମତ ଦେଇ ନ ଥିଲେ । କ୍ଷୁଦ୍ର ବାଳକର ସ୍ୱୀକୃତି ନ ଥିଲେ ସେ କେବେ ଏପରି ଦରିଦ୍ର ଘରେ ତାଙ୍କର ପରମ ରୂପବତୀ କନ୍ୟାକୁ ଆଣି ଥୋଇ ନ ଥାନ୍ତେ ।

ଗାଁରେ ଗୃହକ, ଡାଲି, ବଡ଼ି, ଖଟା, ଭଲଭଲ ନବ ଫସଲ, ବସ୍ତ୍ର, ଶେଯ, ସୁନାର ଅଣି ପୂର୍ବ ଭରିଦେଲେ । ବହୁ ଅର୍ଥ ବ୍ୟୟ କରି ଜ୍ୱାଇଁର ଶରୀର ସୁସ୍ଥ କଲେ । କନ୍ୟାକୁ ହାର, ଦକ୍ଷିଣୀ କାନଫୁଲ, ସୁନା ମୁଦି, ରୁପା ଚୁଡ଼ି, ହଂସବଳା, ଦକ୍ଷିଣୀ ଦଣ୍ଡି ଆଦି ପୁଣି ଦେଇ ସୁଖୀ କରାଇଲେ । ଝଞ୍ଜନା ଦଣ୍ଡିଟି ତ୍ୟାଗ କରିଥିବାରୁ ସେଟିକୁ ଲୁଚାଇ ରଖିଦେଲେ । ବାକି ସବୁ ବ୍ୟବହାର କଲେ । କିନ୍ତୁ ସେହି ବର୍ଷ ବର୍ଷ କାଳରେ ଯଦୁମଣି ସାମାନ୍ୟ ଜାଳକାଠ ଲାଗି ଗୋଟିଏ କବିତା ରଚନା କରି ତାଙ୍କ ମାଆ ମରିଯିବା କଥା ଗ୍ରାମରେ ପ୍ରଚାର କରିଦେଲେ । ଦୁର୍ଭିକ୍ଷରେ ନୂଗଣା ମା ଯେ ଉଡ଼ାଉଡ଼ ହୋଇ ଶୋଇଥିଲେ । କାଠ ଅଭାବ ଅଛି ବୋଲି କହିବାରୁ ଗାଁ ଲୋକେ ଦୁଃଖିତ ହୋଇ ଖଣ୍ଡେ

ଖଣ୍ଡେ କାଠ ଦେଇ ଦୁଆର ବନ୍ଦ କଲେ । କିନ୍ତୁ ଶେଷରେ ଦେଖାଗଲା ଯେ ତାଙ୍କ ମଥା ଫଟିତ ଅଛନ୍ତି । ତାଙ୍କ ଶେଣ୍ଡେଣିଆ ଏହା ଫଳରେ ଦ୍ରୁତୀଭୂତ ହେବାରୁ କଷ୍ଟଦେଇ ଧୀର ରୋଗ ତାଙ୍କୁ ମିଳି ନ ଥିଲା । କାଠ ଖଣ୍ଡେ ଲଗି ମାରିଗଲେ କହିବା ଘେରେ ଘେରେ ତିନି ମାସ ପରେ ତାଙ୍କ ମଥାଜ୍ୱରରେ ମୃତ୍ୟୁ ହେଲା । କୌଣସି ପ୍ରକାରେ ବୃଦ୍ଧ ଶ୍ରାଦ୍ଧ ସାରି ନିରୁପାୟ ଭାବରେ କଷ୍ଟଦେଇ ଏହାପରେ ଜୀବନ କଟାଇ ଚାଲିଲେ ।

## ଚକ୍ରବାକ୍ ଚକ୍ରପାଣି—

ଟଙ୍କିକୋଟର ଚକ୍ରପାଣି ପଟ୍ଟନାୟକ ଜଣେ ମହାନ୍ ସଂସ୍କୃତଜ୍ଞ ପଣ୍ଡିତ । ସେ ପୁଣି କେତେକ ରାଜସଭାରୁ ବହୁଗୋଟି ପଦବୀ ଲଭିଥାନ୍ତି । ସେ ସମସ୍ତଙ୍କୁ କଥାରେ ବଙ୍କା କରିଦେବା ବାଲା । ସେ ଥରେ ନୂଆଗଡ଼ ରାଜସଭାରେ ଜଣେ ପଣ୍ଡିତ ଥିବାର ଶୁଣି ଶାସ୍ତ୍ରଯୁଦ୍ଧ ପାଇଁ ଅସିଥାନ୍ତି । ସେ ମଧ୍ୟ ଯଦୁମଣି ନାମରେ ଗୋଟିଏ ବାଢ଼ିଆ ଯୁବକ ଓଡ଼ିଆରେ କବିତା ରଚନା କରିପାରନ୍ତି ବୋଲି ଶୁଣିଥାନ୍ତି । ସେ ମନେ କରିଥାନ୍ତି ଯେ, ସେ ଯୁବକ ସହିତ ତାଙ୍କର ନିଶ୍ଚୟ ଭେଟ ହେବ । କାରଣ ସେ କେବଳ ସଂସ୍କୃତ ସାହିତ୍ୟ ନୁହେଁ, ଓଡ଼ିଆ ସାହିତ୍ୟ ପ୍ରତି ମଧ୍ୟ ଏକାନ୍ତ ପ୍ରଲୁବ୍ଧ ଥାନ୍ତି । ଚକ୍ରପାଣି କରଣକୁଳରେ ଏକ ଉଦାର ବ୍ୟକ୍ତି ମାନବିକତା ବୋଧ ତାଙ୍କଠି ସମ୍ପୂର୍ଣ୍ଣ ଥାଏ । ଯଦୁମଣି ମଧ୍ୟ ଚକ୍ରପାଣିଙ୍କୁ ତାଙ୍କ ପିତାଙ୍କ ସହିତ ଆଠଗଡ଼ ଯାଇ କେତେଥର ଦେଖିଥାନ୍ତି ଓ ଶାସ୍ତ୍ରଚର୍ଚ୍ଚା ତାଙ୍କର ଶୁଣିଥାନ୍ତି ।

ଚକ୍ରପାଣି ନୂଆଗଡ଼ ଗଡ଼କୁ ରାଜପଥରେ ବୁଲି ହେଉଁଦିନ ୧୮୧୦ ମସିହାରେ ଯାଉଥାନ୍ତି, ସେ ଦିନ ଯଦୁମଣି ମଧ୍ୟ ଗଡ଼କୁ ବାହାରିଥାନ୍ତି । ପିତାଙ୍କ ମୃତ୍ୟୁ ପରେ ସେ ସାମୟିକ ରାଜଦ୍ୱାରକୁ ଯାଇ ଏଠି ସେଠି ଟିକିଏ ବୁଲି ଆସନ୍ତି । ବଢ଼େଇ ଝିଅକୁ କିଏ ପଚାରେ ? କାର କେଉଁ କାମ ଲୋଡ଼ା ହେଲେ କେହି କେହି ବା ଖୋଜନ୍ତି । ତଥାପି ଏହା ଭିତରେ ସେ ବହୁତ ଚିତ୍ରକାମ ଦେଇ ରାଜା ରାଣୀଙ୍କର ପ୍ରିୟପାତ୍ର ହୋଇଥାନ୍ତି । ଚକ୍ରପାଣି ପଟ୍ଟନାୟକ ଦୋଳି ଚଢ଼ି ନ ପାରି ବାଟରେ ଘର୍ଦ୍ଦକସ୍ତୁ ଏକାନ୍ତ ଅଡ଼ମ୍ବରହୀନ ପ୍ରୌଢ଼କୁ ଦେଖି ଝଟିଲ ଯଦୁମଣି ସାହସରେ କହିଲେ—'ଆପଣ କିଏ ? ନାମ କ'ଣ ?'

ସମ୍ଭ୍ରାନ୍ତ ଚକ୍ରପାଣି ଏହି ଗ୍ରାମ୍ୟ ଯୁବକର ପ୍ରଶ୍ନ ଶୁଣି ନିତାନ୍ତ ଗମ୍ଭୀର ହୋଇ ଗୋଡ଼ରୁ ମୁଣ୍ଡଯାଏ ଯୁବକଟିକୁ ଅନାଇଁ ଅନାଇଁ କହିଲେ—'କୋଷଗ୍ରନ୍ଥର ବସ୍ତୁ ପର୍ଯ୍ୟାୟରେ ମୋ ନାମ ପାଇବ ।'

ହଠାତ୍ ବରାଟ ଜୁଡ଼ାଧାରୀ କୁଣ୍ଡଳବନ୍ତ କୃଷ୍ଣକାୟ ବେଶ ପରିହିତ, କିନ୍ତୁ ସୁନ୍ଦର ସୁଠାମ ସବଳିତ ଅଙ୍ଗ ଯଷ୍ଟି ବିଶିଷ୍ଟ ଯୁବକ ଯଦୁମଣିଙ୍କଠାରୁ ଶୁଣିଲେ —"ଓହୋ ! ଆପଣଙ୍କ ନାମ 'ଗୁହ' !" ଏହା କହି ନାକରେ ହାତଦେଲେ ।

ପ୍ରୌଢ଼ ହସି ଉଠିଲେ—ଏହା ଶୁଣି ଓ ଦେଖି । ତୁରନ୍ତ ମହାବାହୁରେ ଯୁବକର ସୁନ୍ଦର ମସ୍ତକରେ ହାତ ଦେଇ ଆଶୀର୍ବାଦ ବର୍ଷଣ କରି କହିଲେ—'ଯଦୁମଣି !'

ଯଦୁମଣି କହିଲେ—'ଅଜ୍ଞା ! ଏ ଅକିଞ୍ଚନ କ'ଣ ଆପଣଙ୍କଠାରେ ପହଞ୍ଚିଛି ?'

'ଚକ୍ରପାଣି କହିଲେ— ବାପ ! ଜାଣ ତ, କାନନ କନ୍ଦର ମଧ୍ୟସ୍ଥ ପ୍ରସ୍ଫୁଟିତ ପୁଷ୍ପ କିପରି ନିଜ ସୌନ୍ଦର୍ଯ୍ୟ ପ୍ରତି ପଥିକକୁ ଆକୃଷ୍ଟ କରାଏ ?'

ବାଟରେ ଚିହ୍ନାଜଣା ହୋଇଗଲେ । ଯଦୁମଣି ରାଜସଭାରେ ବସନ୍ତି ନାହିଁ ଶୁଣି ଚକ୍ରପାଣି ଦୁଃଖିତ ହେଲେ ଏବଂ କହିଲେ—'ତୁମେ କିନ୍ତୁ ଆଜି ଗଡ଼ରେ ରହ ।' ତାଙ୍କ କଥାନୁସାରେ ଯଦୁମଣି ଗଡ଼ରେ ରହିଲେ ।

ଚକ୍ରପାଣି ଆସିଥିବା ଖବର ରାଜା ପାଇଲେ । ସେ ଉପସ୍ଥିତ ହୁଅନ୍ତେ ତାଙ୍କୁ ହଣ୍ଡା ବସା ଆଦି ସମାରୋହରେ ଦିଆଗଲା । କିନ୍ତୁ ଯେଉଁ ପଣ୍ଡିତ ବ୍ରାହ୍ମଣ ରାଜାଙ୍କର ସଭା ଅଳଂକୃତ କରିଥାନ୍ତି, ସେମାନେ ପ୍ରକୃତ ଲେଖା ଯୋଗୁଁ ହେଉ ବା ଚକ୍ରପାଣିଙ୍କ ନିକଟରେ ପରାସ୍ତ ହେବା ଭୟରେ ହେଉ ଆଠ ଦିନ ଆଗରୁ ରାଜ୍ୟରେ ନ ଥିଲେ । ସେମାନଙ୍କ ଘର ଅଲଗା ଅଲଗା ଜାଗାରେ । କା ଘର ଶରଣକୂଳ ତ କା ଘର ମାଳାଢ଼ିପୁର । କା ଘର ମାଢ଼ଚାପୁର ଏବଂ ଏପରି । ରାଜା ଲୋକ ପଠାଇ ହତାଶ ହେଲେ । ଶେଷକୁ ସ୍ଥିର ହେଲା ଯେ ପଣ୍ଡିତମାନେ ତାଙ୍କର ନିଜ ପ୍ରୟୋଜନରେ ଘରୋଇ ଘଟଣାରେ ଭିନ୍ନ ବାଟକୁ ଯାଇଛନ୍ତି । ବକ୍ରବାକ୍ ନିଜର ଯାହା କୃତିତ୍ୱ ଶୁଣାନ୍ତୁ । ଶାସ୍ତ୍ରବିବାଦ ହୋଇପାରିବ ନାହିଁ । ରାଜଗୁରୁ ଯଦୁମଣିଙ୍କୁ ରଖାଯିବା ପ୍ରସ୍ତାବ ଅଣାନ୍ତେ ସଭାସଦ୍‌ମାନେ ଉପହାସରେ ଉଡ଼ାଇଦେଲେ ।

ଯଥାସମୟରେ ରାଜସଭାକୁ ସାଟୋପରେ ବକ୍ରବାକ୍ ଚକ୍ରପାଣି ଆସନ୍ତେ, ରାଜା ଚନାପୂକ ତାଙ୍କୁ ସମର୍ଯ୍ୟାଦାରେ ପାଶ୍ୱେଁ ଆଣିଲେ । ଜନସମୁଦ୍ରରେ ହର୍ଷଧ୍ୱନି ଫୁଟିଉଠିଲା । ଅନ୍ତଃପୁରରେ ରାଜପୁରାଙ୍ଗନାଙ୍କର ନେତ୍ର ଏବଂ କବିବରଙ୍କର ବାକ୍‌ଚାତୁରୀ ଶୁଣିବା ଲାଗି ଉଦ୍‌ଗ୍ରୀବ ହୋଇଉଠିଲା ।

ରାଜସଭାର ପଣ୍ଡିତମାନଙ୍କର କେତୋଟି ଆସନ ଶୂନ୍ୟ ଦେଖାଯାଉଥିଲା । ମନ୍ତ୍ରୀ ଗୌରାଙ୍ଗଚନ୍ଦ୍ର ତ୍ୟାଜ ପଟ୍ଟନାୟକ ସମ୍ବର୍ଦ୍ଧନାରେ ଭାଷଣ ଦେଲେ ଯେ—"ମହାରାଜା ମାନ୍ଧାତାଙ୍କର ସଭାଜବ ବ୍ରାହ୍ମଣଯୋଗ ଅତି ଅସୁବିଧାରୁ ଦୂରବର୍ତ୍ତୀ ବନ୍ଧୁମହଲକୁ ଗମନ କରିଅଛନ୍ତି । ବକ୍ରବାକ୍ ପ୍ରତିଦ୍ୱନ୍ଦ୍ୱିତା ନ କରି ନିଜର କୃତିତ୍ୱ ଦେଖାଇ ମାନ୍ଧାତାଙ୍କ ରାଜସଭାକୁ ଆନନ୍ଦ ଦାନ କରନ୍ତୁ ।"

ବକ୍ରବାକ୍ ଶ୍ଳେଷରେ ହସି କହିଲେ— ବ୍ରହ୍ମାଙ୍କର ଚାରି ମୁଖ ଆଉ ଚାରି ବେଦ ଚୋରି ହୋଇଗଲା ? ଯେ ସେ ଗୋଟିଏ ଗ୍ରୀବାରେ ଚାରି ମୁଣ୍ଡ ଖଞ୍ଜା ଥିବାରୁ

ବୋଧହୁଏ ଉନ୍ମୀଳନ ନିମୀଳନ ଏକାବେଳେ ହେଉଥିବ । କିନ୍ତୁ ଏହି ସ୍ତ୍ରୀରଟି ମୂର୍ଖ ଏକ କିପରି ହେଲା ? ଏସବୁ ତ ସ୍ୱତନ୍ତ୍ର ଏବଂ ସ୍ୱତନ୍ତ୍ର ମୂର୍ତ୍ତି !"

ସମସ୍ତେ ନୀରବ ରହିଲେ । ରାଜା ମଧ୍ୟ କହିଲେ—"ତେବେ ନିଶ୍ଚିତ ଚର୍ଚ୍ଚା କରନ୍ତୁ ।" ବକ୍ରବାକ କହିଲେ—"ମୁଁ ଶୁଣିଛି, ଏଠାରେ 'ପଦୁମଣି' ନାମରେ ଜଣେ ଯୁବକ ଅଛନ୍ତି, ଯେ କି ବିଭିନ୍ନ ଶାସ୍ତ୍ର ଚର୍ଚ୍ଚା କରନ୍ତି । ତାଙ୍କର ବହୁ ଖଣ୍ଡ କବିତା ବହୁଜନରେ ଆଦରଣୀୟ ହେଉଅଛି ।"

ରାଜା କିଛି ନ କହୁଣୁ ମନ୍ତ୍ରୀବର କହିଲେ—ମହାଶୟ ! ସେ ଗୋଟିଏ ବାଉଳିଆ ପିଲା । ଅତି ଅଳ୍ପବୟସ୍କ, ଦୁଷ୍ଟ । ଖର ତୁଣ୍ଡ । ପାଣ୍ଡିତ୍ୟ ତ କିଛି ନାହିଁ । ଟିକିଏ ଛନ୍ଦ ମିଳାଇ ପାରେ । ହଁ, ହଁ, ସେ ଛନ୍ଦ କରିପାରେ ଭଲ ।' ଏ କଥା ମନ୍ତ୍ରୀବର କହି ନ ଥାନ୍ତେ । କିନ୍ତୁ ପାଟ ମହାଦେଈ ପଦୁମଣିର ଛନ୍ଦକୁ ପସନ୍ଦ କରନ୍ତି । କାଳେ ତାଙ୍କ ପ୍ରତି ଅପମାନ ହେବ, ସେଥିପାଇଁ ଏପରି ଭାବରେ କହିଲେ ।

ଅନ୍ୟାନ୍ୟ ସଭାସଦ୍‌ଗଣ ମଧ୍ୟ କହି ଉଠିଲେ ହାସ୍ୟଚ୍ଛଳରେ— 'ବୋପଦେବ—ନ ହେଲେ କାଣୁଦେବ' ? କିଛି ଦୂରରେ ଦରିଦ୍ରତନୟ ପଦୁମଣି ଖଣ୍ଡିଏ ଆଣ୍ଠୁ ଯାଏ ଲୁଗା ଖଣ୍ଡ ଲୁଗା ପିନ୍ଧି ଏବଂ ଗାମୁଛାଟିଏ କାନ୍ଧରେ ପକାଇ ଏ କଥା ଶୁଣୁଥାନ୍ତି । ସେ ମଧ୍ୟ ଆଶା କରୁ ନ ଥାନ୍ତି ଯେ ଏ ସୌଭାଗ୍ୟ ତାଙ୍କୁ ମିଳୁ । ସେଠାରୁ ଖସିଯିବାକୁ ବାହାରିଥିଲେ ପୁଣି ମନକୁ ଅଟକାଇଲେ କେଜାଣି କାହିଁକି ଜାଣିପାରିଲେ ନାହିଁ ।

ଚକ୍ରପାଣି କହିବାକୁ ଯେ ? ସେ କ'ଣ ଏହି ମୂର୍ଖଦଳର ଗ୍ରନ୍ଥାଗାରରେ ଭାସିଯିବେ ? ପୁଣି କହିଲେ—"ମହାରାଜ ! ଶାସ୍ତ୍ରଚର୍ଚ୍ଚାରେ ଜିତା ହେଉ ବା ହାର ହେଉ ପ୍ରତିଦ୍ୱନ୍ଦ୍ୱିତା ନ ଥିଲେ ତାହା ଶୋଭନୀୟ ହୁଏ ନାହିଁ । ମୋତେ ଆପଣମାନେ ବେଦଶାସ୍ତ୍ର-ପ୍ରତିନିଷ୍ଠିତ ଶୁଦ୍ଧବୁଦ୍ଧି ବରେଣ୍ୟ ବ୍ୟାସ ବୋଲି ମନେ କରନ୍ତୁ; କିନ୍ତୁ ମୋର ଅଶିକ୍ଷିତ ବର୍ବର ଶିଅଳ ଜଣେ ଆବଶ୍ୟକ । ମୁଁ ତାକୁ ଇ ଧରି ଶାସ୍ତ୍ର ଚର୍ଚ୍ଚା କରିବି ଏବଂ ତା ପାଖେ ହାରି ମଧ୍ୟ ଗୌରବାନ୍ୱିତ ମଣିବି ।"

ପାରିଷଦମାନଙ୍କ ମଧ୍ୟରେ ଭାବନା ପଡ଼ିଲା । ଯେବେ ସେ ଦୁର୍ଦ୍ଦାନ୍ତ ଦୁଷ୍ଟ ଏଠାକୁ ଆସିଯାଏ, ସମ୍ଭାଳା ପଡ଼ିବ ନାହିଁ । ଚତୁଃ ପାରିଷଦ ଓ ମନ୍ତ୍ରୀ ବ୍ୟକ୍ତ କଲେ ଯେ, ଏ ରାଜସଭାରେ ଶୂଦ୍ରମାନଙ୍କର ସ୍ଥାନ ନାହିଁ ।

ସ୍ୱତନ୍ତ୍ର ଆସନରେ ସମାସୀନ ଶହେ ସତୁରି ବାଟୀ ଜମିର ମାଲିକ ରାଜାଙ୍କ ଇଷ୍ଟମାନବ ରାଜଗୁରୁ ଜଗଦାନନ୍ଦ କ'ଣ ଏପରି କହିଲେ ଯାହା ଶୁଣି ସମସ୍ତ ସଭା ନୀରବ ହୋଇଗଲା । ସମସ୍ତେ ବ୍ୟାକୁଳ ସନ୍ତୁଷ୍ଟ ନୟନରେ ଅନାଇଁ ରହିଲେ । ରାଜଗୁରୁଙ୍କ ବାଣୀ ନିରର୍ଥକ ହେବ ନାହିଁ । ସେ ଅପ୍ରୟୋଜନୀୟ କଥା କହିବେ ନାହିଁ । ସେ ଗମ୍ଭୀର ଧ୍ୱନିରେ କହିଲେ—'ଏହା ତ ସରସ୍ୱତୀ ଚର୍ଚ୍ଚା । ସାଧାରଣ ସାକ୍ଷାତରେ

ମଧ୍ୟ ରାଜଦରବାରରେ ଏପରି ଜଟିଳ ଅବସ୍ଥା କେବେ ନ ଥିଲା ବା ବର୍ତ୍ତମାନ ମଧ୍ୟ ଏଠାରେ ନାହିଁ । ରାମଚନ୍ଦ୍ରଙ୍କ ଦରବାରକୁ ଯିବାରୁ କୁକ୍କୁର ନାମକ ଅନାର୍ଯ୍ୟ ଶଙ୍କିତ ହୋଇ ଲକ୍ଷ୍ମଣଙ୍କୁ କହିଥିଲା—

"ଅନଜ୍ଞାପ୍ତସ୍ତୁ ସୌମିତ୍ରେ ପ୍ରବେଷ୍ଟୁଂ ନେଚ୍ଛାମ୍ୟହଂ ।"

କିନ୍ତୁ ରାମଚନ୍ଦ୍ର ଏହା ଶୁଣି ତୁରନ୍ତ ଆଦେଶ ଦେଇଥିଲେ—

"ସଂପ୍ରବେଶୟ ବୈ କ୍ଷିପ୍ରଂ କାର୍ଯ୍ୟାର୍ଥୀ ଯୋଽତ୍ର ତିଷ୍ଠତି ।"

ଏହା ଶୁଣି ଚକ୍ରପାଣି ସନ୍ଦର୍ଭରେ ଏହାକୁ ଅନୁମୋଦନ କରିଥିଲେ । ଫଳରେ ରାଜା ତାଙ୍କର ନିଜର ପାଖ ଲୋକ ପଠାଇ ଯଦୁମଣିଙ୍କୁ ଅନ୍ୱେଷଣ କରି ଆଣିଲେ ଓ ତାଙ୍କର ଦାରିଦ୍ର୍ୟ ବେଶ ଦେଖି ମନେ ମନେ ଅସନ୍ତୁଷ୍ଟ ହେଲେ । ଦରିଦ୍ର ଯଦୁମଣି ଧୀରେ ଦେଖା ଦେଲେ । ହାସ୍ୟ କି ସୌଭାଗ୍ୟ ଜଗତ୍ତା ଉପରୁ କିନ୍ତୁ ପୁଷ୍ପବୃଷ୍ଟି ହେଲା ।

ଯୁବକ ଯଦୁମଣି ସାହସୀ ଥିଲେ । ସେ ଭୂମିରେ ବସନ୍ତେ ଚକ୍ରପାଣି ନିଜର ଆସନ ନିକଟରେ ଥିବା ଗୁଳିଟି ଆସନରୁ ଗୋଟିଏ ଆସନ ଉଠାଇନେଇ ନିଜର ସମ୍ମୁଖରେ ସ୍ଥାପନ କରି ଯଦୁମଣିଙ୍କ ହସ୍ତ ଧରିନେଇ ସେଠାରେ ବସାଇଦେଲେ ।

ଅକସ୍ମାତ୍ ଯଦୁମଣିଙ୍କର ଦୀନହୀନ ବେଶର ପରିବର୍ତ୍ତନ ସମ୍ପାଦନ ଲାଗି ନାଟକୀୟ ଭାବରେ ସୁକୁଞ୍ଚିତ ପଟ୍ଟବସ୍ତ୍ରର ଧୋତି ଚଦର ଦୁଇଟି ଜଣେ ପାଖ ଲୋକ ଏକ ଥାଳିରେ ଥୋଇ ବଢ଼ାଇ ଦେଇଗଲା । ପୂର୍ବରୁ ନିର୍ଦ୍ଦେଶ ପାଇଥିବା ପରି ଯଦୁମଣି ଅନ୍ତଃପୁରକୁ ଯାଇ ତାହା ପରିଧାନ କରି ତୁରନ୍ତ ଆସିଗଲେ । ଶୁଭ୍ର ବର୍ଣ୍ଣର ଯୁବକ ଉପରେ ପୁଣି ପୁଷ୍ପବୃଷ୍ଟି ହେଲା । ସହସ୍ର ନୟନରୁ ଲୁହ ଝରିଲା । ରୂପ ଭେକ ସବୁ ସିନା ଠିକ୍ ହେଲା । ଏହି ମହାନ ପଣ୍ଡିତଙ୍କ ସହିତ ସେ ପାରିବେ ତ ? ସମସ୍ତଙ୍କ ମନରେ ଏହି ପ୍ରଶ୍ନ । ଗୋବର୍ଦ୍ଧନପୁର ଶାସନର ଅଷ୍ଟବସୁରୁ ଏକ ବସୁ ଶ୍ରେଷ୍ଠ ବୈଦିକ ଲବ୍ଧ ବ୍ରାହ୍ମଣ ଶ୍ରୀ ନୀଳକଣ୍ଠ ମିଶ୍ର ଯେ କି ଯଦୁମଣି ପିତା ମୁକୁନ୍ଦଙ୍କର ସଙ୍ଗାତ ଥିଲେ ସେ ଉଚ୍ଚ ସ୍ୱରରେ ଆଶୀର୍ବାଦ କଲେ—ଜୟୋଽସ୍ତୁ । ଶାସ୍ତ୍ରଚର୍ଚ୍ଚା ଆରମ୍ଭ ହେଲା ।

ମନସ୍ୱୀ ବନ୍ଧିବାକ୍ କହିଲେ—'ମୁଁ ଜାଣେ ଯେ ମୋର ପ୍ରତିଦ୍ୱନ୍ଦ୍ୱୀ ଯଦୁମଣି ସଂସ୍କୃତ ସାହିତ୍ୟରେ ପ୍ରବୀଣ ଏବଂ ଏ କଥା ମୁଁ ତାଙ୍କ କଥାଭାଷାରୁ ଜାଣିଛି । କିନ୍ତୁ ସଂସ୍କୃତ ଭାଷାରେ ଉକ୍ତି-ପ୍ରତ୍ୟୁକ୍ତି କରିବାରେ ପ୍ରବୀଣ ନୁହନ୍ତି । ତେଣୁ ଉତ୍କଳୀୟ ଭାଷାରେ ଏହି ଆଲୋଚନା କରାଯିବ । ସମସ୍ତ ସଭା ଧନ୍ୟ ଧନ୍ୟ କଲା । କେହି କେହି ପ୍ରମାଦ, ପ୍ରମାଦ କହିଲେ । ରାଜାଙ୍କ ପାରିଷଦ ଦଳ ଲୁଚିକି ଲୁଚିକି ହସୁଥାନ୍ତି, ମୁହଁରେ ଲୁଗା ଦେଇ ।

ଅନନ୍ତର ସନ୍ଦର୍ଭ ମୁଖରେ ବନ୍ଧିବାକ୍ ପାଦପୂରଣ ଲାଗି ପ୍ରଶ୍ନ କଲେ—

'ଭ୍ରମରୀ କେଳାସ ଗଜ କପୋଳକୁ ନିରେଖଇ କଦାଚିତେ'

ଯଦୁମଣି ଈଷଦ୍ଧାସ୍ୟରେ ସଙ୍ଗେ ସଙ୍ଗେ ଉତ୍ତର କଲେ—

'ମହିଷାରି ରଥ ଗଣନାଥ ମାଥ କଇଳାସ ପରବତେ ।'

ପୁଣି ପ୍ରଶ୍ନ ହେଲା– 'କବା ପ୍ରଶଂସିବା ପ୍ରଶଂସା ପଦବୀ ଅଛି ବୋଲି ବଳା ଗଣ୍ଡରେ ।'

ଉତ୍ତର–'ମୂକ କରଅଛି ସେ ବାଳାମଣିର ଶ୍ରୀଚରଣ ବଳା ଗଣ୍ଡରେ ।'

ଏହି ରସିକତାପୂର୍ଣ୍ଣ ଉତ୍ତରରେ ସମଗ୍ର ସଭା ଚମକତ ହେଲା । ଚନ୍ଦ୍ରଦଗରେ ଆନନ୍ଦଧ୍ୱନ ଫୁଟିଉଠିଲା । ପ୍ରଶ୍ନ ପରେ ପ୍ରଶ୍ନ ଚାଲିଲା । ସବୁର ଉତ୍ତର ବଦ୍ୟୁତ୍ ବେଗରେ ଦେଇଗଲେ ଯଦୁମଣି ।

ଶେଷରେ ବନ୍ଧବାକ୍‌ଙ୍କର ଅନୁରୋଧରେ ବାଳକ ଯଦୁମଣି ବୃଦ୍ଧ ବନ୍ଧବାକ୍‌ଙ୍କୁ ଗୋଟିଏ ପ୍ରଶ୍ନ କଲେ । ବନ୍ଧବାକ୍ ତାର ଉତ୍ତର ଦେଇ ନ ପାରି କହିଲେ–'ମୁଁ ଆଜ ଏଠାରେ ପରାସ୍ତ ହେଲି ।' ଏହା କହି ଯଦୁମଣିଙ୍କୁ ନଜ ପାଖକୁ ନେଇ ଆଶୀର୍ବାଦ ଦେଇ କହିଲେ–'ତୁମେ ଦନେ ଏ ଉତ୍କଳ ଦେଶରେ ଏକାନ୍ତ ଶ୍ରେଷ୍ଠତମ କବି ହେବ, ଯାହାର ପଦଗୌରବ କହି ଲୋକେ ନଜକୁ ଧନ୍ୟ ମଣିବେ ।'

ଏମନ୍ତ ଉଦାରତାରେ ବନ୍ଧବାକ୍ ସମସ୍ତ ସଭାର ପ୍ରଶଂସାଭାଜନ ହୋଇ ୧୦୦ଶତ ମୁଦ୍ରା, ପାଟଯଥା, କୁଣ୍ଡଳ, ମୁଦ୍ରିକାଦ ଲାଭ କର ମହାସମାରୋହରେ ବଦାୟ ଗ୍ରହଣ କଲେ । ଯଦୁମଣିଙ୍କୁ ରାଜା ସେହି ଦନ ଏକ ବାଟୀ ଜମି ନଷ୍କରରେ ଦାନ କରିବାକୁ କଟେଶ୍ୱର ବେବର୍ତ୍ତା କରଣଙ୍କୁ ଆଦେଶ ଦାନ କଲେ ।

ଏପରି ସମ୍ବାଦ ଚତୁର୍ଦ୍ଦିଗରେ ବ୍ୟାପିଯିବା ମାତ୍ରେ ପୂର୍ବୋକ୍ତ ପଣ୍ଡିତ ଚାରି ଜଣ ହଠାତ୍ ଧ୍ୟାନ ନାଳ ଅବସ୍ଥାରେ ସମୟକୁ ଉଣ୍ଡି ଅବଶୀର୍ଣ୍ଣ ହୋଇ ଚନ୍ଦ୍ରପୁରଦନ ରାଜ-ସଭାରେ ନଜ ନଜ ସ୍ଥାନ ଧରି ବସିଗଲେ ଏବଂ ଏପରି ସୁଯୋଗ ଦୈବଯୋଗରୁ ହରାଇଥିବା ହେତୁ ନଜ ନଜକୁ ଧିକ୍‌କାର କରିବସିଲେ । ରାଜା ସେମାନଙ୍କୁ ଦୃଷ୍ଟିପାତ ନ କରି ସଭା ତ୍ୟାଗ କରନ୍ତେ ପାରିଷଦମାନେ ବହୁ ଯୋଗ ଉପନ୍ନ କରି ମଧ୍ୟ ରାଜାଙ୍କର ମନ ପରବର୍ତ୍ତନ କରିପାରିଲେ ନାହିଁ । ଫଳରେ ଯଦୁମଣିଠାରେ ସମସ୍ତେ ଅନ୍ଧନ୍ୟା ବହନ କରିବସିଲେ । ତେଣୁ କଟେଶ୍ୱର ବେବର୍ତ୍ତା କରଣଙ୍କୁ ଯେଉଁ ଜମି ଖଣ୍ଡିକ ଯଦୁମଣିଙ୍କୁ ଦେବାକୁ ରାଜା ହୁକୁମ ଦେଇଥିଲେ, ସେ ତାହା ନ ଦେଇ ଟାଳଟୁଳ କରି ଚାଲିଲେ । ଏହି ଘଟଣାରେ କଟେଶ୍ୱରଙ୍କୁ ଦଶ ବାର ଥର ଯଦୁମଣି ଧାଇଁ ଧାଇଁ ଶେଷକୁ ନରସ୍ତ ହୋଇ କରଣଙ୍କୁ କହିଲେ ଯେବେ ନ ଦେବାର କଥା କହିଲେ, ତାହା ମୁଁ ରାଜାଙ୍କ ଛାମୁଁରେ ଜଣାଇଦେବ ।

## ତାଙ୍କ ବରୁଦ୍ଧରେ ନାନା ଷଡ଼ଯନ୍ତ୍ର –

ଏ ମଧ୍ୟରେ ପଣ୍ଡିତମାନେ ପ୍ରଚାର କରିଦେଲେ ଯେ ଯେଉଁ ସବୁ ପାଦ ପୂରଣ ଲାଗି ବନ୍ଧବାକ୍ ଯଦୁମଣିଙ୍କୁ ପଚାରିଥିଲେ, ତାର ଉତ୍ତର ସେ ଆଗରୁ ତାଙ୍କୁ ଶିଖାଇ ଦେଇଥିଲେ । କାରଣ ଯଦୁମଣି ଆଠଗଡ଼ର ଲୋକ । ଚନ୍ଦ୍ରପାଣି ଖଲିକୋଟରେ

ଲୋକ । ମୁକୁନ୍ଦ ମହାପାତ୍ରଙ୍କ ସହିତ ଚକ୍ରପାଣିଙ୍କର ସୂର୍ଯ୍ୟବନ୍ଧୁ ସମ୍ପର୍କ ଥିଲା । ଏସବୁ କଥାରେ କେତେ ଲୋକ ମଧ୍ୟ ବିଶ୍ୱାସ କରିଗଲେ । କହିଲେ—ତାହା ନୁହେଁ ଆଉ କଣ ? କାହିଁ ଚକ୍ରପାଣି ପଟ୍ଟନାୟକ, କାହିଁ ଅର୍ବାଚୀନ ଯଦୁମଣି ବଡ଼େଇ ? ରାଜାଙ୍କ ମନରେ ଏପରି ଧାରଣା ପୂରାଇ ରଖିଥାନ୍ତି । କିନ୍ତୁ ସେ ଅଟଳ ରହିଥାନ୍ତି ।

ରାଜାଙ୍କୁ ଜମି ନ ଦେବା କଥା କହିଲେ କରଣଙ୍କର କ୍ଷତି ହେବ । ଏପରି ଆଶଙ୍କା କରି ଗୋଟିଏ ଅତି ଢିପ ଟାଙ୍ଗର ଜମି ଯଦୁମଣି ନାମରେ ପଟ୍ଟା କରିଦେଲେ । ଯଦୁମଣି କିଛି ଦିନ ପରେ ପଟ୍ଟା ଅନୁକ୍ରମେ ଜମି ମଡ଼ାଣ ନେବାକୁ ଯାଇ ଦେଖନ୍ତି ଯେ ସେ ଜମିରେ ବ୍ରକୁଣ୍ଡା ବୁଣିଲେ ମଧ୍ୟ ବର୍ଷାଦିନରେ ଚଞ୍ଚ ହେବ ନାହିଁ । ତେଣୁ ସେ ଦୁଃଖିତ ହୋଇ ଗୋଟିଏ କବିତା ଲେଖି ରାଜାଙ୍କ ନିକଟକୁ ପଠାଇଦେଲେ । (ଦେଖ ଯଦୁମଣି ଗ୍ରନ୍ଥାବଳୀ ପୃ ୩୧ ଷ୍ଟା)

ରାଜା ଉକ୍ତ କବିତାରେ ଦତ୍ତ ଜମିର ଟାଙ୍ଗର ବର୍ଣ୍ଣନା ପାଠ କରି ଭିତର ଲୋକଦ୍ୱାରା ତଦନ୍ତ କରାଇ ଦିନେ କଚେରୀରେ ଉକ୍ତ କରଣ ବେବର୍ତ୍ତାଙ୍କୁ ଡକାଇ ଆଣି କହିଲେ—"କହୋ ! ରାଧାଶ୍ୟାମ ବେବର୍ତ୍ତା ! ତୁମ ବାପ ସମ୍ପତ୍ତି ଦେଉଥିଲ କି ? ଏହିକ୍ଷଣି ମୋ ସମ୍ମୁଖରେ ଏକ ବାଟୀ ଦୋଫସଲ ଜମି ଯଦୁମଣି ନାମରେ ପଟ୍ଟା ଲେଖିଦିଅ ।"

ଭୟରେ ଥରହର ହୋଇ ବେବର୍ତ୍ତା ତତ୍କ୍ଷଣାତ୍ ଏକ ବାଟୀ ମୂଲ୍ୟବାନ ଜମିର ପଟ୍ଟା କରିଦେଲେ । ଯଦୁମଣି ଆନନ୍ଦରେ ତାହା ନେଇ ପ୍ରସ୍ଥାନ କଲେ ।

କିନ୍ତୁ ତାଙ୍କ ଉପରେ କୋପ ଚଉଦିଗରୁ ମାଡ଼ି ଆସିଲା । ବାପେ ତାଙ୍କର ଥିବାବେଳୁ ସେ ଜଗନ୍ନାଥଙ୍କର ଯେଉଁ ଜମି ଖଣ୍ଡିକ ସିକମରେ ଚଷୁଥିଲେ, ତହିଁର ଖଜଣା ପାଞ୍ଚ ସାତ ବର୍ଷ ହେଲା ଦେଇ ନ ଥିଲେ । ଜଗନ୍ନାଥ ଠାକୁରଙ୍କର ସେଠି କରଣ ଥିଲେ ବାଳନ୍ଦଚରଣ ତ୍ୟାଗ ପଟ୍ଟନାୟକ । ସେ ଦିନେ ସର୍ବସମକ୍ଷରେ କହିଲେ—'ଆପଣମାନେ ଏତେ ଭାବୁଛନ୍ତି କାହିଁକି ? ମୁଁ ବଢ଼େଇ ଟୋକାକୁ ସାନ୍ଧ ଦେଉଛି ।' ଏହା କହି ଯଦୁମଣିଙ୍କୁ ଧରାଇ ନେଇ ଭୀଷଣ ବେଇଜତ କଲେ ।

ଯଦୁମଣିଙ୍କ ହାତରେ ଧନ ମଧ୍ୟ ନ ଥିଲା । ସେ ନିରୁପାୟ ହୋଇ ସେ ଅଇର ଗାଳି ଫଜିତ ସହିଗଲେ । ଦେଖିଲେ ପିଆଦା ତାଙ୍କ ପାଖକୁ ବାରମ୍ବାର ପଠାଉଛି । ତେଣୁ ସେ କୌଣସି ଦିଗରୁ ରାସ୍ତା ନ ପାଇ ଗୋଟିଏ କବିତା ଲେଖି ରାଜାଙ୍କ ନିକଟକୁ ପଠାଇଲେ—

'ଜମିର ମାଲିକ ଜଗା ବଳିଆ
ତହିଁ ସିଠ ଅଟେ ତ୍ୟାଗ କାଳିଆ
ଜମିର ଗଡ଼ଣ କସ ବାହୁନିବା ଯେସନ
ମଇଁଷି ଗୋଠ ଗୁଳିଆ' ଇତ୍ୟାଦି ।

(ଦେଖ ହାସ୍ୟରସ ଗୀତରସ ଶତକ ପୃ ୧୨-୧୩ ଷ୍ଟା)

ରାଜା ଏ କବିତାଟି ପାଠକରି ପରମ ସନ୍ତୋଷ ଲଭି ସଭାସଦ୍‌ମାନଙ୍କ ସହିତ ପୂର୍ବୋକ୍ତ ପଣ୍ଡିତମାନଙ୍କ ଉପସ୍ଥିତିରେ ଯଦୁମଣିଙ୍କୁ କହିଲେ—"ତୁମ୍ଭେ ଆମ୍ଭ ନିକଟକୁ ଭୂମି ସିକମ ଜମିର ବର୍ଣ୍ଣନା ଯେଉଁ ଯେଉଁ କବିତାଟି ଲେଖିଅଛ, ତାହା କାହାଠୁ ଲେଖାଇ ଆଣିଛ ? ତୁମ୍ଭର କେହି ଖଲକୋଟ ବନ୍ଧୁ ଲେଖି ଦେଉଛନ୍ତି କି ?"

ଯଦୁମଣି କହିଲେ—ମହିମା ! ଯାହାଙ୍କ ନିମକ୍ ଖାଇ ମୋ ବାପ ମୋତେ ଏଠାରେ ରଖିଦେଇ ଯାଇଅଛନ୍ତି, ତାଙ୍କରି ଦୁଆର ଜଗି ମୁଁ ପଡ଼ି ରହିଛି । ଖଲକୋଟ କଥା ଗିତ ?" ବହୁପ୍ରକାରେ ପ୍ରଶଂସା କରାଗଲା ।

ସମସ୍ତ ଅସଦାଚରଣଙ୍କର ଷଡ଼ଯନ୍ତ୍ର ଲୁପ୍ତ ହେଲା । ଜଗନ୍ନାଥଙ୍କର ସିକମ ଜମି ମଧ୍ୟ ଚିରକାଳ ଜାଗିର ଚଳେ ରଖାଗଲା । ପୂର୍ବ ଖଜଣା ମଧ୍ୟ ମାଫି କରାଗଲା ।

## ରାଜସଭାରେ ସ୍ଥାନଲାଭ—

ଏହାପରେ ଶତ୍ରୁତା ଏବଂ ଅସଦାଚରଣ ଧୀରେ କମିଆସିଲା । ତେବେ ରାଜା ନିଜ ସଭାରେ ଯଦୁମଣିଙ୍କୁ ଯଥାଯୋଗ୍ୟ ଆସନ ଦାନକଲେ । ବିନାୟକ ମାନ୍ଧାତାଙ୍କର ଏହି ଉଦାରତା, ଏହି ଗୁଣ-ସମାଦର ସେହିଦିନଠୁଁ କାଳଦେହରେ ସ୍ୱର୍ଣ୍ଣାକ୍ଷରରେ ଖୋଦିତ ହୋଇ ରହିଲା । ଗୁଣାଃ ପୂଜାସ୍ଥାନଂ ଗୁଣିଷୁ ନ ଚ ଲିଙ୍ଗଂ ନ ଚ ବୟଃ ।

ରାଜାଙ୍କ ସହିତ ମିତ୍ରତା ବଢ଼ି ଚାଲିଲା । ଯଦୁମଣିଙ୍କର କଠୋର ମନ୍ତବ୍ୟକୁ ମଧ୍ୟ ରାଜା ଅକାତରରେ ସହ୍ୟକରି ଚାଲିଲେ । ପୁନର୍ବାର ତାଙ୍କର ପରିବାର ଚଳାଇବା ଅସୁବିଧା ଲକ୍ଷ୍ୟକରି ଦୁଇ ବାଟି ଜମି ଜାଗିର ସୂତ୍ରରେ ଦିଆଗଲା । ଯଦୁମଣି ଏହି ଲେଖାରେ ରାଜାଙ୍କଠାରୁ ଲେଖାଇନେଲେ—ଏ ଜମି ବ୍ରହ୍ମୋ ଚଳେ ରଖାଗଲା । ଉଦ୍ଦେଶ୍ୟ ଯେ ଜାଗିର ଯେପରି କେହି ଉଚ୍ଛେଦ ନ କରେ । କାରଣ ଜାଗିର ଜମି ଉଚ୍ଛେଦ ହେବାର ବିଧି ପରମ୍ପରା ଧରି ରହିଥିଲା ।

## ନାଁ ବିଦ୍ୟୁଲ୍ଲତା, ଡାକନାମ ବଧୂ—

ଘଟଣାଚକ୍ରରେ ଏହାପରେ ରାଜା ନିଜଚଢ଼ର ଗୋଟିଏ ଅତୁଳ୍ୟ ସୁନ୍ଦରୀ ଦରଜୀ ଯୁବତୀକୁ ଦେଖି ଏକାନ୍ତ କାମାତୁର ହେଲେ । ଉକ୍ତ 'ବଧୂ' ପରେ ବିଦ୍ୟୁଲ୍ଲତା ସାମନ୍ତାଣୀ ନାମରେ ନାମିତ ହେଲା । ଯଦୁମଣିଙ୍କ ଯୋଗୁଁ ସେ ଉକ୍ତ ଯୁବତୀ ତାହାକୁ ଲାଭକରି ଫୁଲ ବେହି ଭାବରେ ଉଆସରେ ସ୍ଥାନ ଦେଲେ । ଏକାନ୍ତ ରୂପ ଓ ଗୁଣ-ଗର୍ବିଣୀ ଥିଲେହେଁ ବଧୂ ସମଗ୍ର ରାଜପୁରୀରେ ବଧୂ-ସମ ବିବେଚିତ ଥିଲା ଏବଂ ଗୋଟିଏ ଅଲଗ ସାମନ୍ତ ବଂଶ ତାର ଆନୁକୂଲ୍ୟରେ ବରୁଡ଼ା, ବାଙ୍କଟେ, କୋରପିଠା ସାଙ୍ଗକୁ ଗୁଣ୍ଡୁରିବାଡ଼ ନିକଟରେ ପରବର୍ତ୍ତୀ କାଳରେ ସ୍ଥାପିତ ହୋଇଥିଲା । ବଧୂ ସମ୍ବନ୍ଧରେ ଯଦୁମଣି କବିତାଟିଏ ମଧ୍ୟ ଗାଇଥିଲେ । କାରଣ ବଧୂର ବାପ ଥିଲା ଖାଦ୍‌ମାଢ଼ଲ ଦୁର୍ଦ୍ଧର୍ଷା-ବାସୀ । ପ୍ରଥମେ ପ୍ରଥମେ ସେ ଏ ପ୍ରସ୍ତାବ ଶୁଣନ୍ତେ କୁପିତ ହୋଇଉଠିଲା । କିନ୍ତୁ ବଧୂର ମତଗତି ରାଜାଙ୍କ ପ୍ରତି ଢଳିବାରୁ ଜନୈକ ମାଣ ଜମି ବଦଳରେ କନ୍ୟାଟିକୁ ଯଦୁମଣି ମଧ୍ୟସ୍ଥତାରେ ଦାନ କରିବାକୁ ବାଧ୍ୟ ହୋଇଥିଲା । ସେ କବିତାଟି ହେଲା—

ହେ ରସିକେ, ମଙ୍ଗଳ ପଚ୍ଛକେ ଯିବ
ମଙ୍ଗଳ ନ ଥିବା ଜବା ଅଟଶ୍ରୀକୁ ଅଭୋଗେ କେ ବରିଜବ ?
ଦରଜୀ କୂଳରେ ସରଜ ଅଛୁ କେ
ବଧୂ ସମତୁଲ ହାସ
ମରିଜ ବୁଝି ମୁଁ ଅରିଜ ଦେବାକୁ
ପଉ ନାହିଁ ଅବକାଶ ?

ବାହ୍ରବକ୍ ବଧୂ ବବେସୃ ଉତ୍ଥାପନ କବେବାକୁ ଯଦୁମଣିଙ୍କ ପଶ ସାହସୀ ରହସ୍ୟଜ୍ଞ ପୁତୁଙ୍କୁ ଦୁଇ ମାସ ଲଟିଥିଲ । ତେଣୁ ସେ ଏଥର ଲେଟିଥିଲେ । ବଧୂର ବାପ ଅତି ତେଜସ୍ୱୀ ଦୃଢ଼ମନା ଥିଲେ । ସ୍ୱନେଷ୍ଟ ଲେଖିଥିଲେ—

ମଦର ଉଟଜା
ମଦ ନଦଗ୍ରାଢ
ମଦ ମଦ ହାସ ଗୁହିଁ
କଦପେ ପ୍ରିୟା—ଲୀଳାକୁ ନ ବାଞ୍ଛି
ସୁଦରେ ରହିବ ନାହିଁ ।

ଏଠାରେ ସେ ସୁନ୍ଦରେ ବୋଲି ବଚାଙ୍କୁ ଲକ୍ଷ୍ୟ କରିଛନ୍ତି । ବଧୂକୁ ରଜା ଦୁଇ ଥର ହସ ହସ ମୁହଁରେ ଥିବାର ଦେଖି ବାହ୍ରବକ୍ କାମମୋହିତ ହୋଇଥିଲେ ।

ଲଟା କୁରଙ୍ଗୀ ନୟନା ଶୋଭାଙ୍ଗୀର
କଟାକ୍ଷ ବୃହାଣୀ ଛଟା,
ପଟା ଝୋପ ଭଙ୍ଗି ନେଃସ୍ତ ସଙ୍ଗୀ ହେଲେ
ଧୈର୍ଯ୍ୟ ଧରିବ କେ ବେଟା ।
ଯଦୁମଣି ଭଣି ଧନ୍ୟ ସେ ରମଣୀ
ଅଣିମାଦ୍ଧ ଭୂତଦାସୀ,
ଅଦୂରେ ଯା ରୂକ, ଗଲ୍ ମଣ୍ଟେ ଘାଲ
ବାରବାମା ହେମଗାସୀ ।

ଏହା ଫଳରେ ନାନା ଉପଢୌକନ, ନାନା ବସ୍ତ୍ର, ଶଯ୍ୟା, ଶାଢ଼ୀ, ପାଟ, ବାସନ ସେ ରାଜଦ୍ୱାରରୁ ପୁରସ୍କୃତ ଲାଭ କରି ପରମ ସୁଖରେ ଏଣିକ କାଳଯାପନ କରି ଚାଲିଲେ । ବୃହୁଁ ବୃହୁଁ ପାଠ ମହାଦେଈ କୁମୁଦମା ଦେଶକୁ ତାଙ୍କୁ ଦେଖାଦେଲେ । ଯଦୁମଣି ରାଜା ଏବଂ ରାଣୀଙ୍କର ଅତି ଅପଣାର ହୋଇଗଲେ ଏବଂ ଦୁଃଖ, ଅନୁଶୋଚନା, ନିରନ୍ତର ଲାଞ୍ଛନା ତାଙ୍କଠୁ ଦୂର ହୋଇଗଲେ ।

---

ବାରବାମା—ଅପ୍ସରା, ଉଜ୍ଜ୍ୱଳ ।

# ପାଞ୍ଚ କଳା

## ବେଶ୍ୟାଳୟ ଗମନ—

ଯଦୁମଣି ଏକାନ୍ତ ସୁନ୍ଦରୀ ଗୁଣବତୀ ରମଣୀ ଚନ୍ଦ୍ର ଲଭିଥିଲେହେଁ ଆହୁରି କିଛି ଖୋଜୁଥିଲେ । ଥରେ ସେ ଶଶୀ ବୋଲି ଗୋଟିଏ ବେଶ୍ୟାର ପଦ୍ମପାଣି ଦେଖି ଏବଂ ତାର ବିଦ୍ୟାବିତ୍ତ କଥା ତାଙ୍କର ଜଣେ ଦୁଷ୍ଟ ବେହେ ମାଳାକାର ସାଥୀ ମଳମଣିଠାରୁ ଶୁଣି ପ୍ରଲୁବ୍ଧ ହୋଇ ଖଞ୍ଜନାଙ୍କୁ ଉକ୍ତ ବେଶ୍ୟାର ଅଳଙ୍କାର ଗ୍ରହଣ କରି ତାଙ୍କୁ ସନ୍ତୋଷ ଦେବାକୁ ବାଧ୍ୟ କରନ୍ତେ ଖଞ୍ଜନା ବାଧ୍ୟ ହୋଇ ସେଥିରେ ସଜ୍ଜିତ ହୋଇଥିଲେ । ନୃତ୍ୟ କଲେ, ସଙ୍ଗୀତ ଗାଇଲେ । କିନ୍ତୁ ଯଦୁମଣି କିନ୍ତୁ ଶଶୀର ପ୍ରଶଂସା ଗାଇ ଗ୍ଲାଲେ । ତଥାପି ଖଞ୍ଜନା ସ୍ୱାମୀପଦ ସ୍ପର୍ଶ କରି କହିଥିଲେ—ମୋର ଅଧୌ ଅସନ୍ତୋଷ ନାହିଁ । ତୁମ୍ଭେ ସେହି ରୂପବତୀ ନିକଟକୁ ଯାଅ । ଆମେ ହେଲୁଁ ଘରକଣରେ ବୋହୂ, ସେ ହେଲେ ରୂପ ବ୍ୟବସାୟିନୀ । ଅମର ଲଜ୍ଜା ଭୂଷଣ ତାଙ୍କର ଲଜ୍ଜାହୀନତା ଭୂଷଣ । ତେଣୁ ତୁମ ମନ ଅନୁସାରେ ଯାଇ ତୃପ୍ତି ସାଧନ କର ।

ଉଦ୍ଦାମ ଧୃଷ୍ଟ, ଅବିବେକୀ, ଯୌବନ ମଦରେ ସଙ୍ଗ ଗୁଣରେ ଉଚ୍ଛନ୍ନ ଯୁବକ ଯଦୁମଣି ପତ୍ନୀ ଜାୟା ପ୍ରତି ଅବମାନନା କରି ବେଶ୍ୟାଳୟକୁ ଚାଲିଗଲେ । ଯୌବନର ପ୍ରଥମାଂଶରେ ତାଙ୍କର ଏପରି କେତୋଟି ତ୍ରୁଟି ମଧ୍ୟ ଦେଖା ଯାଇଥିଲା । ସେ ଅବଶ୍ୟ ସେତେବେଳେ ସ୍ୱେଚ୍ଛାଚାରୀ ଥିଲେ । ଗୋଟିଏ ସଚ୍ଚରିତ୍ର ସମସ୍ତ ସ୍ନେହଦାୟିନୀ ରମଣୀର ସଙ୍ଗୀ ହୋଇ ଆଜି ସେ ସ୍ୱେଚ୍ଛାଚାରିତା ଯେ ଶୋଭନୀୟ ନୁହେଁ, ତାହା ସେ ବୁଝିପାରୁ ନ ଥିଲେ ।

ଖଞ୍ଜନା କାନ୍ଦି ଉଠିଲେ । ସେ ରଘୁନାଥ ସୂତ୍ରବୟ ଘରବାହାରେ ଥିଲେ ରାଜନେମାଠୁ ବଳି ସ୍ନେହପ୍ରଦା । ଯେପରି ସାଧକ ଘରର ସେହି କାହାଣୀର ତଥାପୋଇ ପରି । ଦରିଦ୍ର ଯଦୁମଣି ବା କଏ ? କଣୋଣ୍ଣ ଅବସ୍ଥାରେ ତାଙ୍କୁ କେତେ ଭଲ ପାଇ ସେ ଭୁଲାଇଦେଲା । ପାଦ ମଧ୍ୟ ଚୁମ୍ବିଲା । ହତରେ ସେ କଟରି ଭୁଲିଗଲେ ସବୁ ସବୁ ବହ ପାଇ ଅଗିଲା । ଶିବ ମନ୍ଦିରରେ ଶଙ୍ଖ ଧ୍ୱନି ଶୁଭିଲା । କୃଷ୍ଣାଙ୍କ ଆର ଶୁଦ୍ଧତର ଚେତା ଆଣି ଦେଲା—ଜନଗଣ ଜାଲୁ । ସେ ଦୈନିକ କୃତ୍ୟରେ ଲାଗିଯିବାକୁ ବାହାରିଲେ । ଶିଶୁ ମୋଟି ଶୋଇଥାଏ ।

ସେ ଶେଯରୁ ଉଠି ପାଦେ ମାତ୍ର ଆଗେଇଛନ୍ତି ଦେଖିଲେ, ତାଙ୍କ ପାଦ ତଳେ ଯଦୁମଣି ଅଷ୍ଟାଙ୍ଗ ପ୍ରଣିପାତ ହୋଇ କାନ୍ଦୁଛନ୍ତି । ଖଞ୍ଜନାର କୋଟିନିଧି ଉପୁଜିଲା । ସେ ସ୍ୱାମୀଙ୍କୁ ତୋଳୁ ତୋଳୁ ତାର ବସ୍ତ୍ର ମୁକ୍ତ ହୋଇଗଲେ ଅବା ! ସେଥିକରେ ପତ୍ନୀ ପ୍ରତି ବିଶ୍ୱାସଘାତକତା ସମସ୍ତ ଜୀବନ ଲାଗି ବିଦାୟ ଗ୍ରହଣ କଲା । ଅବଶ୍ୟ ସେ

ସ୍ତ୍ରୀଙ୍କର ସ୍ୱୀକୃତିରେ ଏପରି ଚୃଷ୍ଣା, ଅଳୀକ ବାସନାମୟ ବହୁକ୍ଷେତ୍ରରେ ରମଣୀମାନଙ୍କ ସୃଷ୍ଟି କରିଛନ୍ତି; କିନ୍ତୁ ତାହା ଅନ୍ତର-ଘର୍ଷଣ ପରି ଦୁଃଖଦାୟକ ଆଉ ହୋଇ ନ ଥିଲା ।

ଯଦୁମଣି ଅନ୍ଧାର ରାତିରେ ଗଡ଼କୁ ଯାଇ ସାଙ୍ଗ ମାଳମଣି ସାଥିରେ ଶଶୀ ବେଶ୍ୟା ଗୃହରେ ପହଞ୍ଚିଲେ । ଶଶୀ ସ୍ୱୀକୃତ ହୋଇ ତାଙ୍କୁ ପଦ୍ମଶଯ୍ୟା ଘରେ ବସିବାକୁ ସମର୍ପି ଦେଲା । ସାଙ୍ଗ ମାଳମଣି କୁଆଡ଼େ ଯେ ଗଲେ, ତାର ପତ୍ତା ମିଳିଲା ନାହିଁ । ମାଳମଣିଙ୍କ ସାଙ୍ଗ ଚନ୍ଦ୍ରମଣି ଟେକିନାହାକେ ମଧ୍ୟ କୁଆଡ଼େ ଗଲେ । ଏଣେ ଯଦୁମଣି ଆଶା ବାନ୍ଧି ବସିଥାନ୍ତି । ରାତି ଅର୍ଦ୍ଧ ହେଲା, ତଥାପି ଉତ୍ତର ଆସିଲା ନାହିଁ ।

ଶଶୀ ଭାରି ଚତୁର ଥିଲା । ସେ ଯଦୁମଣି କପରି ଜଣେ ସାଂଘାତିକ ଲୋକ ତାହା ଲୋକମୁଖରୁ ଶୁଣିଥିଲା । ସେ ଭାବିଲା, ସେପରି ଜଣେ ଧୂର୍ତ୍ତ ହଟିଆ ନାଗରକୁ ଯେବେ ସେ ସନ୍ତୋଷ କରିପାରିବ, ତେବେ ତାର କୌଣସି ପ୍ରଶଂସାମୂଳକ ଲେଖା ଦାଣ୍ଡରେ ପ୍ରଚାରିତ ହେଲେ ସେ ଏଠାକୁ ଅସୁନ୍ଦରୀ ଜାଣି ଗ୍ରାହକ ଆଉ କେହି ଏଠାକୁ ଆସିବେ ନାହିଁ । ଯେବେ ସନ୍ତୋଷ କରି ନ ପାରିବ, ତେବେ ଏକାବେଳେ ବ୍ୟବସାୟ ବନ୍ଦ ହୋଇଯିବ । ଏପରି ଦ୍ୱିବିଧ ଚିନ୍ତାରେ ସେ କ'ଣ କରିବ ଠିକ୍ କରି ନ ପାରି ଠକ ବୁଲିଲା । ତାର ଦାସୀକୁ ରାତି ପାହିବା ଯାଏ ଯେତେବେଳେ ଯଦୁମଣି ଡାକିଲେ, ତାଙ୍କ ପାଖକୁ ପଠାଇ ଦେଇ କୁହାଉଥିଲା—'ଆଜ୍ଞା ଟିକିଏ ଯାଉ' । ସବୁବେଳେ—'ଆଜ୍ଞା ଟିକିଏ ଯାଉ' ।

## ଖଞ୍ଜନାର କରୁଣା—

କାମୋନ୍ମତ୍ତ ଯୁବକ ଦୀର୍ଘ ସମୟ ଅପେକ୍ଷା କରି କରି ହତାଶ ହୋଇ ଜାଣିଲେ ଯେ ଚଢ଼େଇ ପକ୍ଷୀମାନେ ରାବ ଦେଲେଣି । ଆଉ ଘଡ଼ି ଖଣ୍ଡେ ବେଳ ରାତି ପାହିବାକୁ ଥିବ କି ନା ଅସମ୍ଭବ । ତେଣୁ ସେ ଲଜ୍ଜିତ ହୋଇ ଦ୍ରୁତ ଗତିରେ ଗ୍ରାମକୁ ପଳାଇ ଯିବାକୁ ବାଧ୍ୟ ହେଲେ ।

ଖଞ୍ଜନାର ଶୁଦ୍ଧ ଅନୁକମ୍ପା ଲାଭ କରି ସେ କବିତା ଲେଖିଲେ—

'ଜାଣୁ ଜାଣୁ ଖଣାରେ ମୁଁ ପଡ଼ିଲିରେ
ଜଣା ଶୁଣା ସରଣୀ ଯା ଭୁଲିଲିରେ ।'

ଏହି କବିତାରେ ସେ ନିଜର ଜାୟାଙ୍କୁ ରୂପରେ ଯତି-ଜପ-ଧ୍ୱଂସକାରିଣୀ ରସବତୀ ସତୀ ବୋଲି ଚିତ୍ରଣ କରି, ବେଶ୍ୟାକୁ କପଟ ମର୍କଟବଦନା ବଜାରୁଣୀ ଅଣ୍ଡିରା ଚଣ୍ଡୀ ବୋଲି ବର୍ଣ୍ଣନା କରିଛନ୍ତି । ଏହାପରେ ଦୁର୍ଦ୍ଦଶା ସେ କର୍ମଦୋଷରୁ ଲଭିଲେ ବୋଲି ଲେଖିଛନ୍ତି । ('ଚଣ୍ଡୀ କବିତା' ପୃ ୧୨୬ ଷ୍ଠା ଦ୍ରଷ୍ଟବ୍ୟ)

ଯୁବମଦ ବଦେଶୀ ବନ୍ଧୁ ପିତାଜଙ୍କୁ ବଣା କରିଥିବାର ନଜର ରହିଛି । ଉତ୍କଳର ରସବନ୍ତ କବିରାଜ ଜୟଦେବ ତାଙ୍କ ପ୍ରଣୀତ ଗୀତଗୋବିନ୍ଦରେ ଏହି ଯୁବ-ମଦକୁ 'ସାଧାରଣ-ପ୍ରଣୟ' ବୋଲି ଅଭିହିତ କରିଅଛନ୍ତି । କିନ୍ତୁ ସେ ଯେଉଁ ଉପାୟରେ ନାରୀ ଯୁବକକୁ ଏକ ରସରେ ଅଭିଭୂତ କରିବାର ବ୍ୟବସ୍ଥା ଦେଇଛନ୍ତି, ଏ କ୍ଷେତ୍ରରେ ଖଞ୍ଜନା ତାହା ପ୍ରୟୋଗ ନ କରୁଣୁ ବିଧାତାଙ୍କ ବିଚାରରେ ଯୁବା ଯଦୁମଣି 'ମମ ଶିରସି ଦେହି ପଦ ପଲ୍ଲବ ମୁଦାରମ୍' ବୋଲି ପ୍ରଣିପାତ ହୋଇଗଲେ । ଫଳରେ ସବୁ ଦୁଃଖ, ସବୁ ଭେଦ, ସବୁ ଦୁଶ୍ଚିନ୍ତା ଦୂର ହୋଇଗଲା ।

ପାଞ୍ଚ ବର୍ଷ ପରେ ଏ ଘଟଣା ଘଟିବାର ଅଳ୍ପଦିନ ପରେ ପୁଣି ଖଞ୍ଜନା ଗର୍ଭବତୀ ହେଲେ । ଏଥର ତାଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହେଲା । ଯଦୁମଣି ତାର ନାମ ଦେଲେ 'କପିଧ୍ୱଜ' । ସେ ରଥକର ଥିବାରୁ, ଜାତିରେ ବଢ଼େଇ ଥିବାରୁ ଶିଶୁର ନାମ ଜଗନ୍ନାଥଙ୍କ ରଥର ଧ୍ୱଜ ନାମରେ ନାମିତ କଲେ ।

## ୧୮୧୭ ବିପ୍ଳବ—

କେଉଁ ସଜରେ ଏ ମଧ୍ୟରେ ସାତଟି ବର୍ଷ ଗତ କରିଗଲା । ଏହି ସମୟରେ ୧୮୧୭ ଶେଷ ଆଡ଼କୁ ଯଦୁମଣି ରାଷ୍ଟ୍ରବିପ୍ଳବୀ ମହାନ୍ ଜନନାୟକ ବକ୍ସି ଜଗବନ୍ଧୁ ବିଦ୍ୟାଧର ଏବଂ ଦେବାନ କୃଷ୍ଣଚନ୍ଦ୍ରଙ୍କୁ ବାଉଁଶିଆପଡ଼ା ନିକଟସ୍ଥ ଏକ ଅରଣ୍ୟରେ ଦେଖିପାରି ରାଜା ବନାୟକଙ୍କୁ ଜଣାଇ ପ୍ରଭୂତ ଅର୍ଥସାମଗ୍ରୀ ସାହାଯ୍ୟ କରିଥିଲେ । ରଣପୁର ରାଜା ବଜ୍ରଧର ନରେନ୍ଦ୍ର ମଧ୍ୟ ସାହାଯ୍ୟ ଦେଉଥିଲେ । ଇଂରେଜ କମ୍ପାନୀ ସରକାର ଏହାର ସନ୍ଧାନ ପାଇ ପାରି ନ ଥିଲେ । ତତ୍ପରେ ବକ୍ସି ବାଣପୁର ଅରଣ୍ୟ ମଧ୍ୟକୁ ଯିବାରୁ ସେଠାକୁ ମଧ୍ୟ ଖାଦ୍ୟ, ବସ୍ତ୍ର, ନାନା ଉପଢୌକନ ଯାଉଥିଲା । ଥରେ ଯଦୁମଣି ଏ ସବୁ ନେଇ ଯିବାବେଳେ ଧରା ପଡ଼ିଲେ । କିନ୍ତୁ ଚତୁର ଯଦୁମଣି ଭଗବତୀଙ୍କ ନିକଟକୁ ବଳି ପକାଇବାକୁ ଯାଉଛନ୍ତି ବୋଲି କହି ହଠାତ୍ ଦୁଇଟି ବୋଦା ଇଂରେଜ ଭେଦିଆଙ୍କୁ ଦେଖାଇ ଖଲାସ ପାଇଥିଲେ । ଏହି ଘଟଣାରେ ରଣପୁର ଏବଂ ନୟାଗଡ଼ ରାଜାଙ୍କୁ ଘନ ଘନ ଧମକ ଦିଆଗଲା । ତା ହେଲେ ନାନା କୌଶଳରେ ଯଦୁମଣିଙ୍କଦ୍ୱାରା ସାହାଯ୍ୟ ଦିଆ ଯାଉଥିଲା ।

ଅନନ୍ତର ସ୍ପଷ୍ଟଭାଷୀ ଯଦୁମଣିଙ୍କ ଯୋଗୁଁ ରାଷ୍ଟ୍ରରେ କର୍ମଚାରୀମାନଙ୍କର ଦୌରାତ୍ମ୍ୟ ଏକାନ୍ତ ଲଘୁ ହୋଇଗଲା । ରାଜା ସମସ୍ତ ବିଶ୍ୱାସ, ସମସ୍ତ ସ୍ନେହ ଦେବା ପୂର୍ବରୁ ଥରେ ତାଙ୍କ ଉପରେ କ୍ରୁଦ୍ଧ ହୋଇ ମୁହଁ ନ ଦେଖିବାକୁ ଇଚ୍ଛା କରିଥିଲେ । ଘଟଣା କିଛି ବଡ଼ ନ ଥିଲା । ରାଜା ରାଜପରିବାର ସହିତ ମକର ସଂକ୍ରାନ୍ତିରେ ରାଜ୍ୟର ବଡ଼ ନଈ କୁସୁମୀ ନଦୀରେ ମକର ବୁଡ଼ ପାରିବାକୁ ତାଙ୍କୁ ବହୁଦିନ ପୂର୍ବରୁ ଅନୁରୋଧ କରିଥିଲେ । କିନ୍ତୁ ଯଦୁମଣି ପିତୃଶ୍ରାଦ୍ଧ କରିସାରି ରଣପୁରରୁ ତାଙ୍କ ମାମୁଁଘରର ଏକ ଶୁଭ-କାର୍ଯ୍ୟରେ ରଜାଙ୍କୁ ନ ଜଣାଇଁ ଚାଲିଯିବାରୁ ଉକ୍ତ ଉତ୍ସବରେ ଯୋଗଦେଇ ପାରି ନ ଥିଲେ । ରାଜାଙ୍କର ମନରେ ଅନ୍ୟ ଏକ ଚିନ୍ତା ଏହି ମକର ବୁଡ଼ ସେଦିନ

ଉଠୁଥିଲା । ରାଣୀ ଯଦୁମଣିଙ୍କ ସହଯୋଗରେ ଆସିଗଲେ । ସେହି ଆଳରେ ସେ ଖଞ୍ଜନାଙ୍କ ସହିତ ଭେଟ ହୋଇପାରିବେ । କିନ୍ତୁ ଚତୁର ଯଦୁମଣି ଉଦ୍ଦେଶ୍ୟ ବୁଝି ବାଟ କାଟିଥିଲେ । ଫଳରେ ରାଜାଙ୍କର ଅଭିମାନ ଏବଂ କ୍ରୋଧ ବଢ଼ିଗଲା । ଯାହା ବା ନ ବଢ଼ନ୍ତା ତାହା ତାଙ୍କର ଦ୍ୱେଷୀରାଜକର୍ମଚାରୀମାନେ ଅଧିକ ବଢ଼ାଇ ଦେଲେ । ପୂର୍ବୋକ୍ତ ପଣ୍ଡିତମାନେ ଯେଉଁମାନେ ଚକ୍ରପାଣିଙ୍କୁ ଭୟକରି ପଳାଇଥିଲେ, ସୁଯୋଗ ପାଇ କହିଲେ ଯେ, ଆଜ୍ଞା ! ମଣିମା, ତମ୍ପ ସର୍ପ ସେ । ଦିନେ ଆପଣଙ୍କୁ ଚଢ଼ି ଗୋଡ଼ାଇ କାମୁଡ଼ି ଦେବ । ସେ ଲୋକଠି କି ବିଶ୍ୱାସ, କି ଶ୍ରଦ୍ଧା, କି ମର୍ଯ୍ୟାଦା ଜ୍ଞାନ ଅଛି ତାର ? ପାରିଷଦମାନେ ସାକ୍ଷ୍ୟ ଦେଲେ ଯେ—ଆଜ୍ଞା ! ଗ୍ରାମରେ ତାର କାହା ସହିତ ପଡ଼େ ନାହିଁ । ସମସ୍ତଙ୍କୁ ହାଡ଼ ଚଢ଼େଇ ସେ ଜବାବ ଦେବ । ଅତି ଦୁଷ୍ଟ ଲୋକକୁ ମଣିମା କୋଳ଼ାଇ ସ୍ଥାନ ଦେବା ହୋଇଛନ୍ତି । ଦୁଗ୍ଧ ପିଆଇ ସର୍ପ ପୋଷିବା ହୋଇଛନ୍ତି । ଫଳେନ ପରିଚୀୟତେ ।

ଏହା ସତ୍ତ୍ୱେ ରାଜା ଭିତରେ ଭିତରେ ତାଙ୍କ ପ୍ରତି ଶ୍ରଦ୍ଧା ତ୍ୟାଗ କରି ନ ଥିଲେ । ତାଙ୍କ ପ୍ରତ୍ୟୁତ୍ପନ୍ନମତିତା, ପାଣ୍ଡିତ୍ୟ, ବିଶେଷରେ ସ୍ୱାଧୀନ ମନୋଭାବ ପ୍ରତି ସେ ଏକାନ୍ତ ପ୍ରଲୋଭିତ ଥିଲେ । କେତେ ଦିଗରୁ ଦେଖିଲେ ରାଜା ହରିହରଙ୍କ ଏକାନ୍ତ ସାଧୁ ଏବଂ ମହାନୁଭବ ପୁରୁଷ ଥିଲେ । ସେ କାଳରେ ଉହା ଆଜ ଆମକୁ ତାଙ୍କ ଚରିତ୍ର ଆଲୋଚନା କରିବାକୁ ହେବ । ବଇଜୀ ସୁନ୍ଦରୀ ବଧୂ ପ୍ରତି ସେ ଯେଉଁଭଳି ପ୍ରଲୋଭିତ ହୋଇ ତାକୁ ଫୁଲ ବେଣ୍ଟ କରି ଶ୍ରୀଅଙ୍ଗରେ ରଖିଲେ, ତାହା ଏ ଯୁଗ ପ୍ରତି କଳଙ୍କଜନକ ହେବ ସତ୍ୟ, କିନ୍ତୁ ସେକାଳେ ତାହା ଗୌରବର ବିଷୟ ହେଉଥିଲା । ବଧୂ ମଧ୍ୟ ତାହା ନିଜର ସୌଭାଗ୍ୟମଣି ପ୍ରୌଢ଼ ନୃପତିଠାରେ ନିଜର ସମସ୍ତ ଦେହ, ମନ, ଜ୍ଞାନ ଅର୍ପଣ କରି ଦେଇଥିଲା । ପୁଣି ଅନ୍ୟ ସ୍ୱାଧୀନମନା ଜଣେ ବୀର ପୁରୁଷ ମଧ୍ୟ ଏହି କାମ ପଙ୍କରେ ଆହୁତି ଦେବାକୁ ପ୍ରବୃତ୍ତ ହୋଇଥିଲେ । ମେବାର ରାଣା ବାପ୍ପାରାଓଙ୍କର ଏକଶତ ରାଣୀ ବା ଏକପତ୍ନୀବ୍ରତଧାରୀ ରାମଚନ୍ଦ୍ରଙ୍କ ପିତା ଦଶରଥଙ୍କର ସାତଶହ ପଚାଶ ରାଣୀ ସ୍ତ୍ରୀ ସେତେବେଳେ ମଧ୍ୟ ପୂର୍ବପର ସତେଜରେ ସମାଜ ଉପରେ ପ୍ରତିପତ୍ତି ଧରି ରହିଥିଲା ।

ସେ ଯାହା ହେଉ ହରିହର ମାନ୍ଧାତା ବଢ଼େଇ ଯୁବକ ଯଦୁମଣି ମହାପାତ୍ରଙ୍କୁ ଜଣେ ମନସ୍ୱୀ, ବୀର, ଶୃଙ୍ଗାରୀ, ସ୍ପଷ୍ଟଭାଷୀ, ନବ ନବ ଉନ୍ମେଷଶାଳୀ, ବହୁ ବିଦ୍ୟା, ଯଶସ୍ୱୀ ତ୍ୟାଗ ସ୍ୱାଧୀନମନା କବି ବୋଲି ସମ୍ମାନ ଦେବାରେ କଦାପି କୁଣ୍ଠିତ ହୋଇ ନ ଥିଲେ । ଏପରି ଗୁଣ ଗରିମାର ଗ୍ରାହକ ରାଜ ସମାଜରେ ଅଦ୍ୟାବଧି ବିରଳ ଥିବାର ଜଣାଯାଏ । କବିଦ୍ୱୟଙ୍କ ପ୍ରତି ଯେ ଲାଞ୍ଛନା ଦିଆଗଲା ତାହା ତାଙ୍କ ନିଜ କଥାରେ ନ ଥିଲେହେଁ ଯାହା ଲୋକ ମୁଖରେ ପ୍ରଚଳିତ ଅଛି ଏବଂ ଯାହା ମାନବିକ ଦୃଷ୍ଟିକୋଣରୁ ଅନୁମାନ କରାଯାଏ, ତାଙ୍କୁ ଜନ୍ମମ ଭାବରେ ପଶୁପରି ଆଘାତ ଦିଆଯାଇଥିଲା । କିନ୍ତୁ ହରିହର ଯଦୁମଣିଙ୍କର ସମସ୍ତ ଦୌରାତ୍ମ୍ୟ ସହ୍ୟ କରିଥିଲେ । କେବେହେଲେ କୌଣସି ଅସଦାଚରଣ କରି ନ ଥିଲେ ।

ଖଞ୍ଜନା ଏକାନ୍ତ ରୂପସୀ ଥିବାରୁ ତାଙ୍କୁ ଦେଖିବାର ଲୋଭ ରାଜା ଛାଡ଼ିପାରି ନ ଥିଲେ । ତୁମ ସ୍ତ୍ରୀ ନା କ'ଣ, ସେ କପରି କୋଳି ରାଜା ପଚାରନ୍ତେ ଯଦୁମଣି ଯେଉଁ ଗର୍ବିତ ଉତ୍ତର ଦେଇଥିଲେ (ଦେଖ, ହାସ୍ୟରଚକ ପୃ.୩୬) ତାହାଦ୍ୱାରା ରାଜା ମଧ୍ୟ ଅଧିକ ଆକର୍ଷିତ ହୋଇ ପଡ଼ିଥିଲେ । ଥରେ ଅଶ୍ୱପୃଷ୍ଠରେ ଛକ ଛକ ଦେଖିବାର ସୁଯୋଗ ଲଭି 'ଜାହାଜ ପରି ହୋଇଛି' କହନ୍ତେ ଯଦୁମଣି ସ୍ତ୍ରୀଙ୍କଠାରୁ ତାହା ଶୁଣି, ତୁରନ୍ତ ବାହାରକୁ ଯାଇ ନିଜର ମଧ୍ୟମ ଉରୁ ଦେଖାଇ ଡାକିଥିଲେ—'ଜାହାଜ ଦେଖିଗଲେ ମିନା, ମାସ୍ତୁଲ ଦେଖିଲେ ନାହିଁ ଯେ ?'

## ରାଜା ବିନାୟକଙ୍କ ସହିତ ଅପତ୍ତି—

ପୁଣି ଥରେ ରାଜା ପରିହାସରେ କହିଥିଲେ—ଯଦୁମଣି ! ଚାଲ ତୋ ଝାଙ୍କୁ ଯିବା । ଯଦୁମଣି କ'ଣ ଛାଡ଼ିବା ଜନ୍ତୁ ! ସେ କହିଥିଲେ—ତୋ ରାଣୀ ସାର ଆସେ । ଏପରି ଦୃଢ଼ ମନ୍ତବ୍ୟ ବହୁବାର ଦେଇ ମଧ୍ୟ ସେ ବିନାୟକଙ୍କର ପ୍ରିୟପାତ୍ର ଶେଷଯାଏ ରହିଥିଲେ । ଏଠାରେ ପ୍ରଶ୍ନ ଉଠିପାରେ ଏବଂ ଏକ କଥା କୁହାଯାଇ ପାରେ, ଆଠଗଡ଼ ନରପତି ବାଲୁକେଶ୍ୱର ହରିଚନ୍ଦନ ଜଗଦେବ ନିଜର ଅଶେଷ ସୁନ୍ଦରୀ କନ୍ୟା କଳାବତୀଙ୍କୁ କବିସୂର୍ଯ୍ୟଙ୍କ ନିକଟରେ ଶିକ୍ଷା ଦିଆଉଥିଲେ । କିନ୍ତୁ ଶୁଣାଯାଏ, ଜଗଦେବ ନିଜେ ରାମଙ୍କ ପରି ପବିତ୍ର ଏକନିଷ୍ଠ ରହିଥିଲେ । ତା ଯଦି ସତ୍ୟ ହୁଏ, ତାଙ୍କ ପୁତ୍ର ଏକାନ୍ତ ମଦ୍ୟପ, ପରଦାରାସକ୍ତ, କାମାର୍ତ୍ତ ଥାଇ ନିଜର ରାଜ୍ୟ କଦର୍ଯ୍ୟରେ ଉଡ଼ାଇ କପରି ହରାଇଲେ ? ବାଲୁକେଶ୍ୱର ୧୮୫୧ରେ ମୃତ୍ୟୁ ଲଭିଲେ । କିନ୍ତୁ ୧୮୬୪ରେ ଆଠଗଡ଼ ନିଲାମ ହୋଇଗଲା । ତେଣୁ କବିସୂର୍ଯ୍ୟଙ୍କର ଜୀବନଚରିତରେ ଯାହା ଲିଖିତ ହୋଇଛି, ତାହା ପ୍ରାଚୀନ ଧର୍ମପରାୟଣ ସନ୍ନୀତି ପରିପୋଷକ ପଣ୍ଡିତଙ୍କଦ୍ୱାରା ଅନେକ କୁତ୍ସିତ ଲୁଚାଇ ଦିଆଯାଇଛି ଅଥବା ସେପରି ଚିତ୍ର ଦେବାରେ ପୂଜ୍ୟ ଲେଖକଙ୍କର ସାମର୍ଥ୍ୟର ଅଭାବ । କବିସୂର୍ଯ୍ୟଙ୍କ କବିତାମାନ କେବଳ କାମୋଦ୍ଦୀପକ, କେବଳ ରତିକ୍ରିୟାର ସମ୍ଭୋଗ ରସରେ ବଢୁରି ରହିଛି । ଚମ୍ପୂର କବିତାମାନଙ୍କର ପ୍ରଥମ ରଚନାରେ ଯେଉଁ ଉପାରତ ବର୍ଣ୍ଣିତ ଅଛି, ତାହା ଜଣେ ଅଚିହ୍ନା ଯୁବତୀ ଜଣେ ଅଚିହ୍ନା ଯୁବକକୁ ଦେଖି ଦେଖି ପ୍ରଲୋଭିତ ହୋଇ କହିପାରୁଛି । ଜୟଦେବଙ୍କ ଚିତ୍ରଣ ଏପରି ମୁକୁଳା ନୁହେଁ । ପୀନ ପୟୋଧରର ପରିସରକୁ ମର୍ଦ୍ଦନ ଲାଗି କରଯୁଗର ଚଞ୍ଚଳତାଠାରୁ ଯୁବତୀର ଏ ଉକ୍ତି ଏକାନ୍ତ ମାଦକ ଏବଂ ଉଲଗ୍ନ ଅଟେ । ତେଣୁ ସେ ଜୀବନକଥାର ପ୍ରକୃତ ଚିତ୍ର ଦିନେ ପ୍ରକାଶିତ ହେବ ବୋଲି ଆଶା କରିବା ସମୀଚୀନ ବୋଲି ମନେ ହୁଏ ।

ଯଦୁମଣି ରାଜା ବିନାୟକଙ୍କର ଆଉ ଦେଖା ପାଇପାରିଲେ ନାହିଁ । ଫାଲ୍‌ଗୁନ ଦୋଳବେଳେ ମଧ୍ୟ ସେ ସୁଯୋଗ ଅପ୍ରାପ୍ୟ ହେଲା । ଚନ୍ଦନ ଯାତ୍ରା ଆସିଲା । ତାଙ୍କର ରଚିତ ମୂର୍ତ୍ତି ସବୁଠି ବ୍ୟବହୃତ ହେଲା । ଦୋଳବେଳେ ଗୋବିନ୍ଦଙ୍କ

ଡୋଳ, ପିଢ଼ା, ସମଲ୍ଲାକାର ମୁଣ୍ଡମାନ, ବାସନ୍ତୀ ପର୍ବରେ ଷଷ୍ଠୀ ଦେବୀ ମୂର୍ତ୍ତିମାନ, ଚନ୍ଦନ ଯାତ୍ରାରେ ଚଉଦୋଳର ନିମ୍ନାଂଶମାନ ତାଙ୍କଦ୍ୱାରା ନିର୍ମିତ ଏବଂ ଚିତ୍ରିତ ହେଲା। ଜ୍ୟେଷ୍ଠ ଆସିଲା। ମଝେ ମଝେ ସେ ଶ୍ୱଶୁର ଘରକୁ, ମାମୁଁ ଘରକୁ, ବନ୍ଧୁବାନ୍ଧବ ଘରକୁ ଯାଇ ସମସ୍ତ ଅନ୍ତବାଞ୍ଛିତ କରି ବୁଲିଲେ। ଯଦୁମଣି ତଥାପି ଦମ୍ଭରେ ଥାନ୍ତି। ଖଞ୍ଜନା ସାହସ ଦିଅନ୍ତି ଯେ, ଜଗନ୍ନାଥେ ଆମର ଏ ବିରୋଧର ମୀମାଂସା କରିବେ। ଅଣସର ଆସିଲା। ଅଣସର ଭିତରେ ଯଦୁମଣି ପଶିଲେ। ବଡ଼ଅଁ ଗୁଣ୍ଡିଚାକୁ ବଜେ ହେଲେ।

ରଥ ସାଥିରେ ରାଜା ବଜେ ହେବାର କଥା। ଛେରା ପହରା ପୁରୋହିତଙ୍କଦ୍ୱାରା କରାହେଲା। ସେ ଯଦୁମଣି ମୁହଁ ଚାହିଁବେ ନାହିଁ। ଯଦୁମଣିଙ୍କର ଶତ୍ରୁମାନେ ଏହି ସୁବର୍ଣ୍ଣ ଅବସରରେ ତାଙ୍କର ଜାଗିର, ଖଞ୍ଜା ସମସ୍ତ କାଟିଦେବାକୁ ରାଜାଙ୍କୁ ପ୍ରବର୍ତ୍ତାଉଥାନ୍ତି। କିନ୍ତୁ ରାଜା କିଛି ଶୁଣନ୍ତି ନାହିଁ। ଯାତ୍ରା ସ୍ୱୟଂ ପାଟ ମହାଦେଈ ଦେଖିବେ। ତେଣୁ ରାଜା ନିଶ୍ଚୟ ବଜେ ହେବେ। ଶୁଣାଗଲା ଯେ ଯଦୁମଣି ତାର କାର୍ଯ୍ୟ ସାରି ବୁଲିଗଲେଣି। ତେଣୁ ତରତରରେ ଯାତ୍ରାବିଧି ଆରମ୍ଭ କରି ରଥ ଭିଡ଼ା ଆରମ୍ଭ କରି ଦିଆଗଲା।

ବୁଦ୍ଧିମାନ ଯଦୁମଣି ତାଙ୍କର ପରମ ପୂଜ୍ୟ ରାଜଗୁରୁଙ୍କ ଗୃହରେ ଲୁଚି ରହି ତାଙ୍କର ଗୋଟିଏ ଅଲେଖା ବାର୍ଦ୍ଧକ୍ୟ ପାଣ୍ଡର ଡୋଳିକୁ ମୁଣ୍ଡାଇ ସଜାଇ ଥିଲେ। ରଥ ସହିତ ଚହକାର ମଧ୍ୟ ସିଂହାର ବଧ୍ ଅଛି। ରଥ ମଧ୍ୟସ୍ଥଳରେ ଯେଉଁଠି ରହିବ, ସେଠି ପ୍ରଭୁଙ୍କ ସିଂହାର ହେବ। ଲୋକଭିଡ଼ରେ ଦର୍ଶନ ଯୋଗ୍ୟ ସିଂହାର ଲାଭହୁଏ। ତେଣୁ ମୁହୂର୍ତ୍ତକୁ ସିଂହାର ବଢ଼େ।

ଯାତ୍ରା ଚାଲିଛି। ରାଜା ଛନ୍ତଶା ନିଯୋଗରେ ବଜେ ହେଉଛନ୍ତି। ଦେଖାଗଲା ଯେ ଗୋଟିଏ ଡୋଳି ଯାତ୍ରା ମଧ୍ୟରେ ଚାଲିଛି। ରାଜା ପାର୍ଶ୍ୱସ୍ଥ ପାରିଷଦଙ୍କୁ ପଚାରିଲେ —ଏ କି ରଙ୍ଗ ହେ ? ପାରିଷଦ ନୃସିଂହ ଚ୍ୟାଉ କହିଲେ—ଆଜ୍ଞା, ବୋଲଗଡ଼ର ଗୋଟେ ପାଗଳ ହନାକେତେ ହେବ ଆସି ଏଠି ରହିଛି; ତାରି ଏ କାଣ୍ଡ। ଅନ୍ୟ ଜଣେ ପାରିଷଦ ତ୍ରିଲୋଚନ ଦାସେ କହିଲେ—ନାଇଁ ହେ !—ସେଇଟା ଭଣସୁରିଆ ସୁନାଖଳାର ବାଉସ ଟୋକାଟେ। କେତେ ରଙ୍ଗ ଦେଖେଇବ ତା—କ'ଣ ଦେଖାଇଲାଣି କି ?

## ରଥଯାତ୍ରାରେ ଡୋଲି ଚାଲିଛି—

ଏ ଡୋଲିର ଗତି ଦେଖି ହଜାର ହଜାର ଯୁବତୀ ହସି ଗଡ଼ି ଯାଉଛନ୍ତି— ଏ ମାଲୋ ! ଜଗନ୍ନାଥେ ଡୋଲିଟାଏ କ'ଣ ଚଳାଉଛନ୍ତି ଲୋ ମା ? ଛନାପୁକ ଜାଣନ୍ତି, ସାରୁ ଭିତର ମାରୁ କଥା। ଅନ୍ଧ ଧୃତରାଷ୍ଟ୍ରକୁ କନ୍ୟା ନାହିଁ କି ଉଆଁଷୀ କନ୍ୟା ଗାନ୍ଧାରୀକୁ ବର ନାହିଁ। କାଲି ମା ତା କାଳି ପୁଅର ଠାଉ କ ନ ଜାଣେ ? ନୃସିଂହଙ୍କୁ ଗୁମୁଁ

ଆଜ୍ଞା ହେଲେ—ଏ କଥାଟା ମନରୁ ଗଢ଼ି କହିଲ, ନା ଶୁଣିଥିଲ ? ତ୍ୟାଗଙ୍କୁ ଡକାଇ ଖାଇଲ । ମିଛ ତ ସେ କହୁଛନ୍ତି । ଯଦୁମଣି ନଟ ସେ ଜାଣନ୍ତି । ନ ଜାଣିଲେ ବି ଜାଣନ୍ତି । କାଳେ କୋଉ କଥା ଥାଏ ଭାବି ଶୁକଳଗାଡ଼ିଆର ବିଲୋଚନ ଦାସେ ଜନଗହଳକୁ ଖସିଗଲେ ।

ରାଜା ପଚାରି ଚାଲିଲେ ଯାଉ ଯାଉ ପାଖ ଲୋକଦ୍ୱାରା ଜାଣିଲେ ଯେ ସେ ଅନ୍ୟ କେହି ନୁହନ୍ତି—ଯଦୁମଣି । ଗୁମ୍ଫ ମୁହଁ ରହିଁବେ ନାହିଁ କହିଥିବାରୁ ଢୋଲ ଘୋଡ଼ାଇ ହୋଇ ମୁଖ ଲୁଚାଇ ଯଦୁମଣି ନିଜର କର୍ତ୍ତବ୍ୟ କରିଚାଲିଛନ୍ତି ।

ମୁଖା ତ୍ୟାଗ କରି ନିକଟକୁ ଆସିବାକୁ ରାଜା ଆହ୍ୱାନ କଲେ । ସମଗ୍ର ଜନତାର କୋଳାହଳ ସ୍ଥଗିତ ହେଲା । କେହି କେହି ଯଦୁମଣିଙ୍କ ଅନିଷ୍ଟ ଆଶଙ୍କା ଭାବିଥିଲେ ଯେ ନିଶ୍ଚୟ ଭୂରନ୍ତ ମୁଣ୍ଡକାଟ ଶାସ୍ତି ହୋଇଯିବ । ତା ହୋଇଗଲେ ବା କିଏ ଶୁଣିବ ? ଭୟରେ ଜନତା ନିର୍ବାକ ନିସ୍ପନ୍ଦ ହୋଇଥାନ୍ତି । ଭିଡ଼ ମଧ୍ୟରୁ ବାହାରି ଯଦୁମଣି ମୁଖନତ କରି ଦୂରରୁ କରଯୋଡ଼ି ଯୋଡ଼ି ରାଜାଙ୍କୁ ଏହି ସ୍ତବ ଶୁଣାଇଲେ—

ଅମଳ କମଳ ଦଳ ଲୋଚନ
କୁଣ୍ଡଳାଳଂକୃତ ଶୁଭ୍ର ଦର୍ଶନ
କଥ୍ୟ କଥନକୁ ଦୃଢ଼ ସଂଯମ
ଅତ୍ୟୁଚ୍ଚ ବଚନ କି ବଘଟନ
ନବଦୁର୍ଗବଣ
ଇଷ୍ଟ ଦେବତା ପରି ଆଚରଣ ।

ରାଜା ସେଦିନ ରାଜବେଶରେ ବାହାରିଥିବାରୁ ତାଙ୍କର ସୌନ୍ଦର୍ଯ୍ୟ ପ୍ରକୃତରେ ଅତ୍ୟନ୍ତ ମନୋହର ଦେଖାଯାଉଥିଲା । ତେଣୁ କବି ତାଙ୍କର ନେତ୍ରକୁ ଅମଳ କମଳ ଦଳ ବୋଲି ବର୍ଣ୍ଣନା କଲେ । ସେ ପ୍ରକୃତରେ ମଧ୍ୟ ପଙ୍କଜପତ୍ର-ନେତ୍ର ଥିଲେ । ସେଦିନ କୁଣ୍ଡଳ ଧାରଣ କରିଥିବାରୁ କୁଣ୍ଡଳାଳଂକୃତ କହିଲେ । ତା ପରେ କହିଲେ କଥାମାନ ଭଲରେ, ପାଖରେ ସବୁ ଡକାଇ ସନ୍ତୋଷ ଦେଇ କଥା କହନ୍ତି । ଆପଣ କିନ୍ତୁ ଠିକଏ କେଉଁ କଥାରେ ବିଘଟନ ବା ବିରୋଧ ଆସିଗଲେ ତୁମର ଚରିତରେ ବଚନ ଅତ୍ୟୁଚ୍ଚ ଦେଖାଯାଏ । ହେ ନବଦୁର୍ଗବଣ ! ତୁମର ଇଷ୍ଟ ଦେବତା 'ବାଉରୀ' ଅଟନ୍ତି । ତୁମ୍ଭେ ମୂର୍ଖ, ଅଶିକ୍ଷିତ, ଅସଭ୍ୟ ବାଉରୀ ପରି ଏପରି ଆଚରଣ ଦେଖାଇବା କ'ଣ ସମୀଚୀନ ? ଏହା ଏକଜାତିଆ ସ୍ୱଭାବ ଅଟେ ।

ରାଜା କବିତାଟି ଶୁଣି ନିଜର ତ୍ରୁଟି ସମ୍ପର୍କି ଗୋଟିଏ ପୁଷ୍ପମାଳ ବେକରୁ କାଢ଼ିକରି ତାଙ୍କ ଗ୍ରୀବାକୁ ଲକ୍ଷ୍ୟ କରି ଫୋପାଡ଼ିଦେଲେ । ବଦିଷ୍ଣୁ ସେ, ଲକ୍ଷ ତ୍ୟୁତ ହେବାର ନୁହେଁ । ତାହା ଈଶ୍ୱରଙ୍କ ଦ୍ୱୈଷଣ ର ଦାନ । ଯେତେବେଳେ ଫୁଲମାଳଟି କବିମଣି ଯଦୁମଣିଙ୍କ ମୁଣ୍ଡରେ ସାମାନ୍ୟ ନ ଅଟକି ବେକରେ ପଡ଼ିଗଲା,

ସେତେବେଳେ ଅଶ୍ରୁତ ନରନାରୀ ଏପରି ଆନନ୍ଦ ଧ୍ୱନି କଲେ, ଯାହା କେବେ ଇତିହାସରେ ଘଟିଛି ବୋଲି କହିହେବ ନାହିଁ ।

ଏପରି ରାଜସମ୍ମାନ କାଞ୍ଚିଜେମା ବଶସୁନ୍ଦରୀ ଟଦ୍ମାବତୀଙ୍କ ଜୀବନରେ ଥରେ ଘଟିଥିଲା । ତାଙ୍କ ତ୍ରଯ୍ୟୀ ରାଜତିଳକ ବଜାଧିରାଜ ପୁରୁଷୋତ୍ତମ ତାଙ୍କୁ କୋଟି ଜନତା ସମକ୍ଷରେ କୋଳାଗ୍ରତ କରିଥିଲେ ।

## ଅତୁଳନୀୟ ସମ୍ମାନ—

ଦରିଦ୍ର ଶୂଦ୍ର ଜାତିର କବି ଭାଗ୍ୟରେ ଏପରି ମର୍ଯ୍ୟାଦା କପରି ଯେ ଆସିଲା, ଭାବି ହୁଏ ନାହିଁ । ବିନାୟକ ! ତୁମେ ମଧ୍ୟ ଥିଲ ଜଣେ ରାଜତିଳକ । ତୁମକୁ ଅଯୁତ ଜନତା ମଧ୍ୟରେ ଅପମାନ ଦେଇ ତୁମର ଦୋଷ ପ୍ରକ୍ଷାଳନ କରି ମଧ୍ୟ ତୁମଠୁ ସମ୍ମାନ ପାଇଛି କବି । ଏ ଚିତ୍ର ପୃଥିବୀର କବିସମାଜରେ ଅତି ଅଭିନବ । ତୁମ୍ଭେ ମାନବ ଜାତିର ପ୍ରକୃତ ନରପତି ଥିଲ ଏବଂ ଦରିଦ୍ର ଯଦୁମଣି ମାନବ ଜାତିରେ ପ୍ରକୃତ ମାନବ ଥିଲେ । ଏ ଉଦ୍ଦାମ ସାହସିକତା ସବୁ ଯୁଗରେ, ସବୁ ଦେଶରେ, ସବୁ ସମାଜରେ ଆଦର୍ଶ ସ୍ଥାନୀୟ ।

ରାଜାଙ୍କ ନିର୍ଦ୍ଦେଶରେ ଏକ ହସ୍ତୀ ଆଗେଇଗଲା । ଯଦୁମଣିଙ୍କୁ ପୃଷ୍ଠରେ ସ୍ଥାନ ଦେଇ ସେ ମଧ୍ୟ ଧନ୍ୟ ହେଲା । ତାର ନାମ ଥିଲା ଐରାବତକ । ମୈନାକ ବିନ୍ଧ୍ୟ, ହିମବାନ, ମହେନ୍ଦ୍ର, ମାଲ୍ୟବନ୍ତ ଆଦି ହସ୍ତୀଗଣ ଐରାବତକର ଏ ଗୌରବରେ ଲଜ୍ଜା ମଣୁଥିଲେ । ରାଜାଙ୍କ ପ୍ରଶଂସା ଚଉଦିଗରେ ବିଚ୍ଛୁରିତ ହୋଇଗଲା ।

ଏ ଘଟଣାପରେ ରାଜାଙ୍କର ସେ ଏକାନ୍ତ ଆତ୍ମୀୟ ହୋଇଗଲେ । ଦିନକର ଘଟଣାରେ ରାଣୀ ସ୍ୱତଃପ୍ରବୃତ୍ତ ହୋଇ ତାଙ୍କୁ ସାକ୍ଷାତ ଦେଲେ । କିନ୍ତୁ ଖଞ୍ଜନା କଦାପି ରାଜଦ୍ୱାରକୁ ଆସିବାକୁ ନିଷେଧ କଲେ । ଥରେ ରଥଯାତ୍ରା ସମୟରେ ଗୁଣ୍ଡିଚା ମଣ୍ଡପରେ ଏକ ନିରୂପିତ ସ୍ଥାନରେ ଗ୍ରାମର ବୋହୂଝିଅଙ୍କ ସହିତ ଦେବତା ଦର୍ଶନକୁ ଆସି ଖଞ୍ଜନା ପାଟମହାଦେଈଙ୍କୁ ପରିଚୟ ଦେଲେ । ରାଣୀ କୁମୁଦମା ଖଞ୍ଜନାଙ୍କୁ କୁଣ୍ଢାଇ ଧରି କହିଲେ—"ମୁଁ ତୁମକୁ କେଉଁ ଛାଡ଼ିଦେବି ନାହିଁ । ଅନ୍ତ ଗୋପନରେ ନେଇ ଜଆସ ଦେଖାଇ ଆଣିବ ।"

ଖଞ୍ଜନା କହିଲେ—"ଆଜ୍ଞା ! ମୁଁ ଏକାକୀ ମଧ୍ୟ ଯିବାକୁ କୁଣ୍ଠିତ ନୁହେଁ । ତୁମ୍ଭେ ଗ୍ରାମେ ଗ୍ରାମେ ବୁଲନ୍ତୁ, ସେଥିରେ କୌଣସି ଅପବାଦ ହେବ ନାହିଁ । କିନ୍ତୁ ଆମେ ହେଲୁଁ ଗ୍ରାମର ଗରିବ ଲୋକ । ରାଜଦ୍ୱାରକୁ ଯିବାମାତ୍ରେ ଆମ ନାମରେ ଅପବାଦ ରଟିତ ହେବ । ଏହା ସତ୍ୟ ନୁହେଁ କି ?"

ରାଣୀ କୁମୁଦମା କହିଲେ—"ତୁମ ପକ୍ଷରେ ତାହା ସତ୍ୟ ବୋଲି ପ୍ରମାଣିତ ହେବ । କାରଣ ତୁମର ସୌନ୍ଦର୍ଯ୍ୟ ଓ କୋମଳତାରେ ମୁଁ ମଧ୍ୟ ପ୍ରଲୁବ୍ଧ । ତେବେ କପରି ହେବ —ମୋର ପ୍ରତିଜ୍ଞା ହୋଇଛି ଯେ ତୁମ୍ଭେ ଜଆସ ନିଶ୍ଚୟ ଦେଖି ଆସିବ ।"

## ରାଜପତ୍ନୀ ଓ କବିପତ୍ନୀ—

ଖଞ୍ଜନା ନୀରବ ହେଲେ । ବୁଦ୍ଧିମତୀ ବିଦ୍ୟୁଲ୍ଲତା ସାଆନ୍ତାଣୀ କହିଲେ— "ଏହି ଯେଉଁ ସ୍ତ୍ରୀଲୋକ ବର୍ତ୍ତମାନ ଏଠାରେ ଅଛନ୍ତି ସେମାନେ ସମସ୍ତେ ତାଙ୍କ ସାଥିରେ ଯିବେ । ଆପଣ ମଧ୍ୟ ଯା'ରେ ଚାଲିକରି ଯିବାକୁ ଆଜ୍ଞା ହୁଅନ୍ତୁ ।"

ଅଭିନବ ବ୍ୟାପାର ଘଟିଗଲା । ଯାହା କେବେ ଶୁଣା ନ ଥିଲା, ତାହା ମାନବ ସମାଜ ଦେଖିଲେ । ସହସ୍ର ନାରୀ ସମାବୃତା ପାଟମହାଦେଈ କୁମୁଦିନୀ, ଯେ କି ମହାପ୍ରତାପୀ ସିଂହଭୂମିର ପାଟଜେମା, ସେ ପାଦରେ ଚାଲି ବିଜେକଲେ । ଖଞ୍ଜନାଙ୍କ ବେକରେ ହାତଦେଇ ଚାଲିବା ବେଳେ ଜଣାଗଲା ସୁରପତି ଇନ୍ଦ୍ରବନିତା ମହାମହିମା-ମୟୀ ଶଚୀ କେଉଁ ଦରିଦ୍ର ବିଶ୍ୱକର୍ମାର ସ୍ତ୍ରୀକୁ କୋଳରେ ଧରି ବିଜେ କରୁଅଛନ୍ତି । ମହାଦେଈ ତାଙ୍କର ପ୍ରିୟତମା ସଙ୍ଗିନୀ ବଧୂର ପ୍ରଶଂସାରେ ମୁଖର ହୋଇଉଠିଲେ । ସମଗ୍ର ନଗର ପରିକ୍ରମା କରି ଉଆସ ମନ୍ଦିର ଆଦି ଭ୍ରମଣ କରି-ସାରିବା ପରେ ଖଞ୍ଜନା ରାଣୀଙ୍କ ପାଦରେ ପ୍ରଣାମ କରି ଅର୍ପଣ କରି ବିଦାୟ ମାଗିଲେ ।

ରାଣୀ କୁମୁଦିନୀ ଆଜ୍ଞା ହେଲେ—"ଯେଉଁଠୁ ତୁମକୁ ସାଥିରେ ଆଣିଛୁ, ପୁଣି ସେଇଠି ଛାଡ଼ି ଆସିବ । ସେଠାରୁ ତୁମ୍ଭେମାନେ ବଳଦ ଗାଡ଼ିରେ ଯେଝା ଘରକୁ ଯିବ । ମୁଁ ଖମାରମାନଙ୍କୁ ଗାଡ଼ି ବରାଦ କରିଛୁ ।" କିନ୍ତୁ ଏହା ଅଶୋଭନୀୟ ହେବ ଏବଂ ବୃଥାରେ ବହୁ ଖର୍ଚ୍ଚାନ୍ତ ହେବା ଉପରେ ଜୋରଦେଇ ଖଞ୍ଜନା ସମଗ୍ର ନାରୀଙ୍କୁ ସାଙ୍ଗରେ ଧରି ସେଠାରୁ ବିଦାୟ ନେଲେ ।

ଅବଶ୍ୟ ଏହା ପରେ କାଳକ୍ରମେ କବିପତ୍ନୀ ଏବଂ ରାଜପତ୍ନୀ ବହୁ ଘଟଣାରେ ଏକତ୍ର ହେବାର ସୁଯୋଗ ଲଭିଥିଲେ । ରାଣୀଙ୍କ ପ୍ରଦତ୍ତ ରତ୍ନମାଳୀଟି ଖଞ୍ଜନାଙ୍କ ଗ୍ରୀବାରେ ମୃତ୍ୟୁଯାଏଁ ବିରାଜିତ ରହିଥିଲା । ହଠାତ୍ ଏପରି ସୁଟକର ସମୟରେ ଖଣ୍ଡପଡ଼ା ରାଜା ନୃସିଂହ ମର୍ଦ୍ଦରାଜ ଭ୍ରମରବର ରାୟ ଯୋଗିଆପଲ୍ଲୀ ନାମକ ଗ୍ରାମ ନିକଟରେ ଯୁଦ୍ଧବାଦ୍ୟ ବଜାଇ ଉଠିଲେ । ନୃସିଂହଙ୍କ ଜେଜବାପ ବୈରାଗୀ ମର୍ଦ୍ଦରାଜ ଭ୍ରମରବର ଅତ୍ୟନ୍ତ କୁଟ କପଟୀ ଏବଂ ଗୋହମାରୁ ଥିବାର ଶୁଣାଯାଏ । କିନ୍ତୁ ତାଙ୍କ ପୁତ୍ର ମାନାନ୍ଧ୍ର ସିଂହ ପିତାର ଅସଦ୍‌ଗୁଣରୁ ଗୋଟିକର ହେଲେ ଉତ୍ତରାଧିକାରୀ ନ ଥିଲେ । ବୈରାଗୀ ଜାନୋଜୀ ଭୋନ୍‌ସଲଙ୍କ ସହିତ ମିଶି ନରସିଂହପୁର ରାଜା କୃଷ୍ଣଚନ୍ଦ୍ରଙ୍କର ରାଜ୍ୟ ଯେପରି ବୃଥାରେ ଛାରଖାର କରିଥିଲେ, ତାହା ନୟାଗଡ଼ ଲୋକେ ମନେ ରଖିଥିଲେ । ଖଣ୍ଡପଡ଼ା ଲୋକେ ବୃଥାରେ ନୟାଗଡ଼ ଲୋକଙ୍କୁ ପ୍ରହାର କରନ୍ତେ, ଯୁଦ୍ଧ ଲାଗି ଯାଇଥିଲା । କିନ୍ତୁ ସ୍ଥିରଧୀ ବିନାୟକ ନିଜର ପ୍ରିୟତମ କବିଙ୍କୁ ପଚାରିଲେ—ଯଦୁମଣି ! ଏଥିରେ ଆମେ କିପରି କ'ଣ କରିବା ? ଯଦୁମଣି କହିଥିଲେ—ବୃଥାରେ ନରକ୍ଷୟରେ ଲାଗି ନ ହୋଇ ବର୍ତ୍ତମାନ ଉତ୍କଳ ସମ୍ରାଟଙ୍କ କର୍ଣ୍ଣଗୋଚର କରିବା ସମୀଚୀନ । ଯଦୁମଣିଙ୍କର ଧାରଣା ଥିଲା ଯେ ଏବେ ମଧ୍ୟ ଗଜପତି ରାଜା ଉତ୍କଳ ସମ୍ରାଟ ଅଛନ୍ତି ।

କିନ୍ତୁ ଇଂରେଜ କମ୍ପାନୀ—ସରକାରଙ୍କୁ, ରାଜା ଉକ୍ତ ଘଟଣା ଜଣାନ୍ତେ, ଯୁଦ୍ଧ ବନ୍ଦ ହୋଇ ସାକ୍ଷ୍ୟ ନିଆଯାଇଥିଲା । ନୃସିଂହଙ୍କ ନିଜ ପୁତ୍ର ପରମଧାର୍ମିକ ଗୁଣବନ୍ତ ଶ୍ୟାମବନ୍ଧୁ ସିଂହ ଯେ କି ସାମନ୍ତ ଚନ୍ଦ୍ରଶେଖରଙ୍କର ଜନକ ଥିଲେ, ସେ ନିଜ ପିତାଙ୍କ ବିରୁଦ୍ଧରେ ଯାଉଥିଲେ ହେଁ ସତ୍ୟ କହନ୍ତେ ବିବାଦ ନିଷ୍ପତ୍ତି ହୋଇଥିଲା ।

## ରାଜମାତାଙ୍କ ବିୟୋଗ—

ଅକସ୍ମାତ୍ କେତେ ବର୍ଷ ପରେ ରାଜମାତାଙ୍କର ବିୟୋଗ ଘଟିଲା । ରାଜା ତାଙ୍କର ଶୁଦ୍ଧି କାର୍ଯ୍ୟରେ ସହସ୍ର ସହସ୍ର ମୁଦ୍ରା ବ୍ୟୟ କଲେ । ପୁରୁଷୋତ୍ତମରୁ ମହାପ୍ରସାଦ ଆମାନ ହୋଇ ଭୋଜନ ଦିଆଗଲା ଅଜସ୍ର ନରନାରୀଙ୍କୁ । ରାଜମାତା ମୃତ୍ୟୁ ପୂର୍ବରୁ କଷିଆମ୍ବର ଚଟଣୀ ଖାଇବାକୁ ମନ କରନ୍ତେ, ରାଜା ଆମ୍ବ ଲାଗି କଟକ ପଠାଇଲେ । ସେତେବେଳେ ରେଲ ନ ଥିଲା । ଘୋଡ଼ାଗାଡ଼ି ଏକମାତ୍ର ଗତିଶୀଳ ଯାନ ଥିଲା । ବାଲେଶ୍ୱର ବାଟେ ସମୁଦ୍ର ପଥରେ କଲିକତାରୁ ଫଳସବୁ ଆସେ କଟକ । କିନ୍ତୁ ଆମ୍ବ କଞ୍ଚା କମ୍ବା ପାଚିଲା ଆଦୌ ମିଳିଲା ନାହିଁ । ରାଜମାତାଙ୍କର ମୃତ୍ୟୁ ହେଲା । ବ୍ରାହ୍ମଣ ସଭା ଡକାଇ ରାଜା ତାଙ୍କ ମାତୃଦେବୀଙ୍କର ଏହି ଅପୂରଣୀୟ ଆଗ୍ରହ କଥା କହନ୍ତେ ବ୍ରାହ୍ମଣମାନେ ଅଷ୍ଟୋତ୍ତର ଶଏ ସ୍ୱର୍ଣ୍ଣ ନିର୍ମିତ କଷି ଆମ୍ବ ବ୍ରାହ୍ମଣମାନଙ୍କୁ ଦାନ କଲେ ମାତୃଦେବୀଙ୍କର ପରଲୋକରେ ସେ ଶେଷ ଇଚ୍ଛା ପୂରଣ ହୋଇପାରିବ ବୋଲି ବ୍ୟବସ୍ଥା ଦେଲେ । ଯଦୁମଣି କେତେ ବିଷୟରେ ଏକାନ୍ତ ପ୍ରତ୍ୟକ୍ଷବାଦୀ ଥିଲେ । ସେ ଠାକୁରଙ୍କୁ ଚିହ୍ନ କରୁଥିଲେ ମଧ୍ୟ ପ୍ରତିମା ଦେଖି ପରିହାସ କରୁଥିଲେ । ଥରେ ରାଜାଙ୍କ ଦେବାର୍ଚ୍ଚନରେ କହିଥିଲେ—'ହେ ପ୍ରତିମାରୂପୀ କରୁଣାବାରିଧି ! ତୁମ୍ଭେ କେଉଁଠି ଖଡ୍ଗ ଗଡ଼ୁ, କେଉଁଠି ପୁଣି ମୁଣ୍ଡ ହେଉଛ ।'

ବ୍ରାହ୍ମଣମାନେ ସୁନା ଆମ୍ବ ନେଇ ରାଜମାତାଙ୍କ ମୃତ୍ୟୁକାଳୀନ ଆମ୍ବ ପ୍ରତି ଥିବା ବାସନା ନିବାରଣ କଲେ ।

ବିଶେଷରେ ସେତେବେଳେ ପରଲୋକରେ ତାଙ୍କର ବିଶ୍ୱାସ ନ ଥିଲା । କେତେକ ଗୃହୀବାକ୍ ଏତ ପ୍ରତି ଏକ ପ୍ରକାର ସେ ଅକୃଷ୍ଟ ଥିଲେ । କିନ୍ତୁ ନାସ୍ତିକ ନ ଥିଲେ । ଏହି ଆସ୍ତିକତା ମଧ୍ୟରେ ବ୍ରାହ୍ମଣ୍ୟ କର୍ମକାଣ୍ଡରେ ତାଙ୍କର ସେତେବେଳେ ପରୋକ୍ଷରେ ଅଶ୍ରଦ୍ଧା ପୂରି ରହିଥିଲା ।

## ବ୍ରାହ୍ମଣଙ୍କ କପାଳରେ ସୁନା ଚଉଁରୁ ଦାଗ—

ସୁନା ଆମ୍ବ ବ୍ରାହ୍ମଣମାନେ ନେଲେ । ଯଦୁମଣି ସେତେବେଳେ କିଛି ନ କହି ନିଜ ମାତୃଶ୍ରାଦ୍ଧ ବୈଶାଖ ମାସରେ ଏକ ଅଘଟଣ ଘଟଣା ଘଟାଇଲେ ।

ସ୍ତ୍ରୀ ଏଥିରେ ସ୍ୱୀକୃତ ନ ଥିଲେ ହେଁ ସେ ସ୍ୱାମୀଙ୍କ ପ୍ରବର୍ତ୍ତନାରେ ରାଜିହେଲେ । ଶ୍ରାଦ୍ଧଟି ମହା ଆଡ଼ମ୍ବରରେ କରାହେଲା । ଯେଉଁ ଏକଶହ ଆଠ ମୂର୍ତ୍ତି ପଣ୍ଡିତ ସ୍ୱର୍ଣ୍ଣ ଆମ୍ବ ଗ୍ରହଣ କରିଥିଲେ ସେମାନଙ୍କୁ ଆମନ୍ତ୍ରଣ କରି ଆଣିଲେ । ମହା ସମାରୋହରେ ଭୋଜନ ଦେଇସାରି କରଯୋଡ଼ରେ ପଣ୍ଡିତ ମଣ୍ଡଳୀଙ୍କୁ ଜଣାଇଲେ—ହେ ମହାପ୍ରାଜ୍ଞଗଣ ! ମୋର ଜନନୀ ମସ୍ତକ ବ୍ୟଥାରେ ମୃତ୍ୟୁ ଲଭିଲେ । ମୃତ୍ୟୁ ପୂର୍ବରୁ ସେ ମୋତେ ଚଡ଼ କେବାକୁ ବହୁବାର କହିଥିଲେ । ମୁଁ ଚଡ଼କାଠି ନ ପାଇ ତାହା ନଦେଇ ପାରି ଦୁଃଖିତ ଅଛି । ଶୁଣିଲି ରାଜମାତାଙ୍କର ମୃତ୍ୟୁ ପୂର୍ବର ବାସନା ପୂରଣ ପାଇଁ ଆପଣମାନେ ବ୍ୟବସ୍ଥା ଦେଇଥିଲେ ଯେ ସ୍ୱର୍ଣ୍ଣ ଆମ୍ବ ଦେଲେ ତାଙ୍କର ସେ ବାସନା ପୂରଣ ହେବ । ତାହା ମଧ୍ୟ କରାଯାଇଛି । ଏବେ ମୋର ଅନୁରୋଧ ଯେ ଆପଣମାନେ ମାଆଙ୍କର ପରକାଳର ଯାତନା ହରଣ ଲାଗି ସମସ୍ତେ ସ୍ୱର୍ଣ୍ଣ ଚଡ଼ରେ କ୍ଷୀଣ ସ୍ପର୍ଶ ଗ୍ରହଣ କରି ମୋର ଜନନୀଙ୍କର ପୀଡ଼ା ହରଣ କରନ୍ତୁ ।

ଉପସ୍ଥିତ ପଣ୍ଡିତଗଣ ନୀରବ ରହିଲେ । ଆଗତ ଭବିଷ୍ୟତରେ ଅନଭିଜ୍ଞ ହୋଇ ଯଦୁମଣି ସ୍ୱହସ୍ତରେ ନିଜର ପାଞ୍ଚବର୍ଷର ଶିଶୁ ସମକ୍ଷରେ ଏକଶ ଆଠମୂର୍ତ୍ତି ମହାତ୍ମା ପଣ୍ଡିତଙ୍କର ମସ୍ତକରେ ଚଡ଼ ଚଢ଼ି ଦେଇ ଚାଲିଲେ । କେହି କୌଣସି ପ୍ରତିବାଦ କଲେ ନାହିଁ । ଧରା ମଧ୍ୟ ପଡ଼ିଲେ ନାହିଁ । ଦକ୍ଷିଣା ସହିତ ଉକ୍ତ ଚଡ଼କାଠି ଖଣ୍ଡିମାନ ନେଇ ଚାଲିଗଲେ ।

ଏଥିରେ ଯଦୁମଣି ଠକଙ୍କୁ ଉଚିତ ଶାସ୍ତି ଦେଇଛି ଭାବି ସନ୍ତୋଷ ହେଲେ । କିନ୍ତୁ ବର୍ଣ୍ଣଶ୍ରେଷ୍ଠ ଅହଙ୍କାରବିହୀନ ବ୍ରାହ୍ମଣଗଣ ଲଡ଼ୁବାବାଙ୍କ ପିଣ୍ଡରେ ଯଦୁମଣି ପ୍ରଦତ୍ତ ଅର୍ଥ ଓ ସ୍ୱର୍ଣ୍ଣଚଡ଼ ଦୁଇଖଣ୍ଡି ଜମା ଦେଇ ଅଭୟଭଞ୍ଜଣ ମହାଦେବଙ୍କୁ ନମସ୍କାର କରି ଯେଝା ବାସକୁ ଚାଲିଗଲେ ।

ବିଦ୍ୟୁତ ଗତିରେ ଏ ସମ୍ବାଦ ସମଗ୍ର ରାଜ୍ୟରେ ବ୍ୟାପିଗଲା । କେହି କେହି ବ୍ରାହ୍ମଣଙ୍କୁ ଠିକ୍ ହୋଇଛି କହିଲେ । କିନ୍ତୁ ବ୍ରାହ୍ମଣ ଶାପରେ ଯଦୁବଂଶ ଲୋପ କଥା କେହି କେହି କହି ଚିନ୍ତିତ ହେଲେ । ରାଜା ଏହା ଶୁଣି ଏକାନ୍ତ ଦୁଃଖିତ ହେଲେ ।

## ଏକମାତ୍ର ପୁତ୍ର ସନ୍ତାନର ଅକସ୍ମାତ ମୃତ୍ୟୁ—

ଏହା କେହି ମିଥ୍ୟା ବୋଲି ନ କହନ୍ତୁ; ସତ୍ୟରେ ବ୍ରାହ୍ମଣ ଅସନ୍ତୋଷରେ ତିନୋଟି ପକ୍ଷ ମଧ୍ୟରେ ଯଦୁମଣିଙ୍କର ଚନ୍ଦ୍ରମା ସଦୃଶ ସୁନ୍ଦର ପୁତ୍ର କପିଧ୍ୱଜ ସାଧାରଣ ଘଟଣାରେ ପୋଡ଼ିହୋଇ ମରିଗଲା । ଯେତେ ଯତ୍ନ କଲେ ବଞ୍ଚାଇ ହେଲା ନାହିଁ । ବସ୍ତ୍ରପରିହିତ କପିଧ୍ୱଜ ଗାଳ ଜାଳ ସାଥିପିଲାଙ୍କ ସହିତ ଗ୍ରାମ ଉପାନ୍ତରେ ଖେଳୁଥିଲା । ହଠାତ୍ ତା ଦେହରେ ନିଆଁ ଲାଗନ୍ତେ ସେ ଅସହାୟ ଭାବରେ ପୋଡ଼ି ଯାଇଥିଲା । ଶିଶୁମାନଙ୍କ ବ୍ୟତୀତ କେହି ବୟସ୍କ ବ୍ୟକ୍ତି ନ ଥିବାରୁ ଏହି ଦୁର୍ଦ୍ଦଶା ଘଟିଥିଲା ।

## ନୀଳାଚଳ ଗମନ—

ଏହି ଘଟଣାରେ ଯଦୁମଣି ବହୁ ଦିବସ ନୀରବରେ ଈଶ୍ୱର ସୃଷ୍ଟିର ରହସ୍ୟ ସମ୍ପର୍କରେ ଚିନ୍ତାକରି କୌଣସି ଅନୁକୂଳ ନପାଇ ସସ୍ତ୍ରୀକ ପୁରୀ ଚାଲିଗଲେ । ସେଇଠି ଦୁଃଖଜର୍ଜରିତ କବିସୂର୍ଯ୍ୟ ବଳଦେବ ରଥଙ୍କ ସହିତ ତାଙ୍କର ସାକ୍ଷାତ ହେଲା । କବିସୂର୍ଯ୍ୟ ନିଜର ଦୁଃଖ ଦୂରକରଣାର୍ଥ ଜଗନ୍ନାଥଙ୍କୁ ସର୍ପ ସହିତ ତୁଳନା କରି ଯେଉଁ କବିତା ମହାପ୍ରଭୁଙ୍କ ସମ୍ମୁଖରେ ଗାନ କରିଥିଲେ, ତାହା ସର୍ପ ଜଣାଣ ନାମରେ ବିଖ୍ୟାତ ଅଟେ । ଯାହାର ପ୍ରଥମ ପଦ—

ବାଧିଲା ଜାଣି ରମା- ରମଣ କର କ୍ଷମା
ନୋହିଲେ ଦଣ୍ଡେ ବିଅ ଟାଳ
ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ
ପୂରାଇ ଆଣ୍ଡେ ଦେବି ଗାଳ, ହେ ମହାପ୍ରଭୁ
କରୁଣାସିନ୍ଧୁ ବୋଲ କରି
କହନ୍ତି ବୁଧେ ଉଚ୍ଚସ୍ୱରି
କାଳ ସର୍ପ ଆପଣ, କବଳକର ପ୍ରାଣ-
ପବନମାନଙ୍କୁ ସବୁରି ହେ···

କବି ଭକ୍ତ ସ୍ତୁତି ବୋଲିବା ପରନ୍ତେ ଯଦୁମଣି ଗାଇଥିଲେ ଏପରି ଗୋଟିଏ କରୁଣ ସଙ୍ଗୀତ—ଯହିଁରେ ସେ ଦେଲା ଯାହା ନେଲା ତାହା ଅତି ବିଚକ୍ଷଣତାର ସହିତ ପ୍ରମାଣିତ କରିଥିଲେ—

ନୀଳାଚଳ କଳାକର ! ସତ କି ଏ ମିଛ ?
ଦେଲା ଯାହା ନେଲା ତାହା ଏଥକୁ କପାଇଁ ମହା
ଦାତା ପଣେ ପତାକା ବାନ୍ଧିଛ ।
× × × ×
ଓଜଶୀଳ ଭୋଜ ଗଜ
ଜୀବନ ହରଣେ ତେଜ
ଅର୍ପଣ କଲ କୃପଣ ନୋହି,
ଗଭୀର ଜଳେ କୁମ୍ଭୀର
ଗଳଗ୍ରହଣେ କୁମ୍ଭୀର
ଜୀବ ରକ୍ଷା କଲ କକ୍ଷା ବହି ହେ ।
× × × ×
ପରମ ପାତକୀ ଶ୍ରେଣୀ ଶିରୋମଣି ଯଦୁମଣି
ମନତଳେ ନେଇ ନ ପାରିବ
ଏବେ ଉଦ୍ଧରଣେ ଯେବେ କୃପା ବସିଅଛୁ ଲବେ
ତେବେ ସିନା ଦାନୀ ବୋଲାଇବ ହେ ।

ତାଙ୍କୁ ପ୍ରଶଂସା ଦେଇ ପରମେଶ୍ୱର ତାହା ହରଣନେବାରୁ ସେ ଏପରି ଗାନ କରିଥିଲେ । ଏହା ଟାଇପ ଶରବା ପରେ କଷ୍ଟରୁ ଯଦୁମଣିଙ୍କ ଚକ୍ଷୁରୁ ଲୋତକ ସ୍ରବିଥିଲା । ଏହାପରେ ସେ ଘରକୁ ଫେରି ପାଠ ମହାଦେଇଙ୍କ କୁମୁଦମୀଙ୍କ ଅଙ୍କାରୁ ଏକ କାବ୍ୟ ରଚନାରେ ମନ ବଳାଇଲେ । ତାହା ହିଁ 'ରାଘବ ବିଳାସ' ନାମରେ କଥିତ ହୁଏ ।

## ରାଘବ ବିଳାସ ରଚନା—

ଯେଉଁ ୧୮୧୭ ମସିହାରେ ଉତ୍କଳର ମହାନ ଦର୍ପୀ ବକ୍ସି ଜଗବନ୍ଧୁ ବିଦ୍ୟାଧର ଏବଂ ଗଜପତି ମହାମାନ୍ୟ ମୁକୁନ୍ଦ ଦେବଙ୍କ ସହିତ କନ୍ଧ ଏବଂ ପାଇକମାନେ ମିଶି ଯୁଦ୍ଧରେ ସମଗ୍ର ଇଂରେଜ ଉପନିବେଶକୁ ଥରହର କରି ଦେଇଥିଲେ, ସେତିକି ବେଳେ ଯଦୁମଣି ଲେଖିଥିଲେ 'ରାଘବ ବିଳାସ' । ବ୍ରାହ୍ମଣମାନଙ୍କ ଅସନ୍ତୋଷରେ କ୍ଷତ ହେବାରୁ ସେମାନଙ୍କ ସନ୍ତୋଷ ଲାଗି ସେ ଗ୍ରନ୍ଥାଦ୍ୟରେ ଲେଖିଥିଲେ—

ପ୍ରଥମୁ ବନ୍ଦଇ ଭୂଦେବ ଅଂଘ୍ରି ଅପାରବକ୍ଷେ,
ସପତ ସାଗର ଶୋଷକ ବଂଶ ଧ୍ୱଂସି ଅଲକ୍ଷେ ।

କାବ୍ୟାରମ୍ଭରେ ସେ କହିଲେ—ପ୍ରଥମେଁ ସପ୍ତସାଗର ଶୋଷକ, ଅଗସ୍ତିଙ୍କ ଅନ୍ୱୟ, ଅଲକ୍ଷରେ ଯଦୁବଂଶ ଧ୍ୱଂସକ, ଭୂଦେବ ଅଂଘ୍ରି-ଯାହା ଅପାର ବିଷ୍ଣୁ ବକ୍ଷରେ ଶୋଭା ପାଏ, ତାହା ମୁଁ ବନ୍ଦନା କରେ ।

ସନ୍ତାନଟି ମରିଯିବାରୁ ସେ ନିଜକୁ ଏକାନ୍ତ ଅସହାୟ ମନେ କରୁଥିଲେ । ଏ ଦୁଃଖ ଏତେ ବଢ଼ି ଯାଇଥିଲା ଯେ ସେ ଏ ଗ୍ରନ୍ଥ ଶେଷରେ ଲେଖିଥିଲେ—

କଳ୍ପି କଳ୍ପି କେତେ ଜଳ୍ପିଲା ଶିଳ୍ପିକାର କୁମର
କଳ୍ପେ କଳ୍ପ ତରୁ ଭଜିଲି ଦୁଃଖ ନ ଗଲା ମୋର ।

କଳ୍ପେ କଳ୍ପତରୁ ସେ ରାମଙ୍କୁ ଲକ୍ଷ୍ୟ କରିଛନ୍ତି ଏହା ନୁହେଁ, ଏହା ମଧ୍ୟ ଭିନାୟକ ରାଜାଙ୍କୁ ଲକ୍ଷ୍ୟ କରିଛନ୍ତି । ସମସ୍ତ ସୌଭାଗ୍ୟ ଥାଇ ପୁତ୍ର ଶୋକରୁ ଦୁଃଖ ଦୂର ହେଲା ନାହିଁ ବୋଲି ପ୍ରକାଶ କରିଛନ୍ତି ।

ତତ୍କାଳୀନ ଉତ୍କଳର ଦୁର୍ଦ୍ଦଶାରେ ସେ ଅସ୍ଥିର ହୋଇ ଲେଖିଥିଲେ—

ଗତିକୁ ଦଶାଏ ରାଷ୍ଟ୍ରର କଷ୍ଟ ଫେଡ଼ ଦୁସ୍ତର
ଚନ୍ଦ ପେଷି ଶଙ୍ଖବାହନ-ଭ୍ରାତ-ଅରି ସହିତ ।

୧୮୧୭ର ପାଇକ ବିଦ୍ରୋହ, କପରି ଏକ ଗଣ ବିଦ୍ରୋହ, ତାହା ଏଥିରୁ ସ୍ପଷ୍ଟ ଅନୁମିତ ହୋଇଥାଏ ।

ଶ୍ରୀଯୁକ୍ତ ମହତାବ ଏହି ଘଟଣା ଉପରେ ତାଙ୍କ ଇତିହାସରେ ଯେଉଁ ମତ ଜ୍ଞାପନ କରିଛନ୍ତି, ତାହା ପାଠକଲେ ଏହାର ଗୁରୁତ୍ୱ ବିଶେଷ ଭାବରେ ହୃଦୟଙ୍ଗମ କରିହୁଏ । —

"ନିଗୂଢ ଭାବରେ ଅତ୍ୟାଗ୍ରହ ସହକାରେ ଜୀବନ ପର ପ୍ରାଣଦେବା ଶତଗୁଣେ ଶ୍ରେୟସ୍କର ମନେକରି ଦେଶର ସ୍ୱାଧୀନତା ପାଇଁ ଯେଉଁ କନ୍ଧ ଓ ପାଇକ-ମାନେ ଅକୁଣ୍ଠିତ ଭାବରେ ନିଜର ରକ୍ତଦାନ କଲେ, ସେମାନେ ବାସ୍ତବିକ ଅକ୍ଷୟ କୀର୍ତ୍ତି ରଖି ଯାଇଛନ୍ତି । ବକ୍‌ସି ଜଗବନ୍ଧୁ ବିଦ୍ୟାଧର ଓ ରାଜା ମୁକୁନ୍ଦ ଦେବ ସ୍ୱାଧୀନତାର ବିଦ୍ରୋହରେ ନେତୃତ୍ୱ ଗ୍ରହଣ କରି ନିଜକୁ ଅମର କରି ଯାଇଛନ୍ତି । ଯେ କୌଣସି ଦେଶରେ, ଯେ କୌଣସି ଯୁଗରେ ଏମାନଙ୍କ ସ୍ମୃତି କୋଟି ନିଧି ଭଳି ଦେଶରେ ସୁରକ୍ଷିତ ହୋଇଥାନ୍ତା ଓ ସେମାନେ ଆରାଧ୍ୟ ଦେବତା ସ୍ୱରୂପରେ ପୂଜା ପାଉଥାନ୍ତେ । ମାତ୍ର ଭାରତ ଇତିହାସରେ ସେମାନଙ୍କର ନାମ ନାହିଁ । ଚିହ୍ନିବ କିଏ ଆଉ—ଯେତେବେଳେ ଖାସ୍ ଓଡ଼ିଶାରେ ସେମାନଙ୍କର ସ୍ମୃତି ଯଥାବିଧି ସମ୍ମାନିତ ନ ହେଲା ! ମାତ୍ର ପାଇକମାନେ ଅକାରଣେ ଜୀବନ ଦେଇ ନାହାନ୍ତି । ଜଗବନ୍ଧୁ ଓ ମୁକୁନ୍ଦଙ୍କ ପ୍ରାଣ ନିରର୍ଥକ ହୋଇ ନାହିଁ । ସେମାନଙ୍କ ଅକାତର ଆତ୍ମଦାନ ଅଲକ୍ଷ ଭାବରେ ଓଡ଼ିଆ ପ୍ରାଣରେ କାମ କରି କରି ଚାଲିଛି ।" (ଓଡ଼ିଶା ଇତିହାସ—ଶ୍ରୀ ହରେକୃଷ୍ଣ ମହତାବ ପୃ: ୩୦୨ ।)

ଯଦୁମଣି କବି ଥିଲେ । ସେ ବସ୍ତ୍ରର ଏ ଚରମ ଦଶାକୁ ନିବାରଣ ଲାଗି ବିଷ୍ଣୁଚକ୍ରକୁ ଆଶ୍ରୟ କରି ଗଜ ଉଦ୍ଧାରରେ ଗ୍ରାହ ସ୍ୱରୂପୀ ବିଦେଶୀଙ୍କୁ ହତ କରିବାକୁ ନିବେଦନ କରିଥିଲେ । କିନ୍ତୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କେହି ଓଡ଼ିଆଙ୍କ ଦୁଃଖ ବୁଝିଲେ ନାହିଁ । ସାମରିକ, ସାହସିକ, ଅବିଜିତ ଓଡ଼ିଆ ଇଂରେଜଙ୍କ ଚକ୍ରାନ୍ତରେ ଏଇଠୁ ଅସାମରିକ ଜାତିରେ, ଭୀତ ମନୁଷ୍ୟରେ, କାତର ଜୀବନ ଯେନ କେବଳ ପୂର୍ବ କୀର୍ତ୍ତିରାଜି ଯେନ ନାମକୁ ବଞ୍ଚି ରହିଲା । କେତେକ ଅଶିକ୍ଷିତ ଭୀରୁ ବଙ୍ଗାଳୀ ଦୃଷ୍ଟିରେ ସେ ଭାରବାହକ, କୁଲି, ଝୁଙ୍କେ ବାଙ୍ଗା (ଚୁଟିଆ) ନାମରେ ମଧ୍ୟ ଅଭିହିତ ହେଲା ।

ଯଦୁମଣିଙ୍କ ରଚନା ବ୍ୟାପିଗଲା ଚଉଦିଗରେ । ବ୍ରାହ୍ମଣମାନେ ପୁଣି ତାଙ୍କ ପ୍ରତି ପ୍ରସନ୍ନ ହୋଇଗଲେ । ଗ୍ରନ୍ଥାଦ୍ୟରେ ବ୍ରାହ୍ମଣ ପ୍ରଶଂସା ଥିବାରୁ ଆଶୁତୋଷ ବ୍ରାହ୍ମଣଗଣ ପୁଣି ଯଦୁମଣିଙ୍କ ପ୍ରଶଂସାରେ ମାତି ଉଠିଲେ । ଥରେ ଯଦୁମଣି ମାତୃ-ଶ୍ରାଦ୍ଧରେ ପୂର୍ବୋକ୍ତ ବହୁସଂଖ୍ୟକ ପଣ୍ଡିତଙ୍କୁ ନିମନ୍ତ୍ରଣ କରି ଉତ୍ତମ ଭୋଜନ ଦେଇ କ୍ଷମା ପ୍ରାର୍ଥନା କରିଥିଲେ ।

## ତାଙ୍କର ଏକମାତ୍ର କନ୍ୟା ରମା—

ତାଙ୍କର ଏକମାତ୍ର କନ୍ୟା ରମାକୁ ସେ ଖଣ୍ଡପଡ଼ାନିବାସୀ ପିତୃମାତୃହୀନ ନରସିଂହ ଗୁଣୀନ୍ଦ୍ରଙ୍କୁ ବିବାହ ଦେଇ ଘରଜୁଆଇଁ କରି ରଖିଥିଲେ । ସେଇମାନଙ୍କ

ଯୋଗୁଁ ସେ ଦୁଃଖକୁ ସୁଖ ମଣୁଥିଲେ । ବ୍ରାହ୍ମଣଙ୍କ ଦୟାରୁ ଉମାର ପୁତ୍ରଟିଏ ଜନ୍ମ ହେଲା । ଉକ୍ତ ପୁତ୍ରକୁ 'ତାଳଧ୍ୱଜ' ନାମ ଦେଇ ଯଦୁମଣି ତାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ଏହି ପୋଷ୍ୟପୁତ୍ର ଛଧିରେ ସେ ପଞ୍ଚଶତ ମୁଦ୍ରା ବ୍ୟୟ କରି ସମଗ୍ର ଜାତି ଘାଟକ ଏବଂ ବ୍ରାହ୍ମଣଗୋଷ୍ଠୀଙ୍କୁ ଉତ୍ତମ ଭୋଜନ ଦେଇଥିଲେ ।

## ପତ୍ନୀ ଖଞ୍ଜନା ସହିତ ଅପତ୍ତି—

'ରାଘବ ବିଳାସ' ରଚନାରେ ଅଛି ଗୋଟିଏ ଗଳ୍ପ ଶୁଣାଯାଏ । ଯଦୁମଣି ନିଜର ନିଜ ସ୍ତ୍ରୀଙ୍କର ସୌନ୍ଦର୍ଯ୍ୟବର୍ଣ୍ଣନାରେ ନାନା କବିତା ଲେଖି ତାହା ଗାନ କରି ତାଙ୍କର ସନ୍ତୋଷ ଆଣୁଥିଲେ । ପ୍ରଣୟ ବୃଦ୍ଧି ସଙ୍ଗେ ସଙ୍ଗେ ଖଞ୍ଜନା ତାଙ୍କୁ ନିଜ ଆୟତ୍ତରେ ରଖିବାକୁ ଏକାନ୍ତ ଜଗର କରୁଥିଲେ । ଥରେ ଏକାନ୍ତ ଅଘଟ୍ଟ ହୋଇଗଲା । ଗୋଟିଏ ମାଳୀଘର ଝିଅ ତାଙ୍କ ସଙ୍ଗାତ ଘର ଗାଁ ଉଜାଡାଟଣାରୁ ତାଙ୍କ ଘଙ୍ଗାତଙ୍କ ସ୍ତ୍ରୀ ସହିତ ତାଙ୍କ ଘରକୁ ଆସିଥିଲା । ଯଦୁମଣିଙ୍କୁ ଭଉଣୀଜ୍ଞାଇଁ ଲୋକା କରି ଖଞ୍ଜନାକୁ ବଡ଼ ଭଉଣୀ ଡାକି ସେ ଶାଳୀ ଭାବରେ ଯଦୁମଣିଙ୍କୁ ପରିହାସ କଲେ । ଯଦୁମଣି ଖଞ୍ଜନାଙ୍କ ସାକ୍ଷାତରେ ତା ପରିହାସରେ ମତି ଉଠିଲେ । ଯଦୁମଣି ଜାଣିଲେ, ଖଞ୍ଜନା ଏହି ରୂପବତୀ ସହିତ ଏପରି ମାତିବାକୁ ପସନ୍ଦ କରନ୍ତିନ । ତେଣୁ ସେଦିନ ଆଉ ରୁଦ୍ର ହୋଇ କୁକୁଟ ହାସରାରୁଖି ଅନ୍ନକୁ ଭୋଜ କରି ଗୁଲିଗଲେ । ନିକ୍ଷବଦେଈପୁର, ରୁହାଳୀ ଶାସନ, ମାଳାଦ୍ରପୁର, ଗୋବିନ୍ଦପୁରର ବହୁ ଜଣ ବ୍ରାହ୍ମଣ ଏ ଭୋଜରେ ମିଶିଥିଲେ । ସେମାନେ ରାତ୍ର ଯାଇ ନ ପାରି ଭୋଜ ଫେରନ୍ତି ଯଦୁମଣିଙ୍କ ଦାଣ୍ଡ ଘରେ ଆଶ୍ରୟ ନେଲେ । ରାତ୍ରରେ ଏପରି କାନ୍ଦକାଉପୁକଲା ଯେ, ବ୍ରାହ୍ମଣମାନେ ନ ଥିଲେ ଖଞ୍ଜନା ଆତ୍ମହତ୍ୟା କରିଥାନ୍ତେ । ଯେଉଁ ବ୍ରାହ୍ମଣଙ୍କୁ ସେ ଚଡ଼ୁ ଦେଇଥିଲେ, ସେହି ଜାତିର ବହୁ ଜଣ ତାଙ୍କ ମହତ୍ତ୍ୱ ରକ୍ଷା କଲେ । କବି ବ୍ୟଥିତ ହୋଇ ରୁଷି ତରି କଥା କହୁ ନ ଥିବା ନିଜ ଜାୟାଙ୍କ ନାମରେ ଏହି କବିତାଟି ଗାଇ କ୍ଷମା ମାଗିଥିଲେ—

ମାନଇତ ଗୀର ପଦକ ଶୁଣ ରେ
ହୀରକଦଶନା ବାଳା ରେ
ମାରନ୍ତି ଉଖାଅ ମହୀସୁର ଅଗ୍ରେ
ଖଞ୍ଜନା ପ୍ରୀତିବହଳା ରେ ।
ଧୀର ଗତି ନବ ମାରଦ କୁନ୍ତଳା
ତାର ଆଶ୍ରିତ ମୁଁ ତୋର
ମାନସ ବଦନ କରି ଯା କହିଛୁ
ଶିର କର ଅବନାର ।
କ୍ଷୀର ଖଣ୍ଡ ମିଶା ତୋ ମଧୁର ଭାଷା
ଶୁଣାଏ ଭୂଷଣା ମୂଷ୍ଟି

ଦ୍ୱିରଦ କୁମ୍ଭ ଉରଜା ନାଗ୍ରୀ ରାଜା
ବ୍ୟର୍ଥେ ତୁ ନ ବସ ଦୁଃଖ ।
ନୀରଜ ନୟନୁ ନୀରଧାର ହାର—
ଝରେ ଆଜ ନ ବରଷା
ଚିର ଶୋଷି ଦେନ ଅନୁନୟ ମୋର
ତୋ ବଚନେ·କେ ମୋ ଭରସା ।
ଚରଣ ଦଶନେ ଧରି ମୁଁ ମାଗୁଛି
ଗୁମାନ ହୁଅନା·ଧନ
ସାର ମାରକୁ ହଟାଅ ହରିମଧ୍ୟା
ଦେଇ କେଳନ୍ତି ନର୍ତ୍ତନ ।
ଚିତ୍କାର କଲେ କରି ସେ ମୋ ସୁଖ
ଆରେ ମଦାଳସା ମଣି
ଯାରୁ ସେ ନ ଯାନ୍ତୁ ଅଶ୍ରୁତୋଷ ମୋହ୍ମ
ସଦାଧୀନ ପଦୁମଣି ।
ପୁନଶ୍ଚ—'ପୟୋଧର ରେ
ଚିର ଅଟର ବୟସୀ ତୁ ଏ ଯୌବରେ'—

ଏ କବିତାଟି ଗାଇ କବି ନିଜ ଜାୟା ପାଦତଳେ ପଡ଼ନ୍ତେ କ୍ଷମା ମିଳିଥିଲା । ଉକ୍ତ ମାଳୁଣୀ ଯୁବତୀର ନାମ ଥିଲା ଲାବଣ୍ୟ । ଖଞ୍ଜନାକୁ ତାହାର ପ୍ରଲୋଭନରୁ ପଦୁମଣିଙ୍କୁ ରକ୍ଷା କରିବାକୁ କ୍ଲେଶ ଅଳ୍ପ ହୋଇ ନ ଥିଲା । କାରଣ ସେ ଧରାକୋଟ ରାଜାଙ୍କ ହାବୁଡ଼େ ପଡ଼ି ଫୁଲବେଶ୍ୟା ହୋଇଯାଇଥିଲା ।

ଶରୀର ଦୁଃଖ ବେଳେ ମଧ୍ୟ ସେ ଉକ୍ତ କବିତାକୁ ଏକମାତ୍ର ଅବଲମ୍ବନ କଲରୁ ଖଞ୍ଜନା ଦିନେ କହିଲେ—ଅତି ବେଶୀ ହୋଇଯାଉଛି । ଏ ରକ୍ତ ମାଂସ ଦେହକୁ ଯେତେ ବଢ଼େଇ କହିଲେ ବି ଦୂଷିତ ପୂଯ, ରକ୍ତ, ପୋକ, ସିଙ୍ଘାଣି, ଗୋଚର ଏଥିରେ ପୂରି ରହିଛି । ଏଥିରେ ଏତେ ଲାଗିଛ କାହିଁ ? ରାମ କୃଷ୍ଣଙ୍କ କଥା ଟିକିଏ ଲେଖୁନ ?

କିଛିଦିନ ପୂର୍ବେ ତାଙ୍କ ଦୁଆରେ ଗ୍ରାମବାସୀଙ୍କ ଉଦ୍ୟୋଗରେ ଜଣେ ପଶ୍ଚିମା ପଣ୍ଡିତ ସାଧୁଦ୍ୱାରା ତୁଳସୀ ରାମାୟଣ ନବାହ୍ନ ପାରାୟଣ ହୋଇଥିଲା । ପଦୁମଣି ତେଣୁ ଖଞ୍ଜନାଙ୍କୁ କହିଲେ—ତୁଳସୀ ଦାସଙ୍କ ପତ୍ନୀଙ୍କଠାରୁ ଶିଖିଲ କି ?

ଖଞ୍ଜନା କହିଲେ—'ସେ କିଏ, ମୁଁ ବା କିଏ ? ତାଙ୍କ ପରି ଆମେ କ'ଣ ହୋଇପାରିବା ?' ତୁଳସୀ ଦାସ କିପରି ସଂସାର ତ୍ୟାଗ କରି ସାଧୁ ହୋଇଥିଲେ ସେ କଥା ପ୍ରକୃତରେ ଉକ୍ତ ପଣ୍ଡିତ-ବାବାଜୀ ତାଙ୍କ ବକ୍ତବ୍ୟରେ ପ୍ରଥମରୁ କହିଥିଲେ ।

ସେ କହୁଥିଲେ ଯେ—ତୁଳସୀ ଦାସ ନିଜର ସ୍ତ୍ରୀଙ୍କ ରୂପ ଗୁଣରେ ଏକାନ୍ତ ଆକୃଷ୍ଟ ଥାଇ ତାଙ୍କୁ ଦଣ୍ଡେ ଛାଡ଼ି ରହିପାରୁ ନ ଥିଲେ। ତାଙ୍କ ସ୍ତ୍ରୀ ଏକ ଶ୍ରେଷ୍ଠତମ କୃଷ୍ଣଭକ୍ତ ଘରର କନ୍ୟା ଥିଲେ। ଥରେ ତାଙ୍କ ବାପଘରକୁ ସେ କହି କରି ଆସିଲେ। କିନ୍ତୁ ତୁଳସୀ ଦାସ ତାଙ୍କ ଅଭାବରେ ସ୍ୱଚ୍ଛନ୍ଦ ରହି ନ ପାରି ଶ୍ୱଶୁରଘରକୁ ଆସି ପହଞ୍ଚିଲେ। ତାଙ୍କ ସ୍ତ୍ରୀଙ୍କୁ କୁଟୁମ୍ବମାନେ କହିଲେ—'କି ମାୟା ଲଗାଇଛୁ ଲୋ ମା! ସେ ତତେ ଦଣ୍ଡେ ମୂର୍ଚ୍ଛି ପାରୁ ନାହାନ୍ତି! ଫଳରେ ଅପମାନିତ ହୋଇ ତୁଳସୀ-ଜାୟା ସ୍ୱାମୀଙ୍କୁ ଏକାକୀ ଦେଖି କହିଲେ—

ଲାଜ ନ ଲାଗତ ଆପ୍‌କ ଧୌରେ ଆୟେ ହୁଁ ସାଥ୍
ଧିକ୍ ଧିକ୍ ଐସେ ପ୍ରେମ୍ କ କହା କହୌ ମେ ନାଥ।
ଅସ୍ଥି ଚର୍ମ୍ମମୟ ଦେହ ମମତା ମେଁ ଜୈସୀ ପ୍ରୀତି
ତେସୀ ଜୌଂ ଶ୍ରୀରାମ ମହଂ ହୋତ ନତୋଭବଭୀତି।

ଯଦୁମଣି କହିଲେ—ମତେ ବାବାଜୀ ହେବାକୁ କହୁଛ କି? ଖଞ୍ଜନା କହିଲେ—ବାବାଜୀର ଧଳୁ ଢଙ୍ଗ ତ ଦେଖାଯାଉଛି। ଅଚ୍ଛା, ହେଲ ତୁମେ। ମୁଁ ଟିକିଏ ହେଲେ ମାତା ହୁଅନ୍ତି। ଯଦୁମଣି କହିଲେ—ମୁ ତ ଶିବ ନୁହେଁ ଯେ ମୋର ତୁମେ ଗୋଟିଏ ମାତା? ମୁଁ ସଂଯୋଗୀ ଯୋଗୀ ହେବି। ସେଠୁ?

ଖଞ୍ଜନା କହିଲେ—ଅଉ କେତୋଟିରେ ଆଶା ଅଛି? ତେବେ ତୃପ୍ତି ଆସିନ? ଯଦୁମଣି କହିଲେ—ନିର୍ଦ୍ଦୋଷକୁ ଦୋଷ ଦିଅନି। ତୁମେ ତ କହିଛ ଶାଳୀ ଭଣେଇର ପରିହାସୀ। ତା କ'ଣ ମତେ ବର୍ଜ୍ଜନ କରିବାକୁ ହେବ?

ଖଞ୍ଜନା କଥାଟା ସମଝିଲେ। କହିଲେ—ଦେଖ! ମୋ ବାପଘର ତୁମଠି ଏକ୍ଷଣି ସନ୍ତୋଷ ନାହାନ୍ତି। ବୁଝି ବିଚାରି ସେଠାକୁ ଯାଅ। ମୋର ଠୁଳେ ଆପତ୍ତି ନାହିଁ।

## ରୂପସୀ ଝଟକମଣି—

ଏହାପରେ ଯଦୁମଣି ଗଲେ ଦଶପଲ୍ଲା କୁଞ୍ଜବନ ଗଡ଼କୁ। ଉଦ୍ଦେଶ୍ୟ, ଖଞ୍ଜନାର ସାନ ଭଉଣୀ ଝଟକମଣିକୁ ଦେଖି ଆସିବେ। କିନ୍ତୁ ତାହା ସମ୍ଭବ ହେଲା ନାହିଁ। ଶ୍ୱଶୁର, ଶାଶୁ ସବୁ ପଥ ନିରୋଧି ରୂପଯୌବନା କନ୍ୟାକୁ ଲୁଚାଇ ରଖିଲେ। କିନ୍ତୁ ସେ ତ ଛାଡ଼ିବା ଲୋକ ନୁହନ୍ତି। ଧାଈକୁ ଲାଞ୍ଚ ଦେଇ ନିକାଞ୍ଚନ ଦ୍ୱିପ୍ରହର ସମୟରେ ଝଟକମଣିକୁ ଘୋଡ଼ାଶାଳରେ ଦେଖି ପରିହାସ କଲେ।

ଫଳରେ ଝଟକମଣିର ଦୁଇ ମାସ ମଧ୍ୟରେ ଛଗିରିଆ ମାନପୁର, ଯେଉଁଠି ପ୍ରସିଦ୍ଧ କପିଳେଶ୍ୱର ମନ୍ଦିର ବିରାଜିତ, ସେଇଠି ଜଣେ ଧନବନ୍ତ ଘରେ ବିବାହ ହୋଇଗଲା ଏବଂ ଜାତିଆଣରେ ଯଦୁମଣି ନିଜର ଉକ୍ତ ସଢ଼ୁ ଯୁଗଳକିଶୋରକୁ ସାହାଯ୍ୟ କରି ଜାତି କୋପରୁ ଉଦ୍ଧାର କରନ୍ତେ ଉକ୍ତ ସଢ଼ୁ ଏବଂ ଶାଳୀ ସହିତ ଚିର ଜୀବନ ପ୍ରୀତି ସମ୍ବନ୍ଧ ରହିପାରିଲା। ସାରା ଜୀବନ ବହୁ ବିପଦରେ ସେମାନଙ୍କ ସାହାଯ୍ୟ ମଧ୍ୟ ଲାଭ କରିଥିଲେ।

'ଗଙ୍ଗ ବିଳାସ' ବାନ୍ଧନ ଗ୍ରନ୍ଥରେ ସମ୍ପୂର୍ଣ୍ଣ ହୋଇଥିଲା । ତାହା ରାଣୀଙ୍କ ଅନୁକୂଳରେ ଯେଉଁ ବର୍ଷ ବାଦ୍ୟ ଯନ୍ତ୍ର ସାହାଯ୍ୟରେ ପଢ଼ା ହେଲା, ସେହି ବର୍ଷ ରାଜପୁରରେ ଅଗ୍ନି ଲାଗିଲା । ଗ୍ରନ୍ଥଟିର ପାଣ୍ଡୁଲିପି ଦଗ୍ଧ ହୋଇଗଲା । ରାଜା ଏବଂ ରାଣୀ ଏକାନ୍ତ ଦୁଃଖିତ ହେଲେ । ସେଥିରୁ କଏ କେତେ ଛାନ୍ଦ ଲେଖି ରଖିଥିଲେ; ତାହା ହିଁ ନାମ ମାତ୍ର ରହି, ରହିଗଲା ।



## ଛୁଆ କଥା

କବିସୂର୍ଯ୍ୟ ବଳଦେବ ରଥ ଥରେ ନୂଆଗଡ଼ ଆସିଥିଲେ । ଘଟଣାଚକ୍ରରେ ଦୁହିଁଙ୍କର ସାକ୍ଷାତ ଏକାନ୍ତ ପ୍ରିତୁମୁଦ ହୋଇଥିଲା । କବିସୂର୍ଯ୍ୟ ସମାଜରେ ସେତେବେଳେ ବିଶିଷ୍ଟ ଆସନ ଲାଭ କରିଥିଲେହେଁ ଏବଂ ବଡ଼ଖେମୁଣ୍ଡି ରାଜବଜୂଡାରେ ମନ୍ତ୍ରୀତ୍ୱ ଲାଭ କରିଥିଲେହେଁ ସେ ଅତ୍ୟନ୍ତ ଉଦାରମନା ଏବଂ ସଧାରଣରେ ଜଣେ ପ୍ରିୟବ୍ୟକ୍ତି ଥିଲେ । ତେଣୁ ସେ ଯଦୁମଣିଙ୍କୁ ସାକ୍ଷାତ ମାତ୍ରେ ବନ୍ଧୁ ଭାବରେ ଗ୍ରହଣ କଲେ । ଏହି ବନ୍ଧୁତା ଏପରି ହେଲା ଯେ ଉଭୟ ଜନଙ୍କ ଦିଆ ନିଆ ମଧ୍ୟ ଚାଲିଲା । କବିସୂର୍ଯ୍ୟ ଆମ୍ବ ପଠାଇ ପରିହାସ ସ୍ୱରୂପ ଥରେ ସୁଆ-ଦିଆଗଲା ସାରୀ-ଦିଆଗଲାକୁ ଶୁଆ ସାରୀ ପକ୍ଷୀ ହିସାବରେ ଲେଖି ଅମ୍ବ ଦୁଇ ବୋଝ ପଠାଇଥିଲେ । କିନ୍ତୁ ତାହା ମଧ୍ୟରୁ ବୋଝେ ସୁଆଦିଆ, ବୋଝେ ଖାଉଦିଆ ବା ପାଣିଚିଆ ଥିଲା । ଯଦୁମଣି ଉତ୍ତର ଦେଇଥିଲେ ଠିକ୍ ସେହିପରି ପକ୍ଷୀ ଦୁଇଟିର ନାମ ରଖି । ଦୁଇଟା ଅମ୍ବରେ ଦୁଇଟା କୁଆ, ଭିତରେ ଯୋଡ଼ିଏ କୋଇଲି ଥୁଆ । ଏଥିରେ କୁଆ କୋଇଲି ବର୍ଣ୍ଣିତ ହେଲେହେଁ ଟାକୁଆ ଓ କୋଇଲିହାର ଅମ୍ବର ସାରସତା ବର୍ଣ୍ଣିତ ହୋଇଥିଲା ।

ନାନା କବିତା ଏପରି ଦିଆ ନିଆ ଚାଲେ । କବି କବି ମଧ୍ୟରେ ଏହି ଯେ ମଧୁର ସମ୍ପର୍କ, ତାର ମାଧୁରୀ ଆଜି କଳ୍ପନା କରି ହେବ ନାହିଁ । ଜଣେ ଶୂଦ୍ର ବଢ଼େଇ ପ୍ରତି ଜଣେ ସେକାଳର ପ୍ରତିଷ୍ଠାସମ୍ପନ୍ନ ବ୍ରାହ୍ମଣ ମନ୍ତ୍ରୀଙ୍କର ଏହି ଯେ ସମାଦର, ତାହା ଏବର ଅତି ସଭ୍ୟତାସମ୍ପନ୍ନ ଉଦାରତା ମଧ୍ୟରେ ଆମେ ଦେଖିବାକୁ ପାଉ ନାହୁଁ । ଧନମର୍ଯ୍ୟାଦାଠାରୁ ଯୋଗ୍ୟତା ଯେଉଁ ସମାଦର ଦୃଷ୍ଟାନ୍ତ ସେତେବେଳେ ସର୍ବତ୍ର ପୂରି ରହିଥିଲା ।

### ପୁରୀ ଏବଂ ଗଜପତି ମୁକୁନ୍ଦଦେବ—

୧୮୧୫ ମସିହାରେ ଯଦୁମଣି ନିଜ ସ୍ତ୍ରୀଙ୍କ ସହିତ ଥରେ ଏବଂ ଶାଳୀ, ସଢ଼ୁ, ଝିଅ ଜ୍ୱାଇଁ, ଶଳାମାନଙ୍କ ସହିତ ସ୍ତ୍ରୀଙ୍କୁ ଘେନି ଥରେ ପୁରୀ ଯାଇଥିଲେ । ଇଂରେଜ କମ୍ପାନୀଦ୍ୱାରା ନିର୍ଯ୍ୟାତିତ ମୁକୁନ୍ଦ ଦେବ ଘଟଣାଚକ୍ରରେ ହାସ୍ୟରସିକ ଯଦୁମଣି ମହାପାତ୍ର ବୋଲି ଜାଣିବାରୁ ତାଙ୍କୁ ସିଂହଦ୍ୱାର ନିକଟରେ ପଚାରିଥିଲେ—ମହାପାତ୍ରେ ! କ'ଣ ଇଚ୍ଛା ?

ଯଦୁମଣି ଭୁରନ୍ତ ବହୁ ଜନତା ମଧ୍ୟରେ କହିଥିଲେ—

ଧନୁ ମାସ ହେଲା ହନୁ ନ ଚଳାଇ କହିବାକୁ ବଡ଼ ଲାଜ,
ମୁଁ ଆଁ କରଅଛୁ ମୁଆଁ ଖାଇବାକୁ
ଦେବା ହେଉ ମହାରାଜ ।

ଧନୁ କ କୋଦଣ୍ଡ, ମାସ କ ମହାଏ ଓଜନର ଦୁର୍ବଳ ହେଲା, ହନୁ କ ଅସ୍ତ୍ର ନ ଚଳାଇ । ଏହା କହିବାକୁ ବଡ଼ ଲଜ୍ଜା ଲାଗୁଛି । "ମୁଁ" କ ମୁରୁଫର୍କା (ବାଜେ) ଆ କ ବିସ୍ତୃତି କରି ଗୃହିଛି । ମୁଆ—ମୁଆଫି—ମାଫି ଖାଇବାକୁ ଦେବା କ ବନ୍ଦ କରିବା ହେଉ ମହାରାଜ !

ସେ ଶ୍ଳେଷାର୍ଥରେ କହିଥିଲେ ଯେ—ହେ ଗଜପତି ମହାରାଜ ! କହିବାକୁ ବଡ଼ ଲଜ୍ଜା ଲାଗୁଛି । ଆପଣଙ୍କର ବୀରତ୍ୱସମ୍ପନ୍ନ କୋଦଣ୍ଡର ଓଜନ ଆଜ ମହାଏ ଓଜନରୁ ଊଣା ହେଲା । ଆପଣ ଏତେ ଦୁର୍ବଳ ହୋଇଗଲେ । ସେଇଥିପାଇଁ ବୀରଭୂମି ଉତ୍କଳର ଯୁଦ୍ଧାସ୍ତ୍ର ଏକାବେଳେ ଅଚଳ ହୋଇଗଲା । ମୁରୁଫର୍କା ଇଂରେଜ ବେପାରୀ ବାଜେ କଏ ନା କଏ ଯେ ଏ ରାଜ୍ୟ ଦଖଲ କରି ବିସ୍ତାର କରି ଗୃହିଛି । ଏହା ସେ ଯେପରି ମାଫିରେ ଗ୍ରାସ କରିପିବ ତାର ସବୁ ସୂତ୍ର ଖଞ୍ଜି ଗଲାଣି । ଆପଣ ଦେବତାଙ୍କ ପ୍ରାପ୍ୟ ଅସ୍ତ୍ର ଧରି ତାର ଏ ଗ୍ରାସ ବନ୍ଦ କରିବା ହେଉନ୍ତୁ ।

ହଜାର ହଜାର ଜନସମୂହ ମଧ୍ୟରେ ଯଦୁମଣି ଯାହା କହିଲେ ତାହା ଧରିବାକୁ ମହାରାଜାଙ୍କୁ ଦୀର୍ଘ ସମୟ ଲାଗିଗଲା । କିନ୍ତୁ ସେ କେତୋଟି ଶବ୍ଦର ଅର୍ଥ ସମଝାଇ ଦିଅନ୍ତେ ମହାରାଜା ବୁଝି ଯାଇଥିଲେ । ସାଧାରଣ ଲୋକେ ସମଝିଲେ ଯେ ଯଦୁମଣି ମୁଆଁ ହଇଟା ଖାଇବାକୁ ମାଗିଲେ । ଲୋକ ଦେଖାଣିଆ ମୁଆଁ ହିଆହେଲା; କିନ୍ତୁ ମୁକୁନ୍ଦଦେବ ନିର୍ଭୀକ ବୀରପୁରୁଷ ଯଦୁମଣିଙ୍କର ଶ୍ଳେଷ ବାକ୍ୟରେ ଗମ୍ଭୀର ହୋଇଉଠିଲେ । ୧୮୧୭ ବିପ୍ଲବରେ ଏହି ମନସ୍ୱୀ ମହାନ ଯଶସ୍ୱୀ ମୁକୁନ୍ଦ ଦେବ ବାରବାଟୀ ଦୁର୍ଗରେ ବନ୍ଦୀ ଦଶାରେ ଥିବାବେଳେ ତାଙ୍କୁ ବିଷ ଦେଇ ମାରି ଦିଆଗଲା । ଯେଉଁ ଇଂରେଜ ଜାତିର ଲୋକେ ଏ ନୀଚ କୃତ୍ୟ କରିଥିଲେ, ସେହିମାନଙ୍କ ବଂଶଧର ଆଜ ଆମର ପରମ ବାନ୍ଧବ ହେଉଛନ୍ତି । ସେହି ନୃଶଂସ ଜାତି ପ୍ରତି ମୋହିତ ହୋଇ ତାଙ୍କର ଭାଷା ଧରି ଆମେ ମୁଗ୍ଧ ହେଉଛୁ । କିସ ପୁଣି ଦେଖା ନ ଯାଏ ?

ଅଥଚ ମୁକୁନ୍ଦ, ଜଗବନ୍ଧୁ, ଜୟକୃଷ୍ଣଙ୍କ ପାଇଁ ଶ୍ରାଦ୍ଧତିଥି ପାଳନ କରିବା ଦୂରେ ଥାଉ, ତାଙ୍କ ନାଁରେ ସ୍ମୃତିଟିଏ ମଧ୍ୟ ରଖି ପାରିନୁ । ଯଦୁମଣି ତ କେତେ ଦୂରରେ !

ପୁରୀର ଜଗନ୍ନାଥ ରାୟଗୁରୁ ନାମକ ପଣ୍ଡିତ ଯଦୁମଣିଙ୍କର ଏକାନ୍ତ ଶୁଭାନୁଧ୍ୟାୟୀ ଥାଇ ଦିନେ କହିଲେ—'ମହାରାଜାଙ୍କଠାରୁ ଗୋଟିଏ ପଦବୀ ତୁମ୍ଭେ

ଗ୍ରହଣ କର । ତାହାହେଲେ ତୁମ୍ଭର ଅଧିକ ଯଶ ବଢ଼ିବ ।’ ଯଦୁମଣି କହିଲେ—‘ମହାଶୟ ! ଶକ୍ତିହୀନ ଦୁର୍ବଳ କାହାଠୁଁ ମୁଁ ଦେବା ନେଇ କ’ଣ କରିବ ? ଆପଣ ଜାଣନ୍ତି ନାହିଁ କି—

ହୟଗ୍ରୀବ ମହାପ୍ରଭୁ ପ୍ରତାପେ
ଘୋଡ଼ା ନୁହେଁ ଗେଡ଼ା କରନ୍ତି ଭୂପେ ।
ଯୋଡ଼ା ହେବା ମୋ ପ୍ରୌଢ଼ା କବିତାକୁ
ବଳ ବଳ ରସ ଦାମ କଣ୍ଠକୁ
ଭଲେ ଭଲ ଖଣ୍ଡେ ଖଣ୍ଡ ଯେ
ନବ ଦୂର୍ବାଦଳ ଶ୍ୟାମଳ କୁମାରୁ
ମୋ ନାମ ଜଳକ ଘଣ୍ଟ ଯେ ।

ବୁଢ଼ା ସମ୍ପୂର୍ଣ୍ଣ ବୁଝିପାରି ଧରି କହିଲେ—ଘଣ୍ଟାଧ୍ୱନିରେ ଦୁନିଆ ଚମକିତ । ତୁମ ବାକ୍ୟଧ୍ୱନିରେ ସର୍ବସ୍ୱ କାମୁକକ୍ ନମକ ଆସୁଛି । ତୁମର କବିତା ପ୍ରକୃତରେ ପ୍ରୌଢ଼ା—ବଳିଷ୍ଠ । ଗୁଣ ଏବଂ ରୂପଗର୍ବିଣୀ ତିଳୋତ୍ତମା ଅପ୍‌ସରା ବାବୁ ତୁମ କବିତା ପଢ଼ି ସମୁଦ୍ର ଠାକୁର ଧନ୍ୟବାଦ ଦେଉଛି ।

## ସୁପଣ୍ଡିତା ଦେବଦାସୀ ତିଳୋତ୍ତମା ଓରଫ୍ ଫକୀର ମାହାରି—

ଯଦୁମଣି ତତ୍କାଳୀନ ନୃତ୍ୟବିଦ୍ୟାରେ ପାରଙ୍ଗମା ଦେବଦାସୀ ତିଳୋତ୍ତମା ଯେ “ଫକିର ମାହାରି” ନାମରେ ବିଦିତ ଥିଲା, ତା ନିକଟରେ ଯେତେ ପଣ୍ଡିତ ଆସନ୍ତି ହାରିଯିବା ଶୁଣି ମଧ୍ୟ କବିତାଟିଏ ପଠାଇଥିଲେ ।

ସେ କବିତା ଶେଷରେ ଲେଖିଥିଲେ—

ଛଇଳ ରତନର ଘୁମୁଁ
ବଇରାଗଲ ଏଇ ଘୁମୁଁ
ହାଜର ହେଲେ ତୋର ସଗର ବାଜୀ ଶ୍ରେୟ
ପାଙ୍କ କରିବ ମୋତେ ଘୁମୁଁରେ ।

ସେ ବିଚକ୍ଷଣା ରୂପସୀ ସେ କବିତା ଦେଖି ଦେଖି କହିଲା—ମଲା, ଯେ ଶ୍ରେଷ୍ଠା ସେ ନମସ୍କାର କଲେ କଣ ଅଧିକ ହେଲା ?

ତେଣୁ କବି ପୁଣି ତାହା ପରିବର୍ତ୍ତନ କରି ଲେଖିଥିଲେ—

ହାଜର ହେଲେ ନେହରଙ୍ଗ ବଜାଡ଼ ଗାଧ,
ପାଙ୍କ କରିବ ମୋତେ ଘୁମୁଁରେ ।

ଏ ପାଦ ପୂରଣରେ ତିଳୋତ୍ତମା କବିଙ୍କୁ ବହୁମାନ ଅର୍ପଣ କଲା । ଏବଂ ବହୁବାର ସାକ୍ଷାତ ଦେଇଥିଲା ।

ଯଦୁମଣି ପୁଶ୍ୱରେ ନରେନ୍ଦ୍ର କୋଣରେ ବସା କରିଥିବା ବେଳେ ଚନ୍ଦ୍ର ନାମକ ଦେବଦାସୀକୁ ଲକ୍ଷ୍ୟକରି ଯେଉଁ କବିତା ରଚନା କରିଥିଲେ, ସେ ଅଙ୍କୁଶ ଚତୁର୍ବିଂଶିଷ୍ଟ ନାରୀକୁ ସୁନ୍ଦର ଭାବରେ ଚିତ୍ରିତ କରୁ ନ ଥିଲେ ବୋଲି ତର୍ହିରୁ ଜଣାପଡ଼େ । ସେ ପୁଶ୍ୱରୁ ଫେରି ମହାରାଜାଙ୍କ ପ୍ରଦତ୍ତ ପ୍ରସାଦ ସମଗ୍ର ରାଜ୍ୟରେ ଗ୍ରାମ ଗ୍ରାମ ଧରି ବଣ୍ଟନ କରିବା ଘଟଣା ପ୍ରଜାମାନଙ୍କ ମଧ୍ୟରେ ତାଙ୍କଠି ଜାଣି ଆରମ୍ଭ ହୋଇ ତାଙ୍କଠି ଶେଷ ହୋଇଥିଲା ବୋଲି ଜନଶ୍ରୁତି ରହିଅଛି ।

ତାଙ୍କର ଏ ଉଦାରତା ଗୋଟିଏ ନୁହେଁ, ସେ ପର ପାଇଁ ଅନେକ ସମୟରେ ଜୀବନ ଦେଇଦେବାକୁ ପ୍ରସ୍ତୁତ ଥିଲେ । ରାଜଦ୍ୱାରରେ କେହି ଅଭିଯୁକ୍ତ ହେଲେ, ସେ ମୁଣ୍ଡକାଟ ଶାସ୍ତି ହେଉ ପଛେ ତାହାପାଇଁ ଲଢ଼ି ତାକୁ ମୁକ୍ତ କରି ଆଣୁଥିଲେ । ଏଣୁ ସେ ନିରନ୍ତର ଦୁଃଖୀ, ଦରିଦ୍ର, ଅସହାୟ, ବିଧବା, ଅନାଥମାନଙ୍କର ବନ୍ଧୁ ଥିଲେ । ସେସବୁର ପ୍ରତ୍ୟେକ ଘଟଣା ଗୋଟିଏ ଗୋଟିଏ ଇତିହାସ ହେବ । କିନ୍ତୁ ରାଜା ବିନାୟକଙ୍କ ପରେ ତାଙ୍କର ସମସ୍ତ କାର୍ଯ୍ୟର ଗୋଥିରେ କ୍ଷୋଭ ବନ୍ଧା ହେଲା । ସେ ମଦ୍ୟପ ଏବଂ ସର୍ପକୁ କେବଳ ଭୟ କରୁଥିଲେ । ତାଙ୍କ ଚରିତ୍ରରେ ଏହି ଦୁର୍ବଳତା ଏପରି ଭାବରେ ରହି ଆସିଥିଲା ଯେ ମୃତ୍ୟୁଯାଏ ଦୂର ହୋଇପାରି ନ ଥିଲା ।

ବୟସବୃଦ୍ଧି ସଙ୍ଗେ ସେ କଟୁ କଟୁ କବିତା ଲେଖିବାକୁ ମନ ବଳାଇଲେ । ଏହି ସମୟରେ ବହୁ କବିଙ୍କ ସହିତ ତାଙ୍କର ସାକ୍ଷାତ ଘଟୁଥିଲା । ତନ୍ମଧ୍ୟରେ ଗଞ୍ଜାମର କବି ହରେକୃଷ୍ଣ ପଟ୍ଟନାୟକ, କୃଷ୍ଣଚରଣ ପଟ୍ଟନାୟକ ପ୍ରଭୃତି ତାଙ୍କୁ ଏକାନ୍ତ ସମାଦର କରୁଥିବାର ଶୁଣାଅଛି ।

ଯଦୁମଣି ଏହିପରି ସୁଖ ଏବଂ ଆନନ୍ଦ ମଧ୍ୟରେ ତାଙ୍କର ପ୍ରିୟତମ ରାଜା ବିନାୟକ ଏବଂ ରାଣୀ କୁମୁଦିନୀଙ୍କ ସାହଚର୍ଯ୍ୟରେ ୧୮୩୦ ମସିହା ଶେଷଯାଏ ବହୁ ଦରିଦ୍ର ଜୀବନର ମହା ଉପକାରୀ ଥାଇ ନିଜେ ନିଜର ଜାୟା ଏବଂ କନ୍ୟା ଆଦି କୁଟୁମ୍ବ ସହଯୋଗରେ ପରମ ସୁଖରେ ଶାନ୍ତି, ସନ୍ତୋଷ, ସଙ୍ଗୀତ, ଉଦ୍ଦାମ ଯୌବନର ଧର୍ମ ଭଜନ ଇତ୍ୟାଦି ବନ୍ଧୁବାନ୍ଧବ ଧରି ନିଜ ଗ୍ରାମ ଇଟାମାଟିରେ ସର୍ବୋତ୍ତମ ବ୍ୟକ୍ତି ଭାବରେ ପ୍ରତିଷ୍ଠିତ ଥିଲେ । ବୟସ ସେତେବେଳକୁ ତାଙ୍କୁ ୪୯ ପୂରି ୫୦ ଚାଲୁଥାଏ ।

## ରାଣୀ କୁମୁଦିନୀ ଏବଂ ରାଜା ବିନାୟକଙ୍କ ବିୟୋଗ—

ଦିନେ ତାଙ୍କର ପ୍ରିୟତମା ଶାନ୍ତି ତାଙ୍କ ଘରକୁ ଆସିଥିଲେ ତାଙ୍କ ସ୍ୱାମୀ ଏବଂ ପୁତ୍ରକନ୍ୟାମାନଙ୍କ ସହିତ । ଦଶପଲ୍ଲାରୁ ଶଳା ଓ ଶଳା ଭାଉଜ ତାଙ୍କର ପିଲାପିଲି ଧରି ମଧ୍ୟ ଆସିଥିଲେ । ଗୃହ ତାଙ୍କର ଆନନ୍ଦ କୋଳାହଳଧ୍ୱନିରେ ମୁଖରିତ ହେଉଥିଲା । ଜାଗର ଯାତ୍ରା ଲିଙ୍ଗରାଜଙ୍କଠାରେ ହେବାକୁ ଆଉ ତିନି ଦିନ ଥିଲା, ତାହମାରିରୁ ମନୋରମା ଆସି ହାଜର—ତାର ଗୋଟେ କୁଟୁମ୍ବ ସାଥୀରେ ଧରି ।

ତାର ପୁଅ ଝିଅଙ୍କ କୁଟୁମ୍ବ ପୁଣି ନୂତନ ସ୍ୱାମୀଙ୍କ ଆଉର ଝିଅ ଦୁଇଟି ସାଥିରେ ଆସିଥିଲେ । ସମସ୍ତେ ଲଗେଇଲେ ଗଡ଼ସ୍ଥ ମନ୍ଦିରମାନ ଏବଂ ରଜା ଘର ଉଆସ ଦେଖିପିବେ ବୋଲି । ଯଦୁମଣି ସମସ୍ତ ବନ୍ଦୋବସ୍ତ କରି ଏହି ଦଳବଳ ଧରି ଯିବାକୁ ବାହାରିଥିଲେ, ହଠାତ୍ ଦାରୁଣ ମର୍ଘାତ ପ୍ରାପ୍ତ ରାଣୀ କୁମୁଦମାଙ୍କର ଦେହାନ୍ତ ଖବର ଗ୍ରାମ, ପଦା, ବଣ, କାନନ କାନ୍ତାର ବ୍ୟାପିଗଲା । ଯଦୁମଣି ହତଜ୍ଞାନ ହୋଇ ବସି ପଡ଼ିଲେ । ଏପରି କି ସେ ବର୍ଷ ମଧ୍ୟ ଜାଗର ଯାତ୍ରା ଜନଶୂନ ହୋଇଗଲା ।

ଯଦୁମଣି ରାଣୀଙ୍କ ବିୟୋଗରେ ରଜାଙ୍କୁ ସବୁ ପ୍ରକାର ସହାନୁଭୂତି ଦେଇ ଚଞ୍ଚଳ ରହିଥିଲେ । ଦୁର୍ଦ୍ଦୈବର ଖେଳ ଯେ, ବର୍ଷେ ନ ପୂରୁଣୁ ବିନାୟକ ଚାଲିଗଲେ । ଯଦୁମଣିଙ୍କର ସବୁ ସରିଲା । ହାୟ, ଏଇଠୁ ତାଙ୍କର ଦୁର୍ଭାଗ୍ୟ ଦୁର୍ଗର ଦ୍ୱାର ଖୋଲିଗଲା ।

ଯୁବରାଜ ରାଜ୍ୟରେ ଛତ୍ରକାହାଳୀ ସହିତ ସିଂହାସନରେ ବସିଲେ । କୋଦଳା ଆଠଗଡ଼ର ଅଶେଷ ରୂପବତୀ ଜେମାମଣି କଳାବତୀଙ୍କୁ ବିବାହ କରି ଶଳାଙ୍କ ସହିତ ମଦ୍ୟପାନରେ ରତ ହେଲେ । ରହୁଁ ରହୁଁ ନାନା ଦୁର୍ଘଟଣା ଘଟିଚାଲିଲା ।

ଏତିକବେଳେ ଯଦୁମଣି ଜଣେ ବ୍ରାହ୍ମଣ ପଣ୍ଡିତଙ୍କଠାରୁ ଗୋଟିଏ ଶ୍ଳୋକ ଶୁଣି ସେଥିରେ ଜୀବନକୁ ତନ୍ମୟ କରିଦେଲେ ।

ଶାଳୀ ରମ୍ଭା କର୍କଟୋ ବେଣୁ ନାଳଂ
ବିନାଶ କାଳେ ଫଳ ମୁଦ୍ ବହନ୍ତି
ତଥା ନରାଣାଂ ତ ବିନାଶ କାଳେ
ଦ୍ୟୂତଂ ଚ ମଦ୍ୟଂ ଚ ପରସ୍ତ୍ରି ଯୁକ୍ତ ।

ଧାନଗଛ, କଦଳୀ ଗଛ, ଆଖୁ ଗଛ, ବାଉଁଶ ଗଛ, ପଦ୍ମ ଗଛ ମରିବା ସମୟ ହେଲେ ଫଳନ୍ତି । ସେହିପରି ମଣିଷ ମୃତ୍ୟୁ ସମୟ ସମାଗତ ହେଲେ ସେ ଜୁଆ ଖେଳ, ମଦ୍ୟପାନ ଏବଂ ପରସ୍ତ୍ରୀଧର୍ଷଣରେ ଆସକ୍ତ ଆଣିଥାଏ । ନୂତନ ରଜା ଏସବୁ ସଦ୍‌ଗୁଣ (?) ରେ ଅଧିକାରୀ ହୋଇଥିବାରୁ ପଣ୍ଡିତ ମହାଶୟ ଏ ଶ୍ଳୋକଟି ଗାଇଥିଲେ ।

## ଅତି ଦୃଢ଼ତାରୁ ଜାଗିର ଉଚ୍ଛେଦ —

ବିନାୟକ ରଜାଙ୍କ ମୃତ୍ୟୁର ଦୁଇଟି ବର୍ଷ ଅତୀତ ନ ହେଉଣୁ ଯଦୁମଣି ତାଙ୍କର ଯେଉଁ ଜାଗିର ଖଣ୍ଡିକ 'ଗୁହ' ବୋଲି ଲେଖାଇ ଆଣିଥିଲେ, ନୂତନ ରଜା ତାହା ଉଚ୍ଛେଦ କରିଦେଲେ । ଦ୍ୟୂତ, ମଦ୍ୟ, ପରସ୍ତ୍ରୀ ସେନ ସେତେବେଳେ ପ୍ରକାଶ୍ୟରେ ଲୀଳା ଚାଲିଥାଏ । ନୂତନ ରଜା ବ୍ରଜବଲ୍ଲଭ ଆଠଗଡ଼ଜେମା ବିଶ୍ୱତସୁନ୍ଦରୀ ନବୀନା ରାଣୀ କଳାବତୀଙ୍କ ଭାଇ ରାମଚନ୍ଦ୍ରଙ୍କ ଯୋଗୁଁ ସେହି ବ୍ୟସନରେ ମାତି ଯାଉଥିବାର ଶୁଣା ଯାଉଥିଲା । ଯେଉଁ ବ୍ରାହ୍ମଣ ଜଣକ ଲାଞ୍ଛିତ ହୋଇଥିଲେ, ସେ ଉପରୋକ୍ତ ଶ୍ଳୋକଟି

ଯଦୁମଣିଙ୍କୁ ଉପହାର ଦେଇ ଯାଇଥିଲେ । ଯଦୁମଣି ମଧ୍ୟ ନୂତନ ରାଜାଙ୍କୁ ଉପଦେଶ ଦେବାକୁ ଯାଇ ଅପମାନିତ ହୋଇ ଏହାପରେ କୁଟୁମ୍ବଙ୍କ ଜୀବନରକ୍ଷା ଲାଗି ରଣପୁର, ଦଶପଲ୍ଲା, ଢେଙ୍କାନାଳ, ତିଗିରିଆ, କଣ୍ଡାମ୍ବା, ନରସିଂହପୁର, ଅନୁଗୁଳ, ବୌଦ, ଆଠଗଡ଼, ଖଲ୍ଲିକୋଟ, ମନ୍ଦ୍ରସା ଆଦି ରାଜ୍ୟକୁ ଗମନାଗମନ କରିବାକୁ ବାଧ୍ୟ ହେଲେ ।

ଉକ୍ତ ବ୍ରାହ୍ମଣ ଜଣଙ୍କର ଘର ଥିଲା ମୂଳବସନ୍ତ । ବରୁଣା ନଦୀ କୂଳରେ ବିରୂପାକ୍ଷ ମିଶ୍ର ନାମରେ ଖ୍ୟାତ ଜଣେ ପଣ୍ଡିତ ସେ ଥିଲେ । ତାଙ୍କୁ ନୂତନ ରାଜା ଧକ୍କା ବେକ୍କା ଦେଇ ନିକାଲି ଦେବାକୁ ଆଦେଶ ଦେବାରୁ ପଣ୍ଡିତ ମହାଶୟ ଏହି ଶ୍ଳୋକଟି ଯଦୁମଣି ମହାପାତ୍ରଙ୍କୁ ଉପହାର ଦେଇ ଚାଲିଗଲେ । ଯଦୁମଣି ଶ୍ଳୋକଟି ନୂତନ ରାଜାଙ୍କୁ ଦେବାମାତ୍ରେ ତାଙ୍କୁ ମଧ୍ୟ ରାଜ୍ୟରୁ ମନା ହୋଇଗଲା ।

ବୃଦ୍ଧ ବିରୂପାକ୍ଷ ମିଶ୍ର ରାଜା ବିନାୟକ ଥିବାବେଳେ ବହୁଥର ଆସି ସମ୍ଭାବନା ଲଭି ବିଦା ହେଉଥିଲେ । ରାଜା ତାଙ୍କଠାରୁ ଗୋଟିଏ ତନ୍ତ୍ରଗ୍ରନ୍ଥ ଲାଭ କରିଥିବାରୁ ଜୀବଦ୍ଦଶା ଥିବାଯାଏ ଯେବେ ଆସିବେ, ପଚିଶ ମୁଦ୍ରା ବିଦାକ ଖଞ୍ଜି ଦେଇଥିଲେ । ଏଥର ତାଙ୍କୁ କିଛି ଦିଆଯିବ ନାହିଁ ବୋଲି ପ୍ରଥମେ କୁହାଗଲା । କିନ୍ତୁ ସେ ବିନାୟକଙ୍କର ଲେଖା ଦେଖାନ୍ତେ, ତାଙ୍କୁ ନୂତନ ରାଜା ହଠାତ୍ ଅକଥ୍ୟ ଭାଷାରେ ଗାଳି ଦେଲେ । ରାଜା ଜଣେ ବେଶ୍ୟା ସହିତ ରଙ୍ଗମହଲରେ କୁଚସରେ ଆସକ୍ତ ଥିବାବେଳେ ପଣ୍ଡିତ ନିଷେଧ ଥିବା ଜାଣି ନ ପାରି ଉପସ୍ଥିତ ହୁଅନ୍ତେ ଏହି ଦୁର୍ଦ୍ଦଶା ଭୋଗିଲେ ।

ଯଦୁମଣି ନିଜେ ଏକାନ୍ତ ଅପମାନିତ ପୁଣି ଦାନାଦାର ରାଜାଙ୍କ ପୁତ୍ର ପ୍ରତି କୌଣସି କଠୋର ବାକ୍ୟ ପ୍ରୟୋଗ ନ କରି ନୀରବରେ ସର୍ବାଗ୍ରେ ଅନୁଗୁଳକୁ ଗମନ କଲେ ।

ସେତେବେଳେ ଅନୁଗୁଳର ରାଜା ଥିଲେ ସୋମନାଥ ଜଗଦ୍ଦେବ । ଏ ରାଜା ଏକାନ୍ତ ନିଷ୍ଠୁର ଥିଲେ । ଜଣେ ପଣ୍ଡିତମାନେ ତାଙ୍କ ଦର୍ଶନାର୍ଥୀ ହେଲେ ତାଙ୍କୁ ଯଥୋଚିତ ବିଦାକ ଦେଇ ଖଣ୍ଡ ପଠାଇ ଅରଣ୍ୟ ପଥରୁ ଉକ୍ତ ବିଦାକ ସହିତ ଆଉ ଯାହା ସେମାନଙ୍କଠାରେ ଥାଏ, ତା ମଧ୍ୟ ଲୁଟି ନେଉଥିଲେ । ସବୁଆଡ଼େ ଏହି ଜନରବ ପ୍ରବଳ ଭାବରେ ଶୁଭୁଥାଏ ।

## ଅନୁଗୁଳର ଶେଷ ରାଜା ସୋମନାଥ ଜଗଦ୍ଦେବ—

ଯଦୁମଣି ଏହି ଖଣ୍ଡଶିରୋମଣି ନରମଣିଙ୍କ ହାରସ୍ଥ ହେବାକୁ ତିଗିରିଆ ମାନପୁର ଶାଳୀ ଘରେ ପହଞ୍ଚିଲେ । ସଡ଼ୁ ଯୁଗଳକିଶୋର ଏକାବେଳେ ନାସ୍ତି କଲେ ଯେ - ତୁମ୍ଭେ ସେଠାକୁ ଯିବା ଅର୍ଥ ମୃତ୍ୟୁ ବରଣ କରିବା । ମୁଁ ଜମି ମାଣେ ବନ୍ଦୀ କରି ବରଂ ତୁମ୍ଭର ଅଭାବ ମେଣ୍ଟାଇବି, ତୁମ୍ଭକୁ ସେଠାକୁ ଛାଡ଼ିଦେବି ନାହିଁ । ଯଦୁମଣିଙ୍କୁ ପୁଣି ସେ କହିଲେ—ଅଳ୍ପ ଦିନର ସାଧାରଣ କଥାଟିଏ ଶୁଣ । ଉକ୍ତ ରଜାଙ୍କର

ମଇଁଷି ପଲ ବଣୁ ବଳବନ୍ତରାୟ ବୋଲି ଗୋଟିଏ ଶୂଦ୍ର ପାଏକର ଜଡ଼ା ବାଲରୁ କିଛି ଅଂଶ ଘାସ ଖାଇ ଖାଇ ଭାଙ୍ଗି ଦେଲେ । ଉକ୍ତ ବଳବନ୍ତରାୟ ରାଜାଙ୍କର ମଇଁଷିଚରା ଗଉଡ଼ଙ୍କୁ ବୁଝାଇ କହିଲା—ଭାଇ, ଫସଲ ମୋର ନୁହେଁ କି ତୁମର ନୁହେଁ । ଏ ଜିନିଷ ସବୁ ଜୀବ ରଖନ୍ତା । ଏପରି ଉଜାଡ଼ କରୁଛ ଯେ ଧର୍ମ ସହିବ ? ଏତିକି କଥା ।

ଗଉଡ଼ ବେହେରାମାନେ ଯାଇ ତାଙ୍କ କଥାକୁ ପଚିଶ କଥା କରି କହିଲେ—ବଳବନ୍ତରାୟ ଆମକୁ ମେଣ୍ଢିଆ ଦବ ବୋଲି କହିଲା । ଜଡ଼ା ବାଡ଼ିର କାନ୍ଥେ କାନ୍ଥେ ଆମ ମଇଁଷି କେତେପୁଳା ଘାସ ଖାଇଥିବେ କି ନା ?

ବୁଝା ନାହିଁ, ସମଝା ନାହିଁ । ସାତଶହ ଘୋଡ଼ସବାର୍ ଦୁଇହାତରେ ଉଲଙ୍ଗ ତୀକ୍ଷ୍ଣ ତରବାରିର ଦାଢ଼ମୁହଁ ଦେଖାଇ ତୀର ବେଗରେ ଅଫଳନ୍ତ ଜଡ଼ା-ବାଡ଼ିରେ ରାଜାଙ୍କ ହୁକୁମରେ ଚାଲିଗଲେ । ବଳବନ୍ତରାୟ ସହିତେ ପଚିଶ ଘର କୃଷୀଙ୍କର ଦଶ ବାଟୀ ଜମିର ଜଡ଼ା ପାଞ୍ଚ ଦଶ ଥର ଏତେ ଯାଆନ୍ତେ ଆସନ୍ତେ ସବୁ କଟିଗଲା । ଜାଣ ସତ୍ତ୍ୱ, ବୃଦ୍ଧ କାଳରେ ଧର୍ମ୍ମାବତାର ରାଜା ନିଜେ ସେ ଦଳରେ ଥାଇ ଯେ ଏହା କଲେ ? ରାୟ ପାଆନ୍ତେ କୃଷକ ପରିବାରରେ କାନ୍ଦ ବୋବାଳି ପଡ଼ିଲା । ତାଙ୍କ ଛଡ଼ା ଗୋଟିଏ ବୋଲି ଡାଳ ସେ ଦଶ ବାଟୀ ଜମିରେ ଆଉ ଦେଖାଗଲା ନାହିଁ ।

ଶୁଣୁଡ଼ାରେ ସୋମନାଥପୁର ବୋଲି ବ୍ରାହ୍ମଣ ଶାସନ ସେଇ ରାଜା ବସାଇଥିଲେ । ସେଥିର ଦାନାଧ୍ୟକ୍ଷ ରାମଭଦ୍ର ମହାପାତ୍ରେ ଏହା ଶୁଣି କହିଲେ—'ତାଙ୍କ ଗୁଣ କାଣ୍ଡବାଉଁଶରେ ନ ଥିବ ।' ଯାହାଙ୍କୁ ସେ ଜମିଭୂମି ଦାନ ଦେଇ ଅତି ଭଲ ପାଉଥିଲେ, ଏକଥା କହିବା ପରଦିନ ଦେଖାଗଲା ଯେ ସେଇ ଗାଁ ମୁଣ୍ଡ ବରଗଛର ଏକ ଡାଳରେ ମହାପାତ୍ରଙ୍କ ବେକ ଏକ କାଣ୍ଡିର ଗୁଣରେ ଗୁଡ଼ିଆ ହୋଇ ଓହଳୁଛି । ଚାରିଆଡେ ହାହା ହାହା ଡାକ ପଡ଼ିଲା । ସେହି ଘଟଣାରେ ତରାସ ଦଳବେହେରାଙ୍କ ଭାଇ 'ହାଣ୍ଡି ଅଶିଳ' ପରା କହିଲେ—'ରଜା ନୁହନ୍ତି ଯେ ରଞ୍ଜା ହୋଇଛନ୍ତି ।' ସେଇ ରାତ ଅଶିଳେ ହାଣ ଖାଇ ବାଉଁଶ ଝଞ୍ଜାରେ ଉକୁରୁ ଥିବାର ଦେଖାଗଲା ।

ଲୁହା ତାରରେ ବିଶାଳ ପଥରମାନ ଛନ୍ଦାଯାଇ ତାଙ୍କ ପୁରୁଣା ଗଡ଼ ସିଂହଦ୍ୱାରରେ ଏପରି ଯନ୍ତ୍ର କରାଯାଇଛି, ତା ଭିତରକୁ ଶହ ଶହ, ମହାଶହ ଏଇ କମ୍ପାନୀ ସିପାହୀମାନେ ପଶି ପାରିବେ ନାହିଁ । କଥା କଥାକେ ଅନ୍ଧାରୁ ସେଠି । ମଣିଷକୁ ସେ ରଜା ଚପାକ ମାଛୁଟୋଉ ନ୍ୟୂନ ମଣନ୍ତି ।' ଯଦୁମଣି ଏପରି କେତେକଥା ଶୁଣିଲେ । ଉତ୍ତରରେ ସେ କହିଲେ—ହଁ, ହୋଇପାରେ । ତେବେ ତାଙ୍କର ବହୁ ସଦ୍‌ଗୁଣ ମଧ୍ୟ ରହିଛି । ସେ ଇଂରାଜୀ କମ୍ପାନୀ ରାଜଶକ୍ତିକୁ ମାନନ୍ତି ନାହିଁ । କନ୍ଧମାଳର ବିଦ୍ରୋହୀମାନେ ତାଙ୍କରି ଯୋଗୁଁ ଜୀବନ ଧରି ରହିଛନ୍ତି । ଦେଖାଯାଉ, ମୁଁ ନିଶ୍ଚୟ ଯିବି । ଯାହାର ଏପରି ଜାତିପ୍ରୀତି ଅଛି, ସେ କେବେ ଅତି ପାଷାଣ୍ଡ ହୋଇ ନ ପାରେ ।

ତାଙ୍କୁ ତାଙ୍କ ଶାଳୀ ଝିଟକମଣି କେଭେ ଛାଡ଼ଦେଲେ ନାହିଁ । ଅଞ୍ଚଳରେ ବାନ୍ଧି ଅଟକାଇ ରଖିଲେ । କିନ୍ତୁ ଯଦୁମଣି ଜଦ୍‌ଖୋର । ସେ କିଣ୍ଟେ ଯିବେ । ଇନ୍ଦ୍ରଜାଲ ପରି ସେଠୁଁ ଖସି ଆସିବେ ଏଇ ବାଟେ । ଅକସ ମସ୍ତରେ ହେଲେ ଶାଳୀ ଆଉ ଭଣୋଇଁ ।

ଯଦୁମଣି ଅନୁଗୁଳ ଗଡ଼ରେ ପହଞ୍ଚି ଜଗନ୍ନାଥ ମନ୍ଦିରରେ ସଞ୍ଜ ବସା ପାଇ ରହିଲେ । ରାଜା ବହୁମାନ ଅର୍ପଣ କଲେ । ଶାସ୍ତ୍ରଚର୍ଚ୍ଚା ମଧ୍ୟ କରାଦେଲା । ଗ୍ରନ୍ଥ ତଜପଦର ଅର୍ଥ ହେଲା ।

ଯଦୁମଣି ରାଜାଙ୍କଠାରେ କୌଣସି ଭେଦବୁଦ୍ଧି ବା ନିଷ୍ଠୁରତାର କ୍ଷୀଣ ସତ୍ତ୍ୱ ଦେଖିବାକୁ ପାଇଲେ ନାହିଁ । ଦିନେ ଦିନେ ରାଜା ତାଙ୍କୁ ଡକାଇ ତାଙ୍କ ରଚିତ କବିତାମାନ ଶୁଣି ପ୍ରଶଂସା କରି ଗ୍ଭଲିଲେ । କିନ୍ତୁ ଜଣେ ଜଗନ୍ନାଥଙ୍କ ପଣ୍ଡା, ଯେ କି ଚଞ୍ଚାମରୁ ପୂର୍ବରୁ ହେବ ଆସିଛି । ସେ ଯଦୁମଣିଙ୍କୁ ଦିନେ ବିଶ୍ୱାସରେ ଗୋପନରେ ଗଣ ଦେଇ କହିଲା—'ଅବଧାନେ, ଆପଣଙ୍କୁ ନିଷ୍ଟପ୍ତ କଳାପାହାଡ଼ଙ୍କ ଝଣ୍ଡା ଛୁଆଁ ହେବେ । ଖସିଯିବାର ମଧ୍ୟ ବାଟ ନାହିଁ ।' ଯଦୁମଣି ବହୁ ପ୍ରଗଲ୍ଭନ କଥା ତାଠୁଁ ଶୁଣି କହିଲେ—ମୁଁ ତ ତାଙ୍କର କୌଣସି ଅନିଷ୍ଟ କରୁ ନାହିଁ, ମୋ ପରି ଜଣେ ବିଦେଶୀକୁ ସେ ଏପରି ଦୁଷ୍ଟାମୀ କାହିଁକି ଦେଖାଇବେ ? ପଣ୍ଡା କହିଲା—ଅବଧାନ ! ତାଙ୍କର ଜନ୍ମରାଶିର ଗୁଣ । ସେ କାମାତୁର ହୋଇ ତାଙ୍କ ରାଣୀଙ୍କୁ କାନ୍ଧରେ ନେଇକରି ଯିବାକୁ ଲଜ୍ଜିତ ନୁହନ୍ତି । କିନ୍ତୁ କ'ଣ କରିବେ ବୋଲି ଜାଣିଲା ପଥର ଉପରେ ହେଉ କି ଭଷୁକନା କୂଅରେ ହେଉ ପକାଇଦେବେ ।

ଯଦୁମଣି ପଚାରିଲେ—ଏପରି କ'ଣ ଘଟିଛି ? ପଣ୍ଡା କହିଲେ—ଶହ ଶହ ଥର । ତେବେ ରାଣୀଙ୍କ ପାଖରେ ସେ ପ୍ରତାପ ଦେଖାଇବାକୁ ସାହସୀ ନୁହନ୍ତି । ରାଣୀ ହେଉଛନ୍ତି ରେଓ୍ୱାର ବଘେଲ୍ ଜେମା । ସେ ମଧ୍ୟ ଗୁରୁ ଦତ୍ତଆରଧାଧିଣୀ । ସେଇଠି ଡରନ୍ତି ଟିକିଏ । ରାଣୀ ମଧ୍ୟ ଶହ ଶହ ତରବାରୀଧାରିଣୀ ମାଇପି ଶୂଦ୍ରାଣୀମାନଙ୍କୁ ରଖିଛନ୍ତି । କିନ୍ତୁ ଫୁଲବେଣ୍ଟିଙ୍କ ଦୁର୍ଦ୍ଦଶା କହିଲେ ନ ସରେ ।

କିଛିଦିନ ପରେ ଯଦୁମଣି ସମସ୍ତ ବିଦ୍ୟା ଶେଷକରି ଏଥର ବିଦାୟ ଲାଗି ରାଜାଙ୍କୁ ଜଣାଇଲେ । ଅତ୍ୟଧିକ ମୁଦ୍ରା ବିଦାକ ସହିତ ଶାଲ, କୁଣ୍ଡଳ, ପାଟପଥା ଆଦି ସଙ୍ଗେ ସଙ୍ଗେ ଦିଆଗଲା । ସଞ୍ଜ ସୁଦ୍ଧା ବିଦାକ ସରିବାରୁ ସେ ତତ୍ପରଦିବସ ପ୍ରାତଃକାଳରେ ପୁନର୍ବାର ଦେଖାକରି ରାଜାଙ୍କୁ ଜଣାଇଲେ—ଅଜ୍ଞା ! ରାଜାଙ୍କ ମୋ ପ୍ରତି ଏତେ ଅଧିକ ଶ୍ରଦ୍ଧା ଦେଖାଇଲେ । ତେଣୁ ମୁଁ ରାଜାଙ୍କୁ ଗୋଟିଏ ମହାର୍ଦ୍ଧ ବିଦ୍ୟା ଦେଇଯିବି । ଉକ୍ତ ବିଦ୍ୟାର ନାମ ତିରସ୍କରଣୀ ଅଟେ । ରାଜାଙ୍କ ଇଚ୍ଛାକଲେ ଉକ୍ତ ବିଦ୍ୟାବଳରେ ମନ୍ତ୍ର ଘେନିବାର ବତ୍ସାଳିଶି ଦିନ ପରେ ସର୍ବସମକ୍ଷରେ ଥାଇ ମଧ୍ୟ ଦେଖାଯିବେ ନାହିଁ । ରାଜା ଏପରି କିଛି ତ ଖୋଜୁଥିଲେ । ତେଣୁ ବ୍ୟାକୁଳ ହୋଇଉଠିଲେ ।

## ଯଦୁମଣିଙ୍କ ଇନ୍ଦ୍ରଜାଲ ବାକ୍ସ—

ରଜା ସୋମନାଥ ଚମତ୍କୃତ ହୋଇ ତୁରନ୍ତ ସେ ବିଦ୍ୟାର ଖେଳ ଦେଖିବାକୁ ବ୍ୟାକୁଳ ହେଲେ । ଯଦୁମଣି ପୂର୍ବରୁ ଏ ରଜାଙ୍କର ମନକଥା ଜାଣି ସେ ଟିଏ ବାକ୍ସକୁ ଅତ୍ୟନ୍ତ ସୁନ୍ଦର ଭାବରେ ଚିତ୍ରଣବିଦ୍ୟାରେ ଲୋଭାକର୍ଷିତ କରି ଆଣିଥିଲେ । ସଭା ବସିଲା, ଯଦୁମଣି ବଡ଼ ବାକ୍ସରୁ ଅଳ୍ପ ସାନ ସାନ ହୋଇ ସାତ ଗୋଟି ବାକ୍ସ ବାହାର କରି ଗୋଟିଏ ସୁରମ୍ୟ ପାହାଡ଼ା ଉପରେ ଥୋଇ ସାରି ଶେଷ ବାକ୍ସରୁ ଚିନାଂଶୁକ ଛିଅରି ଟାଣେଇଆ ଗୋଟିଏ ଦର୍ପଣାକୃତି ଜିନିଷ ଯାହା ଧରିବାକୁ ବେଣ୍ଟ ରହିଛି ଏପରି ଏକ ପଦାର୍ଥ ବାହାର କଲେ । ଅତ୍ୟନ୍ତ ଶୁଚିତାରେ ଜନମନ ଆକର୍ଷଣ ଲାଗି କିଛି ମିଛ ଯନ୍ତ୍ର ମନ୍ତ୍ର କରି ତାହା ରଜାଙ୍କ ଶ୍ରୀହସ୍ତରେ ଦେଇ କହିଲେ— ଆପଣ ଏହି ଚୀନାଂଶୁକ ଦର୍ପଣଦ୍ୱାରା ବର୍ତ୍ତମାନ ସମ୍ମୁଖବର୍ତ୍ତୀ ସାତୋଟି ବାକ୍ସକୁ ଅନାନ୍ତୁ । ଆପଣଙ୍କର ସପ୍ତପୁରୁଷ ଏଥିରେ ଦେଖାଯିବେ । ଶ୍ୱେତବର୍ଣ୍ଣ ପାଖେ ଦେଖିଲେ ଆପଣ ପିତୃ ସପ୍ତପୁରୁଷ ଏବଂ ପୀତବର୍ଣ୍ଣ ପାର୍ଶ୍ୱରେ ଆପଣଙ୍କର ମାତୃ ସପ୍ତପୁରୁଷ ଦେଖାଯିବେ ।

ସଭାରେ ଚହଳ ପଡ଼ିଗଲା । ରଜାଙ୍କୁ ପ୍ରକୃତରେ କିଛି ଦେଖାଗଲା ନାହିଁ । ସେ କେବଳ ବାକ୍ସଗୁଡ଼ିକ ଦେଖୁଥାନ୍ତି । ଯଦୁମଣି ରଜାଙ୍କ କାନରେ କହିଲେ—ଏତିକି ସାମାନ୍ୟ କଥା ଯେ, ଜାରଜ ନ ହେଲେ ଦେଖାଯିବ । ଜାରଜ ହେଲେ ଦେଖାଯିବ ନାହିଁ । ରଜା ଜାରଜ ହେବା ଭୟରେ ବହୁ ସଭାସଦ୍ ଏବଂ ଜନସମାଜ ମଧ୍ୟରେ ସ୍ପଷ୍ଟ ଦେଖାଯାଉଛି ବୋଲି ଘୋଷଣା କଲେ ।

ମନ୍ତ୍ରୀ, ପାତ୍ର, କରଣ, ବେବର୍ତ୍ତା, ପାଞ୍ଜିଆ ସମସ୍ତେ ଦେଖି ଜାରଜ ହେବା ଭୟରେ ସ୍ପଷ୍ଟ ଦେଖାଯାଉଛି ବୋଲି ବର୍ଣ୍ଣନା ସଙ୍ଗେ ପ୍ରଶଂସା କରି ଚାଲିଲେ । ରଜା ଏହାପରେ ବାଧ୍ୟ ହୋଇ ଶୁଚିବନ୍ତ ଅବସ୍ଥାରେ ଇଷ୍ଟଦେବତା ସ୍ମରଣ କରି ତିରସ୍କରଣୀ ବିଦ୍ୟାର ମନ୍ତ୍ର ଯଦୁମଣିଙ୍କଠାରୁ ଗୋପନରେ ଗ୍ରହଣ କଲେ । ଦକ୍ଷିଣା ସ୍ୱରୂପ ପୁନଶ୍ଚ ବହୁ ମୁଦ୍ରାମଧ୍ୟ ଦିଆଗଲା । ରଜା ମନେ ମନେ ଭାବିଲେ ଯେବେ ସେ ଜାରଜ, ତେବେ ବଞ୍ଚିବ କିପରି ? କିନ୍ତୁ ନିଜକୁ ଗୋପନ କରିନେଲେ ତ ଜାରଜ ପ୍ରଶ୍ନ ଉଠୁ ନାହିଁ । ତେଣୁ ଏ ବିଦ୍ୟାରେ ସେ ଗୋପନରେ ରହିବାଦ୍ୱାରା ତାଙ୍କର ବହୁ ଉପକାର ସାଧିତ ହେବ । ବାକ୍ସଗୁଡ଼ିକ ନିଜ ହୃଦୟାଗାରରେ ରଖି ମନେ ମନେ କିପରି ବସ୍ତ୍ରାନ୍ତଃପୁର ଉନ ଗଲେ ପରୀକ୍ଷା କରିବେ, ବ୍ୟାକୁଳ ହୋଇଉଠିଲେ ।

ଯଦୁମଣି ସେଦିନ ରଜଦ୍ୱାରରୁ ଓଳିରେ ଫେରି ଭୋଜନ ସାରି ଦ୍ୱିପ୍ରହରରେ ଜଗନ୍ନାଥ ମନ୍ଦିର ମୁଖଶାଳାରେ କପାଟରେ ଦୁଆର ବନ୍ଦକରି ଶୋଇଗଲେ । ସନ୍ଧ୍ୟା ହେଲା । କବାଟ ଫିଟିଲା ନାହିଁ । ପଣ୍ଡା ଡାକି ଡାକି ନିରୁପାୟ ହୋଇ ରଜାଙ୍କୁ ଗୋଚର କଲେ । ଯଦୁମଣିଙ୍କ ବିଦ୍ୟାର ଏହା କିଛି ସମସ୍ୟା ନୁହେଁ ତ ?—ଏହା

ଛୁବ ରଜା ହାତରେ ଆଘାତ କରନ୍ତେ ଯଦୁମଣି ହାଇମାର୍ ଶଯ୍ୟା ତ୍ୟାଗ କରି ଅନ୍ଧକାର ମଧ୍ୟରେ ଉଠିଲେ । କହିଲେ—"କି ଦୁର୍ଭାଗ୍ୟ ! ମୁଁ ଏପରି କ୍ଳାନ୍ତ ହୋଇ ଶୋଇ ପଡ଼ିଲି । ତୁମ୍ଭେ ନିଜେ ମଧ୍ୟ ଏଠାକୁ ଝଟକେହେବା ହେଲେ । ଏ ଠାକୁର କ'ଣ ଏତେ ନିର୍ଜୀବ ! ମତେ ଟିକିଏ ଉଠେଇ ଦେଲେ ନାହିଁ । ମୋର ଧାରଣା, ଠାକୁର ନିଶ୍ଚେ ଉଠାଇ ଦେବେ । ଆମ ସେଠି ରାଜପ୍ରତିଷ୍ଠିତ ଦେବତାଙ୍କୁ ଡାକିଲେ ସେ ନିଶ୍ଚେ ଜବାବ୍ ଦେବେ । 'ଓଁ' ମଧ୍ୟ କରିବେ ।"

## ଦେବତା ଡାକିଲେ 'ଓଁ' କରନ୍ତି—

ରାଜା ଏ କଥା ଶୁଣି ସ୍ତମ୍ଭୀଭୂତ ହୋଇଗଲେ । ଏହା କିପରି ଘଟଣା ! ଯଦୁମଣି କହିଲେ—'ତୁମ୍ଭେ ମୋ ସହିତ ମୁଖ୍ୟ ଦୁଇଜଣ ସଚିବଙ୍କୁ ପଠାନ୍ତୁ । ମୁଁ ନିଶ୍ଚୟ ଏହା ଶୁଣାଇଦେବି । ଯେବେ ସେପରି ଦେବପ୍ରତିମା ଲାଗି ତୁମ୍ଭେ ଇଚ୍ଛା କରନ୍ତି, ତେବେ ମୁଁ ସେ ମୂର୍ତ୍ତି ଗଢ଼ିବି ଏବଂ ତାର ପ୍ରାଣ ପ୍ରତିଷ୍ଠା ଲାଗି ବିଖ୍ୟାତ ପଣ୍ଡିତ ଅଚ୍ଯୁତ ସମୁସର ବସ୍ତୁଚନ୍ଦରେ ତାଙ୍କୁ ନେଇ ଆସିବି ।' ରାଜା ମଧ୍ୟ ବସ୍ତୁ-ଚନ୍ଦର ତାନ୍ତ୍ରିକଙ୍କ କଥା ଶୁଣିଥିଲେ । ତେଣୁ ସେ କହିଲେ—'ତେବେ ଦୁଇଜଣଙ୍କୁ ତୁମ୍ଭ ସାଥିରେ ଆମ୍ଭ ତୁମ୍ଭଠାରୁ ପଠାଇବୁଁ । କାଲି ସକାଳୁ ତୁମ୍ଭେ ଡମ୍ପିରେ ଯାଅ । ସେମାନେ ଶୁଣିକରି ଆସିଲେ ଆମ୍ଭେ ତୁମ୍ଭକୁ ନିଶ୍ଚୟ ପୁଣି ଡକାଇବୁଁ ।'

ଡମ୍ପିରେ ଆରୋହଣ କରି ଦୁଇଜଣ ଯୋଗ୍ୟ ସଚିବଙ୍କ ସହିତ ଯଦୁମଣି ପ୍ରଥମ ଦିନ ତାଙ୍କ କଳ୍ପିତ ଓଗିରିଆରେ ପହଞ୍ଚିଗଲେ । ଶାଳୀକୁ ପ୍ରୀତକରି ନିଘାପାର ହୋଇ ଗୃହକୁ ଗ୍ଭଲେ । ଶାଳୀ କହିଲେ—ଧନ୍ୟ ଶିରୋମଣି ନରମଣିଙ୍କ ମଣି ତ ଯଦୁମଣି । ସେ ସବରେ ଘର ହସରେ ଉଚ୍ଛୁଳି ପଡ଼ିଲା ।

ଯଦୁମଣି ସନ୍ଧ୍ୟାପରେ ଗ୍ରାମରେ ପହଞ୍ଚି ସମାଗତ ସଚିବ ଏବଂ ଯାନବାହନ-ମାନଙ୍କୁ ଉତ୍ତମ ଖାଦ୍ୟପେୟରେ ଚର୍ଚ୍ଚା କରି ମନ କିଣିନେଲେ । ନିଶାର୍ଦ୍ଧରେ ତାଙ୍କ ଗ୍ରାମର ଏକ ମନ୍ଦିରକୁ ଲାଗିଥିବା ଦେବତା ସଂଜ୍ଞାଧାରୀ ବ୍ରାହ୍ମଣ 'ଆହେ ଦେବତା', 'ଆହେ ଦେବତା', ଡାକ ଶୁଣି 'ହାଁ ହାଁ, ହୁଁ ହୁଁ' କରନ୍ତେ ଉକ୍ତ ଭଦ୍ରବ୍ୟକ୍ତିମାନେ ଉପୁରେ ଘୁଞ୍ଚି ଆସିଥିଲେ । ଏମନ୍ତ କି ଏପରି ଖୋଜିଆ ଜାଗାରେ ଜୀବନରକ୍ଷା ଅସମ୍ଭବ ମଣି ସାହାନ୍ତାରୁ ପଥ ପରିବର ପଳାଇ ଥିଲେ । ସେ ଏହିପରି ଅନୁଗୁଳ ଜୟ କରି ଫେରିଥିଲେ ।

ଯଦୁମଣି ତାଙ୍କ ମାମୁଁଘରକୁ ଯିବା ଆସିବା କରିବା ଫଳରେ ରଣପୁର ରାଜାଙ୍କ ସହିତ ବନ୍ଧୁ ସମ୍ପର୍କରେ ଦେଖାହୁଏ । ଏମନ୍ତ କି ସେ ମଧ୍ୟ ତାଙ୍କୁ ଯଥୋଚିତ ସାହାଯ୍ୟ କରିଥାନ୍ତି । ଦୀର୍ଘ କୋଡ଼ିଏ ବର୍ଷ କାଳ ସେ ଏପରି ମାଗିଯାଚି ଚଳିବା ସମ୍ଭବପର ହୋଇଥିଲା । ଏହି ମଗାଯଚ୍ଛା କେବଳ ରାଜଧାମୀମାନଙ୍କୁ ସାମୟିକ ଯାଇ

ସଙ୍ଗୀତ, ସାହିତ୍ୟ ସୂତ୍ରରେ ସେ ଲାଭ କରୁଥିଲେ । ଖଲ୍ଲିକୋଟ ରାଜା ନାରାୟଣ ମର୍ଦ୍ଦରାଜ, ମହୁରୀର ରାଣୀ, ଆଠଗଡ଼ ରାଜା ବାଲୁକେଶ୍ୱର ତାଙ୍କ ସୁଖସମ୍ଭୋଗ ଲାଗି ଯଥେଷ୍ଟ ଧନ ଦାନ କରୁଥିଲେ । ପରେ ସେ ତିଗିରିଆରୁ ମଧ୍ୟ ବଡ଼ାମ୍ବା ମଙ୍ଗରାଜଙ୍କ ସାକ୍ଷାତ ପାଇ ସମ୍ମାନିତ ହୋଇଥିଲେ ।

ଖଣ୍ଡପଡ଼ାର କୃଷ୍ଣଚନ୍ଦ୍ର ଭ୍ରମରବରଙ୍କ ସମୟରେ ସେ ତାଙ୍କର ମନ୍ତ୍ରୀମାନେରୁ ନାମକ ଠାକୁର ପ୍ରତିଷ୍ଠାନକୁ ଆସିଥିଲେ । ସେହି ସମୟରେ ସେ ଇଚ୍ଛାପୁର ଗ୍ରାମରେ ଥିବା ରାଜାଙ୍କ ଗୁରୁଗୋସେଇଁ ନରଞ୍ଜନ ମହାପାତ୍ରଙ୍କ ସମକ୍ଷରେ ଗୌଡ଼ୀୟ ବୈଷ୍ଣବ-ମାନଙ୍କ ମେଳରେ ତାଙ୍କ ଦାଣ୍ଡ ଚଉପାଢ଼ୀରେ ସଂସ୍କୃତ ଭାଗବତ ଚର୍ଚ୍ଚା ଶୁଣି ମୋହିତ ହୋଇଗଲେ । ସେ ଗୁରୁ ଗୋସେଇଁଙ୍କ ଅନୁରୋଧରେ ସେଠାରେ ଦଶଦିନ ରହିଲେ । ଜୀବନ ପ୍ରତି ବୀତସ୍ପୃହ ଥିବାରୁ କୃଷ୍ଣ ଚରିତ ତାଙ୍କୁ ଅମୃତ ପ୍ରାୟ ବୋଧହେଲା । ଏମନ୍ତ କି ସେହି ନିଷ୍ଠୁର ପ୍ରତ୍ୟକ୍ଷବାଦୀ ଜଣକ ଗୁରୁଗୋସେଇଁଙ୍କୁ ଗୁରୁ କରି ତାଙ୍କଠୁ ମନ୍ତ୍ର ଗ୍ରହଣ କଲେ ।

ଭାଗବତ ବର୍ଣ୍ଣିତ ପାଦପଦ୍ମାଷ୍ଟକର ଅର୍ଥ ଏବଂ ଭାବ ସେଠାରେ ଚର୍ଚ୍ଚା ହେଉଥାଏ । ଯହିଁରେ-'ଯତ୍ପାଦପଦ୍ମରଜସାସହସାପ୍ୟ ହିଲ୍ୟା; ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍, ଇତ୍ୟାଦିରେ ପାଦପଦ୍ମ, ପାଦ ପଙ୍କଜ, ପଦାରବିନ୍ଦ କୁହାଯାଉଥାଏ, ତାହା ସେ ଶୁଣି ଶୁଣି ଘରକୁ ଫେରିଲେ । ତାଙ୍କ ଚିତ୍ତରେ ଜାଗ୍ରତ ହେଲା ଯେ ଏଠି ପଦ୍ମ ସେହି ପାଦ ପରି କହିବା କପରି ସିଦ୍ଧାନ୍ତ କରାଗଲା ।' ପଦ୍ମ ପରି ଜଡ଼, ଶୀହୀନ, ଧ୍ୱଂସପ୍ରାପ୍ତ ବସ୍ତୁ ସହିତ ଅକ୍ଷୟ ସେ ପାଦକୁ କପରି ମନସ୍ୱୀ ପଣ୍ଡିତଗଣ ଯୋଗକଲେ ? ଯେଉଁ ବାମନପାଦ ବ୍ରହ୍ମାଣ୍ଡର ପାଳନକର୍ତ୍ତା, ଯେଉଁ ଅନନ୍ତଶାୟିତ ଲକ୍ଷ୍ମୀଙ୍କ ସମ୍ବାହନ କୁଶଳ ନାରାୟଣ ପାଦଯୁଗଳ, ଅଖିଳ ଦେବଗଣର ପ୍ରୀତିବର୍ଦ୍ଧକ, ଯେ ବିଷ୍ଣୁପାଦ ପୁଣ୍ୟତୋୟା ଗଙ୍ଗାର ଜନନକାରୀ, ତାହା ପଦ୍ମ ସହିତ ଯୁକ୍ତ ହେବା ନିଶ୍ଚୟ ଅଶୋଭନୀୟ । ଯାହା ମନକୁ ପାଇଟଲା ସେଥିରେ ସେ ଦୃଢ଼ ହୋଇଉଠିଲେ । ଏହା ବୋଲି ଯେ ଶଙ୍ଖ, ଚକ୍ର ଗଦା ସହିତ ସେହି ବିଷ୍ଣୁ ପଦ୍ମକୁ ଧାରଣ କରିଥିଲେ ପୁନଶ୍ଚ ବିଷ୍ଣୁଙ୍କ ନାଭି କମଳରୁ ବିଧାତା ଯେ ଜନ୍ମ ଲଭିଥିଲେ ବା ତାହା ଲକ୍ଷ୍ମୀଙ୍କ ଆଳୟ, ଏହା ସେ ଜାଣି ନ ଥିଲେ ନୁହେଁ, କିନ୍ତୁ କବି ମନ ତ—ଏ ଢଙ୍ଗରେ ଭାସି ଯାଇ କାବ୍ୟ ଏକ ଆରମ୍ଭ କରିଦେଲେ ।

ମଧୁପର ପଦ ଅନନ୍ତ ତେଜେ
ପଦ୍ମାକରର ମଣ୍ଡନତା ସର୍ଜେ
ହଂସ ମତରେ ଜାଣି ଏହି ମୂଳ
ତାର କବଳେ ବର୍ଜିଥାନ୍ତି କୂଳ ସେ
ମୀନଧ୍ୱଜ ରୂପେ ଶୋଭା ସେ

ଅଯୋଗୀ ଯେ ଶୁଜ ସଜାର ତାରଣେ
ପ୍ରକାଶିତ କରେ ଦ୍ରବ୍ୟ ଯେ ।

× × × ×

ଅଘାର ଅଂଘ୍ରିକ ଅମ୍ବୁଜ କର
ଛବ ବର୍ଣ୍ଣିବାର କବ ଘୃଣୁସ ; ଇତ୍ୟାଦ ।
(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର, ପ୍ରଥମ କଳା, ପ୍ରଥମ ପଦ ଦେଖ)

## ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ରଚନା—

ପୂର୍ବମତେ ସେ ଯାହା ଭାବଥିଲେ ତାହା ହିଁ ବର୍ଣ୍ଣନା କର ଗ୍ଲଲେ । ବଷ୍ଣୁଙ୍କ ପାଦ ସହିତ ଅମ୍ବୁଜ ମିଶାଇ ବର୍ଣ୍ଣନା କରିବା କେବଳ ନବଗୃହୁର୍ଯ୍ୟ ଅଟେ । ସେ ପ୍ରମାଣିତ କଲେ ତାହା କେବେ ବର୍ଣ୍ଣିତ ହେବାର ନୁହେଁ । ଅନନ୍ତର ସେ କୃଷ୍ଣରସରେ ମତୁଆଳ ହୋଇ ଲେଖିଲେ—

'ଏମନ୍ତ ଗୁରୁ ଗୀର୍ବାଣଙ୍କ ଗୀରରୁ 'କୃଷ୍ଣ' ବର୍ଣ୍ଣ ଦୁଇ ମୋର କର୍ଣ୍ଣେ ସଞ୍ଚରୁ ମୁଁ ତାହା ପାନ କରିବାଦ୍ୱାରା ମୋ ମୁହଁରେ ତାହା ଉଛୁଳ ପଡ଼ିଲା । ସେହି ହେଉଛୁ ମୋର ଏହିରଚନା ।' ବଶେଷରେ ସେ ଶୂଦ୍ର ବଢ଼େଇ ଜାତିର ଥିବାରୁ ଗ୍ରନ୍ଥରେ ନଜର ନ୍ୟୂନତା ପ୍ରତିପାଦନ କରିବାକୁ ଯାଇ ପୁଣି ସମାଜପତି ବ୍ରାହ୍ମଣମାନଙ୍କୁ କହିଛନ୍ତି— ତୁମେ ତ ପୁଣି ଚଣ୍ଡାଳ ଗହ୍ମ ଅଇଁଠା ଚନ୍ଦ୍ରକୁ ମସ୍ତକରେ ଧରିଥିବା ଚନ୍ଦ୍ରଶେଖର ଶିବଙ୍କର ସ୍ତୁତିବନ୍ଦନା କରୁଛ । ଯେଉଁ ପରମ ପାବନ କୃଷ୍ଣରସ ମୋ ପରି ଶୂଦ୍ର ମୁଖରୁ ବାହାରି ପଡ଼ିଲା, ତାକୁ ତୁମେ ଗାଇ ଦେଲେ ବା ଗ୍ରହଣ କଲେ ତୁମର ଲଜ୍ଜା ହେବ କାହିଁକି ?

ଏହି ପରିଣତ ବୟସରେ ୧୮୪୦ ଖ୍ରୀ: ରେ ଯେତେବେଳେ ତାଙ୍କୁ ୬୯ ଚ୍ଲୁଥାଏ ସେ ଏ ଗ୍ରନ୍ଥ ଆରମ୍ଭ କରିଥିଲେ । ଜୀବନର ଜଞ୍ଜାଳ ମଧ୍ୟରେ ଚ୍ଲୁଚ୍ଲୁ ୧୮୫୦ରେ ଗ୍ରନ୍ଥର ୮ କଳା ଲେଖାଯାଇଛି, ତାଙ୍କର ପ୍ରିୟତମା କନ୍ୟା ରମାର ମୃତ୍ୟୁ ହେଲା । ଗ୍ରନ୍ଥରେ ଡୋରି ବନ୍ଧା ହୋଇ ରହିଲା ।

## ଢେଙ୍କାନାଳ ରାଜା ଭଗୀରଥ—

ଏହିପରି ସମୟରେ ଢେଙ୍କାନାଳ ରାଜା ଭଗୀରଥ ମହେନ୍ଦ୍ର ବାହାଦୁର ଏକ ପଣ୍ଡିତ ସଭା କରିଥିଲେ । ସେ ତିରିଶ ବର୍ଷଯାଏ ମୂର୍ଖ ଥିଲେ । ତାଙ୍କର ଇଷ୍ଟଦେବତା ବଳଦେବ ଜୀଉଙ୍କ ରଥଯାତ୍ରାର ଗୁଣ୍ଡିଚାଘର ଅଣ୍ଡପ ଦର୍ଶନରେ କରଣ ମନ୍ତ୍ରୀଙ୍କ ଭାର୍ଯ୍ୟା ଯେଉଁ ଶାଢ଼ୀ ପିନ୍ଧିଥିଲେ, ରାଣୀଙ୍କୁ ମନ୍ତ୍ରୀ ସେହିପରି ଏକ ଶାଢ଼ୀ ଦେଇଥିବାରୁ ସେ ତାହା ପିନ୍ଧି ଅପମାନିତ ହୋଇଥିଲେ । ଏହି ଘଟଣାରେ ମୂର୍ଖ ରାଜା ନଜର

ସୁକୁମାର ପଣ୍ଡିତ। ଜୀବନ୍ତଙ୍କଠାରୁ ବିଦ୍ୟାରମ୍ଭ କରି କଟକରେ ତିନ ବର୍ଷ ରହି ମହାନ୍ ପଣ୍ଡିତ ହୋଇଥିଲେ । ଯଦୁମଣି ଥରେ ତାଙ୍କ ସଭାକୁ ଯାଇଥିଲେ । ରାଜା କହିଲେ— 'କେଂଉଁ ?' ଶୁଣାଯାଏ ରାଜା ତଡ଼ାଇ ଏପରି କହିଥିଲେ । ତେଣୁ ଯଦୁମଣି ହଠାତ୍ ଗାଇଥିଲେ—

ମନାସି କାଳୀ ମନ୍ଦର ଅଚ୍ୟୁତ
ଶୋଭାରେ ଅଗ୍ରଫଳ ସଙ୍ଗେ ମିତ
ଚତୁର ଭଜନରେ ବଳବନ୍ତ
ସମାପ୍ତ ରକ୍ଷ କନ୍ୟାର ବରତ
ସେ ଦେବଙ୍କ ଅନୁଗ୍ରହେ
ଶ୍ରୀ ଦେବ ଶ୍ରୀମୁଖେ ବାନ୍ଧି ଦେଇଛନ୍ତି
ନବଗ୍ରହ ଏକ ଗ୍ରହେ ।

କେତୁ ଗ୍ରହକୁ ଲକ୍ଷ୍ୟ କରି ସେ କହିଲେ—ତାଙ୍କ ଇଷ୍ଟ ଦେବତା ବଳରାମ ଚଣ୍ଡାଳ କେତୁ ଗ୍ରହକୁ ରାଜାଙ୍କ ତୁଣ୍ଡରେ ବାନ୍ଧି ଦେଇଛନ୍ତି । ରାଜା ସେତିକରେ ତାଙ୍କୁ ସସମ୍ମାନେ ଗ୍ରହଣ କରିଥିଲେ । କୃଷ୍ଣାଇଧର କହିଥିଲେ—'ଯଦୁମଣି ! ତୁମ ପ୍ରଭାବ ପ୍ରତିପତ୍ତି ସମଝିବା ଲାଗି ଏପରି ଆଘାତ କରିଛୁ, କ୍ଷମା କରିବ ।' (ହାସ୍ୟରସ ଶତକ ଦେଖ)

ଅତ୍ୟଧିକ ବିଳାସରେ ମାତି ନୂଆଗଡ଼ ରାଜା ବ୍ରଜବଲ୍ଲଭ ରାଷ୍ଟ୍ରରେ ଅତି ଅସମ୍ଭାବିତ ଘଟଣା ଘଟାଇଲେ । ତନ୍ତୀ ଏବଂ ତେଲି ଜାତିର ଲୋକ କେତେଜଣ ନାନା କୁବୃଦ୍ଧିରେ ରାଜାଙ୍କୁ ଧନ ଯୋଗାଇ ଶୋଷଣ ଅତ୍ୟାଚାର କରି ଚାଲିଲେ । ତେଲି ମହାଜନମାନେ ପାଲିଙ୍କି ଚଢ଼ି ସୁନା ଛତା ଟେକ ବଉଳ ଆଦେଶ ବ୍ୟବହାର କରି ରାଜାନୁଗ୍ରହରୁ ବାହାରିଲେ । ତନ୍ତୀମାନେ ସୁନାରେ ସର୍ବାଙ୍ଗ ମଣ୍ଡି ହେଲେ । ଗ୍ରାମେ ଗ୍ରାମେ ହାହାକାର । କୌଣସି ଶୂଦ୍ର ଜାତିରସୁନ୍ଦରୀ ଝିଅଟିଏ ବଢ଼ିଲେ ତାକୁ ରାଜା ନିଶ୍ଚୟ ଭୋଗ କରିବେ । ଫୁଲବେଣ୍ଟ କରିବେ । ମଦ୍ୟପ ହେଲେ ଯାହା ହୁଏ । ରାଣୀ ରାଜାଙ୍କ ଚରିତ୍ର ସଂଶୋଧନରେ କୁଶଳୀ ନ ଥିଲେ । ଶ୍ୟାଳକ ମଝେ ମଝେ ଜୁଟି ଯାଉଥିଲେ । ସେ ରଣପୁରରନରେନ୍ଦ୍ରଙ୍କଠାରୁ ଲେଖା ନ ଦେଇ ଚାରି ଲକ୍ଷ ଟଙ୍କା ଯେପରି ଠକିଲେ ତାହା ଚଉହଦରେ ଡବ ଡବ ବାଜୁଥାଏ ।

---

# ଘାତ କଳା

## ନୂଆଗଡ଼ ମେଳି

ପଦ୍ମମଣିଙ୍କ ଭିତରି ନିର୍ଦ୍ଦେଶରେ ୧୮୬୧ ରେ ନୂଆଗଡ଼ରେ ଭୀଷଣ ମେଳି ଆରମ୍ଭ ହେଲା । ଏପରି କି ପ୍ରଜାମାନେ ଖଜଣା ପର୍ଯ୍ୟନ୍ତ ବନ୍ଦ କରିଦେଲେ । ତେଲ୍ଲି ତନ୍ତ୍ରୀ ଦେଖିଲେ ମାଡ଼ ମାରିଲେ । ଚତୁର୍ଦ୍ଦିଗରେ ଭୀଷଣତା ଦୁର୍ଦ୍ଦାନ୍ତ ମୂର୍ତ୍ତି ଧରି ଦେଖା-ଦେଲା । ବ୍ରଜବଲ୍ଲଭ ନିରୁପାୟ ହୋଇ ଇଂରେଜ କମ୍ପାନୀଙ୍କର ଶରଣ ପଶିଲେ । ୧୮୩୬ ମସିହାରେ ଯେପରି ଘୁମୁସର ରାଜବଂଶକୁ ଏକାବେଳେ ଇଂରେଜ ଷଡ଼ଯନ୍ତ୍ରରେ ଜଙ୍ଗଲ ମଧ୍ୟରେ ଧ୍ୱଂସ କରି ଦିଆଗଲା, ପୁଣି ଗତ ବର୍ଷ ସମ୍ବଲପୁର ରାଜା ନାରାୟଣ ଅପୁତ୍ରିକ ହୋଇ ମରନ୍ତେ ଯେପରି ରାଜ୍ୟ ଖାସ କରି ଦିଆଗଲା, ପୁନଶ୍ଚ ତିନି ବର୍ଷ ତଳେ ଅନୁଗୁଳ ରାଜା ସୋମନାଥ ଜଗଦେବ ଯେପରି ଭାବରେ ମଲେ ଏବଂ ତାଙ୍କ ରାଜ୍ୟ ଖାସ ହେଲା, ସେ ଭୟ ଭୟଶୂନ୍ୟ ହୃଦୟରେ ପ୍ରବିଷ୍ଟ ହେଲା ।

ଇଟାମାଟିର ତେଲ୍ଲି, ନିଜଗଡ଼ର ତନ୍ତ୍ରୀଙ୍କ ଯୋଜନାରେ ଅଣୀ ପ୍ରକାର ତଣ୍ଡି ନ କସିଥିଲେ ଏ ମେଳି ଅତି ଶୀଘ୍ର ବ୍ୟାପକ ହୋଇ ନ ଥାନ୍ତା । ଏଥିରେ କନ୍ଧ, ଶବର ମଧ୍ୟ ମାତି ଉଠିଲେ । ଆଉ ଗୋଟିଏ ଘଟଣା ଏତେବେଳେ ଘଟିଲା । ରଜାଙ୍କ ଇଷ୍ଟଦେବତା ବାଉଁଶଙ୍କର ଗଣ୍ଡି ଅଂଶ ରଜବରେ ଓ ମୁଣ୍ଡ ଗଡ଼ ରାଜବାଟୀରେ ପୂଜା ହୁଏ । ସେଥିର ସେବାସୀ ଶୁଦ୍ରଜାତିର ଲୋକ । ଏହି ଶୁଦ୍ରମାନେ ପାଇକ ବୃତ୍ତି କରନ୍ତି ନରସିଂହପୁର, ଅନୁଗୁଳ ଧରି । ଏମାନେ ଏକ ଘର ଜାତି ଅଟନ୍ତି । ପର ସମୟରେ ମଣିଷ ମେରିଆ ରାଜାଙ୍କ ନିର୍ଦ୍ଦେଶରେ ସେମାନେ ଦେଉଥିବା କଥା ମଧ୍ୟ ଏତେବେଳେ ପ୍ରଘୃଚତ ହେଲା ! ବନାୟକ ସିଂହଙ୍କ ସମୟରେ ଏହାର ଗନ୍ଧ ନ ଥିଲା । କିନ୍ତୁ ବର୍ତ୍ତମାନ ଶୁଣାଯିବାରୁ ଲୋକେ ଅଧିକ ତାତି ଉଠିଲେ ।

ଫଳରେ ହରିମୋହନ ଲାଲ୍ ନାମକ ଜଣେ ବଡ଼ପାହ୍ୟା ଅଫିସର କେତେକ ସିପାହୀ ସହିତ ମେଳି ତଦନ୍ତରେ ରାଜ୍ୟରେ ଉପସ୍ଥିତ ହେଲେ । ରାଜା ଏବଂ ରାଜାନୁଚରବର୍ଗ ପଦ୍ମମଣି ଏହି ମେଳିର ମୂଳରେ ବୋଲି ଜ୍ଞାପନ କରନ୍ତେ । ଲାଲ ମହାଶୟ ପଦ୍ମମଣିଙ୍କର ସ୍ୱଭାବ, ଗତିବିଧି ଗୋପନରେ ତଦନ୍ତ କରି ତାଙ୍କୁ ଜଣେ ମହତ୍ ବ୍ୟକ୍ତି ଓ ନିରପେକ୍ଷ ବୋଲି ଜାଣିପାରି ତାଙ୍କୁ ସହମ୍ମାନରେ ଡକାଇ ନେଇ ମେଳିର କାରଣ ପଚାରିବେ ବୋଲି ନୋଟିସ୍ କରିଥିଲେ । କିନ୍ତୁ ତାଙ୍କର ଅସୀମ ଯୋଗ୍ୟତାର କେତେକ କାହାଣୀ ଶୁଣି ତାଙ୍କ ପ୍ରତି ଅମର୍ଯ୍ୟାଦା ହେବ ବୋଲି ମନେ କରି ନୋଟିସ ଧାର୍ଯ୍ୟ ତାରିଖ ପୂର୍ବରୁ ଇଟାମାଟି ଗ୍ରାମରେ ଯେତେବେଳେ ଶ୍ରୀଯୁକ୍ତ ଲାଲ ତାଙ୍କ ଦ୍ୱାରରେ ପହଞ୍ଚିଲେ ସହସ୍ର ଜନତା ଘେରିଗଲେ । ପଦ୍ମମଣି ବାହରି ଧରି

ଗୋଟିଏ ଟେଣ୍ଟା ବୃକ୍ଷ ଥିଲେ । ସବୁ ବାଳରେ ଚୁଟି, କାନରେ ନୋଳ ଥିଲେହେଁ ତାଙ୍କର ଗୌର ଅଙ୍ଗ ପ୍ରୌଢ଼ାବସ୍ଥାରେ ମଧ୍ୟ ରମଣୀୟ ଦେଖାଯାଉଥିଲା । ସେ ମୁଖ ପୋଛି କାର୍ଯ୍ୟରେ ଲଗିଥିଲେ । "ହାକମ ପିଣ୍ଡାତଳେ"—ଏ କଥା ତାଙ୍କୁ କେହି ଦୂର୍ଭର ଦେବାରୁ ସେ ଧୀରେ ଉଠିଲେ । ଲାଲ ହରମୋହନ ହଠାତ୍ ତାଙ୍କୁ ସମ୍ମାନ କରି କହିଲେ—"ଆପଣେ ବସନ୍ତୁ ।" ଯଦୁମଣି ହସ ହସ ମୁହଁରେ ପିଣ୍ଡାତଳେ ଛିଡ଼ା ହୋଇ ମାନବକ ମର୍ଯ୍ୟାଦା ଦେଖାଇଲେ । ଲାଲ ପଚାରିଲେ—"ଅଜ୍ଞା, ଏ ମେଳର ହେତୁ କ'ଣ ? ଆପଣ ଏ ରାଜ୍ୟର ନିରପେକ୍ଷ ବ୍ୟକ୍ତି ଅଟନ୍ତି । ଚଞ୍ଚର ଆସିଲ ।" ଯଦୁମଣି କହିଲେ—"ମତେ ତ ନୋଟିସ କରାଯାଇଛି ?" ଲାଲ କହିଲେ—"ହଁ ନୋଟିସ ଭୁଲରେ ହୋଇଥିଲା । ମୁଁ ନିଜେ ଆସିଛି । ଯାହା କହିବେ ଲେଖିନେବି । ଅଜ୍ଞ ନୋଟିସ ଅନୁସାରେ ଯିବାର ଲୋଡ଼ା ନାହିଁ ।"

ତହୁଁ ଯଦୁମଣି ଉଚ୍ଚ ସ୍ୱରରେ କହିଲେ—

ଗୋଡ଼ ଗାଡ଼ ସଂସର୍ଗରେ ଯେ ପଟୁ
ତାଙ୍କର ସୁନା ଖଡ଼ୁ ଚଟୁ ପଟୁ
ଅଶୁଭରେ ଶୁଭ ହୋଇଲା ଦେଖ ।
ତାଙ୍କର ଆଣ୍ଠେଣି ପାଳଙ୍କି ଛତା
ଏହି ସକାଶରୁ କରି ଯେ
ତୁଷାକର ଲଙ୍ଗ ଉଭବ ମେଦିନୀ
ହୋଇଗଲା ହତଶିରୀ ଯେ ।

ଅତଶ୍ରେଷ୍ଠ ଲୋକ ଅତିବଡ଼ ହୋଇ ଖ୍ରୀଷଣ ଅତ୍ୟାଚାର କରାଇବାରୁ ଏହା ଘଟିଛି ବୋଲି ଲାଲ ସମ୍ପୂର୍ଣ୍ଣ ବିଶ୍ୱାସ କରିଗଲେ । ଅର୍ଥାତ୍ ଯଦୁମଣି କହିଥିଲେ ତାଙ୍କର ସ୍ୱଭାବସିଦ୍ଧ କବିତାରେ—'ତେଲି ଏବଂ ତନ୍ତୀଙ୍କ ଯୋଗୁଁ ଏ ରାଜ୍ୟର ଏ ଦୁର୍ଦ୍ଦଶା ବଢ଼ିଛି ।' ଏହି ନିର୍ଭୀକ ସତ୍ୟ ପ୍ରକାଶ କରନ୍ତେ ଯେଉଁମାନେ ରାଜାଙ୍କ ଅନୁଗ୍ରହରେ ଏସବୁ କରିଥିଲେ ସେମାନଙ୍କୁ ଗିରଫ କରି ଲାଲ ମହାଶୟ କଟକ ଚାଲାଣ କରିଦେଲେ ଏବଂ ମେଳ ଅକସ୍ମାତ୍ ଭାଙ୍ଗ ଗଲା ।

କାଳୁ ବ୍ରଜବନ୍ଧୁ ହତୋତ୍ସାହ ହୋଇ ଅଧିକ ମଦ୍ୟ ପିଇ ବନେ ମୃତ୍ୟୁ ଲଭିଲେ । ରାଜ୍ୟ କୋର୍ଟ ଅଫ୍ ୱାର୍ଡ଼ସ ହେଲା । ଅନନ୍ତର କେତେଦିନ ପରେ ୧୮୫୨ ରେ ବନ୍ଦୋବସ୍ତ ଆସିଗଲା । ସରକାର ଏକ ମାନେଜର ବସାଇଲେ । ନାବାଳକ ରାଜା ଲଡ଼ୁକେଶ ସରକାରଙ୍କ ଦାୟିତ୍ୱରେ ରହିଲେ ।

## ନୂଆଗଡ଼ ବନ୍ଦୋବସ୍ତ—

ବନ୍ଦୋବସ୍ତରେ ଯଦୁମଣି ନଜର ଲେଖ ସନନ୍ଦମାନ ଗୃହବାଡ଼ରେ ହରାଇ କିଛୁ ମାସ ଦେଖାଇ ନ ପାରି ତା ୨୧।୫।୧୮୫୬ ରେ ଗୋଟିଏ ଦରଖାସ୍ତ ଅର୍ପଣ କଲେ । ସରକାରୀ ଅଫିସରୁ ଅଣାଯାଇଥିବା ନକଲ ଏଠାରେ ଦିଆଯାଉଛି ।

ନ ୭୦ ରୋଜନାମଚ୍ଚ

ଦରଖାସ୍ତ ଫିଦାବ ଯଦୁମଣି ମହାପାତ୍ର । ସା । ଇଟାମାଟି । ଇ । କଲେ ନୟାଗଡ଼ ମୁତାବକେ । ଜି । କଟକ ଏହି କି ଯେ କଲି ମଜକୁର ଅତି ବଡ଼ ରଜା, କଲି ମଜକୁରର ତଫସିଲ ମୌଜାମାନଙ୍କରୁ ଆମ୍ଭଙ୍କୁ ଅନୁଗ୍ରହ କରି ତଳ ତଫସିଲ ମୁତାବକ ମାଫି ଜାଗିର ତଳେ ସନନ୍ଦ ଲେଖି ଦେବାରୁ ଆମ୍ଭେ ପୂର୍ବରୁ ମତାଜମାନଙ୍କୁ ଅବଧି ବନାକରରେ ଦଖଲ କରୁଅଛୁଁ । ବନ୍ଦୋବସ୍ତ ସମୟରେ ତଳ ତଫସିଲ ନମ୍ବରରେ ତଫସିଲ ଅନୁସାରେ ଜମି ଜନରଲ ବହିରେ ଦାଏର ହୋଇଥିବା ଯୋଗୁଁ ଅମ୍ଭଙ୍କୁ ସନନ୍ଦ ତଲବ ହୋଇଥିଲା । ଏଥକୁ ରଜାଙ୍କ ଲେଖିଦିଆ ଦସ୍ତାବଜମାନ ଅମ୍ଭ ଘରଜଳରେ ଜଳି ଯାଇଥିବାରୁ ଏ ଦରଖାସ୍ତ ଶ୍ରୀ ହଜୁରରେ ଗୁଜାରି ପ୍ରାର୍ଥନା କରୁଅଛୁଁ କି ମୋହଠାରୁ ଦଖଲକାରର ସବୁତ ନିଆଯାଇ ମତାଜ ମଜକୁରକୁ ମାଫି ଜାଗିର ତଳେ ମୋହ ଦଖଲରେ ପୂର୍ବକଡ଼ ବାହାଲ ରଖିବାର ଆଜ୍ଞା ହେଉ ।

ତଫସିଲ

| ନାମ କିଲ୍ଲା— | ମଉଜା— | ନମ୍ବର ଜନରଲ— | ଦାଏର ଜମି |
|---|---|---|---|
| ଗଣ୍ଡିବେଡ଼—ଇଟାମାଟି | | ୧୧୨ | ମା ୦।୩୪ ୪୦୯ |
| ,, | ବାଉଁଶିଆପଡ଼ା | ୭୬୫ | ମା ୫।୧୫/୪୨୯ |
| ,, | ଗଦାଧରପ୍ରସାଦ | ୨୧୪ | ମା ୭।୦।୵୪୦୯ |
| ,, | କଣ୍ଟାବଣି | ୪୭୪ | ମା ୦।୩୵ ୪୦୵ |
| ମହୀପୁର | ଖମାରସାହି | ୨୨୩୧ | ମା ୫।୧୮ ୩୪୮।୵୫ |

ଗୁହା—

କୃପାସିନ୍ଧୁ ମିଶର ସା: ଇଟାମାଟି
ଏକଜଣ

ଗଙ୍ଗାଧର ସାନ୍ତର ସା: ଇଟାମାଟି
ଏକଜଣ

ତାରିଖ ସନ ସଦର

7 ପ୍ୟେ ବାରିଣି ଯଦୁମଣି ମହାପାତ୍ରର ପ୍ରମାଣ

ବାଣସି ସନ୍ତକରୁ ବଡ଼େଇ, କୁଶବନ୍ଧୁ ସନ୍ତକରୁ ବ୍ରାହ୍ମଣ, ଲଡ଼ଙ୍ଗ ସନ୍ତକରୁ ଗଉଡ଼ ଶତ୍ରୋଷ ହେଉଥିଲେ । ନାମ ଦସ୍ତଖତର ସେକାଳେ ପ୍ରୟୋଜନ ନ ଥିଲା ।

କେତେ ନବୀନ ପ୍ରତ୍ନତତ୍ତ୍ୱଜ୍ଞ ଏହା ଦେଖି ନ ବସ୍ତୁରନ୍ତୁ ଯେ ଯଦୁମଣି ଅକ୍ଷର ମଧ୍ଯ ଲେଖି ଜାଣୁ ନ ଥିଲେ । ମହାନ୍ ପଣ୍ଡିତମାନେ ମଧ୍ଯ ନିଜର ଦସ୍ତଖତ କାଟିବା ପ୍ରଥା ସେକାଳେ ଥିଲା । ଦେଶର ସମ୍ରାଟମାନେ ମଧ୍ଯ ନିଜର ଦସ୍ତଖତ ସନନ୍ଦମାନଙ୍କରେ ଚିହ୍ନିତ କରୁଥିଲେ ।

ଯଦୁମଣି ବିନାୟକ ମାନ୍ଧାତାଙ୍କଠାରୁ ଜଗନ୍ନାଥଙ୍କ ଚିତ୍ର କରିବାରେ ଯେଉଁ ଅନୁଗ୍ରହ ଜାଗିର ସ୍ୱରୂପ ୫ବାଟି ଜମି ପାଇଥିଲେ ତାହା ବାଉଁଶିଆପଡ଼ାରେ ୧ ବାଟି, ଗଦାଧର ପ୍ରସାଦରେ ବା ୨୧୯ ଏବଂ ଖମାରସାହିରେ ବା ୧୧୯ ବନ୍ଦୋବସ୍ତ ରେକର୍ଡ଼ରେ ତାହା ଯଥାକ୍ରମେ ଏ ୫ |, ଏ ୧୨ | ୫୦ ଏବଂ ଏ ୮ | ୫୦ ଏପରି ୨୬ ଏକର ରହିଥିଲା । କିନ୍ତୁ ଦରଖାସ୍ତ ଲିଖିତ ଏ ୧୭।୧୩୦୷୵ ଜମି ତାଙ୍କ ଦଖଲ ମାତ୍ର ଥିଲା । ବାକି ଜମି ପରବର୍ତ୍ତୀ ରାଜା ଉଚ୍ଛେଦ କରି ନେଇଥିଲେ ।

ତାଙ୍କ ଅରଜରେ ଯେପରି ଭାବରେ ସରକାରୀ କାଗଜପତ୍ରରେ ହୁକୁମ ଆଦି ହୋଇଥିଲ ତଦ୍ଦ୍ୱାରା ସେ କାଳର ବସ୍ତୁରଚିତ ଏବଂ କବି ଯଦୁମଣିଙ୍କ କବିତ୍ୱ ଯେକ ପ୍ରମାଣ ତହିଁରୁ ସ୍ପଷ୍ଟ ହୁଏ । ତେଣୁ ତାହାର ଅବିକଳ ନକଲ ଏଠାରେ ପ୍ରଦତ୍ତ ହେଲା ।

## ସେକାଳ ସରକାରୀ ଦପ୍ତର ହୁକୁମନାମା—

ହୁକୁମ ହେଲା କି
ମୁଦାଲା ନାମରେ କିଛି ଟଂକା ଲେଖାଯାଉଅଛି କି ନାହିଁ
ସିରସ୍ତା ତଦାରକ କିଆଯାଉ । ତା ୨୯ ଖ୍ର ମଇ ସନ୍ ୧୮୫୨

ଆଜ ଦିନ ମୁଦାଲା ଦଖଲକାରୀ ସାବୁତ ନିମନ୍ତେ ମୁସମିଆନ କୃପାସିନ୍ଧୁ ମିଶ୍ର ଓ ଗଙ୍ଗାଧର ସାନ୍ତରା, ସା: ଇଟାମାଟି ଗୁହାମାନଙ୍କୁ ହାଜର ଆଣିବାରୁ ସୁକୃତ ପ୍ରମାଣେ ସେମାନଙ୍କୁ ଓ ରାଜାଙ୍କ ତରଫ କାରପରଦାଜ୍ ଗୌରାଙ୍ଗ ଗ୍ଲେଟରଙ୍କୁ ପଚରା ଯିବାରେ ଜାହେର ହେଲା କି ମୁଦାଲାର କବି ମାନନ୍ତ ଓ ପାଷାଣ ପ୍ରତିମା ଇତ୍ୟାଦି କାରିଗିରୀ କର୍ମ ତିଆରି କରିବାରେ କ୍ଷମତା ଥିବା ହେତୁ ସାବିକ ରାଜା ଅନୁଗ୍ରହ କରି ଏ ଦରଖାସ୍ତ ଲେଖିତ ଜମିକୁ ଜାଗିର ସୁରତ ମୁଦାଲାଙ୍କୁ ଦେଇଅଛନ୍ତି । ତଦ୍ ଅନୁସାରେ ମୁଦାଲା ୫୦ ବର୍ଷ ହେଲା ଏ ଜମିକୁ ମାଫି ଜାଗିର ସ୍ୱରୂପେ ଦଖଲ ଅମଳ କରୁଅଛି । ପୁନଶ୍ଚ ମୁଦାଲାକୁ ପଚରା ଗଲା କି ମୌଜେ ବାଉଁଶିଆପଡ଼ା ଜମି ପ୍ରତି ଟ୧୨ ମୌଜେ ଖମାରସାହି ଜମିର ଟ୮।୵୫ ଜମା ପଟୁଆରି କାଗଜରେ ଲେଖାଯାଇଥିବା ପ୍ରଯୁକ୍ତ ତୁ କିପରି ମାଫି ସୁରତ ଦଖଲ କରିବାର ଆପଣା ଦରଖାସ୍ତରେ ଲେଖିଅଛୁ ? ଜବାବ ଦେଲା କି ମୁଁ କେବେଁ ତାହାକୁ କିଛି ଟଙ୍କା ନ ଦେଇ ମାଫି ସୁରତ ଦଖଲ କରୁଅଛି । ଏ ବାଦ- ମୌ ଖମାରସାହି କରଣ ଲକ୍ଷ୍ମଣ ମଙ୍ଗରାଜ ମୌଜେ ବାଉଁଶିଆପଡ଼ା କରଣ ଗୋପାଳ ବିଶ୍ୱାସ ପଟ୍ଟନାୟକ ହାଜର ଥିବାରୁ ପଚାରିବାରେ ମୁଦାଲା କେବେଁ କିଛି ଟଙ୍କା ଓଗେର

ନ ଦେବାର ଓ ପଟୁଆର କାଗଜରେ ଏ କଲା ମଜକୁର ମୁତାବକ ଜମିର ଭୂଆଣ ଜମାଲେଖା ହୋଇଥିବାର ଜାହେର କଲେ । ସେହେତୁ ମୁଦାଲା ନାମରେ ମୌଜା ଇଟାମାଟିରେ ମା ୦।୩୳ ଓ ମୌଜେ ବାଉଁଶିଆପଡ଼ାରେ ମା ୫।୧୫/ ଓ ମୌଜେ ଗଦାଧରପ୍ରସାଦରେ ମା ୬।୦।୵ ଓ ମୌଜେ କଣ୍ଟାବଣିରେ ମା ୦।୦୳।୵ ଓ ମୌଜେ ଖମାରସାହିରେ ମା ୫।୧୮୳ ଜମି ଜରବ ହୋଇଅଛି । ଯଦ୍ୟପି ମୁଦାଲା ଏ ଜମିର ଦସ୍ତାବିଜ୍ ଖତ ଜଲରେ ଜଳଯିବା ଇଜହାରରେ ଦରପେଶ ନ କଲା, କିନ୍ତୁ ମୌଜା ମଜକୁରମାନଙ୍କ ପଟୁଆର କାଗଜରେ ଉକ୍ତ ଜମିମାନ ମୁଦାଲା ଜାଗିର ଛଳେ ଦରଜ ଥିବାରୁ ଶାବକ ରଜା ଜମି ମଜକୁରମାନ ଜାଗିର ସୁରତ ମୁଦାଲାକୁ ଦତ୍ତ କରିଥିବାର ସାଫ୍ ପ୍ରକାଶ ଓ ମୁଦାଲା କରିବନ୍ତିଆ ଗୁହାମାନେ ଓ ରଜାଙ୍କ ତରଫ୍ କାର ପରଦାଜ୍ ମୁଦାଲାର କବଜା ଟଙ୍କା ଓ କାଶଗିରି କ୍ଷମତା ଥିବାରୁ ସାବକରଜା ଅନୁଗ୍ରହ କରି ଉକ୍ତ ଜମି ଜାଗିର ସ୍ୱରୂପେ ମୁଦାଲାକୁ ଦେଇଥିବାରୁ ମୁଦାଲା ଅନେକ ଦିନୁଁ ମାଫି ଜାଗିର ସ୍ୱରୂପେ ଭୋଗ ଦଖଲ କରି ଆସିବାର ଜାହେର କରୁଅଛନ୍ତି । ଯଦ୍ୟପି ମୌ ବାଉଁଶିଆ ପଡ଼ା ଓ ମୌ ଖମାରସାହି ପଟୁଆର କାଗଜରେ ଉପର ଲେଖିତ ଅନୁସାରେ ଟ ୧୦।୵। ଜମା ଲେଖାଯାଏ ମାତ୍ର ମୌଜା ମଜକୁରମାନଙ୍କ କରଣମାନଙ୍କୁ ପଚରି ଯିବାରେ ମୁଦାଲା କେଭେ କିଛି ଟଙ୍କା ନ ଦେବାର ଏ ପଟୁଆର କାଗଜରେ ଏକଲ୍ଲା ଦସ୍ତୁର ମୁତାବକ ଭୂଆଣ ଜମା ଲେଖା ହୋଇଥିବାର ଜାହେର ମଧ୍ୟ ଖନ ଗୋଟି କାରକୁନମାନଙ୍କ ଦାଖଲ କଲା କାଗଜରେ କ ସେମାନେ ସମଗ୍ର ଟଙ୍କା ଉସୁଲ କରନ୍ତି । ମୁଦାଲା ନାମରେ କିଛି ଟଙ୍କା ଲେଖାଯାଉ ନାହିଁ । ଏଣୁ କରି ଉପର ଲେଖିତ ଜମିମାନଙ୍କୁ ଶାବକ ବଦସ୍ତୁର ଜାଗିର ମାଫି ସ୍ୱ ରୂପେ ମୁଦାଲା ଦଖଲରେ ବାହାଲ ରଖିବାର ଉଚିତ ହୋଇ

ହୁକୁମ ହେଲା କି

ଉପର ଲେଖିତ ଜମିମାନ ସାବକ ଦସ୍ତୁର ମୁତାବକ ଜାଗିର ମାଫି ସରୂପେ ମୁଦାଲା ଦଖଲରେ ବାହାଲ ରଖାଯାଇ ଏ ମୋକଦ୍ଦମାର କାଗଜାତ୍ ମଞ୍ଜୁରି ଆଶାରେ ଶ୍ରୀଯୁକ୍ତ ରାଜମାନ ଓ୍ୟାଲ ସାନ ସୁପ୍ରଜଣ୍ଡେଣ୍ଟ ସାହେବଙ୍କ ହଜୁରକୁ ଭେଜାଯାଉ । ୨୫ ତ୍ରି ଯୁନ ୧୮୫୨ ମସିହା ।

[signature]

ଶ୍ରୀ ସାହେବ ସୁପ୍ରନଡ଼ଣ୍ଟ କଲକାତ
ସାହେବଙ୍କ ଇଜଲାସରେ ହୁକୁମ ହେଲା କି
ତହସିଲଦାର ରାଏ ମଞ୍ଜୁର, ନଥି ଡ଼ିଆପସ ପଠାଯାଉ ।

୨୨ ଶ୍ର ନଓମ୍ବର ୧୮୫୨ ମସିହା
ଦସ୍ତଖତ ଇଙ୍ଗେରଜ ସାହେବ ସୁପ୍ରନଡ଼ଣ୍ଟ
କଲକାତ

ଆଜଦିନ ଖୋଦ୍ ମୁଦାଲା ହାଜର ହୋଇ ଫଏସଲାର ନକଲ ଗୃହିବାରୁ ହୁକୁମ ହେଲାକି ସେ ଫଏସଲାର ନକଲ ମୁଦାଲାକୁ ଦିଆଯାଉ । ୬ ତାରିଖ ଜାନୋର ସନ୍ ୧୮୫୩ ମସିହା ।

7 ସ୍ରେ ବାରଣି
ଯଦୁମଣି ମହାପାତ୍ରଙ୍କର ପ୍ରମାଣ

ଏହି ସମୟରେ ନିଜର ପୋଷ୍ୟପୁତ୍ର ତାଳଧ୍ୱଜକୁ ସେ ନୂଆଗଡ଼ ଶତ୍ରୁଘ୍ନ ମହାପାତ୍ରଙ୍କ କନ୍ୟା କମଳାକୁ ଏକାନ୍ତ ନିରାଡ଼ମ୍ବର ଭାବରେ ବିବାହ ଦେଲେ । କମଳାର ଏକମାତ୍ର ପୁତ୍ର 'ବାଳକୃଷ୍ଣ'କୁ ସେ ଜୀବଦ୍ଦଶାରେ ଦେଖି ନିଜକୁ ଧନ୍ୟ ମନେ କରିଥିଲେ । ନାତିକୁ ଦେଖିଲେ ତଉଗଣି ନର୍କରୁ ଉଦ୍ଧାର ମିଳେ, ଏପରି ଧାରଣା ତାଙ୍କର ନ ଥିଲେ ମଧ୍ୟ ସେ ମନୋବୃତ୍ତି ତାଙ୍କଠି ବୟସକ୍ରମେ ସଞ୍ଚରି ଯାଇଥିଲା ।

## ରଣପୁର ରାଜା ନରେନ୍ଦ୍ର—

ଅଭାବଗ୍ରସ୍ତ ହୋଇ ସେ ବାରମ୍ବାର ରଣପୁର ରାଜାଙ୍କ ନିକଟକୁ ଯାଉଥିଲେ । ଆଜ ମଠା ନେଲେ, କାଲି ଗୁଦର ଦୁଇଖଣ୍ଡ, ପରିଧାନ ଶାଲ ଫର୍ଦ୍ଦେ ଏବଂ ବହୁ ଅର୍ଥ ବିଦାକି ସୂତ୍ରରେ ଆଣୁଥିଲେ । ଏମନ୍ତ କି ଥରେ ଗୃହଦାହ ଯୋଗୁଁ ଉକ୍ତ ରାଜା ତାଙ୍କର ଗୃହ ମଧ୍ୟ ନିର୍ମାଣ କରାଇ ଦେଇଥିଲେ । ଭଙ୍ଗରସରେ ଯୋଗଦେଇ ବହୁ ନାରୀର ରୂପ ଭେକ ବର୍ଣ୍ଣନା କରି ସଙ୍ଗୀତ ଚଉପଦମାନ ଉପହାର ଦେଇ ଅର୍ଥଲାଭ କରି ଫେରୁଥିଲେ । କିନ୍ତୁ ଥରେ କି ଦୁର୍ଯୋଗରେ ସେ ଯାଇଥିଲେ, ରାଜା ତାଙ୍କୁ କଦାପି ଦେଖାଦେଲେ ନାହିଁ । ସେ ବହୁ କଷ୍ଟରେ ସାକ୍ଷାତ ପାଇବାକୁ ଯୋଗାଡ଼ କରି ଦରକାରବେଳେ ଦେଖାପାଇଲେ । ଗୋଟିଏ ତାଙ୍କର ସ୍ୱହସ୍ତ

ନିର୍ମିତ ବସ୍ତୁ ପ୍ରତିମାକୁ ପାଟକନାରେ ଗୁଡ଼ାଇ ବସ୍ତ ଏକ ପେଣ୍ଡୁ ଆକାରରେ ସଜାଇ ରଜାଙ୍କୁ ତାହା ଏକ ଦେବତା କହି ଅର୍ପଣ କରନ୍ତେ, ରଜା ବ୍ରଜଧର ନରେନ୍ଦ୍ର ତାହା ଫିଟାଇ ଦେଖିଲେ ସ୍ତ୍ରୀମାନଙ୍କ ବସ୍ତ୍ରସମ୍ଭାର ପଣ ତାହା ମଧ୍ୟରୁ ପ୍ରତିମା ଆବିଷ୍କୃତ ହୋଇପାରୁ ନାହିଁ । ତେଣୁ ସେ କ୍ଲାନ୍ତ ହୋଇ ତାହା ତଳେ ଥୋଇଦେଲେ । ଯଦୁମଣି ରଜାଙ୍କର ଏପରି ବ୍ୟବହାରରେ ଦୁଃଖିତ ହେଲେ ।

ତେଣୁ କବିତା ଗାଇଲେ—

ଅନ୍ଧ ଦେଶକୁ ଗଲା ଦର୍ପଣ ବିକି
କନ୍ଧ ହାତରେ ଦେଲା ଗୋଦାନ ଟେକି
ଜଡ଼ା ମଧ୍ୟରେ ଖଡ଼ା କଲା ରନ୍ଧନ
କାମୁଡ଼ା ଘୋଡ଼ା ମୁଖେ ଦେଲା ଚୁମ୍ବନ
ହେ ରଜା କି କଲ
ବସ୍ତୁ ପ୍ରତିମାକୁ ତଳେ ଥୋଇଲ ?

କହି ବୋଲି ସେ ନରେନ୍ଦ୍ରଙ୍କୁ ଅଦ୍ଭୁତ କବି ଏପରି ତିରସ୍କାର କରନ୍ତେ ରଜା ସେଠାରୁ ଚାଲିଯାଇ ତାଙ୍କୁ ଦରବାରରୁ ତଡ଼ିଦେଲେ । ଆଉ ମୁହଁ ଚାହିଁଲେ ନାହିଁ । ତେଣୁ ସେହିନୁଁ ତାଙ୍କର ଉଣପୁର ହାଟ ପଡ଼ିଗଲା ।



## ଆଠ . କଳା

### ଦଶପଲ୍ଲା ରାଜା ଦେଓ ଭଞ୍ଜ—

ତୀର୍ଥପଥରେ ଯଦୁମଣି ବାଧ୍ୟ ହୋଇ ଅଭାବ ମେଣ୍ଟାଇବା ଲାଗି ଶ୍ୱଶୁର ଘର ଗାଁ ଦଶପଲ୍ଲା ଗଡ଼ କୁଞ୍ଜବନରେ ଜଗନ୍ନାଥ ମୂର୍ତ୍ତି ପ୍ରତିଷ୍ଠା ହେଉଥିବାର ଶୁଣି ସେଠାରେ ଯାଇ ପହଞ୍ଚିଲେ । ରାଜା ଥିଲେ ମଧୁସୂଦନ ଦେଓ ଭଞ୍ଜ । ବାରମ୍ବାର ରାଜଦ୍ୱାରକୁ ଯାଇ ରାଜାଙ୍କର ଦେଖା ପାଇପାରିଲେ ନାହିଁ । ଶେଷକୁ ନିରୁପାୟ ହୋଇ ନୂତନ ଜଗନ୍ନାଥ ପ୍ରତିମା ମନ୍ଦିରରେ ବିଜେ ହେବା ଦିନକୁ ଚକ ଭିତିଲେ । ଠାକୁର ସିଂହାସନାରୂଢ଼ ହେବା ପରେ ରାଜମାନ୍ତ ଶେଷ ହେଲା । ରାଜା କର୍ପୂରବର୍ତ୍ତି ନିଜହସ୍ତରେ ଦେଇସାରି ସାଷ୍ଟାଙ୍ଗ ପ୍ରଣତି ଦେଇସାରିବା ପରେ ହାତଯୋଡ଼ି ଠିଆହେଲେ ।

ପଛରୁ ଯଦୁମଣିଙ୍କ ମଧୁର ଧ୍ୱନିରେ ଶୁଣାଗଲା—

"କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ<br>
ରଥ ବୋଲି ଭଣ୍ଡିନେବେ ଶଗଡ଼େ ବସାଇ ।<br>
ଭୋଗ ବୋଲି ଖଞ୍ଜିଦେବେ କଡ଼କଆ ମୁଆଁ<br>
ଧୂପ ବୋଲି ମାଡ଼ଦେବେ କଅାଁଖୁଣ୍ଟା ଧୂଆଁ ।

ରାଜା ଦେଖିଲେ ଯଦୁମଣି ହାତଯୋଡ଼ି ସ୍ତବ କରୁଛନ୍ତି । ଏ ସ୍ତବ ରାଜାଙ୍କ ହାଡ଼େ ହାଡ଼େ ଗଳିଗଲା । ସେ ତାଙ୍କ ପାଖକୁ ଆସି ନଜର ଦଣ୍ଡୀ ଜଣାଇଁ ସାଥିରେ ନେଇଗଲେ, ଏବଂ ଯଥାସମ୍ଭବ ବିଦାକ ଦେଇ ତାଳପତ୍ର କାଣ୍ଡି ଲେଖିବାକୁ ବରାଦ କରିଦେଲେ । ଯଦୁମଣି ପରିହାସରେ ଶାଳପତ୍ରରେ ଚଉମ୍ବାଗୁଡ଼ାଏ ନେଇ ପହଞ୍ଚିଲେ । ଅବଶ୍ୟ ହାସ୍ୟରୋଳ ହେଲା, କିନ୍ତୁ ସେ ଦେଖିଲେ ରାଜା ସେପରି ରସିକ ନୁହନ୍ତି ବା ଏହାଙ୍କଠାରୁ ତାଙ୍କର ଆଉ ଅଧିକ ଆଶା କରିବାର ନାହିଁ । ତେଣୁ ସେ ବଡ଼ମୂଳ ଘାଟିବାଟେ ନୂଆ ସଡ଼କ ଯାହା ସମ୍ବଲପୁରରୁ କଟକକୁ ଯାଇଥିଲା, ସେଥିରେ ଚାଲି ଚାଲି ଗୋଟିଏ ଲୋକକୁ ସାଥିରେ ଧରି ସାତକୋଶିଆ ପାରହୋଇ ବୌଦ୍ଧ ଗଡ଼ରେ ପହଞ୍ଚିଲେ ।

### ବୌଦ୍ଧ ନୃପତି—

ବୌଦ୍ଧର ତତ୍‌କାଳୀନ ରାଜା ତାଙ୍କୁ ଯଥା ସମାଦର କରି ସଞ୍ଜା ବସା ଦେଇ ରଖିଲେ । କିନ୍ତୁ ଗୋଟିଏ ସାମାନ୍ୟ ଘଟଣାରେ ତାହା ଅନୁକୂଳ ପରିସ୍ଥିତି ନୁହେଁ ବୋଲି ସେଠାରୁ ମଧ୍ୟ ଯଦୁମଣି ଚାଲିଆସିଲେ । ରାଜା କହିଲେ—ମାନଧାତା ବିନାୟକଙ୍କ ପାଖରେ ତୁମ୍ଭେ ଯେପରି ରସିକତା କରିଥିଲ ଆମ୍ଭ ନିକଟରେ ସେପରି ରସିକତା କରି ରହିଲେ କପରି ହୁଅନ୍ତା ?

ପଦୁମଣି ଚିକଏ ଅହଂଗୁଣିଆ ବ୍ୟକ୍ତି ଥିଲେ । ସେ ବସ୍ତୁର କରି କହିବା ଲୋଚିବା ବ୍ୟକ୍ତି ନ ଥିଲେ । ଚଳାପୂର୍ବକ ମାନଧାତା ତାଙ୍କର ସ୍ନେହାସ୍ପଦ ସଖା ସ୍ୱରୂପ ଥିଲେ । ଯେପରି ରାମଙ୍କର ସଖା ସୁଗ୍ରୀବ ବା ଗୁହକ । ତେଣୁ ଉକ୍ତ ରାଜାଙ୍କ ମନରୁ ଭ୍ରମଧାରଣା ଦୂର କରିବା ଲାଗି ସେ କହିଲେ—

ଅବଧାନ ହେଲେ ଭୁସ୍ଥ ମୂକ୍ତୁତା
ଅବଶ୍ୟ ହୁଅନ୍ତ ମୁଁ ଘୁମ୍ଭ କୁତା ।

ସାଧାରଣ ଅର୍ଥ ହେଲା ମତେ ଭୁସ୍ଥ ମୁକ୍ତାଗୁଡ଼ିଏ ଦିଆଗଲେ ମୁଁ ଅବଶ୍ୟ ଘୁମୁଁଙ୍କ କୁତା କ ଘରକର ରହନ୍ତ । କିନ୍ତୁ ଶ୍ଳେଷରେ ଗାଳି ଦେଇ କହିଲେ—ଭୁ ଘୁମୁଁ କୁତା (ହେବାକୁ) ଅବଧାନ ହେଲେ ମୁଁ ଅବଶ୍ୟ ଘୁମୁଁ କୁତା ହୁଅନ୍ତ ।

ଅର୍ଥାତ୍ ଭୁ ରଜା ଯେବେ ଘରକର କେଉଁଠି ରହିବାକୁ ଇଚ୍ଛା କରନ୍ତୁ, ମୁଁ ସେହି ପନ୍ଥା ଧରି ଘୁମୁଁଙ୍କର ଘରକର ଅବଶ୍ୟ ରହନ୍ତ ।

ପଦୁମଣି ଶ୍ଳେଷର ଜଣିବା ଯେ କ ଦୁଃସାଧ୍ୟ ତାହା ବୁଝିପାରି ରଜା ଲଜ୍ଜିତ ହେଲେ । ପଦୁମଣି ସେଠାରୁ ପଳାଇ ଆସିଲେ ।

## ଖଣ୍ଡପଡ଼ା ରାଜା ଭ୍ରମରବର—

ଖଣ୍ଡପଡ଼ାର ଯୁବକ ରାଜା କୁଞ୍ଜବିହାରୀ ତାଙ୍କୁ ବହୁଥର ଡକାଇଥିଲେ । ସେ ସେଠାକୁ ଯିବାକୁ ଏହି କାରଣରୁ ମଙ୍ଗ ନ ଥିଲେ ଯେ ତାଙ୍କର ଏକମାତ୍ର କନ୍ୟା ଉମାର ମୃତ୍ୟୁ ପରେ ସେ କିପରି ତାର ଶ୍ୱଶୁର ଜନ୍ମମାଟିକୁ ଯିବେ ? ଗଲେ ସେ ଜାଗା ଦେଖିଲେ ନିଶ୍ଚୟ ତ କୋହ ଆସିବ ?

ଅଭାବ ତାଡ଼ନାରେ ବୌଦ୍ଧରୁ ଫେରି ପୂର୍ବବର୍ଣ୍ଣିତ ସଡ଼କ ରାସ୍ତାରେ ପୁଣି ସାତକୋଶିଆ ପାରି ହୋଇ କଣ୍ଟିଲୋରେ ମାଳମାଧବଙ୍କ ଯାତ୍ରା ହେତୁ ସେଠାରେ ରାଜା ଥିବାର ଅନୁମାନ କରି ପହଞ୍ଚିଲେ । ସତକୁସତ ରାଜାଙ୍କ ସହିତ ଦେଖାହେଲା । ରାଜାଙ୍କର କଠଜ ଚୂଡ଼ର ହାଣ୍ଡିଦାନ୍ତ କାମକୁ ଲକ୍ଷ୍ୟ କରି ଏପରି ଏକ କବିତା ଗାନ କଲେ ଯାହା ଯୋଗୁଁ ରାଜା ତାଙ୍କୁ ବହୁ ସମ୍ମାନ ଦାନ କରି ପ୍ରଚୁର ଅର୍ଥ ଦେଇ ବିଦା କଲେ । (ହାସ୍ୟଶତକ ଦେଖ ।)

'ମାଳମାଧବ ମାଳସୁଧାରୀ ଧରି କ୍ଷତ୍ରିୟ କୁଳ କମଳାଙ୍କ' ସଙ୍ଗୀତଟି ବହୁଦିନ ଧରି ସଙ୍ଗୀତ ଆକାରରେ ଖଣ୍ଡପଡ଼ାରେ ଗୀତ ହେବାର ଶୁଣାଯାଇଥିଲା ।

ଅଭାବ ଏବଂ ଯାତନା ଯୋଗ ଏହା ପରେ ଖଞ୍ଜନା ଅଶକ୍ତ ହୋଇଗଲେ । ତତ୍କାଳରେ ମହାରାଣୀ ଭିକ୍ଟୋରିଆଙ୍କୁ ଶ୍ରୀମତୀ ମହାରାଣୀ ଭାବରେ ଗ୍ରାମେ ଗ୍ରାମେ ନଗରେ ନଗରେ ଲୋକେ ପ୍ରଶଂସା କରୁଥିଲେ ୧୮୫୭ ସିପାହୀ ବିଦ୍ରୋହରେ ସମ୍ବଲପୁରର

ସୁରେନ୍ଦ୍ର ସାଏ, ସିଂହଭୂମିର ଅର୍ଜୁନ ସିଂହ, ପୁରୀର ଚୃଷି ଖୁଣ୍ଟିଆଙ୍କ ନାମ ସବୁଠି ଶୁଣାଯାଉଥାଏ । ୧୮୧୭ ପାଇକ ବିଦ୍ରୋହର ସୂତ୍ରଧର ସେନାପତି ଜଗବନ୍ଧୁ ବିଦ୍ୟାଧରଙ୍କ ନାମରେ ଏକ ଗୀତ ଲେଖା ହୋଇ ଗ୍ରାମେ ଗ୍ରାମେ ସେତେବେଳେ ବୋଲା ଯାଉଥାଏ । ଏ ଗୀତ ସାଙ୍ଗକୁ ମହାରାଣୀ ଭିକ୍ଟୋରିଆଙ୍କ ନାମରେ କାହା ଧର୍ମରେ କେହି ଅଧିକାର କରିବେ ନାହିଁ ବୋଲି ଏକ ଗୀତ ମଧ୍ୟ ବୋଲାଯାଉଥାଏ । ଏସବୁ ଗୀତରେ ଖଞ୍ଜନା ଏକାନ୍ତ ଆସକ୍ତ ହୋଇ ପଡ଼ିଥିଲେ ।

## ଖଞ୍ଜନା ବିୟୋଗ—

ଖଞ୍ଜନାଙ୍କ ଜନ୍ମ ୧୭୮୯ ଖ୍ରୀଷ୍ଟାବ୍ଦରେ । ୧୮୦୧ରେ ସେ ୧୨ ବର୍ଷରେ ବିବାହ କରିଥିଲେ । ୧୮୧୪ରେ ତାଙ୍କର ଏକମାତ୍ର କନ୍ୟା ରମା ଜନ୍ମିଥିଲା । ୧୮୩୦ରେ ୧୭ ବର୍ଷ ବୟସରେ ରମା ବିବାହ କରିଥିଲା । ୧୮୩୨ରେ ରମାର ପୁଅ ତାଳଧ୍ୱଜ ଜନ୍ମିଥିଲା । ୧୮୫୨ରେ ତାଳଧ୍ୱଜ କମଳାକୁ ବିବାହ କରିଥିଲା । ୧୮୬୪ରେ କମଳାର ବାଳକୃଷ୍ଣ ନାମରେ ପୁଅଟିଏ ଜନ୍ମିଥିଲା ।

ଖଞ୍ଜନା ତିର୍କିଶାଳରେ ୭୫ ବର୍ଷ ବୟସରେ ସେହି ବର୍ଷ 'ଜଗବନ୍ଧୁ ବିଳାପ' ବୋହୂଠୁ ଶୁଣୁଥିଲେ । କି ଆଶ୍ଚର୍ଯ୍ୟ, ହଠାତ୍ କ'ଣ ହେଲା ଟଳି ପଡ଼ିଲେ । ଚେତା ପାଇଁ ବହୁ ଆୟୋଜନ ହେଲା । ମାନ୍ଧାତାପୁରରୁ ବୈଦ୍ୟ ଆସିଲେ । ଆଉ ସେ ଚେତା ହେଲେ ନାହିଁ । ଶିଶୁ ବାଳକୃଷ୍ଣ ତାଙ୍କ କୋଳରେ ଥିଲା । ତାର ମାଆ କମଳା ତାକୁ ନିଜ କୋଡ଼କୁ ନେଇ ଯାଇଥିଲା ।

ଯଦୁମଣି ୧୮୦୧ରେ ଖଞ୍ଜନା ସମ୍ପର୍କରେ ଆସି ଦୀର୍ଘ ୬୩ ବର୍ଷ ପରେ ତାଙ୍କୁ ହରାଇ କାନ୍ଦି ଉଠିଲେ । ଏତେ ଦୀର୍ଘ ସମ୍ପର୍କ ହେଲେ ମଧ୍ୟ ତଥାପି ତାଙ୍କର ଆଶା ତାଙ୍କଠୁ ମେଣ୍ଟି ନ ଥିଲା । ସହିଲେ, ଅଉ କ'ଣ କରିବେ ?

## ବାର୍ଦ୍ଧକ୍ୟରେ ଅସୀମ ଦାରିଦ୍ର୍ୟ ଓ ନଅଙ୍କ ଦୁର୍ଭିକ୍ଷ—

ଦାରିଦ୍ର୍ୟ ସେତେବେଳେ ପୂର୍ଣ୍ଣ ରହିଥିଲା । ଯଦୁମଣିଙ୍କ ବୟସ ସେତେବେଳେ ୮୩ ବର୍ଷ । କି ଆଶ୍ଚର୍ଯ୍ୟ ତଥାପି ସେ ସବଳ ଥିଲେ । ଚକ୍ଷୁର ଦୃଷ୍ଟି ପୂର୍ବପରି ରହିଥିଲା । ସେ ଚୋବେଇ ଖାଇପାରୁଥିଲେ । ଅଙ୍ଗପ୍ରତ୍ୟଙ୍ଗରେ ତଥାପି ମାଧୁରୀ ପୂରି ରହିଥିଲା । କାରଣ ସେ ଶାରୀରିକ ପରିଶ୍ରମ କରିବାରେ କେବେ କୁଣ୍ଠିତ ନ ଥିଲେ ।

ବାଳକୃଷ୍ଣ କ'ଣ ଖାଇବ, କ'ଣ ଲଗେଇବ, କାହିଁରେ ଶୋଇବ ? କମଳା ଏକମାତ୍ର ତାଙ୍କର ବଧୂ । ତାର ଜୀବନ କିପରି ସୁଖମୟ ହେବ, ଏହି ଆଶା ପୂରଣ କରିବାକୁ ପୁଣି ସେ ନବୋଦ୍ୟମରେ ଏହି ଅସୀମ ବାର୍ଦ୍ଧକ୍ୟରେ ପ୍ରବାସୀ

ହେବାକୁ ବାହାରି ପଡ଼ିଲେ । ବାଙ୍କି ଦେଇ ତିଗିରିଆ ଗଲେ । ରାଣୀ ସେତେବେଳକୁ ମରିଯାଇଥିଲା । ଚାରି ପିଲାଏ ବହୁ ସମ୍ମାନ କଲେ । ସନ୍ତୁ ମଧ୍ୟ ମରିଥିଲେ । ଦୁର୍ଭିକ୍ଷର କବଳ ଗ୍ରସ୍ତ ଚଉଦଗଡ଼ରେ ଘୋଟିଥିଲା । ଫସଲ ଆଦୌ ନ ହେବାରୁ ଗୃହଆଡ଼େ ଲୋକେ ଉପବାସ ରହୁଥିଲେ ।

ତିଗିରିଆର ତତ୍କାଳୀନ ରାଜାଙ୍କ ଭଗିନୀ ସର୍ବସଦ୍‌ଗୁଣବତୀ ରତ୍ନମାଳୀ ନରସିଂହପୁରରେ ୧୮୬୨ରେ ବିବାହ କରିଥିଲେ । ବ୍ରଜସୁନ୍ଦର ମାନସିଂହ ହରିଚନ୍ଦନ ମହାପାତ୍ର ଯୁବକ ରାଜା । ସେତେବେଳେ ବୟସ ମୋଟେ ୨୬ । ତିଗିରିଆ ରାଜା କ୍ଷତ୍ରିୟ ବୀରବର ଚମ୍ପତି ମହାପାତ୍ର ଏକ ଚିଠି ଲେଖିଦେଲେ । କହିଲେ—ମୋର ତ ଅବସ୍ଥା ଦେଖୁଅଛନ୍ତି । ମୋ ଭଉଣୀ ଅଗାଧ ପଣ୍ଡିତା, ସଦ୍‌ଗୁଣବତୀ, ସଂସ୍କୃତ ସାହିତ୍ୟରେ ନୈଷଧ ଶେଷ କରିଛନ୍ତି । ସେ ଆପଣଙ୍କୁ ଯଥେଷ୍ଟ ସାହାଯ୍ୟ କରିବେ ।

## ନରସିଂହପୁରର ଯୁବକ ରାଜା ବ୍ରଜସୁନ୍ଦର—

ବୃଦ୍ଧ କବି କୁଟୁମ୍ବ ପୋଷିବା ଆଶାରେ ଚୋଟିଏ ଗୋଟିଏ ରାସ୍ତା ଦୁଇ ଦିନରେ ନରସିଂହପୁରରେ ପହଞ୍ଚିଲେ । ରାଜଧାନୀ ପାଏକପଡ଼ା ଗଡ଼ ଏବଂ ପାଟଣା ଦେଖି ସନ୍ତୋଷ ହୋଇ ରାଜାଙ୍କ ସିଂହଦ୍ୱାର ନିକଟରେ ରହି ସମ୍ବାଦ ଦେଲେ । ରାଜା ବ୍ରଜସୁନ୍ଦର ପିତୃମାତୃଶୂନ୍ୟ ଥିଲେ । ତାଙ୍କର ପିତା ବାତ ବେମାରରେ ୧୮୬୨ରେ ମୃତ୍ୟୁ ଲଭନ୍ତେ ପ୍ରଜାଙ୍କ ସାକ୍ଷ୍ୟରେ ୨୧ ବର୍ଷ ବୟସରେ ସେ ରାଜା ହୋଇ ସେହି ବର୍ଷ ତିଗିରିଆରେ ମଙ୍ଗଳକୃତ୍ୟ ହୋଇଥିଲେ । ରାଜା କାଶ୍ୟପ ଗୋତ୍ରୀୟ ଭିଖାରୀ ରାୟଗୁରୁ ନାମକ ବ୍ରାହ୍ମଣ ପଣ୍ଡିତଙ୍କର ମନ୍ତ୍ରଣାରେ ନିଜର ମନ୍ତ୍ରୀବର୍ଗ, ପୁରୋହିତ ଆଦିଙ୍କୁ ପରିତ୍ୟାଗ କରି ମୂର୍ଖ ସେବାସୀଙ୍କଦ୍ୱାରା ପରିବେଷ୍ଟିତ ହୋଇ କେବଳ ପାଲା, ନାଟ ଦେଖିବାରେ ଏବଂ ସଂସ୍କୃତ ଭାଗବତ ଚର୍ଚ୍ଚାରେ ସମୟ ଅତିବାହିତ କରୁଥିଲେ । ପଣ୍ଡିତ ରାୟଗୁରୁ ସଂସ୍କୃତ ଭାଗବତ ବ୍ୟତୀତ ଅନ୍ୟାନ୍ୟ ଶାସ୍ତ୍ରରେ ଆଦୌ ପାରଙ୍ଗମ ନ ଥିଲେ । ତେଣୁ ଥରେ ସେ ହିନ୍ଦୋଳ ଦରବାରରେ ଦର୍ଶନ ଓ ତର୍କଶାସ୍ତ୍ରରେ ଅପାରଗତା ଯୋଗୁଁ ଲାଞ୍ଛିତ ହୋଇଥିଲେ । ତିଗିରିଆ ଜେମା ପରମାସୁନ୍ଦରୀ ରତ୍ନମାଳୀ (ନରସିଂହପୁର ଡାକନାମ ରତ୍ନମଞ୍ଜରୀ) କାବ୍ୟ, ନାଟକ, ଇତିହାସ, ନ୍ୟାୟ, ଦର୍ଶନ ଆଦିରେ ପରିପୂର୍ଣ୍ଣ ଯୋଗ୍ୟତା ଲଭିଥିଲେ । କିନ୍ତୁ ରାଜା ଭାଗବତ ବ୍ୟତୀତ ଅଧିକ ଜାଣି ନ ଥିଲେ । ତେଣୁ ରାଣୀଙ୍କ ଜ୍ଞାନ ଗାମ୍ଭୀର୍ଯ୍ୟରେ ରାଜା ଏବଂ ପଣ୍ଡିତ ଦୁହେଁ ବ୍ୟଥିତ ହୋଇ ଯାଉଥିଲେ । ରତ୍ନମାଳୀ କାଳିଦାସ, ମାଘ, ଭବଭୂତି, ଶ୍ରୀହର୍ଷ ଆଦି କବିମାନଙ୍କ କବିତା ଉଦାହରଣ ସ୍ୱରୂପ ଥୋଇଲେ ଏ ଦୁହେଁ ଲଜ୍ଜିତ ହେଉଥିଲେ ।

ପଣ୍ଡିତ ରାୟଗୁରୁ ଏକାନ୍ତ ଷଡ଼ଯନ୍ତ୍ରପରାୟଣ,ଈର୍ଷାପରାୟଣ ବ୍ରାହ୍ମଣ ଥାଇ ନିଜର ଦୁଇ ଭାଇ ଯେଉଁମାନେ କି କାବ୍ୟରେ କଳିଷ୍ଟ ପାଣ୍ଡିତ୍ୟ ଅର୍ଜିଥିଲେ, ତାଙ୍କୁ ମଧ୍ୟ ସିଂହଦ୍ୱାର ମନା କରି ଦେଇଥିଲେ । ଏବେ ରାଣୀଙ୍କ ବିରୁଦ୍ଧରେ ଏକ ପଶ୍ଚିମା ଜ୍ୟୋତିଷଙ୍କୁ

ଉକ୍ତ ରାଜଗୁରୁ ଟଙ୍କା ଖର୍ଚ୍ଚ କରି ପୁରୀରୁ ଆଣାଇ ଦୁଇମାସ ପୂର୍ବରୁ ଏକ ଅସମ୍ଭାବିତ ଘଟଣା ଘଟାଇଥିଲେ । ଜ୍ୟୋତିଷକୁ ରାଜାଙ୍କର ପିତା, ମାତା, ଜନ୍ମ, ରାଶି ନକ୍ଷତ୍ର, ବାଲ୍ୟ ଜୀବନାଦି ସମ୍ବନ୍ଧରେ ଆଗରୁ ସବୁ ସମସ୍ୟା ଅବଗତ କରାଇ ଦିଆଯାଇଥିଲା । ଧୂର୍ତ୍ତ ଜ୍ୟୋତିଷ ଦେଖା କରନ୍ତେ ରାଜା ତାଙ୍କୁ ନିଜ ବିଷୟରେ କେତେକ ପ୍ରଶ୍ନ କରିଥିଲେ । ଭଣ୍ଡ ସ୍ୱାର୍ଥାନ୍ୱେଷୀ ଲୋକ ତାଙ୍କ ଜୀବନର ସମସ୍ତ ସମସ୍ୟା ଏପରି ସଠିକ ଭାବରେ କହିଥିଲା ଯେ ରାଜା ତାଙ୍କୁ ତତ୍‌କ୍ଷଣାତ୍ ଶତମୁଦ୍ରା ପୁରସ୍କାର ଦେଇ ତାଙ୍କର ଭବିଷ୍ୟତ ଲାଗି ପ୍ରଶ୍ନ ଉତ୍ଥାପନ କରିଥିଲେ । ଅତି ଗୋପନରେ ଭବିଷ୍ୟତ କହିବା ସ୍ଥିର ହୋଇଥିଲା । ଜ୍ୟୋତିଷୀ କହିଥିଲା ଯେ ବିବାହିତା ତୁମ୍ଭର ରାଣୀଙ୍କ ଆଉ ତୁମ୍ଭର ସନ୍ତାନ ହେଲେ ସନ୍ତାନ ଭୂମିଷ୍ଠ ହେବାର ଏକବିଂଶ ଦିନରେ ତୁମ୍ଭର ନିଶ୍ଚୟ ମୃତ୍ୟୁ ହେବ । ※

ରାଜା ଏହି ଭଣ୍ଡ ଜ୍ୟୋତିଷ କଥା ଅନୁସାରେ ନିଜର ଅଶେଷ ସଦ୍‌ଗୁଣବତୀ ଏକାନ୍ତ ରୂପସୀ ଜାୟାଙ୍କୁ ସେହିଦିନୁଁ ସ୍ପର୍ଶ କରିବାକୁ ଭୟ କରୁଥିଲେ । ଏହା ଯେଉଁ ସମୟର କଥା ଅବଶ୍ୟ ସେତେବେଳେ ଅପତ୍ୟ ହୋଇ ନ ଥିଲା । ଏପରି ଦୁଃସମୟରେ ଯଦୁମଣି ରାଣୀଙ୍କ ନାମରେ ଏକ ଚିଠି ନେଇ ଉପସ୍ଥିତ ହୁଅନ୍ତେ, ରାଜଗୁରୁଙ୍କ ମନ୍ତ୍ରଣାରେ ସେ ଚିଠି ଖପାଇ ଦେଇ ସମ୍ବାଦ ଦିଆଯାଇଥିଲା ଯେ ରାଜାଙ୍କ ଦେଖା ହୋଇପାରିବ ନାହିଁ । ଯଦୁମଣି ଏତେ ବାର୍ଦ୍ଧକ୍ୟରେ ଏପରି କଥା ଶୁଣି ହତାଶ ହୋଇ ପୁନର୍ବାର ଜୀବନକୁ ନିଜ ଗୃହକୁ ଫେରାଇ ନେବାକୁ ବ୍ୟାକୁଳ ହୋଇ ଉଠିଥିଲେ ।

ରାଜଗୁରୁଙ୍କ ଚିନ୍ତା ଯେ ଯଦୁମଣି ମହାପାତ୍ର ସେ । କ'ଣ ନା କ'ଣ କହିବ । ତାଙ୍କୁ ଏଠାରେ ସ୍ଥାନ ଦେଲେ ରାଜା ଯେବେ ପ୍ରଶଂସା କରିବସନ୍ତି, ତାଙ୍କର ପ୍ରତିଷ୍ଠା କାଳେ ଭ୍ରଷ୍ଟ ହୋଇଯିବ ? ଏଣୁ ସେ ଦେଖା ପର୍ଯ୍ୟନ୍ତ ବନ୍ଦ କରି ଦେଇଥିଲେ ।

---

※ ରାଜା ବ୍ରଜସୁନ୍ଦର ନିଜର ଜାୟାଙ୍କୁ ତ୍ୟାଗ କରି ଫୁଲଦେଈ, ଦେଈମା ଓ ଅନ୍ୟାନ୍ୟ ଦାସୀମାନଙ୍କ ଆଡ଼େ ବହୁ ସନ୍ତାନ ଜନ୍ମ କରିଥିଲେ ଏବଂ ତାଙ୍କ ମଧ୍ୟରୁ ଜଣେ ପୁତ୍ର ରାମଚନ୍ଦ୍ର ଭ୍ରମରବରଙ୍କୁ ପୁତ୍ର ସ୍ୱରୂପ ରାଜଗାଦି ଦେବାକୁ ଇଚ୍ଛା କରନ୍ତେ ରାଣୀ ହେମମାଳୀଙ୍କ ମୃତ୍ୟୁ ପରେ ପ୍ରଜାମେଳି ୧୮୭୧ରେ ପ୍ରବଳ ଆକାର ଧରିଥିଲା । ଫଳରେ ରାଜା ବାଧ୍ୟହୋଇ ହିନ୍ଦୋଳ ରାଜକୁମାରୀ ନକ୍ଷତ୍ରମାଳୀଙ୍କୁ ବିବାହ କରି ନିଜ ଧାରଣା ଅନୁସାରେ ପୁତ୍ରକୁ ୨୧ ଦିନଠାରେ ମୃତ୍ୟୁକୁ ଅପେକ୍ଷା କରିଥିଲେ । କିନ୍ତୁ ଶିଶୁର ବର୍ଷ ପୂରିଣି ହେଉଣୁ ପରେ ତାଙ୍କର ଦୀର୍ଘ ଅନଶନ ଯୋଗୁ ମୃତ୍ୟୁ ହୋଇଥିଲା । ପ୍ରଜାଙ୍କ ମେଳିକୁ ସେ ଦ୍ୱିତୀୟବାର ତୀର୍ଥ କରି ନ ପାରିବାରୁ କଣ୍ଠରେ ବ୍ରଣ ହୋଇଥିବାର ଛଳନା କରି ଅନଶନରେ ମୃତ୍ୟୁ ବରଣ କରିଥିଲେ ଏବଂ ପ୍ରଜାମାନଙ୍କୁ ଅଭିଶାପ ଦେଇଥିଲେ, "ମୁଁ ବଳଜଟିଏ ସୃଷ୍ଟି ଥିଲି, ତା'ତ ଦେଲି; ମୋଠି ଆଉ କି ଲୋଡ଼ା ତୁମର ? ମୋତେ ତୀର୍ଥଦର୍ଶନରୁ ବଞ୍ଚିତ କଲ, ତୁମ୍ଭକୁ ହାଣ୍ଡି ବାଡ଼େଇବ ।" ନରସିଂହପୁର ପ୍ରଜାଙ୍କ ଭାଗ୍ୟରେ ତା ଘଟିଥିଲା ।

ଯଦୁମଣି ବଜାରରୁ ଡାଲି, ଚାଉଳ, 'କାଠ କିଣି ଗୁଣ୍ଡିଚା ବାଡ଼ଠାରେ ରୋଷେଇ କରିବାକୁ ଉପକ୍ରମ କରିଥିଲେ । ସକାଳୁ ଉପବାସ । ଆଉ କେତେ ସମ୍ଭାଳିବେ ?

## ଦୁର୍ଦ୍ଦାନ୍ତ ପିଣ୍ଡ ସାନ୍ତରା—

ଏପରି ସମୟରେ ସେ ଜଣେ ପ୍ରୌଢ଼ ବ୍ୟକ୍ତିଙ୍କୁ ଦେଖିଥିଲେ । ସେ ସାୟଂ ସ୍ନାନ କରିବାକୁ ହନୁମାନ ସାଗର (ନରସିଂହପୁର ଗଡ଼ର ଏକ ବୃହତ୍ ଜଳାଶୟ)କୁ ଯାଉଥାନ୍ତି । ତାଙ୍କର ନାମ ପିଣ୍ଡ ସାନ୍ତରା । ସେ ଗ୍ରାମୀୟ ଜଗନ୍ନାଥଙ୍କର ପୂଜାପଣ୍ଡା । ତାଙ୍କୁ ଦେଖି ପଚାରିଲେ ଏହି କାରଣରୁ ଯେ ରାତି ସେ ସେଠାରେ ଏକାକୀ ରହିବା କପରି ସୁବିଧା ହେବ ? ଏଠାରେ ଜଗୁଆଳି ଚଉକିଆ ଅଛନ୍ତି କି ନା ?

ପିଣ୍ଡ ସାନ୍ତରା ଏକ ନିର୍ଧୂମ ଅଗୁଞ୍ଜିଆ ମୂଳ ରକମର ମଣିଷ ଥିଲେ । ସେ ଅସଭ୍ୟତାର ହିଁ ପ୍ରତୀକ ଥିଲେ । ସେ ଦୁର୍ଦ୍ଧର୍ଷ ଯଦୁମଣିଙ୍କୁ ଚିହ୍ନନ୍ତି । କାରଣ ତାଙ୍କର ଖଣ୍ଡପଡ଼ା ନୂଆଗଡ଼ ଆଡେ ସାମୟିକ ଯିବାର ହୁଏ । ତେଣୁ କହିଲେ—ଏଠାରେ ଚଉକିଆ ନାହାନ୍ତି ଯେ ଛଅ ଆଙ୍ଗୁଳିଆ ଆଠ ଆଙ୍ଗୁଳିଆ ଅଛନ୍ତି ।

ଯଦୁମଣି ସେତେବେଳକୁ ଏକାନ୍ତ କାତର ହୋଇ ଉଠିଥିଲେ । ଦିନଯାକ ଉପବାସ । ଏଣେ ପଥ ଚାଲିବାର କ୍ଳେଶ । ବୟସ ୮୪ ବର୍ଷ । ସେ ଉଚ୍ଚବାଚ କରିବାକୁ ଅସଙ୍ଗତ ମନେକଲେ । ରସ ପରିବେଷଣ ମଧ୍ୟ କରିପାରି ନ ଥିଲେ । ପିଣ୍ଡ ସାନ୍ତରା ସ୍ନାନ ସାରି ଫେରିବା ବେଳେ ଶୁଣିଲେ—ଯଦୁମଣି ମନେ ମନେ ନିଜକୁ ଧୈର୍ଯ୍ୟ ଦେଇ କହୁଛନ୍ତି—ଏ ନୃପତି ସାନ୍ତ ଦେଖା ନ ଦେଲେ କ'ଣ କରିବା ! ସ୍ୱାଙ୍କ ଘର କେତେ ସାମନ୍ତ ରହିଛନ୍ତି ତ ?

ପିଣ୍ଡ ସାନ୍ତରା ଓଦାଲୁଗାରେ ଥାଇ ତାହା ଶୁଣି କହିଲେ—ଚମତ୍କାରେ ! ସାଆନ୍ତ ତୁମ୍ଭଙ୍କୁ ଅପୂର୍ବ ଅଛି ? ଯା' ଜଙ୍ଗଲ ଗଣ୍ଡିରେ କଳାଟେ ବାଡ଼େଇ ଦେବ, ସେ ତୁମର ସା'ନ୍ତ ।

## ଅସହାୟ ଭାବେ କରାଳ କ୍ଷୁଧାରେ ଅସ୍ଥିରତା —

ଏହି ଅସଭ୍ୟ ବାକ୍ ବାଣରେ ବ୍ୟଥିତ ହୋଇ ବହୁ ରାଜପ୍ରିୟ ଜଣେ ମହାତ୍ମା ବ୍ୟଥିତ ହୋଇ ହଠାତ୍ ହାଣ୍ଡି, ଅହିଆ ଭାଙ୍ଗିଦେଇ ବ୍ୟାକୁଳ ହୋଇ ଉଠିଲେ । ଚଉଦିଗ ତାଙ୍କୁ ଅନ୍ଧକାର ଦେଖାଗଲା । ଲଟା ଜଙ୍ଗଲପୂର୍ଣ୍ଣ ଅନ୍ଧକାର ରାତିରେ ସେ ଏପରି ଏକ ଅଜ୍ଞାତ ସ୍ଥାନରେ କ'ଣ କରିବେ ଭାବୁଥିଲେ । କ୍ଷୁଧାରେ ଛଟପଟ ହେଉଥିବା ବେଳେ ଚୋଟିଏ ବହୁଡ଼ ଧରି 'ମାନିଆ' ନାମରେ ଗୋଟିଏ ପାଣ ଜାତିର ଯୁବକ ଭୃତ୍ୟ (ହଳିଆ) ତାଙ୍କୁ ଡାକିଲା—'ସାଆନ୍ତ, ବଳେ ହୁଅନ୍ତୁ; ରାଜଗୁରୁ ସାଆନ୍ତାଣୀ ଆପଣଙ୍କୁ ଡକାଇଛନ୍ତି ।' ସେକାଳେ ପାଣକୁ ସନ୍ଧାନ ବାରିବା କଷ୍ଟ ହୁଏ ନାହିଁ । ତେଣୁ ସେମାନେ ପରମ୍ପରା ଧରି ଚୌକିଦାର ରହୁଥିଲେ । ଜଣେ ପାଣ ଜାତିର ଲୋକକୁ ସାଧାରଣତଃ ଚୌକିଆ ମଧ୍ୟ କୁହାଯାଉଥିଲା ।

ପୁଣି ଗଜପତିଙ୍କର ବତ୍ସସ ବଂଶୀୟ ରାଜଗୁରୁ ସାମନ୍ତ ପରମଲକ୍ଷ୍ମୀ ରାଜଗୁରୁ ମହାପାତ୍ରଙ୍କ ଭକ୍ତ ଭାଗବତ ପ୍ରଣେତା ଜୀବ ଦେବଙ୍କ ପୁତ୍ର ଦୁର୍ଗୋତ୍ସବ ଚନ୍ଦ୍ରିକାର ରଚୟିତା ବର୍ଦ୍ଧନ ମହାପାତ୍ରଙ୍କ ଖୋଦ୍ ବଂଶୀୟ ସେ ୨ୟ ରାମଚନ୍ଦ୍ର ଦେବଙ୍କ ସମୟରେ ରାଜଗୁରୁ ଥାଇ ବୀର କିଶୋର ଦେବଙ୍କ ୮ ଅଙ୍କରେ ରାଜନୈତିକ ବିଦ୍ରୋହ ଯୋଗୁ ନରସିଂହପୁରକୁ ଦେଶାନ୍ତରୀ ହୋଇଥିଲେ । ବୀରକେଶରୀଙ୍କ ମୃତ୍ୟୁ ପାଏ ପରମଲକ୍ଷ୍ମୀଙ୍କ ପୁତ୍ର ନରସିଂହ ଏବଂ ତାଙ୍କର ନାତି ଚନ୍ଦ୍ରଶେଖର ରାଜଗୁରୁ ଭାବରେ ଖୋର୍ଦ୍ଧା ଓ ପୁରୀ ପ.ଚାଯ୍ୟାଚ କରୁଥିଲେ । ବୀରକିଶୋର ମରିବା ପାଏ ସେ ଅନ୍ୟ କାହାକୁ ରାଜଗୁରୁ କରି ନ ଥିଲେ । ତାଙ୍କ ଅନ୍ତେ ଗୋଆଳେୟୁ ଜୟକୃଷ୍ଣ ମହାପାତ୍ର ରାଜଗୁରୁ ହୋଇ ଇଂରେଜ ଅମଳରେ ଫାଶୀ ଘେନିଥିଲେ । ସେ ଯାହାହେଉ ଉକ୍ତ ବତ୍ସସ ବଂଶୀୟ ରାଜଗୁରୁ ଭୁବନେଶ୍ୱର, ସାମନ୍ତ-କୁଳରେ ପ୍ରଥମ କନ୍ୟା ବିବାହ କରିଥିଲେ । ସନ୍ତାନ ନ ହେଉଣୁ କନ୍ୟାର ମୃତ୍ୟୁ ହେବାରୁ ଦ୍ୱିତୀୟ ଦାର ପରିଗ୍ରହ ଲାଗି ତାଙ୍କୁ କେହି ଅନ୍ୟ ସାମନ୍ତ କନ୍ୟା ନ ଦିଅନ୍ତେ ବାଧ୍ୟହୋଇ ସେ ବୈଦିକ ଭଟ୍ଟମିଶ୍ର ବଂଶରୁ ଏକ କନ୍ୟା ଗୃହକୁ ଆଣି ଦ୍ୱିତୀୟ ବିବାହ କରିଥିଲେ । ନୂଆଗଡ଼ ଶୁକଳ ଗାଡ଼ିଆ ଗୋବିନ୍ଦପୁର ଗ୍ରାମର ନୀଳକଣ୍ଠ ମିଶ୍ରଙ୍କର ରୂପସୀ କନ୍ୟା ଲକ୍ଷ୍ମୀ ସେହି ଥିଲା ।

## ରାଜଗୁରୁ ସାନ୍ତାଣୀ—

ପଦୁମଣିଙ୍କର ପିତା ମୁକୁନ୍ଦଙ୍କର ସଙ୍ଗାତ ନୀଳକଣ୍ଠ ମିଶ୍ରେ ତାଙ୍କର ଅତି ଆପଣାର ଥିଲେ । ତେଣୁ ପଦୁମଣିଙ୍କୁ ଲକ୍ଷ୍ମୀ ଚିହ୍ନନ୍ତି । ସେତେବେଳେ ଲକ୍ଷ୍ମୀ ପ୍ରଖ୍ୟାତ କୁଳର ମହାତେଜସ୍ୱିନୀ ରମଣୀ ଥିଲେ । ୧୮୭୪ ରେ ରାଜା ତାଙ୍କର କେତେକ ଜମି ଉଚ୍ଛେଦ କରିନେବାରୁ ଅସନ୍ମାନିତ ପୁତ୍ରଗଣ ରାଜଦ୍ୱାରରୁ ଫେରିଆସନ୍ତେ ସେ ସେମାନଙ୍କୁ ଗୃହରେ ଆଶ୍ରୟ ନ ଦେଇ ସ୍ୱତନ୍ତ୍ର ରାଜ୍ୟରେ ଜମି ଭୂମି ଲାଭକରି ତାଙ୍କୁ କୁଟୁମ୍ବ ସହିତ ନେଇଯିବାକୁ ନିର୍ଦ୍ଦେଶ ଦେଇ କବାଟ କିଳି ଦେଇଥିଲେ । ପୁତ୍ରମାନେ ମାତୃ ଆଦେଶ ଶିରୋଧାର୍ଯ୍ୟ କରି ମଣ୍ଡପ ଭାଙ୍ଗି ବାଉଁଶରେ ହୁଳା ତିଆରି କରି ଦିନ ଦ୍ୱିପ୍ରହରରେ ରାଜାଙ୍କଶାସନର ନିନ୍ଦାକୁ ଏପରି ଭାବରେ କହୁଥିଲେ ଯେ—'ପୃଥ୍ୱୀ ଅନ୍ଧକାର ହୋଇଛି । ପଥ ଦିଶୁ ନାହିଁ । କିଏ ଅଛ ଆଡ଼େଇ ହୋଇଯାଅ ।' ଏହା କହି ହୁଳା ଜାଳି ପଥେ ପଥେ ଯିବାରୁ ପୁଣି ରାଜା ଚଣ୍ଡୋଳଦାର ପ୍ରାର୍ଥୀ ହୋଇ ବଡ଼ାମ୍ବାରୁ ଫେରାଇ ଆଣିଥିଲେ । ଏଣେତେ ବଡ଼ମ୍ବାର ରାଜା ପିଣ୍ଡିକ ବୀରବର ମଙ୍ଗରାଜ ସେମାନଙ୍କୁ ନିଜର ଗୋଟିଏ ଖମାର ଦେଇ ଦେବାକୁ ସିଦ୍ଧାନ୍ତ କରି ସାଈଥିଲେ ।

ହେଲେ ଲକ୍ଷ୍ମୀଦେବୀଙ୍କର ଆହ୍ୱାନକୁ ପଦୁମଣି ସ୍ୱର୍ଗୀୟ ଦେବାଦେଶ ମଣି ମାନିଆ ପାଞ୍ଚ ପଚିଶ ନିଜଗଡ଼ ଶାସନ ହରିଚନ୍ଦନପୁରରେ ପହଞ୍ଚିଲେ । ଅଧିକାଂଶ ପଦୁମଣି ଲକ୍ଷ୍ମୀଙ୍କର ଚରଣ ତଳେ ମସ୍ତକ ଅବନତ କରିଥିଲେ । କାରଣ ସେ ତାଙ୍କ ସଙ୍ଗାତ

ବାପାଙ୍କର କନ୍ୟା ଲକ୍ଷ୍ମୀ ସେତେବେଳେ ନ ଥିଲା । ସେ ସେତେବେଳେ ବୃଦ୍ଧବର୍ଷରେ ଶ୍ରେଷ୍ଠତମା ମାନମାନ୍ୟା ରାଜଗୁରୁପତ୍ନୀ ଭାବରେ ପୂଜିତ ହେଉଥିଲା । ପଦ୍ମମଣି ମହାପାତ୍ର ଏକା ନୁହନ୍ତି, ଅଭିଜାତ ଏହି ରାଜଗୁରୁ ଗୃହରେ ଅହଙ୍କାର ଅତି ଅଧିକ ସେତେବେଳେ ଥିଲା । କିନ୍ତୁ ମନୁଷ୍ୟକୁ ମନୁଷ୍ୟ ଭାବରେ ନ ଦେଖିବାର ଅହଙ୍କାର ନ ଥିଲା । ପଦ୍ମମଣିଙ୍କୁ ମହା ସମାରୋହରେ ଠା' ସଜ କରାଯାଇ ଘିଅ ପିଲସଜ ଜାଳି ଭୋଜନ ଦିଆଗଲା । କବିମଣିଙ୍କ ଚକ୍ଷୁରୁ ଲୋତକ ସ୍ରବିଲା ।

ରାତି ଥାଉ ଶତ୍ରୁମାନଙ୍କୁ ମୁହଁ ନ ଦେଖାଇ ସେ ଯତ୍ସାମାନ୍ୟ ଟଙ୍କା ନେଇ ଗୃହାଭିମୁଖେ ରାଜଗୁରୁଙ୍କ ବଳଦ ଗାଡ଼ିରେ ଚଢ଼ି ମହାନଦୀ ଘାଟପାଏ ଚାଲିଗଲେ । ଅବା ସେ ଦିନେ ଦୁଇ ଦିନ ରହିଥାନ୍ତେ, କିନ୍ତୁ ସେହି ଗ୍ରାମରେ ତାଙ୍କ ଶତ୍ରୁଙ୍କ ଘର ଥିଲା । ବିଶେଷରେ ସମସ୍ତ ଘଟଣା ଜାଣି ପାରି ଥିବାରୁ ଲାଞ୍ଛିତ ସ୍ଥାନରେ ଏ ଦୁର୍ବଳ ଶରୀର ଘେନି ସେ ମୁହୂର୍ତ୍ତେ ରହିବାକୁ ଇଚ୍ଛା କରି ନ ଥିଲେ ।

ବହୁ କଷ୍ଟରେ ଗ୍ରାମରେ ପହଞ୍ଚିବା ପରେ ତାଙ୍କୁ ସାମାନ୍ୟ ଜ୍ୱର ହେଲା । ଶ୍ରୀ ଗୁଣ୍ଡିଚା ଦିନ ସେ ଅଗଣାର ତୁଳସୀ ମୂଳେ ନିଃସହାୟ ଦୁଃଖାର୍ତ୍ତ ଭାବରେ ଦୁର୍ବଳ ଦେହକୁ ଗୋଟିଏ କାଠ ଦିଆ ଖୁଣ୍ଟିକୁ ଆଉଜାଇ ଗାଉଥିଲେ—

'ଓଜଶୀଳ ଭୋଜରାଜ ଜୀବନ ହରଣେ ତେଜ
ଅର୍ପଣ କଲି କୃପଣ ନୋହି ।' ଗୀତଟି ।

ଆଖିରୁ ଲୁହ ବୋହି ଯାଉଥାଏ । ପୁଅ ତାଳଧ୍ୱଜ ପ୍ରସାଦ ଧରି ଘରେ ପହଞ୍ଚନ୍ତେ ସେ ପଚାରିଲେ—'ବାପା, ଠାକୁର କେଉଁଠି ?'

ପୁଅ କହିଲେ—ଠାକୁରେ ରଥକୁ ବିଜେ ହେଉଛନ୍ତି ।

କ୍ଷୀଣ ସ୍ୱରରେ ଶୁଭିଲା—

'ପାତକୀ ମୁକୁଟଶ୍ରେଣୀ ଶିରୋମଣି ପଦ୍ମମଣି
ମନ ତଳେ ନେଇ ନ ପାରିବ ।'

**ମହାପ୍ରସ୍ଥାନ—**

ପଶ୍ଚିମକୁ ମୁଖକରି ଦୁଇହାତ ବଢ଼ାଇଥାନ୍ତି । ହଠାତ୍ ଅସ୍ପଷ୍ଟ ଧ୍ୱନି ଶୁଭିଲା । ସେ ଖୁଣ୍ଟ ଆଡ଼ୁ ତଳେ ପଡ଼ିଗଲେ । ପୁଅ ଦୌଡ଼ି ଯାଇ ଧରି ପକାଇ ଦେଖିଲେ ସେ ଆଉ ନାହାନ୍ତି ।

ସେଦିନ ୧୮୬୬ ମସିହା ଆଷାଢ଼ ଶୁକ୍ଳ ଦ୍ୱିତୀୟା, ଶ୍ରୀ ଗୁଣ୍ଡିଚା । ୨୭।୧୮୬୬ ମସିହା ୧୨୭୩ ସାଲ୍ ଦିବ୍ୟସିଂହ ଦେବଙ୍କ ୮ ଅଙ୍କ ରବିବାରରେ ଏହି ମହାମନସ୍ୱୀ ଚାଲିପଡ଼ିଲେ ।

ଦେଶରେ ଖବରକାଗଜର ଯୁଗ ଆସି ନ ଥିଲେହେଁ ତାଙ୍କର ମୃତ୍ୟୁ ଖବର ତଡ଼ିତ୍ ବେଗରେ ଚଉଦଦଗରେ ବ୍ୟାପିଗଲା । ନଅଙ୍କ ଦୁର୍ଭିକ୍ଷ ସାରଧାର ଦେଶକୁ ଘୁରଖାର କରିବାକୁ ସଜବାଜ ହେଉଥାଏ ।

ସହସ୍ରାଧିକ ଲୋକ ଜମିଗଲେ । କ୍ରନ୍ଦନର କାତର ଧ୍ୱନି ଚଉଦଦଗରେ ମାଡ଼ି ଗଲା । ଅରଣ୍ୟ ତୁଳସୀ ଛଅ ଖଣ୍ଡି କାଠରେ ମୁହ ଭିକେ ପାଞ୍ଚଶ ମେଞ୍ଚାଟିଏରେ ପରିଣତ ହେଲେ । ଘରେ ଘରେ ଶୁଣାଗଲା —

ପରମ ପାତକୀ ଶ୍ରେଣୀ ଶିରୋମଣି ଯଦୁମଣି

ମନ ଭଳେ ନେଇ ନ ପାରିବ

ଏହା ଉଦ୍ଧାରଣେ ଯେବେ ଚିତ୍ତ ଦେଇପାର ଲବେ

ତେବେ ସିନା ଦାତା ବୋଲାଇବ

ମାଳାଚଳ କଳାକାର

ସତ କି ଏ ମିଛ ?

ଦେଲ ଯାହା ନେଲ ତାହା ଏଥକୁ କପାଇଁ ମହା

ଦାତା ପଣେ ପତାକା ବାନ୍ଧିଛ ?

ଶୁଦ୍ଧି ଶ୍ରାଦ୍ଧ କପରି ହେବ ? କୌଣସି ପ୍ରକାରେ ନବମ ଦିନ ଗ୍ଲଲଗଲା । ସ୍ୱଜ ପାହିଲେ ଦଶାହ ଦିନ । କେହି କପରି ଯତ୍ସାମାନ୍ୟ ସାହାଯ୍ୟ କଲେ । ହଠାତ୍ 'ବାସୁ ମତ୍ତଗଜ ସିଂହ' ନାମକ ନରସିଂହପୁର ରଜାଙ୍କ ପାଖଲୋକ ଦିନ ଘଡ଼କରେ ସେ ଗ୍ରାମରେ ଦେଖାଦେଲା ।

ସେ ଯାହାଙ୍କ ଅନ୍ୱେଷଣରେ ଆସିଥିଲା, ଶୁଣିଲା ସେ ୯ ଦିନ ପୂର୍ବରୁ ଗ୍ଲଲଗଲେଣି । ଦୁଃଖିତ ହୋଇ ବହୁ ଜନ ସମାଗମରେ ପରଞ୍ଜ ଜଣାଇଲା—'ନରସିଂହ ପୁର ପାଟ ମଣିମାଙ୍କ ହୁମ୍ମ କର ଯଦୁମଣି ମହାପାତ୍ରଙ୍କୁ ଏକଶତ ଏକୋଇଶି ଟଙ୍କା ବିଦାକ ପଠାଇ ଦେବା ହୋଇଛନ୍ତି ।'

## ଅନ୍ତ୍ୟେଷ୍ଟି କୃତ୍ୟ—

ଜନସମାଜରେ ଆନନ୍ଦାଶ୍ରୁ ବୋହିଗଲା । ବୃଦ୍ଧମାନେ କହିଲେ—ଯାହାହେଉ ଡଗିଶିଆ ଜେମା ମୃତ୍ୟୁ ପରେ ଉପକାରୀ ହେଲେ । ମହା ସମାରୋହରେ ଶତ ଶତ ବ୍ରାହ୍ମଣଙ୍କୁ ଭୋଜନ ଦିଆଗଲା । ତାଙ୍କ ମନ ଅନୁସାରେ କାର୍ଯ୍ୟ ହୋଇଗଲା । ରଣପୁର ନରେନ୍ଦ୍ର, ଖଣ୍ଡପଡ଼ା ଭ୍ରମରବର, ନୂଆଗଡ଼ର ତତ୍କାଳୀନ ନୃପତି ଲକ୍ଷ୍ମୁକେଶ୍ୱର ଚୁଲିଆଙ୍କ କଥା ନ ମାନ ଏ ସମ୍ବାଦ ଶୁଣି ପରେ ଯଥାସମ୍ଭବ ସାହାଯ୍ୟକଲେ ।

କୁହାଯାଇଛି ମୃତ୍ୟୁ ପୂର୍ବରୁ ଯଦୁମଣି ଦାରିଦ୍ର୍ୟ ନିରାକରଣ ଲାଗି ନରସିଂହପୁର ଯାଇଥିଲେ । ପୂର୍ବ ବର୍ଣ୍ଣିତ ପଣ୍ଡିତଙ୍କ ଚକ୍ରାନ୍ତରେ ରାଜା କିମ୍ବା ରାଣୀ ସେ ସମ୍ବାଦ ମଧ୍ୟ ପାଇପାରି ନ ଥିଲେ । ଗୋଟି ଦିନେ ଦୁଇ ଦିନ ଲୁଚାଇ ରଖାଗଲା । କିନ୍ତୁ ଶେଷ ଦିନ ଉପରେ ତାହା ଜଣେ ଷଡ଼ଯନ୍ତ୍ରର ଅଂଶୀଦାର ଦ୍ୱାରା ରଣଚଣ୍ଡ ରାଜାଙ୍କ ସମ୍ମୁଖରେ ଜଣାଇଦେବାରୁ ରାଜା ତାହା ରାଣୀଙ୍କୁ ଜଣାଇଦେଲେ । ରାଣୀ ପଣ୍ଡିତଙ୍କ ଉପରେ କୁପିତ ହେଲେ ହେଁ ରାଜା ତାଙ୍କୁ ଅତ୍ୟନ୍ତ ସମାଦର କରୁଥିବାରୁ କିଛି କରିପାରିଲେ ନାହିଁ । କିନ୍ତୁ ତାଙ୍କର ବିଶ୍ୱସ୍ତ ଭୃତ୍ୟ ବାବୁ ମତ୍ତଗଜ ସିଂହଙ୍କୁ ୧୦୧ ଟଙ୍କା ଦେଇ ନୂଆଗଡ଼ ଇଟାମାଟି ପଠାଇଦେଲେ ।

ଯାହାହେଉ ସେହି ପର୍ଯ୍ୟାପ୍ତ ମୁଦ୍ରାରେ ତାଙ୍କର ଶୁଦ୍ଧିକ୍ରିୟା ଅତ୍ୟନ୍ତ ସନ୍ତୋଷଜନକ ଭାବରେ ହୋଇଗଲା ।

ଜାତିର ଏକ ମହାପ୍ରଦୀପ ଯେ ସେହି ଶ୍ରୀଗୁଣ୍ଡିଚା ଦିବସରେ ଲିଭି-ଯାଇଥିଲା, ଏବେ ମଧ୍ୟ ସେ ଦିନର ସ୍ମୃତି ଜାତୀୟ ଜନତା ଉପଲବ୍ଧି କରିପାରି ନାହାନ୍ତି । ଆଜି ବର୍ଷେ ଗଲେ ସେହି ତିଥିର ଶତବାର୍ଷିକୀ ପଡ଼ୁଅଛି । ଜନଶ୍ରୁତି, କିମ୍ବଦନ୍ତୀ, ମାଦଳାପାଞ୍ଜି ଇତ୍ୟାଦି ଓଡ଼ିଆ ଐତିହାସିକ ସ୍ୱୀକାର ତ କରୁନାହାନ୍ତି । ତମ୍ବାପଟ୍ଟା ଏହି ସମ୍ପର୍କରେ ନାହିଁ । ଏହି ହତଭାଗ୍ୟ ଦେଶପ୍ରତି କି ଅଭିଶାପ ଯେ ଐତିହାସିକମାନେ ଶିଳା-ଲିପି, ତମ୍ବାପଟ୍ଟା ଯାହା ଓଡ଼ିଶାରୁ ବାହାର କରୁଛନ୍ତି, ତାହା ଓଡ଼ିଶାର ଗୌରବଜନକ ଜଣାଗଲେ, କୃତ୍ରିମ ଭାବରେ କରାଯାଇଛି ବୋଲି ସ୍ଥଳବିଶେଷରେ ରାୟ ଦେଉଛନ୍ତି । ଏପରି କଠୋର ସିଦ୍ଧାନ୍ତମାନଙ୍କ ଯୁଗରେ ଶୂଦ୍ର ଯଦୁମଣିଙ୍କର ଶତବାର୍ଷିକୀ କିଏ ବା ପାଳିବ ? କିଏ ବା ଜାଣିବ ? ଅନଙ୍ଗଭୀମ ଦେବ, ନରସିଂହ ଦେବ, ମୁକୁନ୍ଦ ଦେବ ଓଡ଼ିଆ ନୁହନ୍ତି ବୋଲି ଯେତେବେଳେ ପ୍ରମାଣ ହେଉଛି, ବଢ଼େଇ ଯଦୁମଣି ମହାପାତ୍ରଙ୍କ ସ୍ମୃତିପୂଜା କିପରି ବା ଆଶା କରିବା ? ତେବେ ଓଡ଼ିଆ ଜାତିକୁ ଲୋପ କରିବାକୁ ଯେଉଁମାନେ ବିରାଟ ତାର୍କିକ ଓ ସତ୍ୟବନ୍ତ ଭାବେ ମସ୍ତକ ଉଠାଇ ବାହାରିଛନ୍ତି, ସ୍ୱର୍ଗରୁ ଯଦୁମଣି ତାଙ୍କର ନିହଣ ବାରିସି ଧରି ସେ ମସ୍ତକକୁ ଟିକିଏ ମାଠି ଦିଅନ୍ତୁ । ନ ହେଲେ ଓଡ଼ିଆ ଜାତି ଆଜି ପ୍ରତ୍ୟକ୍ଷେ ବି ପୃଷ୍ଠରେ ଲୁଚିପିବା ଅସମ୍ଭବ ନୁହେଁ । କାରଣ ଏ ଦେଶରେ ରଜାଏ ବିଦେଶୀ, ଜମିଦାର ବିଦେଶୀ, ମନ୍ତ୍ରୀ, ପଣ୍ଡିତ, ଶିଳ୍ପପତି, ଯାହାର ଧନ ହେଲା, ମାନ ବଢ଼ିଲା ସେ ଯେପରି ବିଦେଶୀ ବୋଲି ନିଜର ପରିଚୟ ପତ୍ର ଛପାଉଛନ୍ତି, ସେପରି ମଧ୍ୟ ଅତୀତର ମହାନ ଜାତି ନିର୍ମାତାଙ୍କୁ ବିଦେଶୀ ବୋଲି ପ୍ରମାଣ କରିବାକୁ କୁଚକ୍ରାନ୍ତକାରୀମାନେ ଜୀବନମୂର୍ଚ୍ଛା ଲଢ଼ୁଛନ୍ତି । କିସ ପୁଣି ଦେଖା ନ ଯାଏ ! ହାୟରେ ହତଭାଗ୍ୟ ଅବଜ୍ଞାତ ସାହସିକ ବୀରେନ୍ଦ୍ର କେଶରୀ ଜାତି !



# ଯଦୁମଣି ମହାପାତ୍ରଙ୍କ ବଂଶଲତା

ରଘୁନାଥ ମହାପାତ୍ର (ଆଠଗଡ଼, ମଥୁରା, ଜନ୍ମ ଓ ଉଦଣୀ)
|
ମୁକୁନ୍ଦ ମହାପାତ୍ର (ଆଠଗଡ଼ ଗଡ଼, ପରେ ନୂଆଗଡ଼ ଇଟାମାଟି)
|
ଯଦୁମଣି ମହାପାତ୍ର (ନୂଆଗଡ଼, ଇଟାମାଟି)
ପତ୍ନୀ—ଖଞ୍ଜନା (ଦଶପଲ୍ଲା ଗଡ଼ରେ ଜନ୍ମ)

ରମା (କନ୍ୟା)(ଖଣ୍ଡପଡ଼ା ଗଡ଼ ଶାଶୁଘର) | କପିଧ୍ୱଜ (ମୃତ)
|
ତାଳଧ୍ୱଜ (ପୋଷ୍ୟପୁତ୍ର)
ପତ୍ନୀ—କମଳା (ନୟାଗଡ଼ ଗଡ଼ରେ ଜନ୍ମ)
|
ବାଳକୃଷ୍ଣ
ପତ୍ନୀ—ଗୁଲୁ (ଓଡ଼ଗାଁରେ ଜନ୍ମ)ପ୍ରଥମା ସ୍ତ୍ରୀ ଦାମୋଦରପୁରର 'ବୈଦେହୀ' ମୃତ।
|
ଦାଶରଥି (ଜନ୍ମ ୧୯୧୭) | ଚନ୍ଦ୍ରଭାନୁ | ଜ୍ଞଦେବଭାନୁ
(ଏମାନେ ସମସ୍ତେ ଜୀବିତ ଅଛନ୍ତି।

| | |
|---|---|
| ଯଦୁମଣି ଜନ୍ମ | ୧୭୮୧ |
| ଖଞ୍ଜନା ଜନ୍ମ | ୧୭୮୯ |
| ବିବାହ | ୧୮୦୧ |
| ରମାର ଜନ୍ମ | ୧୮୧୪ |
| ରମାର ବିବାହ | ୧୮୩୦ |
| ତାଳଧ୍ୱଜର ଜନ୍ମ | ୧୮୩୨ |
| ତାଳଧ୍ୱଜର ବିବାହ | ୧୮୫୨ |
| ବାଳକୃଷ୍ଣର ଜନ୍ମ | ୧୮୭୪ (ବୟସ ୫୩ ଯାଏ ସନ୍ତାନ ନ ଥିଲେ ) |



# ଧ୍ୱାସଂଶାନ୍ତରସ ଶତକ

ଜୀବନକୁ ସରସ ଓ ସୁନ୍ଦର କରିବା ଲାଗି ସବୁଠୁ ପ୍ରୟୋଜନୀୟ ହାସ୍ୟ ଓ ହାସ୍ୟରସ । ବଚନରେ ହେଉ ବା ଭଙ୍ଗୀରେ ହେଉ, ଯେତେ ହାସ୍ୟ ସୃଷ୍ଟି ହୋଇ ପାରେ—ବ୍ୟକ୍ତିଗତ ଜୀବନ ହେଉ ବା ସମଷ୍ଟିଗତ ସମାଜ ହେଉ, ତାହାର ସେତେ ମଙ୍ଗଳ । ହାସ୍ୟରସର ପରିବେଷଣ ଯେନ ଏପରି ହୁଏ ଯେ ମହାଅନର୍ଥ ମଧ୍ୟ ଅନେକ ସମୟରେ ଭାଙ୍ଗି ଯାଏ ।

ହାସ୍ୟରସିକ ଏବଂ ହାସ୍ୟରସ ଯେଉଁ ଜାତିରେ, ଯେଉଁ ସମାଜରେ ଯଥା ସମ୍ଭବ ଦେଖାଯାନ୍ତି, ସେ ସମାଜ, ସେ ଜାତି ସେତେ ସୁସ୍ଥ ବୋଲି ମନେ କରାଯାଏ । ଏହା ସତ୍ୟ ଯେ ଦାରିଦ୍ର୍ୟର କଠୋର ପରୀକ୍ଷାବେଳେ, ଅତ୍ୟାଚାରର ନିବିଡ଼ ଦୌରାତ୍ମ୍ୟ ମଧ୍ୟରେ ହାସ୍ୟରସ ସେ ଯାତନାକୁ ଅତି ମାତ୍ରାରେ ଭୁଲାଇ ଦେଇଥାଏ ।

ହାସ୍ୟରସର ବିଚିତ୍ର ଭଙ୍ଗୀ ଆମ ସମସ୍ତଙ୍କ ମଧ୍ୟରେ ଊଣା ଅଧିକେ ସମୟ ସମୟରେ ଦେଖାଯାଏ । ସେସବୁର ସ୍ମୃତି ବା ଲିଖିତ ଲିପି ରହେ ନାହିଁ ବା ରହୁ ନାହିଁ । କିନ୍ତୁ ଜଣ ଜଣକର ହାସ୍ୟକଥା ବା ହାସ୍ୟରସ ପରମ୍ପରା ଧରି ଦେଶ ଉପରେ ପ୍ରଭାବ ବିସ୍ତାର କରିଥାଏ । ଆମର ଯଦୁମଣି ମହାପାତ୍ର ଏବେ ମଧ୍ୟ ତାଙ୍କର ପ୍ରଗାଢ଼ ପାଣ୍ଡିତ୍ୟର ପରାକାଷ୍ଠା ସତ୍ତ୍ୱେ କେବଳ ଜଣେ ହାସ୍ୟରସିକ ବୋଲି ଓଡ଼ିଶାର ଗ୍ରାମେ ଗ୍ରାମେ, ଘରେ ଘରେ ପରିଚିତ ।

ଉତ୍କଳର ଯେଉଁ ଗାଁକୁ ଯାଅ, ଯେଉଁ ଗୃହକୁ ଯାଅ, ସେଠି ପ୍ରସଙ୍ଗକ୍ରମେ ନିଶ୍ଚୟ ଯଦୁମଣି ମହାପାତ୍ରଙ୍କ ହସ କଥା ଲୋକେ ପକାଇବେ ଏବଂ ସେଠାରେ ନିଶ୍ଚୟ ହାସ୍ୟରୋଳ ଉଠିବ । ଏପରି ଭାବରେ ଏ ଦେଶର ମାନବ-ଜୀବନ ଉପରେ ତାଙ୍କ ପରି ଆଉ କିଏ ଯେ ପ୍ରଭାବ ବିସ୍ତାର କରି ପାରିଛନ୍ତି, ସେପରି ଦ୍ୱିତୀୟ ଜଣଙ୍କ ନାମ ଗଣନାରେ ଆସେ ନାହିଁ ।

ତାଙ୍କ ପରବର୍ତ୍ତୀ ହାସ୍ୟରସିକଗଣ ପୌର ସମାଜରେ ମୁଷ୍ଟିମେୟ ଶିକ୍ଷିତ ଗୋଷ୍ଠୀରେ ସୀମାବଦ୍ଧ ଭାବରେ ପରିଚିତ ଥାଇପାରନ୍ତି । କିନ୍ତୁ ଯଦୁମଣିଙ୍କ ପରି ଓଡ଼ିଶାର କି ପୌର କି ଜାନପଦ କି ଗ୍ରାମ୍ୟ—ସମଗ୍ର ମାନବଗୋଷ୍ଠୀ ମଧ୍ୟରେ ହାସ୍ୟରସ ଲାଗି ପରମପ୍ରିୟ କେହି ହୋଇଥିବାର ଦୃଷ୍ଟିଗୋଚର ହୁଏ ନାହିଁ ।

ବିଶେଷରେ ହାସ୍ୟରସ ମାଧ୍ୟମରେ ସେ ସେକାଳର ନିଷ୍ଠୁର ଶାସକ-ମାନଙ୍କୁ ଶିକ୍ଷାଦେଇ ଯେପରି ବର୍ତ୍ତିଯାଇ ପାରୁଥିଲେ, ସେପରି ସାହସିକତା, ସେପରି ପୁରୁଷକାର ଆଉ ଏ ଦେଶରେ କିଏ ଦେଖାଇଛି ?

ଯଦୁମଣି ମହାପାତ୍ର ଜୀବଦ୍ଦଶାରେ ସଂସାରରେ ୮୫ ବର୍ଷ ବଞ୍ଚିରହି ନାନା ଦୁର୍ବିପାକ ଭୋଗି କେବେ କାହାର ଭୃତ୍ୟ ହୋଇନାହାନ୍ତି ।

ରାଜା କହିଲେ 'ତୋ'ଟାକୁ ଯିବା' । ସେ ତତ୍‌କ୍ଷଣାତ୍ କହିଛନ୍ତି, 'ତୋ ରାଣୀ ସାରିଆସେ' ।

ତାଙ୍କୁ ଗୃହକରରେ ରଖିବାକୁ ବୌଦ୍ଧରାଜା କହିବାରୁ ସେ ଏପରି ଭାବରେ ଜବାବ ଦେଲେ ହାସ୍ୟରସ ମାଧ୍ୟମରେ ଯେ, ଯାର ଅର୍ଥ ହେଲା—'ତୁମେ କୁକୁର କେଉଁଠି ହେଲେ, ମୁଁ କୁକୁର ହେବି ।'

ସେହି ବଙ୍କ ମହାଜନ ଯେପରି ଚରମ ସ୍ୱାଧୀନତା ତାଙ୍କ ଜୀବନ କାଳରେ ଭୋଗି ଜନସମାଜକୁ ଏକ ଆଦର୍ଶ ଦେଖାଇ ଯାଇଛନ୍ତି, ସେପରି ସାହସିକ ମନ ଯେ ଏ ଦେଶରେ ନାହିଁ, ତା କେହି କହୁନ । କିନ୍ତୁ ଜୀବନକୁ କଷ୍ଟେ ମଷ୍ଟେ ରକ୍ଷାକରିବା ଲାଗି ଆଜି ଚରମ ଦୁର୍ବଳତା ଆମକୁ ପଙ୍ଗୁ କରିବାକୁ ବସିଲାଣି ।

ଆମରି ନିଜ ଜାତିର, ନିଜ ଗାଆଁର ଲୋକେ ଆମକୁ ଶାସନ କରୁଛନ୍ତି । ଆମର ଓ୍ୱାଜିବ୍ ଦାବୀ ଆମେ କହିବାକୁ ଏତେ ତ୍ରସ୍ତ ଯେ, ଆମେ ଏବେ ଜୀବନ୍ମୃତ ଅବସ୍ଥାରେ ଏ ଦେଶରେ ରହିଚୁଁ । 'ଦିଲ୍ଲୀ ଦରବାର ଯେପରି ଅନ୍ୟ କାହାର' ଏପରି ମନେକରି ମହାଭାରତୀୟ ଚିନ୍ତାଧାରାରେ ଭଗ୍ନାଙ୍କୁଷିର୍ଭାଗବତା ଭବନ୍ତୁ ବା ବୃଦ୍ଧାବେଶ୍ୟା ତପସ୍ୱିନୀ ରୀତିରୁ ଗାଇ ଗାଇ ଜନସମାଜକୁ ଆମେ କରୁଣ ଉଦ୍‌ବୋଧନ ଦେଇ ଚାଲିଚୁ ।

ହାସ୍ୟରସିକ ଯଦୁମଣିଙ୍କ ଲାଗି ଏହାପରେ ବିଶାଳ ବିଶାଳ ଗ୍ରନ୍ଥ ରଚିତ ହେଉ ଏବଂ ଏହି ଗ୍ରନ୍ଥ ତାର ପଥନିର୍ଦ୍ଦେଶକ ମାତ୍ର ବୋଲି ସମସ୍ତେ ଭାବନ୍ତୁ ।

ଯଦୁମଣିଙ୍କ ହାସ୍ୟରସ ଏବେ ମଧ୍ୟ ଆମକୁ ସତେଜ କରି ରଖିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଆମେ ସନ୍ତାପିତ ହେଲେ, ଦୁଃଖରେ ଭାଙ୍ଗିପଡ଼ିଲେ, ଅପମାନରେ ସଢ଼ିଗଲେ, ସେହି ମନସ୍ୱୀ ମହାମନା ବଙ୍କଜନର ସାହସିକ ଉକ୍ତି ସ୍ମରଣ କରିଥାଉ । ସେ କିପରି ଢେଙ୍କାନାଳ ରାଜାଙ୍କଠାରୁ ଅପମାନିତ ହୋଇ ନିଷ୍ଠୁର ଜବାବ ଦେଇଥିଲେ, ସେ କିପରି ଡୋଲି ଘୋଡ଼ାଇ ହୋଇ ନୂଆଗଡ଼ ରାଜାଙ୍କ କୋପର ପ୍ରତିକାର କରିଥିଲେ, ଏସବୁ ଗୋଟି ଗୋଟି ଆମ ମନ ଉପରେ ବିରାଜି ଉଠନ୍ତି ।

ଏହି ଶହେଟି କାହାଣୀ ଛଡ଼ା ତାଙ୍କର ଆଉ ଶହ ଶହ ଥାଇପାରେ । ଏହାପରେ ସେସବୁ ସଂଗୃହୀତ ହେଉ ।

# ହାସ୍ୟ ଗୀତିରସ ଶତକ

## ୧—ଚନ୍ଦ୍ରିକାକୁ ପ୍ରହାର

ଯଦୁମଣି ଦଶପଲ୍ଲ ଗଡ଼ କୁଞ୍ଜବନରେ ବିବାହ କରିସାରି ମଧୁଶଯ୍ୟା ଘରେ ବାର ବର୍ଷର ପିଲାକନ୍ୟା ସହିତ ରାତ୍ର ଅତିବାହିତ କରିବାରୁ ଭୀଷଣ ନିନ୍ଦା ସାଇ ସାଇ ବ୍ୟାପିଗଲା । କୋଡ଼ିଏ ବର୍ଷ ବୟସର ଯୁବକ କପର୍ଦ୍ଦକ ନ ଥାଇ ଲଜ୍ଜା ସହି ନ ପାରି ଦେଶାନ୍ତରୀ ହୋଇ ସର୍ବପ୍ରଥମେ ନୀଳାଚଳରେ ପହଞ୍ଚିଗଲେ । ମାଗି ଜାଣନ୍ତି ନାହିଁ ।

ଭଞ୍ଜଙ୍କ 'ଅବନା ରସ ତରଙ୍ଗ' ସ୍ନାନବେଦୀ ଡାହାଣରେ ବସି ଉପାସରେ ରହି ଗାଉଥାନ୍ତି । ପାଞ୍ଚ ହାତ ଉଞ୍ଚର ପଣ୍ଡା ଜଣେ 'ଦାସସୁଆର' ଡାକିଲେ—'ଏ ପିଲା, ଏଆଡ଼େ ଆ ।'

ଯଦୁମଣି ପଛେ ପଛେ ଯିବାରୁ ସୁଆର ଖୁସି ହେଲା । ଅଭଡ଼ା ଫାଳେ, ଗୃହ ତରକାରିରୁ ଗୋଳେ ଗୋଳେ ଖାଇବାକୁ ଦେଇ କହିଲା—

ବେଇପ ! କହିଲୁ କେତେବେଳ ହେଲା ଉପାସିଆ ଅଛୁ ? ଯଦୁମଣି କହିଲେ—ନା ନା, ଉପାସ ତ ନାହିଁ !

ପଣ୍ଡା କହିଲେ—ଆମକୁ ତୁ ଠକଦେବୁ ? ଆରେ, ଆମେ ପଗ୍ଡ଼ି ଚଢ଼େଇ ପେଟବଥା ଜାଣିବା ଲୋକ ! ବାଆନ କୋଟି ଭଣ୍ଡାରମାଲକଙ୍କ ଆମେ ହେଲୁଁ ପାଚକ । ଆଚ୍ଛା, ଘର କେଉଁଠି କହିଲୁ ?

ଫାର୍କି ଦେଇ ଯଦୁମଣି କହିଲେ—'ବାର୍କି' । ତା ଶୁଣି ପଣ୍ଡା ରହସ୍ୟ କରି କହିଲେ—ଆରେ କଛୁ ବଙ୍କା କାମ କଲୁ କି ବୋଇପ ବୋପା ଧକ୍କା ଦେଇ ତଡ଼ି-ଦେଇଛି ? କୋଉଠି ଅଛୁ ?

ଯଦୁମଣି କହିଲେ—'ଆଜ୍ଞା ! ମତେ ତଡ଼ିଦେବ କିଏ କାହିଁ ? ପରମେଶ୍ୱରଙ୍କୁ ହଜାର ହଜାର ଯାତ୍ରୀ ଦର୍ଶନ କରିବାକୁ ଆସିଛନ୍ତି । ସେ ସମସ୍ତେ କଣ ଘରୁ ତଡ଼ା ଖାଇଛନ୍ତି ?

କଥାଭାଷାରୁ ପଣ୍ଡା ଜାଣିପାରିଲେ ଟୋକାଟା ମଫସଲିଆ ହେଲେ କ'ଣ ହେବ, ଅତି ଚତୁର । ଭାବିଲେ—ଆଶ୍ରା ଦେଇ ରଖିନେବି ।

ପଣ୍ଡାର ତିନି ଭାର୍ଯ୍ୟା ମରି ଏ ବୟସରେ ପୁଣି ସେ ଚତୁର୍ଥ ଭାର୍ଯ୍ୟା ଆଣିଛନ୍ତି । ଟୋକାଟା ବଡ଼ ଛନକା । ବାର ଲୋକର ଦୃଷ୍ଟି ପଡ଼ୁଛି ତାଆଠି । ସାଇ ଟୋକାଏ ଖେଦିଛନ୍ତି । ଏ ମଫସଲ ଟୋକାଟା ଘରେ ଆଶ୍ରାକରି ରହିଗଲେ ନିଶ୍ଚୟ ଭଲ ହେବ ସ୍ଥିରକରି ପଣ୍ଡାଏ ଯଦୁମଣିକୁ ସାଙ୍ଗରେ ନେଇ ଘରକୁ ଗଲେ ।

ଦାଣ୍ଡ ପିଣ୍ଡାରେ ତାଙ୍କୁ ବସାଇ ଦେଇ ଘର ଭିତରକୁ ଯାଇ କନ୍ୟା ମାଇପକୁ ଧମକ ଚମକ ଦେଲେ—

ଦେଖେ, ଜଣକୁ ଏବେ ଜଗୁଆଳୀ ରଖିଲି । ଗୋଡ଼େ ଗୋଡ଼େ ସେ ଜଗିବ । ଜଟିଳିଆ ଚଳିବୁ । ଟିକିଏ ବେ ଆଦବ କାମ ଦେଖିଲେ ଢୋଡ଼ା କୋରଡ଼ାରେ ମୋ ହାତ ଆଉ ତୋ ପିଠି ସାଙ୍ଗ ହୋଇପିବେ ।

ଯଦୁମଣିଙ୍କୁ ରଖାଇ ପଣ୍ଡା ପୁଣି ଠାକୁରମାଣ୍ଡ କରିବାକୁ ଚାଲିଗଲେ । ଦିନ ଦୁଇପହରେ ମୁଠେ ଯଦୁମଣି ଖାଇଥିଲେ । ସଞ୍ଜ ହେଲା । ଭାବୁଥାନ୍ତି—ଏ ଟୋକା ନିଶ୍ଚୟ ମୁଠେ ଦେବକୁ ତାଙ୍କୁ ଖାଇବାକୁ ଦେବ । ସେ ଚହଟ ଚକ୍କଣ ଗୋଟିଏ । ଗୃହରେ ତାର ଲୁଗା ଚେହ୍ନ ନ ଥାଏ । ଗୋଡ଼ବଳା କେତେ ଝୁମୁରୁ ଝୁମୁରୁ କରୁଥାଏ । କେତେ ଆଡ଼ିଠାର ମାରୁଥାଏ । ଚାର ବାଟିଲି, କାଟିଲି, ରାନ୍ଧିଲି, ଘପ ଲଗେଇଲା । ପିଣ୍ଡାରେ ବସି ଅଙ୍ଗପତି ଭାବରେ ଚଉରସ ଭୋଜନ କଲା । ସଞ୍ଜବତୀ ଲଗାଇବାକୁ

ଆସି ରାଣୀ ବ୍ରାହ୍ମଣୀଟିଏ ତାକୁ ଚନ୍ଦ୍ରକା ବୋଲି ଡାକିଥିଲା । ତେଣୁ ତା ନାଁଟି ଚନ୍ଦ୍ରକା ।

ଯଦୁମଣି ତାକୁ ଅପଲକରେ ଦେଖୁଥାନ୍ତି । ଭାବୁଥାନ୍ତି, ପଣ୍ଡା ଘର ତ, ଖାଇସାର ମୁଠାଏ କିଶ୍ଚୟ ଦେବ । ତା'ପରେ ସୁଖ ଦୁଃଖ ଟିକିଏ କିଶ୍ଚୟ ହେବ । ଏଣେ ପେଟ ପୋଡ଼ୁକି, ତେଣେ ହୃଦୟ ପୋଡ଼ରେ ସେ ଜଳିଯାଉଥାନ୍ତି । ବିବେକ ଶାସନ କରୁଥାଏ । କ'ଣ କରିବେ ? ଶୋକରେ କଲବଲ ହୋଇ ଶେଷକୁ ଶୋଇପଡ଼ିଲେ ।

ସେ ଟୋକୀ ଟଳିଲା ନାହିଁ । ଯଦୁମଣି ରାଗରେ ଅଥୟ । କ'ଣ କରିବେ ? ଉଠୁଥାନ୍ତି, ବସୁଥାନ୍ତି, ଶେଷକୁ ରାଗରେ ଅଜ୍ଞାନ ହୋଇ କଜେ ରହିଥିବା ଦାଣ୍ଡ ବଖରାଟିକୁ କିଳିଣିରେ କିଳିଦେଲେ । ତୁମିହୋଇ ନାନା ଚିନ୍ତାରେ ଅଧୀର ହୋଇ ପଡ଼ିରହିଲେ । ରାତ ଅର୍ଦ୍ଧଠାଇଁ ପଣ୍ଡା ଆସି ଡାକ ଛାଡ଼ିଲେ । ଯଦୁମଣି ଦୁଆର ଖୋଲିଲେ ନାହିଁ । ଦୁଆରେ ଭୀଷଣ ଆଘାତ କରିବାରୁ ଆଖି ମଳି ମଳି ଉଠିଲେ । କହିଲେ— କିଏ ? କିଏସେ ମ ?

ବାହାରୁ ଶୁଭିଲା—'ଆରେ, ଘରବାଲା । କବାଟ ଫିଟା । କେଇପ ଘରବାଲାକୁ ମଧ୍ୟ ଜଗିବୁ ନାଁ କ'ଣ ରେ ?

ଯଦୁମଣି କହିଲେ—'ପଣ୍ଡାଏ ! ଦୁଆର ଫିଟେଇ ଫିଟେଇ ମୁଁ ହରକତ ହୋଇଗଲିଣି । ଏ ଭିତରେ ପାଞ୍ଚ ସାତ ଜଣ ଗଲେଣି । ସମସ୍ତେ କହନ୍ତି, ଆମେ ଘରବାଲା । ହଉ ରେ ବାବୁ, ଯାଅ । ମୁଁ କି ଜାଣେ ଏ ଘର ଏବେ କେତେଜଣଙ୍କର । ହଉ ଆଜ୍ଞା, ଆସିବା ହେଉ—ଏହା କହି କବାଟ ଫିଟେଇଦେଲେ । ପଣ୍ଡାଏ ଯଦୁମଣିଙ୍କ ହାତରେ କୁଡ଼ୁଆ ପ୍ରସାଦ ଧରେଇ ଦେଇ ବୀର ମୂର୍ତ୍ତିରେ ଘରକୁ ପଶିଗଲେ ଓ ଧମକ ଚମକ ଆରମ୍ଭ କରି ସେ କିଶୋରୀ ଯୁବତୀଟିକୁ ସତକୁ ସତ ଘୋଡ଼ା କୋରଡ଼ାରେ ପାହାର ଲଗେଇଲେ ।

ତେଣେ ମାଡ଼ ଚାଲିଛି, ଏଣେ ଯଦୁମଣି କହିଲେ—କେମିତି ମଜା ରେ ଟୋକୀ ?

ଭିତର ଶିକୁଳି ଦେଇ ତରବରରେ ଖଡ଼ି ଗୋଟାକରେ ମାଟିଲିପା ବାଡ଼ରେ ଲେଖିଦେଇସାରି ପୁଣି ଶିକୁଳି ଫିଟେଇ ସେଠାରୁ ଭାଗି ପଳାଇଲେ । କିଛି ଦୂରଯାଏ ସେ ଟୋକୀର କ୍ରନ୍ଦନଧ୍ୱନି ତାଙ୍କୁ ଶୁଭୁଥାଏ । ସେ ଲେଖିଥିଲେ—

**ଅପାଂଶୁଳା ଜଣେ ପାଂଶୁଳାନ୍ତୁ ପଣେ**
**ପଦ୍ମଜ-ପ୍ରବୃତ୍ତି ଧରାରେ**
**ହଂସକର ସ୍ୱନେ ହାସେ ଭାଷେ ସେ କ**
**ନ୍ନଘନେ ନ ଦେଲୁ ଧରା ରେ**
**ଚନ୍ଦ୍ରିକା**
**ଚକୋର-ମାର ପଙ୍ଗୁ ହେଲି**
**ରାଗିଙ୍କୁ ଦାଗିବ ବାରୁପାରଗରେ**
**ମାରେ ମାରଦଶା ମେଣ୍ଟିଲି ।**

ଅର୍ଥାତ୍—ଏହି ସଂସାରରେ ସତୀରୁ ଜଣକୁ ଓ ଅସତୀରୁ ପଣେ ବିଧାତା ସୃଷ୍ଟି କରିଛନ୍ତି । ଆରେ ଚନ୍ଦ୍ରିକା ! ତୁ ଅସତୀ ନ ହୋଇଥିବୁ କାହିଁକି ? ପାଦ ନୂପୁର ଧ୍ୱନିରେ, ହସରେ, ମଧୁର କଥାରେ ନିକାଞ୍ଚନରେ ମୁଗ୍ଧକରି ଅସତୀର ସମସ୍ତ ଢଙ୍ଗ ଦେଖାଇ ମତେ ଧରା ନ ଦେଲୁ । ତୋ ଜ୍ୟୋତ୍ସ୍ନାପିପାସୀ ମୁଁ ଚକୋର କାମାର୍ତ୍ତ ହୋଇ ପୁଣି କ୍ଷୁଧାରେ ପଙ୍ଗୁ ହୋଇଗଲି । ଦେଖ, କୁପିତ ବ୍ୟକ୍ତିକୁ ଉତ୍ତେଜିତ ଘୋଡ଼ାକୁ ଶାସନ କରାଯାଉଥିବା ଯେଉଁ କୋରଡ଼ା ସେଥିରେ ମାଡ଼ ଖୁଆଇ ମୋର ଦୁଃଖ ମେଣ୍ଟାଇଲି । (୧୨୮୧)



ଅପାଂଶୁଳା—ସାଧ୍ୱୀ (ଅପାଂଶୁଳାନାଂ ଧୁରି କୀର୍ତ୍ତନୀୟା, 'ରଘୁ') ପାଂଶୁଳା—ଅସତୀ ।
ପଦ୍ମଜ—ବିଧାତା । ପ୍ରବୃତ୍ତି—ଇଚ୍ଛା (ବିଶ୍ୱସୃଜଃ ପ୍ରବୃତ୍ତିଃ, 'କୁମାର') ।
ହଂସକ—ଶବ୍ଦ କରୁଥିବା ପଦଭୂଷା ।
ନିଘନେ—ନିକାଞ୍ଚନରେ । ଚନ୍ଦ୍ରିକା—ନାମବିଶେଷ, ଜ୍ୟୋତ୍ସ୍ନା । ରାଗି—କୁପିତ ବ୍ୟକ୍ତି ।
ଦାଗିବ—ଉତ୍ତେଜାଇବ । ବାରୁ—ଘୋଡ଼ା । ପାରଗ—ଶାସନ । ମାରେ—ମାଡ଼ରେ ।
ମାର—କନ୍ଦର୍ପ । ଦଶା—ଦୁଃଖ ।

# ୨—ନିକିତି ତଉଲ

ନୂଆଗଡ଼ ରାଜା ବିନାୟକ ସିଂହ ମାନଧାତାଙ୍କୁ ଖଣ୍ଡପଡ଼ାର ରାଜା ନୃସିଂହ ମର୍ଦ୍ଦରାଜ ଭ୍ରମରବର ରାୟ ତାଙ୍କ ରାଜ୍ୟର ରାଜଗିର ପର୍ବତଖୋଲରେ ଏକ ଭୋଜକୁ ଆମନ୍ତ୍ରଣ କରିଥିଲେ । ଦୁଇ ରାଜା ତ ଦୁଇ ଭାଇ ପରି । କିନ୍ତୁ ଦୁହିଁଙ୍କ ଦରବାରୀମାନେ ଦୁହିଁଙ୍କୁ ଉଣା ଅଧିକ କରି ଦେଖନ୍ତି । ନୂଆଗଡ଼ ବଡ଼ରାଜ୍ୟ ହେଲେହେଁ ଭାଇ ହିସାବରେ ଖଣ୍ଡପଡ଼ା ତାଙ୍କୁ ସମାନ କରି ଦେଖନ୍ତି । ବିରାଟ ଭୋଜର ଆୟୋଜନରେ ନାଚ, ଗୀତ, କୀର୍ତ୍ତନ, ପାଇକଖେଳ ଆଦି ସବୁ ଯୋଜନା ଥାଏ । ଦରବାରିଆଙ୍କ ଆଖି ମୁଣ୍ଡ ଉପରେ ।

ଖଣ୍ଡପଡ଼ା ମର୍ଦ୍ଦରାଜେ ହାତୀରେ ବସି ଘାଟୀ ପାର ହେଉଥାନ୍ତି । ସାଥିରେ ହେ ଶହ ଗୁମୁଆ ପଣ୍ଡିତ, ଖୁଣ୍ଟିଆ, ଦଳବେହେରା, ପାଖଲୋକ ଥାନ୍ତି । ଉଠାଣି ରାସ୍ତାଟିରେ ହାତୀ ଝୁଲି ଚାଲିଥାଏ । ତାର ଠିକ୍ ତଳକୁ ଏକ ଦଣ୍ଡା ରାସ୍ତାରେ ମାନଧାତା ତାଙ୍କର ହେ ଶହ ପରିଜନ ସହିତ ସୁରମ୍ୟ ଏକ ତାମଯାନରେ ଚଢ଼ି ରାଜବିଧିରେ ଯାଉଥାନ୍ତି । ହସରସରେ ନିକାଞ୍ଚନ ବଣ ହସି ଉଠୁଥାଏ ।

ଏତିକିବେଳେ ଖଣ୍ଡପଡ଼ାର ପଣ୍ଡିତ ଜଣେ ତାଙ୍କ ରାଜା ମର୍ଦ୍ଦରାଜଙ୍କ ଗୁମୁଁରେ ବଢ଼େଇ କରି ମାନଧାତାଙ୍କୁ ନ୍ୟୂନ ଦୃଷ୍ଟିରେ ଦେଖି ଗାଇଦେଲେ—

**'ସମୁଚ୍ଚମୁଚ୍ଚୈ ପ୍ରବଦନ୍ତି ସାଧବଃ**
**ଏତୋଽପି ସ୍ୱର୍ଗୋପିଚ ପାରିକାତକଃ' ।**

ଏହାର ଅର୍ଥ ହେଲା—'ଅତି ଦୃଢ଼ତାର ସହିତ ମହତ୍ ବ୍ୟକ୍ତିମାନେ କହୁଥାନ୍ତି, ଅତି ଉଚ୍ଚରୁ ଉଚ୍ଚତମ ହେଉଛି ସ୍ୱର୍ଗ । ଐରାବତ ବଂଶର ସୁଉଚ୍ଚ ଏକ ହସ୍ତୀ ପାରିଜାତକ ମଧ୍ୟ ଏହି ସ୍ୱର୍ଗ ପରି ।'

ଖଣ୍ଡପଡ଼ା ରାଜାଙ୍କର ଦନ୍ତାହାତୀ ନାଁ ପାରିଜାତକ ଥିଲା । ପଣ୍ଡିତଙ୍କ କଥାର ଉଦ୍ଦେଶ୍ୟ 'ତୁମଠୁ ଆମ ରାଜା ଦେଖ କେତେ ଉଚ୍ଚରେ ଏବଂ କେତେ ମହାନ୍ ଅଟନ୍ତି । ଆମେ କେତେ ବଡ଼, ତୁମେ କେତେ ସାନ ?'

ମାନଧାତାଙ୍କ ଦଳ ଏ କଥା ଶୁଣି ଚମକି ପଡ଼ିଲେ । ଯଦୁମଣି ସେ ଦଳରେ ଥାନ୍ତି । ପ୍ରତ୍ୟୁତ୍ପନ୍ନମତି ଯଦୁମଣି ଟିକିଏ ଖଙ୍କାରି ଦେଇ ମଧୁର ଧ୍ୱନିରେ ଗାଇଦେଲେ । 'ବୋଇଲେ—

ପାରିଜାତକ—ଐରାବତ ବଂଶୀୟ ଏକ ସମୁଚ୍ଚ ସ୍ୱନାମଧନ୍ୟ ହସ୍ତୀ ।

ନିକଟ ତଉଲ ଯାନ ବଡ଼ଙ୍କୁ
ଭାରୀ ଯେହୁ ସିଏ ହୁଏ ତଳକୁ ।’

ଏକଥା ଶୁଣି ଖଣ୍ଡପଡ଼ା ଦଳ ନିଜର ନ୍ୟୂନତା ବୁଝି ଲଜ୍ଜିତ ହେଲେ ଏବଂ ମଧ୍ୟର୍ଗଜଙ୍କ ହାଣ୍ଡି ଯଦୁମଣିଙ୍କ ନିକଟ ତଉଲ ଶୁଣି ତଳ ରାସ୍ତାକୁ ଖସିଆସିଲା । ଭାଇ ଭାଇ ମିଶିଗଲେ । ଏହା ଦେଖି ସମସ୍ତେ ଯଦୁମଣିଙ୍କୁ ଧନ୍ୟ ଧନ୍ୟ କଲେ । ପଣ୍ଡିତେ ମଧ୍ୟ ଆଶୀର୍ବାଦ କଲେ ।

## ୩—ସବୁ ରାଜାଙ୍କର ଆପଣାର ହୋଇ ନିଜ ଗାଁ ଠେକ

ଏହି ଘଟଣାର ବର୍ଷକ ପରେ ବିନାୟକ ସିଂହ ମାନଧାତା (ନୂଆଗଡ଼ ରାଜା) ରଣପୁର, ଦଶପଲ୍ଲା ଏବଂ ଖଣ୍ଡପଡ଼ା ରାଜ୍ୟର ରାଜାମାନଙ୍କୁ ଆମନ୍ତ୍ରଣ କଲେ । ନୂଆଗଡ଼ର ଓଡ଼ଗାଁ ଗ୍ରାମରେ, ଯେଉଁଠି ଉପେନ୍ଦ୍ର ଭଞ୍ଜ ପାଷାଣ ପ୍ରତିମା ରଘୁନାଥଙ୍କ ନିକଟରେ ରାମତାରକ ମନ୍ତ୍ର ଜପି ସିଦ୍ଧ ହୋଇଥିଲେ, ଯେଉଁ ମାଳୀସାହିର ରତି ମାଳ୍ୟାଣୀ ଯୋଗୁଁ ସେ ନେମା ଲାବଣ୍ୟବତୀଙ୍କୁ ମୂର୍ଖ ହୋଇ ମଧ୍ୟ ମଙ୍ଗଳକୃତ୍ୟ କରିପାରିଥିଲେ, ସେହି ପୁଣ୍ୟ ଭୂମିରେ ଏକ ମେଳନ ଉତ୍ସବର ଆୟୋଜନ ହେଉଥିଲା । ରାଜାମାନଙ୍କ ସହିତ ଆସିଥିବା ପରିଜନମାନେ ପ୍ରଥମ ତିନି ଦିନ ଭଞ୍ଜଙ୍କ କାବ୍ୟ ଚର୍ଚ୍ଚାରେ ଦିନ କଟାଇ ଶେଷ ଦିନ ନିଜ ନିଜ ରାଜାଙ୍କ ଠେକରେ କଥା ସବୁ କହି କଳିହ କରୁଥାନ୍ତି । ବିଦାୟ ଦିନ ଖୁସିବାସି ହେବାର କଥା । ଏ ଢଙ୍ଗ ଦେଖି ଚତୁର ମାନଧାତା ସମସ୍ତଙ୍କୁ ଏକତ୍ର କରି କହିଲେ — ଯଦୁମଣି ମୋର ସବୁ ଭାଇ ରାଜାଙ୍କ ଠସ ଧନ୍ଦି କବିତା ଗୋଟିଏ ଗୋଟିଏ ଗାଆନ୍ତୁ । ଫଳରେ ଭାଇରଜାମାନେ ତାଙ୍କୁ ନିଜର ସଭା କବି ବୋଲି ସ୍ୱୀକାର କରିନେବେ । ମାନଧାତାଙ୍କ ଇଚ୍ଛା, ଯଦୁମଣି ଏପରି ସମସ୍ତଙ୍କଠାରୁ ବହୁତ ବଦାନ୍ୟ ପାଇ ସୁଖୀ ହୁଅନ୍ତୁ । ଭାଇରଜାମାନେ ସମ୍ମତି ପ୍ରକାଶ କରିବାରୁ ଯଦୁମଣି ତାଙ୍କ ମାମୁଁଘରର ରଜା ରଣପୁରଙ୍କ ଦଳରେ ପଶି ତାଙ୍କ ଠେକ ରଖି କବିତା ଗାଇଲେ—

ପଲ୍ଲି ଦଶଖଣ୍ଡ ଖଣ୍ଡକ ପଡ଼ା
ପର ସମ କାହୁଁ ନୂତନ ଗଢ଼ା
ମଣିନାଗ ଦୁର୍ଗା ପାଦୁକ ବଢ଼ା
ନରେନ୍ଦ୍ର ଇନ୍ଦ୍ରରୁ ହୁଅନ୍ତି ବଡ଼ା ।

ପାଠାନ୍ତର—‘ଯେହୁ ହୁଏ ଭାରି ସେହି ତଳକୁ’; ‘ଭାରି ଯେହୁ ନଇଁପଡ଼େ ତଳକୁ’ ।
ଏପରି ଭିନ୍ନ ଭିନ୍ନ ଭାବରେ ଭିନ୍ନ ଭିନ୍ନ ସ୍ଥାନରୁ ଭିନ୍ନ ଭିନ୍ନ ମୁଖରୁ ଶୁଣାଯାଇଥାଏ ।

ଅର୍ଥ—ଦଶପଲ୍ଲା ତ ଗାଁ ଦଶ ଖଣ୍ଡ । ଖଣ୍ଡପଡ଼ା ତ ପଡ଼ା ଖଣ୍ଡେ । ନୂଆଗଡ଼ା ବୋଲି ନୂଆଗଡ଼ରୁ ଜଣାଯାଉଛି; କିନ୍ତୁ ମଣିନାଗ ଦୁର୍ଗାଙ୍କ ସେବକ ନରେନ୍ଦ୍ର ପଦବୀଧାରୀ ଯେ ରାଜା, ସେ ଇନ୍ଦ୍ରଙ୍କଠାରୁ ବଡ଼ ଅଟନ୍ତି । ତାଙ୍କ ସହିତ ଏମାନେ ସମାନ ହେବେ କେଉଁଠୁ ?

ତା' ଶୁଣି ରଣପୁର ରଜା ଏବଂ ତାଙ୍କ ଦଳ ହସି ହସି ଗଡ଼ିଗଲେ । ନରେନ୍ଦ୍ର ନିଜର ରୂପା ପାନବଟାଟି ସଙ୍ଗେ ସଙ୍ଗେ ଯଦୁମଣିଙ୍କୁ ପୁରସ୍କାର ସ୍ୱରୂପ ଦେଇଦେଲେ ।

ଦଶପଲ୍ଲା ରାଜା ଯଦୁମଣିଙ୍କ ଶ୍ୱଶୁର ଘରର ରାଜା । ତାଙ୍କ ଦଳରେ ଯଦୁମଣି ମିଶିବାବେଳେ ଅନ୍ୟମାନେ କାତର ହୋଇ ଅନାଇଥାନ୍ତି । ସେ ଗାଇଲେ:—

**ଯଶ ପରାକ୍ରମେ ଖଣ୍ଡକୁ ଚଣ୍ଡ**
**ନୂଆକୁ ନୃସିଂହ ରଣକୁ ଷଣ୍ଢ**
**ନୀଳ ଲୋହିତ ପାଶୁପତ କାଣ୍ଡ**
**ନିହିତ ଶ୍ରୀକରେ ଅତି ପ୍ରଚଣ୍ଡ ।**

ଅର୍ଥ—ଯଶ ପରାକ୍ରମରେ ଖଣ୍ଡପଡ଼ାକୁ ଅତି ପ୍ରଚଣ୍ଡ ଅଟନ୍ତି । ନୂଆଗଡ଼କୁ ନୃସିଂହ ପ୍ରାପ୍ତ । ରାଜାଙ୍କ ନାମ ମଧ୍ୟ ଥିଲା ନୃସିଂହ । ରଣପୁରକୁ ଏକାନ୍ତ ଅସଭ୍ୟ ବ୍ୟବହାର କରିପାରନ୍ତି ଜାତି ଗୁଣ ଘେନି । ଅର୍ଥାତ୍ ସେ ସୂର୍ଯ୍ୟବଂଶୀୟ ଥିବାରୁ ଏବଂ ରଣପୁର ତାଙ୍କଠୁ ଜାତିରେ ନ୍ୟୂନ ଥିବାରୁ ରଣପୁରରୁ କନ୍ୟା ଆଣନ୍ତି, କନ୍ୟା ଦିଅନ୍ତି ନାହିଁ । ତେଣୁ ଷଣ୍ଢ ଅଟନ୍ତି । ଭଞ୍ଜରାଜାଙ୍କ ଇଷ୍ଟ ଦେବତା ନୀଳକଣ୍ଠ ମହାଦେବଙ୍କ କରୁଣାରୁ ଅସ୍ତ୍ରଶସ୍ତ୍ରରେ ତାଙ୍କ ପରି ପ୍ରଚଣ୍ଡ ଶକ୍ତିଶାଳୀ ପ୍ରାପ୍ତ କେହି ଦେଖାଯାନ୍ତି ନାହିଁ ।

ଦଶପଲ୍ଲା ଦଳ ଆନନ୍ଦରେ ଗଦ୍‌ଗଦ ହୋଇଗଲେ । ନୃସିଂହ ଭଞ୍ଜଦେଓ ନିଜର ସୁନାମୁଦିଟିରେ କବିଙ୍କୁ ପୁରସ୍କୃତ କଲେ ।

ଅନନ୍ତର କବି ତାଙ୍କର ମଉସା ମାଉସୀ ଘରର ରାଜା ଖଣ୍ଡପଡ଼ା ଦଳରେ ମିଶିଗଲେ ଏବଂ ଗାଇଲେ—

**ଖଣ୍ଡପଡ଼ନ ଏ ଦୁର୍ଗ ମଣ୍ଡନ**
**ମର୍ଦ୍ଧରାଜ ବର ରାଜ ଉତ୍ତମ**
**ରଣ ତ ବଣୁଆଁ ଯଶ ଅଯଶ**
**ପୁରୁଣାକୁ ନୂଆ ମୋଡ଼ନ୍ତି ନିଶ ।**

ଅର୍ଥାତ୍—ରଣପୁର ବଣୁଆ, ଦଶପଲ୍ଲା ଅପଯଶସ୍କର । ନୂଆଗଡ଼ ଯେତେ ପୁରୁଣା ହେଲେ ହେଁ ତାଙ୍କ ନଣ ପାଖରେ ସର୍ବଦା ନୂଆ ପରି ଅଟନ୍ତି । ତେଣୁ ମର୍ଦ୍ଦରାଜ ଦୁର୍ଗଖଣ୍ଡପଡ଼ାର ଅତି ଶ୍ରେଷ୍ଠ ଏବଂ ଅତି ଉତ୍ତମ ନୃପତି ଅଟନ୍ତି । (ଦଶପଲ୍ଲାକୁ ଅନେକେ ଯଶପଲ୍ଲା ବୋଲି ଆସ୍ୟାର୍ଥରେ କହୁଥାନ୍ତି । )

ଏହା ଶୁଣି ଖଣ୍ଡପଡ଼ା ଦଳରେ ଆନନ୍ଦ ଦେଖାଗଲା । ରାଜା ଭ୍ରମରବର ନିଜର ପାଟଶ୍ରୃଦରଟିକୁ କବିଙ୍କୁ ପୁରସ୍କାର ଦେଲେ ।

ଏଥର ନୂଆଗଡ଼ ପାଳି ପଡ଼ିଲା । କବି ନିଜ ଦଳରେ ମିଶି ଅତି ପ୍ରଫୁଲ୍ଲ ଦେଖାଗଲେ । ଏପର୍ଯ୍ୟନ୍ତ ମାନଧାତାଙ୍କ ଦଳ ନିସ୍ତବ୍ଧ ଥିଲେ । ହଠାତ୍ ସଙ୍ଗୀତ ଶୁଭିଲା—

**ଖଣ୍ଡା ଜଳଜଳ ଖଣ୍ଡପଡ଼ିଆ**
**ହାଣଇ ମାରଇ ଦଶପଲ୍ଲିଆ**
**କଉଡ଼ି ଗଣନ୍ତି ରଣପୁରିଆ**
**ସୁବର୍ଣ୍ଣ ଗିନାରେ ଚନ୍ଦନ ଲଗାନ୍ତି**
**ବଘେଇଲି ପାଛା ନୂଆଗଡ଼ିଆ ।**

ଅର୍ଥ—ଖଣ୍ଡପଡ଼ିଆ ଜଳଜଳ ଖଣ୍ଡା ନଦେଖେଇ ଯୁଦ୍ଧକୁ ଡରିଆ କରନ୍ତି । ଅର୍ଥାତ୍ ଭଲ ଯୁଦ୍ଧ କରି ଜାଣନ୍ତି ନାହିଁ । ଦଶପଲ୍ଲା ଅତି ନିଷ୍ଠୁର ଭାବେ ହାଣିମାରି ଧ୍ୱଂସି ପକାନ୍ତି । ଅର୍ଥାତ୍ ତାଙ୍କର ବିବେକ, ଜ୍ଞାନ ନ ଥାଏ । ରଣପୁରିଆ ଧନରେ ବଡ଼ ଲୋଭୀ, ହାତରେ ଟଙ୍କା ଗଣି ରଖନ୍ତି; କିନ୍ତୁ ନୂଆଗଡ଼ ଅତି ବିଳାସୀ ଏବଂ ମହାନ୍ ଥିବାରୁ ବିଶେଷରେ ସେ ବଘେଲ ବଂଶୀୟ ବାଦଶା ହେତୁ ସୁବର୍ଣ୍ଣ ଗିନାରେ ସୁବାସିତ ଚନ୍ଦନ ଲଗାଇଥାନ୍ତି ।

ରାଜା ଏହା ଶୁଣି ନିଜ କଣ୍ଠରୁ ହାରଟିଏ ଉତାରି କବିଙ୍କୁ ପୁରସ୍କୃତ କରିବାରୁ ଚତୁର୍ଦ୍ଦିଗରୁ ଧନ୍ୟ ଧନ୍ୟ ଶୁଣାଗଲା । ସମସ୍ତେ କହିଲେ—ଭଲ ହେଲା ଯେ କିନ୍ତୁ ନିଜ ଗର୍ବ ଟେକ ସମସ୍ତେ ରଖନ୍ତି । ଯଦୁମଣି ମଧ ରଖିଲେ ।

## ୪—ଛାଣୁଛାଣୁ ଖଣାରେ ମୁଁ ପଡ଼ିଲି

ଯଦୁମଣି ଘଟଣାଚକ୍ରରେ ନୂଆଗଡ଼ ଗଡ଼ର ଗୋଟିଏ ମାଳୀ ଯୁବକ ସହିତ ସାଥି ହୋଇଥିଲେ । ଯୁବକଟିର ନାମ ମାଳମଣି । ମାଳମଣି ନିଜ ସ୍ତ୍ରୀକୁ ଏକ ପ୍ରକାର ତ୍ୟାଗ କରି ତାଙ୍କ ସାହିର ଚନ୍ଦ୍ରମଣି ପଟ୍ଟନାୟକ ସାଥିରେ ନିତି ବେଶ୍ୟା ଘରକୁ ଯାଏ । ନୂଆଗଡ଼ରେ ସେତେବେଳେ ବେଶ୍ୟା ବହୁ ସଂଖ୍ୟାରେ ଥାʼନ୍ତି । ଦାଣ୍ଡମାନେ ଅବଶ୍ୟ

ରୂପ ଭେକରେ ଓ ସଙ୍ଗୀତ ବିଦ୍ୟାରେ ଯେପରି ପଟୁ, ସେହିପରି ଖାଳକ ବୃତ୍ତିରେ ଘରେ ଘରେ ଯୁବକମାନଙ୍କୁ ବିପଥକୁ ନେଉଥାନ୍ତି ।

ରାଜା ଯେତେବେଳେ ତହିଁରେ ଲିପ୍ତ, ଇଷ୍ଟଦେବତା ଠାକୁର ଯେତେବେଳେ ତହିଁରେ ଲିପ୍ତ, ଗୁରୁଜନମାନେ ଯେତେବେଳେ ତହିଁରେ ଲିପ୍ତ, ବାଧା ଦେବ ବା କିଏ? ଯଦୁମଣି ଉକ୍ତ ମାଳମଣିଠାରୁ ଏକ ଯୁବତୀ ବେଶ୍ୟା 'ଶଶିକଳା'ର ରତିବିଳାସ ଶୁଣି ମନେ ଅଥୟ ହେଲେ । ଏମନ୍ତ କି ତାର ବେଶ ପରିପାଟି ଦୂରରୁ ଦେଖି ମଧ୍ୟ ତରଳିଗଲେ ।

ରଥଯାତ୍ରା ଉତ୍ସବ ସମୟ । ଇଚ୍ଛା କରିଥିଲେ ସେ ମଧ୍ୟ ମାଳମଣି ସାଥିରେ ଦାଣ୍ଡିଘରେ ରହି ରାତ ଅତିବାହିତ କରି ଘରକୁ ଫେରିଥାନ୍ତେ । କିନ୍ତୁ ବିବେକ ତାଙ୍କ ଚିତ୍ତକୁ ନିରନ୍ତର ଦଂଶନ କଲା । ସେ ଘରକୁ ଫେରି ନିଜର ରୂପବତୀ ଜାୟାଙ୍କୁ ତାଙ୍କ ଉକ୍ତ ଶଶିର ବେଶଭୂଷା ବର୍ଣ୍ଣନା କଲେ ଏବଂ ଶଶିକଳା ପରି ବେଶରେ ଭୂଷିତ ହେବାକୁ ଭାର୍ଯ୍ୟାଙ୍କୁ ଅନୁରୋଧ କଲେ ।

ତାଙ୍କର ଭାର୍ଯ୍ୟା ଖଞ୍ଜନା କହିଲେ—"ଦେଖ, ମୁଁ ସମାଜ ଧରି ଘର କରିବା ଭାର୍ଯ୍ୟା ତୁମର । ମୁଁ ତ ଶଶି ଦାଣ୍ଡିଆଣି ନୁହେଁ । ଯେବେ ମୋ ଦ୍ୱାରା ତୁମେ ସନ୍ତୋଷ ନୁହଁ, ତେବେ ମୋର ବିଜ ତୁମେ ସେଇ ବାଣ୍ଟ ପାଖକୁ ଯାଅ । ମୋ ରାଣ, ମୋର ସେଥିରେ ଟିକିଏ ହେଲେ ଦୁଃଖ ନାହିଁ ।"

ଯଦୁମଣି ଏକାନ୍ତ କାତର କରି ବସିଲେ । ଶାସ୍ତ୍ର ପୁରାଣ ନିଜର ବାଡ଼ି ବସିଲେ । ଅବଶ୍ୟ ରୂପସୀ ଖଞ୍ଜନା, ସ୍ୱାମୀର ଅଲକ୍ଷରେ ତାଙ୍କର ମନ ହରଣ ଲାଗି ତାଙ୍କ ବର୍ଣ୍ଣିତ ବେଶଭୂଷାରେ ସଜ୍ଜିତ ହେଲେ । ବିଶ୍ୱକର୍ମା ରମଣୀକୁ କ'ଣ ବା ଅଜଣା? କିନ୍ତୁ ଦାଣ୍ଡିପରି ଆଚରଣ କରିବାକୁ କେବେ ମଙ୍ଗିଲେ ନାହିଁ । ଯଦୁମଣି କୁପିତ ହୋଇ ସତୀ ସ୍ତ୍ରୀ ପ୍ରତି ଅଣଦେଖା କରି ଘରୁ ବାହାରି ଆସିଲେ ।

ମାଳମଣିଙ୍କ ମନ୍ତ୍ରଣାରେ ଆଗରୁ ଶଶି ମଙ୍ଗିଥିଲା । କିନ୍ତୁ କାଲେ କୋଉ କଥା ଥାଏ? ନିଜର ବ୍ୟବସାୟ ବୁଡ଼ିଯିବା ଭୟରେ ଶଶିକଳା ଯଦୁମଣିଙ୍କୁ ଠକି ଦେଲା । ସେ ଯେବେ ମୋ ନାମରେ ପଦ ଭଣିତି କରିବେ, ତେବେ ମୋ ପ୍ରତି ଦୁନିଆର ଅନାଦର ଆସିଯିବ । ଏଣୁ ତାଙ୍କୁ ସେ ଦଗାଦେଇ —'ହଁ ବସନ୍ତୁ, ହଁ ବସନ୍ତୁ, ଆଉ ଟିକିଏ ଯାଉ, ଆଉ ମୁହୂର୍ତ୍ତେ ଗଲେ ଆସିବେ-ଏପରି କଥା ପରିଜନଦ୍ୱାରା କୁହାଇ କୁହାଇ ଶଶିକଳା ରାତ ପୁହାଇ ଦେଲା । ଯଦୁମଣି ଦେଖିଲେ ପୂର୍ବ ଆକାଶ ରଙ୍ଗିଲାଣି । ସେ ତାହା ଜାଣିପାରି ସତୀ ଦ୍ରୋହୀ ନ ହେବେ ବୋଲି ଘରକୁ ତର ତରରେ ପଳାଇ ଆସି ନିଜର ଭାର୍ଯ୍ୟା ଖଞ୍ଜନାଙ୍କ ପାଦତଳେ ପଡ଼ି କ୍ଷମାଭିକ୍ଷା କରିଥିଲେ । ସୁଦୀର୍ଘ ଜୀବନକାଳ ମଧ୍ୟରେ ଏଇଥରକ ବ୍ୟତୀତ ତାଙ୍କଠାରେ ଆଉ ଏପରି ଦୁଷ୍ଟ ବୁଦ୍ଧି

କେବେହେଲେ ମୁଦ୍ରାଙ୍କ ପାଇଁ ଦେଖା ଦେଇ ନଥିଲା । ତେଣୁ ଏ ଘଟଣାରେ ସେ ଏପରି ଏକ କବିତା ରଚନା କରି ଖଞ୍ଜନାଙ୍କୁ ଦେଇ ତାଙ୍କଠାରେ ଶରଣ ପଶିଥିଲେ ।

ଜାଣୁ ଜାଣୁ ଖଣାରେ ମୁଁ ପଡ଼ିଲିରେ
ଜଣା ଶୁଣା ସରଣୀ ଯା ଛାଡ଼ିଲିରେ ।
ଉଣା ଟିଣା ବୁଦ୍ଧିରେ
ତେଲ ଘଣା ମଧ୍ୟରେ
ଚଣା ପେଷାଇ ବଣା ଅଡ଼ିଲିରେ । ୧ ।
ନବ ଧଉଳ ତିଳ
ପେଷି ଏରଣ୍ଡ ଫଳ
ନାରୀକେଳକୁ ଯା ନ ପେଡ଼ିଲିରେ ।୨।
ଯନ୍ତ-ଜପ-ଧ୍ୱଂସନ୍ତ-
କରିବା ରସବନ୍ତୀ
ସତୀ ନାୟିକା ସଙ୍ଗ ଏଡ଼ିଲିରେ ।୩।
କପଟ ମରକଟି
ବକାର ନାହାକାଟି
ପଦାନ୍ତେ ରଖି ମୁଣ୍ଡ ମାଡ଼ିଲିରେ ।୪।
ବହୁକାଳ ସୁରଙ୍ଗ
ପାତାଳ ଫୁଟା ଲଙ୍ଗ
ଶିରେ ବାରୁଣୀ ଆଣି ଇଡ଼ିଲିରେ ।୫।
କୁଶଳ କଥା ମୋର
ମୁଷଲମାନ ଗିର
ଗାଣ୍ଡିକ କରପଦ ଯୋଡ଼ିଲିରେ ।୬।
ରାତ୍ରି ଟି ଉଜାଗର
ନିଦ୍ରାରେ ଗର ଗର
ହୋଇ ଉଠେ ମୁଁ ଯେତେ ରଡ଼ିଲିରେ ।୭।

ଟିଣା—କ୍ରୋଧପୂର୍ଣ୍ଣ । ଉଣା—ନ୍ୟୂନତମ । ବଣା ଅଡ଼ିଲ—ଭ୍ରମରେ ଜିଦ୍ ରଖିବା ।
ନାହାକାଟି—ନିର୍ଲ୍ଲଜ, ଅଶ୍ରାବ୍ୟଚଣ୍ଡୀ । ପଦାନ୍ତେ—ପାଦତଳେ ।
ସୁରଙ୍ଗ—ନାରଙ୍ଗ ରଙ୍ଗ । ବାରୁଣୀ— ମଦ୍ୟ । କୁଶଳ କଥା—ସ୍ପଷ୍ଟ କଥା ।

**ନ ଶୁଣିଲ୍‌ ମୋ ଗିର**
**ଯଦୁମଣି ଉତ୍ତର**
**କର୍ମ ଦୋଷରୁ ଏହା ବଢ଼ିଲରେ ॥୮॥**

ଅନୁତାପ ଦଗ୍‌ଧ ସ୍ୱାମୀଙ୍କଠାରୁ ଏହି କବିତାଟି ପାଇ ଖଞ୍ଜନା ସ୍ୱାମୀଙ୍କୁ କୋଳକୁ ଟାଣିନେଇ ଆଶ୍ୱାସନା ଦେଇଥିଲେ—"ତୁମେ ଯେ ମୋର ଜଗନ୍ନାଥ ଠାକୁର । ଏପରି କ'ଣ କରୁଚ ? ତୁମର ଦୋଷ କ'ଣ ମୁଁ ଧରିପାରେ । ପୁରୁଷ ପୁଅ ତୁମେ । ତୁମର ଭୁଲ ନୁହେ ସେ ସବୁ ମୋର ଭୁଲ ।"

ନାରୀର ଅତୁଳନୀୟ ଦୟାରେ ଯଦୁମଣିଙ୍କ ପରି ହିଦାପଥର ତରଳି ଯାଇଥିଲା । ତା ପରେ ପରେ ସେ ଭଲ ମଣିଷ ହୋଇଥିଲେ । କିନ୍ତୁ ତାଙ୍କଠାରୁ ଖଞ୍ଜନାର ସନ୍ଦେହ କେବେ ଦୂର ହୋଇ ନଥିଲା ।

କବିତାଟିର ଅର୍ଥହେଲା—

ଜଣାଶୁଣା ଯେଉଁ ପଥ ଗୃହସ୍ଥ ଲାଗି ନିର୍ବାଚିତ ହୋଇ ରହିଛି, ମୁଁ ଜାଣୁ ଜାଣୁ ସେ ପଥ ଛାଡ଼ି ଗାତରେ ପଡ଼ିଗଲି । ଏକାନ୍ତ ବୃଦ୍ଧ ହୋଇ ନ୍ୟୂନତମ ବୁଦ୍ଧିରେ ତେଲ ଘଣା ମଧ୍ୟରେ ଚଣା ଭର୍ତ୍ତି କରି ମୁଁ ତେଲ ପାଇବା ଆଶା କରି ମୋର ଭ୍ରମପୂର୍ଣ୍ଣ ଜିଦ୍ ରଖିବାକୁ ଯାଇଥିଲି । ନୂଆ ଧୁଆ ହୋଇଥିବା ଘାଣି ସାଥିରେ ଜଡ଼ା ପେଷିଲି, ଅଥଚ ନଡ଼ିଆକୁ ସେଥିରେ ପେଡ଼ିଲି ନାହିଁ । ଭଲତେଲ କାହୁଁ ପାଇବି ।

ଯେ ମୁନି ମାନଙ୍କର ତପସ୍ୟା ଧ୍ୱଂସ କରିପାରେ ଏପରି ସୁନ୍ଦରୀ ମୋର ରସବନ୍ତୀ ସତୀ ନାୟିକା ସଙ୍ଗ ତ୍ୟାଗ କରି ଏ ଫଳ ମୁଁ ପାଇଲି । ଛି, ଛି, କପଟ ମାଙ୍କଡ଼ ମୁହିଁ କାଳିକି ଅଣ୍ଡିରାଚଣ୍ଡୀ ଗୋଡ଼ତଳେ ମୋପରି ରଥିର ମୁଣ୍ଡ ଯାହା ମାଡ଼ିଲି ।

ବହୁ କାଳରୁ ସ୍ଥାପିତ ନାରଙ୍ଗ ବର୍ଣ୍ଣର ପାତାଳ ଫୁଟା ଶମ୍ଭୁଲିଙ୍ଗ ମସ୍ତକରେ ବାରୁଣୀ ମଦ୍ୟ ଆଣି ଏହା ଫଳରେ ନିଷ୍ଟପୁ ଢ଼ାଳିଲି । ଏ ସବୁକଥା କୁଶଳ ବା ଭଦ୍ର ଭାବରେ କହିଲି । କିନ୍ତୁ ପଠାଣ କଥାରେ ଅର୍ଥାତ୍ ଅସଭ୍ୟ ଭାଷାରେ କହିଲେ, ହାୟ ମୁଁ ଗାଣ୍ଡିକୁ ଯାହା କରିପରି ଯୋଡ଼ିଲି ?

ରାତି ତମାମ ଅନିଦ୍ରାରହି, ହୃଦରେ ଗରଗର ହୋଇ ସତରେ ମୁଁ କେତେ ନ ଡାକିଛି ? କିନ୍ତୁ ସେହି ଦୁଷ୍ଟଚରିତା ବେଶ୍ୟା ମୋ ଡାକ ଶୁଣିଲା ନାହିଁ । ଯଦୁମଣି କହେ ମୋ ପୂର୍ବକର୍ମ ଦୋଷରୁ ଏହି ଘଟଣା ଘଟିଲା ବୋଲି ଜାଣିଲି—

ବଢ଼ିଲ୍—ପରୀକ୍ଷା କଲି ।

# ୫—ବୁଢ଼ୀ ହୋଇନାହିଁ ମାଇପ ଅଛି

ନୂଆଗଡ଼ ଯୁବକ ରାଜା ବନାୟକ ସିଂହ ମାନଧାତା ଯଦୁମଣିଙ୍କର ପିତା ମୁକୁନ୍ଦ ମହାପାତ୍ରଙ୍କୁ ପଡ଼ବର୍ତ୍ତନ ଦେଇ ରଖିଥିଲେ । ଜମିବାଡ଼ ନଥିବାରୁ ଚଳବାରେ ଅସୁବିଧା ହେଲା । ତେଣୁ ମୁକୁନ୍ଦ ରାଜାଙ୍କୁ କହି ନିଜଗଡ଼ ଜଗନ୍ନାଥ ଠାକୁରଙ୍କର ଦେବୋତ୍ତର ଜମିରୁ କେତେକ ଜମି ରଏତ ହୋଇ ଚାଷ କରୁଥିଲେ । ପିତାଙ୍କ ମୃତ୍ୟୁପରେ ଯଦୁମଣି ମଧ୍ୟ ତାହା ଚଷିଲେ । ସେତେବେଳକୁ ଯଦୁମଣିଙ୍କର ପ୍ରସିଦ୍ଧି ରାଜଦରବାରରେ ଅତି ଅଧିକ ହୋଇ ନଥାଏ । କେବଳ ରାଜାସାହେବ ତାଙ୍କୁ ଚିହ୍ନନ୍ତି ଏବଂ ତାଙ୍କୁ ବଡ଼ ଦୁଷ୍ଟ ବୋଲି ଜାଣନ୍ତି । ଯଦୁମଣି କାହାକୁ ନ୍ୟାୟରେ ଡରିବା ବାଲା ନୁହେଁ, ଏହା ସର୍ବତ୍ର ପ୍ରଚରିତ ହୋଇଥାଏ ।

ସେ ଯେଉଁ ଜମି ଚଷୁଥିଲେ ତାହା ସୋପୁମ କସମର ଜମିଥିଲା । ଜମିର ଆୟ ଦୃଷ୍ଟିରେ ଖଜଣା ନବସି ସେଥିରେ ଅଧିକ କରଧାର୍ଯ୍ୟ ହେବାରୁ ଯଦୁମଣି କେତେ ବର୍ଷର ଖଜଣା ଅସୁଲ ଦେଇ ପାରିନଥିଲେ ।

ସେତେବେଳେ ଜଗନ୍ନାଥ ଠାକୁରଙ୍କର ସିଠକରଣ ଥାନ୍ତି—କାଳନ୍ଦି ଚରଣ ଚ୍ୟାଉ ପଟ୍ଟନାୟକ । ସେ ଦରିଦ୍ର ଯଦୁମଣିଙ୍କ ନିକଟକୁ ପିଆଦା ପରେ ପିଆଦା ପଠାଇ ଭରି ହଇରାଣ କଲେ ଏବଂ ତଲବ କରି ନେଇ ଅତି ଅପମାନଜନକ କଥା କହିଲେ । ତେଣୁ ଉକ୍ତ ଚ୍ୟାଉ ପଟ୍ଟନାୟକଙ୍କ ଦୁର୍ବ୍ୟବହାରରେ ମର୍ମାହତ ହୋଇ ଗୋଟିଏ କବିତା ଲେଖି ସେ ଦିନେ ରାଜ ଦରବାରକୁ ପଠାଇ ଦେଲେ । ରାଜା ତାହା ପାଠକରି ଏପରି ମୋହିତ ହୋଇଗଲେ ଯେ ଉକ୍ତ କବିତା ପାରିଷଦମାନଙ୍କୁ ଶୁଣାଇଁ ଯଦୁମଣିଙ୍କର ଉକ୍ତ ଟଂକିଦିଆ ଭୂସମ୍ପତ୍ତିକୁ ନିଷ୍କର ଜାଗିରି ତଳେ ରଖିବାକୁ ସନନ୍ଦ ଏକ କରି ଦେଇ ଦେଲେ ।

କବିତାଟି ହେଲା—

ଜମିର ମାଲିକ ଜଗା କାଳିଆ
ତହିଁ ସିଠ ଅଟେ ଚ୍ୟାଉ କାଳିଆ
ଜମି ଥଳ ମଳ କିସ ବାହୁନିବା
ଯେସନ ମଇଁଷି ଗୋଠ ଗୁଳିଆ । ୧ ।
ଜମିର ଆକାର ତମ୍ବୁ,
ତହିଁ ନ ରହଇ ଟୋପିଏ ଅମ୍ବୁ,
ଚ୍ୟାଉ ପଟ୍ଟ ବଲି ଶକତ ଆକାର
ମୋ ବଲି ଖଣ୍ଡିକ ଅଟଇ ଶମ୍ବୁ । ୨ ।

ପାଞ୍ଚ କିଆରୀ କ ପାଞ୍ଚ ବନ୍ଧନ
ହୁଡ ହାଡ଼ ମେଲ ତହୁଁ ଶୋଭନ
ପ୍ରତି କିଆରିରେ ତିନି ତିନି ଖାତ
ସେ ଅଟଇ ବଣ ପଞ୍ଚଲୋଚନ । ୩ ।
ମାଲୀତ ତହୁଁକ ତାହୁକା ନଈ
ବୃଷ୍ଟି ହେଲେ କରେ ସେ ଜଲ ଖାଇ
କର୍ପୁର ଚନ୍ଦନ ଗୋଳ ଦେଉଥାଇ
ପଟୁପଟୁ ପଟୁଆଳ କ ଦେଇ । ୪ ।
କିସ କହିବ ସେ ଚ୍ୟାଉ ପଟ୍ଟନାୟକ ଗୁଣ
ଭିଆଉ ଭିଆଉ ଦିଆଉ ଅଛି ସେ
ଏତେ କଷଣ । ୫ ।
କଂସା ବିକ ଟଙ୍କା ଦେବାକୁ ମୋର ଶତ୍ତ ବଳିଲି
ପିଲାଏ ବୋଇଲେ ଆମ୍ଭର ଏବେ ସବୁ ସରିଲି । ୬ ।
ଭାତ ସିନା ଏବେ ଖାଇବା ତଲେ ପତର ପାଡ଼ି
ତୋରାଣି କେମନ୍ତେ ପିଇବା ତଲେ ମୁହଁକୁ ମାଡ଼ି ? । ୭ ।
ପୋଡ଼ା କପାଳକୁ ଦୁର୍ବଳ ହଂସା
ଜାଗର ପଥର—କୁଣ୍ଡି ମୋ କଂସା ।
ଗର୍ ବୋଲିବାକୁ ଭଙ୍ଗା ମାଠିଆ
ରୁପା ଦୁର୍ଗା ଝଳା ବଡ଼ା ତାଟିଆ
ଘରେ ନାହିଁ କିଛି
ବୁଢ଼ୀ ହୋଇନାହିଁ ମାଇପ ଅଛି । ୮ ।

---

ସିଠ—ରାଜ କୋଷର ହିସାବ ରକ୍ଷକ । ତାହୁକା—ନୂଆଗଡ଼ ରାଜ୍ୟର ଏକ ଗିରିନଦୀ । ପଟୁଆଳ—ପଟୁଆର (ଯେ ଜମି ମାପନ୍ତି), ଅମିନ । ଜମିର କିସମକୁ ବର୍ଷେ ବର୍ଷେ ପଟୁ ପଡ଼ିବା ଦେଖି ଅଲଗା ବୋଲି ଧାର୍ଯ୍ୟ କରିଦିଅନ୍ତି । ପିଲାଏ—ନିଜ ସ୍ତ୍ରୀ । ଜାଗର—ନୂଆଁଗଡ଼ସ୍ଥ ଲଡ଼ୁବାବା ବିରାଜିତ ଶିରିଣ କୂଳରେ ଜାଗର ଯାତାରେ ପଥୁରି ବାସନ ବିସ୍ତର ମିଳେ । ରୁପା ଦୁର୍ଗା—ସେଠା ସବୁ ଘରର ଦୁର୍ଗା ରୂପାରେ ପ୍ରତିବର୍ଷ ତିଆରି ହୁଅନ୍ତି । ଝଳା ବଡ଼ାତାଟିଆ—ଦୁର୍ଗା ଦେବୀଙ୍କର ଶରତ ଏବଂ ବସନ୍ତ ଋତୁରେ ଯେଉଁ ଷୋଳ ଦିନ ଏବଂ ନବଦିନ ପର୍ବହୁଏ, ସେ ସମୟରେ ବାଉଁଶ ପାତିଆ ତିଆରି କଣା କଣା ଗୁଙ୍ଗଡ଼ାରେ ଝୋପିଠା ବଢ଼ାଯାଏ, ତାହାକୁ ତାଟିଆ କହନ୍ତି । ପଟିଦାଅଁ ତିଆରି କରି ମହାରଣା ଘରରେ ଯଦୁମଣି ତାହା ପର୍ବବେଳେ ପ୍ରତ୍ୟହ ପାଉଥାନ୍ତି । ବୁଢ଼ୀ ହୋଇନାହିଁ—ଯଦୁମଣିଙ୍କ ସ୍ତ୍ରୀ ଜରନ୍ତର ନବୀନା ଥିଲେ ।

# ୭—ପେଟ କଣକ ପାଇଁ

ବଡ଼ ଦୁଃଖରେ ଚଳୁଥିବାରୁ ବୃଦ୍ଧ ବାପାଙ୍କ ସହିତ ଖର୍ଚ୍ଚ ବାର୍ଚ୍ଚ ଘେନି ପଦୁମଣିଙ୍କର କଳହ ହୁଏ । ଘରେ ପଇସା ନଥାଏ । କାରଣ ରଜା ଘରର କାମଦାମ ପଡ଼ିଲେ ଅବା ପାଞ୍ଚପଇସା ମିଳେ ନ ହେଲେ ଗାଁ ଲୋକଙ୍କ ପାଇଟିପଇଟ କରି ଯତ୍‌ସାମାନ୍ୟ ରୋଜଗାର ହୁଏ । କିନ୍ତୁ ତାଙ୍କ ପିତା ବୃଦ୍ଧ ମୁକୁନ୍ଦ ମହାପାତ୍ର ପୁଅ ଆସିଲେ ପଇସା ଦେବ କହି ଯାହା ଯେଉଁଠି ଦେଖିଲେ କିଣିପକାନ୍ତି ।

ଏହି ଘଟଣାରେ ଥରେ ପାଚିଲା କଦଳୀ ଦୁଇ ଫେଣା କିଣିବାରୁ ପଦୁମଣି ବାପାଙ୍କୁ କହିଲେ—'ଘରେ ନ ଜଳଇ ଚୁଲି ନାଁ ଗାଣ୍ଡି ଆଡ଼େ ପାଟଫୁଲି ।' ଏପରି ଅତ୍ୟନ୍ତ ଅପମାନ ସୂଚକ କଥା କହିବାରୁ ତାଙ୍କ ପିତା ମନଦୁଃଖରେ ରାଜାଙ୍କ ନିକଟରେ ପୁଅ ବିରୁଦ୍ଧରେ ଗୁହାରି କଲେ । ରାଜା ପଦୁମଣିଙ୍କୁ ସେତେବେଳକୁ ଚିହ୍ନି ଗଲେଣି । ଯେଉଁ ପାରିଷଦମାନେ ପଦୁମଣିଦ୍ୱାରା ଲାଞ୍ଛିତ ହୋଇଥିଲେ ସେମାନେ ରାଜାଙ୍କ ମନରେ ଉତ୍ତେଜନା ସୃଷ୍ଟି କରି ବୁଢ଼ାକୁ ବସାଇ ପାଇକଦ୍ୱାରା ତାଙ୍କୁ ଡକାଇଲେ ।

ପଦୁମଣି ରଜାଙ୍କ ଡକରା ବେଳେ ଘରଖରଚ ଚଳାଇବେ ବୋଲି ଷଢ଼େଇ ଫୋଡ଼ୁଥିଲେ ଅଣକ ତିଆରି କରି ବିକିବାକୁ । ପାଇକ ଡକରା ଶୁଣି ତାଳପତ୍ର ଖଣ୍ଡିକରେ ଲେଖି ଦେଲେ, ଲେଖନ ମୂନରେ ପଦଟିଏ । ପାଇକକୁ କହିଲେ ଯେ ତୋତେ ପଠେଇଛନ୍ତି, ତା ହାତରେ ଏହି ପତ୍ରଖଣ୍ଡ ଦେଇଦେବୁ ।

ସେଥିରେ ଲେଖାଥିଲା—

**'ଅଣକ ଖୋଲୁଛି ପେଟ କଣକ ପାଇଁ**
**ସଭାରେ ବସିଛି ସେ ଜଣକ ପାଇଁ ।**

ଏହାର ଅର୍ଥ ହେଲା—ପରିବାରର ପେଟର ସୂକ୍ଷ୍ମାଂଶ ଲାଗି ଅଣକ (ଷଢ଼େଇ ଉର୍କି) ଖୋଲୁଛି । ଏଥିରୁ ଅବସ୍ଥା ଜାଣିହେବ । ସେହି ଜଣକ ପାଇଁ ବାପାଙ୍କ ଲାଗି ସଭାରେ କି ରାଜ ଦରବାରରେ ବସିଛି କି ଡୁକୁଛି । ବିଚାରର ଜଣେ ଆସାମୀ ହୋଇ ପଡ଼ୁଛି । କିନ୍ତୁ କିପରି ଯିବ ? ମୁଁ ଗଲେ ସେଇ ଜଣକ ସାଥିକୁ ଏଣେ କୁଟୁମ୍ବ ଯେ ଉପବାସରେ ରହିବେ ?

ଏହି କବିତାଟି ପାରିଷଦ ମାନେ ପାଇ କୁପିତ ହୋଇ ରାଜାଙ୍କୁ ଦେଖାନ୍ତେ ରାଜା ତାହା ପଢ଼ି ନୀରବ ହେଲେ ଏବଂ ପାରିଷଦମାନଙ୍କୁ ତା ସହିତ ନ ଲାଗିବାକୁ ପରାମର୍ଶ ଦେଇ ମୁକୁନ୍ଦଙ୍କୁ କିଛି ଅର୍ଥ ଏବଂ ସଞ୍ଚାଟିଏ ଦେଇ ବିଦାୟ କରିଥିଲେ ।

## ୬—ଗୁହ୍ୟ

ସଂସ୍କୃତ ଗୁଣ୍ଡିଚ୍ଛ ଚଂପୂ ପ୍ରଣେତା ବନବାକ୍ ଚକ୍ରପାଣି ପଟ୍ଟନାୟକ ଥରେ ନୂଆଗଡ଼ ରାଜଦରବାରକୁ ପରିଣତ ବୟସରେ ନିଜର ପ୍ରତିଷ୍ଠା ଏବଂ ଅଭାବମୋଚନ ଉଦ୍ଦେଶ୍ୟ ଘେନି ଆସିଥିଲେ । ସେତେବେଳକୁ ଯଦୁମଣି ଜଣେ ହାସ୍ୟରସିକ କବି ଭାବରେ ଜନ ସାଧାରଣରେ ଜଣାଶୁଣା ହେଲେଣି । ଢୋଲବାଦ୍ୟ କୋଶେ—ଭୁଣ୍ଡି ବାଇଦ ସହସ୍ର କୋଶ । ତାଙ୍କ କଥା ଗାଁକୁ ଗାଁ ବ୍ୟାପୀ ଯାଉଥାଏ । ତାହା ଚକ୍ରପାଣି ଶୁଣିଥାନ୍ତି । ସେ ମଧ୍ୟ ଆଶା କରିଥାନ୍ତି, ଯଦୁମଣିଙ୍କ ସହିତ କପରି ଦେଖା ହେବ । ଗୁଣ ଗନ୍ଧେ ଗୁଣିଆ, ସୁନା ଗନ୍ଧେ ବଣିଆ । କିନ୍ତୁ ନୂଆଗଡ଼ ରାଜଦରବାରରେ ତାଙ୍କର ସ୍ଥାନ ନ ଥାଏ । ବ୍ରାହ୍ମଣ, କ୍ଷତ୍ରିୟ ଏବଂ କରଣମାନେ କେବଳ ଦରବାରରେ ବସୁଥାନ୍ତି । ଏତଦ୍‌ବ୍ୟତୀତ ଅନ୍ୟମାନେ ସେଥିରୁ ବଞ୍ଚିତ ଥାନ୍ତି ।

ଯଦୁମଣି ହଠାତ୍ ଦିନେ ଶୁଣିପାରିଲେ ଯେ, ବନବାକ୍ ଚକ୍ରପାଣି ଗଡ଼କୁ ଆସୁଛନ୍ତି । ରାଜ ପଥରେ ଯିବାବେଳେ ଯଦୁମଣି ଦେଖିଥିଲେ ଯେ, ଜଣେ ଲମ୍ବ ସାଙ୍ଗ ପଟ୍ଟାବୃତ ଶରୀର ଚେହେରାର ଏକ ବିଳାସୀ ପ୍ରୌଢ଼ ବ୍ୟକ୍ତି ଜଣେ ଭଣ୍ଡାରି ସହିତ ଯାଉଛନ୍ତି । ଯଦୁମଣିତ ଭଲ ଲୋକଙ୍କ ଠାରେ ଅଠା ବୋଲିବା ଲୋକ । ସୁତରାଂ ପଥରେ ଯାଉଥିବା ପ୍ରୌଢ଼ ଚକ୍ରପାଣିଙ୍କୁ ଯୁବା ଯଦୁମଣି ପଚାରିଲେ—

ଆଜ୍ଞା, ଆପଣ କିଏ କି ?

ଚକ୍ରପାଣି ଏକ ଅର୍ବାଚୀନ ଗାଉଁଲିଆ ଯୁବାର ଏ ପ୍ରଶ୍ନ ଶୁଣି ମୂର୍ଖ ମନେ କରି ଯାଉ ଯାଉ ଗମ୍ଭୀର ସ୍ୱରରେ କହିଲେ—

'ବିଷ୍ଣୁ ପର୍ଯ୍ୟାୟରେ ମୋର ନାମ ମିଳିବ'

ତହୁଁ ପ୍ରତ୍ୟୁତ୍ପନ୍ନ ମତି ଯଦୁମଣି କହିଲେ—ତେବେ ଆପଣଙ୍କ ନାମ 'ଗୁହ୍ୟ' । ଭଣ୍ଡାରି ଟୋକାଟା ଖିଂ କରି ହସି ଦେଇ କହିଲା—ସାଆନ୍ତେ କ'ଣ 'ବିଷ୍ଟା' କହୁଛନ୍ତି ?

ସତରେ 'ଗୁହ୍ୟ' କହିଲେ ମଳକୁ ବୁଝାଏ ପୁଣି ବିଷ୍ଣୁଙ୍କୁ ମଧ୍ୟ ବୁଝାଏ ।

ପ୍ରୌଢ଼ ବନବାକ୍ ଅନୁମାନ କଲେ ଏତ ? ସେଇ ଲୁହେ ହସି କହିଦେଲେ—'ଓହୋ, ତୁମ୍ଭେ ଯଦୁମଣି ? ଭଲ ହେଲା—ମୁଁ ଯେ ଚକ୍ରପାଣି ପଟ୍ଟନାୟକ ।'

ଯଦୁମଣି ଶିଶୁପରି କରଯୋଡ଼ି କବିବରଙ୍କୁ ପ୍ରଣାମ କଲେ । ଚକ୍ରପାଣି ଯଦୁମଣିଙ୍କ ଶିର ଆଉଁଷି ଆଶୀର୍ବାଦ କରି କହିଲେ—'ପ୍ରିୟତମ ! ତମର ରୂପ, ଯୌବନ, ବିନୟାଦି ଗୁଣରେ ମୁଁ ଯେପରି ମୁଗ୍ଧ ହେଲି, ସମସ୍ତ ଜଗତ ଦିନେ ମୁଗ୍ଧ ହେବ । ତୁମ୍ଭେ ଧନ୍ୟ, ତେଣୁ ସମାଜରେ ଶ୍ରେଷ୍ଠତମ ହୋଇ ପାରିବ ।"

# ୮—ପାଦ ପୂରଣ

ନୂଆଗଡ଼ ରାଜସଭାରେ ଥିବା ପଣ୍ଡିତ ଗୁରଜଣଯାକ ଦିନେ ଜାଣିଶୁଣି ଅନୁପସ୍ଥିତ ରହିଲେ । ରାଜା ବିନାୟକ ଅସ୍ଥିର ହୋଇ ଉଠିଲେ । କିନ୍ତୁ ବନ୍ଦବାକ୍ ଚକ୍ରପାଣି କହିଲେ—କାହିଁକି ? ଆମର ଯଦୁମଣିଙ୍କ ସହିତ କିଛି ଗୋଟାଏ ଚର୍ଚ୍ଚା ହେଉ । ପରିଷଦଙ୍କ ବାରଣ ସତ୍ତ୍ୱେ ଯଦୁମଣିଙ୍କୁ ଡକରା ହେଲା । କୁତ୍ସିତ ବେଶଭୂଷା ଦେଖି ରାଜା ମନରେ ଦୁଃଖିତ ହେଲେ ସତ; କିନ୍ତୁ ପ୍ରୌଢ଼ ମହାପଣ୍ଡିତ ଗୁଣ୍ଡିଚା ଚଂପୂ ପ୍ରଣେତା ବନ୍ଦବାକ୍ ଚକ୍ରପାଣି ପଟ୍ଟନାୟକଙ୍କ ଦୟାରୁ ଓଡ଼ଆରେ ଶାସ୍ତ୍ରଚର୍ଚ୍ଚା ହେବାରୁ ଯଦୁମଣି ସେ ଦିନୁଁ ଆତ୍ମସମ୍ମାନ ଲଭକରି ନିଜକୁ ଧନ୍ୟ ମଣିଲେ ।

ଭୂମିରେ ଧୂଳି ଶଯ୍ୟାରେ ବସିଥିବା ବଢ଼େଇ ଯୁବକ ଯଦୁମଣିଙ୍କୁ, ଅଭିଜାତ ବହୁମୂଲ୍ୟ କାଷ୍ଠାସନ କୁର୍ଚ୍ଚିରେ ବସିଥିବା ପ୍ରୌଢ଼ ଚକ୍ରପାଣି ପାଦପୂରଣ ଲାଗି ପ୍ରଶ୍ନ କଲେ—

**ପ୍ରଥମ ପ୍ରଶ୍ନ**

**ପ୍ରମତ୍ତ କେଶରୀ ଗଜକପୋଳକୁ**
**ନିରେଖଇ କଦାଚିତେ**

ଯଦୁମଣି ସାଥେ ସାଥେ କହିଲେ—

**ମହିଷାରି ରଥ ଗଣନାଥ ମାଥ**
**କଇଲାଶ ପରବତେ ।**

(ଏହାର ଅର୍ଥହେଲା ଯେ—ଚକ୍ରପାଣି ଯଦୁମଣିଙ୍କୁ ପଚାରିଲେ—ଅତି ମତ୍ତସିଂହ ଗଜ ମସ୍ତକକୁ କେବେ କେବେ ଦେଖେ ମାତ୍ର ଆକ୍ରମଣ କରେ ନାହିଁ । ତାହା ଶୁଣି ଯଦୁମଣି ଉତ୍ତର ଦେଲେ—ପାର୍ବତୀଙ୍କ ବାହନ ସିଂହ କୈଳାଶ ପର୍ବତରେ ଗଣପତିଙ୍କ ମସ୍ତକକୁ ଏହିପରି ଦେଖିଥାଏ ।)

**ଦ୍ୱିତୀୟ ପ୍ରଶ୍ନ**

ଚକ୍ରପାଣି ପୁଣି ପ୍ରୀତ ହୋଇ ପଚାରିଲେ—

**କିବା ପ୍ରଶଂସିବା ପଶଂସା ପଦବୀ**
**ଅଛି ବୋଲି ବଳାରାତିରେ ।**

ଯଦୁମଣି ହଠାତ୍ ଉତ୍ତରରେ କହିଲେ—

**ମୂକ କରି ଅଛି ଯେ ବାଳାମଣିର**
**ଶ୍ରୀ ଚରଣେ ବଳା ରାତରେ ।**

---

ପ୍ରମତ୍ତ—ଅତିମତ୍ତ । ମହିଷାରି—ଦୁର୍ଗା । ଦୁର୍ଗାରଥ—ସିଂହ । ବଳାରାତି—ଇନ୍ଦ୍ର । ବଳା—ଗୋଡ଼ର ବାଜେଣି ନୂପୁର । ରାତରେ—ରବରେ—ବାଳାମଣି—ପଦ୍ମିନୀ ସ୍ତ୍ରୀ ।

ଏହାର ଅର୍ଥ ହେଲା ଯେ—ଚକ୍ରପାଣି ପଚାରିଲେ—'ଇନ୍ଦ୍ରଙ୍କ ଠାରୁ ପ୍ରଶଂସା ପଦବୀ ଆଉ କାହାର ଅଧିକଅଛି ବୋଲି ପ୍ରଶଂସା କରିପାଇ ପାରେ । ରସିକ ଯଦୁମଣି ଉତ୍ତର ଦେଲେ –'ଯେଉଁ ସୁପୁରୁଷ ନିଜ ଜାୟାର ଅତି ସୁନ୍ଦର ପାଦଯୁଗଳର ବାଜେଣି ନୂପୁରକୁ ରାତିରେ ରତିରଙ୍ଗରେ ମୂକ କରିପାରେ । ଅର୍ଥାତ୍ ବିପରୀତ ରତିଦାନରେ ଯେ ନାରୀକୁ ସ୍ୱୀକୃତ କରାଇ ଆୟତ୍ତ କରିପାରେ । (ବିପରୀତ ରତିରେ ସୁଭଗାନାରୀ ବାଜେଣି ନୂପୁର କାଢ଼ିଦେଇ ରଙ୍ଗରେ ଲିପ୍ତ ରହେ—କିଛି ଲଜ୍ଜା ଗୋପନ ଲାଗି ।

### ତୃତୀୟ ପ୍ରଶ୍ନ

ଚକ୍ରପାଣି ପୁନଶ୍ଚ ପ୍ରଶ୍ନ କଲେ:—

"ସେହି ସମୟରେ

ବଧୂ ଶ୍ୱଶୁର ସଙ୍ଗ ଇଚ୍ଛାକରେ"—ଏହାର ପାଦ ପୂରଣ କରନ୍ତୁ ।

ଯଦୁମଣି ଆକାଶରୁ ତୋଳ ଆଣିଲାପରି କହିଗଲେ —

**ଦ୍ରୁପଦ ନନ୍ଦନା ଗୃହରୁ ସୁକେଶୀ**
**ଭୀମ ବୀର ସଙ୍ଗେ ସୁରତେ ରସି**
**ଗବାକ୍ଷ ମାର୍ଗରେ ବସି ହରସେ**
**ଲୋଡ଼େ ଯେତେବେଳେ ପବନକୁ ସେ**
**ସେହି ସମୟରେ**
**ବଧୂ ଶ୍ୱଶୁର ସଂଗ ଇଚ୍ଛାକରେ ।**

( ଭୀମ ପବନ ସୁତ ଥିବାରୁ ଦ୍ରୌପଦୀ ତାଙ୍କର ବଧୂ ଅଟନ୍ତି । )

### ଚତୁର୍ଥ ପ୍ରଶ୍ନ

ପୁନର୍ବାର ଚକ୍ରପାଣି ଶେଷ ପ୍ରଶ୍ନ କଲେ—

"କାଣି ଗଣିକା" ଏହି ପଦକୁ ବାମରୁ ଦକ୍ଷିଣକୁ ଏବଂ ଦକ୍ଷିଣରୁ ବାମକୁ ପଢ଼ିଲେ ଯେପରି ଏକ ପଦ ବୋଲି ପ୍ରତୀତ ହେଉଛି । ସେହିପରି ଏହାର ଦକ୍ଷିଣ ଓ ବାମରେ ଏପରି ସମାନ ସଂଖ୍ୟକ ବର୍ଣ୍ଣ ବିନ୍ୟାସ କରି ଗୋଟିଏ ତଦ୍ରୂପ ବାକ୍ୟ ରଚନା କର ।

ଯଦୁମଣି ତାହା ଶୁଣିବା ମାତ୍ରେ କହିଲେ—

"କଡ଼ାକୁ କାଣି ଗଣିକାକୁ ଡାକ"

---

କାଣି ଗଣିକା— କାଣି ଦାଣ୍ଡ, କଡ଼ାକୁ—ଜଡ଼େ କହଡ଼କୁ

ହସରେ, ଆନନ୍ଦରେ ଚଉଦିଗ ଉଚ୍ଛୁଳ ପଡ଼ିଲା । ଏପରି ଅଦ୍‌ଭୁତ କୃତିତ୍ୱରେ ରାଜା, ରାଜପରିଷଦ ଚମତ୍କୃତ ହୋଇଗଲେ । ଏମନ୍ତ କି ସ୍ୱୟଂ ଚକ୍ରପାଣି ନିଜ ଆସନରୁ ଉଠିଯାଇ ଯଦୁମଣିଙ୍କୁ ଭୂରିଭୂରି ପ୍ରଶଂସା କରି ତାଙ୍କୁ ରାଜଦତ୍ତ ନିଜ ଆସନଟିରେ ସ୍ଥାନ ଦେଲେ ।

ରାଜା ବିନାୟକ ମାନଧାତା ଏହା ଦେଖି ତୁରନ୍ତ ଏକ ସ୍ୱତନ୍ତ୍ର ଆସନ ଯଦୁମଣିଙ୍କୁ ଦାନ କରି "ତୁମ୍ଭେ ଆଜଠୁ ରାଜକବି ହେଲ" ବୋଲି ଆଜ୍ଞା କରନ୍ତେ ଆନନ୍ଦ ଧ୍ୱନିରେ ଚଉଦିଗ ପୂରି ଉଠିଲା ।

ରାଜା ଚକ୍ରପାଣିଙ୍କୁ କହିଲେ—

"ଆପଣ ତ କେତେକ ପ୍ରଶ୍ନ କଲେ । ଯଦୁମଣି ଆପଣଙ୍କୁ କିଛି ପ୍ରଶ୍ନ କରିବେ, ଅନୁମତି ଦିଅନ୍ତୁ ।"

ବନ୍ଦିବାକ୍ କହିଲେ—

ତୁମ୍ଭମାନଙ୍କର ଯେପରି ଇଚ୍ଛା ମୋର ଇଚ୍ଛା ତଦ୍ରୂପ । ଯୁବକ କବି ଯଦୁମଣି ମୋତେ ପ୍ରଶ୍ନ କରନ୍ତୁ । ମୁଁ ଉତ୍ତର ଦେଇ ନ ପାରିଲେ ମଧ୍ୟ ଲଜ୍ଜିତ ହେବିନାହିଁ । କାରଣ ସେ ତରୁଣ ମୁଁ ବୃଦ୍ଧ ।

ରାଜାଙ୍କର ବାରଂବାର ସନିର୍ବନ୍ଧ ଅନୁରୋଧରେ ବାଧ୍ୟ ହୋଇ ଯଦୁମଣି ମହାକବି ଚକ୍ରପାଣିଙ୍କ ପଦସ୍ପର୍ଶ କରି ନମ୍ର ବଦନରେ ପଚାରିଲେ—

**ଛବିରେ କେ କିଣେ ନବ ରବିଙ୍କି**—( ଅବିର—ଫଗୁ )
**କେ ପେଷେ ପୋଷେ ଧନୁଶର ବିକି**—(ଅବିର—ଦୁର୍ବଳ)
**ଜଳଠାରେ ଭୀତି କାହାର ନିତି**—(ଅବିର—ଅବି-ଛେଳି)
**କାର ଭୟ ନାହିଁ ଉରଗ ପ୍ରତି**—(ଅବିର—ଅ-ବିଷ୍ଣୁ-ବି-ପକ୍ଷୀ,
ବିଷ୍ଣୁଙ୍କ ପକ୍ଷୀ ଗରୁଡ଼)

**ଚାରିର କହିବ**
**ଚାରି ପଦାର୍ଥ ଏକ ହୋଇଥିବ ।**

ବୃଦ୍ଧ ହସ୍ତିଜଙ୍ଘ କବି ଏହାର ଉତ୍ତର ପ୍ରକୃତରେ ହଠାତ୍ ଦେଇ ପାରିଲେ ନାହିଁ । ବରଂ କହିଲେ 'ଯଦୁମଣି ! ତୁମେ ମୋର ପ୍ରିୟତମ ଅନୁଜ । ମୁଁ ତୁମ ପାଖରେ ହାରିଗଲି । ଗଜପତିଙ୍କ ବନ୍ଦିବାକ୍ ଉପାଧି ଆଜଠୁ ରଜୁବାକ୍ ହୋଇଗଲା ।

ମୂର୍ଖ ଜନତା ଛିଛିକାର କରି ଚକ୍ରପାଣିଙ୍କର ନିନ୍ଦା କରନ୍ତେ ଚକ୍ରପାଣି ସ୍ୱରଚିତ ଗୁଣ୍ଡିଚା ଚମ୍ପୂର କେତେକାଂଶ ଶୁଣାଇ ମୂର୍ଖମାନଙ୍କର ଚେତନା ଜାଗ୍ରତ କରି ଯଥାବିଧି ବିଦାୟ ନେଇ ବିଦାୟ ନେଇଗଲେ ।

ଚକ୍ରପାଣିଙ୍କ ଲାଗି ପଦ୍ମମଣି ରାଜଦ୍ୱାରରେ ସମ୍ମାନିତ ହେଲେ । ତେଣୁ ପଦ୍ମମଣି ତାହାଙ୍କୁ ଯେବେ ଦେଖୁଥିଲେ ମଥା ନତ କରି ପ୍ରଣାମ କରୁଥିଲେ ।

ଏହି ଘଟଣାରେ ରାଜା ବନାପୂକ ପଦ୍ମମଣିଙ୍କୁ ଉପଯୁକ୍ତ ପୁରସ୍କାର ଦେଇ କେବଳ ସମ୍ମାନିତ ନୁହେଁ ନିଜର ବୟସ୍ୟ ଭାବରେ ଗ୍ରହଣ କରିଥିଲେ । ବୟସ୍ୟ ହେବା ବିଧି କେବଳ ପୁରୋହିତ ପୁତ୍ରମାନଙ୍କର ପାରଂପାରିକ ରହି ଆସିଥିଲା । ଏଇଠି ତାର ବ୍ୟତିକ୍ରମ ଘଟିଲା । ଗୋଟିଏ ବଢ଼େଇ ଯୁବକ ରାଜସଭାରେ ଆସନ ଲଭିଲା ଏବଂ ରାଜାଙ୍କର ଅନ୍ତରଙ୍ଗ ବନ୍ଧୁ ହୋଇଗଲା ।

## ୯—ଗୃନ୍ଦ ଗଉଡୁଣୀ

ପଦ୍ମମଣିଙ୍କ ଦୁଆରକୁ ଗୃନ୍ଦବୋଲି ଗୋଟିଏ ଯୁବତୀ ଗଉଡ଼ୁଣୀ ଦୁଧ ଦହି ବିକ୍ରି କରି ଆଣେ । ଦିନେ ସେ ଘରେ ଥିବାବେଳେ ଉକ୍ତ ଗଉଡ଼ୁଣୀ ଆସିଥିଲା । ତାକୁ ଦେଖି ପଦ୍ମମଣି କହିଥିଲେ—

'ଆ-ଟିକାଏ ଦୁଧର ମୂଲ୍ୟ କେତେ ?' ଅର୍ଥାତ୍ ତୁମେ ଯେଉଁ ଦୁଗ୍ଧ ଆଣିଚ ସେଥିର ଆଠିକାର ମୂଲ କେତେ ? ଉକ୍ତ ଯୁବତୀ ଗଉଡୁଣୀ ଯେପରି ନବ ଯୁବତୀ ଥିଲା ସେପରି ରସିକା ଏବଂ ପଣ୍ଡିତା ମଧ୍ୟ ଥିଲା । ସାଧାରଣ ସ୍ତ୍ରୀଲୋକ ବୋଲି ଭାବି ପଦ୍ମମଣି ଏପରି ପ୍ରଶ୍ନ କରିଥିଲେ । କିନ୍ତୁ ସେ ବୁଝିଲା ଯେ ପଣ୍ଡିତବର ଗ୍ରାହକ ପଦ୍ମମଣି ତାକୁ ପରିହାସ କରୁଛନ୍ତି । ତେଣୁ ସେ ଉକ୍ତ କଥାକୁ ମନେ ମନେ ଏପରି ବୁଝିଲା —

'ଆ ଟିକେ ଦୁଧର ମୂଲ କେତେ' ? ଅର୍ଥାତ୍—ମୋ ପାଖକୁ ଆ ଟିକଏ । ଏବଂ କହ ପୀନ ପୟୋଧର ମର୍ଦ୍ଦନର ମୂଲ୍ୟ କେତେ ? ଏହା ବୁଝି ସେ ମୁରୁ ମୁରୁ ହସି ଉତ୍ତର କଲା—

ବଡ଼ାକର ମୂଲ ଯେତେ' ଅର୍ଥାତ୍ ବଢ଼େ ଦହିର ମୂଲ୍ୟ ଯେତେ ?

କିନ୍ତୁ ପଦ୍ମମଣି ବୁଝିଲେ ଯେ ସେ ପଣ୍ଡିତା ତାଙ୍କୁ ହରାଇ ଦେଲା । କାରଣ ସେ ପଣ୍ଡିତା ଶେଷରେ କହିଲା - ବଢ଼େଇ ଘରେ କରମୂଲ କେତେ ? ଯେବେ ଏଡ଼େ ରସିକ ତୁ ମୂଲ ବଢ଼ାଇ ଗୃଲେ ଯେତେ ମୂଲ ବଢ଼େଇବୁ । ମୋ ସ୍ୱାମୀ ପ୍ରେମରୁ ତୁ କଣ ବଢ଼େଇ ମୂଲ ଦେବୁ ତା'କହ ? ଆରେ —ଦେଇ ପାରିବୁତ ?

ଖଂଜନା କାର୍ଯ୍ୟବ୍ୟସ୍ତ ଥିଲେ, ହଠାତ୍ ଏ ଉକ୍ତି ପ୍ରତ୍ୟୁକ୍ତିର ଆଭାଷ ଜାଣି କହିଲେ—'ହଇହେ ସକାଳଠାରୁ ଆଜ କାଶୀପୁରିଆଣୀ ଗୃନ୍ଦ ପାଖରେ ହାରିଲ । ତା ସାଙ୍ଗରେ ଲାଗିଲ କିଆଁ ? ବୃନ୍ଦିକରେ ଟବୋଲି ତାକୁ କ'ଣ ସହଜ ଜାଣିଛ କି ? ସେ ତୁମକୁ ପାଠ ପଢ଼େଇ ଦବ ।

ଯଦୁମଣି କହିଲେ କାଶୀରେତ ସମସ୍ତେ ହାରନ୍ତି । ମୁଁ ହାରିଲେ କ୍ଷତିଟା କଅଣ ? ଉଭୟଙ୍କ ହସରେ ଘର ଉଚ୍ଛୁଳି ଉଠିଲା ।

## ୧୦—ଏବେ ମାଆ ଗ୍ଳଲିଗଲେ

ବାପ ମରିଯିବା ପରେ ଯଦୁମଣିଙ୍କର ମାଆ ଏକାନ୍ତ ରୁଗ୍ଣା ଥାନ୍ତି । ଥରେ ଶ୍ରାବଣ ମାସରେ ବର୍ଷା ଖୁବ ଭୀଷଣ ଭାବରେ ଲାଗି ରହିଥାଏ । ଝଡ଼ ଯୋଗୁଁ କାଠପତ୍ର ମିଳୁ ନଥାଏ । ଦିନେ ରୋଷେଇ ପାଇଁ କାଠ ଖଣ୍ଡିଏ ସୁଦ୍ଧା ନଥିବାରୁ ତାଙ୍କ ସ୍ତ୍ରୀ କହିଲେ—'ହଇ ହେ ! ଆଜ ଭାତ କପର ରନ୍ଧାଯିବ ?

ଯଦୁମଣୀ କହିଲେ—'ସମ୍ଭାଳ ସମ୍ଭାଳ କାଠ ଏଇକ୍ଷଣି ଆଣିଦେଉଛି । ସ୍ତ୍ରୀ କହିଲେ—ପଇସାଟିଏତ ନାହିଁ, କାଠ କପର ଆସିବ ?

ପୁଣି ଯଦୁମଣି କହିଲେ—ସମ୍ଭାଳ ଟିକଏ ?

ମାଆ ତାଙ୍କର ଘୋଡ଼ି ଘାଡ଼ି ହୋଇ ଶୋଇଥାନ୍ତି । ସେ ଯାଇ ମାଆଙ୍କୁ କହିଲେ 'ମାଆ ! ମୁନ୍ଦୁରି ଘୋଡ଼ିଇ ଦେବ ? ମାଆ ଅତି ଦୁର୍ବଳ ଥିବାରୁ ଖାଲି ହଁ ଭରିଲେ । ତେଣୁ ସେ ମୁନ୍ଦୁରିକୁ ଯତ୍ନରେ ଘୋଡ଼େଇ ଦେଇ ଦାଣ୍ଡ କାନ୍ଧ ଘରେ ଭୋ ଭୋ ହୋଇ କାନ୍ଦି ବସିଲେ ।

ଯଦୁମଣିଙ୍କର ହାହାକାର କ୍ରନ୍ଦନ ଶୁଣି ଲୋକ ଜମିଗଲେ । ବର୍ଷା ଝିପି ଝିପି ହେଉଥାଏ । ଲୋକେ କ'ଣ ହେଲାବୋଲି ପଚାରିବାରୁ ସେ ତାଙ୍କୁ କାନ୍ଦି କାନ୍ଦି କହିଲେ—'ଅବଧାନ ! ବାପ ଯାଇ ଥିଲେ । ଏବେ ମାଆ ଗ୍ଳଲଗଲେ । ଏପରି ଅଭାଗ୍ୟ ଯେ କାଠ ଦିଖଣ୍ଡି ସୁଦ୍ଧା ନାହିଁ ଲାସ ଦାହ କରିବ କପରି ଏ ପାଗରେ' ? ତାଙ୍କ ମାଙ୍କ ଶବ ଦୂରରୁ ଦେଖି ଲୋକେ ଏକାନ୍ତ ବିକଳ ହେଲେ ଏବଂ—

ସହାନୁଭୂତି ଦେଖାଇ କହିଲେ—କାଠ ସକାଳ ହେଲେ ସିନା ସେ ଯାହା କରିବେ ? ତେଣୁ ସମସ୍ତେ ଯେଝା ବାଡ଼ିରୁ ଖଣ୍ଡେ ଖଣ୍ଡେ କାଠ ଆଣି ତାଙ୍କ ଦୁଆରେ ଜମା କରିଦେଇ ଗଲେ । ଗୃହୁଁ ଗୃହୁଁ ଗାଡ଼ିଏ ଉପରେ କାଠ ଜମା ହୋଇଗଲା । ଜାତି ଗୋତକଥା—ଯେଝାଘରକୁ ଯେଝା ଗଲେ । କେହି କେହି ପିଣ୍ଡାଦାଣ୍ଡରେ ଅନାଇଁ ରହିଲେ ପରବର୍ତ୍ତୀ ଘଟଣା କ'ଣ ଘଟୁଛି ବୋଲି ?

ଯଦୁମଣି ସେହି ଝିପି ଝିପି ବର୍ଷାରେ କାଠତକ ଧୀରେ ଧୀରେ ଘର ଭିତରକୁ ବୋହିବା ଦେଖି ଲୋକେ ଭାବିଲେ ଯଦୁମଣି ଯେଉଁ ଲୋକ ସେ ବୋଧ ହୁଏ ସେ ଘରକୁ ବାଡ଼ପାଖେ କରିଦେବ । ଚଡ଼କୁ ଯାଇ ଜାତିଭାଇଙ୍କୁ ଡାକିବ ନାହିଁ—ସେ ଯେପରି ବଦମାସ ଆଉ ଖଣ୍ଡ ।

କାଠ ବୃହା ସରିବା ପରେ ଯେଝା ଦୁଃଖ ସୁଖରେ ଲୋକେ ଯେଝା ଘରକୁ ଗ୍ଲଲଗଲେ । ମାସକର ଜାଳିବାକୁ କାଠ ଆମଦାନୀ କରି ଯଦୁମଣି ଖୁସିଟାଏ ହେଲେ ସତ; କିନ୍ତୁ ସତକୁ ସତ ତାଙ୍କ ମାଆ ତିନିମାସଠେଇ ମରିଗଲେ ।

ଖଣ୍ଡ ଯଦୁମଣି କାଠ ଠକିନେଲେ ବୋଲି ଜାଣିପାରି ଘରେ ଘରେ ଗାଁର ସମସ୍ତେ ସେଦିନ ହସିବାକୁ ଲାଗିଲେ ।

## ୧୧—ତେଲିମୁଣ୍ଡେ ହେଲା ବୃଷ୍ଟି

ଯଦୁମଣିଙ୍କ ଗାଁ 'ଇଟାମାଟିରେ' ତେଲିସାହିର ନିଧି ମହାପାତ୍ର ଜଣେ ତେଲି ମହାଜନ । ସେ ନିଜକୁ ଜଣେ ଧର୍ମପ୍ରାଣ ବ୍ୟକ୍ତି ବୋଲି ରାଜାଙ୍କ ନିକଟରେ ନାନା ଘଟଣାରେ ପରିଚୟ ଦେଇ ବହୁତ ଟଙ୍କା ରାଜକୋଷରୁ ଲାଭକଲା । ଏଣେ ରାଜାଙ୍କ ନାଁରେ ବକଲମ ଚଲାଇ ଗାଁ ଗାଁରୁ ବେଠି ବାଡ଼େଇ ଗୋଟିଏ ଠାକୁର ମଣ୍ଡପ ତିଆରି କରାଇଲା । ଏବଂ ସସମ୍ଭ୍ରମେ ସେହି ମଣ୍ଡପଟି ନିଧି ମହାପାତ୍ର ନାମରେ ପ୍ରତିଷ୍ଠା କରାଦେଲା ।

ରାଜଦ୍ୱାରକୁ ସମସ୍ତେ ତ ଯାଅ ଆସ କରନ୍ତି ନାହିଁ । ଭିତରର କଥା କିଏ ଜାଣୁଛି । ଯେଉଁ ଜଣକର ହଳଶଗଡ଼ ଅଛି ତାଙ୍କୁ ହୁକୁମ ଶୁଣାଏ 'ହେ ନିଶଙ୍କ, ସ୍ୱାମୀ ହୁକୁମ ଦେଇଛନ୍ତି, ତୁମେ ଦଶ ଗାଡ଼ି ବାଲି ବୋହିଦବ । ସେପରି ଆଉଜଣକୁ କହେ ତୁମେ ପଚିଶିଗାଡ଼ି ପଥର ବୋହିଦବ । ଦେଉଳ ପ୍ରତିଷ୍ଠା ସରିଲେ ମଧ୍ୟ ବେଠି କମିଲା ନାହିଁ । ସେ ନିଜର ଆବଶ୍ୟକତା ଯେନି ଠାକୁରଙ୍କ ନାଁରେ ବେଠି ଚଳାଇ ଥାଏ । ଏ ଘଟଣାରେ ବହୁଲୋକ ଉତ୍ତ୍ୟକ୍ତ ହୋଇଗଲେ । କିନ୍ତୁ କେହି କିଛି ମାତ୍ର ପ୍ରତିକାର କରି ପାରିଲେ ନାହିଁ । ଯଦୁମଣି ଏ ଘଟଣାରେ ଏକାନ୍ତ ବିବ୍ରତ ହୋଇ ଗୋଟିଏ କବିତା ରଚନା କରି ଗୁରୁଆ ପିଲାଙ୍କୁ ଶିଖାଇ ଦେଲେ । ପିଲାଏ ସେ ଗୀତ ଫଜ, ସକାଳ ଦିପହରେ ଗୃରିଆଡ଼େ ଗାଇ ଗ୍ଲଲେ ।

**ସରିଲା ରାଜାଙ୍କ ଗଣ୍ଠି**
**ପରଜାଏ କଲେ ବେଠି**
**ଏମନ୍ତ ମଣ୍ଡପ ପ୍ରତିଷ୍ଠା ଗ୍ଲଉଲ**
**ତେଲି ମୁଣ୍ଡେ ହେଲା ବୃଷ୍ଟି ।**

**ଦାଣ୍ଡିକି ଦାଣ୍ଡି**
**ତେଲି ଘଣା ତଳେ ମଣ୍ଡପ ଟାଣ୍ଡି**
**ଦକ୍ଷିଣ ସାହିରେ ହାଟ**
**ଉତ୍ତର ସାହିରେ ମାଲୀକଟାଘର**
**ବର୍ଷେ କାଟୁଥାଏ କାଠ ।**

ଏହି ବ୍ୟଙ୍ଗ କବିତାରେ ନିଜର ନିରନ୍ତର ଅପମାନ ହେବାର ଦେଖି ନିଧି ମହାପାତ୍ର ଦୁର୍ବାସାପରି ମୁଣ୍ଡରୁ ବାଳ ଛିଣ୍ଡେଇ ରାଜଦ୍ୱାରରେ ଫେରାଦ ହେଲେ । ଫଳରେ ଯଦୁମଣିଙ୍କୁ ତଲବକରାଗଲା; କିନ୍ତୁ ବିଚାରରେ ଶହ ଶହ ଲୋକ ଜମାହୋଇ ଯେଉଁ ସାକ୍ଷ୍ୟ ଦେଲେ ସେଥିରେ ନିଧି ମହାପାତ୍ରଙ୍କୁ ଗ୍ରାମୁଁ ମନାହେଲା । ପ୍ରଜା ବେଠିରୁ ତ୍ରାଣ ପାଇଲେ । ଏମନ୍ତ କି ନିଧି ଜମି ବିକି ରାଜଦଣ୍ଡରୁ ବରଷକେ ମୁକୁଳିଲେ । ତାଙ୍କ ଅଙ୍ଗରୁ ଗୋପୀ ତିଲକର ଦ୍ୱାରକା ଛାପା କୁଆଡ଼େ ଲିଭିଗଲା ।

## ୧୨ ଭଡ଼ଙ୍କେ ଶିଙ୍ଘାଣି—

ଦିନେ ଗୋଟିଏ ପ୍ରୌଢ଼ା ଗଉଡୁଣୀ ଯଦୁମଣିଙ୍କ ଦୁଆରେ ଦହି ଛେନା ବିକ୍ରୟ କରୁଥିବାବେଳେ ଭଡ଼୍‌କେ ଶିଂଘାଣି ତା ନିଜ ଶାଢ଼ୀ କାନିରେ ପୋଛିଦେଲା । ଏହା ଯଦୁମଣି ଦେଖିପାରି କହିଲେ—

'ଆହେ ବେହେରାଣି ! ଦେଖ ତୁମେ ଦହି ଦୁଧ ପରି ଅମୃତର କାରବାର କରୁଛ । ବାସନରେ ପାଣି ଲଗିଥିଲେ ତାହା ଲୁଗା କାନିରେ ପୋଛି ସେଥିରେ ଜିନିଷ ଦଉଚ । ପୁଣି ହାତରେ ଦହି ହାଣ୍ଡି ଘାଣ୍ଟି ଚାଲିଛ । ଏଇଟା କଣ ଉଚିତ କାର୍ଯ୍ୟ କଲ ?

ସେ ଗଉଡୁଣୀର ଭାରି ଗର୍ବ । ସେ ହାଟୁଆଣି ରାଜାଙ୍କ ଅନ୍ତଃପୁରର ଘରଝିଅଙ୍କୁ ଦହି, ଦୁଧ, ଘିଅ, ଛେନା, ଲହୁଣି ଆଦି ବିକୁଥାଏ । ବଢ଼େଇ ଟୋକାକୁ କିପରି ସେ ଖାତିର କରିବ ? କହିଲା—

'ମଲାରେ, ମୋ ଅଞ୍ଚଳ କାନିରେ ମୁଁ ପୋଛିଲି । କାହାକୁ ମାଗି ଗଲି କି ? ଏଥିରେ କାରି କଅଣ ଗଲା ?' ଏହା କହି ପୁଣି ପୋଛିଲା ।

ଯଦୁମଣି ତାକୁ କିଛି ହେଲେ ଜବାବ ନ ଦେଇ ନିଜ ନାକରୁ ମେଞ୍ଚେ ଶିଂଘାଣି ବାହାର କରି ତା ଶାଢ଼ୀରେ ପୋଛିଦେଲେ । ତା' ଦେଖି ସେ ଗଉଡୁଣୀ ଫଳଫଳ ହେଉଁ ରାଗରେ ଅଥୟ ହୋଇ ଗର୍ଜି ଉଠିଲା । କେତେ ତ୍ରିଭଙ୍ଗୀ କଲା— ଏଇକ୍ଷଣି ସେ ବଢ଼େଇ ନିବ ଇତ୍ୟାଦି । ଗାଁଲୋକେ ନିବର୍ତ୍ତାଇଲେ । ଖଂଜନା ମଧ୍ୟ ବହୁତ ଖୋସାମଦ କଲେ । ଗଉଡୁଣୀ କାହା କଥା ନ ମାନି ରାଜଦ୍ୱାରରେ ଫେରାଦ ହେଲା ।

ଦରବାରରୁ ଯଦୁମଣିଙ୍କୁ ତଲବ ହେଲା । ଯଦୁମଣି ହାଜର ହୋଇ ଜବାବ ଦେଲେ ଯେ—

'ସେ ନିର୍ଦ୍ଦୋଷ । ଶିଂଘାଣିପୋଛାକନା ବୋଲି ବିଚାରି ସେ ଏହା କରିଛନ୍ତି । ତାଙ୍କର କୌଣସି ଅସତ୍ ଉଦ୍ଦେଶ୍ୟ ନ ଥିଲା ।'

ଘଟଣାଚକ୍ରରେ ସବୁକଥା ମୂଳରୁ ଶେଷ ଯାଏ ପ୍ରକାଶିତ ହୁଅନ୍ତେ—'ମୋ ଲୁଗାରେ ମୁଁ ଯାହା କଲି ବୋଲି' ବେହେରାଣୀ ଜବାବ ଦେଲା; କିନ୍ତୁ ରାଜା ତାହା ପସନ୍ଦ ନ କରି ଗଉଡ଼ୁଣୀକୁ କଠୋର ଦଣ୍ଡ ଦେଇ ବିଦା କରିଦେଲେ । ବିନା ଦୋଷରେ ଯଦୁମଣି ଛୁଟି ପାଇଲେ ।

ସେହିଦିନୁଁ ସେ ଗଉଡ଼ୁଣୀ ରାଜଦ୍ୱାର ଓ ଇଟାମାଟିକୁ କେବେ ଆସିଲା ନାହିଁ । ସେ ଅନ୍ୟ ଗାଁମାନଙ୍କରେ ତା' ବ୍ୟବସାୟ କଲା ।

## ୧୩—ରାଧାମୋହନ ଠାକୁର ମୋ ଭାଇ

ଯଦୁମଣି କୌଣସି ପ୍ରତିଷ୍ଠା ଲାଭକରିବା ପୂର୍ବରୁ ତାଙ୍କର ପିତା ମୁକୁନ୍ଦ ମହାପାତ୍ର ସଞ୍ଜ ମୁହୂର୍ତ୍ତରେ ମାଘ ମାସରେ ପରଲୋକ ଗମନ କଲେ । ଯଦୁମଣି ରାତିରେ ପିତାଙ୍କ ଶବ ସଂସ୍କାର କରିସାରି କିପରି ଶୁଦ୍ଧକ୍ରିୟା କରିବେ ବୋଲି ବିଚାରିଲେ । ଦଶଦିଗ ତାଙ୍କୁ ଅନ୍ଧକାର ଦେଖାଗଲା । ହାତରେ କପର୍ଦ୍ଦକ ନଥାଏ । ବାପେ ଜଗନ୍ନାଥ ଠାକୁରଙ୍କର କେତେକ ଜମିରେ ସିକମୀ ରଏତ ଥାଇ ତାହା ଭାଗଦେଇ ଯାହାଗଣ୍ଡେ ଖାଆନ୍ତି, ସେଥିରେ ତାଙ୍କର ବୃତ୍ତିମଧ୍ୟ ଚଳୁନଥାଏ । କିଏ କେଉଁଠୁ କି ଉପାୟରେ ବା ଧନ ତାଙ୍କୁ ଦେବ ? ରଜାଙ୍କୁ ଯାଇ ବା ଦୁଃଖ ଜଣାନ୍ତେ ! କିନ୍ତୁ ଅଶୌଚ ଥିବା ମଧ୍ୟରେ ରଜାଙ୍କୁ ଦେଖା କରିବା ନିଷିଦ୍ଧ । ଲେଖାଦେଇ ମାଗନ୍ତେ—କିନ୍ତୁ ଯେତକ ପାରିଷଦ ସେଠାରେ ଅଛନ୍ତି—ସେମାନେ ହେଉଛନ୍ତି ତାଙ୍କର ଶତ୍ରୁ ।

ଭାବିଭାବି ଶେଷକୁ ଭଟ୍ଟଜୀଙ୍କଠାରୁ ମାଠ ଖଦଡ଼ଟିଏ ମାଗି ଗଡ଼କୁ ଅନ୍ଧାର ରାତିରେ ପଳାଇଲେ । ତାଙ୍କ ପିତା ରାଧାମୋହନମୂର୍ତ୍ତି ଗଢ଼ିବାକୁ ପ୍ରଥମେ ଏ ରାଜ୍ୟକୁ ଆସିଥିଲେ । ସେହି ଠାକୁରଙ୍କ ଦେଉଳ ଦ୍ୱାରରେ ମାଠଟିରେ ସର୍ବାଙ୍ଗ ଆବୃତ କରି ସେ ବସିରହିଲେ ।

ମନ୍ଦିର ମାଡ଼ କରିବାକୁ ହୋଇନ୍ତାରୁ ସେବକମାନେ ଆସି ପହଞ୍ଚି ଦେଖିଲେ କିଏ ଗୋଟେ ହାଡ଼, କି ଉମ ଠାକୁର ଦୁଆର ଜଗି ପଡ଼ିରହିଛି । ବହୁତ ଡାକିଲେ । ମାତ୍ର ଯଦୁମଣି ଶୁଣିଲେ ନାହିଁ । ବହୁତ ନେହୁରା ହେବାରୁ କହିଲେ—

'ଅଃ ଡ କବାର ହେଉଛକଣ ? ଭାଇ ପାଖରେ ରହି ଜଣେଇବାକୁ ଆସିଛି । ବାପର ମୃତ୍ୟୁ ହେଲା । ଅନ୍ତ୍ୟେଷ୍ଟି ଖରଚ ଅଧା ସେ ଦେଇଦେବେ । ପୁଣି ଆଜ ଉପାସ ପାଳିବେ । ବାପମଲା ପୁଅର ମାଡ଼କାନ୍ତି କାହିଁ ?

ମୁସ୍କିଲ କଥା । ସେବକ ବର୍ଗ ଜାଣିଲେ ଏ ବଟୋଳ ଯଦୁମଣି ! ବ୍ୟର୍ଥ ଚେଷ୍ଟା କଲେ ବା କି ଲାଭ ? ରାଜଗୁରୁଙ୍କୁ ଜଣାଇବାରୁ ସେ ରଜାଙ୍କୁ ସଙ୍ଗରେ ନେଇ

ସେଠାରେ ପହଞ୍ଚି ଦେଖିଲେ—ଯଦୁମଣି ସର୍ବାଙ୍ଗ ଗୁଦରରେ ଘୋଡ଼ାଇ ହୋଇ ଦୁଆରେ ଜଗି ବସିଛନ୍ତି । ରଜା କହିଲେ—'କଏ ତୁମେ, ଦୁଆରୁ ଉଠ । ଠାକୁରଙ୍କ ମାନ୍ତ ହେଉ ।

ଯଦୁମଣି କହିଲେ—'ଆଜ୍ଞା ମୁକୁନ୍ଦ ମହାପାତ୍ରଙ୍କ ଦୁଇଟି ପୁଅ । ଗୋଟିଏ ରାଧାମୋହନ ଠାକୁର ଆଉ ଗୋଟିଏ ଇଟାମାଟିର ଦରିଦ୍ର ଯଦୁମଣି । ବାପା ଯେତେବେଳେ ମରିଗଲେ ଅଶୌଚ ଦୁହିଁଙ୍କୁ ତ ଲାଗିବ । ଦୁହେଁ ତ ଭାଗବାଣ୍ଟି ପଇସା ଖର୍ଚ୍ଚ କରି ଅନ୍ତ୍ୟେଷ୍ଟି କୃତ୍ୟ କରିବେ ? ତୁମ୍ଭେ ତ ବଡ଼ୁରପଣ୍ଡା । ବିଚାରିବା ହେଉନ୍ତୁ । ମୋର ଯେବେ ଦୋଷ ମୁଣ୍ଡକାଟ ଆଦେଶ ଦେବା ହେଉନ୍ତୁ ।

ରଜା ଯଦୁମଣିଙ୍କ କାର୍ପଣ୍ୟ ଶୁଣି ଆନନ୍ଦିତ ହୋଇ ତୁରନ୍ତ ଦୁଇଶତ ଟଙ୍କା ରାଧାମୋହନଙ୍କ ଭାଗ ବୋଲି ପିତୃ କୃତ୍ୟ କରିବାକୁ ତାଙ୍କୁ ଦେଲେ ।

ରଜା ବିଦାୟ ନେବା ପରେ ଯଦୁମଣି ମଧ୍ୟ ଚାଲିଗଲେ । ସେବକମାନେ ଯଦୁମଣିଙ୍କୁ ଖଣ୍ଡ ଶିରୋମଣି କହନ୍ତେ ରାଜଗୁରୁ କହିଲେ—ନାଁ ନାଁ ସେ ଚତୁର ଶିରୋମଣି । ଏପରି ସାହସ ଦେଖେଇ ନଥିଲେ ହଇହେ ଦୁଇଶ ଟଙ୍କା କଏ, ପଦୁ ବା କଏ ? ଏତେ ଟଙ୍କା ତାଙ୍କୁ କଏ ଦେଇଥାନ୍ତା ହେ ?

## ୧୪—ଖୁମ୍ବ ଆଳୁ

ନୂଆଗଡ଼ ରଜା ବିନାୟକ ମାନଧାତାଙ୍କ ରାଣୀଙ୍କ ସ୍ନାନକ୍ଷୀର ବିଧି ମହା-ସମାରୋହରେ ପ୍ରତିବର୍ଷ ହୁଏ । ଏହି ଉତ୍ସବ ଲାଗି ମାଗଣରେ ପଦାର୍ଥ ରାଜ୍ୟସାକରୁ ଗଦା ହୋଇଯାଏ । ସର୍ବରାକାରମାନେ, ବଡ଼ଦାଣ୍ଡାଜମାନେ, କାର୍ଯ୍ୟିମାନେ ଉଏଟଙ୍କ ବାଡ଼ିପରୁ ପରିବା ଜବରଦସ୍ତି କାଟିନଅନ୍ତି—ଖୋଳି ନଅନ୍ତି ଏବଂ ତୋଳି ନଅନ୍ତି । ଏମାନଙ୍କ ଉଟାରିପରି ଉଜାଡ଼ ଦଅନ୍ତି । ତା ଛଡ଼ା ବ୍ରତ ବିବାହ ଆଦି ମାଗଣରେ ବହୁତ ଟଙ୍କା ମଧ୍ୟ ଆଦାୟ ହୋଇଥାଏ ।

ଯଦୁମଣି ଏହି ପ୍ରଥାରେ ସେ ଅସନ୍ତୁଷ୍ଟ ଥାନ୍ତି । ଅବଶ୍ୟ ଭାବରେ ଏ ଯେଉଁ ଅତ୍ୟାଚାର ହୁଏ ତାହା ଅନ୍ୟାୟ ବୋଲି କେହି ମଧ୍ୟ ବୁଝୁନାହାନ୍ତି । ଗାଁ ସର୍ବରାକାରଙ୍କର ଏପରି ଅତ୍ୟାଚାରରେ ଯଦୁମଣି ବହୁଥର ବାଧା ଦେବାରୁ ତାଙ୍କର ଉପରେ ରାଗିଥିଲେ । ବର୍ଷେ ଏ ସ୍ନାନକ୍ଷୀର ସମୟରେ ଯଦୁମଣି ଘରେ ନଥିବା ଜାଣିପାରି ଉକ୍ତ ସର୍ବରାକାର ତାଙ୍କ ବାଡ଼ିରେ ପଶି ତାଙ୍କର ଖୁମ୍ବଆଳୁ ଦୁଇମାଡ଼ି ଖୋଳାଇ ନେଇଗଲେ । ତାଙ୍କ ସ୍ତ୍ରୀ ତ ଯୁବତୀ, ସେ ଘରେ ଲୁଚି ରହିଲେ ।

ଯଦୁମଣି ସ୍ନାନକ୍ଷୀର ଦିନ ସକାଳେ ଘରେ ପହଞ୍ଚି ଭାର୍ଯ୍ୟାଙ୍କଠାରୁ ସମସ୍ତ କଥା ଶୁଣି କହିଲେ—ମତେ ତେଲ ଟିକଏ ଦିଅ, ମୁଁ ସର୍ବାଙ୍ଗ ବୋଳି ହୋଇପଡ଼େ । ସେଏ ସର୍ବରାକାରକୁ କପରି ପାନେ ଦେବି ଦେଖିବ ।

ସେ ତେଲରେ ସର୍ବାଙ୍ଗ ବୋଳି ହୋଇ ଅଗାଧୁଆ ବେଶରେ ରାଜଦ୍ୱାରରେ ପହଞ୍ଚି ରାଜାଙ୍କ ସହିତ ଜରୁରି ଦେଖା ହେବାକୁ ଦାବୀକଲେ । ଏପରି ମଣିମା ମଣିମା ଧ୍ୱନି କଲେ ଯେ, ରାଜା ବ୍ୟସ୍ତରେ ଥିଲେ ମଧ୍ୟ ଠିଆଠିଆ ଦେଖାଦେଲେ । ପଦ୍ମମଣିଙ୍କୁ ଅଗାଧୁଆ ବେଶରେ ଏବଂ ସର୍ବାଙ୍ଗରେ ତେଲ ବୋଳ ହୋଇଥିବା ଦେଖି ପଚାରିଲେ— କହୋ, ପଦ୍ମମଣି ! ଏପରି କ'ଣ ଘଟିଛି ଯେ ତୁମେ ଗାଧୁଆ ତୋଠରୁ ଏଠାକୁ ଆସିଗଲ ?

ପଦ୍ମମଣି କହିଲେ —ଆଜ୍ଞା, ମୁଁ ଘରେ ନଥିଲି । ସକାଳେ ପହଞ୍ଚି ଘରୁ ଗୋଟିଏ କଥା ଶୁଣି ଶୁଭ କାର୍ଯ୍ୟରେ ଅଶୁଭ କାରଣ ନହେବ ତାହା ଜଣେଇ ଦବାକୁ ଆସିଗଲି । ଆଜ୍ଞା, ଆମ ବାଡ଼ରୁ ବହୁତ ଖମ୍ବଆଳୁ ମାଗଣାରେ ଆସିଯାଇଛି । ମୋର ସେଥିରେ ଦୁଃଖ ନାହିଁ । ଆପଣଙ୍କ କାମ ଯେ ମୋ କାମ ସେ । କିନ୍ତୁ ଗୋଟିଏ କଥା ଯେ, ଆମେ ଗାତଖୋଳି ସେଥିରେ କୁଟିମ୍ବ ଯାକ ଝାଡ଼ାଫେରୁଁ । ଝାଡ଼ା ମାଟି ବଦଳି ଗଲେ ଆଳୁମଞ୍ଜି ଟିଏ ସେଥିରେ ଲଗାଉଁ । ଏହିପରି ସାରରେ ଯେଉଁ ଆଳୁ ବଢ଼ିଛି ତାହା ଆପଣଙ୍କର ଦେବତା, ବ୍ରାହ୍ମଣ, ବୈଷ୍ଣବଙ୍କ କୃତ୍ୟରେ କିପରି ଲାଗିବ ? ଏକଥା ଭାବି ମନରେ ମୋର ପାପ ଛୁଇଁଲା । ଆମେ ଗରିବ ଲୋକ । କୋଉଁଠି କଣ କରି ଦେଉଛୁ । ତା ବୋଲି କଣ ଆପଣଙ୍କ ଯୋଗଣରେ, ଜଗନ୍ନାଥଙ୍କ ଭୋଗରେ ତା ଲାଗିବ ? ଏଇକଥା ପଦକ ଆପଣଙ୍କ ରେ ଜଣେଇ ଦେବାକୁ ମୁଁ ଅଗାଧୁଆ ଅଗାଧୁଆ ଧାଇଁଛି ।

ରାଜା କହିଲେ—ପଦ୍ମମଣି ! କେତେବଡ଼ ଅନର୍ଥରୁ ତୁମେ ମୋତେ ରକ୍ଷାକରିଚ, ତା ଏକ୍ଷଣି କଣ କହିବ । ତୁମେ ସତ୍ୟ କହିଦେଇ ମୋର ଶୁଭ କାର୍ଯ୍ୟରୁ ଅଶୁଭ ଦୂର କରିଦେଇଛ । ତୁମେ ଏବେ ଟିକିଏ ନିଜେ ସେଗୁଡ଼ିକ ବାଛିକରି ନେଇଯାଅ । ତୁମେ ତୁମ ବାଡ଼ର ଆଳୁ ନିଶ୍ଚୟ ଚିହ୍ନି ପାରିବ ?

ପଦ୍ମମଣି କହିଲେ—ଆଜ୍ଞା ! ସେ ଆଳୁ ଦୁନିଆରୁ ବାହାର । ସେ ତାହା କଷ୍ଟରେ ମିଶିବ ନାହିଁ ।

ରାଜା ସରଘରିଆକୁ ଡାକି ହୁକୁମ କଲେ—ଦେଖ, ପଦ୍ମମଣିଙ୍କର ଯେତେ ଆଳୁ ଆସିଛି ସେ ବାଛିକରି ତା ନେଇଯିବେ । ଗାଡ଼ିରେ ତାଙ୍କ ଦୁଆରକୁ ଏଇ ମୁହୂର୍ତ୍ତରେ ତା ପଠିଆଇ ଦେବୁ ।

ପଦ୍ମମଣିଙ୍କର ଧୂର୍ତ୍ତତା ରାଜା ଆଦୌ ଜାଣିପାରିଲେ ନାହିଁ । ହୁକୁମ ପାଇସାରିଲେ ଆଳୁ ସବୁ ଗଦା ହୋଇଥିବା ବଖରାରେ ପଶି ଯେତେ ବଡ଼ ବଡ଼ ଖମ୍ବଆଳୁ ଥିଲା ପଦ୍ମମଣି ତାହା ବାଛି ବାହାରେ ଆଣି ଗଦାକଲେ । ଏପରି ହେଲା ଯେ ତାହା ତାଙ୍କ ଭଗାରିମାନଙ୍କ ସମ୍ମୁଖରେ ଗାଡ଼ିରେ ଲଦାହୋଇ ତାଙ୍କଘରକୁ ପଠାଇ ଦିଆଗଲା ।

ତେଲ ନଲଗାଇ ଦେଖିଆସୁ ଥିବା ଗୋଦାମରେ ପଶିଗଲେ ଦେହ କୁଣ୍ଡାଇ ହୋଇଥାଏ । ଏଣୁ ସେ ତେଲ ଲଗାଇ ପୂର୍ବରୁ ସଜହୋଇ ଆସିଥିଲେ ।

ଏତେଗୁଡ଼ାଏ ଆସୁ ଦେଖି ତାଙ୍କ ସ୍ତ୍ରୀ ଭୟ କଲେ । କିନ୍ତୁ ହଠାତ୍ ପଦ୍ମମଣି ପହଞ୍ଚି କହିଲେ—କଣ ଦେଖୁଛ—ତୁମ ଖୁମ୍ବିଆସୁ ଚିହ୍ନି ପାରୁନ କି ? ହାସ୍ୟ ରୋଳରେ ଦିନ ତମାମ ଘର ଉଠିଲା ପଡ଼ିଲା ।

ସ୍ୱଭାବତଃ ବାସିନ୍ଦାନ ସର୍ବସାଧାରଣଙ୍କୁ ରାଜା ତାର ପାରମ୍ପାରିକ କାର୍ଯ୍ୟରୁ ଖାରଜ କରିଦେଲେ । ସେଦିନୁ ବଳ୍ୟରେ ସରକାରୀ ଦପ୍ତରବାଲା ଏହି ମାଗଣ ଅସୁଲରେ ଜଗିରଖି ଚଳିବାକୁ ବାଧ୍ୟ ହେଲେ ।

## ୧୫—ତେଣୁକରି ରକ୍ତବିନ୍ଦୁ ବାହାର

ଗଞ୍ଜାମର କବି ହରେକୃଷ୍ଣ ପଟ୍ଟନାୟକ ନୂଆଗଡ଼ ରାଜଦରବାରକୁ ଆସିଥାନ୍ତି । ପଦ୍ମମଣି ଓ କବିଙ୍କ ସହିତ ରାଜା ବିନାୟକ ଗଳ୍ପ କରୁଥିବାବେଳେ ବ୍ରହ୍ମପୁର ସହରରୁ ଆସି ଗଉରୀ ନାମକ ବେଶ୍ୟା ରାଜାଙ୍କୁ ସାକ୍ଷାତ କଲା ।

ସେ କାଳରେ ବେଶ୍ୟାମାନେ ରାଜଦରବାରରେ ନିଜର ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ, ନୃତ୍ୟଗୀତ, ଭଂଗି ଦେଖାଇ, ମଧୁର କଣ୍ଠ ଶୁଣାଇଁ ସାକ୍ଷାତ ହୋଇ ରାଜାଙ୍କର ପ୍ରିୟତମା ହୋଇପଡ଼ି ବର୍ତ୍ତନ ଏବଂ ଜମି ଭୂମି ପାଇ ରହୁଥିଲେ । ଆଜ କାଲି ପରି ଏ କୁଅଭ୍ୟାସ ବା ଅସତ୍ କାର୍ଯ୍ୟକୁ ଘୃଣା ମଧ୍ୟ କରିବାକୁ କେହି ଜାଣି ନ ଥିଲେ । ଅଥଚ ଏଣେ ରାମଚରିତ ମଧ୍ୟ ନିଷ୍ଠାର ସହିତ ପାରାୟଣ କରାଯାଉଥିଲା ।

ଉକ୍ତ ବେଶ୍ୟା ପ୍ରତି କେତେକ କାରଣରୁ ରାଜା ଆକୃଷ୍ଟ ନ ହେବାରୁ ସେ ବିଦାୟ ନେଇଗଲା । କିନ୍ତୁ ରାଜା ଦେଖିଲେ ଯେ ସେହି ନବାଗତା ତାର ବାଁ କର ତଳକୁ ହରଗଉରୀ ରଙ୍ଗରେ ପଚୁଇ ଅଛି । ତାହାହିଁ ତାଙ୍କୁ ଅଧିକ ଆକୃଷ୍ଟ କରିଥିଲା ।

ବେଶ୍ୟା ଚାଲିଗଲା ପରେ ରାଜା କବି ହରେକୃଷ୍ଣଙ୍କୁ କହିଲେ—ସେ ବେଶ୍ୟା ଯେ ଏତେ କମନୀୟ ଭାବରେ ହାତ ପଚୁଇଥିଲା, ସେହି ଲକ୍ଷ୍ୟରେ ଗୋଟିଏ କବିତା ବୋଇଲେ ଶୁଣିବା । ତହୁଁ ପଟ୍ଟନାୟକେ କବିତାଟିକୁ ରଚନା କରି ଗାଇଲେ—

**କି ରଙ୍ଗରେ ହରଗଉରୀ ରଙ୍ଗରେ ଅଙ୍ଗନା ବାମ କରତଳ**
**ଚୋପି ଚୋପି କରି ପଚୁଇ ଅଛି ଯେ ଦିଶୁଅଛି କେଡ଼େ ମଞ୍ଜୁଳ**
**ସଙ୍ଗୀତ, କି ଅବା ଫୁଲ ଶର ସ୍ମର**
**ବନ୍ଧିଲା ବେଳରେ ନସ୍ତେ ଆଡ଼ ଦେଲା ତେଣୁ ଏ ରୁଧିର ବାହାର ।**

ବନ୍ଧନ୍ତୁ—'ବନ୍ଧିଲା' କେହି କେହି ଗାଇଥାନ୍ତି ।

ଏହା ଶୁଣି ଯଦୁମଣି କହିଲେ 'ହରଗୌରୀ ରଞ୍ଜିତ ହସ୍ତ ଯେବେ ଏ ଭାବ କେମନ୍ତ ପରିସ୍ଫୁଟ ହେଲା ନାହିଁ ।' ତା ଶୁଣି ରାଜା ଯଦୁମଣିଙ୍କୁ ଅନୁରୋଧ କରନ୍ତେ ସେ ତତ୍‌କ୍ଷଣାତ୍ ଗାଇଲେ—

**ମନ ଭେଦୀ ସିନା କୁସୁମ ଶର**
**କାହିଁ ଉର କାହିଁ ଆଡ଼ୁଲା କର**
**ଏମନ୍ତ ଧୀଷଣା ହୃଦୟେ ରଖି**
**ହର ଗଉରୀ ଏକଠାବେ ଦେଖି**
**ବିନ୍ଧିଛି କି ମାର**
**ତେଣୁ କର ରକ୍ତ ବିନ୍ଦୁ ବାହାର ।**

ଯୁବକ ଯଦୁମଣିଙ୍କ ରଚନାର ମୌଳିକ ଶୈଳୀ ଓ ଉନ୍ନତ ଭାବରେ ମୁଗ୍ଧ ହୋଇ ରାଜା ତାଙ୍କ କବିତାକୁ ଉତ୍କୃଷ୍ଟ ପ୍ରମାଣ କରନ୍ତେ ପଣ୍ଡିତମାନେ ଲଜ୍ଜିତ ହେଲେ ମାତ୍ର ସେ ଯଦୁମଣିଙ୍କ ରଚନାକୁ ଧନ୍ୟ ଧନ୍ୟ କଲେ ।

## ୧୬—ମଦତ ପାନେ ନ ଥାଏ ଠିକଣା

ଖୋର୍ଦ୍ଧା ଇଲାକା ବଡ଼ପାରି ନାମରେ ଗୋଟିଏ ଜନପଦ ଅଛି । ଉକ୍ତ ଜନପଦର ସର୍ବରାକାର ଜାତିରେ ଓଡ଼ ଖଣ୍ଡାୟତ । ଖାନ୍‌ଦାନ୍ ଘର । ତାଙ୍କ ବଂଶ ପଦବୀ ଭ୍ରମରବର ରାୟ । ବେନୁ ଭ୍ରମରବର ରାୟ ଜଣେ ଜଣାଶୁଣା ମୁଖ୍ୟ ବ୍ୟକ୍ତି, ବିଶାଳ କୁଟୁମ୍ବ ତାଙ୍କର । ଯଦୁମଣି ସେ ଗ୍ରାମକୁ ଘଟଣାଚକ୍ରରେ ଯାଉଁ ଯାଉଁ ଦେଖିଲେ ସର୍ବରାକାରଙ୍କର ଗୋଟିଏ ଗାଈ କଷ୍ଟ ପାଉଛି । ସେଠାରେ ସେ କିଛି ସମୟ ଅପେକ୍ଷା କରନ୍ତେ ଭ୍ରମରବରଙ୍କ ସହିତ ତାଙ୍କର ସାକ୍ଷାତ ହେଲା ।

ଭ୍ରମରବର ଆଭିଜାତ୍ୟ ଦେଖାଇ ବହୁ ଜନତା ସମ୍ମୁଖରେ ସ୍ୱନାମଧନ୍ୟ ଯଦୁମଣିଙ୍କୁ ସର୍ବଜ୍ଞ ମନେକରି ପଚାରିଲେ—

ମହାପାତ୍ରେ ! ଦେଖି କହିଲ, ତୁମ ବିଦ୍ୱାନ ପଣିଆର ପରୀକ୍ଷା ନବା । ଏ ଗାଈ କଣଟିଏ ପ୍ରସବ କରିବ ?

ଯଦୁମଣି କହିଲେ—

**ଯଦୁକୁଳ ଶୂଳ ନୁହେଁ ମୂଷଳ**
**ଓଡ଼କୁଳ ଫୁଲ, ନୁହଇ—ଫଳ ।**

---

ଧୀଷଣା—ଜ୍ଞାନ, ବୁଦ୍ଧି । ଅଡ଼ୁଲା—ଅଟକାଇଲା ।

ଫୁଲ କ ମାଈ ନୁହେଁ—ଫଳ କ ଅଣ୍ଡିରିଟିଏ ପ୍ରସବ କରିବ ।

ତହୁଁ ସବରିକାର କହିଲେ—ମାଈ ହେଲେ ଆମ୍ଭେ ରଖିବୁ, ଅଣ୍ଡିରା ହେଲେ ତୁମ୍ଭଙ୍କୁ ନିଶ୍ଚୟ ଦିଆଯିବ ।

ଯଦୁମଣି ଅପେକ୍ଷା କରିବା ପରେ ଦେଖାଗଲା ଯେ ଗାଈ ଅଣ୍ଡିରିଟିଏ ପ୍ରକୃତରେ ପ୍ରସବ କଲା । ଦୁଧ ଛାଡ଼ିଲେ ତୁମ୍ଭେ ନେଇଯିବ ବୋଲି ସବରିକାର ଦୃଢ଼ ଜବାବ ଦେଲେ ।

ମଣିଷର ଆଶା ତ । ଯଦୁମଣି ଖବର ନେଉଥାନ୍ତି । ବାଛୁରୀଟି ବଡ଼ି ହେଲା ବେଳକୁ ତାହା ୫ ୬୦୯ ର ମାଲ ହୋଇଯିବାରୁ ସବରିକାର ପୂର୍ବ ସତ୍ୟ ଭଙ୍ଗ କଲେ । 'ବାଆଙ୍କୁ ବଳେ । କିଏ କାହାକୁ ପଚିଶ ଟଙ୍କାର ବାଛୁରୀ ଦେଇଦେଉଛି' କହି ଆଉ ତାହା ଯଦୁମଣିଙ୍କୁ ଦେଲେ ନାହିଁ ।

ଯଦୁମଣି ମଧ୍ୟ ଲୋଭଗ୍ରସ୍ତ ହୋଇ ଏହି ବାଛୁରି ଅଶାରେ ଦୁଇ ତିନି ଥର ଫେରି ବିରକ୍ତ ହୋଇ କବିତାଟିଏ ଲେଖି ତାଙ୍କ ଜାତିର ଗୋଟିଏ ଖୋଳି ତାଙ୍କ ପାଖକୁ ପଠାଇ ଦେଲେ—

**ଗଡ଼ ବଡ଼ପାରି ଓଡ଼ ଭ୍ରମର**
**କଡ଼ ଘୁଡ଼ ଶୁଆ ମୋଡ଼ା ଭଅଁର**
**ହସ୍ତେ ଅଟା ବାଡ଼ ମୁଖେ କାହାଳୀ**
**କଧୂମ ଧୂଆଁ ଦେଉଥାନ୍ତି ଗିଳି**
**ଏ ଜାତିଙ୍କ ଠଣା**
**ମଦତ ପାନେ ନ ଥାଏ ଠିକଣା ।**

ଏହାର ଅର୍ଥ ହେଲା ବଡ଼ପାରି ଗଡ଼ର ଓଡ଼ ଜାତିର ଭ୍ରମରବର ଗୃହ ଭଅଁର ମୋଡ଼ା ବଡ଼ ଘୁଡ଼ରେ ନିତି ସଞ୍ଜ ହେଲେ ଶୋଇବାକୁ ଯାନ୍ତି । ଲଟା କାନ୍ଧିଆ ଜମି ଜଗିବା ତାଙ୍କର କାମ । କପରି ଯାନ୍ତି ନାଁ—ହାତରେ କିଆଁ ଅଟା, ଠେଙ୍ଗିଣି, ଏଣେ ମୁହଁରେ ଧୂଆଁ ପତ୍ର ଦିଆ ଶାଳପତ୍ର ମୋଡ଼ା କାହାଳୀ, ଯହିଁରୁ କଧୂମ ଧୂଆଁ ବାହାରେ ତାକୁ ସେ ଗିଳି ଦେଉଥାନ୍ତି । ଏପରି ଏକ ବଣ୍ୟ ଅନାର୍ଯ୍ୟ ସ୍ୱରୂପୀ ଜଗୁଆଳି ଜାତିଙ୍କର ନିର୍ଦ୍ଦିଷ୍ଟ ଜବାବ ତାଙ୍କର କିଶାପାନରେ ଠିକଣା ନଥାଏ ।

ଭଅଁର—ଡାଳ ଗୋଲାକୃତ ଉପରି ଗୋଜିଆ ।

ଅଟା—ଯାଳ ମୋଡ଼ା । ଠଣା—ଜଗୁଆଳି, କିର୍ଦ୍ଦିଷ୍ଟ ।

ଏହା ପାଇ ଭ୍ରମରବର ଅତି ଲଜ୍ଜିତ ହେଲେ । ଯାହାଙ୍କ କୁ-ଶିକ୍ଷାରେ ଏପରି କରିଥିଲେ, ସେମାନଙ୍କୁ ଗାଳି ଫଜତ୍ କରି ବାଛୁରିଟିକୁ ଯଦୁମଣି ଘରକୁ ଲୋକ ହାତରେ ପଠାଇ ଭବିଷ୍ୟତ୍ ବଖ୍ରା ବର୍ଣ୍ଣନାରୁ ରକ୍ଷା ପାଇଗଲେ ।

## ୧୨—ଡୋଲିଟାଏ ଏପରି କିଣ ଚାଲିଛି ?

ବିନାୟକ ସିଂହ ମାନଧାତାଙ୍କ ସହିତ ଯଦୁମଣିଙ୍କର କାଳକ୍ରମେ ଏକାନ୍ତ ସଖ୍ୟ ଭାବ ଆସିଯାଇଥିଲା । ତେଣୁ ରାଜା ତାଙ୍କୁ ସର୍ବଦା ଲୋଡ଼ା କରୁଥିଲେ ।

ରାଜା ଥରେ ତାଙ୍କୁ ମକର ସଂକ୍ରାନ୍ତିରେ ମକରଚୁଡ଼ା ପାରିବାକୁ ତାଙ୍କ ସାଥିରେ ରହିବାକୁ ଅନୁରୋଧ କରିଥିଲେ । କିନ୍ତୁ ଯଦୁମଣି ତାଙ୍କ ମାମୁଁ ଘର ରଣପୁରକୁ, ଭୋଜିଖାଇ ଚାଲିଗଲେ । ଚୁଡ଼ା ଦିନ ଆସିବାକୁ ଯେତେ ଚେଷ୍ଟାକଲେ ମଧ୍ୟ ମାମୁଁ ମାଇଁ "ଆଜି ମାସାନ୍ତ, ନଅଁଣି ଦିବସ, ଆଜି ସଂକ୍ରାନ୍ତି ସାପ ସୁଦ୍ଧା ଗାତରୁ ବାହାରେ ନାହିଁ" ଏପରି କହି ଅଟକାଇ ଦେଲେ । ସେ ରଣପୁରରୁ ଫେରିବା ବେଳକୁ ଚୁଡ଼ା ଉତ୍ସବ ସରିଯାଇଥିଲା । ରାଜାଙ୍କ ସାକ୍ଷାତ ହେଲେ ଅସୁବିଧା ବିଷୟ ଜଣାଇଁ କ୍ଷମା ମାଗିବେ ଭାବି ବହୁତ ଥର ରାଜଦ୍ୱାରକୁ ଆସିଲେ । କିନ୍ତୁ ନାନା ଆଳ ଦେଖାଇ ରାଜା ବିନାୟକ ସାକ୍ଷାତ ଦେଲେନାହିଁ । ସେ ଲୋକଙ୍କ ପାଖରୁ ଶୁଣି ପାରିଲେ ଯେ ତାଙ୍କ ମୁହଁ ଆଉ ରାଜା ଚାହିଁବେ ନାହିଁ ।

ତହୁଁ ଯଦୁମଣି ମନ ଦୁଃଖରେ ସ୍ତ୍ରୀ ଖଞ୍ଜନାଙ୍କୁ ସାଥିରେ ଧରି ଶଶୁର ଘରକୁ ଯାଇ ସେଠାରେ କେତେମାସ ଅତିବାହିତ କଲେ । ତାପରେ କେତେମାସ ମାମୁଁଘରେ କଟାଇ ଜ୍ୟେଷ୍ଠ ମାସକୁ ଘରକୁ ଫେରିଲେ ।

ଜଗନ୍ନାଥଙ୍କର ଅଣସର କାମ ଆସିଗଲା । ଅଣସରରେ ଛତାକାମ କରିବାକୁ ତାଙ୍କୁ କେହି ମନା କଲାନାହିଁ । ତେଣୁ ସେ କାର୍ଯ୍ୟ ଶେଷ କରିବାପରେ ଜଗନ୍ନାଥେ ଶ୍ରୀଗୁଣ୍ଡିଚା ଦିନ ରଥକୁ ବିଜେ ହେଲେ । ଛତାକାର ଯଦୁମଣି ଠାକୁରଙ୍କ ପାଖେ ପାଖେ ରହିବାର କଥା । ଠାକୁରଙ୍କ ବନକ ଗୁଡ଼ିଗଲେ ସେ ପୁଣି ରଂଜିତ କରିବେ । ତେଣୁ ସେ ଅତି ସତର୍କରେ ଛକାପଞ୍ଝାଂରେ ଜନଗହଳ ମଧ୍ୟରେ ରହିଥାନ୍ତି । ଏପରି କେତେ ଚରକରେ ରହିବେ । ହଠାତ୍ ଦେଖିଲେ, ଜଣକ ପିଣ୍ଡାରେ ଗୋଟିଏ କଣା ପାଲଡୋଲି ଥୁଆ ହୋଇଛି । ସେ ଡୋଲି ଭିତରେ ପଶି ତାକୁ ମୁଣ୍ଡେଇ ଚାଲିଲେ । ଆଖି ପାଖକୁ କଣା ଥିବାରୁ ରାସ୍ତା ପରିଷ୍କାର ଦେଖାଯାଏ । ଡୋଲିଟାଏ ଯାହା ଗହଳରେ ଚାଲିବା ଦେଖି ଲୋକେ ଏ କିମ୍ଭୂତକିମାକାର ବ୍ୟାପାର ବୋଲି ବେଡ଼ି ହାଉଜାଉ ହେଲେ । ରଥ ଚାଲିଥାଏ, ଏଣେ ରାଜାଙ୍କ ଛତକାହାଳୀ ସହିତ ବିଜୟ ପଛୁଆର ଚାଲିଥାଏ । ତେଣେ ଆଗରେ ଡୋଲିଟାଏ ଧୀରେ ଧୀରେ ଚମକ ଚମକ ଯାଉଥାଏ ।

ଏହାଦେଖି ପାଖ ଲୋକଙ୍କୁ—ରାଜା ପଚାରିଲେ—ଆରେ ଏକ ବ୍ୟାପାର ? ଡୋଲିଟାଏ ଏପରି କଣ ଚାଲିଛି ? ପାଖ ଲୋକେ ଲୋକ ଗହଳିରୁ ବୁଝି ଆସି ଜଣେଇଲେ—'ମଣିମା ! ଆମ୍ଭେ ତ ଯଦୁମଣିଙ୍କ ମୁହଁ ଚାହିଁବେ ନାହିଁ । ତେଣୁ ସେ ନିଜ ଦେହ ମୁହଁ ଲୁଚାଇ ଏପରି ପଟଆର ସାଥିରେ ଚାଲିଛନ୍ତି । ତାଙ୍କରିତ ଠାକୁର ସେବା ଶିକାର ବୃତ୍ତି । ଠାକୁରଙ୍କୁ ଛାଡ଼ି କପରି ରହିବେ ?

ରାଜା ତାହାହିଁ ମନେ ମନେ ଅନୁମାନ କରିଥିଲେ । ଆଉ ସମ୍ଭାଳି ପାରିଲେ ନାହିଁ । ସେହି ବହୁଜନତା ମଧ୍ୟରେ ପାଇକଙ୍କଦ୍ୱାରା ଯଦୁମଣିଙ୍କୁ ପାଖକୁ ଡକାଇ ଆଣି କହିଲେ—ହେଉ ଏବେ ମୁଖ ଦେଖାଅ ।

ଯଦୁମଣି ଡୋଲିରୁ ଦେହ ମୁକ୍ତ କରି କରପତ୍ର ଯୋଡ଼ି ରାଜାଙ୍କ ଉଦ୍ଦେଶ୍ୟରେ ଏହି ସ୍ତବ ଗାଇଲେ ।

**ଅମଳ କମଳ ଦଳ ଲୋଚନ**
**କୁଣ୍ଡଳାଲଂକୃତ ଶୁଭ୍ର ଦର୍ଶନ**
**କଥ୍ୟ କଥନକୁ ଦୃଢ ସଂଯମ**
**ବିଚ୍ୟୁତ ବିଚାର କି ବିଘଟନ**
**ନବଦୁର୍ଗରାଣ**
**ଇଷ୍ଟଦେବତା ପରି ଆଚରଣ ।**

କବିତାଟିର ମର୍ମ ହେଲା— ହେ ରାଜା ! ତୁମର ଏଡ଼େ ସୁନ୍ଦର ରୂପ ପୁଣି କଥାରେ ସରି ପକାଇ ଯେପରି କଥା କହିଥାଅ । କି ବିଚାର ! ଟିକିଏ ବିରୋଧ ଭାବ ଆସିଲେ ତୁମର ଚରିତ୍ରରେ ଏପରି ବିଚ୍ୟୁତି ଘଟିଥାଏ, ଯାହା କି ବାଉରି ପରି ଏକ ନିନ୍ଦଆ ହୋଇଯାଏ ।

ନୂଆଗଡ଼ର ଇଷ୍ଟ ଦେବୀଙ୍କ ନାମ 'ବାଉରୀ' ଠାକୁରାଣୀ । ତେଣୁ କବି ଯଦୁମଣି ହଜାର ହଜାର ଜନତା ସମ୍ମୁଖରେ କହିଲେ, ତୁମର ଇଷ୍ଟ ଦେବତା ବାଉରୀ ପରି ଅର୍ଥାତ୍ ବାଉରି ଜାତିର ଲୋକ ପରି ମୋ ପ୍ରତି ଆଚରଣ କରୁଅଛ— ଏପରିଭାବେ ସ୍ପଷ୍ଟ କହିଦେଲେ । ପ୍ରକୃତରେ ଏହି ଉତ୍ତେଜିତ କବିତା ବିଶଲ୍ୟକରଣୀ ପରି ରାଜାଙ୍କ କଣ୍ଟୁତାକୁ ନାଶ କରିଥିଲା । ଫଳରେ ତାଙ୍କ ପ୍ରତି ବୃଥାରେ ଅପମାନ ଦିଆ ଯାଇଥିବା କଥାକୁ ସମର୍ଥିପାରି ପ୍ରଶଂସିତ ରାଜା ଯେଉଁମାନଙ୍କ ମନ୍ଦ ମନ୍ତ୍ରଣାରେ ଏପରି ଘଟିଗଲା, ସେହିମାନଙ୍କ ଆଗରେ ତାଙ୍କୁ ଏକ ସ୍ୱତନ୍ତ୍ର ହସ୍ତୀରେ ସମାସୀନ କରି ବହୁ ସମ୍ମାନ ଅର୍ପଣ କରିଥିଲେ । ଜନତା ଏହା ଦେଖି ଜୟଧ୍ୱନି ଦେଇଥିଲେ ।

କଥ୍ୟ—କଥନୀୟ । କଥନ—ଉକ୍ତି । ବିଚ୍ୟୁତ—ସ୍ଖଳନ ।
ବିଘଟନ—ବିରୋଧ । ନୂଆଗଡ଼ ଇଷ୍ଟ ଦେବତା—ବାଉରୀ ଠାକୁରାଣୀ ।
( ବାଉରୀ ଜାତିର ନିନ୍ଦଖୋର ଆଚରଣ ଦେଖାଯାଏ )

# ୧୮—ଚାଳୁଣ୍ଡା ଲୁଣିଲେ ଉଠଇ ନାହିଁ

ରାଜା ବନାୟକ ଯଦୁମଣିଙ୍କୁ ଜମି ଖଣ୍ଡିଏ ନିଷ୍କରରେ ଦେବାକୁ ରାଜ କଚେରୀର ବେବର୍ତ୍ତା ପଟ୍ଟନାୟକଙ୍କୁ ଆଦେଶ ଦେଲେ । ଦିନ ପରେ ଦିନ ଅତିବାହିତ ହେଲା । ଯଦୁମଣି ଜମି ପାଇବା ଲାଳସାରେ ବେବର୍ତ୍ତାଙ୍କୁ ପାଞ୍ଚ ଦଶ ଥର ଜଣେଇଲେ । ଏପରି ଭାବରେ ବର୍ଷଟିଏ ଚାଲିଗଲା । ଶେଷକୁ ସେ ରାଜାଙ୍କୁ ଜଣେଇବେ ବୋଲି କହିବାରୁ ଅତି ନିକୃଷ୍ଟ ଡିପ ଜମି ଖଣ୍ଡିଏ ତାଙ୍କୁ ଲେଖିଦେଲେ ।

ଜମି ଦେଖିବାକୁ ଯାଇ ସେ ହତାଶ ହୋଇ ଫେରିଲେ । ଯେଉଁ ଜମି ତାଙ୍କୁ ଦିଆଯାଇଥିଲା, ତାହା ବହୁକାଳରୁ ପଡ଼ିଆ ହୋଇ ରହିଥିଲା । ସେଥିରେ କୋଡ଼ିଏ ପଚିଶି ବର୍ଷ ଧରି କେହି ଫସଲ କରି ନ ଥିଲେ । ବହୁକାଳ ପୂର୍ବେ କିଛି କେତେ ଘର ତାହା ଫସଲ ଲାଗି ତିଆରି କରି ଫସଲ ନ ହେବାରୁ ଗାଁଛାଡ଼ି ପଳାଇଥିଲେ ।

ଯଦୁମଣି ଗୋଟାଏ କିଏ ? ତାଙ୍କୁ ପୁଣି ଜମି ନିଷ୍କର ଜାଗିରରେ ଦିଆଯିବ, ଏହା ବେବର୍ତ୍ତା ପଟ୍ଟନାୟକ ଏକା ନୁହନ୍ତି, ରାଜକର୍ମଚାରୀ କେହି ଜଣେ ହେଲେ ସହିପାରିଲେ ନାହିଁ । ତେଣୁ "ସାପ ନ ମରୁ ବାଡ଼ି ନ ଭାଙ୍ଗୁ" ରୀତିରେ ତାଙ୍କୁ ଜମି ଖଣ୍ଡି କରି ଲେଖା ଦିଆଗଲା ।

ଦାରିଦ୍ର୍ୟ ନିପୀଡ଼ିତ ଯଦୁମଣି ସେ ଜମି ବା ନେଇ କଣ କରିବେ ? ତେଣୁ ସେ ଏକାନ୍ତ ଅସନ୍ତୁଷ୍ଟ ହୋଇ ରାଜାଙ୍କୁ ଲେଖି ଗୋଟିଏ କବିତାରେ ଜଣେଇଲେ—

**ଦେଉ ଆଜ୍ଞା ହେଲେ ହରଷେ**
**କରଣ ତା କଲେ ବରଷେ**
**ବାଛି ବାଛି କରି ଦେଲେ ପଡ଼ିଆ**
**ଶ୍ରାବଣ ମାସରେ ଫାଟେ ନଡ଼ିଆ**
**ଏମନ୍ତ ସେ ଭୂଇଁ**
**ଚାଳୁଣ୍ଡା ଲୁଣିଲେ ଉଠଇ ନାହିଁ ।**

ରାଜା ଏ କବିତା ପାଠକରି କ୍ରୋଧରେ ଅଜ୍ଞାନ ହୋଇ ବେବର୍ତ୍ତାଙ୍କୁ ଡକାଇ ତିରସ୍କାର କରିବାରୁ ତୁରନ୍ତ ଉତ୍କୃଷ୍ଟ ବାହାଲମଡ଼ା ଭୂସମ୍ପତ୍ତି ଖଣ୍ଡିଏ ଉକ୍ତ ଡିପ ଜମି ବଦଳରେ ତାଙ୍କୁ ଦିଆଗଲା । ବେବର୍ତ୍ତା ଏହା ଫଳରେ ଦୀର୍ଘ ତିନି ମାସ ଧରି ଗୁମ୍ଫି ମନା ହୋଇ ରହିଲେ ।

# ୧୯—କେ ରାଣ୍ଡି ରାନ୍ଧିଅଛି ଦିଶଇ ସ୍ୱଚ୍ଛ

ମାନଧାତାପୁର ପଣ୍ଡିତଙ୍କ ଚଉପାଢ଼ୀରେ ପାଠ ପଢ଼ିଲାବେଳେ ଯଦୁମଣି ଭଞ୍ଜା—ପାଟଣାର ଗୋଟିଏ ଚଷା ଟୋକା ସାଥିରେ ସଙ୍ଗାତ ବସିଥିଲେ । ଏହି ବନ୍ଧୁତା ଜୀବନ ଥିବାଯାଏ ତାଙ୍କର ରହିଥିଲା । ଅସମୟରେ ଏହି କୃଷକ ପରିବାର ନାନା ଭାବରେ ତାଙ୍କର ସହାୟକ ଥିଲେ । ପ୍ରକୃତରେ ସଙ୍ଗାତର ଅର୍ଥ ଯାହା, ତାହା ଉଭୟଙ୍କଠାରେ ପ୍ରମାଣିତ ହୋଇଥିଲା ।

ପରେ ତାଙ୍କ ସଙ୍ଗାତ ଜୀବନବନ୍ଧୁ ଯଦୁମଣିଙ୍କୁ ଖାଇବାକୁ ନିଜ ଘରକୁ ନିମନ୍ତ୍ରଣ କରିଥିଲେ । ସଙ୍ଗାତୁଣୀ ନିଜେ ରୋଷେଇ କରିଥିଲେ, ଅତି ତାତ୍ପର୍ଯ୍ୟରେ । କିନ୍ତୁ ଯେଉଁ ହରଡ଼ଡାଲି କରିଥିଲେ, ତାହା ତରତର ହେବାରୁ ସିଝିପାରି ନ ଥିଲା । ଏମନ୍ତ କି କେରଣ୍ଡି ମାଛ ଠୁକୁଠୁକାରେ ବେଶୀ ପାଣି ରହି ଯାଇଥିଲା ।

ବୋପା ହେଲେ ମଧ୍ୟ ଯଦୁମଣି ଛାଡ଼ିବା ଲୋକ ନୁହନ୍ତି । ସେ ନିଷ୍ଠୁର ବାହୁନିବେ । ସଙ୍ଗାତୁଣୀଙ୍କୁ କଷ୍ଟ ହେବ ବୋଲି କେବେ ହେ ଧାରଣା କଲେ ନାହିଁ । ରୋଷେଇ ନ ବାହୁନିଲେ ଭଲ ହେବ କିପରି ? ସୁଆଦ ଅସୁଆଦ, ଭଲ ମନ୍ଦ ସେ ତ ବାରିବେ ନାହିଁ, ପୁଣି ବାରିବ କିଏ ?

ତେଣୁ ସେ ଖାଇସାରି ସଙ୍ଗାତଙ୍କୁ କହିଲେ—

**ଦନ୍ତେ ବାଜନ୍ତେ ରୁଡ଼ୁମୁଡ଼ୁ ବାଜିଲା**
**ଘୁଡ଼ୁ ଘୁଡ଼ୁ ବେଳରୁ ଓହ୍ଲାଇ ଥିଲା,**
**ଦରାଣ୍ଡି ଆଣିଥିଲା କେରଣ୍ଡି ମାଛ**
**କେ ରାଣ୍ଡି ରାନ୍ଧି ଅଛି ଦିଶଇ ସ୍ୱଚ୍ଛ ।**

ହରଡ଼ଡାଲି ସିଝି ନ ଥିବାରୁ ଦାନ୍ତରେ ରୁଡ଼ୁମୁଡ଼ୁ ବାଜିଲା । ବୋଧହୁଏ ରାନ୍ଧୁଣୀ ଉଚିତ ପାଣି ନ ଦେଇ ଘୁଡ଼ୁଘୁଡ଼ୁ ହେଲାମାତ୍ରେ ଓହ୍ଲାଇ ଦେଇଥିଲା । କେରଣ୍ଡି ମାଛ ଏପରି ଖୋଜି କରି ଆଣିଥିଲା ଯେ ସ୍ୱଚ୍ଛ ଜଳରେ ତା ସବୁ ଦେଖା ଯାଉଛନ୍ତି । କେଉଁ ରାଣ୍ଡୀ ଏସବୁ ରାନ୍ଧିଛି ?

ସଙ୍ଗାତୁଣୀ ରାଣ୍ଡୀ ଗାଳି ଶୁଣି ସେଇଦିନୁଁ ରୋଷେଇରେ ମନୋଯୋଗ ଦେଇ ଯଦୁମଣିଙ୍କ ପରି ନିନ୍ଦୁକଙ୍କଠାରୁ ଯୋଗ୍ୟ ବୋଲି ସର୍ବଦା ପ୍ରଶଂସା ଲଭିଥିଲେ । ଜୀବନବନ୍ଧୁ ବାହୁନି ବାହୁନି ବହୁ ବର୍ଷରେ ଯାହା କରିପାରି ନ ଥିଲା, ସଙ୍ଗାତ ଯଦୁମଣିଙ୍କ ପଦେ କଥାରେ ତାଙ୍କ ସ୍ତ୍ରୀଙ୍କର ଅମନୋଯୋଗିତା ଦୂରହୋଇ ଯାଇଥିଲା ।

# ୨୦—ଆରେ ଚହ୍ଣା—ନ କର ହ୍ଣା

ଠିକ୍ ଏହିପରି ଗୋଟିଏ ଘଟଣା ଥରେ ତାଙ୍କ ଘରେ ଘଟିଲା । ଯଦୁମଣି ତ ସମସ୍ତଙ୍କ ଦୋଷ ଦେଖନ୍ତି । ମୁହେଁ ମୁହେଁ ଠୋ ଠା କହିଦିଅନ୍ତି । ତାଙ୍କର ତ୍ରୁଟି ବା କିଏ କିପରି ସହିବ ?

ସେଦିନ ତାଙ୍କର ବାପାଙ୍କ ଶ୍ରାଦ୍ଧତିଥି । ଦଶପଲ୍ଲୀରୁ ତାଙ୍କ ଶଳା ଘୋଡ଼ା ଚଢ଼ି ଆସିଥାଏ । ଘରେ ରନ୍ଧାବଢ଼ା ବଡ଼ ଜୋରରେ ଚାଲିଥାଏ । ଖଞ୍ଜନା କେବେ ଘୋଷେଇରେ ତ୍ରୁଟି କରନ୍ତି ନାହିଁ । ବନ୍ଧୁବାନ୍ଧବ ସହିତେ ବହୁତ ଲୋକଙ୍କ ଲାଗି ରାନ୍ଧିବାରୁ ସେଦିନ ଭୁଲଭାଲ ହୋଇଗଲା ।

ତାଙ୍କ ଅଗଣାରେ ଶିମିଳିକଂଟାର ଗୁମୁଣ୍ଡିଆ ଚଳେ ବନ୍ଧୁବାନ୍ଧବମାନେ ବସି ଭୋଜନ କରିବେ ବୋଲି ଅଗଣା ଲିପାପୋଛା ହୋଇ ପରିଷ୍କୃତ ଓ ସୁନ୍ଦର ହୋଇଥିଲା । ଖଲିପତ୍ର, ପିଢ଼ା, ପାଣି ସବୁ ଠିକଣା ହେଲା । ମାଘ ମାସ । ବନ୍ଧୁବାନ୍ଧବ ସାଇଭାଇମାନେ ବସିବା ପରେ ଜିନିଷମାନ ପରଷା ହେଲା ।

ଯଦୁମଣି ଦେଖିଲେ, ଡାଲି ଏତେ ପାଣିଆ ହୋଇଛି ଯେ ଖଲିରେ ନ ରହି ବୋହିଯାଉଛି । ଅବଶ୍ୟ ଡାଲି, ପଇଡ, ସାକର, ରାଇ ଇତ୍ୟାଦି ଜିନିଷ ବହଳା ଅଛି । କିନ୍ତୁ ଡାଲି ଅତି ପାଣିଆ ହୋଇଛି । ଯାହା ନ ହେବା କଥା ତାହା ହୋଇଛି । କଣ କରିବେ, ମନେ ମନେ ସୁନ୍ଦରୀ ଜାୟା ଉପରେ ବିରକ୍ତ ହୋଇଥିଲେହେଁ ସେ ପ୍ରକାଶ୍ୟରେ ସ୍ତ୍ରୀଙ୍କୁ କିପରି ବା ଅପମାନ ଦେବେ—ଏତେ ବନ୍ଧୁବାନ୍ଧବ ମେଳରେ ? ପୁନଶ୍ଚ ନିଜର ଲଜ୍ଜା କିପରି ଘୋଡ଼ାଇବେ ଭାବୁଛନ୍ତି—ସେତିକିବେଳେ ତାଙ୍କ ଶଳା ବାରମ୍ବାର କାନରେ ଫୁସ୍‌ଫୁସ୍ କରି ସେଇ କଥା କହିବାକୁ ଉନ୍ମୁଖ ହେଲା । ତେଣୁ ସମାଜର ସମାଲୋଚନା ପୂର୍ବରୁ ଚତୁର ଯଦୁମଣି ଶଳାକୁ ଲକ୍ଷ୍ୟକରି ଗାଇଦେଲେ—

**ଆରେ ଚହ୍ଣା !**
**ଝିଣ୍ଟା ଲଣ୍ଟା ତଳେ ନ କର ହ୍ଣା**
**ତୋହର ଭଉଣୀ ମୋହର ରାଣୀ**
**ତଉଣରେ ଦେଲା ଆଣ୍ଠୁଏ ପାଣି ।**

ସଭାଜନେ କହିଲେ—ନାଇଁ ନାଇଁ ଅବଧାନ ! କିଛି ଅସୁବିଧା ତ ହୋଇ ନାହିଁ । ପାଗଯୋଗ ସବୁ ସୁବିଧା ହୋଇଛି । ଏ ପାକ କ'ଣ ବିଗିଡ଼ିବ ?

---

ଚହ୍ଣା—ଯଦୁମଣିଙ୍କ ଶଳାର ଡାକନାମ । ଝିଣ୍ଟା—ଶିମ୍ବ । ଲଣ୍ଟା—ଲଉ, ଲତା । ତଉଣ—ପରିବା ତରକାରି, ଅପର ନାମ ମହୁର ।

ବଗୁଲି ଖଞ୍ଜନାର ମାନ, ଗର୍ବ ରକ୍ଷାହେଲା । କେହି କୌଣସି ସମାଲୋଚନା ନ କରି ଖୁସିରେ ଖାଇ ଏତିକିମାତ୍ର ଚାଲିଗଲେ ।

## ୨୧—ଘଣାରେ ଶାବଳଦିଆ

ଯଦୁମଣିଙ୍କ ନିଜ ଗାଁ ଇଟାମାଟିରେ କାହ୍ନୁ ସାହୁ ବୋଲି ଗୋଟିଏ ତେଲି ବେପାରୀ ଥାଏ । ତାର ଅଚଳାଚଳ ସମ୍ପତ୍ତି । ସେ ଏପରି କୃପଣ ଯେ ଦୁଆରେ କୁଆ, ଶୁଆ ବସେଇ ଦିଏ ନାହିଁ । କେବେହେଲେ ଭଲଦ୍ରବ୍ୟ କିଛି ନ ଖାଇ ମାଣ୍ଡିଆଜାଉ ପ୍ରଭୃତି ନିକୃଷ୍ଟ ଖାଦ୍ୟ ଖାଇ ଧନ ସଞ୍ଚୟ କରି ଚାଲିଥାଏ । ତା ଭାରିଯା କେବେ କପରି ଡାଲି ଟିକିଏ ରାନ୍ଧିଲେ ସେ କେବେ ସହିପାରେ ନାହିଁ । ଦିନତମାମ ଅନର୍ଥ ଲଗାଏ । କହେ—ଆମେ ପୁଣି ମଣିଷ ଯେ ଆମ ଜିଭରେ ଡାଲି ଲାଗିବ ?

ଏତେବଡ଼ ଧନୀ ହେଲେହେଁ ଗାଁରେ ପଇସାଏ ସୁଦ୍ଧା କାହାକୁ ଧାରି ଉଧାର ଦିଏ ନାହିଁ । ଯେବେ ଦିଏ, ଯେଉଁ ଦିନକୁ ବାଇଦା କରିଥିବ ସୁଧ ସହିତ ନ ଦେଲେ ଖିଷଣ ହୁଜୁତ ବେଇଜତ କରିଥାଏ ।

ବର୍ଷେ ଦୁର୍ଭିକ୍ଷ ପଡ଼ିଥାଏ । ଯଦୁମଣି ବଡ଼ କଷ୍ଟରେ ଥାନ୍ତି । ଏପରି ଦିନେ ହେଲା ଯେ ଦୁଆରେ ବନ୍ଧୁବାନ୍ଧବ ପହଞ୍ଚିଛନ୍ତି—ଘରେ ପଇସାଟିଏ ମଧ୍ୟ ନାହିଁ । ଅଭାବ ହେତୁ ଯଦୁମଣି ତା ଦୁଆରକୁ କିଛି ଟଙ୍କା ଧାର ମାଗି ଯାଇଥିଲେ । ସେ ତ କିଛି ହେଲେ ଦେଲା ନାହିଁ, ବରଂ ଗାଳି ଦେଲା । ତାହା ଯଦୁମଣିଙ୍କୁ ବଡ଼ ବାଧିଲା । ସେ ତ ସହିବାବାଲା ନୁହନ୍ତି । ଗୋଟିଏ କବିତା ତା' ନାଁରେ ରଚନା କରିଦେଲେ ଏବଂ ତାହା ହୁରିଆ ଟୋକାଙ୍କୁ ଶିଖାଇଦେଲେ—

**ଘଣାରେ ଶାବଳଦିଆ**
**ଜାତି ରୀତି ବଳଦିଆ**
**ଭାରିଯାକୁ ବୋଲେ ଘରୁଡୁ ଭାରିଯା**
**ଦେଖି ମନ ହଳଦିଆ ।**

ସେ ତେଲିର ଘଣା ଥାଏ, ପୁଣି ବଳଦ ଉପରେ ଲଦନ ନେଇ ବେପାର କରେ । ଏ ଗୀତ ପ୍ରଚାର ହେବାରୁ ସମସ୍ତେ କହିଲେ ଯେ କାହ୍ନୁ ସାହୁ ତା ଭାରିଯା ଗୁହ ନିତି ତଲାସ କରୁଛି । ଯେବେ ସେ ଡାଲି, ତିଅଣ ଖାଇଥିବ ଲୁଚେଇକରି, ନିଶ୍ଚେ ତାହା ହଳଦିଆ ଦେଖାଯିବ । ନ ହେଲେ ମାଣ୍ଡିଆ ଜାଉରେ ସେ ରଙ୍ଗ କାହୁଁ ଆସିବ ?

---

ଶାବଳ—ଘଣାରୁ ଶାବଳଦ୍ୱାରା ତାଡ଼ି ପିଡ଼ିଆ ବାହାର କରାଯାଏ । ବଳଦିଆ—ବଳଦ ଲଦନ ଯେ ବୁହାଏ । ଭାରିଯା—ସ୍ତ୍ରୀ । ଭାରି—ଯା—ବାହାର ଯା, ପଳା ।

ଏଥିରେ କାହ୍ନୁ ସାହୁ ଅତି ଲଜ୍ଜିତ ହେଲା । ଅପମାନର ହୋଇ ହେନେ ଉକାଇ ତା ଝିଅ ସାଥିରେ ଯଦୁମଣିଙ୍କ ଭାଣଜାକୁ ସଂଗାତ ବସାଇ ସାମୟିକ ଧାରଜଧାର ଦେଇ ମାନ ରଖିଲା ।

## ୨୨—ଦେବ ଦେବଙ୍କର ବାହନ ପଛୁଆଡ଼ୁ ପାଇଲି

ଭଲ ଜମି ଖଣ୍ଡିଏ ମିଳିବାରୁ ଯଦୁମଣିଙ୍କୁ ରାଜା କହିଥିଲେ—ଜମି ଖଣ୍ଡି ଏବେ ମନକୁ ପାଇଲା ତ ?

ଯଦୁମଣି କହିଥିଲେ—ଦୋଉଙ୍କ ଅମୃତ ନଜର ପଡ଼ିଲା ସତ, ତେବେ ମୁଁ ସେ ଜମିରୁ କ'ଣ ପାଉଛି ? ଭାଗୁଆର ତିନ ଭାଗ ନେଲେ ମୁଁ ଭାଗେ ପାଉଛି । ଖାଲି ଅଧା ଭାଗ ସିନା କଥାରେ ରହୁଛି । ଧୂଳି ମୁଞ୍ଜିଏ ଭାଗ କିଏ କାହାକୁ ଦଉଛି ? ହଳିଆ ମୁକୁଳରୁ, କଟଲଇ ବୋହୁ ବୋହୁ, ଆଙ୍କୁରାରୁ, ଗଦାରେ ଲଦୁ ଲଦୁ, ଧାନ ଭାଡ଼ି ତଳରୁ, ପାଞ୍ଚ ଆଙ୍ଗୁଳିଆରୁ, ମେଡ଼ି ମୂଳରୁ, ନାଳ ଅଗାଡ଼ରୁ, ବହନ ନାଁରୁ ପତଣି ପ୍ରକାରେ ନାନା ବାଟରେ ଋଇତ ନେଇଯାଉଛି ।

ରାଜା କହିଲେ—କିଆଁ ? ତୁମେ ତାହା ନିଜେ ଚାଷ କରୁ ନାହିଁ ?

ତାହା ଶୁଣି ଯଦୁମଣି କହିଲେ—ଦୋଉ ବସ୍କରଲେ ଚଷିବ । ହଳଟି ତ ଭାଜିଯାଇଛି, ଧନ କାହିଁ ଯେ ବଳଦ କିଣିବ ?

ରାଜା ତୁରନ୍ତ ଆଜ୍ଞା ଦେଲେ—

ଆମେ ହଳେ ବଳଦ ତୁମ୍ଭଙ୍କୁ ନିଶ୍ଚୟ ଦବା—ଦବା ।

କିନ୍ତୁ ଚାଷପାଣି ବରଷିଲା । ରାଜା ହୁକୁମ ଦେଲେ ମଧ୍ୟ ବେଭାରୀମାନେ ତାହା ଶୁଣିଲେ ନାହିଁ । ବିଚରା ଯଦୁମଣି ଋଇତଙ୍କଠାରୁ ଜମି ଛଡ଼େଇ ଆଣି ନିଜେ ଚଷିବାକୁ ରଖି ହଇରାଣରେ ପଡ଼ିଲେ । ଥରକୁ ଥର ଚାଷ ବତର ଖସିଯିବାରୁ ସେ ବଳଦ ନ ପାଇ କବିତାଟିଏ ଲେଖି ରାଜାଙ୍କ ଗୁମୁକୁ ପଠାଇଦେଲେ—

**ଦବା ଦବା ବୋଲି ବୋଇଲେ ବରଷିଲେ ଜଳଦ**
**ବଲ୍ଲ ମାଣ କେତେ ଚଷନ୍ତି ଦେଇଥିଲେ ବଳଦ ।**
**ଦେବେ ଦେବେ ବୋଲି ଯାହା ମୁଁ ଜଗତରେ କହିଲି**
**ଦେବଦେବଙ୍କର ବାହନ ପଛଆଡ଼ୁ ପାଇଲି ।**

ଦେବେ—ରାଜା । ଦେବ ଦେବ—ଶିବ । ଦେବ ଦେବ ବାହନ—ବୃଷଭ । ପଛଅଡ଼ୁ ପାଇଲି —ଶିବ ଦର୍ଶନରେ ବୃଷଭ ଅଣ୍ଡ ସ୍ପର୍ଶ କରାଯାଏ ।

ରାଜା ଏ କବିତାଟି ପଢ଼ି ଏକାନ୍ତ ଲଜ୍ଜିତ ହୋଇ ଖମାର କାର୍ଯ୍ୟୀ ପାଟଯୋଷୀଙ୍କୁ ଧରାଇ ଆଣି ତୁରନ୍ତ ହଳେ ଦାମୁଡ଼ି ବଳଦ ପଠାଇଦେଇ କହି ପଠାଇଲେ—ମହାଦେବଙ୍କ ବାହନ ପଛଆଡ଼ ନ ଛୁଇଁଲେ କେଉଁ ଦେବତା ଭଲ ଶୁଭ ଫଳ ପାଉଛନ୍ତି ? ଯଦୁମଣି ତାହା ଶୁଣି ରାମୁଙ୍କୁ ଜଣାଇ ପଠାଇଲେ—ପାଟ ବାରୁଆଳ ଲଡ଼ି କେତେ ସହିବ ଆଜ୍ଞା ? ରାଜା ଏହାର ଅର୍ଥ ବୁଝିଲେ ଯେ ବାରୁଆଳ କଳହକାରୀ ସ୍ତ୍ରୀକୁ ବୁଝାଏ । ତେଣୁ ଯୋଷା ସେଥିରୁ ବାହାରିବାରୁ ଯଦୁମଣି ପାଟଯୋଷୀକୁ ଲକ୍ଷ୍ୟ କରି ଏହା ନିଷ୍ଠୁର କହିଛନ୍ତି ଭାବି ପାଟଯୋଷୀଙ୍କୁ ତୁରନ୍ତ ବଳଦ ନ ଦେବାରୁ ଜରିମାନା ଦେବାକୁ ଆଜ୍ଞା କଲେ ।

## ୨୩—ଲୁତାପରି କରି ଫିଙ୍ଗିଦେଲା

ଯଦୁମଣିଙ୍କର ମାତୃଶ୍ରାଦ୍ଧ ବୈଶାଖ ମାସରେ । ବରଷେ ଅତି ଅଭାବ ପଡ଼ିବାରୁ ଶ୍ରାଦ୍ଧ କପରି କରିବେ ଭାବି ଭାବି ଚିନ୍ତିତ ବ୍ୟସ୍ତ ହୋଇ ନୂଆଗଡ଼ର ରାଜଗୁରୁ ସାମନ୍ତଙ୍କୁ କହିଲେ—

**ଆ-ଶ୍ରାଦ୍ଧ, ଆ-ଶ୍ରାଦ୍ଧ ବୋଲି ବୋଲୁ ନାହିଁ**
**ଶନିବାର ଦିନ ଆସିବ**
**ଆଶ୍ରାଧ ଆଶ୍ରାଧ ବୋଲି ସେ ବୋଲୁଛି**
**ସେ ତାପ ଆପଣ ନାଶିବ ।**

ମୋର ଯେପରି ଅଭାବ ଶ୍ରାଦ୍ଧ ଆସୁ, ଶ୍ରାଦ୍ଧ ଆସୁ ଏ କଥା ମୁଁ ବେବେ ବୋଲୁ ନାହିଁ । କିନ୍ତୁ ତାହା ତିଥି ଅନୁସାରେ ଆସନ୍ତା ଶନିବାର ଦିନ ଆସିଯିବ । ଆଶ୍ରା ଧର, ଆଶ୍ରା ଧର, ସେହି ମୋର ପିତୃଶ୍ରାଦ୍ଧ ମୋତେ ପୂର୍ବରୁ ସୂଚନା ଦେଇ ରହିଛି । ନ ହେଲେ ମୁଁ ବଡ଼ ଲଜ୍ଜିତ ହେବି । ଆପଣ ମୋର ଏ ଦୁଃଖ ନିବାରଣ କରିବା ହେବେ ।

ରାଜଗୁରୁ ଏକାନ୍ତ ସତ୍‌ସ୍ୱଭାବ, ଧୀର, ଜ୍ଞାନବନ୍ତ ବ୍ୟକ୍ତି ଥିଲେ । ସେ ଏହି କବିତାଟି ପଢ଼ି ତୁରନ୍ତ ତାଙ୍କ ଗୁମାସ୍ତା ମଧୁସୂଦନ ଶତପଥୀଙ୍କୁ ଶ୍ରାଦ୍ଧ ନିମିତ୍ତ ପାଞ୍ଚଟି ଟଙ୍କା ଦେବାକୁ ଗୋଟିଏ ହୁକୁମନାମା ତାଳପତ୍ରରେ ଲେଖିଦେଲେ ।

ଯଦୁମଣି ଗୁମାସ୍ତା ଶତପଥୀଙ୍କ ନିକଟରେ ଦେହିଙ୍କ ଉକ୍ତ ଲେଖାଟି ଦେବାମାତ୍ରେ ସେ ଟଙ୍କା ନ ଦେଇ ଏଣୁତେଣୁ ନାନା କଥା କହିବସିଲେ । ରାଜଗୁରୁଙ୍କର ବହୁତ ଖର୍ଚ୍ଚ ବଢ଼ି ରହିଛି, ଏକ୍ଷଣି ପଇସା ଗୋଟିଏ ହେଲେ ନାହିଁ, ଦେଖିବା ପଛେ ଆସିବ, କେବେ ସୁବିଧା ହେଲେ କିଛି ଦବା । ଏପରି କଥାମାନ କହି ଟାଳଟୁଳ କରିବାରୁ

ଯଦୁମଣି ସେଠାରୁ ଫେରିଆସି ରାଜଗୁରୁଙ୍କୁ ବିନମ୍ରରେ ପ୍ରଣାମ କରି ଏତିକି କହି ବିଦାୟ ମାଗିଲେ—

**ମଧୁସୂଦନ ଶତପଥୀଙ୍କର**
**ମଧୁ ସୂଦନ ରୀତିଟି ନିକର**
**ନବ ଦୁର୍ଗନାଥ ନଟକଣିକୁ**
**ଲୋଟନ୍ତି ତବ ଚରଣ ତଳକୁ**
**ବେଖାତିର ଦେଇଛି ତାକୁ**
**କୁତା ପରି କରି ଫିଙ୍ଗିଦେଲା ତବ**
**ହସ୍ତାକ୍ଷର ମୁକୁତାକୁ ।**

ରାଜଗୁରୁ ଏହା ଶୁଣି ବଡ଼ ବ୍ୟସ୍ତ ହୋଇ ଶତପଥୀଙ୍କୁ ଡକାଇ ଆଣି ଖୁବ୍ ଧମକ ଦେଇ ତୁରନ୍ତ ପାଞ୍ଚ ଟଙ୍କା ଦିଆଇଦେଲେ । ଶତପଥୀଏ ସେଦିନୁ ମଦୁଆ ବୋଲି ଅଭିହିତ ହେଲେ ।

## ୨୪—ଘେଟିକି ଯଦୁମଣି ହୋଇବି ଭେଣ୍ଡା

ଥରେ ଯଦୁମଣିଙ୍କୁ ବାତ ଧରିଲା । ମିରୋଗ ହେଲେହେଁ ସେ ଟିକିଏ ଅଧିକ ଖାଦ୍ୟପ୍ରିୟ ଏବଂ ନିଜ ବନିତା ପ୍ରତି ଅଧିକ ଶ୍ରଦ୍ଧାଶୀଳ ଥିଲେ । ଶରୀରର ମଜ୍ଜା ଓ ଶୁକ୍ର ଅଭାବରୁ, ଏଣେ କଠୋର ପରିଶ୍ରମ କରିବାରୁ ତାଙ୍କର ବାୟୁ ବୃଦ୍ଧି ହୋଇ ସର୍ବାଙ୍ଗ ପୀଡ଼ା ହେଲା । ତାପରେ ଅଙ୍ଗମାନ ଅଚଳ ହୋଇଗଲା ।

ବହୁ କଷ୍ଟରେ ଛମାସ ଶେଯରେ ରହି, ନାନା ଔଷଧ କରି, ବହୁ ସେକ ଦେଇ, ତେଲ ମାଲିସ କରି ଟିକିଏ ଚଲାବୁଲା କରିପାରିଲେ । କିନ୍ତୁ ଅଧିକ ପଥ ଯାତାୟାତ କରିବାରେ ଅସମର୍ଥ ହୋଇ ନିଜର ଦୁର୍ଦ୍ଦଶା ରାଜାଙ୍କୁ ଜଣେଇ ପଠାଇଲେ ।

ରାଜା କହି ପଠାଇଲେ, କଣ ତୁମର ଲୋଡ଼ା ଲେଖିଲେ ତାହା ନିଶ୍ଚୟ ଦେବି । ଯଦୁମଣି ପୁଣି ଜଣେଇଲେ ମୁଁ ମୋତେ ଗୋଟିଏ ଘୋଡ଼ା ଦାନକରିବା ହେଉନ୍ତୁ ।

---

ମଧୁ—ମଦ୍ୟ । ସୂଦନ—ଶେଷ କରିବା, ପାନ । କୁତା—କୁକୁର । ହସ୍ତାକ୍ଷର ମୁକୁତା—ମୁକ୍ତାନିନ୍ଦ ହସ୍ତାକ୍ଷର । ନଟକଣି—ଶିର ପଗଡ଼ିର ଝୁଲ ।

ମଧୁସୂଦନ ଶତପଥୀଙ୍କର ମଦର ରୀତି ଦେଖନ୍ତୁ । ଆପଣଙ୍କ ପାଦତଳେ ନବଦୁର୍ଗନାଥଙ୍କ ପଗଡ଼ିର ଝୁଲ ନତ ହୁଏ । ଅଥଚ ସାମାନ୍ୟ ବେଖାତିର ଜଣେ କୁକୁରକୁ ଧକାମାଇଲା ପରି ଆପଣଙ୍କ ହୁକୁମ ନ ଶୁଣିଲା ।

ରଜା ପୁଣି ପଚ୍ଚରି ପଠାଇଲେ—

ତୁମେ କି ପ୍ରକାର ଘୋଡ଼ା ଚାହୁଁଛ ?

ଯଦୁମଣି ତାର ଉତ୍ତରରେ କବିତାଟିଏ ରଚନା କରି ତାହା ତାଳପତ୍ରରେ ଲେଖି ପଠାଇଦେଲେ—

**ନୋହିବ ହରିଣ ନୋହିବ ଗାଈ**
**ଘୋଡ଼ା ନାମ ବହି ହୋଇବ ମାଈ**
**ପିଇବ ତୋରାଣି ଖାଇବ କୁଣ୍ଡା**
**ତେବେ ଯଦୁମଣି ହୋଇବ ଭେଣ୍ଡା ।**

ଏହା ରାଜା ମହୋଦୟ ପାଠକରି ଏକାନ୍ତ ପ୍ରୀତହୋଇ ତାଙ୍କ ଅଶ୍ୱଶାଳରୁ ଗୋଟିଏ ସୁଧାର ଘୋଡ଼ୀ ତାଙ୍କୁ ଦାନ କରିଥିଲେ । ଉକ୍ତ ଘୋଡ଼ାରେ ବସି ସେ ରାଜ୍ୟାନ୍ତରକୁ କେତେବର୍ଷଯାଏ ଯାଇ ଆସିପାରୁଥିଲେ । ଉକ୍ତ ଘୋଡ଼ୀର ଦେହର ରଙ୍ଗ ଧଳା ଥିବାରୁ ଯଦୁମଣି ତାର ନାମ ଶ୍ୱେତଚମ୍ପା ଦେଇଥିଲେ । ଶ୍ୱେତଚମ୍ପା ଯଦୁମଣିଙ୍କ ଉପସ୍ଥିତିରେ ମୃତ୍ୟୁ ବରଣ କରିବାରୁ ସେ ତାକୁ ସମାଧି ଦେଇ ସେଠାରେ ଗୋଟିଏ ଶ୍ୱେତଚମ୍ପା ଗଛ ରୋପଣ କରିଥିଲେ । ଗଛଟି ଆଉ ନାହିଁ; କିନ୍ତୁ ଗୋଟିଏ ଜମିର ଡାକ ଶ୍ୱେତଚମ୍ପା ରହିଛି ।

## ୨୫—କେଉଁଠାରେ ଖଡ଼୍ଗ, କେଉଁଠାରେ କରୁଣାବାରିଧି

ଦିନେ ନୂଆଗଡ଼ ଜଗନ୍ନାଥ ମହାପ୍ରଭୁଙ୍କର ଏକାଦଶୀ ସିଙ୍ଗାର ଥିବାରୁ ଯଦୁମଣି ପାହାନ୍ତାରୁ ସ୍ନାନସାରି ଆସିଥିଲେ । ବଲ୍ଲଭ ବଢ଼ିଲେ ସିଙ୍ଗାର ସରିଲେ ଠାକୁରଙ୍କ ମାଘସ୍ନାନ ସରି ସକାଳ ଧୂପ ବଢ଼ିବ । ତେଣୁ ବଲ୍ଲଭ ବଢ଼ି ନ ଥିବାରୁ ରାଜାଙ୍କ ଉଆସ ଆଡ଼େ ଚାଲିଗଲେ । ଦେଖିଲେ, ରାଜାଙ୍କର ନିତ୍ୟକର୍ମ ହେଉଛି । ସେ ସେଠାରେ ବହୁତ ସମୟ ଅପେକ୍ଷା କଲେ । ରାଜା ବସି କି ରହି ଏପରି କିଛିମାତ୍ର ପ୍ରକାଶ କଲେ ନାହିଁ । ପୁରୋହିତମାନେ ସ୍ତବସ୍ତୁତି ଗାନ କରୁଥାନ୍ତି ।

ରାଜାଙ୍କ କେତେକ ଧାତୁ ବିଗ୍ରହଙ୍କର ଯଥାବିଧିରେ ପୂଜା ହେଉଥାଏ । ଧୂପ, ଦୀପ, ନୈବେଦ୍ୟ ସରିଲା । ସପ୍ତାବର୍ତ୍ତୀ ଦିଆଗଲା । କର୍ପୂରାବର୍ତ୍ତୀ ଦିଆଯିବାରେ

ହରିଣ ପରି ଚଞ୍ଚଳଗତି ହୋଇ ନ ଥିବ କି ଗାଈ ପରି ଏକାନ୍ତ ମଠୁଆ ହେବ ନାହିଁ । ଘୋଡ଼ା ନାଁରେ ସେ ମାଈଟିଏ ହେଲେ ଚଳିବ । କୁଣ୍ଡା ଖାଇ ତୋରାଣି ପିଇଲେ ଯଦୁମଣି ଭେଣ୍ଡା ହୋଇଯିବ, ତା ଉପରେ ଚଢ଼ି ଚଲବୁଲ କରିବାରୁ ଦାନା ଦେବାକୁ ତାର ଶକ୍ତି କାହିଁ ?

ପୂଜା ଶେଷ । ସେତିକବେଳେ ରାଜା ସାଷ୍ଟାଙ୍ଗ ପ୍ରଣାମ କଲେ । ଯଦୁମଣି ପଛରେ ଥାଇ ସ୍ତବ ଆରମ୍ଭିଲେ—

**କେଉଁ ଠାରେ ଖଡ଼ଗଡ଼ୁ**
**କେଉଁ ଠାରେ ମୁଦ**
**କେଉଁ ଠାରେ ବୋଲୁଅଛ**
**କରୁଣାବାରିଧି ।** *

ରାଜା ହସରେ ଫାଟିପଡ଼ିଲେ । କହିଲେ ଯେ ଦେବତା ପ୍ରସନ୍ନ ହେବା ବେଳେ ପଚାରୁଛୁ, ତୁମେ ସର୍ଦ୍ଦି କପର ପୋଛୁଛ ‡‡ ? ହେ ଯଦୁମଣି, ତୁମକୁ ପାରିହେବ ନାହିଁ । ତୁମେ ଧାତୁବିଗ୍ରହରୂପୀ ଦେବତାଙ୍କୁ ସୁଦ୍ଧା ଏକାବେଳେ ମାନୁ ନାହଁ ଯେ ? ଏହା କଣ ସମୁଚିତ ?

ସେ କହିଲେ—ଆଜ୍ଞା ! ପରମ୍ପରାଶ୍ରୁତ ଯେ—

**ଶିଳା ପଥର କଗା କାଠ**
**ଆଉ ଦେବତା ମାଠ ମାଠ ।**

ଆଉ ଦେବତା ସବୁ ତ ଧାତୁରେ ମଠାହୋଇ ଗଢ଼ାହେବେ । ମୁଁ ନ ମାନିବି କପର ? ଆପଣ ମାନବେ, ମୋ ବୋପା ମାନବ, ମୋ ଗୁରୁଜନ ମାନବେ, ମୁଁ ବା କ ଛାର ? ତେବେ ସେ ପ୍ରକୃତରେ ଯାହା ତା' ତ ପୁଣି କହିବା ? ଏହା ତ ମୋର ଗର୍ବ ନୁହେଁ, ଏହା ଯେ ଗାଳ ମାତ୍ର । ରାଜା ଏହା ଶୁଣି ଆନନ୍ଦିତ ହେଲେ । ଯଦୁମଣି ଚିରିଲୁଗା ପିନ୍ଧି ଥିବାରୁ ବସ୍ତ୍ର ହଳେ ଦାନକଲେ । ତା ଦେଖି ସେ କହିଲେ—ଗାଳ ନ ଖାଇଥିଲେ ମୁଁ କଏ, ନୂତନ ବସ୍ତ୍ର କଏ ?

---

* କେଉଁଠାରେ ଧାତୁରେ ଖଡ଼୍, ଗଡ଼୍ ହୁଏ, କେଉଁଠି ବା ମୁଦ ହୁଏ, କେଉଁଠି ବା ଦେବତାର କରୁଣାସାଗର ମୂର୍ତ୍ତି ଗଠିତ ହୋଇଥାଏ । ‡‡ ହୟଗ୍ରୀବ ଦେବତା ପ୍ରସନ୍ନବେଳେ ତାଙ୍କୁ ଯଦୁମଣି 'ତୁମ ଘୋଡ଼ା ମୁହଁର ସର୍ଦ୍ଦି କପର ପୋଛୁଛ ? ଘୃତ ହାତରେ ତ ଘୃତଟି ପଦାର୍ଥ ଧରିଛ' —ବୋଲି ପଚାରିବା ପ୍ରବାଦ ରହିଛି ।

# ୨୭—ଦରଜି ଝିଅର ବିଧୁ

ନୂଆଗଡ଼ ଗଡ଼ଦାଣ୍ଡ ପାଖରେ ଗୋଟିଏ ଦରଜି ଘର ଥିଲା । ସେ ଟିକିଏ ଖାନଦାନ ଲୋକ । ଖୋର୍ଦ୍ଧାରେ, ପିପିଲିରେ ତାହାର ସ୍ୱତନ୍ତ୍ର ବ୍ୟବସାୟ ଚଳୁଥିଲା ।

ତା'ଘରେ ବିଧୁ ନାମରେ ଗୋଟିଏ ଯୁବତୀ ଝିଅ ଥିଲା । ସେ କନ୍ୟାର ରଙ୍ଗ, ଗଠନର ପଟାନ୍ତର ନ ଥିଲା । ସେ ବହୁ ସମୟରେ ଦାଣ୍ଡ ପାଖକୁ ଆସି ଛିଡ଼ା ହେଉଥିଲା । ରୂପରେ ବିଧୁ କେବଳ ସୁନ୍ଦର ନ ଥିଲା, ସମସ୍ତ ଗୁଣରେ, ଏମନ୍ତକି ବିଦ୍ୟାରେ ମଧ୍ୟ ଅତି ଉପଯୁକ୍ତ ଥିଲା । ତାର ଡାକନାମ 'ବିଧୁ' କିନ୍ତୁ ପ୍ରକୃତ ନାମ ବିଦ୍ୟୁଲ୍ଲତା ।

ରାଜା ଥରେ ଯଦୁମଣି ସହିତ ମେଢ଼ିଆ ଡାଗରେ ତାମଯାନ ଚଢ଼ି ଯାଉ ଯାଉ ତାର ଅଲୌକିକ ରୂପ ଗଠନ ଦେଖି ସ୍ତମ୍ଭୀଭୂତ ହୋଇ ସଂଯମ ରକ୍ଷା କରି ଯଦୁମଣିଙ୍କୁ ପଚାରିଥିଲେ—

ଏ ଯୁବତୀଟି କିଏ ? ତୁମ୍ଭେ କହିପାରିବ କି ? ଯଦୁମଣି ତୁରନ୍ତ ତାମଯାନ ପାଖେ ପାଖେ ଥାଇ ଗାଇଥିଲେ—

**ଦେଖିଲି ବାଳାକୁ ସେ ପ୍ରେମଶାଳାକୁ ଦଳାକଜ୍ଜଳ କୁନ୍ତଳାକୁ**
**ଲମ୍ବାଇ ଗଳାକୁ ତା'ମୋତି ମାଳାକୁ ଚାହିଁ ଯେ ଥିଲି ଚପଳାକୁ**
**ବାଳା ଯେ**
**କର ଭର ଦେଇ ଶିଳାକୁ**
**ନାସାର ଉପରେ ନଚାଉ ଥିଲି ତା ବାଙ୍କେଣି ନୂପୁର ବଳାକୁ ।**

ରାଜା ସେ କନ୍ୟାଟିକୁ ପାଇବା ଲାଗି ନିରନ୍ତର ଝୁରି ହେଲେ କିନ୍ତୁ କିପରି ସେ ପାଇବେ, ତାହା ସୁବିଧାଜନକ ହେଲା ନାହିଁ । ତାର ବାପ, ଭାଇ, ମାଆ ସମସ୍ତେ ଖାସମାହାଲ ଲୋକ ଏବଂ ଅତି କଡ଼ା ମଧ୍ୟ ଥିଲେ । ଧନ ପ୍ରଲୋଭନ ସେ ପରିବାର ନିକଟରେ ଜଣାଇବାକୁ କେହି ମଧ୍ୟ ସାହସୀ ହେଉ ନ ଥିଲେ ।

ତେଣୁ ଯଦୁମଣିଙ୍କ ଉକ୍ତ କବିତା ଗାଇ ରାଜା ନିଜର ମନସ୍ତାପ ଭୁଲୁଥିଲେ ।

---

ଶିଳା—ଦୁଆର ବନ୍ଧର ଉପରେ ଥିବା ବାନ୍ଧ । ନାସା—ଚଉକାଠର ତଳ ଶାକର ପଟା । ( ସେ ଝୋଜ଼ୀ ବେକ ଲମ୍ବାଇ ଦୁଆରବନ୍ଧ ଉପରେ ହାତ ଦେଇ ତଳ ଶାକର ପଟାରେ ପାଦ ନଚାଇବା ବେଳର ଦୃଶ୍ୟ । ଏଣେ ବିଦ୍ୟୁତ୍ ଚମକ ଦେଖି ଆଖି ନଚାଇବାର ଦୃଶ୍ୟ କିପରି ମନୋରମ ବର୍ଣ୍ଣନା କରିହେବ ନାହିଁ । )

# ୨୨—ଜବା ଅଧରୀ

ବେଙ୍କଟବେଳ ରାଜା ଉକ୍ତ ଦରଜି ଯୁବତୀ ପ୍ରତି ଆସକ୍ତ ଉତ୍ତ ଅଧିକ କାମାର୍ତ୍ତ ହୋଇ ପଡ଼ିଥିଲେ । ନାନା ସୂତ୍ରରେ ଚେଷ୍ଟା କରି କୃତକାର୍ଯ୍ୟ ହୋଇପାରି ନ ଥିଲେ । ଶେଷକୁ କିଛିଶହମାଣ ଜମି ଖମାରରୁ ଦେବାକୁ ରାଜି ହେଲେ ମଧ୍ୟ ତା ମାଆ ରାଜି ହେଉ ନ ଥିଲା । ଫୁଲ ବେନ୍ଧି କରି ସାଆନ୍ତାଣୀ ସ୍ୱରୂପ ରଖିବାକୁ ରାଜାଙ୍କର ଇଚ୍ଛା । ବାପ ଓ ଭାଇ ମନରେ ଲୋଭ ଜମି ପ୍ରତି ଘାରିଥିଲା । କିନ୍ତୁ ଏଣେ ସେ ଛନକ୍ଷି ଚତୁରୀ ଟୋକୀର ମନ କେହି ପାଉ ନ ଥିଲେ ।

ଯଦୁମଣିଙ୍କ ଗୀତ 'ଦେଖିଲି ବାଳାକୁ ସେ ପ୍ରେମଶିଳାକୁ' କୌଶଳରେ ତାହା ନିକଟକୁ ପଠାଯାଇଥିଲା । ଯେଉଁ ଝିଅମାନେ ଏଥିରେ ଦୂତୀ ଥିଲେ, ସେମାନେ ଜାଣୁଥିଲେ ଯେ ବଧୂ ଉକ୍ତ ଗୀତ ବାରଂବାର ଶୁଣିବାକୁ ଓ ଗାଇବାକୁ ଗୋପନରେ ଯେପରି ଅନୁରୋଧ କରୁଥିଲା; ସେପରି ଆକୁଳ ମଧ୍ୟ ହେଉଥିଲା ।

ତହୁଁପରେ ରାଜା ତାମଯାନରେ ପ୍ରାୟ ପ୍ରତ୍ୟହ ତାକୁ ଦେଖିବା ଲାଳସାରେ ନଗର ଭ୍ରମଣ କରିଯିବା ବେଳେ ଦୈନିକ ଏହି ଟୋକୀ ସାଥିରେ ଚାରିଆଖି ହେଉଥିବାର କେତେହେଲେ ଜଣା ପଡ଼ୁଥିଲା । ଦିନେ ଯଦୁମଣି ତାମଯାନ ସାଥିରେ ଯାଉଥିଲେ । ଦୂରରୁ ସେହି ସୁନ୍ଦରୀକୁ ଲକ୍ଷ୍ୟ କରି ରାଜା କହିଲେ—

ଯଦୁମଣି ! ପୁଣି ଏହି ସୁନ୍ଦରୀ ରମଣୀମଣି ଲାଗି କିଛି କବିତା ବୋଲାଯାଇ ପାରିବ କି ? ଯଦୁମଣି ସେ ଟୋକୀ ସମ୍ବନ୍ଧରେ ଏ ମଧ୍ୟରେ ଯଥେଷ୍ଟ ତଥ୍ୟ ସଂଗ୍ରହ କରି ସାରିଥିଲେ—ତେଣୁ ସେ ଉଚ୍ଚ ସ୍ୱରରେ ଗାଇଦେଲେ—

**ହେ ରସିକେ ! ମଉଳ ପଛକେ ଯିବ**
**ମଉଳ ନ ଥିବା ଜବାଅଧରୀକି ଅହ୍ଲେଟେ କେ ବରଜିବ ?**
**ଦରଜି କୁଳରେ ସରଜି ଅଛି ଯେ ବଧୂ ସମତୁଲ ହାସ**
**ମରଜି ବୁଝି ମୁଁ ଅରଜି ଦେବାକୁ ପାଉନାହୁଁ ଅବକାଶ ।**

ତାମଯାନ ଚାଲିଗଲା । ରାଜା ଟୋକୀର ଅପାଙ୍ଗ ଚେଷ୍ଟରେ ଅତ୍ୟନ୍ତ କାମାର୍ତ୍ତ ହୋଇ ଆଗେଇ ଗଲେ । ସୁଖର କଥା ଯେ, ହଠାତ୍ ଯଦୁମଣିଙ୍କୁ ଦରଜି ଘରର ଡାକରା ପଡ଼ିଲା । ଦରଜି ଜଣକ କହିଲେ—ଅବଧାନ ! ଅରଜ ପାଇଲି । ଏତେ ଜାଗିର ସେବେ ବଧୂ ତାଙ୍କ ପାଖକୁ ଯାଉ । କିନ୍ତୁ ଆପଣ ତା ସୁଖ ଦୁଃଖ ଲାଗି ଦାୟୀ ରହିବେ । ଏହା ଶୁଣି ଯଦୁମଣି ନୀରବ ରହି ରାଜାଙ୍କୁ ଜଣାଇଲେ ।

ଅରଜ—ଦରଖାସ୍ତ । ମଉଳ—ମସ୍ତକ । ମଉଳ—ପର୍ଯ୍ୟୁଷିତ ।

ଧନେ ରାଜଦ୍ୱାରରୁ ସବାରି ଲାଗିଲା । ସ୍ୱୟଂ ରାଜା ଏବଂ ରାଣୀ ଦରଜ ଦ୍ୱାରକୁ ବିଜେହେଲେ । ଶଙ୍ଖ ହୁଳହୁଳି ଧ୍ୱନିରେ ବଧୂ ରାଜପୁରକୁ ଚାଲିଗଲା । ରାଜା ଏହି ଘଟଣାରେ ଯଦୁମଣିଙ୍କୁ ଦଶ ମାଣ ଜମି ନିଷ୍କର ଦାନ କଲେ ଏବଂ ବଧୂ ନାମରେ ହଜାର ମାଣ ଜମି ଖଞ୍ଜା କରିଦେଲେ । ତାର ବଂଶଧର ଥିବାଯାଏ ତାହା ଭୋଗୁଥିଲେ-ସାମନ୍ତ ଭାବରେ । ଗୁଣ୍ଡିରି ବାଡ଼ି ପାଖେ ସେ ବଂଶ ଥିଲେ । ଦରଜ ଘରକୁ ମଧ୍ୟ ତିନି ଶହ ମାଣ ଜମି ଦିଆହୋଇଥିଲା । ଶୁଣାଅଛି ଯେ ବଧୂ ଚତୁରତାରେ ରାଜାଙ୍କ ହୃଦୟ ଆକାଶକୁ କେବଳ ନୁହେଁ ରାଣୀ ଏବଂ ସମସ୍ତ ପରିଜନଙ୍କୁ ସୁଖୀ କରି ପାରିଥିଲା ।

## ୨୮—ଚମ୍ପା ଫୁଲେ ଦେଲା କଜଳ ବିନ୍ଦୁ

ନୂଆଗଡ଼ ରାଜସଭାକୁ ଥରେ ଜଣେ ନର୍ତ୍ତକୀ ନୃତ୍ୟଗୀତ ପ୍ରଦର୍ଶନ ଲାଗି ନିଜ ଦଳ ବଳ ଧରି ଆସିଥିଲେ । ନର୍ତ୍ତକୀର ନୃତ୍ୟଗୀତରେ ଦର୍ଶକମାନେ ଏକାନ୍ତ ମୁଗ୍ଧ ହୋଇଯାଇଥିଲେ । ଉକ୍ତ ନର୍ତ୍ତକୀ ଦକ୍ଷିଣାଞ୍ଚଳ ମଞ୍ଜୁଷାରୁ ଆସିଥିଲା । ତାର ଚମ୍ପୂ ଗୀତମାନଙ୍କର ଲହରୀ, ତାଳ ମାନ, ଗୋଠ ବାହୁଡ଼ା ପଶୁଙ୍କ କାନରେ ପଡ଼ି ତାଙ୍କୁ ମଧ୍ୟ ବାଟ ବଣା କରିଥିଲା । କାରଣ ଏ ନୃତ୍ୟ ଗୀତ ଶୁଣିବାକୁ ଜନ ସମୁଦ୍ର ମାଡ଼ି ଆସିଥିଲେ । ତେଣୁ ରାଜା ନିର୍ଦ୍ଦିଷ୍ଟ ଦରବାର କକ୍ଷରେ ତାହା ନ କରାଇ ଜଗନ୍ନାଥଙ୍କ ବେଢ଼ାରେ କରାଇଥିଲେ ।

ନର୍ତ୍ତକୀ ଯଥା ବିଧିରେ ବିଦାୟ ନେବାପରେ ଏବଂ ରାଜା ଉଆସକୁ ଫେରିବା ପରେ ତାର ସୌନ୍ଦର୍ଯ୍ୟ, ନୃତ୍ୟଭଙ୍ଗୀ ଆଦି ନେଇ ନାନା ଆଲୋଚନା ଚାଲିଲା । ରାଜପାରିଷଦଗଣ ମଧ୍ୟରେ ଜଣେ ପଣ୍ଡିତ ପାଦପୂରଣ ଲାଗି ସେହି ନର୍ତ୍ତକୀ ସମ୍ବନ୍ଧରେ ଗୋଟିଏ ପାଦ ରଚନା କରି ଗାଇଦେଲେ ।

**ଏହା ଭାବ ବନ୍ଧୁ**
**ଚମ୍ପା ଫୁଲେ ଦେଲା କଜ୍ଜ୍ୱଳ ବିନ୍ଦୁ ।**

---

କଥା—ଭ୍ରମର ଚମ୍ପା ଫୁଲ ଆଘ୍ରାଣ କରେନାହିଁ । ଚମ୍ପକ ବରଣୀ ନାରୀ ଜାଣେ ଯେ ତାକୁ ଭ୍ରମର ରୂପୀ ନାଗର ଆକର୍ଷଣ କରିବ ନାହିଁ । ତାର ଉତ୍କଟ ଗନ୍ଧ ସ୍ୱରୂପ ତାର ଅତ୍ୟଧିକ ଚତୁରତା, ତାର ଉଦ୍ଦାମ ନୃତ୍ୟଭଙ୍ଗୀ ଆଦିରେ ନାଗର ଦୂରେଇଯିବ । କିନ୍ତୁ ଏହାଜାଣି ସେ ନିଜ କପାଳରେ ନାଗର ଭ୍ରମରର ରୂପ ସାମ୍ୟରଖି ତାକୁ ଭ୍ରମର ନିଶ୍ଚୟ ଭଲପାଏ—ଏହି ଆଳରେ ଉକ୍ତ ଭ୍ରମରର ସୂକ୍ଷ୍ମତା ସ୍ୱରୂପ କୃଷ୍ଣ ବର୍ଣ୍ଣର କଜ୍ଜ୍ୱଳ ବିନ୍ଦୁ ଧାରଣ କରିଅଛି ।

ସେତ ନର୍ତ୍ତକୀ, ରୂପାଜୀବା-ଗଣବେଶ୍ୟା । ଶ୍ରେଷ୍ଠ ନାଗର ଭୋଗେ ବୋଲି ପ୍ରାମାଣିକ ଚିହ୍ନ ନ ରଖିଲେ ତାହାର ବୈଶିଷ୍ଟ୍ୟ କିପରି ପ୍ରକଟିତ ହେବ ? ତେଣୁ ସର୍ବଶ୍ରେଷ୍ଠ ନାଗର ତାକୁ ନଛୁଇଁ ପଛେ, ସେ ଛୁଏଁ ବୋଲି ତା ନିଜ ଆତ୍ମ ଦେଖାଇ ହୁଏ, ସର୍ବସାଧାରଣରେ । ତେଣୁ କପାଳରେ ସେହି କୃଷ୍ଣ ବର୍ଣ୍ଣର ବିନ୍ଦୁ ଧାରଣ କରିଥାଏ ।

ଏହି ପଣ୍ଡିତ ଜଣେ ସର୍ବଜ୍ଞ ବ୍ରାହ୍ମଣ ଥିବାରୁ କେହି ପାଦ ପୂରଣ କରି ନ ପାରିଲେ ବହୁ ଅର୍ଥ ପୁରସ୍କାର ଲଭିବେ ଏପରି ଆଶା କରିଥିଲେ । କିନ୍ତୁ ସବୁଙ୍କରୁ ସବୁଙ୍କ ଯଦୁମଣି ହଠାତ୍ ପାଦ ପୂରଣ କରି ଗାଇଦେଲେ—

**ରାକା ପୂର୍ଣ୍ଣ ମୁଖୀ ବାଗ୍ନରେ ମନ**
**ଭ୍ରମର ଏ ପୁଷ୍ପ ନକରେ ପାନ**
**ଚଞ୍ଚଳ ସ୍ତନା ଏମନ୍ତ ବାଗ୍ନରେ**
**ଦେଖିବ ତ ଦେଖି କି ଶୋଭା ଧରେ**
**ଏହା ଭାବ ବନ୍ଧୁ**
**ଚମ୍ପା ଫୁଲେ ଦେଲା କଜ୍ଜ୍ୱଳ ବିନ୍ଦୁ ।**

ପ୍ରକୃତରେ ସେହି ନର୍ତ୍ତକୀ ଚମ୍ପାଫୁଲ ପରି ରଙ୍ଗବିଶିଷ୍ଟା ଥିଲା । ତାର କପାଳରେ କଜ୍ଜ୍ୱଳ ବିନ୍ଦୁଟିଏ ଧାରଣ କରି ଅତ୍ୟଧିକ ଆକର୍ଷଣ ବଢ଼ାଇ ପାରିଥିଲା । କିନ୍ତୁ କ'ଣ ହେବ, ଯେତେ ଭଙ୍ଗୀ ଦେଖାଇ, ଯେତେ ଉତ୍ସନ୍ନ ସୌନ୍ଦର୍ଯ୍ୟ ମଧ୍ୟରେ ଅପାଙ୍ଗ ଢ଼ାଳିଲେ ହେଁ ନାଗରବର ରାଜାଙ୍କୁ ବଶ କରିପାରି ନ ଥିଲା । କାରଣ ତାଙ୍କର ଅବରୋଧରେ ବଧୂ ସମ ସୁନ୍ଦରୀଗଣ ପୂରି ରହିଥିଲେ । ତେଣୁ ସେ ଏ ବିଦେଶିନୀ ପ୍ରତି ଆକୃଷ୍ଟ ହୋଇ ନ ଥିଲେ ।

ପାଦ ପୂରଣ ଲାଗି ଯେଉଁ ପଣ୍ଡିତେ ଆହ୍ୱାନ ଜଣାଇଥିଲେ, ସେ ଏ କଥା ଜାଣିଥିଲେ । ଭାବିଥିଲେ, ସେ ଏହା ଏକା କେବଳ ଜାଣିପାରିଛନ୍ତି । କିନ୍ତୁ ପାଦପୂରଣରେ ଯଦୁମଣି କବିଙ୍କର ଦୂରେକାଷ୍ଟା ଏପରି ଦେଖିପାରି ସେ ମୋହିତ ହୋଇ ଶୁଚିସମ୍ପନ୍ନ ବ୍ରାହ୍ମଣ ହେଲେ ହେଁ ବଢ଼େଇ ଯୁବକକୁ କୋଳାଗ୍ରତ କରି କହିଥିଲେ—'ତୁମ୍ଭେ ମୋର ସୋଦର ।'

ରାଜା ଏ ଘଟଣାରେ ଯଦୁମଣିଙ୍କୁ ଏକୋତ୍ତର ଶତ ମୁଦ୍ରା ଏମନ୍ତକି ଉକ୍ତ ପଣ୍ଡିତଙ୍କୁ ମଧ୍ୟ ଏକୋତ୍ତର ଶତ ମୁଦ୍ରା ଦାନ କରିଥିଲେ ।

## ୨୯—ଉଆଁସରେ ଉଆସରେ ଉଆ ସେରେ

ନୟାଗଡ଼ ରାଜାଙ୍କ ଉଆସ ମଧ୍ୟରେ ଥିବା ବିଭିନ୍ନ ପଟ୍ଟୀ ଦେବୀ ମୂର୍ତ୍ତିମାନଙ୍କୁ ଏବଂ ଦାରୁମୂର୍ତ୍ତିମାନଙ୍କୁ ପ୍ରତି ଅମାବାସ୍ୟାରେ ରଙ୍ଗ କରିବା ବିଧି ଥିଲା । ଜଗନ୍ନାଥଙ୍କ ଚିତ୍ରକାର ଥିବାରୁ ଆଗେ ତାହା ଯଦୁମଣିଙ୍କ ବାପ ବନା ପ୍ରାୟରେ କରୁଥିଲେ । ଯଦୁମଣି ମଧ୍ୟ କେତେ ବର୍ଷ କରିଥିଲେ । କିନ୍ତୁ ଏକଥା ଜଣାପଡ଼ିବାରୁ ରାଜା ମହୋଦୟ ଭଣ୍ଡାର ଘରିଆକୁ ହୁକୁମ ଦେଇଥିଲେ ଯେ—ସେରଟିଏ ଅରୁଆ ଚାଉଳ କୋଠରୁ ସେହିଦିନ ଯଦୁମଣିଙ୍କୁ ଦେବ ।

କିନ୍ତୁ ବେଭାରିମାନେ ଏହା ଦେବାର ସପକ୍ଷରେ ନଥିଲେ । ତେଣୁ ଭଣ୍ଡାର ଘରିଆ ସେହି ସେରକ ଚାଉଳ ଦେବାକୁ ଅମାବାସ୍ୟା ବାସିଦିନ ତାଙ୍କୁ ସକାଳୁ ଦି'ପହର ଯାଏ ବସାଇ ଦେଉଥିଲା । ଏମିତି କି, କେବେ କେବେ ମଧ୍ୟ ନଦେଇ ଭଣ୍ଡାର ବନ୍ଦ କରି ଚାଲିଯାଉଥିଲା ।

ପ୍ରତି ଅମାବାସ୍ୟାରେ ଏକାଦଶୀ । କେତେ ବସିବେ ! କେତେ ମାଗିବେ ? ରଜାଘର ଚାକର ନୌକର ସବୁଜେଡ ଗାଲୁଆ—ଉପର ମୁହାଁ । ଇନ୍ଦ୍ରଚନ୍ଦ୍ରଙ୍କୁ-ମାନନ୍ତି ନାହିଁ ।

ଯଦୁମଣି ଥରେ ଚାଉଳ ନନେଇ ଚାଲିଗଲେ । ତା ମଧ୍ୟ ତାଙ୍କୁ କେହି ଦେଲନାହିଁ । ଅନ୍ୟଥର ମଧ୍ୟ ସେହି ଅବସ୍ଥା । ଏପରି ପାଞ୍ଚସାତ ପାଳି ସେ ନ ନେଲେ ମଧ୍ୟ ଭୁଲରେ ତାଙ୍କୁ କେହି କିଛି କହିଲେ ନାହିଁ ।

ଯଦୁମଣି ମହାପାତ୍ର ଦିନେ ଜାଣିଲେ ଯେ, ରାଜା ସରଘର ଅଡ଼ଙ୍ଗକୁ କାଲି ବିଜେ କରିବେ । ଯୋଗକୁ ସେଦିନ ମଧ୍ୟ ଅମାବାସ୍ୟା । ତେଣୁ ସେ କାମ ସାରିଦେଇ ସକାଳରେ ଆସି ଗୋଟିଏ ଅଜଣା ସ୍ଥାନରେ ବସିରହିଲେ । ରାଜା ଦ୍ୱିପହର ଠେଇ ସେହି ବାଟଦେଇ ଯୋଗଣକୁ ବିଜେ ହେବେ ଏବଂ କିଛି ସମୟ ଭଣ୍ଡାର ବିଷୟରେ ବୁଝାଶୁଝା କରିବେ । ସେତେବେଳେ କେହି ନ ଥିବାର କଥା । କିନ୍ତୁ ହଠାତ୍ ଯଦୁମଣି ଏକ ଖୁଣ୍ଟକୁ ଆଉଜି ବସିଥିବାର ଦେଖି ରାଜା ପଚାରିଲେ— ଏତେବେଳେ କୁଆଡ଼େ ?

ଯଦୁମଣି କହିଲେ—

ଉଆଁସରେ ଉଆସରେ ନାହିଁ ଉଆ ସେରେ ।

ରାଜା ଏହା ଜାଣିପାରି ସରଘରିଆ, ବେଭାରି ସମସ୍ତଙ୍କୁ ଏପରି ଅପମାନ ଦେଲେ ଯେ ପାଞ୍ଚପାଳିର ବାକିକୁ ଭଣ୍ଡାର ଘରିଆ ଦଶପାଳି ହୋଇଥିବ ଭାବି ଦଶ ସେର ସରୁ ଅରୁଆ ଦେଇଦେଲା । ସେଦିନୁଁ ଉକ୍ତ ପଡ଼ରେ ଆଉ ବ୍ୟାଘାତ ଘଟିନଥିଲା ।

ଉଆଁସରେ—ଅମାବାସ୍ୟା । ଉଆସ—ରାଜମହଲ ଉଆସରେ – ଉଆସେରେ—ଉଆ ସେରେ ସେରେ ଚାଉଳ ।

# ୩୦—ଦୁଇ ବାଟି ବିଷ୍ଟା ହେଉ

ଘଟଣା ଚକ୍ରରେ ଯଦୁମଣି ନୂଆଗଡ଼ ରାଜାଙ୍କଠାରୁ ଦୁଇ ବାଟି ଜମି ଜାଗିର ସୂତ୍ରରେ ପାଇଥିଲେ । ଏହି ଦୁଇ ବାଟି ଜମି ପ୍ରାୟ ଦଶ ଏକର ହେବ । ଜାଗିର ଜମିରେ ଏତିକି ସୁବିଧା ଯେ ଟଂକା କର ସେଥିରେ ପଡ଼େନାହିଁ । ଯେଉଁ ଉଦ୍ଦେଶ୍ୟରେ ଜମି ଝଞ୍ଜା ଯାଇଥାଏ ସେହି କାର୍ଯ୍ୟ ସେଥିରେ କେବଳ କରାଯାଏ । କିନ୍ତୁ ଏତିକି ଅସୁବିଧା ଯେ, ଜାଗିରଦାରର ସାମାନ୍ୟ ତ୍ରୁଟି ଦେଖିଲେ ଜମି ଉଚ୍ଛେଦ କରାଯାଇ ସ୍ୱତନ୍ତ୍ର ଜାଗିରଦାରର ବନ୍ଦୋବସ୍ତ କରାଯାଏ । ତେଣୁ ଯଦୁମଣି ନିଜ ଜାଗିର ଜମି ବିଷ୍ଟା ବୋଲି ଜାଗିର ସନନ୍ଦରେ ଲେଖାଇ ନେଇଥିଲେ ।

ଉକ୍ତ ଜମି ସରସ ଦୋଫସଲି ଜମି । ରାଜାଙ୍କ ଖମାର ତଳୁ ଦିଆଯାଇଥିଲା । କିନ୍ତୁ ତାଙ୍କ ଜମି ତଳକୁ ସାମନ୍ତ ସୁରେନ୍ଦ୍ର ସିଂହଙ୍କର ପାଞ୍ଚ ବାଟୀ ସାନ୍ତ ଜାଗିର । ସାଆନ୍ତେ ବଡ଼ଲୋକ । ତାଙ୍କ ହଳିଆ ମୂଲିଆ ମଧ୍ୟ ଉପର ମୁହାଁ । ମରୁଡ଼ି, ସମୟରେ ଯଦୁମଣିଙ୍କ କିଆରରେ ଟୋପେ ପାଣି ରଖେଇ ଦିଅନ୍ତି ନାହିଁ । ହିଡ଼ ହାଣି ଜବରଦସ୍ତି ପାଣି ମୁହାକ ନେଇଯାନ୍ତି ।

ବଗୁରା ଯଦୁମଣି ଏଥିରେ ଅସନ୍ତୁଷ୍ଟ ହୋଇ ସୁରେନ୍ଦ୍ର ସିଂହଙ୍କୁ ବାରମ୍ବାର ଆପତ୍ତି ଜଣାନ୍ତି । ଯେତେ ବିନୟ କଥା କହିଲେ କ'ଣ ହେବ ସାଆନ୍ତଙ୍କ କ୍ରୋଧର ସୀମା ନ ଥାଏ । ସେ ରଜାଙ୍କ ଜାତିପୁଅ । ସେ ସାମାନ୍ୟ ବଢ଼େଇ କଥା ବା ଶୁଣିବେ କାହିଁ ?

ଯଦୁମଣି ଶେଷକୁ ପ୍ରସ୍ତାବ ବାଢ଼ିଲେ ଯେ ଆପଣ ଉଚ୍ଚ ବର୍ଣ୍ଣ ମୁଁ ନୀଚ ବର୍ଣ୍ଣ । ଆପଣ ଉପରେ ରହନ୍ତୁ, ମୁଁ ତଳେ ରହିବି । ଅର୍ଥାତ୍ ଜମି ମୋର ତଳେ ରହୁ । ସାଆନ୍ତେ ସେଥିରେ କର୍ଣ୍ଣପାତ ନ କରି ପ୍ରତିବର୍ଷ ଏପରି ହଇରାଣ କରି ଚାଲିଲେ । ନିରୂପାୟ ହୋଇ ଯଦୁମଣି କବିତାଟିଏ ଲେଖି ରାଜାଙ୍କ ନିକଟକୁ ପଠାଇ ଦେଲେ ।

**ଆଜ୍ଞା ହୋଇଥିଲେ ଦେଉ**
**ଦୁଇ ବାଟି ବିଷ୍ଟା ହେଉ**
**ତହିଁରୁ ପୁଲାଏ ଖାଇବାକୁ ଏବେ**
**ସୁରେନ୍ଦ୍ର ହେଲେଣି କାଉ ।**

ଏ କବିତାଟି ପାଠ କରି ରାଜା ଦୁହିଁଙ୍କୁ ଡକାଇ କଥାଟା ନିଷ୍ପତ୍ତି କରି ଦେଇଥିଲେ । ଯେପରି ମରୁଡ଼ିରେ ଦୁହିଁଙ୍କ ଅଜ୍ଞାତରେ ଏପରି ଘଟଣା ନ ଘଟେ । ଫଳରେ ସେ ଜମିରୁ ଆଉ ହିଡ଼ହଣା ହୋଇ ନ ଥିଲା ।

## ୩୧—ଡୋଡାରୁ ଥୋଡ଼ାଏ ଆଜ୍ଞାହେଉ

ସେକାଳେ ସାଧାରଣତଃ ରାଜା, ରାଜ ପାରିଷଦମାନଙ୍କ ବ୍ୟତୀତ ଧନୀ ନିର୍ଦ୍ଧନ ନିର୍ବିଶେଷରେ ଶୀତ ଜାଡ଼ରୁ ରକ୍ଷାପାଇବା ଲାଗି ବେରୁହାଁ ଓ ସନ୍ତର ନାମକ ତୃଣଦ୍ୱାରା ନିର୍ମିତ ମୁନ୍ଦୁରା ନାମକ ପଟି ପକାଇ ଶୋଇବାକୁ ଏବଂ ଘୋଡ଼ାଇ ହେବାକୁ ଲୋକେ ବାଧ ହେଉଥିଲେ । ଏବେ ମଧ୍ୟ ଦରିଦ୍ର ଶ୍ରେଣୀରେ ସେ ଦୃଷ୍ଟାନ୍ତର ଅଭାବ ନାହିଁ । ଏମନ୍ତକି ଅତି ଦୁଃଖୀ ଶ୍ରେଣୀର ନରନାରୀ ଖଜୁରି ପଟି ମଧ୍ୟ ଏବେ ଘୋଡ଼ାଇ ହେଉଛନ୍ତି ।

କିନ୍ତୁ କି ଆଶ୍ଚର୍ଯ୍ୟ, ଏହି ବେରୁହାଁ ପଟି ଶୀତ କାଳୀନ ଘୋଡ଼ଣୀଷଷ୍ଠୀରୁ ପାଟଲୁଗା ସହିତ ରାଜରାଜେଶ୍ୱର ଠାକୁର ମଧ୍ୟ ଲାଗି ହେଉଥିଲେ । ଏବେ ମଧ୍ୟ ହେଉଛନ୍ତି । ତେଣୁ ଏହି ମୁନ୍ଦୁରାକୁ ଶୀତ କାଳରେ ଏତେ ଆଦରରେ ବ୍ୟବହୃତ କରାଯାଉଥିଲା । ମନେହୁଏ,ପ୍ରଥମେ ଏହା ତଳେ ପକାଇ ଶୋଇଲେ ଉଷ୍ମ ରହିବା ଲକ୍ଷରେ ବ୍ୟବହୃତ ହେଉଥିଲା ଏବଂ ପରେ ଅଭାବ ହେନି ତାହାକୁ ଲୋକେ ଘୋଡ଼ାଇ ହେଲେ ।

ପଦ୍ମମଣି ତୁଳାଶେଜ କରିବାରେ ଅସମର୍ଥ ଥିବାରୁ ତାଙ୍କ ପରିବାର ଲାଗି ବର୍ଷେ ଯୋଡ଼ାଏ ମୁନ୍ଦୁରାର ମୂଲ୍ୟ ମଧ୍ୟ ଯୋଗାଡ଼ କରିପାରି ନଥିଲେ । ଏ ଲଜ୍ଜାର କଥା କପରି କହିବେ ? ତେଣୁ କବିତାରେ ଏପରି ଲେଖି ଜଣେଇଁ ଥିଲେ ରାଜାଙ୍କୁ—

**ଘୋଡ଼ା ଘୋଡ଼ି ହୋଇ ଶୋଇବା ପାଇଁ କି**
**ଘୋଡ଼ା ଘୋଡ଼ିଙ୍କର ଘର**
**ବଣ ତୃଣ ଯୋଡ଼ା ମୁନ୍ଦୁରି ପାହାଡ଼ା**
**ଯୋଡ଼ାଏ ଲୋଡ଼ା ଆମ୍ଭର**
**ଡୋଡାରୁ ଥୋଡ଼ାଏ ଆଜ୍ଞା ହେଉ ମୋତେ**
**ନବଦୁର୍ଗ ଧରେଶ୍ୱର ।**

ଏହାଶୁଣି ରାଜା ତତ୍‌କ୍ଷଣାତ୍ ଦୁଇଟି ଉତ୍‌କୃଷ୍ଟ ମୁନ୍ଦୁରା କବିଙ୍କୁ କିଣାଇଁ ଦେଇଥିଲେ ।

---

ଘୋଡ଼ା ଘୋଡ଼ି—ଫୁଙ୍ଗୁଳା ନର ନାରୀ । ଘୋଡ଼ା—ତୃଣ । ପାହାଡ଼ା—ପ୍ରସରିତ । ଡୋଡା—ଧନ । ଘୋଡଣୀଷଷ୍ଠୀ—ମାର୍ଗଶୀର ଶୁକ୍ଳ ଷଷ୍ଠୀ ।

# ୩୨—ମୋଠାରେ ଦାୟ୍ଯା କା ଠାରେ ନାହିଁ

ଅବ୍ୟାପାରରେ ସୁବ୍ୟାପାର କରିବା ଶାସ୍ତ୍ରରେ ନିଷେଧ ଥିଲେହେଁ, ପୁଣି ପଦ୍ମମଣି ରାଜା ଏବଂ ରାଜପରିଷଦଙ୍କର ଔଦ୍ଧତ୍ୟ ଜାଣି ମଧ୍ୟ ଗୋଟିଏ ଭୁଲ କାମ କରି ପକାଇଲେ । ସେ ବୋଲଗଡ଼ ଯାଇଥିଲେ । ଜଣେ ମହାଜନ କ୍ଷୀରୋଦ୍ରମଠା ସୁନ୍ଦର ସୁନ୍ଦର ଧଡ଼ଫୁଲ ଥାଇ ଆଣିଥିବାର ସେ ଦେଖିଆସି ରାଜାଙ୍କୁ ଜଣାଇଲେ । ରାଜା ସେଥିରେ ଆଗ୍ରହ ପ୍ରକାଶ କରି ବେଭାରିଙ୍କୁ ତାହା ଖରିଦ କରି ଆଣିବାକୁ ବରାଦ କଲେ । କିନ୍ତୁ ବେଭାରିମାନେ ପଦ୍ମମଣିଙ୍କୁ ଅଡ଼ୁଆରେ ପକାଇବା ଲାଗି ବିନୟରେ ଜଣାଇଲେ—"ଆଜ୍ଞା ! ତୁମ୍ଭଙ୍କ ମନମୁତାବକ ମଠା ମହାପାତ୍ରେ କିଣି ଆଣିଲେ ସୁବିଧା ହେବ ।"

ତାହା ହିଁ ହେଲା । ରାଜକୋଷରୁ କିଛି ଟଙ୍କା ପଦ୍ମମଣିଙ୍କୁ ଦିଆଗଲା । ମୋହମତ୍ ରଖି ସେ ହଳେ ମଠା କିଣି ଆଣିଲେ । ଯେଉଁ ଟଙ୍କା ନେଇଥିଲେ ସେଥିରେ ମଠାର ମୂଲ୍ୟର ଅଧାହେଲା । ତେଣୁ ସେ ଅଧା ମହାଜନକୁ ଦେଇ ବାକି ଅଧା ମୂଲ୍ୟ ପନ୍ଦର ଦିନ ମିଆଦରେ ଦେଇପିବେ କହି ମଠା ନେଇ ଆସିଲେ । ରାଜାଙ୍କ ମନକୁ ଆସିଲା । କିନ୍ତୁ ବେଭାରିଏ ଟଙ୍କା ନଗଦ ନଦେଇ ନାନା ଷଡ଼ଯନ୍ତ୍ର କରି ବସିଲେ । "ଏକ୍ଷଣି ଟଙ୍କା ନାହିଁ ।" ରଜା ଗୋଳା । ଯାହା ବୁଝାଇ ଦେଲେ ସେ ସେଥିରେ ବୁଝିଗଲେ ।

ରଜାଘରର ଆମ୍ବ ବଗିଚାଟିଏ ଥାଏ, ପଦ୍ମମଣିଙ୍କ ନିଜ ଗାଁ ଇଟାମାଟିରେ । ମୋଟେ ତେଇଶିଟି ଗଛ । ରଜା କହିଲେ ଏ ତୋଟା ତୁମ୍ଭ ଜିମା ରହିଲା । ଜଗୁଆଳ ରଖିବ । ସେ ତା ଭାଗ ନେଇ ଜଗିବ । ଆମ୍ବ କିଛି କ୍ଷତି କରିବ ନାହିଁ । ସେହି ଆମ୍ବ ବିକ୍ରୟ ହୋଇ ମଠାର ମୂଲ୍ୟ ଦିଆଯିବ ।

ମାସକ ପରେ ବଗିଚାର ଆମ୍ବ ପାଚିଲା । ପଦ୍ମମଣି ଅଡ଼ୁଆରେ ପଡ଼ିଲେ । ଆମ୍ବ ଜିନିଷ, ପ୍ରିୟାପ୍ରୀତି ତୋଷଣ ମାତ୍ରରେ ବନ୍ଧୁବାନ୍ଧବ ଯେ କେହି ଆପଣାର ଥିଲେ ସେଥିରୁ ତାଙ୍କୁ ଆମ୍ବ ପଠାଇ ଚାଲିଲେ ।

ବେଭାରି ପଦ୍ମମଣିଙ୍କୁ ଲାଞ୍ଛନା କରାଇବା ମତଲବରେ ଥା'ନ୍ତି । ସତକୁ ସତ ଏ ଖବର ଓଗରଦାର ରାଜାଙ୍କୁ ଦେବାରୁ ରାଜା ଏକାନ୍ତ ରାଗାନ୍ୱିତ ହୋଇ ପଦ୍ମମଣିଙ୍କୁ ଶାସ୍ତି ଦେବା ଉଦ୍ଦେଶ୍ୟରେ ଧରାଇ ନେଲେ । ପଦ୍ମମଣି ଏ କାଣ୍ଡରେ ଧୈର୍ଯ୍ୟଧରି ହଠାତ୍ ଦେଖାହେବା ମାତ୍ରେ ଗାଇ ଉଠିଲେ;

**ମୋ ଠାରେ ଦୟା କା, ଠାରେ ନାହିଁ**
**ସୋଠା ଉପବାସ କହି ନୁହଇ**
**ମଠା ବିକିବାରୁ ତୋଟା ଅଧିକାର**
**କହି ନୁହେଁ ଦୁଃଖ ନଶିବାସର**
**ଫଟା କପାଳରେ**
**ସୋଠା ଯା ଲେଖିଲି ବିହି, ମୋଠାରେ ।**

ଦେୱାନମାନଙ୍କ ଷଡ଼ଯନ୍ତ୍ର ଧରାପଡ଼ିଗଲା । ରଜାଙ୍କର ହଠାତ୍ ଚୈତନ୍ୟ ଉଦୟ ହୋଇଗଲା । ସେ ଦେୱାନମାନଙ୍କୁ ଡକାଇ ନେଇ ଆଖି ଲାଲ କରି ପଚାରିଲେ, "ଯଦୁମଣି ଯେଉଁ ମଠା ମୋ ପାଇଁ ଆଣିଥିଲେ ପନ୍ଦର ଦିନ ମିଆଦରେ ତାର ଅଧାଦାମ ଦେଇ ଦେବା ତୁମ୍ଭେମାନେ ଜାଣିଥିଲ । ତାହା ଦେଇଛ କି ?" ଜଣେ କରଣ ଦେୱାନ ଆମ୍ବତୋଟା ପ୍ରଶ୍ନ ଉଠାନ୍ତେ ତାକୁ ତୁରନ୍ତ କାର୍ଯ୍ୟରୁ ରହିତ କରି କହିଲେ—"ନିମକ ହାରାମ୍ । ଯଦୁମଣିଠାରେ ତୁମର ବହୁତ ହିଂସା । ସେ ମୋ ଲାଗି ମଠା କିଣି ଆଣିବାରୁ ତାକୁ ଗୋଟାଏ ତୋଟା ଦିଆଗଲା । ସେଥିରୁ ଆମ୍ବ ବିକିଲେ ସେ ପଇସା ପାଇବ । ସେ ତୁମପରି ମାସକୁ ମାସ ଦରମା ନେଇ ଚାକିରି କରୁଛି କି ?

ମଠାର ଟଙ୍କା ଘୋଡ଼ାସବାରଦ୍ୱାରା, ଚିଠି ସହିତ ବୋଲଗଡ଼ ତୁରନ୍ତ ପଠାଗଲା । ଉକ୍ତ ଆମ୍ବ ବଗିଚାଟିକୁ ଯଦୁମଣିଙ୍କୁ ପୁରସ୍କାର ସ୍ୱରୂପ ଦିଆଗଲା । କରଣ ଦେୱାନ ଯଦୁମଣି ଦ୍ୱାରକୁ ଦଶ ଥର ଧାଇଁ ତାଙ୍କର ଯୋଗୁଁ ଛଅ ମାସରେ କ୍ଷମା ପାଇଲେ ।

## ୩୩—କାମ କାକରା ଛୁଣା ଜାଳିଚଟୁ

ଦିନେ ରଜନୀ ଅବକାଶବେଳେ ରାଜାଙ୍କ ସାଥିରେ ଯଦୁମଣି ଏକାଥିଲେ । ଏପରି ସମୟରେ ଗୋଟିଏ ଅତ୍ୟନ୍ତ ଅଙ୍ଗସୌଷ୍ଠବବତୀ ବେଶ୍ୟା ଦେଖା କରିବାକୁ ପହଞ୍ଚିଲା । ତୁରନ୍ତ ତାକୁ ମଧ୍ୟ ସାକ୍ଷାତ ମିଳିଲା ।

ରାଜା ଦେଖିଲେ ଯୁବତୀଟି ଏକ ଅପୂର୍ବ ପଦାର୍ଥ । ତାକୁ ବଖାଣିବାର କିଛି ନାହିଁ । ଏପରି ସମ୍ବଳିତ ଅଙ୍ଗ ସୌଷ୍ଠବ ନାରୀଠାରେ କ୍ୱଚିତ୍ ସମ୍ଭବ ଥାଏ । କିନ୍ତୁ ଦୁଃଖର କଥା ଯେ ତାର କର୍ମ ବିପାକ ଯୋଗୁଁ ମୁଖଟି ବସନ୍ତ ଦାଗରେ ପୂରିଉଠିଛି । ତା ପ୍ରତି କୌଣସି ଆକାଂକ୍ଷା ନ ରଖି ତାକୁ ଯଥା ସମ୍ଭବ ବିଦାକିଦେଇ ବିଦା କରିଦେଲେ । ଯୁବତୀଟି ଦୀର୍ଘ ପଥ ଅତିକ୍ରମ କରି ରାଜାଶ୍ରୟରେ ରହିପିବା ଆଶାରେ ଆସି ନିଜର ଅଙ୍ଗ ବୈକଲ୍ୟ ଯୋଗୁଁ ଆଶ୍ରା ନପାଇବା ଅନୁମାନ କରି ଫେରିଗଲା । ଆଉ କିଛି ବଳାଇ ପାରିଲା ନାହିଁ ।

ସୋଠା—ଠେଙ୍ଗା । ଠେଙ୍ଗା ଉପବାସ ଅର୍ଥାତ୍ ସମ୍ପୂର୍ଣ୍ଣ ଉପବାସ । ସୋଠା—ରାଜଦଣ୍ଡ ।

ଯଦୁମଣିଙ୍କୁ ରାଜା କହିଲେ—

କ'ହୋ, ଯଦୁମଣି; ମୁଁ ତୁମପରି କବି ହୋଇଯାଇଛି । ମୋର ଗୋଟିଏ କବିତାର ପାଦ ପୂରଣ କରି ଦେଖି ?

ଯଦୁମଣି କହିଲେ—ଆଜ୍ଞା, ଦେଉଙ୍କ ବଂଶ ତ କବି ବଂଶ । ଶୋଭାବତୀ କାବ୍ୟତ ଜେଜେ ଲେଖିଛନ୍ତି । କ'ଣ ମନରେ ଫୁଟିଛି, ଆଜ୍ଞା ହେଉ ।

ରାଜା କହିଲେ - ଆଚ୍ଛା କହିବା—

**ବସନ୍ତ ମୁଁ ହିଁ କୁ ଉପମା ଖଣ୍ଟୁ**

ସଙ୍ଗେ ସଙ୍ଗେ ଯଦୁମଣି ଉତ୍ତର କଲେ—

**କାମ କାକର ଛଣା ଜାଲିଚଣ୍ଟୁ**

ଯୁବତୀଟି କାମରୂପକ କାକରର ଛଣା ଜାଲିଚଣ୍ଟୁ କହନ୍ତେ—ତାର ଅସୀମ ସୌନ୍ଦର୍ଯ୍ୟ ପ୍ରତି ଅବମାନନା ମଧ୍ୟ କରାଯାଇ ନଥିଲା । ତା ଶୁଣି ରାଜା ଆନନ୍ଦରେ ତାଙ୍କୁ ସେ ଦିନ ନିଜର ପୁରାତନ କାଶ୍ମୀରୀଶାଲ ଫର୍ଦ୍ଦକ ପୁରସ୍କାର ସ୍ୱରୂପ ଦାନ କରିଦେଲେ ।

## ୩୪—ଜନ୍ମ ଜନ୍ମ କେ ହୁଣା ହୋଇରୁ ତୁହି

ନୂଆଗଡ଼ କେବଳ ନୁହେଁ, ପ୍ରତି ଗଡ଼ଜାତରେ ପୁରୀ ମହାରାଜାଙ୍କ ଅନୁକରଣରେ ବସନ୍ତ ସମୟରେ ନବ ଦିନ (ନବ ପତ୍ରିକା) ଏବଂ ଶରତ୍ କାଳରେ ଆଶ୍ୱିନ ମାସରେ ଷୋଳଦିନ (ଦୁର୍ଗାପୂଜା) ପର୍ବ ହୋଇଥାଏ । ଉକ୍ତ ପର୍ବରେ କେଉଁଠି ସ୍ୱର୍ଣ୍ଣ, କେଉଁଠି ରୌପ୍ୟ, କେଉଁଠି ଶାସ୍ତ୍ର ସମ୍ମତ ବିଭିନ୍ନ ଧାତୁ ନିର୍ମିତ ପୁରାତନ ମହିଷାସୁର-ମର୍ଦ୍ଦିନୀ ଚତୁର୍ଭୁଜା ଦୁର୍ଗା ପୂଜିତା ହୁଅନ୍ତି । ସେଥିଲାଗି ମହାବଧି କରାଯାଏ । ଅଖଣ୍ଡ ଘୃତ ଦୀପ ଅହୋରାତ୍ର ଜଳେ । ତ୍ରିସନ୍ଧ୍ୟା ବଳି ପଡ଼େ । ରାଜ୍ୟର ଇଷ୍ଟଦେବୀମାନେ ସେଠାକୁ ଗୋପନରେ ଆସି ଗୋପନରେ ପୂଜିତ ମଧ୍ୟ ହୁଅନ୍ତି । ଏହି ପର୍ବ ସମ୍ବନ୍ଧରେ ବରିଷ ଗୋଷ୍ଠୀୟ ଜୀବଦେବ ଆଚାର୍ଯ୍ୟଙ୍କ ପୁତ୍ର ଗୋବର୍ଦ୍ଧନ ମହାପାତ୍ର ରାଜଗୁରୁ ଯେଉଁ ଦୁର୍ଗୋତ୍ସବ ଚନ୍ଦ୍ରିକା ଲେଖିଛନ୍ତି, ତଦନୁସାରେ ପୂଜା ହୁଏ । ଉକ୍ତ ପୂଜା ପଦ୍ଧତିରେ ବଳିପ୍ରଥା ଥିଲେ ହେଁ, ବଳି ଦିଆ ନଯାଇ ଫଳ ବଳି ମଧ୍ୟ ଦିଆଯିବାର ସିଦ୍ଧାନ୍ତ ରହିଛି ।

ଯଦୁମଣି ପଶୁବଳି ବିରୁଦ୍ଧରେ ବହୁ ଯୋଗାଡ଼ କରି ଅକୃତକାର୍ଯ୍ୟ ହେଲେ । ଦିନେ ଗୋଟିଏ ଛାଗର କରୁଣ ସ୍ୱନରେ ସେ ବିଚଳିତ ହୋଇ, ଏହି ଜଘନ୍ୟ ପ୍ରଥା ବିରୁଦ୍ଧରେ ବହୁତ କଥା କହିଲେ । କିନ୍ତୁ ତାହାକୁ କେହି କର୍ଣ୍ଣପାତ କଲେ ନାହିଁ । ଶେଷକୁ ଘାତକକୁ ବିନୟର ସହିତ ବହୁତ କଥା କହିଲେ । ସେ ବା ଶୁଣିବ କାହିଁ ? ତହିଁ ତା ସମକ୍ଷରେ ବିରକ୍ତ ହୋଇ ଗାଇଥିଲେ—

**କର୍କଶ କରି କରେ କଟାରି ଧରି,**
**କ୍ରୋଧେ ହଣାଇ ଗଲ କନ୍ଧରୁ କରି ।**
**ଖାଇଣ ମହାମାୟୀ ସନ୍ତୋଷ ହୋଇ;**
**ଜନ୍ମ ଜନ୍ମ କେ ହଣା ହୋଇବୁ ତୁହି ।**

ଆଦିକବି ବାଲ୍ମୀକି ଯେପରି କ୍ରୌଞ୍ଚମିଥୁନ ଶରଘାତକ ନିଷାଦକୁ ଅପ୍ରତିଷ୍ଠ ହେବାକୁ ଅଭିସମ୍ପାତ ବର୍ଷଣ କରିଥିଲେ, ସେହିପରି ଦୟାର୍ଦ୍ର କବି ଯଦୁମଣି ଏହି ହତୋକକୁ ଅଭିଶାପ ଦେଇଥିଲେ ।

## ୩୫—ତୁମ୍ଭ ଦେହ ତମାମ ବିଷ୍ଠା

ରାଜା ବିନାୟକଙ୍କ ସହିତ କାଳକ୍ରମେ ଯଦୁମଣିଙ୍କର ସଖ୍ୟଭାବ ବଢ଼ିଗଲା । ଉଭୟଙ୍କ ମଧ୍ୟରେ ଏକାନ୍ତ ପରିହାସ ମଧ୍ୟ ଚାଲିଲା । ଫଳରେ ଦିନେ ରାଜା ଯଦୁମଣିଙ୍କୁ ବଡ ପାହାନ୍ତାରୁ ଡକାଇ ଆଣିଲେ । ସେ ସ୍ନାନ ସାରିଦେଇ, ଆସିବାମାତ୍ରେ ଦେଖିଲେ, ରାଜା ଏକାକୀ ବେହରଣ ବେଶରେ ବିଜେ ହୋଇଛନ୍ତି । ରାଣୀ-କୁମୁଦିନୀ, ଫୁଲବେଣି ଛନ୍ଦ୍ୟଲ୍ଲତା, ରାଧାରାଣୀ ଆଦି ରାଜାଙ୍କ ପ୍ରିୟତମାମାନେ କାହିଁକି ଅନ୍ତରାଳରେ ରହି ହସି ଚାଲିଛନ୍ତି ! ଯେପରି ଯଦୁମଣିଙ୍କୁ କିଛି ଅପମାନ ମିଳିବ ।

ସେ ତଉଦିଗ ଅନୁମାନ କରି ଗମ୍ଭୀର ନ ହୋଇ ରାଜାଙ୍କ ହସ ହସ ମୁହଁ ଦେଖି ହସି ଉଠିଲେ । ରାଜା କହିଲେ—

"କହୋ ! ଯଦୁମଣି ତୁମ୍ଭେ କି ହେତୁରୁ ହସିଲ ?"

ଯଦୁମଣି ଉତ୍ତର କଲେ;—"ଦେଉ, ଯହିଁପାଇଁ ହସିଲେ ।"

ରାଜା କହିଲେ;—"ଆମ୍ଭେ ପାହାନ୍ତା ସ୍ୱପ୍ନରେ ଦେଖିଲୁଁ ଯେ, ତୁମ୍ଭ ଦେହ ତମାମ ବିଷ୍ଠା ବୋଳା ହୋଇଅଛି ।"

ଏହା ଶୁଣି ଅନ୍ତରାଳରେ କାମୋଦ୍ଦୀପକ ହସରି ଜୁଆର ଉଠିଲା । ଯଦୁମଣି କ'ଣ ଛାଡ଼ିବା ବାଲା । ସେ ହସି ହସି କହିଲେ—

"ଆଜ୍ଞା ! ମୁଁ ମଧ ଗତ ପାହାନ୍ତା ସ୍ୱପ୍ନରେ ଦେଖିଥିଲି ଯେ, ମୋ ଦେହରେ ବିଷ୍ଠା ବୋଳା ହୋଇଛି । ଏହା ଶୁଣନ୍ତେ ପୁଣି ହସ ଉଠିଲା ଉତ୍ତାଳ ତରଙ୍ଗ ପ୍ରାୟେ । ତା'ପରେ କହିଲେ— କିନ୍ତୁ ଦେଖିଲି ଶ୍ରୀଛାମୁଁଙ୍କ ଅଙ୍ଗରେ ମହାପ୍ରସାଦ ବୋଳା ହୋଇଛି । ଏତ ସ୍ୱପ୍ନ କଥା । ଛାମୁଁ ମୋ ଦେହକୁ ! ମୁଁ ଛାମୁଙ୍କ ଶ୍ରୀଅଙ୍ଗକୁ ଚାଟି ପକାଉଛୁଁ ।"

ଅନ୍ତରାଳରେ ହାସ୍ୟ କାରିଣୀ ଦଳ, ବାବାରେ ବାବାରେ କହି କେଉଁଆଡ଼େ ଖସିଗଲେ । ରାଜା କହିଲେ—"ମୁଁ ପରା ଜାଣେ ! ଏହାକହି ଗୁପ୍ତ କଥାଟକୁ

ଜଣାଇଦେଲେ ଏବଂ ପୁଣି କହିଲେ—"ଯେତେ ପଣ୍ଡିତା ହେଲେ ତ ସ୍ତ୍ରୀ ବୁଦ୍ଧି ?"— କିନ୍ତୁ ପ୍ରତିହାରଣୀଦ୍ୱାରା ଯଦୁମଣିଙ୍କ ଲାଗି ଅତି ଉତ୍କୃଷ୍ଟ ଜଳଖିଆ ଭିତରୁ ଆସିଗଲା, ଏବଂ ତା ସାଥିକୁ ଧୋତି, ଚଦର ଏକ ହଳ ଏବଂ ବନାରସୀ ଶାଢ଼ୀ ଏକ ଫର୍ଦ୍ଦ ପୁରସ୍କାର ମହାଦେଈଙ୍କ ଗ୍ରମୁଁରୁ ଦିଆଗଲା । ଯଦୁମଣି ତା ଦେଖି କହିଲେ—ସେ ତ ଇତର ନାରୀ ନୁହନ୍ତି, ତାଙ୍କ ବୁଦ୍ଧି କେବେ ନ୍ୟୂନ ହେବ ? ରାଜା କହିଲେ—ତୁମେ ତ ନାରୀ ପକ୍ଷ ଧରିବନ—ଅଧିକ କ'ଣ ?

## ୩୭—ବୋଲେ କିମତି ଖଂଜନାରେ

ରାଜା, ରାଣୀ ସମସ୍ତେ ଇଚ୍ଛା କରୁଥାନ୍ତି ଯେ; ଯଦୁମଣିଙ୍କ ସ୍ତ୍ରୀ ରାଜବାଟୀକୁ ଆସନ୍ତୁ । ତାଙ୍କୁ ଘର ଝିଏ ଦେଖିବେ ଏବଂ ରାଣୀ ମଧ୍ୟ ଦେଖିବେ । କିନ୍ତୁ ଯଦୁମଣି ସର୍ବଦା ସେଥିରେ ବାଧା ଦିଅନ୍ତି । ସେ କୁହନ୍ତି; "ମୁଁ କହିଲେ କ'ଣ ହେବ, ସେ କେବେ ଏଠାକୁ ଆସିବେ ନାହିଁ ।"

ରାଜା ପରମ୍ପରରୁ ଶୁଣିଥାନ୍ତି ଯେ, ତାଙ୍କ ସ୍ତ୍ରୀ ଏକାନ୍ତ ଗୁଣବତୀ ଏବଂ ରୂପବତୀ । କବିର ଯେପରି ପତ୍ନୀ ପ୍ରୟୋଜନ, ତାଙ୍କୁ ସେପରି ପତ୍ନୀ ମିଳିଛି । କିନ୍ତୁ ତାଙ୍କ ଦେଖାମିଳିବା ସମ୍ଭବ ହୁଏ ନାହିଁ । ରଥଯାତ୍ରାକୁ ବୋହୂଝିଏ ଗୁଣ୍ଡିଚା ମଣ୍ଡପକୁ ଦର୍ଶନଲାଗି ଆସନ୍ତି, କିନ୍ତୁ ଖଂଜନା କେବେ ତତ୍ପ୍ରତି ଆକାଙ୍‌କ୍ଷା ପୋଷଣ କରନ୍ତି ନାହିଁ । ସେ ଜାଣନ୍ତି ଯେ, ତାଙ୍କ ସ୍ୱାମୀ ବଡ଼ ଦୁଷ୍ଟ । ସେ ବାହାରକୁ ଯାଇ ଯେବେ ସାଧାରଣ ଲାଞ୍ଛନା ପାଆନ୍ତି, ତେବେ କ'ଣ ଘଟିବ କିଏ କହିବ ?

ଦିନପରେ ଦିନ ଗଲୁଥାଏ, ଅଥଚ ଯଦୁମଣି ନିଜ ସ୍ତ୍ରୀ ସମ୍ବନ୍ଧରେ କଥାଭାଷା ହେବାକୁ କେବେ କୃପଣ ନଥାନ୍ତି । ଥରେ ଅନ୍ତଃପୁର ମଧ୍ୟରେ ରାଜା ଏବଂ ରାଣୀ ଯଦୁମଣିଙ୍କୁ ଅତି ସ୍ନେହରେ ପଚାରିଲେ—"ତୁମ୍ଭେ ତ କବି, ତୁମ୍ଭ ସ୍ତ୍ରୀଙ୍କ ପରିଚୟ ଟିକେ ବର୍ଣ୍ଣନା କର ?—ତୁମ୍ଭେ ତ ସମସ୍ତଙ୍କୁ ଅପସନ୍ଦ କରୁଚ, ସେ କିପରି ?"

ଯଦୁମଣି ଆଜ ଲୁଚାଇବା ଅଭଦ୍ରତା ହେବ ମନେ କରି, ତୁରନ୍ତ ଗାଇଲେ କବିତାଟିଏ—

**ଖଚର ଗତି ସାର ବିବର୍ଣ୍ଣିରେ,**
**ହେବ ବଦତି ତାର ସେ ନାମରେ**
**ଅଶୋକେ ବୈଦେହୀ ଧୃତି ସମରେ,**
**ଉଦ୍‌ବେଗ ଥାଏ ମୋ ମନ କାମରେ,**
**ବୋଲେ କିମତି ଖଂଜନାରେ**
**ଶ୍ରୀପତି କତିରେ ଯତି ନିକରକୁ**
**ପଢ଼ିଲେ ତା କାନ୍ତି ଅନାରେ ।**

**ଅନ୍ୱୟ:**—ତାର ସେ ନାମରେ ଗନ୍ତସାର, ଖ—ଚର ହି ବର୍ଣ୍ଣରେ ବଦିତ ହେବ । ସେ ଖଂଜନାରେ ବୋଲି କମନ୍ତ—? ମୋ ମନ କାମରେ ଉଦ୍‌ବେଗ ଥାଏ; (କିନ୍ତୁ ସେ) ଧୃତ ସମରେ ଅଶୋକେ ବୈଦେହୀ (ସମଅଟେ) ଏବଂ ଶ୍ରୀପନ୍ତ କନ୍ତରେ ଯନ୍ତ ନିକରଙ୍କୁ (ଥୋଇଦେଲେ) ତା କାନ୍ତି ପଡ଼ିଲେ ଅନାରେ ।

**ଅର୍ଥ:**—ତା ନାଁ ଗନ୍ତରେ ସୁନ୍ଦର (ଖ—ଆକାଶରେ—ଚର) ଗୋଟିଏ ପକ୍ଷୀର ନାମ ଯାହା ତିନୋଟି ବର୍ଣ୍ଣରେ ପ୍ରସିଦ୍ଧ ଅଟେ । ଖଞ୍ଜନ ଅର୍ଥାତ୍ 'ଖଞ୍ଜନା' । ସେ ଖଞ୍ଜନା କହୁଛୁ କପରି ଅଟେ— ମୋର ମନ କାମ ଲାଳସାରେ ଯେତେ ଅଧୀର ଥାଏ, କିନ୍ତୁ ସେ ଅଶୋକ କାନନର ବନ୍ଦିନୀ ପ୍ରଜ୍ଞାବତୀ ସୀତାଙ୍କ ପରି ଏକାନ୍ତ ଧୈର୍ଯ୍ୟଶୀଳା ଏବଂ ଆତ୍ମସଞ୍ଜମରେ ନିପୁଣା । ବିଶେଷରେ ବିଷ୍ଣୁଙ୍କ ସମ୍ମୁଖରେ ତାଙ୍କର ପରମ ଭକ୍ତ ଯନ୍ତମାନେ ଥାଇ ମଧ୍ୟ ଯେବେ ତା ସୌନ୍ଦର୍ଯ୍ୟ ସେମାନଙ୍କ ଆଖିରେ ପଡ଼ିଯିବ, ସେମାନେ ନିଶ୍ଚୟ ତାକୁ ଅନାଇ ଦେବେ । କେବେ ସମ୍ଭାଳି ରହି ପାରିବେ ନାହିଁ ।

ଏହା ଶୁଣି ରାଜା ମନରେ କ'ଣ ଭାବି ନୀରବ ରହିଲେ । କିନ୍ତୁ ରାଣୀ ସେଇ ଗୁଣବତୀ ରମଣୀ ସହିତ ଆଳାପ ପରିଚୟ କପରି ସମ୍ଭବ ହେବ, ଭାବି ବସିଲେ । ଫଳରେ ଯଦୁମଣିଙ୍କୁ ସେଇ ଶ୍ରେଷ୍ଠ ପରିବାର ମଧ୍ୟରେ ଜଣେ କରି ଥୁଆ ହେଲା । ଏପରି ହେଲା ଯେ, ଯଦୁମଣିଙ୍କ ପ୍ରତି ନିଷେଧ ସ୍ଥାନକୁ ଯାତାୟାତ କଟକଣା ମଧ୍ୟ ଉଠିଗଲା ।

କିନ୍ତୁ ଯଦୁମଣି ସତର୍କରେ ଚଳୁଥାନ୍ତି । ନାନା ଘଟଣାରେ ତାଙ୍କ ପ୍ରତି ସୌହାର୍ଦ୍ଦ୍ୟ ଯେପରି ବଢ଼ିଗଲା ତାଙ୍କର ସେପରି ଭୟ ଓ ଦାୟିତ୍ୱ ମଧ୍ୟ ମନକୁ ଛୁଉଁଥାଏ । କାରଣ ରଜାଘର କି ଖ୍ରାପଣ ସ୍ଥାନ ତା ସେ ସମଝି ଥାନ୍ତି ।

## ୩୨—ଦାରୀ, କୁକୁର, ନାହାକ, ବୁଢ଼ା

ରାଜା ବିନାୟକଙ୍କ ଦରବାରକୁ ବହୁପ୍ରାର୍ଥୀ ଅର୍ଥଲୋଭୀ ନିରନ୍ତର ଦେଖାକରି ଆସୁଥିଲେ । ଥରେ ଏପରି ଏକ ଘଟଣା ଘଟିଲା ଯେ, ବ୍ରହ୍ମପୁରର ଦୁଇଜଣ ବେଶ୍ୟା, ଖଲିକୋଟର ଦୁଇଜଣ ନାହାକ, ପାଞ୍ଚଗଡ଼ର ଦୁଇଜଣ ବୃଦ୍ଧବ୍ୟକ୍ତି ଦେଖା କରିବାକୁ ପହଞ୍ଚିଲେ । ଏପରି ସମୟରେ ଦେଖାଗଲା ଯେ, ଦୁଇଜଣ ଶବର ଦୁଇଟି କୁକୁର ସହିତ ରାଜାଙ୍କ ମୃଗୟା ବିହାରରେ ଯୋଗ ଦେବାକୁ ପ୍ରାର୍ଥୀ ହେବାକୁ ଆସିଗଲେ ।

ସେତେବେଳେ ସଭାରେ ପଦ୍ମମଣି ଥିଲେ । ଏପରି ଯୁଗ୍ମ ସାକ୍ଷାତ ଅକସ୍ମାତ୍ ସଂଘଟିତ ହେବା ଦେଖି ସଭାସଦ୍‌ମାନେ ହସି ହସି ଗଡ଼ିଗଲେ । କାଳେ ଗଣ୍ଡଗୋଳ ହେବ ସେଥିପାଇଁ ରାଜା ଜଣକ ପରେ ଜଣକୁ ଦେଖା କରିବାକୁ କହିବାରୁ ପାରିଷଦ ଦଳ ଜଣାଇଲେ ଯେ—ଆଜ୍ଞା, ବାହାପାଳି ତ ପୁଣି ହୁଏ । ସେମାନେ ଏକାବେଳେ ଦୁଇ ଦୁଇ ହୋଇ ଦେଖା କରନ୍ତୁ । କର୍ମଚାରୀ ମାନେ ହଁ ଭରିଲେ ।

ତେଣୁ ପ୍ରଥମେ ବେଶ୍ୟା ଦୁହେଁ ତଲବ ହେଲେ । ସେମାନେ ଗୃହଁ ଗୃହଁ ଦୁହିଁଙ୍କୁ ଦୁହେଁ ନିଜ ନିଜର ପ୍ରାଧାନ୍ୟ ବଖାଣୁ ବଖାଣୁ କଳହ ଲଗାଇ ଆପେ ପଳାଇଲେ । ତାପରେ ଆସିଲେ ଜ୍ୟୋତିଷ ନାହାକ ଦୁହେଁ । ସେ ଦୁହିଙ୍କ ମଧ୍ୟରେ ଅନର୍ଥ ଲାଗି ଦୁହେଁ ମାଡ଼ ମରାମରି ହେବାକୁ ଉଠିଲେ । ତେଣୁ ସେମାନେ ରଜାକ କ'ଣ ମାଗିବେ, ଲଜ୍ଜାରେ ପଳାଇଗଲେ ଗାଳି-ଦିଆଦେଇ ହୋଇ ।

ତାପରେ ଦେଖାହେଲେ ବୁଢ଼ା ଦୁହେଁ । ସେମାନେ ନିଜ ନିଜର ଦୁଃଖ ଗ୍ରାମ୍ୟରେ ଜଣାଇଲେ । କିନ୍ତୁ କାହା ଦୁଃଖ ବଳିଯିବ ବୋଲି ଜଣେ ଜଣକର ନିନ୍ଦା କରନ୍ତେ, ଯଷ୍ଟି ଉଠାଉଠି ଯାଏ ଗଲା । ଦୁହେଁ ସଭାର ହାସ୍ୟ ରୋଳରେ ବିଦା ହେଲେ । କର୍ମଚାରୀମାନେ ଏହାଦେଖି ଆନନ୍ଦ ହେଉଥାନ୍ତି । କାରଣ ରାଜକୋଷରୁ ଅର୍ଥ ବ୍ୟୟ ହେଲା ନାହିଁ ।

ଏହାପରେ ଆସିଲେ କୁକୁର ସହିତ ଶବର ଦୁହେଁ । ଦୁହିଁଙ୍କ ପରାକ୍ରମ ଦୁହେଁ କହୁ କହୁ କୁପିତ ହେବାରୁ ଡୋରି ହାତରୁ ଖସିଗଲା । ଫଳରେ କୁକୁର ଦୁଇଟା ଏପରି କାମୁଡ଼ା କାମୁଡ଼ି ହେଲେ ଯେ, ଉପରେ ଶବର ଦିହିଁ ସେମାନଙ୍କୁ ଆପୃତ୍ତ କରି ନେଇ ପଳାଇଲେ । ବାଟରେ ସମସ୍ତେ କହି ଚାଲିଲେ—ଓହୋ କି ଦୁର୍ଯୋଗ ଆଜି ଥିଲା ।

ପଦ୍ମମଣି ଏ ଅବସ୍ଥା ଦେଖି ରାଜାଙ୍କ ସମ୍ମୁଖରେ ଏକ ପ୍ରବଚନ ରଚନା କରି ଗାଇଲେ—

**ଦାରୀ, କୁକୁର, ନାହାକ, ବୁଢ଼ା**
**ନୁହନ୍ତି କେବେଁ ଯୋଡ଼ା ଯୋଡ଼ା**
**ଯେବେ ହୁଅନ୍ତି ଯୋଡ଼ା ଯୋଡ଼ା**
**ଦେଖ ତାଙ୍କର ଭିଡ଼ା କାମୁଡ଼ା ।**

ରାଜା ହସି ହସି ଗଡ଼ିଗଲେ । ପଦ୍ମମଣିଙ୍କୁ ଏହା ଫଳରେ ଯଥା ସମ୍ଭବ ପୁରସ୍କାର ଦିଆଗଲା ।

# ୩୮—ତୋ'ଠାକୁ ଯିବା, ହୁଉ—ତୋ' ରାଣୀ ସାରି ଆସେ

ନୂଆଁଗଡ଼ର ରଜା ଓ ରାଣୀଙ୍କ ମଧ୍ୟରେ ଚକ୍ରାନ୍ତ ଚାଲିଲା-ସେ କପରି ଯଦୁମଣିକୁ ହରାଇବେ । ହଠାତେ ରଜା ତାଙ୍କୁ ହରାଇବା ସିଦ୍ଧାନ୍ତରେ ଅନ୍ତଃପୁର ମଧ୍ୟରେ ବସି ନାନା କଥା ବିଚାର କରି କେତେକ ଜଟିଳ ପ୍ରଶ୍ନ ଠିକ୍ କଲେ ।

ପରିଚାରିକାମାନଙ୍କୁ ଡାକହାକ ଜମାଇ ରଖାଗଲା । ରଜାଙ୍କର ଜବାପଟ ହେଲେ ସମସ୍ତେ ଯେପରି ହସି ଉଠିବେ ତାର ମଧ୍ୟ ଯୋଜନା ହେଲା । ରଜା ଭାବିନେଲେ, ସେ ଯେଉଁ ପ୍ରଶ୍ନ କରିବେ ତାର ଉତ୍ତର ନଦେଇପାରି ଯଦୁମଣି ହାର ନିଶ୍ଚୟ ମାନିବେ ।

ତାଙ୍କୁ ପାଇକ ପଠାଇ ଅନ୍ତଃପୁର ମଧ୍ୟକୁ ଡକାଇ ଆଣି ନିକାଞ୍ଚନରେ ଏକାକୀ ଥାଇ ପ୍ରିୟତମାମାନଙ୍କ ସମକ୍ଷରେ ରଜା ଦୃଢ଼ତା ଧରି ହଠାତ୍ ପଚାରିଲେ—

ଯଦୁମଣି ! ତୁମେ କୁକୁର

ତାହାଶୁଣି ଯଦୁମଣିଙ୍କର ହୃତ୍‌କମ୍ପ ହେଲା । ଏତିକିବେଳେ କଳକଳ ହସ ଅନ୍ତରାଳରୁ ମଧ୍ୟ ଫୁଟି ଉଠିଲା । ସେ ଟିକିଏ ଅଟକିଗଲେ । ତାପରେ ଧୈର୍ଯ୍ୟ ଧରି ପ୍ରତ୍ୟୁତ୍ପନ୍ନ ମତି ଯଦୁମଣି କହିଲେ---

'ହଁ ଆଜ୍ଞା, ଆମ୍ଭେ ତୁଳସୀ ଗଛ ।

ରଜା ଏ ଭେଦରେ ପଶିପାରି ନଥିଲେ । ତୁଳସୀ ଶୁଣି ଖୁସିଥିଲେ । କିନ୍ତୁ ପରିଚାରିକା କ୍ରୁଦ୍ଧ ଧ୍ୱନିରେ କହି ଉଠିଲେ 'ଆମ୍ଭେ ହାରିଗଲେ, କୁକୁର ତୁଳସୀ ଗଛ ଉପରେ ମୁତିଥାଏ ।

ପୁଣି ରଜା କହିଲେ—

ଯଦୁମଣି ! ଚାଲ ତୋ'ଠାକୁ ଯିବା । ଏଥିରେ ଦୁଇଟି ଅର୍ଥ ଥିବାର ସେ ତୁରନ୍ତ ଜାଣିନେଲେ । ତୋଟା ଆମ୍ବତୋଟା, ପଣସ ତୋଟା ଆଦିକୁ ବୁଝାଏ ସତ । କିନ୍ତୁ ତୋ'ଠା ଅର୍ଥାତ୍ ତୋହର ଘରଜା ପାଖକୁ ଯିବା ମଧ୍ୟ ଅର୍ଥ ହେବା ଶ୍ଳେଷରେ ସମ୍ଭବ ହୋଇପାରେ । ତେଣୁ ସେ କିଛିମାତ୍ର ଡେରି ନ କରି ଉତ୍ତର ଦେଲେ—

'ଆଜ୍ଞା, ମୁଁ ଟିକେ ତୋ'ରାଣି ସାରି ଆସେ ।' ଆମ୍ବ ତୋଟାକୁ ଯିବା ସମୟ ଗ୍ରୀଷ୍ମଋତୁ । ଲୋକେ ଅପରାହ୍ଣରେ ପଖାଳ ତୋରାଣି ସାରି ତୋଟାକୁ ଯାଇଥାନ୍ତି । ତେଣୁ ସେ ଯାହା କହିଲେ ତାହା କୁରୁଚିର ପରିଚାୟକ ହେଲାନାହିଁ । କିନ୍ତୁ ଶ୍ଳେଷରେ ରହିଲା ମୋ'ଠାକୁ ତୁ ଯେବେ ଯିବୁ ମୁଁ ତେବେ, ତୋ' ରାଣୀଠାରେ କାମସାରି ଆସେ ।

ଏହି ଉତ୍ତର ଶୁଣି ରାଜା ଏବଂ ରାଜପରିବାର ହସି ଗଡ଼ିଗଲେ । "ଏପରି ପ୍ରତ୍ୟୁତ୍ପନ୍ନମତିତ୍ୱ ଓ ନିର୍ଭୀକତା କେବେହେଲେ କାହାରି ଦେଖାଯାଏ ନାହିଁ । ଏମନ୍ତକି ମୃତ୍ୟୁ କାଠ ଦଣ୍ଡର କର୍ତ୍ତାଙ୍କୁ ଏପରି ସାହସିକ ଉତ୍ତର କେହି ଦେଇ ନପାରେ ।" କହି କହି ରାଣୀ କୁମୁଦିନୀ ମହାଦେଈ ଚଳନ୍ତ ପୁଷ୍ପିତା ଲତିକା ସଦୃଶ କବିଙ୍କୁ ସେଦିନ ସାକ୍ଷାତ ଦେଲେ ।

କବି ସେହି ଅପୂର୍ବ ସୁନ୍ଦରୀ ପ୍ରତିମାଙ୍କୁ ଦେଖି ଭୂମିରେ ମୁଣ୍ଡ ଲଗାଇ ପ୍ରଣାମ କଲେ । ଏହାପରେ କେତେବର୍ଷ କବି ପରମ ସୁଖରେ ବାସ୍ତବିକ—କାଳ ଅତିବାହିତ କରିଥିଲେ । ମହାଦେଈ ଯଦୁମଣିଙ୍କୁ ସାକ୍ଷାତ ଦେଉଥିବାରୁ ରାଜାଙ୍କ ନିକଟରେ ତାଙ୍କ ବିରୁଦ୍ଧରେ କିଛି କହିବାହାରି କୌଣସି ଫଳ ଫଳୁ ନଥିଲା ।

## ୩୯—ଆଜି ହୋଇଥିଲା ସେହି ତର୍କାରି

କବିଙ୍କ ସହିତ ରାଜା ଏବଂ ରାଣୀଙ୍କର ପ୍ରତ୍ୟହ ଦେଖା ସାକ୍ଷାତ ହୁଏ । ରାଣୀ ପ୍ରତ୍ୟହ କବିଙ୍କୁ ଦୁଃଖ ସୁଖ ପଚାରନ୍ତି । ରାଣୀଙ୍କ ସହିତ ସାକ୍ଷାତ କରିବା ସମ୍ଭବ ହେବାରୁ ଯଦୁମଣିଙ୍କୁ ଅନ୍ତଃପୁରର ଅନ୍ୟ ନାରୀମାନେ ତାଙ୍କୁ ମଧ୍ୟ ଦେଖାସାକ୍ଷାତ ଦେଉଥିଲେ ।

ଦିନେ ଜଣେ ଦାସୀ ରାଜା ରାଣୀଙ୍କ ସମକ୍ଷରେ ପଚାରିଲା—ଆଜି ଆପଣଙ୍କର କି ତରକାରୀ ହୋଇଥିଲା ?

କବି ଏକାନ୍ତ ପ୍ରତ୍ୟକ୍ଷବାଦୀ ଥିଲେ । ସେ ନିଜର ବଡ଼ାମୀ ନ କରି କହିଲେ—

**ପିଲାଟି ଦିନରୁ ମୁଣ୍ଡରେ ଟୋପି**
**କୃଷ୍ଣ ଅବତାରେ ମୋହିଲେ ଗୋପୀ**
**ରାମ ଅବତାରେ ରାବଣ ମାରି**
**ଆଜି ହୋଇଥିଲା ସେହି ତର୍କାରି ।**

ବାଉଁଶ ଗଜା (କରଡ଼ି)ର ଉଦ୍ଭବ ବେଳେ ଛତୁପରି ଏକ ଟୋପି ଦେଖାଯାଏ । ବାଉଁଶ ନଳୀରେ ବଂଶୀ କରି ତାହା ବାଦନ କରି କୃଷ୍ଣ ଗୋପୀଙ୍କୁ ମୋହିଥିଲେ । ରାମ ଅବତାରରେ ସେ ବାଉଁଶ କାଣ୍ଡ ଶରରେ ରାବଣକୁ ହତ୍ୟା କରିଥିଲେ । ସେହି ବାଉଁଶ କରଡ଼ି ତରକାରୀ ବା କାଞ୍ଜି ଆଜି ହୋଇଥିଲା ।

ଏହା ଶୁଣି ଦୁଃଖିତ ହୋଇ ଚତୁରା ମହାଦେଈ ତୁରନ୍ତ ତାଙ୍କ ଘରକୁ କଦଳୀ, କଖାରୁ ପ୍ରଭୃତି ପ୍ରଚୁର ପରିମାଣରେ ଭାରେ ପରିବା ଭଣ୍ଡାରୀଙ୍କ ହାତରେ

ପଠାଇ ଦେଲେ ଏବଂ କ'ଣ ଅଭାବ ଥିଲେ ମୋତେ ଲାଜ ନ କରି କହି ପଠାଇବେ ବୋଲି ଆଜ୍ଞା ଦେଲେ ।

ଯେଉଁ ଦାସୀଟି ଏ ପ୍ରଶ୍ନ ପଚାରିବାରୁ କବିଙ୍କର ଏପରି ସୁଯୋଗ ଆସିଥିଲା, ରାଜା ତାକୁ ଝୁମ୍ପି ବୋଲି ତାପରେ ଡାକୁଥିଲେ । ଅର୍ଥାତ୍ ଝୁମ୍ପ୍ କଜା ପଦେକଥା କହି ପଦ୍ମମଣିଙ୍କ ଦୁର୍ଦ୍ଦଶା ସେ ମେଣ୍ଟାଇ ପାରିଲା । ଏମନ୍ତକି ଝୁମ୍ପି ଏହା ଫଳରେ ଜଣେ ଅନ୍ତର ସାଆନ୍ତର ଜନନୀ ହୋଇ ପାରିଥିଲା ।

## ୪୦—ବନଲତା ଦାରୀ

ବନଲତା ବୋଲି ରଜାଙ୍କର ଏକ ରକ୍ଷିତା ବେଶ୍ୟା ଥାଏ । ସେ ଭାରି ଫାଜିଲ । ଇନ୍ଦ୍ର, ଚନ୍ଦ୍ର ସେ ମାନେ ନାହିଁ । ଏମନ୍ତକି ମହାଦେଈଙ୍କି ମଧ୍ୟ ଖାତିରି ତଳେ ଆଣେ ନାହିଁ । ଫୁଲବେହି 'ବଧୂଦେଈ'ଙ୍କ ପରି ଅହଲ୍ୟା ସମାନ ସୁନ୍ଦରୀଙ୍କୁ ସେ ଗେଡ଼ି ବୋଲି ଉପହାସ କରେ । ଏମନ୍ତକି ରାଜ ଦ୍ୱାରରେ ଗଣ୍ଡ କଲାବେଳେ ମଣିଷ ଗୁଡ଼ାଙ୍କୁ ମଶା ମାଛି ପରି ଦେଖେ । ସମସ୍ତେ ତା ଉପରେ ଚଡ଼ ଚଡ଼ ହେଉଥାନ୍ତି । ରଜା ଯେତେବେଳେ ତାକୁ ସୁଖ ପାଉଥାନ୍ତି, କିଏ ବିରୋଧି ହେବ ?

ଥରେ ଯୁବରାଜଙ୍କ ସ୍ୱନକ୍ଷତ୍ରକୁ ପଡ଼ିଆରିଦୁଆର ପାଖରେ ପଦ୍ମମଣି ଏବଂ ବେଶ୍ୟାର ଦୁଇଜଣ କ'ଣ କଥାବାର୍ତ୍ତା ହେଉଥିଲେ; ସେ ବେଶ୍ୟା ତାଙ୍କୁ ଏକାନ୍ତ ଅସମ୍ମାନ କରି ଧକ୍କା ମାଇଲା ପରି ବ୍ୟବହାର ଦେଖାଇ ଓ କଥା କହି ଚାଲିଗଲା । ପଦ୍ମମଣି କ'ଣ ଅନ୍ୟମାନଙ୍କ ପରି ଯେ, ସହିବେ ? ମଙ୍ଗଳାରୋପଣ ପୂଜା ସରନ୍ତେ, ଜନ ସମାଗମ ମଧ୍ୟରେ କ୍ଷୁବ୍ଧ ପଦ୍ମମଣି ରଜାଙ୍କୁ ଜଣାଇଲେ ଏବଂ ତାଙ୍କ ପ୍ରିୟବନ୍ଧୁ କବିସୂର୍ଯ୍ୟଙ୍କ କବିତାରୁ ପଦଟିଏ—ସାମାନ୍ୟ ବଦଳାଇ ଗାଇଦେଲେ—

**ବରଜୀବ ରସେ ଦେଇ ମାନସ**
**ବରଜି ବରଷେ ଅଭକ୍ଷ୍ୟ ଗ୍ରାସ**
**ମନ୍ଦାକିନୀ-ରଜ, ଦେହେ ଲଗାଇ**
**ବନ ଶୁକରୀ କି ହୋଇବ ଗାଈ ?**

ସେ ବେଶ୍ୟା ବନଲତା ଗାଆଣି ମାନଙ୍କ ସହିତ ରହିଥିଲା । ସେ ଏହା ଶୁଣି କଳା ପଡ଼ିଗଲା । ରଜା ସେହି ଦିନରୁ ସେ ବେଶ୍ୟା ମୁହଁ ଆଉ ଚାହିଁଲେ ନାହିଁ । ଫଳରେ ମହାଦେଈଙ୍କ ଠାରୁ ପଦ୍ମମଣି ଯଥା ସମ୍ଭବ ପୁରସ୍କାର ଲାଭକଲେ ।

---

ବରଜୀବ—ଗାଈ । ବରଜୀବରସେ—ଦୁଗ୍ଧରେ । ବରଜି—ବର୍ଜି, ତ୍ୟାଗକରି ।
ଅଭକ୍ଷ୍ୟ—ଗୁହ । ଶୁକରୀ—ଘୁଷୁରୀ ।

# ୪୧—ମାସ୍ତୁଲ ଦେଖିଯାନ୍ତୁ

ରଜାଙ୍କର ଜଗର ଯେ, ଯେପରି ହେଉ ସେ ଥରେ ଯଦୁମଣିଙ୍କ ସ୍ତ୍ରୀ ଖଞ୍ଜନାକୁ ଦେଖିବେ । କିନ୍ତୁ ତାହା କଦାପି ସଫଳ ହେଉନାହିଁ । ରାଣୀ ମଧ୍ୟ କହି କହି ଉଆସକୁ ଆଣିପାରିଲେ ନାହିଁ । ଥରେ ଅଧେ ଚେଷ୍ଟା କଲେ, ତା ପରେ ସେ କଥାକୁ ଭୁଲିଯାଇ ଦୃଷ୍ଟି ଦେଲେ ନାହିଁ । ଏ ଗୋଟିଏ କ କଥା । ତାର ଯେବେ ମନ ନାହିଁ ଏତେ ଜୀଗର ବା ଲାଗିଛୁ କାହିଁକି ? କିନ୍ତୁ ପୁରୁଷ କପଟ ନାରୀ ଜାଣେ କପରି ?

ରଜା ଥରେ ଘୋଡ଼ାଚଢ଼ି ଫେରି ମାରୁଥାନ୍ତି—ଇଟାମାଟି ଗାଁ ବାହାରେ । ଯଦୁମଣି ଘରେ ନାହାନ୍ତି ବୋଲି ତାଙ୍କର ଧାରଣା ଥାଏ । ଅନେକ ସମୟରେ ବାସ୍ତବିକ ମଣିଷର ଆଶା ସଫଳ ହୁଏ । ରଜା ଦେଖିଲେ ଉକ୍ତ ଇଟାମାଟି କୂଅ ପାଖରେ ଅନେକ ସ୍ତ୍ରୀ ପାଣି ନେଉଛନ୍ତି । ତନ୍ମଧ୍ୟରେ ଜଣେ କିଏ ବେଶ ଉଜ୍ଜଳ ଏବଂ ସୁନ୍ଦର ଦେଖା ଯାଉଛି । ଘୋଡ଼ା ପାଖାପାଖି ନେଇ ସାଥିରେ ଥିବା ଲୋକଙ୍କୁ ପଚାରିଲେ;

—'ଏଇ ଜାହାଜ ପରି ଉଜ୍ଜଳ ମାଇପିଟା କିଏରେ ?'

ସାଥିଲୋକ କହିଲା—"ଆଜ୍ଞା ସେଇପରି ଯଦୁମଣି ମହାପାତ୍ରଙ୍କ ଘରଜା ।"

ମନ କାମନା ପୂର୍ଣ୍ଣ ହୋଇଗଲା । ପ୍ରଲୋଭନ ବଢ଼ି ଉଠିଲା । ମନରେ କିଛି ଭାବି ଧୀରେ ଫେରିଲେ । ଖଞ୍ଜନା ସତର୍କ ରହି ରହି ଅକସ୍ମାତ୍ ଏପରି ଏକ ଅଡ଼ୁଆରେ ପଡ଼ିଗଲେ । ଏଣେ ପାଣି ନ ନେଇ ଯିବାହାରି ଦୁର୍ବଳତା ଧରିପଡ଼ିବ । ଜାହାଜ କଥା ତାଙ୍କ କାନରେ ବାଜିଛି । ସେ ପାଣି ଗରାଧରି ତୁରନ୍ତ ଯାଇ ସ୍ୱାମୀ ଯଦୁମଣିଙ୍କୁ ସବୁକଥା କହିଦଅନ୍ତେ ; ଯଦୁମଣି ପଚାରିଲେ ;

—"ଗଲେ କୁଆଡ଼େ ?"

ଖଞ୍ଜନା କହିଲେ—"ମୁହିଁ ପୋତି ପୋତି ଧୀରେ ଯାଉଛନ୍ତି ।" ଯଦୁମଣି ଧାଇଁଲେ । ରଜା ରାସ୍ତା ଉପରକୁ ଉଠିବାକୁ ଯାଉଛନ୍ତି ଡାକ ଛାଡ଼ିଲେ ,—"ଆଜ୍ଞା , ଜାହାଜ ସିନା ଦେଖିଲେ; ତାର ମାସ୍ତୁଲଟା ତ ଦେଖିଗଲେ ନାହିଁ । ଆସନ୍ତୁ , ଆସନ୍ତୁ ।" ଏହାକହି ନିଜର ମଧ୍ୟାଙ୍ଗ ଉନ୍ମୁକ୍ତ କରିଦେଲେ । ରଜା ଲୋକଲଜ୍ଜା ଭୟରେ ଘୋଡ଼ାରେ ଥିଲେ ତ ତୁରନ୍ତ ଏ ଦୁଷ୍ଟ ହାବୁଡ଼ୁ ପଳାଇଗଲେ । ଘଟରେ ତାଙ୍କଠାରୁ ସମ୍ମାନ ବୋହିଗଲା । ଦୁଃଶ୍ଚିନ୍ତା ମଧ୍ୟ ହଠାତ୍ ଲିଭିଗଲା । ସେ ଆଜି କେବେ ସେ କଥା ଜୀବନ ଥିବା ଭିତରେ ପକାଇ ନ ଥିଲେ । କିନ୍ତୁ ଖଞ୍ଜନା ଥରେ ରଥଯାତ୍ରାରେ ଗୁଣ୍ଡିଚା ମଣ୍ଡପ ଦର୍ଶନରେ ରାଣୀଙ୍କୁ ଚହଲାଦେଇ ବୁଝାଇ ଥିଲେ ଯେ—

"ମୁଁ ରାମୁଙ୍କ ଦର୍ଶନକୁ ଆସିବାକୁ ଲଜ୍ଜିତ ନୁହେଁ । କିନ୍ତୁ ଆପଣ ଆମ ଦ୍ୱାରକୁ ଗଲେ ଲୋକ ସମାଜରେ ଲଜ୍ଜା ହେବନାହିଁ । ଆମେ ଏଠାକୁ ଦିନେ ଆସିଲେ ଲୋକେ କହିବେ ଆମେ ଖରାପ ଉଦ୍ଦେଶ୍ୟରେ ଆସିଥିଲୁଁ । ଧନୀ ଦରିଦ୍ର ଯେକ, ବଡ଼ଲୋକ ଗ୍ରେଟଲୋକ ଯେକ ଏତିକ ଫରକ । ମୋ ସ୍ୱାମୀ ମୋତେ ଏହି ଘଟଣାରେ ବହୁତ ବଳେଇଛନ୍ତି, କିନ୍ତୁ ମୁଁ ରାଜ ହୋଇନାହିଁ ।"

—ଏହାଶୁଣି ରାଣୀ ଉଚିତ ବୋଲି କହି ବଢେଇ ଯୁବତୀକୁ କୁଣ୍ଢାଇ ଧରିଥିଲେ ଏବଂ ରାଜାଙ୍କୁ ବୁଝାଇ ଦେବାରୁ ସେ ମଧ୍ୟ ପୂର୍ବଲାଞ୍ଛନାର କୋପ ତ୍ୟାଗ କରିଥିଲେ ।

ଅବଶ୍ୟ ଏହି ଘଟଣା ଘଟିବା ପରେ ରାଜା ଏବଂ ଯଦୁମଣିଙ୍କ ମଧ୍ୟରେ ପ୍ରାୟ ଦୁଇମାସ ଯାଏ ଆଦୌ ସାକ୍ଷାତ ହୋଇନଥିଲା । ଗୁଣ୍ଡିଙ୍କୁ ଦେଖାହେଲା । କେହି କୌଣସି ପ୍ରସଙ୍ଗ ଉତ୍ଥାପନ ନ କରିବାରୁ ସମ୍ବନ୍ଧ ମଧୁରତର ହୋଇଥିଲା ।

## ୪୨—ରାମ ଓ କୃଷ୍ଣ

ରାଜା ଓ ରାଣୀ ଉଭୟଙ୍କ ମଧ୍ୟରୁ ରାଜା କୃଷ୍ଣଙ୍କ ଭକ୍ତ ଏବଂ ରାଣୀ ରାମଚନ୍ଦ୍ରଙ୍କ ଭକ୍ତ ଥିଲେ । ଦୁହେଁ ଦିନେ ଆନନ୍ଦରେ ବସି ଯଦୁମଣିଙ୍କୁ ଡକାଇଲେ । କହିଲେ—'କବିବର' ଦେଖି ଗୋଟିଏ ପଦ୍ୟ ରଚନା କର ଯାହା କୃଷ୍ଣଙ୍କ ପକ୍ଷରେ ଯେପରି ସମ୍ଭବ ହେବ, ସେହିପରି ରାମଙ୍କ ପକ୍ଷରେ ସମ୍ଭବ ହେବ ।"

ଯଦୁମଣି ତୁରନ୍ତ କହିଲେ ;—

"କୁଜାନାରୀ ତୁଲେ ପୀରତି କରି
ପାଣିରେ ପର୍ବତ ରଖିଲେ ହରି ।—

—ରାମଚନ୍ଦ୍ରଙ୍କ ପକ୍ଷରେ ;—'କୁ' ଯେ ପୃଥୀ ତହିଁରୁ 'ଜା' କ ଜାତ ସୀତାଙ୍କ ପରି ରମଣୀ ରତ୍ନଙ୍କ ସହିତ ପ୍ରୀତିକରି ତାଙ୍କୁ ଉଦ୍ଧାର କରିବା ଲାଗି ସମୁଦ୍ର ପାଣିରେ ପର୍ବତ ମାନ ଆଣି ହରି କ ରାମ ବା (ହରି ଅର୍ଥାତ୍ ମର୍କଟ ମାନଙ୍କ ଦ୍ୱାରା) ରଖିଲେ ।—ଏଣେ କୃଷ୍ଣଙ୍କ ପକ୍ଷରେ;—କୁଜା କ କୁବୁଜା ମାଇପି ସହିତ ସ୍ନେହ ସମ୍ବନ୍ଧ ଯେ ରଖିଥିଲେ, ପୁଣି ପାଣି ଅର୍ଥାତ୍ ହସ୍ତରେ ପର୍ବତକୁ ଯେ ହରି ଅର୍ଥାତ୍ କୃଷ୍ଣ ଟେକି ରଖିଥିଲେ ।"—

ଏହା ଶୁଣି ଉଭୟେ ଏକାନ୍ତ ସନ୍ତୋଷ ଲାଭ କରିଥିଲେ । ବହୁ ଅର୍ଥ ମଧ୍ୟ ଦାନ କରିଥିଲେ ।

## ୪୩—ଚରିକି ପକାଇଲେ

ଦିନେ ନୂଆଗଡ଼ ରାଜ ସଭାରେ କବି ପଣ୍ଡିତ ମାନେ ଉପସ୍ଥିତ ଥିବା ସମୟରେ ରାଜା ଯଦୁମଣିଙ୍କୁ କହିଲେ ଗୋଟିଏ ହାସ୍ୟପୂର୍ଣ୍ଣ ରଚନା ପ୍ରକାଶ କର । କେତେଦିନ ପୂର୍ବରୁ ଚକ୍ରପାଣି ପଟ୍ଟନାୟକ ବିକ୍ଷିପ୍ତ ଥିଲେ ରାଜଦରବାରକୁ ଆସି ସଦାପୁ ସେବା ଯାଇଥିଲେ । ବାର୍ଦ୍ଧକ୍ୟ ହେତୁ ତାଙ୍କର ସେ ପୂର୍ବ ଉତ୍ତେଜନା ଆଉ ନଥିଲା । ଜଣେ ସଭାସଦ ତାଙ୍କୁ ଲକ୍ଷ୍ୟକରି କହିଲେ ଚକ୍ରପାଣି ପଟ୍ଟନାୟକଙ୍କ ନାମ ସାଥିରେ ସେ ହାସ୍ୟ ରସଟି ମିଶିଲେ ଭଲ ହୁଅନ୍ତା । ରାଜା ମଧ୍ୟ ସେଥିରେ ହଁ ଭରିଲେ । ତହୁଁ ପ୍ରବୀଣ ଏବଂ ଚତୁର ଯଦୁମଣି ଗୋଟିଏ ଗଦ୍ୟାତ୍ମକ କବିତା ଗାନକଲେ;—

"ଚୈତନ୍ୟ ଚ୍ୟାଉଙ୍କ ଚୂନ ଗୃହିଣୀରେ
ଚକ୍ରପାଣି ପଟ୍ଟନାୟକ
ଚୁଡ଼ା ଚଲ୍‌ହା ଗୁଡ଼ ଚକଟୁ ଚକଟୁ
ଚରିକି ପକାଇଲେ ।"

ହସରେ ସଭା ଭାଙ୍ଗି ପଡ଼ିଲା । ଯଦୁମଣିଙ୍କର କାଳନ୍ଦୀଚରଣ ଚ୍ୟାଉ ପଟ୍ଟନାୟକଙ୍କ ସାଥିରେ ତ ବିରୋଧ ଥିଲା ଯୁବାବେଳୁ । ତେଣୁ ତାଙ୍କର ବାପ ଚୈତନ୍ୟ ଚ୍ୟାଉଙ୍କ ଚୂନ ଗୃହିଣୀ ଗୌରବ ବାଢ଼ନ୍ତେ ସେ ମଧ୍ୟ ଆନନ୍ଦିତ ହୋଇଗଲେ ।

## ୪୪—କଟକ ଟକା

ଦିନାୟକ ସିଂହ ମାନଧାତା ଥରେ ସକୁଟୁମ୍ବ ବହୁ ଆଡମ୍ବରେ କଟକ ବିଜେ ହୋଇଥିଲେ । କଟକରେ ଦିବାଟ କୋଠୀ ଭଡ଼ା ନେଇ ରଜା ଏକମାସ ଯାଏ ରହିଲେ । ସାଥିରେ ଯଦୁମଣି ମଧ୍ୟ ଯାଇଥିଲେ । ପ୍ରତିଦିନ ରାଜା ପାରିଷଦ ବର୍ଗଙ୍କୁ ନାନା ମିଷ୍ଟାନ୍ନ ଭୋଜନ ଦେଉଥିଲେ । କଟକ ଛଟକ ନିଶ୍ଚୟ ସବୁଠୁ ସ୍ୱତନ୍ତ୍ର । ସେ ମିଷ୍ଟାନ୍ନ ପରି ମିଷ୍ଟାନ୍ନ ଅନ୍ୟତ୍ର ଦୁର୍ଲଭ ।

କଟକ ରହଣୀ ପରେ ସମସ୍ତେ ଫେରିଲେ । ଯଦୁମଣି ଘରକୁ ଫେରି ଘରଜାଙ୍କୁ କଟକ ମିଷ୍ଟାନ୍ନ ବିଷୟରେ ଅତି ପ୍ରଲୋଭନୀୟ ବର୍ଣ୍ଣନା କରି ବସିଲେ । ଖଞ୍ଜନା ସବୁଦିନେ ଶୁଣି, ଖାଲି ହସନ୍ତି । ଦିନେ କହିଲେ, ତୁମେ ଖାଇଲେ କ'ଣ ଆମେ ଖାଇଲୁଁ ନାହିଁ ? ସାଇପଡ଼ଶାଙ୍କୁ ଦେଖାଇ ଥାନ୍ତେ;—କିଛି କିଛି ପୁଡ଼ା କରି ଆଣିଲ ନାହିଁ ?

ଯଦୁମଣି ମନକଥା ମନରେ ମାରି ରାଜାଙ୍କ ସମ୍ମୁଖରେ ହାଜର ହୋଇ କବିତାଟିଏ ଗାଇଲେ ;—

**ସର୍ବଦା ଜୀବିକା ମୋ ଠକ ଠକ**
**ସଙ୍ଗାଳି ମୋର ବାରସି ପଟକ**
**ନଗଲ୍ ପାଣୋର କଟକ ଟକ ।**
**ପାଞ୍ଚ ଅକ୍ଷର ଏ ପାଞ୍ଚ ଅକ୍ଷର**
**ଲେ୍ମ ବଲେ୍ମରେ ଲେ୍ଡ଼ା ସେ ମୋର**
**'କଟକ ଟକ' ।**

ସ୍ନେହାନୁବର୍ତ୍ତୀ ରଜା କଟକ ଲୋକ ପଠାଇ, ସେଠାରୁ ମିଷ୍ଟାନ୍ନ ଅଣାଇ ଯଦୁମଣିଙ୍କ ପାଖକୁ ପଠାଇ ଦେଲେ । ଫଳଲେ ଖଞ୍ଜନା ତାହା ସାଇପଡ଼ଶାରେ ଦେଇ ଗୌରବ ଅର୍ଜିଲେ ।

## ୪୫—ହସି ଫୁଲ୍ ପେଣ୍ଡା ପକାଇ ଦେଲା

ଯଦୁମଣିଙ୍କ ସହିତ ନୂଆଗଡ଼ ରାଜପରିବାରର ଏପରି ମଧୁର ସମ୍ପର୍କ ସୃଷ୍ଟି ହେଲା ଯେ, ରାଜା ଯଦୁମଣିଙ୍କୁ ଅଧିକାଂଶ ସମୟରେ ଡକାଉଥିଲେ । ଗୋପନରେ ଶାସ୍ତ୍ର ଚର୍ଚ୍ଚା କରିବା, ଗ୍ରନ୍ଥ ଇତ୍ୟାଦି ପଢ଼ି ବୁଝାଇବାରେ ବହୁ ସମୟରେ ସେ ଯୋଗ ଦେଉଥିଲେ । ବିନାୟକ ମାନଧାତାଙ୍କର ପୂର୍ବଜ ପୁରୁଷୋତ୍ତମ ମାନଧାତାଙ୍କ ରଚିତ ଶୋଭାବତୀ କାବ୍ୟ ଥରେ ଆଲୋଚନା ଚାଲିଥିଲା । ଖୋଲା କଥା ପଢ଼ିବାରୁ ରାଣୀ ପାଖକୁ ନ ଆସି ଅନ୍ତରାଳରେ ଥାଇ ଶୁଣୁଥିଲେ ।

ରାଜାଙ୍କ ରାଣୀହଂସପୁର ଅଗଣାରେ ବର ଓ ଅସ୍ତ ଗଛ ଦୁଇଟି ଏକତ୍ର ଲାଗି ଦୁହିଁଙ୍କର ବିବାହ ବହୁ ଦିନରୁ ହୋଇଥିଲା । ସେ ଗଛରେ ଅନେକ ସମୟରେ ମାଙ୍କଡ଼ ମଧ୍ୟ ଚଢ଼ୁଥିଲେ । ଗ୍ରନ୍ଥରେ ଯେଉଁ ସମୟରେ ମଧୁଶଯ୍ୟା ବୃତ୍ତାନ୍ତ ପଢ଼ୁଥିଲା, ସେତିକି ବେଳେ ଯୋଗକୁ ଉକ୍ତ ଗଛ ଉପରେ ବାନର ବାନରୀ ରତି କାର୍ଯ୍ୟରେ ବ୍ୟସ୍ତ ଥିଲେ । ଗ୍ରନ୍ଥଚର୍ଚ୍ଚା ବନ୍ଦକରି ଯଦୁମଣି ଅନ୍ୟ ବିଷୟ କଥୋପକଥନ ହେଉଥିଲେ । ରାଣୀହଂସପୁର ଅଗଣାରେ ଗୋଟିଏ ପାଚେରି ଥିଲା । ସେଥିରେ ମଧ୍ୟ ଏକ ଦୁଆର ଥିଲା । ତାହା ଭିତରୁ ବନ୍ଦଥିଲା । ବାହାର ଅନ୍ତଃପୁର ଅଗଣାରେ ରାଜା ଓ ଯଦୁମଣି ଯେଉଁଠି ବସି ଗ୍ରନ୍ଥ ଆଲୋଚନା କରୁଥିଲେ, ସେଠାକୁ ଗୋଟିଏ ଜଳାକବାଟି ଅନ୍ତଃପୁରକୁ ପାଚେରି କାନ୍ଥରେ ରହିଥିଲା । ବର, ଓସ୍ତ ଗଛର ଉପର ଡାଳ ସବୁ ବାହାର ଖଞ୍ଜାକୁ ଦେଖାଯାଉଥିଲା । ବାନର ରତି କଥା ରାଜାଙ୍କ ଦୃଷ୍ଟିକୁ ଆସିନଥିଲା । କାରଣ ସେ ଗ୍ରନ୍ଥଚର୍ଚ୍ଚାରେ ଏକାନ୍ତ ନିମଗ୍ନ ରହିଥିଲେ । ଚଉଆଖିଆ ଯଦୁମଣି ସେ ବାନର କେଳିକଥା କେତେବେଳୁ ଜାଣିଥିଲେ ।

ଏମନ୍ତ ସମୟରେ ରାଣୀ ବଟବୃକ୍ଷ ଉପରେ ଥିବା ବାନର ବାନରୀଙ୍କର ରତିକ୍ରୀଡ଼ା ଦେଖି ପୂର୍ବୋକ୍ତ ଗବାକ୍ଷ ମାର୍ଗରେ କୋମଳ କରପଦ୍ମରେ ଗୋଟିଏ ଫୁଲ ପେଣ୍ଡାଧର ରାଜାଙ୍କ ଶ୍ରୀଅଙ୍ଗକୁ ନିକ୍ଷେପ କଲେ । ରାଜା ଦେଖିଲେ ରାଣୀ ହସି ହସି ତାଙ୍କୁ ଏ ଫୁଲ ପେଣ୍ଡା ଫିଙ୍ଗି ଛନ୍ତି । କାରଣ ଫୁଲ ତାଙ୍କ ଶ୍ରୀ ଅଙ୍ଗରେ ବାଜିବା ମାତ୍ରେ ସେ ଗବାକ୍ଷକୁ ଅନାନ୍ତେ ; ଚତୁରା ମହାଦେଈ ଏକାନ୍ତ ଉତ୍ସନ୍ନ ଭାବରେ ହସି ପଳାଉଛନ୍ତି ।

ତେଣୁ ରାଜା ଯଦୁମଣିଙ୍କୁ କହିଲେ ;

**'ମନେକି ପାଞ୍ଚି ଲା**
**ହସି ଫୁଲ ପେଣ୍ଡା ପକାଇ ଦେଲା ।'**

ଯଦୁମଣି ପାଦ ପୂରଣ କରି ତୁରନ୍ତ ଗାଇଦେଲେ ;

**'ବଟବୃକ୍ଷପରେ ବାନରୀ ରତ**
**ଦେଖି ବାନ୍ଧବୀର ବଳିଲା ଚିତ୍ତ**
**କାନ୍ତ ପ୍ରତୀପର ହେବା ବହିତ**
**ପ୍ରତ୍ୟୁତ ପ୍ରଦାନେ ଯେଣୁ ଉଦ୍ୟତ**
**ମନେ ସେ ଇଚ୍ଛି ଲା**
**ହସି ଫୁଲ ପେଣ୍ଡା ପକାଇ ଦେଲା ।**

ରାଜା ଯଦୁମଣିଙ୍କୁ ଠେଲ ଦେଇ ନିଜ ବହୁ ମୂଲ୍ୟବାନ୍ ଶୀରୋଦ୍ଧି ଚଦର ଖଣ୍ଡି ପୁରସ୍କାର ଦେଇ ରାଣୀ ହଂସ ପୁରକୁ ବିଜେ ହୋଇଗଲେ । ଯଦୁମଣି ଚଦର ଖଣ୍ଡି ମୁଣ୍ଡରେ ଗୁଡ଼ାଇ ଘରକୁ ଫେରିଲେ ।

## ୪୭—ସର ବରା କାର

ଯଦୁମଣିଙ୍କ ଗ୍ରାମର ସର୍ବରାକାର ସର୍ବଦା ତାଙ୍କର ଶତ୍ରୁତା କରୁଥିଲା । କାରଣ ସେ ତାକୁ ଆଦୌ ମାନୁ ନଥିଲେ । ତା କାର୍ଯ୍ୟର ପ୍ରତିବାଦ କରୁଥିଲେ । ସର୍ବରାକାର ଏତେ ଅତ୍ୟାଚାରୀ ଯେ ତାର ନିଜର କାର୍ଯ୍ୟ ପଡ଼ିଲେ ଦହି, ଦୁଧ, ଘିଅ ଗଉଡ଼ ମାନଙ୍କୁ ଧମକାଇ ବିନା ପଇସାରେ ନେଉଥିଲା । ନିଜ ବଳଦକୁ ହଳ ମାଗିନେଇ ଚାଷ କରାଉଥିଲା । ଏହିପରି ନାନାବେଠିରେ ପ୍ରଜାଙ୍କୁ ହଇରାଣ କରୁଥିଲା ।

ଦିନେ ଯଦୁମଣିଙ୍କର ଗୋଟିଏ ପର୍ବଦିନ ଥିଲା । ଯେଉଁ ଗଉଡ଼ୁଣୀ ତାଙ୍କୁ ଦହି, ଦୁଧ, ଛେନା, ଘିଅ ଆଦି ଯୋଗୁଆ ଦେଉଥିଲା, ସେ ଆସୁଥିବା ବେଳେ

ସର୍ବରାକାର ଜବରଦସ୍ତି ତା'ଠୁ ଦୁଧଦହି ଛଡ଼ାଇ ନେଲେ । ତେଣୁ ସେ ଆସି ଖଞ୍ଜନାଙ୍କୁ ସମସ୍ତ କଥା କହିବାରୁ, ଖଞ୍ଜନା ପଦ୍ମମଣିଙ୍କୁ କହିଲେ—'ହଇହେ' ଏ ରାଜ୍ୟରେ କ'ଣ ସେଇ ଜଣକ ଦହି ଘିଅ ଖାଇବ । ଆଉ କେହି ପଇସା ଦେଇ ବି ଟୋପାଏ ପାଇବେ ନାହିଁ ?''

ପଦ୍ମମଣି ସବୁକଥା ବୁଝି କେତେକ ପ୍ରଜାଙ୍କୁ ସାଙ୍ଗରେ ଧରି ରାଜଦ୍ୱାରକୁ ଗଲେ । ସର୍ବରାକାର ଏହା ଜାଣି ମଧ୍ୟ ଟଳିଲା ନାହିଁ । ପଦ୍ମମଣି ରଜାଙ୍କ ନିକଟରେ ପହଞ୍ଚି କହିଲେ ।

**ମଣିମା, ସବୁ ନେବେ ଯେବେ ସରବରାକାର**
**ଛାମୁଁଙ୍କ ରାଇଜେ ସର, ବରା, କାର ?**

ରଜା ଏ ପଦ୍ୟର ଅର୍ଥ ସମଝି ସର୍ବରାକାରକୁ ତଲବ କରି ବୁଝିଲେ ଯେ, ସେ ତାଙ୍କ ନାଁ କହି ଲୋକଙ୍କ ଅତ୍ୟାଚାର ଚଳାଇଛି । ତେଣୁ ତାକୁ କଠୋର ଦଣ୍ଡ ଦେଇ ଜବତ କରିଦେଲେ । ସେ ଦିନୁ ଆଉ ସେ ବେଠି କରାଇ ପାରିଲା ନାହିଁ ।

## ୪୨—ତୋର ମୁଁ ହୁଅନ୍ତି ଦିଅର ଥରେ

ପଦ୍ମମଣି ପୁରୀ ପଳାଇ ବଡ଼ଭାଇର ସାତମଙ୍ଗଳା ଭିତରେ ଯାଇ ସେଠାରେ ରଥଯାତ୍ରା ପର୍ଯ୍ୟନ୍ତ ରହିଲେ । ଏ ମଠ ସେ ମଠରେ ବୁଲି ଖାଉଥିଲେ । କେଉଁଠି ଗୀତ ଭାଗବତ ଗାଉଥିଲେ । ଚେହେରା ତାଙ୍କର ବେଶ ଭଲଥିଲା । ଏପରିକି ଜଣେ ଦେବଦାସୀ ଘରେ ଚୁଡ଼ାଙ୍କ ସାହିରେ ମଧ୍ୟ କେତେଦିନ କଟାଇଥିଲେ ।

ରଥଯାତ୍ରା ବେଳେ ଏ ଆଡ଼େ ସେ ଆଡ଼େ ବୁଲି ସେ ଗୋଟିଏ ଖଣ୍ଡେଇତ ଯୁବତୀର ରୂପଶ୍ରୀରେ ମୋହିତ ହୋଇଗଲେ । ତାକୁଛାଡ଼ି ଯିବାକୁ ତାଙ୍କର ଇଚ୍ଛା ହେଲାନାହିଁ । ତାକୁ ଏକାକୀ ଦେଖି ତା ପାଖରେ ଗୋଟିଏ କବିତା ଗାଇଦେଲେ ।

**ତୋର ମୁଁ ହୁଅନ୍ତି ଦିଅର ଥରେ,**
**କଥା କହୁଥାନ୍ତି ଦି ଅରଥରେ ।**
**ବିଜେ କରିଛନ୍ତି ଦିଅଁ ରଥରେ,**
**ସଙ୍କଳପ କରି ଦିଅ ରଥରେ ।**

ସେ ଯୁବତୀ ବିବାହିତା ଥିଲା । ତାର ଟିକି ଦିଅର ସାଥିରେ ସେ ବଡ଼ଦାଣ୍ଡକୁ ଯାତ୍ରା ଦେଖି ଆସିଥିଲା । ତାରଘର ବାଙ୍ଗମାରି । ସେ ରସିକା ଏବଂ

ଦି ଅରଥରେ—ଦୁଇପ୍ରକାର ଅର୍ଥରେ

ଝରକଣା ପଣ୍ଡିତା ଥିଲା । ଏହା ଶୁଣନ୍ତେ ଯୁବତୀ ଯଦୁମଣିଙ୍କ ହାତ ଉଡ଼ନେଇ ରଥକୁ ଛୁଇଁ କହିଲା;—

—"ହଁ ତୁ ମୋ ବଅର ହେଲୁ । ମତେ ଏପରି ପରିହାସ କର ।"

ଯଦୁମଣି ଉକ୍ତ ଯୁବତୀ ସହିତ ବାଘମାରଗାଁରେ ତିନିମାସ ରହିବା ପରେ ତାଙ୍କ ଶଶୁରଙ୍କ ଦ୍ୱାରା ଅପମାନିତ ହୋଇ ଗ୍ରାମକୁ ଫେରିଥିଲେ ଏବଂ ଉକ୍ତ ସ୍ତ୍ରୀ ସହିତ ତାଙ୍କର ବନ୍ଧୁତା ମଧ୍ୟ ଚିରକାଳ ରହିଥିଲା ।

## ୪୮—ମଣିମା ! ମୁଁ ମୁଣ୍ଡିକିଆ

ନୂଆଗଡ଼ ରାଜା ବିନାୟକଙ୍କ ପାଟକୁମାର ଯୁବରାଜ ବ୍ରଜବଲ୍ଲଭଙ୍କର ବ୍ରତ ମହୋତ୍ସବ ମହା ଆଡ଼ମ୍ବରରେ କରାଯାଇଥିଲା । ଯେଉଁ କାର୍ଯ୍ୟି, କରଣ ଏବଂ ବେଭାରିମାନେ ବସ୍ତ୍ର ବେଭାର କାର୍ଯ୍ୟରେ ଥିଲେ ସେମାନେ ଯଦୁମଣି ସାଧାରଣ ବଢ଼େଇ ଜାତିର ଥିବାରୁ, ତାଙ୍କୁ ଇତର ଲୋକଙ୍କ ସହିତ ଗୋଟିଏ ହଳଦିଆ ଲୁଗା ପିନ୍ଧିବାକୁ ଦେଲେ । ଯଦୁମଣି ଦେଖିଲେ ହଳଆ ମୂଳଆଛଡ଼ା ସାଧାରଣ ପାଖଲୋକ ମଧ୍ୟ 'ପଥା' (ଯୋଡ଼) ପାଇଛନ୍ତି । ଏହି କଥା କାହାକୁ ନ କହି ସେ ନୀରବରେ ବସ୍ତ୍ର ଖଣ୍ଡିକ ପିନ୍ଧି ମନ କଷ୍ଟ ମନରେ ରଖିଲେ । ଉତ୍ସବ ଶେଷ ହେଲା ।

ତା ପରଦିନ ରାଜା ଯଦୁମଣିଙ୍କୁ ନ ଦେଖି ପାଇକ ପଠାଇ ଡକାଇ ଆଣିଲେ । ଯଦୁମଣି ଯେଉଁ ନୀରସା ହଳଦିଆ ବସ୍ତ୍ର ଖଣ୍ଡିକ ଉପନୟନ ବିଧିରୁ ପାଇଥିଲେ, ସେଇ ଖଣ୍ଡିକ ପିନ୍ଧି ଘରୁ ବାହାରିଲେ । ଖଞ୍ଜନା କହିଲେ;—"ଇଏ କଣ ? ତୁମେ ପର ରଜାଙ୍କ ଦରବାରକୁ ଯାଉଛ ? ଦୋସଡ଼ା ନେଇଯାଅ ।"

ଯଦୁମଣି ଶୁଣିଲେ ନାହିଁ । ଖାଲି ହସିଦେଇ ପାଇକ ସାଥିରେ ଚାଲି ଚାଲି ଆସିଲେ । ରଜାଙ୍କ ନିକଟରେ ଉପସ୍ଥିତ ହୋଇ ସେ ଆସନରେ ନ ବସି ଦୂରେଇ ହୋଇ ସେହିପରି ଉନ୍ମୁକ୍ତ ଦେହରେ ଠିଆ ହେଲେ ।

ରାଜା କହିଲେ;—"ଯଦୁମଣି ! ଏ ଆଡ଼େ ଆସ । ସେଠି ଛିଡ଼ା ହେଲ କାହିଁକି ?"—

ଯଦୁମଣି କହିଲେ;—"ମଣିମା ! ମୁଁ ମୁଣ୍ଡିକିଆ ।"

ରାଜା ତାଙ୍କର ହଠାତ୍ମ୍ବର ପିନ୍ଧାରୁ ଘଟଣା ତୁରନ୍ତ ଜାଣିଗଲେ ଏବଂ କହିଲେ;—

—"ମୁଁ ଯାହା ଭାବିଥିଲି ତାହାହିଁ ହେଲା ।" ଏହାକହି ଏକ ଯୋଡ଼ା କୁମ୍ଭିକା ପାଟଧଡ଼ିଆ ଅତି ମୂଲ୍ୟବାନ ବସ୍ତ୍ର ଅଣାଇ ତାଙ୍କୁ ପିନ୍ଧାଇ ପାଖକୁ ଟାଣି

ଆଶ୍ୱାସନା ଦେଲେ । ଏପରି ସମୟରେ ଭିତରୁ ଦୁଇଯୋଡ଼ା ରଣଯୁଗ୍ମ ଧୋତିଚଦର ଏବଂ ଦୁଇଟି ଶାଢ଼ୀ ଆସି ପହଞ୍ଚିଲା । ଯେଉଁମାନେ ତାଙ୍କୁ ଅପମାନ ଦେଇଥିଲେ ସେମାନେ ଲଜ୍ଜାରେ ଲୁଚି ଯାଇଥିଲେ ।

## ୪୯—ପଙ୍କରେ ସଡ଼କରେ

କାର୍ତ୍ତିକ ମାସରେ ପଞ୍ଚୁକକୁ ହଜାର ହଜାର ସ୍ତ୍ରୀ ପୁରୁଷ ପୁରୀ ଯାତ୍ରା କରନ୍ତି । ରାଜା ସାହରୁ ସ୍ନାନ କରି ବଡ଼ଭିନ୍ନ ଦେବତା ଦର୍ଶନ୍ ସାରି ଅଶ୍ୱ ପୃଷ୍ଠରେ ଫେରି ଆସିଲା ବେଳେ ଦେଖିଲେ ଯେ ପାହାନ୍ତା କାକରରେ ସହ ସହ ଯାତ୍ରୀ ଚାଲିଛନ୍ତି । ତେଣୁ ସେ ହଠାତ୍ ଯଦୁମଣିଙ୍କୁ ରାଜସଭାରେ ପଚାରିଲେ—

'ଯଦୁମଣି ! ଏ କାକରେ କେଉଁମାନେ ଯାଉଛନ୍ତି ?

ଯଦୁମଣି ସବୁଖବର ଅନ୍ତର ରଖୁଥିଲେ । ସେ ମଧ୍ୟ ଅସଂଖ୍ୟ ନରନାରୀ ଏହି ପଞ୍ଚୁକରେ ରାତାରାତି ଚାଲିଥିବାର ଦେଖିଥିଲେ । ତେଣୁ ସମସ୍ତଙ୍କୁ ପ୍ରଣାମ କରି ସେ ହଠାତ୍ କହିଦେଲେ;

—"ଆଜ୍ଞା, ଏ କାକରେ ହିକରେ ସ୍ତ୍ରୀ କରଧରି ଚତୁର୍ଭୁଜର ଦର୍ଶନକୁ ପଙ୍କରେ ସଡ଼କରେ ଯାଉଛନ୍ତି ।"

ରାଜା ତାଙ୍କର ଏହି ଉତ୍ତର ପାଇ ତାଙ୍କୁ ବହୁତ ପ୍ରଶଂସା କରିଥିଲେ ।

## ୫୦—ଚିତ୍ର ନାରୀକେଳ ଦୀକ୍ଷା

ଯଦୁମଣିଙ୍କର ପୁଅଝିଅ ଦୁଇଟିଛଡ଼ା ଅଧିକ ସନ୍ତାନ ନ ଥିଲେ । ଝିଅ ରମା ବଡ଼, ପୁଅ କପିଧ୍ୱଜ ସାନ । ସେ ଚାଟଶାଳୀରେ ପାଠ ପଢୁଥିଲା । ଶରଦ ନଡ଼ଆ ବେଳ ଶ୍ରୀପଞ୍ଚମୀ ଦିନ ଗୁରୁଙ୍କ ସାହଚର୍ଯ୍ୟରେ ପିଲାଙ୍କ ସାଥିରେ 'ବନ୍ଦଇ ହରି ଦେବ ମୁରାରି ଲକ୍ଷ୍ମୀଦେବୀଙ୍କର କାନ୍ତ' ଗୀତଗାଇ ରାଜପୁରୀକୁ ଆସିଥିଲା । ରାଣୀ ଯଦୁମଣିର ପୁଅ ଥିବାରୁ ପାଞ୍ଚଟଙ୍କା ନଗଦ ଦେଇଥିଲେ । ରାଜପୁରୀର ଅନ୍ୟାନ୍ୟମାନେ ମଧ୍ୟ ଯଥାସମ୍ଭବ ଦେଇଥିଲେ । କିନ୍ତୁ ରାଜାସାହେବ ପାଠକୁ ପାଞ୍ଚଟଙ୍କା ଦେବାକୁ ବରାଦ କରିଦେଲେ ; ପାଠେ କିନ୍ତୁ ହାଉଁପାଣ ନାମକ ପରୀକ୍ଷା ନିକଟକୁ ପାଞ୍ଚଟଙ୍କା ଦେବାକୁ ଚିଠିଲେଖି ଦେଇଥିଲେ । ପିଲାଏ ହାଉଁପରୀକ୍ଷାଙ୍କ ପାଖକୁ ଚିଠି ନେଲେ ମଧ୍ୟ ସେ ହିଦାକ ଦେଲେନାହିଁ । କହିଲେ ତେରତ ରଜାଘରୁ ପାଇଛ । ଆଉ ଅଧିକରେ କଅଁ ଆଶା କରୁଛ ? ପିଲାଏ ଲାଜରେ ଘରକୁ ପଳାଇ ଆସିଲେ । ସେ ଟଙ୍କା ଗୁରୁଙ୍କର ପ୍ରାପ୍ୟ ହେଲେହେଁ କପିଧ୍ୱଜ ବାପାଙ୍କୁ ସବୁକଥା କହିଥିଲା ।

ଯଦୁମଣି ଶିଶୁମାନଙ୍କର ମାନରକ୍ଷା ଲାଗି ଗୋଟିଏ ବ୍ୟଙ୍ଗ କବିତା ଲେଖି ପଠାଇ ଦେଲେ ;—

**ଶବ୍ଦ ନାରୀ କେଳ ଦୀକ୍ଷା, ଗୃହପିଲାଙ୍କର ଭିକ୍ଷା**
**ପାଦ୍ରଙ୍କ ପଦରେ ମୁଣ୍ଡ ଦ୍ୱାର ମାଡ଼**
**ଛାଡ଼ିଲେ ହାଡ଼ୁ ପରୀକ୍ଷା ।**

ସ୍ପଷ୍ଟଭାଷୀ ଯଦୁମଣିଙ୍କ କବିତା ପଢ଼ି ରାଜା ଜାଣିଲେ ଯେ ଶିଶୁମାନଙ୍କୁ ଲାଞ୍ଛିତ କରିବା ଅତି ଦୁଃଖପ୍ରଦ କଥା । ତେଣୁ ରଜା ପାଦ୍ରଙ୍କୁ ଅପମାନ ଦେଇ ହାଡ଼ୁପରୀକ୍ଷାକୁ କହିଥିଲେ;—'ତୋ ବୋପା ଘରୁ ଦେଇଥାନ୍ତୁ କି ? ଟଙ୍କା ପାଇକ ହାତରେ ତୁରନ୍ତ ପଠାଇ ଦିଆଯାଇଥିଲା । ପିଲାଏ ଗୁରୁଙ୍କୁ ଦେଇ ଏକାନ୍ତ ଆନନ୍ଦିତ ହୋଇଥିଲେ ।

## ୫୧—ମାଡ଼ଭୟେ ଛେରି ଏତେ ଲିପିଲା

ଯଦୁମଣି ନିଜ ପିଲାଙ୍କୁ ବିଦ୍ୟାଶିକ୍ଷା ଦେବାପାଇଁ ଗୋଟିଏ ଗୃହଶାଳୀର ଆୟୋଜନ କରିଥିଲେ । ସେଥିରେ ଜଣେ ମାଟିବଂଶ ନାହାକ ଅବଧାନ ଥିଲେ । ଅବଧାନେ ବଡ଼ କଡ଼ା । ପିଲାଙ୍କୁ ଭୀଷଣ ମାଡ଼ ଚଢ଼ାଉଥିଲେ ।

ଏପରି ଶ୍ରେଷ୍ଠ ପିଲାଙ୍କୁ ଏତେଗୁଡ଼େ ମାଡ଼ଦେବା ଉଚିତ ନୁହେଁ ବୋଲି ଯଦୁମଣି ଅବଧାନଙ୍କୁ କହିପାରୁ ନ ଥିଲେ କାରଣ ଅବଧାନେ କାଳେ ଅପମାନ ବୋଧକରି ଚାଲିଯିବେ ।

ଥରେ ଗୃହଶାଳୀରେ ଗୋଟିଏ ଟେଲିପିଲା ମାଡ଼ ଭୟରେ ଚଉପାଢ଼ୀରେ ଛେରି ପକାଇଲା । ଘରଆଡ଼ ଗୁହ ସଲବଲ । ଅବଧାନେ ତାକୁ ତା ହାତରେ ପୋଛେଇ ପାଣି ଓ ଗୋବର ଆଣି ଲିପେଇଛନ୍ତି ବୋଲି ଯଦୁମଣି ଶୁଣିପାରି ଅବଧାନଙ୍କ ପାଖକୁ ଯାଇ କହିଲେ;—

**ଆହେ ଅବଧାନେ ଏ ଟେଲି ପିଲା**
**ମାଡ଼ଭୟେ ଛେରି ଏତେ ଲିପିଲା ।**

ଅବଧାନେ, ଏତେକ ଶୁଣି ସେ ଦିନଠାରୁ ଉଣିଗଲେ । ଅବଧାନ ବାପୁଡ଼ା ଆଉ ପିଲାଙ୍କୁ ନମାରି ସ୍ନେହ ବାତ୍ସଲ୍ୟ ଦେଖାଇ ପାଠ ପଢ଼ାଇଲେ ।

## ୫୨—ବାରିକ ବାଟରେ ମାଇଲା

ଗଡ଼ପଡ଼ା ମୌଜାର ଜଣେ ଲୋକର ଘରଣୀ ତା ସ୍ୱାମୀକୁ ମନକୁ ନ ଆଣି ଗୋଟିଏ ପରଅଣ୍ଡିରା ସାଥିରେ ମାତିଥିଲା । ଘଇତା ନ ଥିଲେ ମନ ସ୍ୱାଚ୍ଛନ୍ଦ୍ୟରେ ମଜା କରିବ ବୋଲି ବଦ୍ଚରିତ ମାଇକିନା ଗୋଟିଏ ବାରିକ ଟୋକା ସାଥିରେ ଘଇତାକୁ ବନ୍ଧୁଘରକୁ ପଠାଇ ଦେଇଥିଲା । ଏମନ୍ତକି ବାରିକ ଟୋକାକୁ ଲାଞ୍ଚଦେଇ କହିଥିଲା— ମୋ ନାଁରେ କଥା ବାହାର କଲେ କମିତି ମାଡ଼ ଭୁ ଚଢ଼େଇବୁ, ତାହା ଠିକଏ ବାଟରେ ଦେଖେଇ ଦେବୁ । ଉକ୍ତ ନାରୀର ସ୍ୱାମୀଟି ଅଧମ ଥିଲା । ଫଳରେ ଭଣ୍ଡାରି ହାତରେ ସେ ମାଡ଼ ଖାଇ ଗୋଟିଏ ଗାଁରେ ଯାଇ ଆଶ୍ରୟ ନେଇଥିଲା । ଏଣେ ଜାରପୁରୁଷଟି ସେଇଦିନ ରାତି ମାଇପିର ବାଡ଼ କବାଟରେ ହାତ ମାରି ଡାକିବାରେ ପଡ଼ୋଶୀମାନେ ଜାଣି ତାକୁ ଧରି ନିସ୍ତୁକ ମାଡ଼ ଚଢ଼େଇଥିଲେ । ଏହି ଘଟଣା ଶୁଣି ଯଦୁମଣି କବିତା ହାରି କହିଥିଲେ—

**ସେ ପୁଣି ବାରିକ ବାଟରେ ମାଇଲା**
**ଏ ପୁଣି ବାରି କବାଟରେ ମାଇଲା ।**

ଏହି ପ୍ରବାଦ ଚଉଦିଗରେ ବ୍ୟାପୀ ଯିବାରୁ ମାଇପିଟା ତା ଅଧମ ସ୍ୱାମୀକୁ ଧରି ପୁଣି ଘରଦ୍ୱାର କରିଥିଲା ।

## ୫୩—ପାତ୍ର କରିଛି ବଳୀ ଦେବତାକୁ

କବିସୂର୍ଯ୍ୟ ବଳଦେବ ରଥ ଯଦୁମଣିଙ୍କ ସମସାମୟିକ ଥିଲେ । ଦୁହେଁ ପ୍ରାୟ ଏକ ବୟସର ଥିଲେ । ବ୍ରାହ୍ମଣ ହେତୁ ଏବଂ ସଂସ୍କୃତ ଭାଷାରେ ବିଚକ୍ଷଣ ପଣ୍ଡିତ ହେତୁ କବିସୂର୍ଯ୍ୟ ବଡ଼ କବି ହୋଇ ଉଠିଥିଲେ । ଯଦୁମଣି ମଧ୍ୟ ବ୍ୟଙ୍ଗ ହାସ୍ୟରସିକ ଭାବରେ ଅଳ୍ପ ନ ଥିଲେ । ଥରେ ବିନାୟକ ମାନଧାତାଙ୍କର ନିମନ୍ତ୍ରଣ କ୍ରମେ କବିସୂର୍ଯ୍ୟ ନୂଆଗଡ଼ ଆସିଥିଲେ ।

ଆଶ୍ୱିନ ମାସ । ରାଜବାଟୀର ପାତ୍ର ବଳୀଦେବତା ନାମକ ଜଣେ ପଣ୍ଡା ବ୍ରାହ୍ମଣ, ଦେବୀଙ୍କ ନିକଟରେ ଶତ ସଂଖ୍ୟକ ଛାଗବଳୀ ଦେବାର ବ୍ୟବସ୍ଥା କରିଥିଲେ । କବିସୂର୍ଯ୍ୟ ବଳଦେବ ଏହି ବଳୀ ପ୍ରଥାର ଏକାନ୍ତ ବିରୋଧୀ ଥିଲେ । ତେଣୁ ସେ ପ୍ରାଣୀହତ୍ୟାରେ ବ୍ୟଥିତ ହୋଇ ରାଜାଙ୍କୁ ନିନ୍ଦା କରିବା ଛଳରେ କହିଲେ—

**କି କହିବା ନୃପ ମାନଧାତାଙ୍କୁ**
**ପାତ୍ର କରିଛୁ ବଳୀଦେବତାଙ୍କୁ ।**

ତାଙ୍କର ପ୍ରିୟ ରଜାଙ୍କର ଅପମାନ ଲାଘବ କରିବାକୁ ଯାଇ ଯଦୁମଣି ତୁରନ୍ତ କହିଥିଲେ—

ପୋଡ଼୍ ଏ ବିବେକମାନ ଧାତାର
ନୃପ ଚୂଡ଼ାମଣି ମାନଧାତାର—
ପାତ୍ର କରିଛ୍ତି 'ବଳୀଦେବତା'ଙ୍କୁ
ହୋଇଲେ ସିନା ବଳଦେବ ତାଙ୍କୁ
ଆଶ୍ୱିନ ମାସେ ବଳୀ ଦେବ ତାଙ୍କୁ
କି ଅବିବେକରେ
କଟାରୀ ଥୋଇଲେ ଅବି-ବେକରେ ।

କବିସୂର୍ଯ୍ୟ ଏ ରଚନାଟି ଶୁଣି ଏକାନ୍ତ ଆନନ୍ଦିତ ହୋଇଥିଲେ । ଦୈବ ଉପରେ ଦୋଷ ଲଦି ଦେଇ ଯଦୁମଣି ଏହିପରି ନିଜ ରଜାଙ୍କ ମର୍ଯ୍ୟାଦା ରକ୍ଷା କରିପାରିଥିଲେ ।

## ୫୪—ଏ ଖତ ମଣ୍ଡନ ସେ ଖତ ମଣ୍ଡନ

ସେଇଥର ରଜା ଯଦୁମଣି ଏବଂ କବିସୂର୍ଯ୍ୟଙ୍କୁ ସାଥିରେ ଧରି ଶରଣକୁଳ ଲଡ଼ୁବାବାଙ୍କ ନିକଟକୁ ଯାଉଯାଉ ବାଟରେ ଦେଖିଲେ କଲ୍ୟାଣପୁର ଠାରେ ଜଣକର ଭୋଜ କାର୍ଯ୍ୟରେ ସେ ଯେଉଁ ଖଲିସବୁ ଖତଗଦାକୁ ଫିଙ୍ଗି ଦେଇଥିଲା, ତାହା ଖତଗଦାର ଚଉଦିଗରେ ବିକ୍ଷିପ୍ତ ହୋଇ ପଡ଼ିଥିବାରୁ ବହୁ ଦୂରକୁ ବଡ଼ ବିଚିତ୍ର ରକମର ଦେଖାଯାଉଥିଲା । ସେତେବେଳେ ଅଗଣିତ ତାରା ଆକାଶରେ ଦେଖାଯାଉଥାନ୍ତି । ଏଣେ ଖତଗଦାରେ ବିକ୍ଷିପ୍ତ ଖଲିମାନ ଭୂପୃଷ୍ଠରେ । ତେଣେ ଆକାଶରେ ନକ୍ଷତ୍ର ଶୋଭା, ଏହି ଉଭୟକୁ ଲକ୍ଷ୍ୟକରି ଏକ କବିତା ଶୁଣିବା ଲାଗି ରାଜା ମାନଧାତା ଇଚ୍ଛା ପ୍ରକାଶ କଲେ ।

କବିସୂର୍ଯ୍ୟ ବଳଦେବ ରଥ ଏବଂ କବିମଣି ଯଦୁମଣି ମହାପାତ୍ର ଉଭୟେ ରାଜାଙ୍କ ସହିତ ରହିଥିଲେ । ପ୍ରଥମେ କବିସୂର୍ଯ୍ୟ କହିଲେ—

"ବିଶ୍ୱାନନ୍ଦ କର"

ଅର୍ଥାତ୍ 'ବି' କହିଲେ ଆକାଶ, 'ଶ୍ୱା' କହିଲେ କୁକୁର ପଲର ଆନନ୍ଦକର ଅର୍ଥାତ୍ କୁକୁର ପଲର ଅଇଣ୍ଠା ଖଲିମାନ ଯେପରି ଆନନ୍ଦଦାୟକ ସେହିପରି ତାରାଗଣ ସୁନୀଳ ଗଗନର ଆନନ୍ଦ ଦାୟକ ଅଟନ୍ତି ।

ବିବେକମାନ—ବିଜ୍ଞତା ସମୂହ । ଧାତା—ବିଧାତା ।

ଯଦୁମଣି କହିଲେ—

**ଏ ଖଡ଼ ମଣ୍ଡନ ସେ ଖଡ଼ ମଣ୍ଡନ**
**ଖଡ଼ିକାରେ ଯହିଁ ହେଲେ ଯୋଜନା ।**

ଅର୍ଥାତ୍ ଏଠାରେ ଏ ଝଡ ଗଦାରେ ଖଡ଼ିକା ଦ୍ୱାରା ସଂଯୋଜିତ ଥିବା ଖଲପତ ଶୋଭା ପାଉଛନ୍ତି, ଏବଂ ସେ ସେଠାରେ 'ଖ' କ ଆକାଶର ମଣ୍ଡନ ତାରକାବୃନ୍ଦ ଖଡ଼ିକାର ସେ ଜ୍ୟୋତିର୍ବିଦଙ୍କ ଦ୍ୱାରା ଯୋଜନା କରାଯାଉଛନ୍ତି ।

ଖଡ଼ିକାରେ ପ୍ରୟୋଗଟିକୁ କବିସୂର୍ଯ୍ୟ ଏପରି ଭାବରେ ପ୍ରଶଂସା କଲେ ଯେ ରାଜସିଂହ ମାନଧାତା ଯଦୁମଣିଙ୍କୁ ଏକ ବହୁମୂଲ୍ୟ ପାନବଟା ତୁରନ୍ତ ପୁରସ୍କାର ଦେଇଦେଲେ । ଏବଂ ଲଡ଼ୁବାବାଙ୍କ ଉପରେ ଗୋଟିଏ ଓଣା ଏକଲକ୍ଷ ଚମ୍ପା ଚଢ଼ାଇବାର ସିଲ ମଧ୍ୟ ଦାନକଲେ ।

## ୫୫—ଦୁଇଟା ଆମ୍ବରେ ଦୁଇଟା କୁଆ

କବିସୂର୍ଯ୍ୟଙ୍କ ସହିତ ଯଦୁମଣିଙ୍କର ସଖ୍ୟଭାବ ଆସିଯାଇଥିଲା । ତେଣୁ ବନ୍ଧୁ ବେଶରେ ମଧ୍ୟ ଦିଆନିଆ ହେଉଥିଲା । ଥରେ କବିସୂର୍ଯ୍ୟ ଦୁଇ ଟୋକେଇ ଆମ୍ବ ଗୋଟିଏ ଲୋକଦ୍ୱାରା ତାଙ୍କ ଘରକୁ ପଠାଇ, ଦୁଇଟି ଆମ୍ବରେ ଗୁଡ଼ାଇ ଲେଖାଟିଏ ଲେଖିଥିଲେ ।

**"ଶୁଆ ଦିଆଗଲା**
**ସାରି ଦିଆଗଲା ।"**

ଏହାର ଅର୍ଥ ହେଲା, ଶୁଆ ସାରି ପରି ଉତ୍କୃଷ୍ଟ ଆମ୍ବ ଦିଆଗଲା । ଅନ୍ୟ ଅର୍ଥରେ, ସୁଆଦିଆ ସ୍ୱାଦୁ ଏବଂ ସାରଦିଆ ପାଣିଚିଆ ଉଭୟ ଆମ୍ବଗଲା ।

ଆମ୍ବ ପାଇ, ଲେଖାଟି ପଢ଼ି ଯଦୁମଣି ତୁରନ୍ତ ଉତ୍ତର ଦେଇଦେଲେ—

**ଦୁଇଟା ଆମ୍ବରେ ଦୁଇଟା କୁଆ**
**ଭିତରେ ଯୋଡ଼ିଏ କୋଇଲି ଥୁଆ ।**

ଏହା ଯଦୁମଣି ବିରୋଧାଭାସରେ ଲେଖି ପଠାଇ ଦେଲେ ।

**ଅର୍ଥହେଲା**—ଆପଣଙ୍କ କହିବା ଅନୁସାରେ ଏ ଆମ୍ବ ଦୁଇଟି ଶୁଆ ସାରିଙ୍କ ପରି ଉତ୍କୃଷ୍ଟ ନୁହେଁ । ଏହା ଦୁଇଟି କୁଆ ପରି ନିକୃଷ୍ଟ; ପୁନଶ୍ଚ ସେ ଦୁଇଟି କୁଆ ଭିତରେ ଦୁଇଟି କୋଇଲି ଥୁଆ ହୋଇଛି ଅର୍ଥାତ୍ ଆମ୍ବ ଦୁଇଟିରେ ଦୁଇଟି ଆମ୍ବ କୋଇଲି ରହିଅଛି । ସେ ମଧ୍ୟ ବିରୋଧାଭାସରେ ଦୁଇଟି ପକ୍ଷୀଙ୍କ ନାମ ଧାର୍ଯ୍ୟ କଲେ ।

ତାହିପାଇ କବିସୂର୍ଯ୍ୟ ପ୍ରଶଂସା କରିଥିଲେ ।

## ୫୭—ପାଡ଼

କଛୁଦ୍ଦନ ପରେ କବିସୂର୍ଯ୍ୟ ଗୋଟିଏ ରହସ୍ୟ କବିତା ଲେଖି ଯଦୁମଣିଙ୍କ ନିକଟକୁ ପଠାଇ ଦେଲେ । କିନ୍ତୁ ଯଦୁମଣି ତାହା ପଢ଼ି ଦେଖିଲେ ଯେ କବିସୂର୍ଯ୍ୟ ତାଙ୍କ ପାଖକୁ ପାଡ଼ଟିଏ ପଠାଇଛନ୍ତି । କବିସୂର୍ଯ୍ୟ ଲେଖିଥିଲେ—

**ନାହିଁ ବାରୁଦ ଆଉ ବେଲ୍ ସଜ**
**ବଡ଼ ଉତ୍କଟ ସେ ତୋପ ଆବାଜ**
**ଯାମୁକ ଅନଳ ଦେଖିଲ୍ ନାହିଁ**
**ଚମକ ପଡ଼ଇ ଘୁମୁକ ମୁହିଁ**
**ସହି ପାତାଳକୁ**
**ଆଗ କରି ଦହି ଦେଲ୍ ସ୍ୱର୍ଗକୁ ।**

(ଏଠାରେ ସ୍ୱର୍ଗ ଅର୍ଥ ନାକ)—ଯଦୁମଣି ବୁଦ୍ଧିସାର ଉତ୍ତରରେ ଲେଖିଲେ—

**ପାର୍ଥ ଧନୁ ନାମ ଗାଇଲ୍‌ବେଳେ** (ଗାଣ୍ଡିବ)
**ଭୀମ ତାତ ଜାତ ହେଲେ ସେକାଳେ** (ପବନ)
**ବଡ଼ ବାଙ୍କପଣ**
**ଆମ୍ଭ ପାଖକୁ ଲେଖିଛ ଆପଣ ।**

ଏଥିରେ କବିସୂର୍ଯ୍ୟ ଏକାନ୍ତ ଲଜ୍ଜିତ ହେଲେ । ଯଦୁମଣିଙ୍କର ବିଶେଷ ପାଣ୍ଡିତ୍ୟର ମଧ୍ୟ ଉଚ୍ଚ ପ୍ରଶଂସା କଲେ ।

## ୫୬—ତୁ ମୋର ମନକୁ ଶଳାଟାପରା

କବିସୂର୍ଯ୍ୟ ଏବଂ ଯଦୁମଣିଙ୍କ ମଧ୍ୟରେ ଭଲ ସଦ୍‌ଭାବ ଥାଏ । ନୂଆଗଡ଼ ରାଜା କବିସୂର୍ଯ୍ୟଙ୍କୁ ଉଦ୍ଧ କେତେ ବଖରା ଇଟା ମାଟିରେ ଦେଇଥିଲେ । ସେ ତାହା ଯଦୁମଣିଙ୍କ ଜିମା ଗ୍ରହଣ ଯାଇଥିଲେ । ସାଲିଆନା କରଟା ପଠାଇ ଦିଆଯାଏ । ବର୍ଷେ ଦି ବର୍ଷ ପଠା ନ ହେବାରୁ କବିସୂର୍ଯ୍ୟ ଯଦୁମଣି ବଢ଼େଇ (ଚାଷକର) ଜାତିର ଥିବାରୁ ରହସ୍ୟରେ ଗୋଟିଏ ଅପମାନଜନକ କବିତା ଲେଖି ପଠାଇ ଦେଲେ ।

କବିସୂର୍ଯ୍ୟ ଲେଖିଥିଲେ—**'ବଢ଼ାଇ ଦେ ମୋତେ କର**
**ବଢ଼ାଇ ଦେ ମୋତେ କର ।'**

ଯଦୁମଣିଙ୍କୁ ଏହା ବଡ଼ ବାଧିଲା । ସେ ବଢ଼େଇ କୁଳରେ ଜନ୍ମିଲେ ବୋଲି କ'ଣ ତାଙ୍କର ଏତେ ଅପମାନ । ସେ ତୁରନ୍ତ ଅତି କଟୁ ଭାଷାରେ ଜବାବ ଲେଖିଦେଲେ—

**ତୁ ମୋର ମନକୁ ଶଳା ଟାପରା,**
**ତୁ ମୋର ମନକୁ, ଶଳାଟା ପରା ।**

କବିସୂର୍ଯ୍ୟ ଏଥିକରେ ନୀରବ ରହିଲେ ଏବଂ ଏକାନ୍ତ ଲଜ୍ଜିତ ହୋଇ ନିଜକୁ ତିରସ୍କାର କଲେ ଯେ, ସେ ବୃଥାରେ ସାପ ଲାଞ୍ଜରେ ହାତ ମାରୁଛନ୍ତି ।

କବିସୂର୍ଯ୍ୟଙ୍କ କବିତାର ଅର୍ଥ ହେଲା ଯେ—ରେ ବଢ଼େଇ ! ମୋତେ କର ଦେ । ଅର୍ଥାତ୍ ମୋ କର ପଠେଇ ଦେ । ଏବଂ ମୋତେ ତୋର କର ବଢ଼ାଇଦେ । ଅର୍ଥାତ୍ ମୋତେ ହାତ ବଢ଼ାଇ କ୍ଷମା ମାଗେ ।

ଯଦୁମଣିଙ୍କ ରଚନାର ଅର୍ଥ ହେଲା ଯେ 'ତୁ ମୋର ମନକୁ ଶଳା ଟାପରା ଅଟୁ । ଅର୍ଥାତ୍ ମୁଁ କିଛି ମାଗୁ ନ ଥିଲି ତୁମେ ଗେଞ୍ଜି କରି ଦେଇଥିଲ । ଏବଂ ବନ୍ଧୁତା ଅତି ନିବିଡ଼ କରି ରଖିଥିଲ । ତୁ ମୋର ମନକୁ ଶଳାଟା ପରା । ତେଣୁ ତୁମେ ମନକୁ ମନ ଶଳା ମୋ'ର ହୋଇପଡ଼ୁଛ । ଯଦୁମଣି କର ପଠାଇ ଦେଇ ସେ ଜାଗା ମଧ୍ୟ ଛାଡ଼ି ଦେଇଥିଲେ ।

## ୫୮—ଖମଣା ଖୋଲରେ ପାଇଲେ ହଣା

କବିସୂର୍ଯ୍ୟ ବଳଦେବ ରଥ ଅତ୍ୟନ୍ତ ରସିକ ପୁରୁଷ ଥିଲେ । ସେ ମନ ଅନୁସାରେ କନ୍ୟା ଲାଭ କରି ନ ଥିବା ଜଣାଯାଏ । ତାଙ୍କର ଚରିତ୍ର କାଳିଦାସ ଆଦି କବିଙ୍କ ପରି ଭାବ ପ୍ରବଣ ଥିଲା । ସେ ୩୩ ବର୍ଷ ବୟସରେ ଆଠଗଡ଼ର ରାଜା ବାଲୁଙ୍କେଶ୍ୱର ହରିଚନ୍ଦନଙ୍କ ସଭାକବି ରୂପରେ ରହିଥିଲେ । ୪୦ ବର୍ଷ ବୟସରେ ରାଜା ତାଙ୍କୁ ସମ୍ପୂର୍ଣ୍ଣ ବିଶ୍ୱାସୀ ମନେକରି ନିଜର ଜେମାମଣି 'କଳାବତୀ'ଙ୍କ ଶିକ୍ଷାଭାର ତାଙ୍କୁ ପ୍ରଦାନ କରିଥିଲେ । ଜେମାଙ୍କ ସହିତ ତାଙ୍କର କି ପ୍ରକାର ସମ୍ପର୍କ ଥିଲା ଜଣାଯାଏ ନାହିଁ । କିନ୍ତୁ କବିସୂର୍ଯ୍ୟଙ୍କର କେତୋଟି ରଚନା ରାଜସଭାରେ ଗାନ ହୁଅନ୍ତେ, ତାଙ୍କ ପ୍ରତି ସନ୍ଦେହ ଜାତ ହୋଇଥିଲା ।

ପ୍ରଥମ କବିତା—

**ଆଜ କେ ଶିଖାଇଲା ଉଷାକୁରେ**
**ରାଜକୁରଙ୍ଗୀ ଶିଶୁ ଦୃଶାକୁରେ**
**ଲାଜ ମିଳିତ ମନ୍ଦ ବିକାସ ବାସକୁନ୍ଦ**
**ରମ୍ୟହାସିନୀ ବର ଯୋଷାକୁରେ**

ଶୁଦ୍ଧାନ୍ତ ମୁଁ ବାହାର  ହେଲେ ଦୃଷ୍ଟି ଯାହାଙ୍କ
ଦଉଛନ୍ତି ମୋ ହସ୍ତାର ଆଶାକୁରେ

ଉଭା ହେଲ ସମୀପେ  ନ ଗହ୍ଲାଁନ୍ତି ଯେ ଟେକାଇ
ଟୋକିକା ସିନା ଦୃଷ୍ଟି ବର୍ଷାକୁରେ । ଇତ୍ୟାଦି ।

୨ୟ କବିତା—

ତୁହି ପରି ମୋ ହୃଦୟ ମଣିମୟ ହାରରେ
ସହି ତୁ ମୋହର ସକଳ ସମ୍ପଦ
ମଦନ ପଣି ରଦନ ବକ୍ଷଗଦ
ଅଖିଳ ବିଭବ ଆଖଣ୍ଡଳପଦ ଅବରୋହଣ ଗିରି ପରିରେ ।

୩ୟ କବିତା—(ସେ ଦାସୀ ସମ୍ବନ୍ଧ ସମ୍ପର୍କ ରଖିଥିବା ଜଣାଯିବା ପରେ)

ଖଚି ବଚନକୁ ସତ୍ତ ମଣିକରେ ।
ଆଦରଣେ ଥିବା ବାଙ୍କ
ଗଙ୍ଗାଜଳେ ଅଛି ପଙ୍କ
ରବି ବିମ୍ବରେ କଳଙ୍କ ଭଣିକରେ ।୧। ଇତ୍ୟାଦି ।

୪ର୍ଥ କବିତା—

ମହୀମଣ୍ଡନା ତୁ ନମାର ମାରରେ ।୦।
ଯେଉଁ ତୋ ଅବଧାନେ,
ରସିଲି ମୁଁ କି ଆନେ
ତୁ ଥାଉଁ ଥାଉଁ ଏ ସଂସାର ସାଗରେ ।୧। ଇତ୍ୟାଦି ।

୫ମ କବିତା—

ଏହି ସେହି, କି ବମା ସହି ସନ୍ତ କହନ୍ତି
କହିବାକୁ ଜିହ୍ୱାଞ୍ଚଳ କରୁ କରୁ ତୁ ଚଞ୍ଚଳ
ସ୍ଫୁରି ସର୍ପ କନ୍ୟା କି ରସନା ଲହ ଲହନ୍ତି । ଇତ୍ୟାଦି ।

୬ଷ୍ଠ କବିତା—

ସଂଗ୍ରହଣୀ ପାଞ୍ଚାଳିକା କାଞ୍ଚନମୟୀରେ
ପ୍ରଲମ୍ବ କୁହିତ କେଶା
ଯୋଗୀ ସମାଧି ଖଣ୍ଡନ ବିଧି ଚତୁର ଗୁରୁ ବେଶା × ×

× × × × × ×

**ପଣ୍ଡରୁ ଉଣା ପର ତ ଜଣା ପଡ଼ୁଛି**
**କେହ୍ନେ ଏଡ଼େ ପ୍ରବୀଣା ହେଲୁରେ**

**ଛଣା ପୀୟୁଷ ଜିଣା ବାଣୀ—**
**ସୁଧା ଗରଳ ମିଶା ତରଳ ବିଲକ୍ଷଣ ଗୃହିଣୀ ।** ଇତ୍ୟାଦି ।

୨ମ କବିତା—

**କର କ୍ଷମାରେ,**
**ରତି ପ୍ରତିମା ତୁ କର କ୍ଷମାରେ**
**ଜଣା ନ ଥିଲି ମାକଣା ହେବେ ବୋଲି କେମା ।ଠ।**

ଯାହା ସବୁ ଭିତରେ ଘଟିଗଲା । କିନ୍ତୁ ବାହାରେ ପ୍ରକାଶିତ ହେଲା ଯେ କବିସୂର୍ଯ୍ୟ ରାଜକୁମାରୀଙ୍କ ସଙ୍ଗରେ ଥଟ୍ଟା କରିବାରୁ ଖମଣା ଖୋଲରେ ହଣା ହେବାକୁ ରଜା ଆଦେଶ ଦେଇଥିଲେ । ଏହା ଶୁଣି ଯଦୁମଣି ଥଟ୍ଟା କରି କହିଥିଲେ—

**"ଭଲ ଗହଣା**
**ଖମଣା ଖୋଲରେ ପାଇଲେ ହଣା ।"**

ଗହଣାକୁ ଏଠାରେ କେହି ଗ୍ରହଣା କହନ୍ତି । କିନ୍ତୁ ସେ ଅସଭ୍ୟ ଭାବରେ ହ୍ରସ୍ୱଇ ପ୍ରୟୋଗ କରିଥିଲେ । ତାହା ଅଶ୍ଳୀଳ ହେବାରୁ ଏପରି ପ୍ରବାଦ ଚଳିଅଛି ।

କବିସୂର୍ଯ୍ୟ ନିଜକୁ ଧିକ୍କାର ଦେଇ, ହଣା ହେବା ପୂର୍ବରୁ କବିତାଟିଏ ଲେଖି ପଠାଇ ଥିଲେ—

**ଯେ କି ସାର୍ ସାର ଜାଣେ**
**ପ୍ରୀତି ରୀତି ନ ପାଳେ ଯେ ଅଣୁ ପରମାଣେ ।ଠ।**

× × × × ×

**କେ କାହା ସ୍ୱଭାବ ଛାଡ଼େ ପରାଣ ପ୍ରୟାଣେ ।୧ଠ।**

ଶୁଣାଯାଏ, ଏ କବିତା ପଢ଼ି ରାଜକୁମାରୀଙ୍କ ଦୟାରୁ ସେ ମୃତ୍ୟୁଦଣ୍ଡରୁ ମୁକ୍ତ ପାଇ, ପାରଳା ରାଜାଙ୍କ ଗୃହ ଶିକ୍ଷକ ହେବାକୁ ଚାଲିଯାଇଥିଲେ ।

## ୫୯—ମଦ ନ ବିକାରେ

ଇଟାମାଟି ଗ୍ରାମରେ ଧନବୃଦ୍ଧି ସଙ୍ଗେ ସଙ୍ଗେ ବହୁ ଯୁବକ ଏକାନ୍ତ ବ୍ୟଭିଚାରୀ ହୋଇ ବେଶ୍ୟାସକ୍ତ ହୋଇଗଲେ । ସେ ଗ୍ରାମରେ ବେଶ୍ୟାଘର ମଧ୍ୟ ସ୍ଥାୟୀ ହୋଇ ରହିଗଲା । ବେଶ୍ୟା ନିଜ ବ୍ୟବସାୟ ବଢ଼ାଇବାକୁ ଗୋଟିଏ ମଦବିକା ଶୁଣ୍ଢୀକୁ ଆଣି ରଖିଲା ଓ ତାକୁ ଧନ ଦେଇ ମଦ ବିକାଇଲା । ଏହା ଦେଖି ଗାଁରେ ବୁଢ଼ା ବୁଢ଼ୀମାନେ ବିଚଳିତ ହୋଇ ଉଠିଲେ । ଯଦୁମଣିଙ୍କୁ ଆସି କହନ୍ତେ ସେ ସିଧା ସିଧା ସେ ବେଶ୍ୟା ପାଖକୁ ଯାଇ କହିଲେ—

**ମଦନ ବିକାରେ**

**ମଦ ନ ବିକାରେ ।**

କାମ ବିକାରରେ ଯାହା କରୁଛୁ ତ କରୁଛୁ, କିନ୍ତୁ ତା ବୋଲି ମଦ ଏଠାରେ ତୁ ବିକାନା । ଅବସ୍ଥା ଏ ଅଞ୍ଚଳର ଏକାବେଳେ ଲୋପ ହୋଇଯିବ ।

ଯଦୁମଣି କିପରି ଦାମ୍ଭିକ ଲୋକ ସେ ବେଶ୍ୟା ମଧ୍ୟ ଜାଣେ । ତେଣୁ ଭୟ କରି ଶୁଣ୍ଢୀକୁ ସେହିଦିନ ତଡ଼ି ଦେଲା । ଫଳରେ ଅନେକ ପରିବାର ଉକ୍ତ ମଦ ଦୁର୍ଦ୍ଦଶାରୁ ରକ୍ଷା ପାଇଗଲେ । ଏପରି ହେଲା ଯେ ମଦ ପ୍ରତି ଘୃଣା ଚଉହଦିରେ ସଞ୍ଚରିଗଲା । ଅନେକେ ଏପରି ଘଟଣାରେ ଗାଇ ଉଠିଲେ ।

'ମଦନ ବିକାରେ, ମଦ ନ ବିକାରେ ।' ଶୁଣାଅଛୁ ବୋଲଗଡ଼ରେ ଦଳେ ଟୋକା ଏହି ପଦଟିକୁ ଗାଇ ଦାରି, ମଦ ଦୋକାନକୁ ସେଠାରୁ ଉଠାଇ ଦେଇଥିଲେ ।

## ୬୦—ଚଇତନିଆଁ

ଯଦୁମଣିଙ୍କ ନିଜ ଗ୍ରାମରେ ଚୈତନ୍ୟ ସାହୁ ନାମକ ଜଣେ ତେଲି ମହାଜନ ପରମାର୍ଥ ଦୀକ୍ଷା ଗ୍ରହଣ କରି ଦ୍ୱାରକା, ବୃନ୍ଦାବନ, ମଥୁରା ଆଦି ଧାମରୁ ଫେରି ବୈଷ୍ଣବ ଭେଖ ଧରି ତାଙ୍କର ଗୁରୁଜନ ମାନ୍ୟବ୍ୟକ୍ତିଙ୍କୁ ଦଣ୍ଡବତ କରୁ ନ ଥିଲେ । ବୟସ ପଚିଶ ସରିକି ହେବ । ତାକୁ ଗାଁର ସମସ୍ତେ ଚଇତନିଆ ବୋଲି ଡାକୁଥିଲେ । ତେଣୁ ଯଦୁମଣି ତାକୁ ଦେଖି କବିତାଟିଏ କହିଲେ—

**ଭଣ ନାଶ କରେ ଚଇତ ନିଆଁ**<br>
**ବର୍ଣ୍ଣ ନାଶ କରେ ଚଇତନିଆଁ**<br>
**ବର୍ଣ୍ଣନା ଶଂକରେ ଚଇତନିଆଁ ।**

ଏହା ଶୁଣି ଗ୍ରାମରେ ଚହଳ ପଡ଼ିଗଲା । ଏହାର ଅର୍ଥ ହେଲା ଯେ, ଚଇତ ମାସର ନିଆଁ ବଣକୁ ନଷ୍ଟ କରିଥାଏ । ଚଇତନିଆଁ ବା ଚୈତନ୍ୟ ଦାସ ବର୍ଣ୍ଣିକ ଜୀବ ଗୋଷ୍ଠ ନାଶ କରିଥାଏ । ଚଇତନ ସାହୁ ନାମକ ଚଇତନିଆଁ, ଶଙ୍କର ଅର୍ଥାତ୍ ଶିବଙ୍କ ସମ୍ବନ୍ଧରେ, ଯେଉଁ ବର୍ଣ୍ଣନା ରହିଛି ଯେ ସେ ନିଜର ଗୁରୁଜନ ଶ୍ୱଶୁରଙ୍କୁ ମଧ୍ୟ ମାନ୍ୟ କରିନଥିଲେ । ସେ ତଦ୍ରୂପ କରୁଛି ।

## ୬୧—ଆନନ୍ଦ ମୂଳକ

ସଦୁମଣି ପଞ୍ଚମୁହଁର ଜଣେ ବ୍ରାହ୍ମଣ ଶ୍ରୀଧର ମହାପାତ୍ରଙ୍କୁ ଆମ୍ବୁଲ ଦୁଇଖଣ୍ଡ ଏହି କବିତାଟି ଗାଇ ମାଗିଥିଲେ;—

**ଅଚ୍ୟୁତ ଖଣ୍ଡା ଚ୍ୟୁତ ହୋଇଥିବ,**
**ଆନନ୍ଦ ମୂଳକ; ଦ୍ୱିଖଣ୍ଡ ହେବ ।**

**ଅର୍ଥାତ୍**—ଅଚ୍ୟୁତ, ବିଷ୍ଣୁଙ୍କ ଖଣ୍ଡାର ନାମ ନନ୍ଦକ । ତାହା ଚ୍ୟୁତ ହୋଇଥିବ ଏପରି ଯେ ଆନନ୍ଦ ମୂଳକ ଶବ୍ଦରୁ ନନ୍ଦକ ଚ୍ୟୁତ ଅର୍ଥାତ୍ କଟିଯାଇଥିବ । ଅର୍ଥାତ୍ ଆନନ୍ଦ ମୂଳକରୁ ନନ୍ଦକ କଟିଗଲେ ଆମୂଳ ରହୁଛି । ଅମ୍ଳରୁ ଆମ୍ବୁଲ ହୋଇଛି । ତେଣୁ ସେ ଆମୂଳ ବା ଆମ୍ବୁଲ ଦୁଇଖଣ୍ଡ ମାଗିଥିଲେ । ଶ୍ରୀଧର ମହାପାତ୍ରେ ଗ୍ରନ୍ଥ ସାହିତ୍ୟରେ ପ୍ରବୀଣ ଥିଲେ । ବହୁଲୋକ ସେଠାରେ ଥିବାରୁ ସଦୁମଣି ଯେଉଁପରି ଭାବରେ ଦ୍ୱିଖଣ୍ଡ ଆମ୍ବୁଲ ତାଙ୍କୁ ମାଗିଲେ ତାହା କେହି ଧରିପାରିଲେ ନାହିଁ । କିନ୍ତୁ ଶ୍ରୀଧର ତାହା ବୁଝିପାରି ଜାଣି ଗୋଟିଏ ପାଚିଆରେ ବଡ଼ ବଡ଼ ଆମ୍ବର ସହିତ ଘଟମିହଳ ଆମ୍ବୁଲ ଭରିଆ ହାତରେ ସଦୁମଣିଙ୍କ ଗୃହକୁ ପଠାଇ ଦେଇଥିଲେ ।

ପରେ ଗ୍ରାମଲୋକେ କଥାଟାକ'ଣ ପଚାରିବାରୁ ସେ ଅର୍ଥଟି ବୁଝାଇ ଦେଇଥିଲେ । ସଦୁମଣିଙ୍କର ଅପୂର୍ବ ପାଣ୍ଡିତ୍ୟ ଦେଖି ଲୋକେ ତାଙ୍କୁ ଧନ୍ୟ ଧନ୍ୟ କହିଥିଲେ ।

## ୬୨—ହାତୀ ଝୁଲି ଝୁଲି ଲାଗି ସେଇଠି

ତୁଳସୀ ଦୁଇପତ୍ରରୁ ବାସେ, ଚନ୍ଦ୍ରଆଣ୍ଡ ହେ ପତ୍ରରୁ ଜୁଣ୍ଡେଇ ହୁଏ । ଏ କଥା କେହି ଅବିଶ୍ୱାସ କରିପାରନ୍ତି ନାହିଁ । କିନ୍ତୁ ରାଜା ବିନାୟକ ମାନଧାତାଙ୍କର ଯୁବରାଜ ପାଟକୁମାର ବ୍ରଜସୁନ୍ଦର ଶୈଶବରୁ କେଣେ ଯିବେ ତାହା ଜଣାପଡ଼ି ଯାଇଥିଲା । ତଥାପି ରାଜା ତାଙ୍କର ଶିକ୍ଷା ପଠନ ଲାଗି ବହୁତ ଯତ୍ନ କରୁଥିଲେ । କ୍ରୀଡ଼ା ପ୍ରତିଯୋଗିତାରେ ବୃନ୍ଦ ଗୁଣ୍ଡ କିଶୋର ରଜସୁନ୍ଦରଙ୍କ ମନ ଲାଗିଗଲା । ତେଣୁ ରଜା

ସ୍ୱନାଯ୍ୟକ ଥରେ ଗୋଟିଏ ରଙ୍ଗଭୂମି ନିର୍ମାଣକରି ସେଠାରେ କ୍ରୀଡ଼ା ପ୍ରତିଯୋଗିତା କରାଇଲେ ।

ଜାତିବର୍ଣ୍ଣ ନିର୍ବିଶେଷରେ ଅନାର୍ଯ୍ୟଙ୍କୁ ଛାଡ଼ି ସେଥିରେ ରାଜ୍ୟର ବହୁତ କିଶୋର ଯୋଗ ଦେଇଥିଲେ । କିନ୍ତୁ ଦୀର୍ଘପଥ ଦଉଡ଼ରେ କେହି କେବେ ବ୍ରଜବଲ୍ଲଭଙ୍କ ସମକକ୍ଷ ହେଲେ ନାହିଁ । ଯୁବରାଜ ବ୍ୟଗ୍ରଗତିରେ ପ୍ରଥମେ ନ ଯାଇ ଦ୍ରୁତ ଗତିରେ ହସ୍ତୀ ପାଦୁଲ ପକାଇ ଚାଲିବା ପରି ଗୃହ ଲକ୍ଷ୍ୟପଥ ହାସଲ ହେବା ପୂର୍ବରୁ ତୀବ୍ର ବେଗରେ ଧାଉଁଥିଲେ । ତେଣୁ ସେ ଥରକୁ ଥର ଜିଣୁଥିଲେ ।

ସଭାସଦମାନଙ୍କ ମଧ୍ୟରେ ଯୁବରାଜଙ୍କର ପ୍ରଶଂସା ବେଳକୁବେଳ ଅତ୍ୟଧିକ ହେଲା ।

ଯଦୁମଣି ସେଠାରେ ଥିଲେ । ସେ ଦେଖିଲେ ପଦେ ନ କହିଲେ ନ ରହେ । ଟିକ୍ ମଧ୍ୟରେ ରାଜପୁରର ମହଲା ମହଲ ଜଣାଇଥାନ୍ତି । ସେ କହିଲେ—

**ଘୋଡ଼ା ଦଉଡ଼ ଦଉଡ଼ ଯୋଉଠି**
**ହାତୀ ଝୁଲି ଝୁଲି କରି ସେଇଠି ।**

ଏହା ଏପରି ଭାବରେ ରାଜପୁତ୍ରଙ୍କର ବିଶେଷତ୍ୱ ପ୍ରତିପାଦିତ କରିଥିଲା ଯେ ଶତ ସହସ୍ର ଜନତା ଏହି ପଦଟିକୁ ପରବର୍ତ୍ତୀ ପ୍ରବଚନ ଭାବରେ ଗ୍ରାମେ ଗ୍ରାମେ ଗ୍ରହଣ କରିଥିଲେ । ଏମନ୍ତକି ଏହା ସମଗ୍ର ଉତ୍କଳକୁ ମଧ୍ୟ ଗଳ୍ପ ଛଳରେ ବ୍ୟାପୀ ଯାଇଥିଲା ।

## ୭୩—ଆରେ ଲଗାମା କରି

ଶୁକଳ ଗାଡ଼ିଆ ଗୋବିନ୍ଦ ପୁରରେ ଗୋଟିଏ ପଣ୍ଡାବ୍ରାହ୍ମଣ ଘରଥାଏ । ସେ ପଣ୍ଡା ହଠାଇ ଭିତରୁ ବଡ଼ଭାଇ ମରିଯିବାରୁ, ତାର ଦୁଇପିଲାଙ୍କୁ ଖୁଡ଼ୁତା ବାଉର ଠାକୁରାଣୀଙ୍କ ଭୋଗ ଭାଗ ଦେଉନଥିଲା । ସେ କହେ ମୁଁ ପୂଜା କରୁ-ଥିବାତକ ଖାଇବ । ପର୍ବ ସମୟରେ ମହାଲକ୍ଷ୍ମୀଙ୍କୁ ଗଣତିରେ ଶହେ କାକରା ପିଠା ପଣ୍ଡାର ଅଂଶ ଆସୁଥିଲା । କିନ୍ତୁ ଯେଥିରୁ ସେ ବଣ୍ଡାଭାଉଜ ଓ ଦୁଇ ପିଲାଙ୍କୁ ଭାଗ ଦିଏନାହିଁ । ତା ଦେଖି ସେ ରାଣ୍ଡଭାଉଜ ପିଲା ଦୁଇଟିକୁ ଶିଖାଇ ଦେବାରୁ ପିଲାଦୁହେଁ ଗାଁ ଯାକକୁ ମୁଣ୍ଡିଆ ମାରି ମାରି ମୁଣ୍ଡ ଛୁଣ୍ଡାଉଥିଲେ । ଗାଁରେ ତ ବାରଜାତି ତେର ଆଖଡ଼ା । କିଏ ବା କାହାକଥା ଶୁଣୁଛି ?

ଯଦୁମଣି ବାପଙ୍କର ସଙ୍ଗାତ ଶ୍ରେଷ୍ଠ ବୈଦିକ ଶୋତ୍ରିୟ ବ୍ରାହ୍ମଣ ନୀଳକଣ୍ଠ ମିଶ୍ର ସେହି ଗାଁର । ତାଙ୍କ ଦ୍ୱାରକୁ ଅବସର ସମୟରେ ଯଦୁମଣି ଯେତେବେଳେ ଯାଉଥିଲେ, ଦେଖୁଥିଲେ ଯେ ସେ ଦୁଇଭାଇ ପିଠାକଥା ପକାଇଥାନ୍ତି । ସେ ହଠାଇ

ମଧ୍ୟରୁ ଜଣକୁ କଚମା ଜଣକୁ କଣ୍ଟ ବୋଲି ଯଦୁମଣି ଅଭିହିତ କରିଥିଲେ । ବଡ଼ଟାକୁ ବୟସ ହେଲେମଧ୍ୟ ସେବାପୂଜା କରିବା ସକାଶେ ଅନୁମତି ପାଇବାକୁ, ରାଜାଙ୍କ ଦେବୋତ୍ତର କଚେରିକୁ ଯିବାକୁ ଡରୁଥିଲା । ସାନଟା ଅତି ଅପଟୁ । ନିଜ ଦାବୀ ମଧ୍ୟ କହି ଜାଣୁନଥିଲା । ବଡ଼କୁ କୋଡ଼ିଏ ବର୍ଷ ହେଲେ ସାନଟାକୁ ଅଠର ହୋଇଥିଲା ।

ନୀଳକଣ୍ଠ ମିଶ୍ରେ ଦିନେ କହିଲେ;—"ଏଠି ତୁ ବୃଥାରେ ଏତେ ବର୍ଷ କାହିଁକି ଲଗିଛୁ, ତୋର ଭାଗଯୋଗର ଅନୁମତି କାହିଁକି କରାଇ ଆଣୁନାହୁଁ । ଆମ ଯଦୁ ସାଙ୍ଗରେ ଯାଆନ୍ତ ।"—

ତଥାପି ସେ ଗଡ଼କୁ ଯିବାକୁ ଡରୁଥାଏ । ଦିନେ ବାଉରୀ ଠାକୁରାଣୀଙ୍କ ଦେଉଳ ପାଖରେ ଗାଁଯାକୁ ଡକେଇ ସେ ଟୋକା ଦିଟା ନ୍ୟାୟ କରାଇଲେ । ଯଦୁମଣି ଆସି ଗାଁରେ ସଙ୍ଗାତ ମଜୁସାକୁ ନ ଦେଖି ସେଠାକୁ ଯାଇ ଶୁଣିଲେ ଯେ ନ୍ୟାୟ ମୋଡ଼ ମୋଡ଼କିଆ ହେଲାଣି କାରଣ ସେ ଟୋକା ଦିହିଁଙ୍କ କକାର ପ୍ରତିପତ୍ତି ସେ ଗାଁରେ ଅତି ଅଧିକ । ତେଣୁ ବିଚରା ପଣ୍ଡାଟୋକା ଯୋଡ଼ିକ ମୁଣ୍ଡିଆ ମାରି ମାରି ଖିଚିବସ୍ତ ହୋଇ ଛିଡ଼ା ହୋଇଛନ୍ତି । ତାଙ୍କୁ ଦେଖି ସେ କହିଲେ—

**ଆରେ, କଚମା କଣ୍ଟ**
**କଚେରି ନଦେଖୁଁ ନ ଫିଟା କଛା,**
**ଦେ କଉଡ଼ି ଖା ପିଠା, ଏଲାଗି କିଆଁ ଦାନ୍ତ ନିକୁଟା ।**

ମୃତ୍ତିକୁ ସତ ତାଙ୍କର ସାହାଯ୍ୟରେ ସେ ଅଂଶ ପାଇଗଲେ ।

## ୨୪—ଝଣ୍ଟକମଣି

ଯଦୁମଣି ଏକାନ୍ତ ସୁନ୍ଦରୀ ମନୋହାରିଣୀ ଜାୟା ଲାଭ କରିଥିଲେ ହେଁ, ଯୌବନରେ ରଙ୍ଗ ରଙ୍ଗିଆ ପ୍ରକୃତି ଛାଡ଼ ନଥିଲେ । ସ୍ତ୍ରୀଙ୍କ ଡରରେ ଅତି ସାବଧାନରେ ଚଳୁଥିଲେ । ଦିନେ ସ୍ତ୍ରୀ ପୁରୁଷ ମଧ୍ୟରେ ପଡ଼ିଲା, କାହା ସହିତ ପ୍ରଣୟ ଓ ପରିହାସ ସମ୍ଭବ । ପୁରୁଷ ପକ୍ଷରେ ଶାଳୀ, ଶଳାଭାଉଜ, ସମଧୁଣୀ, ସଙ୍ଗାତ ସ୍ତ୍ରୀ, ଭାଉଜ, ଭଉଣୀର ନଣନ୍ଦ ଏହି ଛଅ ଜଣ ଏବଂ ସ୍ତ୍ରୀ ପକ୍ଷରେ ଭଉଣୀଜ୍ୱାଇଁ, ନଣନ୍ଦେଇ ବା ନଣନ୍ଦର ବର, ସମନ୍ଧୀ, ସ୍ୱାମୀର ସଙ୍ଗାତ, ଦିଅର, ଭାଇଶଳା ଏହି ଛଅ ଜଣଙ୍କ ସହିତ ପରିହାସ ଓ ପ୍ରଣୟ ସମ୍ଭବ ଏବଂ ସେଥିରେ କୌଣସି ଦୋଷ ନାହିଁ ବୋଲି ସିଦ୍ଧାନ୍ତ ହେଲା । କିନ୍ତୁ ସାରୁ ଭିତରେ ମାରୁଥିବା କଥା ଖଞ୍ଜନା ଜାଣି ପାରି ନଥିଲେ ।

କଚମା—ଦୁର୍ବଳ । କଣ୍ଟ—ଅପଟୁ ।

ବଟେନ ଯଦୁମଣି କହିଲେ ମୁଁ ଟିକିଏ ବଣପଲ୍ଲୀ ଯିବି । ଖଞ୍ଜନା କହିଲେ—ଜାଣିଲି ଯେଉଁଥିପାଇଁ ଯାଉଛ ? ହେଲେ ତୁମେ ଏକ୍ଷଣି ଗରିବ ଥିବାରୁ ସେମାନେ ତୁମକୁ ସେତେ ଖାତିର କରିବେ ନାହିଁ, ସାବଧାନରେ ଚଳିବ । ଝିଟକମଣି ଯେମିତି ସୁନ୍ଦରୀ ସେମିତି ମଧ୍ୟ ଦୁଷ୍ଟ ।

ଯଦୁମଣି ଶ୍ୱଶୁରଘରେ ପହଞ୍ଚିଲେ । ଶଳାଭାଉଜମାନେ ସୁଦ୍ଧା ତାଙ୍କୁ ଦେଖା ଦେଲେ ନାହିଁ । ଶ୍ୱଶୁର ଜାଣନ୍ତି ଯେ ଜୁଆଇଁ ଅତି ଚତୁର । ଘରେ ବଢ଼ିଲି ଝିଅ । କୁଆଡ଼େ କ'ଣ କରି ବସିବ ଯେବେ, ଗୋଟିକ କପାଳତ ଦୁଃଖରେ ଯାଇଛୁ ପୁଣି ଆଉ ଗୋଟିକ ମଧ୍ୟ ସେହିପରି ପଡ଼ି ସରି ମରିବ । ତେଣୁ ତାଙ୍କ ସ୍ତ୍ରୀଙ୍କୁ ମନା କରିଥିଲେ ଯେ ସାନଝିଅ ଝିଟକମଣି ସହିତ ଯଦୁମଣିର ଯେପରି ସାକ୍ଷାତ ନହୁଏ— ସେହିପରି ବ୍ୟବସ୍ଥା କରିବାଲାଗି ଏବଂ କଡ଼ା ନଜର ରଖିବା ଲାଗି ।

ଯଦୁମଣି ଯେତେ ଚେଷ୍ଟାକଲେ, ସଫଳ ହୋଇ ପାରିଲେ ନାହିଁ । ଶେଷକୁ ଅପମାନିତ ହୋଇ ଫେରି ଆସିବାକୁ ସ୍ଥିରକଲେ । କିନ୍ତୁ ବଟେ ନୀଳକଣ୍ଠଙ୍କ ମନ୍ଦିର ଚଟାଣରେ, ନିକାଞ୍ଚନରେ ଶ୍ୱଶୁର ଘରର ଧାଈ ବୁଢ଼ୀ ସାଙ୍ଗରେ ତାଙ୍କର ଦେଖା ହେଲା ।

ଧାଈବୁଢ଼ୀ ସବୁକଥା ଖୋଲି କହିଦେଲା ଏବଂ ଯଦୁମଣିଙ୍କୁ କହିଲା;— "ଜୁଆଇଁ ସାନ୍ତ ! ଟୋକୀ ଶାଳୀଟା ତମପେଇଁ ଯୋଉଁ କଲବଲ ହେଉଛି, କ'ଣ କହିବି ? ବୁଢ଼ାତ ବୁଢ଼ୀକି ମନା କରିଛି, ଗୃହଖୁଆଡ଼ ବନ୍ଦ—।" ଯଦୁମଣି ବୁଢ଼ୀ ହାତରେ ଟଙ୍କା ପାଞ୍ଚଟି ଗୁଞ୍ଜିଦେଲେ । ତହୁଁ ବୁଢ଼ୀ ଆଗ ପଛ ବିଚାରି କହିଲା, ବି ପହରେ, ଘୋଡ଼ାରେ, ପିଲେ ସାତପାଟଣା ବୁଲିଯିବେ । ସେଇ ଘୋଡ଼ା ଶାଳରେ ତୁମେ ଅଣଆଡ଼ଆ ଥିବ । ସେଇଠି ମୁଁ ଝିଟକମଣିକୁ ଆଣି ପହଞ୍ଚାଇ ଦେବି । ନିଶ୍ଚୟ ସାକ୍ଷାତ ହେବ । ତଦନୁସାରେ ବୁଢ଼ୀ ଚେଷ୍ଟାରେ ଭଉଣୀଜ୍ୱାଇଁ ଏବଂ ଶାଳୀର ନିର୍ଦ୍ଦିଷ୍ଟ ସ୍ଥାନରେ ଦେଖା ସାକ୍ଷାତ ହେଲା । ହସ ପରିହାସ ହେଲା ।

ଝିଟକମଣି ଦୁଷ୍ଟ ହେଲେହେଁ ନିର୍ବୋଧ ନଥିଲା । ଭଉଣୀ ସୁଖରେ ନାହିଁ ବୋଲି ଜାଣି ଆଖିରୁ ଲୁହ ଗଡ଼ାଇ ଭଣୋଇ ହାତରେ ନିଜର ବହୁମୂଲ୍ୟ ରତ୍ନହାରଟିଏ ଗୁଞ୍ଜିଦେଲା । ଯଦୁମଣି ତା ନେବାକୁ ନାରାଜ ହେଲେ, କିନ୍ତୁ ତା କଥା ଏଡ଼ି ପାରିଲେ ନାହିଁ ।

ସେ ସକାଳୁ ବିଦା ହୋଇ ଗାଁକୁ ବାହୁଡ଼ିଲେ । ହାରଟି ଖଞ୍ଜନା କଣ୍ଠରେ ଲଗାଇ ଦେଇ ସବୁକଥା କହିଗଲେ । ଖଞ୍ଜନା କହିଲେ; —"ହେଲା ଯେ, ସ୍ୱେଚ୍ଛାପରି ଆସିଲ, ସ୍ୱେଚ୍ଛାକରି ଆଣିଲ ।"—ତହୁଁ ଯଦୁମଣି ଚିଠିଟିଏ ଲେଖି ନିଜର ଚାକରମ ପଣିଆ ଶ୍ୱଶୁରଙ୍କୁ ଜଣାଇ ଦେଲେ;—

**ଝଟକମଣିଙ୍କ ଅଟକ ଯା କଲେ**
**ଛଟକେ ତାକୁ ଦେଖିଲି**
**ଘୋଟକ ଶାଳରେ ବିନମ୍ର ହୋଇଣ**
**ପରିହାସ କେତେ କଲି**

ଝଟକର ରତ୍ନହାର ହଜିଥିବାରୁ ବିଶଯାକ ଅଣ୍ଡାଳ ହେଉଥିଲେ । ଏ ଲେଖା ପାଇ ଆଶଙ୍କା କଲେ ଯେ ଝଟକ ନିଶ୍ଚୟ ତା ଭଉଣୀକୁ ହାର ପଠାଇଛି । ତା ମଧ୍ୟ ସେ ସ୍ୱୀକାର କଲା । କାଳେ କୋଉଁକଥା ଥାଏ ବିଚାରି ଝଟକକୁ ମାସେ ଦିମାସ ମଧ୍ୟରେ ତିଗିରିଆ ମାନପୁର ଚିତ୍ରକାର ବିଷ୍ଣୁ ବିଶ୍ୱକର୍ମାଙ୍କ ନାତି, ଯୁଗଳକିଶୋର ସହିତ ବିବାହ କରାଇ ଦେଲେ ।

## ୭୫—ନିର୍ଝରରୁ ଝର ବୋହୁଛି

ଯୁଗଳ କିଶୋର ସାଙ୍ଗରେ ଝଟକମଣି ପରମ ସୁଖରେ ଦିନ କଟାଏ । ଧନବନ୍ତର ଝିଅକୁ ଧନବନ୍ତର ପୁଅ । କିଛିଦିନ ପରେ ଝଟକ ଭଉଣୀଜ୍ୱାଇଁଙ୍କୁ ତା ପୁଅର ବର୍ଷପୂରଣୀ ସ୍ୱନଷନକୁ ଡକାଇ ଆଣିଥାଏ । ଯଦୁମଣି ବଡ଼ ସତର୍କରେ ସେଠାରେ ସ୍ୱରଜା ବୋଲି ମାନ ଚଳୁଥାନ୍ତି । କାରଣ ନୂଆ ବନ୍ଧୁତା । ଯେପରି କିଛି ଦୁର୍ଘଟଣା ନ ଘଟେ ।

ଝଟକମଣି ଦିନେ ବାଡ଼ ପାଖ ଖଞ୍ଜା କବାଟ ଆଉଜାଇ ଦେଇ କଦଳୀ ବାଡ଼କୁ ଯାଇଥାଏ । ଯଦୁମଣି ସେହି ବାଡ଼ ପାଖକୁ କ'ଣ ପାଇଁ ଯିବାକୁ ବାହାରିଲେ ; କବାଟ ଖଡ଼ କଲାମାତ୍ରେ ଝଟକମଣି ଡାକ ଛାଡ଼ିଲା;

—"ହାଁ ହାଁ କିଏ ? ଟିକିଏ ରୁହ ।"
ଯଦୁମଣି କହିଲେ—'କାହିଁକି ?'
ଝଟକମଣି ପରିହାସରେ କହିଲା—'ମଲି ତର ସହୁ ନାହିଁକି ?'
ଯଦୁମଣି କହିଲେ—'କିଆଁ ସରୁ ନାହିଁକି ?'

**"ନିର୍ଝରରୁ ଝର ବୋହୁଛି ଝର ରହିବ ନାହିଁ ।"**
**"ଯଦୁ ମୁଣ୍ଡେ ଠେଙ୍ଗା ବାଜିଲେ ତର ସହିବ ନାହିଁ ।"**

ତା ଶୁଣି ଝଟକମଣି କହିଲା;

—"ଛି, ଛି, ଏତେ ବେହିୟା ତମ ପରି, ପୃଥିବୀକୁ ଆଉ କେହିହେଲେ ଆସି ନଥିବେ । ମୋ ଭଉଣୀ ତୁମକୁ ଭଲ ସମ୍ଭାଳ ରଖିଛି ।"

ଘଟଣାଚକ୍ରରେ ଗୋଟେ ଜାତିଆଣ ବିବାଦରେ ଯଦୁମଣି ଯେପରି ଭାବରେ ଯୁଗଳ କିଶୋରଙ୍କୁ ରକ୍ଷା କଲେ, ପ୍ରତିଦାନରେ ସମସ୍ତ ଜୀବନ ସେ ଏପରି ନିବିଡ଼ ସ୍ନେହ ଦେଇଥିଲି ଯେ, ଏପରି ସହାୟକ ହୋଇଥିଲି ଯେ ରାଜା ବିନାୟକ ମାନଧାତାଙ୍କ ପରେ ସେଇ ଥିଲି ଯଦୁମଣିଙ୍କର ପରମ ବନ୍ଧୁ, ପରମ ଉପକାରୀ ।

## ୭୬—ବୋପା ଶଳା ପୁଅ ଶଳା

ଯଦୁମଣିଙ୍କ ଘରକୁ ବୈଶାଖ ମାସରେ ଶାଳୀ ଝିଟିକମଣି ଏବଂ ସାଢ଼ୁ ଯୁଗଳକିଶୋର, ଆସିଥିଲେ । ତେଣୁ ସେ ରଜାଙ୍କ ପାଖକୁ ଆଦୌ ଯାଉ ନଥିଲେ । ଦିନେ ରଜା ପାଇକ ପଠାଇଲେ ତାଙ୍କୁ ଯିବା ଲାଗି । ସେ ଅସୁବିଧା କଥା କହି ପଠେଇ ଆଉ ଗଲେ ନାହିଁ । ଦିନେ ସକାଳୁ ରଜାଙ୍କ ପାଖଲୋକ ଆସି ହାଜର ଯେ, ତୁମ୍ଭଁ ଡାକୁଛନ୍ତି ଆସ । ଏଣେ ସେହି ପାଖ ଲୋକ ଚାଲିଗଲା ପରେ ଯୁବରାଜ ଘୋଡ଼ା ଦୌଡ଼ରେ ଫେରୁ ଫେରୁ ଡାକଲେ—

'ମହାପାତ୍ରେ । ମୋର ଲୋଡ଼ା ତମଠି ଅଛି, ଶୀଘ୍ର ଆସ ।'

ଯଦୁମଣି ସେଦିନ ଘରଛପର କରୁଥାନ୍ତି । ଘରେ ବନ୍ଧୁବାନ୍ଧବ । ତେଣୁ ପୁନର୍ବାର ଯେଉଁ ଲୋକ ଡାକଆସିଲା ସେ କହିଲା ରଜା ଆଉ ଗମ୍ଭୀରସାନ୍ତ ଏକାଠି ଅଛନ୍ତି । ତଲବ ହେଉଛି ଶୀଘ୍ର ଆସନ୍ତୁ ।

ଯଦୁମଣି ଏତେବେଳେ ବିରକ୍ତିରେ କହିଲେ;—

**"ବୋପା ଶଳାର ଯେମିତ ଅହଙ୍କା**
**ପୁଅ ଶଳାର ସେମିତ ଅହଙ୍କା ।"**

ସେ ଲୋକଟି ତା ଶୁଣି ଚାଲିଯାଇ ସେଇକଥା ରଜାଙ୍କୁ ଜଣାଇ ଦେଲା । ତହୁଁ ରଜା କ୍ରୋଧରେ ଅଗ୍ନିନହୋଇ ଡଗରଙ୍କୁ ପଠାଇ ଦେଲେ । ଫଳରେ ଯଦୁମଣି ଧରାହୋଇ ରାଜଦ୍ୱାରରେ ପହଞ୍ଚିଲେ ।

ରଜା ପଚାରିଲେ;—'କି ହୋ, ଯଦୁମଣି ! ଅମୃତରେ ବିଷ କଣିକା ବେଶ୍ ତ ତୁମେ ମିଶାଇ ପାରୁଛ ?'

ଯଦୁମଣି ସ୍ତମ୍ଭୀଭୂତ ହୋଇ କହିଲେ;—

"କ'ଣ ଆଜ୍ଞା, କଣାକଙ୍କର ଠାରେ ଏ ରୋଷ କାହିଁକି ?"—

ଯୁବରାଜ ସତକଥା କହିଦେବାରୁ, ଯଦୁମଣି ଅକାମରା ହୋଇ ବସିପଡ଼ି କହିଲେ;—

"ଆଜ୍ଞା, ଅଭାଗ୍ୟ କାଳେ, ବିପରୀତ ବାଣୀ; କଣ କହିବି । ଘରଖଣ୍ଡି ଛପର କରୁଥିଲି । ମୂଳଆଏ ପଡ଼ୁଥିଲେ, ହଇହେ ରଜ ଫକାନ୍ତ ଠେଇ ଛପଉ କରିଥିଲେ ଭଲ ହୋଇଥାନ୍ତା, ଏତେ ସଅଳ ଛପର କଆଁ କଲେ; ମୁଁ ତାଙ୍କୁ କହିଲି ଆରେ ପିଲେ;

**ପୁଅ ସଳାର ଯେମିତି ଅହଲ୍ୟା**
**ବୋପା ସଳାର ସେଇମିତି ଅହଲ୍ୟା**

ଦେଖ ଯେଉଁ ହନୁମାନ ଆସି ଶୁଳ ତମାମ ଓଲାର ଦେଇଗଲେ ଶେଷକୁ ହନୁମାନର ବାପ ପବନ ଦେବତା ତ କୁଟା ସବୁ ଯାହାଥିଲା ତାକୁ ଉଡ଼ାଇ ନେଲେ । ମେଘ ଏକପାଣିଆ କରିଛୁ, ବରଷା ଅସରାଏ ହେଲେ ଘରଖଣ୍ଡି କୁଡ଼େଇ ହୋଇ ପଡ଼ିବ । ଏଣୁ ଛପର ନ କଲେ କପରି ହେବ ?

ରଜା ଏହା ଶୁଣି ବଡ଼ ଲଜ୍ଜିତ ହୋଇ ଯଦୁମଣିଙ୍କର ହାତଧରି ଅନ୍ତଃପୁରକୁ ନେଇ ବହୁତ ଆଶ୍ୱାସନା ଦେଲେ ଏବଂ ତାଙ୍କର ଘରକୁ ବନ୍ଧୁବାନ୍ଧବ ଆସିଥିବାରୁ ବହୁତ ଭଲ ଭଲ ପଦାର୍ଥ ରାଣୀଙ୍କୁ କହି ତାଙ୍କୁ ଦିଆଇ ଦେଲେ ।

## ୭୨—ଠିଆରେ ମୁତୁ

ବାଘମାରର ଖଣ୍ଡେଇତଆଣୀ ମନୋରମାକୁ ଭଜନ ଲେଖା କରି ଯଦୁମଣି ରଥ ଛୁଇଁ ନିୟମ କରିଥିଲେ । ମନୋରମା ଧନବନ୍ତର ବୋହୂଥିଲା । ତାର ପୁଅ ଝିଅ ଦୁଇଟି ଛଡ଼ା, ଶାଶୁ, ଶଶୁର, ବର ସମସ୍ତେ ମରିଗଲେ । ତେଣୁ ଯୁବତୀ ମାଇପିଟା ପିଲାଙ୍କୁ ଏବଂ ସମ୍ପତ୍ତି ବାଡ଼ ଗୁଡ଼ ପର ଘରକୁ ନଯାଇ ଗୋଟାକୁ ଦୁଣ୍ଡିପ୍ପ ହୋଇ ରହିବାର ଯୋଗାଡ଼ କରିଥିଲା । ଏଣେ ତାର ପୁଅର ବଡ଼ଘର ଏବଂ ଝିଅର ବିବାହ ହେବାର ଥିଲା । ଏ କଥା ସବୁ ଗୁପ୍ତ ରଖି ଯଦୁମଣିଙ୍କ ପାଖକୁ ସେ ଲୋକ ପଠାଇଲା । ଯଦୁମଣି ମଧ୍ୟ ଏସବୁ କିଛି ନବୁଝି ଯାଇ ପହଞ୍ଚିଲେ । ସକାଳୁ ଉଠି ଦେଖିଲେ ମନୋରମାର ତରତରର ସୀମା ନାହିଁ । ସେ ଗୁଡ଼ଲ ଧୋଉ ଧୋଉ ଠିଆରେ ମୁତଦେଲା । ଯଦୁ ତାକୁ ପରିହାସରେ କହିଲେ;—

**'ଠିଆରେ ମୁତୁ, ଗୁଡ଼ଲ ଧୋଉ,**
**ଏତେ ତରତର କାହିଁକି ହେଉ ?'**

ସେ ରସିକା ତୁରନ୍ତ ଉତ୍ତର ଦେଲା: —

**'ନାଁ ଝିଅର ବାହା**
**ପୁଅର ବଡ଼ୁ**

ଝିଅଯିବ, କୋହ୍, ଆସିବ
ମତେ ଲାଗିଅଛୁ ବର,
ବେଦୀକି ଯିବ
କି, ବନ୍ଧେଇ ହେବ
ମୁଁ ତହିଁ ପେଇଁ ଡରବର ।'

ବାଘମାରଣୁ ଫେରି ଏ ଗଳ୍ପଟି ନିଜ ଅନୁଭବ ଅନୁସାରେ ରାଜପୁରୀରେ ବାରମ୍ବାର କହିବାକୁ ସେ କେତେଦିନ ବାଧ୍ୟ ହୋଇଥିଲେ ।

## ୭୮—ଚଡୁକାଠି

ଏହିପରି ରସିକ କବି ବ୍ରାହ୍ମଣ ମାନଙ୍କଦ୍ୱାରା ଅଭିଶପ୍ତ ହୋଇ ବାଧହୋଇ କିଛୁ ଦିବସ ରାମନାମ ଜପ କରିଥିଲେ; ଏବଂ 'ରାଘବ ବିଳାସ' ନାମକ କାବ୍ୟ ଲେଖି ତାହା ବ୍ରାହ୍ମଣ ସମାଜର ପଦତଳେ ଅର୍ପଣ କରି କ୍ଷମାଭିକ୍ଷା କରିଥିଲେ । ପରେ ସେ ଶେଷ ଜୀବନରେ ପରମାର୍ଥ ଦୀକ୍ଷା ଗ୍ରହଣକରି ଆଶ୍ୱସ୍ତ ହୋଇଥିଲେ । ଗଳ୍ପଟି ଏହିପରି:—

ନୟାଗଡ଼ର ବୁଢ଼ୀ ରାଜମାତାଙ୍କର ମୃତ୍ୟୁହେଲା । ସେ ମୃତ୍ୟୁ ସମୟରେ ପାଚିଲା ଆମ୍ବ ଇଚ୍ଛାକରିଥିଲେ । କଲିକତାରୁ ଜାହାଜରେ ବାଲେଶ୍ୱର ଦେଇ, କଟକକୁ ସେତେବେଳେ ଅଦିନ ଫଳ ଆସୁଥିଲେହେଁ, ରାଜା ଲୋକ ପଠାଇ କଟକରେ ସେ ସମୟରେ ତାହା ନପାଇ ଦୁଃଖିତ ହୋଇଥିଲେ । ଫଳରେ ରାଜମାତାଙ୍କର ଶେଷ ଅଭିଳାଷ ପୂର୍ଣ୍ଣ ହୋଇପାରି ନଥିଲା ।

ପାଟମହାଦେଈ ଶାଶୁଙ୍କର ଏ ଅଭିଳାଷ କିପରି ପୂରଣ ହେବ ବୋଲି ବ୍ରାହ୍ମଣ ପଣ୍ଡିତମାନଙ୍କୁ ପ୍ରଶ୍ନ କଲେ । ପଣ୍ଡିତମାନେ ପ୍ରସ୍ତାବ କଲେ ଯେ, ରାଜମାତାଙ୍କ ସପିଣ୍ଡୀକରଣ ଶ୍ରାଦ୍ଧ ଦିବସରେ ଅଷ୍ଟୋତ୍ତରଶତ ସ୍ୱର୍ଣ୍ଣଆମ୍ର ପ୍ରଦାନ କଲେ ପରଲୋକରେ ରାଜମାତା ପରମ ତୃପ୍ତି ଲାଭ କରିବେ ।

ଯଦୁମଣି ସେତେବେଳେ ପରକାଳ ବିଶ୍ୱାସୀ ନଥିଲେ । ପ୍ରତ୍ୟକ୍ଷବାଦ ପ୍ରତି, ଏମନ୍ତକି ଯୌବନରେ ଯାହାହୁଏ—ସେହି ଚାର୍ବାକ ମତ ପ୍ରତି ସେ ଆକୃଷ୍ଟ ଥାଇ ବ୍ରାହ୍ମଣମାନେ ଅର୍ଥଲୋଭରେ ଏପରି ବ୍ୟବସ୍ଥା ଦେଉଛନ୍ତି ଭାବି ମନେ ମନେ କ୍ରୁଦ୍ଧ ହୋଇ ପ୍ରତିଶୋଧ ନେବାର ଭାବନା କଲେ ।

ତାଙ୍କ ମାଆଙ୍କର ଶ୍ରାଦ୍ଧ ତିଥି ଆସିଗଲା । ସେ ଏକଶହ ଆଠ ପଣ୍ଡିତଙ୍କୁ ନିମନ୍ତ୍ରଣ କରି ଆଣିଲେ । ଶାନ୍ତ, ସଂଯତମନା ମହାତ୍ମାମାନେ ତାଙ୍କର ଦ୍ୱାରରେ ମଣ୍ଡଳୀ ହୋଇ ବସିବା ପରେ ଯଦୁମଣି ମୁଣ୍ଡ ନତକରି ସେମାନଙ୍କ ପଦ ଧୂଳିନେଇ

ଧୂର୍ତ୍ତ ମନୋବୃତ୍ତିରେ ଯଦୁକୁମାରମାନେ ଶାମ୍ବକୁ ନାରୀବେଶ କରି ପୂଜ୍ୟପାଦ ଋଷିବର୍ଗଙ୍କୁ ଗର୍ଭରେ କଣ ଅଛି ପଚାରିବା ପରି କହିଲେ-ଆପଣ ମାନେ ଯେଉଁ ବ୍ୟବସ୍ଥା ରାଜଗୃହରେ ଦେବା ହୋଇଛନ୍ତି; ସେହି ବ୍ୟବସ୍ଥା ମୋ ଲାଗି ପ୍ରଯୁକ୍ତ ହେବ କି ନାଁ ?'

ପଣ୍ଡିତମାନେ କହିଲେ 'କି କଥା ଏ !' ସବୁହି ସମାନ ହେଉଛି ଆମ ଧର୍ମର ବ୍ୟବସ୍ଥା ।

'ରୁଚୀନାଂ ବୈଚିତ୍ର୍ୟା ଦୃଜୁ କୁଟିଳ ନାନାପଥ ଜୁଷାଂ
ନୃଣାମେକୋଗମ୍ୟା ସ୍ତ୍ୱମସିପୟସାମର୍ଣ୍ଣବଇବ ।'

କେହି କହିଲେ; ଜଗତେ ଯେତେ ନଦନଦୀ, ସମସ୍ତେ ମିଳନ୍ତି ଜଳଧି । କେହି କହିଲେ; କାଷ୍ଠ ପଷାଣ ତରୁ ତୃଣ; ସକଳ ଦେହେ ନାରାୟଣ । ସବୁତ ସମାନ ଲାଗୁହେବ ବାବୁ । ଏପରି ବଚନପାଇ ନିରୀହ ବୃଦ୍ଧ ପଣ୍ଡିତମାନଙ୍କୁ ଯଦୁମଣି ଉତ୍ତମ ଭୋଜନ ଦେଇସାରି ଜଣାଇଲେ—

'ପରମ ପୂଜ୍ୟ ହେ ବ୍ରାହ୍ମଣ ପଣ୍ଡିତ ଗଣ ! ମୋର ଜନନୀ ମସ୍ତକ ବ୍ୟଥା ରୋଗରେ କାଳାନ୍ତ ହେଲେ । ମୃତ୍ୟୁ ପୂର୍ବରୁ କପାଳରେ ଚଡ଼ୁ ଦେବାକୁ ମୋତେ ସେ ଏକାନ୍ତ ଅନୁରୋଧ କରିଥିଲେ । ମୁଁ ଦୁର୍ଭାଗ୍ୟରୁ ଚଡ଼ୁକାଠି ନପାଇ ତାହାଦେଇ ପାରିନାହିଁ । ଶିରପୀଡ଼ାରେ ଯନ୍ତ୍ରଣା ଭୋଗି ଭୋଗି ଜନନୀ ଚାଲିଗଲେ । ଆପଣମାନେ ପୂର୍ବ ବ୍ୟବସ୍ଥାନୁଯାୟୀ ଏହି ସ୍ୱର୍ଣ୍ଣ ନିର୍ମିତ ଚଡ଼ୁକାଠିକୁ ଆପଣମାନଙ୍କ କପାଳରେ ଟିକିଏ ସ୍ପର୍ଶ କରିଦେଲେ ମୋ ମାଆ ପରମତୃପ୍ତି ଲାଭ କରିବେ ।'

ଏ ନିଷ୍ଠୁର ପ୍ରସ୍ତାବରେ ପଣ୍ଡିତମାନେ ନୀରବ ହେଲେ । ସତ୍ୟରକ୍ଷା ପାଇଁ ବାଧହୋଇ ନୀରବରେ ସ୍ୱର୍ଣ୍ଣ ଚଡ଼ୁକାଠିରେ କପାଳରେ ଚଡ଼ୁପାଇ ବିଦାୟ ନେଲେ । ସେମାନଙ୍କ ଅନ୍ତରରେ ଅସନ୍ତୋଷ ବହ୍ନି ଜଳି ଉଠିଲା ।

ଏହି ଘଟଣାରେ ରାଜା ଏକାନ୍ତ ଦୁଃଖିତ ହୋଇ ତାଙ୍କ କାର୍ଯ୍ୟକୁ ସମାଲୋଚନା କଲେ । ଅତ୍ୟନ୍ତ ଦୁଖର କଥା ଯେ ଏହି ଘଟଣାର କିଯୁତ୍ ଦିନପରେ ଯଦୁମଣିଙ୍କର ଏକମାତ୍ର ପୁତ୍ର ଅକସ୍ମାତ୍ ପୋଡ଼ି ହୋଇ ମରିଗଲା । ଏହି ଘଟଣାରୁ ସେ ବ୍ରାହ୍ମଣମାନଙ୍କର ଏକାନ୍ତ ଆଜ୍ଞାଧୀନ ରହି ମଧ୍ୟ ପୁତ୍ରଦୁଃଖ ଭୁଲି ନଥିଲେ ।

# ୬୯—ମହୁରି ଓ ଢୋଲକାଠି

ଯଦୁମଣିଙ୍କ ପିତାଙ୍କ ବାସସ୍ଥାନ ଗଞ୍ଜାମ ଆଠଗଡ଼ । ସେ ମଧ୍ୟ ସେଠାରେ ଜନ୍ମଲାଭ କରିଥିଲେ । ସେ ତେଣୁ ସାମୟିକ ସେଠାକୁ ଯିବା ଆସିବା କରନ୍ତି । ଝିଅକୁ ବିବାହ ଦେବା ନିମିତ୍ତ ବିଶେଷ ଅର୍ଥ ପ୍ରୟୋଜନ ହେବାରୁ ସେ ବିଭିନ୍ନ ରାଜଧାନୀ ବୁଲୁ ବୁଲୁ ମହୁରି ରାଜାଙ୍କଠାରୁ ଯଥା ସମ୍ଭବ ଅର୍ଥ ଲାଭକରି ସେଠାରୁ ସବାଧିରେ ବିଦାହୋଇ ତାଙ୍କ ଜନ୍ମଭୂମି ଉକ୍ତ ଆଠଗଡ଼ ଗଡ଼ରେ ପହଞ୍ଚିଲେ । ସେତେବେଳକୁ କବିସୂର୍ଯ୍ୟ ସେଠାରେ ପଣ୍ଡିତ ନଥାନ୍ତି । ସଭାକବି ଥାନ୍ତି ଚକ୍ରପାଣି ପଟ୍ଟନାୟକ । ତାଙ୍କ ସହିତ ଏଥିପୂର୍ବରୁ ନୂଆଗଡ଼ରେ ଦେଖା ହୋଇଥିଲା ।

ରାଜସଭାରେ ପ୍ରବେଶ କରନ୍ତେ ମହୁରିରୁ ଯଦୁମଣି ଆସିବା ଲକ୍ଷ୍ୟକରି, ବ୍ୟଙ୍ଗ କରି ସେ ପଚାରିଲେ;

'କହେ ! ଯଦୁମଣି । ତୁମ୍ଭେ 'ମହୁରି' କେତେବେଳେ ଫୁଙ୍କିଲ କି ?' ଯଦୁମଣି ତୁରନ୍ତ କହିଲେ;—

"ଆପଣ 'ଢୋଲକାଠି', ଘୁଞ୍ଚିଲ ବେଳକୁ ମୁଁ ମହୁରି ଫୁଙ୍କୁଅଛି ।"—

ଯଦୁମଣି ଏକାନ୍ତ ଚତୁର ଥିଲେ । ପଟ୍ଟନାୟକେ କେଉଁଠି ଥିଲେ କେଉଁଠୁ ଆସିଛନ୍ତି ତାହା ସେଇଦିନ ଯଦୁମଣି ତାଙ୍କ ବସାରୁ ବୁଝି ଆସିଥିଲେ । ଆଠଗଡ଼ ରାଜ୍ୟରେ 'ଢୋଲକାଠି' ନାମରେ ଗ୍ରାମଟିଏ ରହିଛି । ପ୍ରକୃତରେ ମଧ୍ୟ 'ଢୋଲକାଠି'ରୁ ପଟ୍ଟନାୟକେ ସେଦିନ ଗଡ଼କୁ ଆସିଥିଲେ ।

ଆଉ ଅଧିକ ଦୂର ଅଗ୍ରସର ନହୋଇ ଚକ୍ରପାଣି ପଟ୍ଟନାୟକେ ତାଙ୍କୁ ସଞ୍ଜାବସା ଦେଇ ମଠରେ ରଖାଇ ଦେଲେ ।

# ୭୦—ଲେମ୍ବୁ ନାରଙ୍ଗରେ ହାତ ନବାଜିଲା

ଯଦୁମଣିଙ୍କର ଆଠଗଡ଼ରେ ଯେଉଁ ଘର ଥିଲା, ସେହିଘରକୁ ସେ ପୂର୍ବରୁ କୁଟୁମ୍ବ ଲୋକଙ୍କୁ ବନ୍ଦୋବସ୍ତ କରିଦେଇ ଥିଲେ । ତେଣୁ ଆଠଗଡ଼ ଯାଇ ସେ ରାଜାଙ୍କର ଅତିଥି ହୋଇ ଦି ଚାରି ଦିନ ରହିଲେ ।

ଦିନେ ରାଜା ବାଲୁକେଶ୍ୱର ରାଜ ସଭାରେ ତାଙ୍କୁ ଭେଟିଲେ । ଯଦୁମଣି ଆସିଥିବାରୁ ସଭାରେ ସେ ଦିନ ଭିଷଣ ଲୋକ ଗହଳି । ରାଜା ପଚାରିଲେ—'ଯଦୁମଣି ଭଲ ଅଛ ତ ? ବସାରେ କିଛି ଅସୁବିଧା ହେଉ ନାହିଁ ତ ?'—

ତାହା ଶୁଣି ଯଦୁମଣି କହିଲେ,—

**ଯେଉଁ ଦିନୁଁ ଆମ୍ଭେ ଏଠାକୁ ଆଇଲୁ ସେହିଦିନୁଁ ହେଲା ଖଡ଼ା**
**ଲେମ୍ବୁ ନାରଙ୍ଗରେ ହାତ ନ ପଡ଼ିଲା ଭାତଖିଆ ହେଲା ଛଡ଼ା**
**ଆଳୁ କଦଳୀରେ କି ସୁଖ ମିଳିବ ସେ ତ ଲୋଡ଼ୁଥାଏ ସାଥି**
**କହେ ଯଦୁମଣି କରମଙ୍ଗା ହେଲେ କିଛି ବା ରୁଚନ୍ତା ପଥି ।**

ଏହାର ଅର୍ଥହେଲା;—କେବଳ ଖଡ଼ା ତରକାରି ଦିଆ ଯାଉଛି । ଲେମ୍ବୁ କମଳା ଯାହା ଆଠଗଡ଼ରେ ପରିପୂର୍ଣ୍ଣ ସେଥିରୁ ଗୋଟେ ସୁଦ୍ଧା ନ ମିଳିବାରୁ ଅନ୍ନଭକ୍ଷଣ ଅରୁଚି ସମ୍ପନ୍ନ ହେଉଛି । ଆଳୁ କଦଳୀ ତରକାରି ଅବଶ୍ୟ ହେଉଛି ସେଥିପାଇଁ ମହୁରହେବାକୁ ଆଉ ଯାହାଲୋଡ଼ା ତା ନାହିଁ । କରମଙ୍ଗା ଦିଆଗଲେ ଅବା ପଥି ରୁଚନ୍ତା ?

ଆଠଗଡ଼ରେ ସେତେବେଳେ ଫଳ ମୂଳର ଏକ ଉଦ୍ୟାନ ଥିଲା । କିନ୍ତୁ ଅନ୍ୟାର୍ଥରେ;—

ମୁଁ ଯେଉଁଠି ଅଛି ସେଠି ନିଲଜ୍ଜା ଖାନକି ଖଡ଼ା ଡାଙ୍ଗପରି ରହିଅଛନ୍ତି । ତାଙ୍କୁ କଣ ଦେଖିବା, ସେତ ଖାଲି ହାଡ଼ ଦି ଦି ଖଣ୍ଡ ମାତ୍ର । ଉଦ୍‌ଭିନ୍ନ ଯୌବନା, ଲେମ୍ବୁ ନାରଙ୍ଗ ସମ କ୍ଷୁଦ୍ର ସୁଗୋଲ ସ୍ତନା ଦେଖା ପଡ଼ୁଛନ୍ତି । ସେ ଅତି ଚଞ୍ଚଳ । ତାଙ୍କୁ ବା ହାତ ଦିଏ କିଏ । ତାଙ୍କର ମଧୁର ରୂପକାନ୍ତି ଦେଖି ଲୋଭ ନକରି କାମ ଜ୍ୱରରେ ଅନ୍ନ ରୁଚୁନାହିଁ । ଖମ୍ବ ଆଳୁ ଏବଂ କଦଳୀ ପ୍ରାୟ ନତ ସ୍ତନା ବେଶ୍ୟା ଠାରେ ବା କି ସୁଖ ମିଳିବ ? ସେ ସବୁ ସାଥି ସାଙ୍ଗ କଥା । ଯଦୁମଣି ଭାବୁଛି, ରାଜାଙ୍କ ଶ୍ରୀହସ୍ତ ଅଧିକାରରେ ଯେଉଁ ମଙ୍ଗିଲା ପରିଜନ ଅଛନ୍ତି ସେଥିରୁ କେହିହେଲେ ସୁନ୍ଦରୀ ପୂର୍ବୋକ୍ତ କାମଜ୍ୱରର ପଥ୍ୟ ସ୍ୱରୂପ ହୁଅନ୍ତା ।

ରାଜା ଏହା ବୁଝି ଏହି ଦୁର୍ଦ୍ଦାନ୍ତ ସ୍ପଷ୍ଟବାଦୀ ରସିକ କବିଙ୍କ ମନ ମୁତାବକ ବିଦାୟୀ ଦେଇ ବିଦାୟ କରିଦେଲେ । ତାଙ୍କ ଗୀତ ଶୁଣି ରୂପବତୀ ପୋଇଲୀ ମାନେ ଲଜ୍ଜାରେ ଅନ୍ତଃପୁରକୁ ପଳାଇ ଯାଇଥିଲେ ।

## ୨୧—ଧନ୍ୟ ଆଠଆଡ଼ ଲୀଳାରେ

ଆଠଗଡ଼ ସେତେବେଳେ ଶୌଖିନ ବଜାର ପାଲଟି ଥିଲା । ବିଶେଷରେ ରାଜାଙ୍କ ମହଲଦାର ହରି ପ୍ରହରାଜ ନାମରେ ଜଣେ ପଣ୍ଡାବ୍ରାହ୍ମଣ ସଙ୍ଗୀତର ଆଖଡ଼ା ଜମାଇ ଥିଲେ । ନାନା ସଙ୍ଗୀତରେ ଉଚ୍ଚାଟ ମନୋଭାବ ଘରେ ଘରେ ପୂରି ଫାଟି ଯାଉଥାଏ । ଯଦୁମଣି ରାଜାଙ୍କଠାରୁ ବିଦାୟ ହୋଇ ଉକ୍ତ ପ୍ରହରାଜଙ୍କ ଦେଉଡ଼ିରେ ରାତ୍ର ଅତିବାହିତ କରି ତାଙ୍କ ପ୍ରଦତ୍ତ ବୋଝିଆ ସହିତ ପାହାନ୍ତାରୁ ଫେରିବାକୁ ସ୍ଥିର କରିଥିଲେ ।

ଯଦୁମଣି ଦେଉଳ୍ଡ଼ରେ ଶୋଇଥିଲେ, ଏହି ସମୟରେ ଅନ୍ଧକାର ମଧ୍ୟରେ ବଣି ପ୍ରହରାଜ ଉଆସରୁ ଆସି ପହଞ୍ଚିଲେ । ଯଦୁମଣି ପଚାରିଲେ—'ଆଜ୍ଞା କଣ ଆସିବା ହେଲା ?'

ଦୁହେଁ ବସି ଦୁଃଖସୁଖ ହେଉଛନ୍ତି, ଏପରି ସମୟରେ ପ୍ରହରାଜଙ୍କ ରକ୍ଷିତ ରାଜାଙ୍କ ଆଖଡ଼ାରୁ ତାଙ୍କ ଟୋକା ଚାକର ଫେରିଲା । ତା ଆଗରେ ଭଣ୍ଡାରି ମସାଲ ନେଇ ଆସୁଥିଲା । ଏହା ଦେଖି ଯଦୁମଣି ନିମ୍ନୋକ୍ତ କବିତାଟି ଗାଇଥିଲେ;

**'ଧନ୍ୟ ଆଠଗଡ଼ ଲୀଳାରେ**
**ବଣି ପ୍ରହରାଜେ ଅନ୍ଧାରେ ଆସନ୍ତି**
**ଚାକରଙ୍କ ଆଗେ ହୁଲାରେ ।**

ବଣି ପ୍ରହରାଜେତ ଆପଣାହସ୍ତେ ଜିହ୍ୱା ଛେଦିଥିଲେ । ଏଥିରେ ତାଙ୍କର ତ କେହି ପ୍ରତିବାଦୀ ନଥିଲା ତେଣୁ ଏ ଦଣ୍ଡ ଭୋଗିଥିଲେ । କର୍ମ ଆଦରି ନ ସହି ଯିବେ କୁଆଡ଼େ ?

## ୭୨—ନୀଳାଚଳ

ବିନାୟକ ସିଂହ ମାନଧାତା ଜୀବିତ ଥିଲାବେଳେ ଯଦୁମଣି ସସ୍ତ୍ରୀକ ଥରେ ପୁରୀ ଜଗନ୍ନାଥ ଦର୍ଶନ ଲାଗି ଯାଇଥିଲେ । ସେଇଠି କବିସୂର୍ଯ୍ୟ ବଳଦେବ ରଥଙ୍କ ସହିତ ତାଙ୍କର ପୁଣି ଦେଖା ହୋଇଗଲା । ରଥେ ଏକାନ୍ତ ଦୁଃଖରେ ଥିଲେ । ଦୁହେଁ ମନ୍ଦିରକୁ ଗଲେ । ଦୁହେଁ ଯାକ ଦୁଃଖୀ ଥିବାରୁ ନିଜ ନିଜ ଭାଷାରେ ଜଗନ୍ନାଥଙ୍କୁ ଦୁଃଖ ଜଣାଇଲେ । ରଥେ ତାଙ୍କର ବିପୁଳ ପାଣ୍ଡିତ୍ୟ ପୂର୍ଣ୍ଣ ଭାଷାରେ—'ବାଧିଲା ଜାଣି, ରମା-ରମଣ କର କ୍ଷମା ନୋହିଲେ ଦଣ୍ଡେ ଦିଅ ଝାଳ' ଏହି କବିତାରେ ଠାକୁରଙ୍କୁ ସାପ ବୋଲି ଭୀଷଣ ଗାଳି ଦେଲେ । କିନ୍ତୁ ଯଦୁମଣି ପୁତ୍ର ଶୋକରେ ଅଧୀର ଥିବାରୁ—ଗାଇଲେ—

**ନୀଳାଚଳ କଳାକର, ତାରଣ ମାରଣ ଧୀର**
**କହ ପ୍ରଭୁ ସତ କି ଏ ମିଛ,**
**ଦେଲ ଯାହା ନେଲ ତାହା ଏଥିକୁ କିପାଇଁ ମହା-**
**ଦାତା ପଣେ ପତକା ବାନ୍ଧିଛ ହେ, ମହାପ୍ରଭୁ ।**
**ନ ମାନି କରି ରମାକୁ ଅକିଞ୍ଚନ ସୁଦାମାକୁ**
**ବିପୁଳ ସଂପଦେ ମଣ୍ଡି ଦେଲ,**
**ବଳୀ ବଳିଷ୍ଠ ବଳୀକି ଅକଳିତ ବିଭୂତିକି**
**ଦଳିତ କରରେ କରିଥିଲ ହେ ମହାପ୍ରଭୁ ।**

ଦ୍ରୁପଦ ରାଜ ନନ୍ଦନା ମହତ୍ତ୍ୱ ହର ବେଦନା
ବନାଶନେ ହେଲ ଧନ୍ୱନ୍ତରୀ,
ଗୋକୁଳ କଲ-ଧଉତ ଗଉରାଙ୍ଗୀଙ୍କ ମହତ୍ତ୍ୱ
ନେଇଥିବା ସକାଶରୁ କରହେ ମହାପ୍ରଭୁ,
ଗଭୀରଜଳେ କୁମ୍ଭୀର ଗଳଗ୍ରହଣେ କୁମ୍ଭୀର
ରକ୍ଷାକଲ ସିନା କକ୍ଷା ବହୁ;
ଓକଶୀଲ ଦ୍ୱିଜ ଗଜ ଜୀବନ ହରଣେ ତେଜ
ଅର୍ପଣ କଲ କୃପଣ ନୋହୁ ହେ, ମହାପ୍ରଭୁ ।
ଏହା ଉଦ୍ଧରଣେ ଯେବେ କୃପା ବସିଅଛୁ ଲବେ,
ତେବେ ସିନା ଦାନୀ ବୋଲାଇବ,
ପରମ ପାତକୀ ଶ୍ରେଣୀ ଶିରୋମଣି ଯଦୁମଣି
ମନତଳେ ନେଇ ନପାରବ ହେ, ମହାପ୍ରଭୁ ।

ଏହି ପାଞ୍ଚ ପଦ କବିତା ସେ ବୋଲିବା ପରେ ତାଙ୍କ ନିଷ୍ଠୁର ଚକ୍ଷୁରୁ ଲୋତକ ସ୍ରବିଥିଲା । ତାଙ୍କ ଆଖିର ଲୋତକ କେବଳ ସେହି ଜଗନ୍ନିବାସ ଦେଖିଥିବେ । ଜନ ସମାଜ ତାଙ୍କଠୁ ବହୁ ଦୁଃଖ ମଧ୍ୟରେ ମଧ୍ୟ କେବେ ଲୁହ ବିନ୍ଦୁଏ ଦେଖି ନଥିଲେ ।

ଏହା ଫଳରେ ସେ ଗଜପତି ମହାରାଜା ମୁକୁନ୍ଦଦେବଙ୍କ ଦର୍ଶନ ଲାଭ କରିଥିଲେ । ଅନ୍ୟ କୌଣସି ବିଷୟରେ ସେ ଆଶା ପୋଷଣ କରି ନ ଥିବାରୁ ଦୂରରେ ରହିଥିଲେ ।

## ୬୩—ଧନୁମାସ ହେଲା ହନୁ ନ ଚଳିଲା

ପୁରୀରେ ସେ ଯେଉଁ କେତେଦିନ ଥିଲେ, ତନ୍ମଧ୍ୟରେ ହଠାତ୍ ଦିନେ ପୁରୀ ଇଂରେଜ କମ୍ପାନୀଦ୍ୱାରା ନିର୍ଯାତିତ ମୁକୁନ୍ଦଦେବ ଗଜପତିଙ୍କ ସହିତ ତାଙ୍କର ଦେଖା ହୋଇଥିଲା । ଗଜପତି ସେତେବେଳେ ପାଦରେ ଚାଲି ମହାମାନ୍ୟ ଜଗନ୍ନାଥଙ୍କ ଦେଉଳକୁ ବିଜେ ହେଉଥିଲେ । ସହସ୍ର ଜନତା ମଧ୍ୟରେ ମୁହଁ ବୁଲାଇ ଯଦୁମଣିଙ୍କୁ ପ୍ରଶ୍ନକଲେ,

'ମହାପାତ୍ରେ ! କ'ଣ ଇଚ୍ଛା ?'

ତହୁଁ ଯଦୁମଣି ମହାରାଜାଙ୍କର ତତ୍କାଳୀନ ଅବସ୍ଥା ବିବେଚନା କରି କହିଥିଲେ,

**ଧନୁମାସ ହେଲା ହନୁ ନ ଚଳିଲା, କହିବାକୁ ବଡ ଲାଜ**
**ମୁଁ ଆଁ କରିଅଛି ମୁଆଁ ଖାଇବାକୁ**
**ଦେବା ହେଉ ମହାରାଜ ।**

ସେ ଦିନ ଧନୁ ସଂକ୍ରାନ୍ତି ଥିଲା । ଶ୍ରୀମନ୍ଦିରରେ ଶଗଡ଼ ଶଗଡ଼ ସାତମୁଆଁ ଭୋଗ ଲାଗିଥିଲା ।

ମହାରାଜା କବିଙ୍କର ଭାବାର୍ଥ ବୁଝି ନପାରି ଏ ସାଧାରଣ ପ୍ରାର୍ଥନାରେ ଏକାନ୍ତ ପ୍ରୀତ ବୋଲି ଦେଖାଇ ଦେବାକୁ, ତାଙ୍କ ବସାକୁ ଧନୁ ମୁଆଁ ସହିତ ପାଞ୍ଚପେଡ଼ି ଶୁଖିଲା ମହାପ୍ରସାଦ ପଠାଇ ଦେଇ ଗୋଟିଏ କାଞ୍ଚକାଟକିରି ଯଥା ସହିତ ପାଞ୍ଚଟି ମୁଦ୍ରା ଦେଇଥିଲେ । କବି ସେଇ ଯଥାଟି ତାଙ୍କ ଜୀବନ ଥିବା ଯାଏ ଅତି ଯତ୍ନରେ ସାଇତି ରଖିଥିଲେ । କିନ୍ତୁ ଗୃହ ଅଗ୍ନିଦାହରେ ତାହା ଦଗ୍ଧ ହୋଇ ଯିବାରୁ ଚିରଦିନ ମନସ୍ତାପ କରିଥିଲେ ।

ମହାରାଜାଙ୍କ ପ୍ରଦତ୍ତ ମହାପ୍ରସାଦ ଦୁଇଜଣ ଭାରୁଆ କରି ରାଜ୍ୟକୁ ଆଣି ଗଜପତି ପ୍ରଦତ୍ତ ମହାପ୍ରସାଦ ଭାବରେ ରାଜ୍ୟର ଅଧିକାଂଶ ସ୍ଥାନରେ କବିଙ୍କ ପତ୍ନୀ ବଣ୍ଟନ କରାଇଥିଲେ ଏବଂ ବିଭିନ୍ନ ରାଜ୍ୟର ବନ୍ଧୁବାନ୍ଧବଙ୍କ ଘରକୁ ମଧ୍ୟ ପଠାଇଥିଲେ ।

## ୭୪—ମାଉଁସ ବିପଳ ତନୁ

ମହାପ୍ରସାଦ ନେଇ ଦୁଇପ୍ରାଣୀ ଖଟିଗିରିଆ ମାନପୁର ଶାଳୀ ଘରକୁ ଗଲେ । ମାନପୁରର କପିଳେଶ୍ୱର ଏକାନ୍ତ ପ୍ରସିଦ୍ଧ ଦେବତା । ଫଗୁଣ ଦ୍ୱିତୀୟାରୁ ଯାଇ ଜାଗର ଅମାବାସ୍ୟା ଯାଏ ସେଠାରେ ରହିଲେ । ଝିଟକମଣି ଗ୍ରାମକୁ ଦେଲା ନାହିଁ । କାରଣ ତାଙ୍କ ଗାଁ କପିଳେଶ୍ୱରଙ୍କ ଜାଗର ଅତି ବିଖ୍ୟାତ ଯାତ୍ରା । ନୂଆଗଡ଼ ଲଡୁବାବାଙ୍କ ଯାତ୍ରା ସେହି ସମୟରେ ହୋଇଥାଏ । ସେଇଠି ଦୁଇ ପରିବାର ଚନ୍ଦନ ଯାତ୍ରାକୁ ପୁଣି ପୁରୀ ଯିବାକୁ ସିଦ୍ଧାନ୍ତ କଲେ । ତେଣୁ ପୁରୀରେ ଚନ୍ଦନ ପୂର୍ବରୁ ପହଞ୍ଚି ନରେନ୍ଦ୍ର କୋଣରେ ବସାକରି ରହିଲେ ।

ଖଞ୍ଜନା, ଝିଟକମଣି ବିହିଙ୍କି ବିହେଁ ବଳନ୍ତି । ଦିନେ ଯଦୁମଣିଙ୍କ ବସା ଦୁଆର ବାଟରେ ଦଳେ ଦେବଦାସୀ ଯାଉଥିଲେ । ଯଦୁମଣି ଏବଂ ବିଭଉଣୀ ଦାଣ୍ଡରେ ବସି କଥାଭାଷା ହେଉଥିଲେ । ଏ ବିଭଉଣୀଙ୍କୁ ଦେଖି ବିଶେଷରେ ଯଦୁମଣି ମହାପାତ୍ରଙ୍କ ନାଁ ଶୁଣି ଦଳଯାକ ସେଠି ଟିକେ କଥାଭାଷା ହେଲେ । ସେମାନେ ଯଦୁମଣିଙ୍କୁ ଏ ବିଭଉଣୀଙ୍କର ନାଁ ପଚାରିଲେ । ଯଦୁମଣି ତା, ତ କହିଲେ, କିନ୍ତୁ ଦଳଯାକର ନାଁ ମଧ୍ୟ ପଚାରି ବୁଝିଗଲେ । ଏହାପରେ ସେମାନେ

ଶବ୍ଦାସ୍ତ୍ର ନେଲେ । କିନ୍ତୁ ପଛୁଆ ଅନେକଙ୍କ ଅନେକଙ୍କ ଯାଉ ଯାଉ ଚନ୍ଦୁ ବୋଲି ଗୋଟିଏ ବେଶ୍ୟା ଗୋବର ଗୁଡ଼ାଏ ଗୋଡ଼ରେ କୁନ୍ଦ ପକାଇଲା । ସେ ଦଳଛଡ଼ାହୋଇ ନିକଟରେ ଜମାଥିବା ବାଉଁଶ ଗୋଛ ଦେହରେ ଗୋଡ଼ ପୋଛି ବସିଲା । ଯଦୁମଣି ପାଟିକରି କହିଲେ;

**ମାଉଁସ ଦ'ପଲ ଚନ୍ଦୁ, ବାଉଁଶ ଅଗରେ ଗୋଡ଼ ପୋଛିଦେଲା;**
**ଅଳପ ଚୈକଣ ଜାନୁ ।**

ସେମାନେ ହୋ ହୋ ହସି ପୁଣି ଦଉଡ଼ିଲେ । ଯେଉଁଥି ପାଇଁ ଆସିଥିଲେ ସେମାନେ ତା ପାଇ ଆନନ୍ଦରେ ଅଧୀର ହୋଇ, ପ୍ରଶଂସାରେ ମଣ୍ଡି ପକାଇଲେ, ଏବଂ ଚନ୍ଦୁକୁ ଦେଖାଇ ଏହି କବିତାକୁ ଆବୃତ୍ତି କଲେ ।

## ୭୫—ମୋ ନାମ ଉତ୍କଳଘଣ୍ଟ

ଯଦୁମଣି ଥରେ ପୃଷ୍ଠ ଦାଣ୍ଡରେ ଏକୁଟିଆ ମହାପ୍ରଭୁଙ୍କ ପାଖକୁ ଯାଇଥିଲେ । ବାଟରେ ହଠାତ୍ ଜଗନ୍ନାଥ ରାଜଗୁରୁ ନାମକ ଜଣେ ପଣ୍ଡିତଙ୍କ ସହିତ ତାଙ୍କର ଦେଖାହେଲା । ସେ ଯଦୁମଣିଙ୍କ ସୁଶ୍ରୀ ରୂପ ଏବଂ ଅନୁପମ ଗଠନରେ ଆକୃଷ୍ଟ ହୋଇ ପରିଚୟ ଲୋଡ଼ାକଲେ । ତହୁଁ ଯଦୁମଣି ଗାଇଥିଲେ ଏକ କବିତା:—

**ହୟଗ୍ରୀବ ମହାପ୍ରଭୁ ପ୍ରତାପେ**
**ଥୋଡ଼ା ନୁହେ ଲୋଡ଼ା କରନ୍ତି ନୃପେ**
**ଯୋଡ଼ାହେବା ମୋ ପ୍ରୌଢ଼ି କବିତାକୁ**
**ବଳି ବଳି ରସ ଦାନୀ କର୍ଣ୍ଣକୁ**
**ଭଲେ ଭଲ, ଖଣ୍ଟେ ଖଣ୍ଟ ଯେ**
**ନବ ଦୁର୍ବାଦଳ ଶ୍ୟାମଳ କୃପାରୁ**
**ମୋ ନାମ ଉତ୍କଳ ଘଣ୍ଟ ଯେ**

ବୁଢ଼ା ରାଜଗୁରୁ କୁଣ୍ଢାଇ ଧଇଲେ । ଯଦୁମଣି ବୋଲି ଚିହ୍ନି ଆଶୀର୍ବାଦ କଲେ ।

ଏହି ପଦ୍ୟର ଅର୍ଥ ହେଲା:—ହୟଗ୍ରୀବ ମହାପ୍ରଭୁଙ୍କ ପ୍ରତାପରୁ ସାଧାରଣ ଲୋକଙ୍କଦ୍ୱାରା ମୁଁ ଆଦୃତ ନ ହୋଇଲେ ମଧ୍ୟ ଶ୍ରେଷ୍ଠ ରାଜାମାନଙ୍କଦ୍ୱାରା ଆଦୃତ ହୁଏ । ମୋର ତିଆରି ବଳିଷ୍ଠ କବିତାମାନ କାନକୁ ବଳିବଳି ରସ ଦାନ କରିଥାଏ । କିନ୍ତୁ

ମୁଁ ଭଲ ସାଥିରେ ଭଲ, ଖଣ୍ଡ ସାଥିରେ ଖଣ୍ଡ ପଣିଆ ଦେଖାଇଥାଏ । ନବ ଦୁର୍ବାଦଳ ଶ୍ୟାମଳ ବର୍ଣ୍ଣ ବିଶିଷ୍ଟ ଉକ୍ତ ହୟଗ୍ରୀବଙ୍କ କରୁଣାରୁ ମୋ ନାମ ଉତ୍କଳ ଘଣ୍ଟ ଅଟେ । ଘଣ୍ଟ ଧ୍ୱନିରେ ଯେପରି ଦୁନିଆ ମୋହିତ ହୁଏ, ମୋ ଧ୍ୱନିରେ ସେପରି ଉତ୍କଳ ଚମକିତ ହୋଇଥାଏ ।

## ୨୭—ଏ ଧନ ଦରପଣ ମୁହଁ

ଉକ୍ତ ରାଜଗୁରୁ ପଦ୍ମମଣିଙ୍କଠାରୁ ଗର୍ବିତ ଉକ୍ତି ଶୁଣି ଆଉ ଥରେ ତାଙ୍କୁ ପରୀକ୍ଷା କରିବେ ବୋଲି ସ୍ଥିର କରି ଦିନେ ନରେନ୍ଦ୍ର ମୋଖସି ଆଡ଼େ ଯାଉଥିଲେ । ବାଟରେ ପଦ୍ମମଣି ମହାପାତ୍ରଙ୍କ ସହିତ ତାଙ୍କର ଦେଖାହେଲା । ରାଜଗୁରୁ ସୁଯୋଗ ଖୋଜୁଥିଲେ, କିପରି ଏକ ଘଟଣା ଘଟିଲେ ପାଦ ପୂରଣ ପାଇଁ କିଛି ପଚାରି ବଡ଼େଇ କବିଙ୍କୁ ପରାସ୍ତ କରିଦେବେ ବୋଲି । କିନ୍ତୁ କୌଣସି ସୁଯୋଗ ଘଟୁ ନଥାଏ ।

ନରେନ୍ଦ୍ର ଆଡ଼େ ଯାଉ ଯାଉ ଜନ-ସମୁଦ୍ର ଧୀରେ ପତଳା ହୋଇଯିବାରୁ ଶେଷକୁ ନିକାଞ୍ଚନ ଦେଖାଗଲା । ଦୈବଯୋଗକୁ ଏପରି ସମୟରେ ଗୋଟିଏ ଅତି ରୂପବତୀ ନବୀନା ଯୁବତୀ କ'ଣ କହୁ କହୁ ତାଙ୍କୁ ଡେଇଁପଡ଼ି ଚାଲିଗଲା । ତାର ମୁଖ ମଣ୍ଡଳ ଏପରି ତ୍ରୈଲୋକ୍ୟମୋହିନୀ ଥିଲା ଯେ, ଅଙ୍ଗ ଗଠନ ସହିତ ତା ମଧୁର ବାଣୀ ଏପରି କୋମଳଥିଲା ଯେ, ବୃଦ୍ଧ ରାଜଗୁରୁ କିଛି ଦୂରଯିବା ପରେ ପଦ୍ମମଣିଙ୍କୁ କହିଲେ—ହଇ ହେ ! ପଦଟିଏ ପୂରଣ କଲ ?

### କି ଦେଖିଲି ଏ ଧନ ଦରପଣ ମୁହଁ

ରାଜଗୁରୁ ଯେ ଏକା ରସିକ ନୁହନ୍ତି ତାହା ପଦ୍ମମଣିଙ୍କୁ ଜଣାଥିଲା । ସେ ମଧ୍ୟ ସେହି ନବୀନାର ସୁନ୍ଦର ମୁଖ, ସୁନ୍ଦର କଥା ପାଶୋରି ନ ଥିଲେ । ତେଣୁ ପଦ ପୂରଣ କଲେ—

**କି ଦେଖିଲି ଏ ଧନ ଦରପଣ ମୁହଁ**
**ଅଙ୍କେ ବସାଇଲେ ନ ଗଣନ୍ତି ଆଉ**
**ଧନ, ଦର, ପଣ ମୁହଁ ।**
**ବନଦ-ଶିକୁର ମନୋହର । ସୁର-ପୁରବାଳା ପ୍ରତି ସାର**
**ସନନ୍ଦ ସନକାଦି ମୁନି ମୋହିନୀ ହେବ କାହା ଗଳାହାର ।**

ବୁଢ଼ା ରାଜଗୁରୁଙ୍କୁ ଜଣେ ଋଷିପ୍ରତିମ ବ୍ୟକ୍ତି ବୋଲି ପଦ୍ମମଣି ମନେ କରିଥିବାରୁ ସନନ୍ଦ ସନକାଦି ମୁନି ମୋହିନୀ ବୋଲି ପ୍ରୟୋଗ କରିଥିଲେ । ରାଜଗୁରୁ କୁଣ୍ଢାଇ ଧରି କହିଥିଲେ—'ବାବା ଚିରାୟୁ ଲଭ କର ।'

ବନଦ—ମେଘ

# ୨୨—ଫକିରୀ ମାହାରି

ଦେବଦାସୀମାନେ ଯଦୁମଣିଙ୍କର ଗୌରବ ଏବଂ ପ୍ରତିପତ୍ତି ଗାନ କଲେ ତାହା ଫକୀରୀ ମାହାରି ମନକୁ ପାଉ ନଥିଲା । ଏହି ଫକୀରୀ ମାହାରିର ଅନ୍ୟନାମ ତିଳୋତ୍ତମା । ତାର ଶୈଶବ ନାମରେ ସେ ଦୁନିଆଁରେ ପରିଚିତ ଥିଲା । ଫକୀରୀ ମାହାରୀଭି ପାଲି ଦିନ, ଶ୍ରୀମନ୍ଦିରରେ ଲୋକାରଣ୍ୟ ହେଉଥିଲା । ଏହି ନାରୀକୁ ଭୋଗ କରିବା ଦୂରେଥାଉ ସାମାନ୍ୟ କଟାକ୍ଷ ବା କଥାପଦେ ତାହାଠାରୁ କେହି ପାଇଲେ ସ୍ୱର୍ଗ ସୁଖ ଅନୁଭବ କରୁଥିଲେ ।

ଫକୀରୀ ମାହାରି କେବଳ ରୂପବତୀ ନ ଥିଲା, ପାଣ୍ଡିତ୍ୟରେ ମଧ୍ୟ ଚରମ ପରାକାଷ୍ଠା ଲଭିଥିଲା । ସଂସ୍କୃତ ଶାସ୍ତ୍ର, ଗ୍ରନ୍ଥମାନ ସେ ମୁଖେ ମୁଖେ ଅର୍ଥ କରୁଥିଲା । ଯଦୁମଣି ତାକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ କବିତାଟିଏ ଲେଖି ପଠାଇଲେ ।

ଗଦାଧର ନଗରୀ
ନଦାଧିପ ଲହରୀ,
ଗିରି ଚରିକ ହାସେ ସ୍ତନ—
ଶମ୍ଭୁଙ୍କୁ କରାଇଛୁ ସ୍ନାନ
ମୋ ଆନନ୍ଦ କାମରେ,
ବଗ୍ରିର ମରମରେ, ମୋ ମାଳୀ ନୋହନ୍ତୁ କି, ଘେନରେ—
ରସବଲ୍ଲୀ, ଛଇଳ ଚେତନର ଛାମୁଁ
ବଗ୍ରିର କଲି ଏ ଇଚ୍ଛା ମୁଁ
ହାଜର ହେଲେ ତୋର ସଗରବାଜୀ ଗ୍ରେର
ପାଜି କରିବ ମୋତେ ଛାମୁଁ ରେ ।

ଏ ଲେଖାଟି ପଢ଼ି ଗୁଣ ଏବଂ ରୂପଗର୍ବିଣୀ ତିଳୋତ୍ତମା କହିଲା—

—"ମଲା ଯେ ଗ୍ରେରଟା ସେ ନମସ୍କାର କଲେ, ଅଧିକ କ'ଣ ହେଲା ?" —ଯଦୁମଣି ଭାବିଥିଲେ ଯେ ସେ ଲେଖାଟି ବୁଝିପାରିବ ନାହିଁ । କିନ୍ତୁ ସେ ରସବତୀ ଆଖି ପକାଇବା ମାତ୍ରେ ଏହି ଉତ୍ତର ଦେଇ ଲେଖାଟି ଫେରାଇ ଦେଲା । ଯଦୁମଣି ସେ ଲେଖାଟି ପାଇ, ଶେଷ ପଦକୁ ପୁଣି ବଦଳାଇ ଲେଖି ପଠାଇଲେ;—

'ହାଜିର ହେଲେ ନେତ୍ରବାଜି ରାଜତ ଗାତ୍ର
ପାଜି କରିବ ମୋତେ ଛାମୁଁ ରେ ।'

ଏଥିପାଇଁ ତିଲୋତ୍ତମା ଆନନ୍ଦରେ ନାଚି ଉଠିଲା ଏବଂ କବିଙ୍କୁ ସମୟରେ ଆମନ୍ତ୍ରଣ କରିଆଣି ବହୁମାନ ଅର୍ପଣ କଲା ଏବଂ ବହୁ ଶାସ୍ତ୍ର ଚର୍ଚ୍ଚା ମଧ୍ୟ ହେଲା ।

**କବିତାର ଅର୍ଥ:**—(ଗଦାଧର ଯେ) ପୁରୁଷୋତ୍ତମଙ୍କ ନଗରୀରେ ତୁ ରହି (ନଦାଧିପ ଯେ) ମହୋଦଧି; ତାର ଶୁଭ୍ର ଲହରୀ ମାଳାର ଗର୍ବକୁ ତୋର ଅତି ପ୍ରଲୋଭମାୟ ଶୁଭ୍ର ହାସ୍ୟଦ୍ୱାରା (ଚର୍ବକ) ଚର୍ବଣ କରିଅଛୁ । ସେହି ହାସ୍ୟ ଲହରୀଦ୍ୱାରା ତୋ ସ୍ତନ ଶମ୍ଭୁ ସ୍ନାନଦ୍ୱାରା ଉତ୍ଫୁଲ୍ଲିତ ରହିଛି । ମୋତେ ଆନନ୍ଦ ଦେବା କାର୍ଯ୍ୟ ମର୍ମରେ ବିଚାରିବୁ ଯେ, ତୁ ମୋର ଜପାମାଳୀ ନିଷ୍ଠୟ ହେବୁ । ରେ ଉର୍ବଶୀ ! ଛଇଳରତ୍ନ ! ମୋ କଥା ହେଳା କରିବୁ, ଏ ଇଚ୍ଛା ମୁଁ ବିଚାରି ଏହି କବିତା ଜରିଆରେ ତୋର ସ୍ତମ୍ଭରେ ହାଜର ହେବାର ସୁଯୋଗ ଲାଭକଲେ (ସଗର ବାଜିଗ୍ରହର) ସଗର ରଜାଙ୍କ ଯଜ୍ଞାଶ୍ୱ ଗ୍ରହର ପାଜ ଇନ୍ଦ୍ର, ମଧ୍ୟ ମତେ (ସ୍ତମ୍ଭ) ନମସ୍କାର କରିବ । ଅନ୍ୟ ପାଦଟିର ଅର୍ଥ ହେଲା;—ହାଜର ହେଲେ (ନେତ୍ରାଜି ରାଜିତ ଗାତ୍ର) ଅତି ରୂପବତୀ ଅହଲ୍ୟାଙ୍କୁ ହରଣ କରିବା ଯୋଗୁଁ ଗୌତମ ଅଭିଶାପରେ ଯୋନ ପ୍ରାପ୍ତ ସହସ୍ର ନେତ୍ର ବିରାଜିତ ଅଙ୍ଗ ଇନ୍ଦ୍ର ପାଜ, ମତେ ନମସ୍କାର କରିବ ।

## ୨୮—ବାସ ନଥିବାରୁ ଉପବାସରେ

ନୂଆଗଡ଼ ରଜା ବିନାୟକ ସିଂହଙ୍କ ମୃତ୍ୟୁ ତାଙ୍କ ପାଟ ମହାଦେଈଙ୍କ ମୃତ୍ୟୁର ସାମାନ୍ୟ କେତେ ମାସ ପରେ ହୋଇଗଲା । ଏମନ୍ତ କି ତାଙ୍କର ପ୍ରିୟତମା ଅନ୍ୟ ଫୁଲ ବେହିମାନେ ମଧ୍ୟ ଗୃହୁଁ ଗୃହୁଁ ସମସ୍ତେ ଚାଲିଗଲେ । ଯଦୁମଣି କିଛି ଦିନ ରାଜଦ୍ୱାରକୁ ଯିବା ଆସିବା କରୁଥିଲେ । କିନ୍ତୁ ପୂର୍ବପରି ଆଦର ନଦେଖି ସେ ବିଭିନ୍ନ ରାଜ୍ୟକୁ ଯାତାୟତ କଲେ । ବିନାୟକ ସିଂହ ଦାନ କରିଥିବା ଘୋଡ଼ିଟିରେ ସେ ଯିବା ଆସିବା କରୁଥିଲେ ।

ଥରେ ରଣପୁର ଗଡ଼ରେ ପହଞ୍ଚି ମାମୁଁ ଘରେ ରହିଲେ । ଘରଖଣ୍ଡି ତାଙ୍କର ପୋଡ଼ିଯିବାରୁ ବଡ଼ ଅସହାୟ ଭାବରେ ଚଳୁଥିଲେ । ବିନାୟକଙ୍କ ମୃତ୍ୟୁ ପରେ ତାଙ୍କୁ କିଏ ବା ପଚାରେ ? ନୂଆରଜା ଏ ସବୁର ଧାର ଧରୁ ନଥିଲେ । ରଣପୁର ରାଜାଙ୍କ ସହିତ ଭଲ ପରିଚୟ ଥିଲା । କେବେ କପର ଦେଖାହେଲେ ତାଙ୍କଠୁ ଧନ କିଛି ଆଣିବେ ବୋଲି ଯାଇ ରାଜାଙ୍କ ସ୍ତମ୍ଭରେ ଦେଖାକଲେ । ରଜା ପଚାରିଲେ;—

ଯଦୁମଣି ! ଏବେ କପର ଅଛ ?

ଏଥିରେ ରଜା ଏକାନ୍ତ ବ୍ୟଙ୍ଗ କରୁଥିଲେ ଯେ, ବିନାୟକ ସିଂହଙ୍କ ସମୟରେ ଆମେ ଡକାଇଲେ ମଧ୍ୟ ଆମ ପାଖକୁ ଆସୁ ନଥିଲ । ପୁଣି ଆସିଲ ତ ?

—ଯଦୁମଣିଙ୍କର ବିଷଦନ୍ତ ଯେପରି ବିଜାପୁରଙ୍କ ଯୋଗୁଁ ଭାଙ୍ଗି ଯାଇଥିଲା । ସେ ମୁହୂର୍ତ୍ତେ ଝିମୁରି ଗଲେ, ତାପରେ ଶକ୍ତି ସଞ୍ଚୟ କରି ବିନୟର ସହିତ କହିଲେ;—

ମହାରାଜ,—ବାସ ନ ଥିବାରୁ ଉପବାସରେ,
ଦିନ କାଳ ଯାଏ ଉପବାସରେ ।

ରାଜା ଏହା ବୁଝି ଯଦୁମଣିଙ୍କର ବିନୟରେ ସନ୍ତୋଷ ହୋଇ ଘର ତୋଳିବାକୁ କାଠ ବାଉଁଶ ଯୋଗାଇ ଦେଇ, ଖାଇବା ପାଇଁ ବର୍ଷକ ନିମନ୍ତେ ଧାନ, ଡାଲି, ତେଲ, ଲୁଣଆଦି ଭଣ୍ଡାରରୁ ଦିଆଇ ଦେଲେ ।

## ୬୯—ବଡ଼ପା ଛୋଡ଼ା

ଘରଦ୍ୱାର ତିଆରି କରି ଯଦୁମଣି ପୁଣି ରଣପୁରରେ ପହଞ୍ଚିଲେ । ରଜାଘରୁ ସଞ୍ଜ ବସା ପାଇ ତାଙ୍କ ମାମୁଁଘରେ ଥିଲେ । ଘରେ ଯାହା କିଛି ତାଙ୍କର ଥିଲା, ତା'ତ ସବୁ ପୋଡ଼ି ଯାଇଥିଲା । ତେଣୁ ସାଲ ଖଣ୍ଡିଏ ପାଇବାକୁ ରଜାଙ୍କୁ ଅନୁସରି ଥିଲେ । ମାର୍ଗଶିର ମାସ । ରାଜା ଦୟା କରି ତାଙ୍କୁ ପାଟ ଚଦର ଫର୍ଦ୍ଦେ ଦେବାକୁ ମନ୍ତ୍ରୀଙ୍କୁ ଅଜ୍ଞାକଲେ । ମନ୍ତ୍ରୀ କେଦାରନାଥ ମିଶ୍ରେ ଆଠଦିନ ବିତେଇ ଦେଇ ଆଉ ଦେଲେ ନାହିଁ । ବରଂ ପରସ୍ପରରେ କହିଲେ; ଯେଉଁ ସବୁ ଶାଲ ଅଛି, ତାହା ଅତି ମୂଲ୍ୟବାନ; ତା କ'ଣ ଚିରକାରକୁ ଦିଆଯିବା ସମ୍ଭବ ।

କେଦାରନାଥ ବୁଢ଼ା ବଡ଼ ଦୁଷ୍ଟ ଓ ହିଂସିକିଆ । ତେଣୁ ଯଦୁମଣି ଗୋଟିଏ ପଦ୍ୟ ଲେଖି ରଜାଙ୍କ ଛାମୁଁରେ ଜଣାଇଲେ;—

ଛାମୁଁ ଆଜ୍ଞାକଲେ ବଡ ପାଛୋଡ଼ା
ମନ୍ତ୍ରୀ କାଢ଼ିଦେଲେ ବଡ଼ପା ଛୋଡ଼ା ।

ଏହା ପାଠକରି ରାଜା କ୍ରୋଧରେ ଅଜ୍ଞାନ ହୋଇ ତତ୍‌କ୍ଷଣାତ୍ ମନ୍ତ୍ରୀଙ୍କୁ ଧିକ୍‌କାର ଦେଇ ସେହି ବହୁ ମୂଲ୍ୟବାନ୍ ସାଲରୁ ଏକ ଯୋଡ଼ା ପ୍ରଦାନ କଲେ ଏବଂ ଉକ୍ତ ବୃଦ୍ଧ ମନ୍ତ୍ରୀଙ୍କୁ ଅର୍ଥଦଣ୍ଡ ଆଦେଶ କଲେ ।

## ୮୦—ଘରିଙ୍ଗା ଡରେ

ମାଘ ଜାଡ଼ ଆସିଗଲା । ଖୁବ୍ ଶୀତରେ ଖଞ୍ଜନା କହିଲେ,—ମୁଁ ଏ ଜାଡ଼ ସହି ପାରିବି ନାହିଁ । ତହୁଁ ପଦ୍ମମଣି ପରିହାସରେ କହିଲେ; —'ତୁମ୍ଭେ ତ ତପ୍ତ କାଞ୍ଚନ ବର୍ଣ୍ଣା ଶ୍ୟାମା ସ୍ତ୍ରୀ । ଇଷ୍ଟକାଳପୂ ପରି ତୁମର ଦେହ ଶୀତକାଳେ ଭବେ ଦୁଷ୍ଣଂ, ଗ୍ରୀଷ୍ମକାଳେ ତ ଶୀତଳଂ ।'

ଖଞ୍ଜନା କହିଲେ;—ସେ ରହସ୍ୟ ଥାଉ । ରାଜାରାଜୁଡ଼ାଙ୍କ ପାଖକୁ ଯାଇ ପାଟୁଡ଼ା ଆଣ । ଏ ପାଟ ଘୃଦର କ'ଣ ଦୈନିକ ବ୍ୟବହାର କରିବା ? ନ ହେଲେ ମୁଁ ବାପ ଘରକୁ ଯାଇ ମାଠ ଘୃଦର ହ'ଖଣ୍ଡ ମାଗିଆଣିବି ।

ପଦ୍ମମଣି କହିଲେ;—ତୁମେ ଯଦି ଯିବ, ମୁଁ କଣ ମନା କରୁଛି ?—ତହୁଁ ଖଞ୍ଜନା କହିଲେ;—

"ତୁମ ଅପମାନ କ'ଣ ମୋର ନୁହେଁ ? ଘର ପୋଡ଼ିଗଲା ଯେତେବେଳେ ସେ ଆମକୁ ନ ପଚାରିଲେ, ଧନ ଲୋଭରେ ମୁଁ କାହିଁକି ଯିବି ?"—

ପଦ୍ମମଣି ପରଦିନ ରଣପୁର ପଳାଇଗଲେ । ଅତି ପ୍ରାତଃ କାଳରେ ରଜାଙ୍କ ଶୂଳେଇ ବଜେ ପୂର୍ବରୁ ଦେଖାକଲେ । ରଜା କହିଲେ;—'ପଦ୍ମମଣି' ଏତେ ଜାଡ଼ରେ କୁଆଡ଼େ ଆସିଲ କି ?"—ପଦ୍ମମଣି କରଯୋଡ଼ି କହିଲେ;—

'ମହାରାଜ;—ଘରି ଜାଡ଼ରେ
ପଳାଇ ଆସିଛି ଘରିଙ୍ଗା ଡରେ ।

ଏହାପରେ ସବୁକଥା ଖୋଲି କହିଦେଲେ । ରଜା ଏହାଶୁଣି ତତ୍‌କ୍ଷଣାତ୍ ଶୀତବସ୍ତ୍ର ଏକଯୋଡ଼ା ଦେଇ କହିଲେ 'ଅଣ୍ଟିବ ତ ?' ପଦ୍ମମଣି ତାହା ପୂର୍ବୋକ୍ତ ମନ୍ତ୍ରୀଙ୍କ ହାତରୁ ନେବାରୁ କହିଲେ;—"ଆଜ୍ଞା, ବଡପା ଲମ୍ବ, ଅଣ୍ଟିବ ନାହିଁ ।" ରଜା ହସି ହସି ଗଡ଼ିଗଲେ ।

## ୮୧—କାଳକେ କାଳିକା ପାଇଛି

ରଜା ଲୋକଦ୍ୱାରା ସେ ଘୃଦର ପଦ୍ମମଣିଙ୍କ ଘରକୁ ପଠାଇଦେଇ ତାଙ୍କୁ କେତେଦିନ ଅଟକାଇ ରଖିଲେ ।

ରଣପୁର ଗଡ଼ରେ ଶମ୍ଭୁ ମହାପାତ୍ର ବୋଲି ଜଣେ ପ୍ରଖ୍ୟାତ ବ୍ୟକ୍ତି ଥିଲେ । ସେ ଜାତିରେ ରଥ ବଡ଼େଇ । ତାଙ୍କର ଚେହେରା ବେଶ ସୁନ୍ଦର । ସେ ମଧ୍ୟ ଜଣେ

ରସିକ ପୁରୁଷ । କିନ୍ତୁ ତାଙ୍କର ସ୍ତ୍ରୀ, ଏପରି କାଳୀ ଯେ, କନ୍ଧ କୋହ୍ଲ ମଧ୍ୟରେ ସେପରି କାଳୀ ଦେଖା ନଥିବେ । ସେପୁଣି ମହା ଦୁଷ୍ଟା ଏବଂ କଳହୁଡ଼ି । ଏତେ ମୋଟା ଯେ, ଦୁଆର ବନ୍ଧରେ ଯିବା ଆସିବା କରିପାରୁ ନଥାନ୍ତି; ଅଥଚ ଯାଉଁ ଯାଉଁ ତାଙ୍କ ପାଟିରେ ଗଡ଼ଦାଣ୍ଡ ଦୁଲ୍‌ଦୁଲୁ କରୁଥିଲା । ରାଜା ସେ ନାରୀକୁ ବହୁବାର ଦେଖି ତା ସମ୍ବନ୍ଧରେ ବହୁ ଆଲୋଚନା କରୁଥିଲେ । ରାଜାଙ୍କ ସଭାସଦ୍‌ଗଣ କହିବାରୁ ଦିନେ ଯଦୁମଣିଙ୍କୁ ପ୍ରଶ୍ନହେଲା;—

'ଯଦୁମଣି ! ତୁମ୍ଭେ ମହାରଥୀଙ୍କ ସ୍ତ୍ରୀଙ୍କୁ ଦେଖିଛ ?' ଯଦୁମଣି ଉତ୍ତର କଲେ;—'ମଣିମା ଦେଖିଛୁ ।'

ରାଜା ପୁଣି କହିଲେ;—'କି ପ୍ରାୟ ଦେଖିଲେ ?' ତହୁଁ ସେ ତତ୍‌କ୍ଷଣାତ୍ ଏହି କବିତା ଗାଇ ବହୁ ସଭାସଦ୍‌ଙ୍କ ସହିତ ରାଜାଙ୍କୁ ହସାଇ ହସାଇ ଗଡ଼ାଇ ଦେଲେ ।

**ଦୁଆର ଦେହଳି କୁଳକ ଧରଣ**
**କାଳୀ ପଡ଼ିଥିଲି ଓଳକ,**
**ଦେଖିଲି କାଳୀକ, ଲାଗିଲି ଡେଳକ, ଚଳିଲି ମଦନ ଶୂଳୀକ,**
**ମଣିମା;**
**(ତା) ଭର୍ତ୍ତା କେତେ ତପ କରିଛି,**
**ଓଳକ ଓଳକ ହୋଇଣ କାଳୀକ,**
**କାଳକେ କାଳକା ପାଇଛି ।**

ଏହାଶୁଣି, ରାଜା ଆନନ୍ଦରେ ଅଧୀର ହୋଇ ବହୁ ଅର୍ଥ ବଦାନ୍ୟ ଭାବେ ଦେଇଥିଲେ ।

(ଦୁଆର—ପିଣ୍ଡା) (ଦେହଳି—ଏରୁଣ୍ଡି ବନ୍ଧ) (କୁଳୁଙ୍ଗ—କବାଟ କଣି) (ଓଳକ—ଓହଳ) (ମଦନ ଶୂଳୀ—ତା ନିକଟରେ କାମଦେବ ଶୂଳୀ ପାଇବ) (ଓଳକ—ଦଣ୍ଡବତ)

## ୮୨—କିଣା ମୁଁ ଆପଣଙ୍କର

ଧୀରେ ଧୀରେ ଦାରିଦ୍ର୍ୟ ବଢ଼ି ଚାଲିଲା । ପୁନର୍ବାର ସେ ରଣପୁରରେ ଆସି ପହଞ୍ଚିଲେ । ଏଥର ଆଦର ସେପରି ଦେଖାଗଲା ନାହିଁ । ସଞ୍ଜା ବସା ମଧ୍ୟ ହୋଇପାରିଲା ନାହିଁ । ବାରମ୍ବାର ଯିବା ହେତୁ ତାଙ୍କର ସ୍ତ୍ରୀ ତାଙ୍କୁ ମଧ୍ୟ ମନା କରୁଥିଲେ । ସେ ମନା ନମାନି ଅର୍ଥ କଷ୍ଟ ଯୋଗୁଁ ଚାଲିଆସିଲେ । ତାଙ୍କ ମାମୁଁ ଘରର ଅବସ୍ଥା ମଧ୍ୟ ସେତେବେଳେ ଭଲ ନଥିଲା । ମାମୁଁ ମାଇଁ ମରି ଯାଇଥିଲେ । ତେଣୁ ସେ ତାଙ୍କ ଘରକୁ ନଯାଇ ଅନ୍ୟତ୍ର ବସା କରି ରହିଥିଲେ । ସଞ୍ଜା ବସା ନପାଇ କ୍ଷୁଧାରେ ଆକୁଳ ହୋଇ ପୁଣି ରାଜଦ୍ୱାରକୁ ଯାଇ ରାଜାଙ୍କୁ ଭେଟି କହିଲେ;—

**ପାଖରେ ବସିଣ ବଚନ ଭାଷିଲି କିଣା ମୁ ଆପଣଙ୍କର**
**ମୁଣ୍ଡକୁ ମାଇଲେ ତୁଣ୍ଡରେ ନବୋଲି କିଣା ମୁଆଁପଣକର ।**

ମୋର ଅନ୍ୟ ଆଶ୍ରୟ ନ ଥିବାରୁ ମୁଁ ଆପଣଙ୍କର କିଣା ହୋଇ ରହିବାକୁ ପାଖରେ ବସି ସ୍ୱୀକାର କଲି । ମୁଁ ମୁଣ୍ଡିଆ ମାରିଲେ ମଧ୍ୟ ଗୋସେଇଁ କ୍ଷୁଧାର୍ଥୀକୁ ଅଧିଲିକର କିଣାମୁଆଁ ଦେବାକୁ କହୁ ନାହାନ୍ତି ।

ଏହା ଶୁଣି ରାଜା ଅବଶ୍ୟ ସଞ୍ଜା ସାମଗ୍ରୀ ଦେଲେ । କିନ୍ତୁ ଅଧିକ ଆଦର ଦେଖାଇଲେ ନାହିଁ । ତଥାପି ସେ ଧୈର୍ଯ୍ୟଧରି ରହିଥିଲେ । ଯେତେବେଳେ ଏକାନ୍ତ ଅନାଦର ଦେଖିଲେ, ଏଠାରୁ ଆଶା ତ୍ୟାଗ କରି ବିଦାୟ ନେବାକୁ ମନ ବଳାଇଲେ ।

## ୮୩—ଅନ୍ଧଦେଶକୁ ଗଲି ଦର୍ପଣ ବିକି

ରଣପୁର ଗଡ଼ରେ ରହିଥିଲେ । ଦିନକର ଗୋଟିଏ ଶ୍ରେଷ୍ଠ ବିଷ୍ଣୁ ପ୍ରତିମାରେ ଅନେକଗୁଡ଼ିଏ ପାଟକନା ଗୁଡ଼ାଇ ତାକୁ ଏକାନ୍ତ ସ୍ଥୂଳ କରି ବିଦାୟ ନେବାକୁ ଯାଇ ତାହା ଶିଳ୍ପୀର ଅଭିନନ୍ଦନ କହି ରାଜାଙ୍କୁ ଭେଟିଥିଲେ । ରାଜା ପାରିଷଦମାନଙ୍କ ସହିତ ବଡ଼େ ହୋଇଥିଲେ । ପଦ୍ମମଣି ପ୍ରଦତ୍ତ ଉକ୍ତ ପାଟକନାରୁ ଲାଗେ ଲାଗେ ଦୁଇ ଚାରିଖଣ୍ଡ କନା ଫିଟାଇଲେ । କିନ୍ତୁ ଅଧିକ ଫିଟାଇବାକୁ ଭରସା କଲେ ନାହିଁ । ପଦ୍ମମଣି ଯେପରି ଠକ ସ୍ୱଭାବର ସେ ତା ମଧ୍ୟରେ କ'ଣ ରଖିଥାଇପାରେ ଭାବି ରାଜା ଉକ୍ତ କନାବିଣ୍ଡାଟିକୁ ତଳେ ଥୋଇଦେଲେ ।

ପଦ୍ମମଣି ମୁଣ୍ଡରେ ହାତଦେଇ କହିଲେ; 'ହାୟ ହାୟ ଗ୍ରାମ୍ଭୁଁ ଦରିଦ୍ରର ଭଣିତ ଅଭିନନ୍ଦନକୁ କ'ଣ କଲେ ?' ଏହାପରେ ଗୋଟିଏ କବିତା ଗାଇଦେଲେ;—

**ଅନ୍ଧଦେଶକୁ ଗଲି ଦର୍ପଣ ବିକି**
**କୁଷ୍ଠ ହାତରେ ଦେଲି ଗୋଦାନ ଟେକି**

**ଜଡ଼ା ମଧୁରେ ଖଡ଼ା କଲ ରନ୍ଧନ**
**କାମୁଡ଼ା ଘୋଡ଼ା ମୁଖେ ଦେଲ ଚୁମ୍ବନ**
**ହେ ରାଜା କି କଲ !**
**ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲ ?**

ଯଦୁମଣି ଏ ଗୀତ ଗାଇ ଗାଇ ତୁରନ୍ତ କନାଗୁଡ଼ିକ ବାହାର କରିଦେଇ ରାଜାଙ୍କ ସମ୍ମୁଖସ୍ଥ ମେଜ ଉପରେ ସ୍ୱର୍ଣ୍ଣ ରଞ୍ଜିତ ଧାତୁ ଖୋଦିତ ଏକ ଅତିରମଣୀୟ କ୍ଷୁଦ୍ର ବିଷ୍ଣୁ ପ୍ରତିମା ଥୋଇଦେଲେ ।

ଏହା ସତ୍ତ୍ୱେ ରାଜା କ୍ରୁଦ୍ଧ ହୋଇ ତାଙ୍କ ମୁହଁ ନ ଚାହିଁ ସେଠାରୁ ଚାଲିଗଲେ । କାରଣ କେହି କେହି ରଣପୁର ରାଜବଂଶକୁ କନ୍ଧ ଗାନ୍ଧ ବୋଲି କହୁଥାନ୍ତି । ତାହା ଏହି ପଦ୍ୟରେ ସୂଚିତ ହେବାରୁ ପୁଣି ଏକାନ୍ତ ବାଭତ୍ସ ଗାଳି ଥିବାରୁ ସେ କ୍ରୁଦ୍ଧ ହୋଇଗଲେ । ସହଜେ ତ ତାଙ୍କ ପ୍ରତି ସମାଦର ନଥିଲା । ଯୋଗକୁ ଏ ଘଟଣାରେ ରଣପୁର ରାଜଦ୍ୱାର ତାଙ୍କପାଇଁ ପଡ଼ିଗଲା । ସେ ଶୂନ୍ୟ ହସ୍ତରେ ଘରକୁ ଫେରି ଆସିଲେ ଓ ଅନ୍ୟ ରାଜ୍ୟକୁ ଯିବାକୁ ସ୍ଥିରକଲେ ।

## ୮୪—ନାତୁଣୀ ବଲ୍ଲଭେ ପେଷିଲି

ବହୁ ବର୍ଷ ପରେ ଯଦୁମଣି ଏକାନ୍ତ ଦୁଃଖପ୍ରଦ ଅବସ୍ଥାରେ ଥାଇ ଅର୍ଥ ଦିଗରୁ କୌଣସି ବାଟ ନ ପାଇ ନିଜର ଏକମାତ୍ର କନ୍ୟା ରମାର ଝିଅ ଇନ୍ଦୁମତୀର ବର ବ୍ରଜବଲ୍ଲଭକୁ ଗୋଟିଏ କବିତା ଲେଖି ରଣପୁରର ନରପତିଙ୍କ ନିକଟକୁ ପଠାଇଲେ । ସେତେବେଳେ ତାଙ୍କ ପରିବାରରେ ତାଙ୍କୁ ମିଶାଇ ଆଠ ଜଣ ଥାଆନ୍ତି । ସେ ସ୍ତ୍ରୀ ପୁରୁଷ ଦୁଇ ଜଣ, ପୋଷ୍ୟପୁତ୍ର ତାଳଧ୍ୱଜ, ତାର ସ୍ତ୍ରୀ କମଳା ଏବଂ ତାର ପୁଅ ବାଳକୃଷ୍ଣ ଏବଂ ନାତୁଣୀ ଇନ୍ଦୁ, ତାର ବର ରାଜବଲ୍ଲଭ ଏବଂ ତାର ଝିଅଟିଏ ଲବଣୀ । ନିରୁପାୟ ହୋଇଥିବାରୁ ନିର୍ଲ୍ଲଜ ପରି କେଉଁ ଦିଗରୁ କୌଣସି ଆଶ୍ରୟ ନ ପାଇ ଲେଖିଲେ;—

**ମଣିଫଣି ଭବରମଣୀ ଉଦ୍ଭବ ଧରଣୀଧର ପାରେଶ୍ୱର**
**ଦୁର୍ଗେଶ୍ୱର ବଜ୍ରଧର ବେଣୁଧର ନରେନ୍ଦ୍ର ମହାପାତ୍ରଙ୍କର**
**ରାଜେ ରାଜତ୍ୱ**
**ବିରାଜେ ମହା ମହିମାରେ**
**ଥାନା ଫାଣ୍ଡି ଡଙ୍କା ବଡ଼ାଇ ପତାକା ଉଡ଼ଇ ନାହିଁ ସେ ସୀମାରେ । ୧ ।**

ହରିଚନ୍ଦନ ଜଗଦେବ ନି ଲକ୍ଷ ଟଙ୍କା ମୁଲକର ମାଲିକ
ସେ ହେଲେ ଗୃତକ ଧନ ଘନୋଦକ ବରଷୁ ଦୋଉଙ୍କ ଜନକ
ଥଣ୍ଡା ଭଜି ସେ
ମଣ୍ଡାଇଲେ ମୁଖେ ଏଗୀର
ଖଣ୍ଡାଇତ ବଂଶେ ଭଣ୍ଡାର କଲେ ସେ ଧଣ୍ଡାବନ୍ଧା ରଣପୁରର । ୨ ।

ଛାକୁ ତୁଚ୍ଛ କରି ଦେବାର ଇଚ୍ଛାକୁ ଶ୍ରୀ ଦେଉ କରିଛ ଅନେକ
ଦୁଃଖୀ ରଙ୍କି ଖାଙ୍କି ଗୁଣୀ ଗୁଣବନ୍ତ ଜନେ ବରଷିଛ କନକ
ଯେଉଁ କାଳରେ
ଉତ୍କଳ ଦେଶେ ଛତ୍ରଭଙ୍ଗ
ସେ କାଳେ ଛାଡିକି ଫୁଲାଇ ଛଡିକି ଟେକାଇ ଅଛ ଉତ୍ତମାଙ୍ଗ । ୩ ।

ଲାଖରାଜ ରାଜେ ଭୂମି ଡନ ବାଟୀ ସେ ମୋର ପଡ଼ିଛି ବନ୍ଧାରେ
ଅଷ୍ଟ ପ୍ରାଣୀ ମୋର କଷ୍ଟ ପାଉଛନ୍ତି ପଡ଼ିଛି ମୁଁ ମହା ଧନ୍ଦାରେ
ମଣି ମଣିମା
ସରଲ ସରଲ ସରଲ
ହାରୁଣୀ ବଲ୍ଲଭ ହାରାନୁସରଣେ ନାରୁଣୀ ବଲ୍ଲଭେ ପେଷିଲ । ୪ ।

**ଟୀକା**—( ମଣିଫଣି ) ମଣିନାଗ; ( ଭବରମଣୀ ) ଦୁର୍ଗାଙ୍କ ଅଧିଷ୍ଠିତ ଭୂମିରୁ ଉଦ୍ଭବ, ( ପାରେଶ୍ୱର ) ପରିତ୍ରାଣକର୍ତ୍ତା, ( ଦୁର୍ଗେଶ୍ୱର ) ରାଜା ବଜ୍ରଧର ବେଣୁଧର ନରେନ୍ଦ୍ର ମହାପାତ୍ରଙ୍କର ରାଜକାର୍ଯ୍ୟ ରାଜତ୍ୱ ମହା ମହିମାରେ ବିରାଜେ । ଯହିଁ ସେ ସୀମାରେ ବିଦେଶୀ ଅନୁକରଣରେ ଥାନା, ଫାଣ୍ଡି ଇତ୍ୟାଦି । ( ଡଙ୍କା ବଜାଇ ) ଗର୍ବିତ ଧ୍ୱଜର ପତାକା ଉଡ଼େ ନାହିଁ, ଯେ ସ୍ୱାରଣ୍ୟ ସଂସ୍କୃତିକୁ ଅକ୍ଷୁଣ୍ଣ କରି ରଖିଛନ୍ତି । ୧ ।

(ହରିଚନ୍ଦନ ଜଗଦେବ) ଆଠଗଡ଼ର ରାମଚନ୍ଦ୍ର ହରିଚନ୍ଦନ ଜଗଦେବ, ଯେ କି ତିନିଲକ୍ଷ ଟଙ୍କା ମୁଲକର ମାଲିକ ସେ ଆପଣଙ୍କ ପିତାଙ୍କଠାରୁ ବିନା ଲେଖାରେ ରଣପୁରର ଜଣେ ଖଣ୍ଡାଇତ ବଂଶଧରଙ୍କ ମଧ୍ୟସ୍ଥତାରେ ଦୁଇଲକ୍ଷ ଟଙ୍କା ଧାରି ନେଇଗଲେ । (ଦୋଉଙ୍କ) ତୁମ୍ଭଙ୍କ (ଜନକ) ପିତା (ଧନ ଘନୋଦକ) ଧନ ସ୍ୱରୂପ ମେଘରୁ ଜଳ ବରଷୁ ଥିବାଯୋଗୁଁ ସେ (ହରିଚନ୍ଦନ) ଚାତକ ସ୍ୱରୂପ ହେଲେ । ତଦ୍ୱାରା ସେ, (ଥଣ୍ଡାଭଜ) ଅସୁବିଧା ମେଣ୍ଟାଇଲେ । କିନ୍ତୁ ପରିଶୋଧ ବେଳକୁ ମୁଖେ (ଏଗୀର) ଏପରି କଥା (ମଣ୍ଡାଇଲେ) ପ୍ରକାଶିତ କଲେ ଯେ ସେ (ଧଣ୍ଡାବନ୍ଧା) ମଣିନାଗ

ଦୁର୍ଗାଙ୍କ ଧଣ୍ଡାବନ୍ଧା ରଣପୁରର ଖଣ୍ଡାୟତ ବଂଶରେ (ଭଣ୍ଡାର କଲେ), ସେ ଟଙ୍କା ଦେଇଛନ୍ତି । କିନ୍ତୁ ତାହା ଖଣ୍ଡେଇତ ସରଦାର ଅସ୍ୱୀକାର କଲେ । ବିନା ଲେଖା ପଢ଼ାରେ ବିଶ୍ୱାସରେ ଏହା ହୋଇଥିଲା । ଯଦ୍ୟପି ଫ୍ରେଣ ରାମଚନ୍ଦ୍ର ଜଗଦେବ ଏପରି ଠକିଦେଲେ ୧୮୫୩ରେ । ୧୮୫୪ରେ ଆଠଗଡ଼ ଖଜଣା ବାକିରେ ନିଲମ ହେଲା । ତାହା ଖଲିକୋଟ କିଣିନେଲେ । ଧର୍ମପ୍ରାଣ ରଣପୁର ରାଜା ଚିତ୍ତପ୍ରତି ମନ ବଳାଇଲେ ନାହିଁ । ୨ ।

ସେହି ପ୍ରତିଶୋଧ ଇଚ୍ଛାକୁ ତୁଚ୍ଛ କରିଦେବାର ଇଚ୍ଛାକୁ ତୁମ୍ଭେ କେବଳ ନୁହେଁ, ଏପରି ବହୁତ କରିଅଛନ୍ତି । ପାରିଥିଲେ ସେ କାହିଁକି, ଏପରି ଯେଉଁମାନେ ତୁମ୍ଭଙ୍କ ପିତାଙ୍କୁ ଠକିଥିଲେ, ନିଶ୍ଚୟ ପ୍ରତିଶୋଧ ନେଇଥାନ୍ତେ । କିନ୍ତୁ ଆପଣ ଏକାନ୍ତ ଦୟାବନ୍ତ ଅଟନ୍ତି । ଦୁଃଖୀ, ରଙ୍କି, ଖାଙ୍କି, ବେଶ୍ୟା, ଗୁଣୀ, ଗୁଣବନ୍ତ ପଣ୍ଡିତମାନଙ୍କ ଶୁଷ୍କ ପ୍ରାଣରେ ଜନକ ସ୍ୱରୂପ ଦୟା ବର୍ଷା କରିଛ । ବିଶେଷରେ ୧୮୫୭ରେ ଯେତେବେଳେ ଉତ୍କଳ ଦେଶରେ (ଛତ୍ରଭଙ୍ଗ) ଭୀଷଣ ବିଦ୍ରୋହ ଲାଗିଥିଲା ସେକାଳେ ହେ (ଉତ୍ତମାଙ୍ଗ) ଶ୍ରେଷ୍ଠ ଗୋସେଇଁ, ରାଜ୍ୟକୁ ପୁଲିଶ, ଛତ୍ରକ ଟେକାଇ ଅଛ । ୩ ।

ଅତି ଦୁଃଖର କଥା ଯେ, ଲଖରାଜ (ରାଜେ) ସମ୍ବନ୍ଧୀୟ ଭୂମି ତିନବାଟୀ ମୋର ବନ୍ଧା ପଡ଼ିଛି । ମୋର ଅଷ୍ଟପ୍ରାଣୀ ଅଭାବ ଯୋଗୁଁ ବଡ଼ କଷ୍ଟ ଭୋଗ କରୁଅଛନ୍ତି । ତେଣୁ ମୁଁ ମହା ଧନ୍ଦାରେ ପଡ଼ିଛି । ହେ (ମଣି) ଶ୍ରେଷ୍ଠତମ (ମଣିମା) ରାଜା, ମୁଁ ସରଳ, ସରଳ, ସରଳ । ତେଣୁ ଏପରି ଅବସ୍ଥାରେ (ହାରୁଣୀ ବଲ୍ଲଭ) ହାଣ୍ଡି ହାର ଅନୁସରଣରେ ମୋର ନାରୁଣୀ (ବଲ୍ଲଭ) ବରକୁ ପଠାଇଲି । (ରଣପୁରରେ ହାରୁଣୀ ବଲ୍ଲଭ ହାଣ୍ଡିହାର ଅଛି) । ୪ ।

ଏହି କବିତାଟି ରାଜବଲ୍ଲଭ ଏକତାର ସାହାଯ୍ୟରେ ଗାନ କରନ୍ତେ ତରୁଣ ରାଜା ଦେଖାଦେଇ ତିନଶତ ମୁଦ୍ରା ଦାନକରି ତାଙ୍କର ମହୋପକାର ସାଧିନ କରିଥିଲେ ଏବଂ ତାଙ୍କ ପିତାଙ୍କ ପ୍ରତି ଯଦୁମଣି ଯେ ଅପମାନ ଦେଇଥିଲେ, ତାହା ଭୁଲିଯାଇଥିଲେ । ଏହି କବିତାଟି ରାଜଦରବାରରେ ସଙ୍ଗୀତ ଆକାରରେ ବହୁବାର ଗାନ ହେବାର ସୁଯୋଗ ଲଭିଥିଲା । ଏମନ୍ତ କି ଏହା ଗ୍ରାମେ ଗ୍ରାମେ ନଗରେ ନଗରେ ସେତେବେଳେ ଲୋକେ ସ୍ୱର ତୋଳି ଗାଉଥିଲେ ।

## ୮୫—ମାଣକର ଜ୍ୟେଷ୍ଠ ଭ୍ରାତା

ଥରେ କବି ଯଦୁମଣି ମହାପାତ୍ର ଅତିଦୁଃଖରେ କାଳଯାପନ କରୁଥିବାରୁ ଖଞ୍ଜଣା କହିଲେ, ମାମୁଁ ଘର ଗାଁ ଟିକିଏ ବୁଲି ଆସ। ପୁଣି କପରି ଚଳିବା ? ଖୁଷଣ ଗ୍ରୀଷ୍ମ ସମୟ। ତାଙ୍କର ଏକା ଅଭାବ ନୁହେଁ, ସେତେବେଳେ ଗ୍ରାମେ ଗ୍ରାମେ ଅଭାବ ଲାଗି ରହିଥାଏ। କାରଣ ପୂର୍ବ ବର୍ଷ ଭଲ ଫସଲ ହୋଇ ନ ଥିବାରୁ ଚୈତ୍ର ମାସରୁ ଧାନ ଧର୍ମ ସରିଯାଇଥାଏ। ଲୋକେ ବାରି ଅଖାଦ୍ୟ ଖାଇ ଜୀବନ ରକ୍ଷା କରୁଥାନ୍ତି।

ସେ ବର୍ଷ ବାଉଁଶ ଧାନ ଆସିଥିବାରୁ ତାହାକୁ ମଧ୍ୟ ଲୋକେ ନାନା ଉପାୟରେ ଖାଉଥାନ୍ତି। ଯାହାହେଉ ସ୍ତ୍ରୀଙ୍କ କଥା ମାନି ଅନିଚ୍ଛା ସତ୍ତ୍ୱେ ଯଦୁମଣି ମାମୁଁ ଘରକୁ ବାହାରିଲେ। ଗ୍ରାମରେ ବହୁ ଲୋକ ଯିବାବେଳେ ପଚାରିଲେ କୁଆଡ଼େ ଅନୁକୂଳ କରିବା ହେଉଛି ?

ସେ ସେମାନଙ୍କୁ ମାମୁଁ ଘରକୁ ଯିବା ଖବର ଦେଇ ଧୀରେ ବାଟ ଚାଲିଲେ। ଏପରି ସେଦିନ ଯାଇ ସୁନାଖଳାରେ ପହଞ୍ଚି ରାତି ସେଠାରେ ରହିଲେ। ଶୁଣିଲେ ଯେ ଆଉ ଆଗକୁ ଯାଇ ହେବ ନାହିଁ। ପଥ ଏକ ପ୍ରକାର ବନ୍ଦ ହୋଇ-ଗଲାଣି। ଏପରି କି ତାଙ୍କୁ ସେ ଭଯ୍ୟାବହ ପଥ ଦେଇ ରଣପୁର ଗଡ଼କୁ ଯିବାକୁ କେହି ଛାଡ଼ିଦେଲେ ନାହିଁ। ବରଂ ତାଙ୍କ ଅସୁବିଧା ଯଥାସାଧ୍ୟ ମୋଚନ କରି ଫେରାଇଦେଲେ।

ସେ ତା'ପରଦିନ ଘରକୁ ଫେରି ଆସିବାର ଦେଖି ଲୋକେ ପଚାରିଲେ—ମହାପାତ୍ରେ ! କାହିଁକି ଫେରି ଆସିବା ହେଲା କି ?

ଯଦୁମଣି ଉତ୍ତରରେ କହିଥିଲେ—

**ମାଣକର ଜ୍ୟେଷ୍ଠ ଭ୍ରାତା ବଳୋମାନଙ୍କର**
**ବକେ କରିଅଛନ୍ତି ସେ ରଣପୁରର।**

ଲୋକ ବେଡ଼ିଗଲେ। ଅର୍ଥ ବାହାରିଲା—ମାଣକର ଜ୍ୟେଷ୍ଠ ଭ୍ରାତା ହେଲା ଉବା। ନୂଆଗଡ଼ରେ ମାଣ, ଉବା, ଗଉଣୀ ମାପ ଚଳେ। ତେଣୁ ଉବାକୁ ବଳୋମ କଲେ ବା ବିପରୀତ କଲେ ହେଲା 'ବାଉ' ଅର୍ଥାତ୍ ବାଉ ଯେ ହଇଜା ରଣପୁରରେ ଲାଗିଛି। ସେ କହିଲେ—"ଅଉ କେମିତି ଯିବି ? ସୁନାଖଳାରୁ ମୋତେ କେହି ଛାଡ଼ ନ ଦେବାରୁ ଫେରିଆସିଲି।"

ତାହା ଶୁଣି ସମସ୍ତେ ସ୍ତମ୍ଭିତ ହୋଇଗଲେ।

# ୮୭—ଅନୁଗୁଳ ଜଗଦେବ

ବନାପୁର ସିଂହ ମାନଧାତାଙ୍କ ମୃତ୍ୟୁ ପରେ କିବ କପରି ସମସ୍ତ ଅନ୍ତବାସ୍ତରି କରିବେ ତାହା ହିଁ ଭାବୁଥାନ୍ତି । କେହି କେହି କହିଲେ, ଆପଣ ଅନୁଗୁଳ ଜଗଦେବଙ୍କୁ ଜଣିପାରିବେ ନାହିଁ । ସେ ହେଉଛନ୍ତି ଖଣ୍ଡ ଶିରୋମଣି । ସେ ପଣ୍ଡିତମାନଙ୍କୁ ଯାହା ବିଦାୟୀ ଦିଅନ୍ତି, ତାହା ଏବଂ ତା ସାଙ୍ଗକୁ ବାକି ଯାହା କମରରେ ଥାଏ ବାଙ୍କିରୁ ଖଣ୍ଡ ପଠାଇ ଲୁଟି କରି ନେଇଯାନ୍ତି । ଏହା ଶୁଣି ଯଦୁମଣି କଷା ବାନ୍ଧି ଅନୁଗୁଳ ଅଭିମୁଖରେ ଯାତ୍ରା କଲେ । ରାଜା ସୋମନାଥ ଜଗଦେବ ଯେପରି ରସିକ, ସେପରି ନିଷ୍ଠୁର । ତାଙ୍କର ସମୟରେ ଅନୁଗୁଳ ଖାସ୍ ହେଲା । ରାଜା ଭୀଷଣ ଅତ୍ୟାଚାରୀ ଥିଲେ ।

ଯଦୁମଣି ରାଜଧାନୀ ପୁରୁଣାଗଡ଼ରେ ପହଞ୍ଚି ଜଗନ୍ନାଥ ମନ୍ଦିରରେ ଆଶ୍ରୟ ପାଇଲେ । ରାଜା ପରିଚୟ ପାଇ ବସା ସଞ୍ଚାର ବନ୍ଦୋବସ୍ତ କରିଦେଲେ । କିଛିଦିନ ରହି ପାଠ ଶାସ୍ତ୍ର ଚର୍ଚ୍ଚା କରି ଦିନେ ସ୍ୱ ରାଜ୍ୟକୁ ଫେରିଯିବାକୁ ରାଜାଙ୍କୁ ଜଣାଇଲେ । ଫଳରେ ଉପଯୁକ୍ତ ବିଦାୟୀ ଦେବାକୁ ପାତ୍ରଙ୍କୁ ଆଦେଶ ହୋଇଗଲା । ଯଦୁମଣି ବିଦାୟ ଦିନର ପୂର୍ବଦିନ ଜଣାଇଲେ ଯେ, ସେ ତୁମ୍ଭଙ୍କୁ ଗୋଟିଏ ନୂତନ ବିଦ୍ୟାର ସନ୍ଧାନ ଦେବାକୁ ଭାବିଛନ୍ତି । ଯୋଗେଇଁ ତନ୍ଦ୍ୱାରା ତିରସ୍କରଣୀ ବିଦ୍ୟାର ମହତ୍ତ୍ୱ ଜାଣିଯିବେ । ସେ ତାହା ତନ୍ତ୍ର ସାଧନା କରି ଲାଭ କରିଛନ୍ତି ।

ରାଜା ଉତ୍ସାହିତ ହେଲେ ଏବଂ ତା ପରଦିନ ପ୍ରାତଃ କାଳରେ ପାରିଷଦ-ମାନଙ୍କ ସମକ୍ଷରେ ଯଦୁମଣି ସେ ବିଦ୍ୟା ଭୋଜ ବାଜି ପରି ଦେଖାଇବାକୁ ପହଞ୍ଚିଲେ । ଗୋଟିଏ ଚିତ୍ର ବିଚିତ୍ର ଦୃଷ୍ଟି ଆକର୍ଷକ ବାକ୍ସ ମଧ୍ୟରୁ କ୍ରମାନ୍ୱୟରେ ସୁନ୍ଦର ସୁନ୍ଦର ସାତଗୋଟି ବାକ୍ସ କାଢ଼ି ଆଣି ବାହାରେ ରଖିଲେ । ଏହା ସେ ଗ୍ରାମରୁ ସାଥିରେ ଗଢ଼ି ନେଇଥିଲେ ।

ତା'ପରେ କାଟିହୋର ଫ୍ରେମ ହୋଇ ଟାଣି ହୋଇ ଥିବା ଖଣ୍ଡିଏ ଅତି ଚିକ୍କଣ ଚିନାଂଶୁକ କନା, ଯାହାର ଗୋଟିଏ କ୍ଷୁଦ୍ର ବେଣ୍ଟ ଧରିବାକୁ ଥିଲା, ତାହା ଅତି ସତର୍କରେ ବାହାରକରି 'କଂ କାମାଖ୍ୟାପୈ' ଏହି ପାଞ୍ଚଟି ଅକ୍ଷର ରଜାଙ୍କ କର୍ଣ୍ଣରେ ଶୁଣେଇ କହିଲେ, ଆପଣ ଏ ମନ୍ତ୍ରଟି ମନେ ମନେ ଗାଇ ଗାଇ ଦେଖିଲେ ଏହି କ୍ରମାନ୍ୱୟରେ ସାନ ବଡ଼ ଥିବା ବାକ୍ସରେ ଆପଣଙ୍କ ସପ୍ତପୁରୁଷଙ୍କୁ ଦେଖି-ପାରିବେ । ସେ ଯେପରି ଆୟୋଜନ ହୋଇଥିଲା ସେଥିରେ ଗୁବାକ୍ ମଧ୍ୟ ଅସନ୍ଦିଗ୍ଧ ହୋଇଯିବେ ।

ଉଗ୍ର ରାଜା ତାହା ଧାରଣ କଲାମାତ୍ରେ ଯଦୁମଣି ରାଜାଙ୍କ କାନରେ କହିଲେ— "ଆଜ୍ଞା, ଜାରଜ ହୋଇଥିଲେ,କେବେହେଁ ଦେଖାଯିବ ନାହିଁ । ତେଣୁ କ୍ଷମା କରିବେ ।"

ରାଜା ବାରମ୍ବାର ଦେଖିଲେ; କିନ୍ତୁ କିଛି ଦେଖିପାରୁ ନ ଥାନ୍ତି । ଶେଷକୁ ବାଧ୍ୟ ହୋଇ ସପ୍ତପୁରୁଷଙ୍କୁ ଦେଖିଲି ବୋଲି କହି ପଦ୍ମମଣିଙ୍କୁ ଏକାନ୍ତ ପ୍ରଶଂସା କରି ବସିଲେ । ଏହାପରେ ମନ୍ତ୍ରୀ, ପାତ୍ର, କଟୁଆଳ, ସେନାପତି ସମସ୍ତେ ଦେଖି କହିଲେ; ବଡ଼ିଆ ଏ କନାଟିକର ଗୁଣ । ପରିଷ୍କାର ଦେଖାଯାଉଛି । କିଏ କାହାକୁ କହୁଛି କିଛି ନ ଦିଶୁଛି ବୋଲି, କିଏ କିଆଁ ଜାରଜ ବୋଲି ପ୍ରମାଣିତ ହେବ ?

ସମସ୍ତେ ପଦ୍ମମଣିଙ୍କର ପ୍ରଶଂସା କରି ବସିଲେ । ରାଜାଙ୍କୁ ଉକ୍ତ ବାକ୍ସଟି ସେ ଭେଟି ସ୍ୱରୂପ ଦେଇଦେଲେ । ଏହା ଫଳରେ ଅତିରେ ବହୁମୂଲ୍ୟ ପଦାର୍ଥ, ଯଥା—ପାଟ, ଶାଲ, କୁଣ୍ଡଳ, ମୁଦ୍ରିକା ଆଦି ସହିତ ଏକୋଡ଼ିଏ ଶତମୁଦ୍ରା ପଦ୍ମମଣିଙ୍କୁ ବିଦାୟି ଦିଆଗଲା ।

ଚତୁର ପଦ୍ମମଣି ଦେଖିଲେ ସବୁ ତ ହେଲା । କିନ୍ତୁ ବାଟରୁ ଖଣ୍ଡିଏ ଯେବେ ଏସବୁ ନିଅନ୍ତି, କେଉଁ ଲାଭ ପାଇବି ? ସେ ଜାଣନ୍ତି ଯେ ଏଠାର ବହୁଲୋକ ଶ୍ରୀଲଟାରୁ ଦୂରରେ ଅଛନ୍ତି । ରାଜାଙ୍କ ଲାଗି ମାନବିକତା ମଧ୍ୟ ସମାଧି ନେଇଛି ।

ଯାହା ହେଉ ଉପାୟ କରି ସେଦିନ ଜଗନ୍ନାଥ ମନ୍ଦିରରେ ବିଗ୍ରହରେ କବାଟ ଦେଇ ଶୋଇ ରହିଲେ । ସନ୍ଧ୍ୟା ପୂର୍ବରୁ ପହଡ଼ ଭାଙ୍ଗିବା ନୀତି ଲାଗି ପଣ୍ଡା, ପଶୁପାଳକ ଆସି ଦେଖନ୍ତି, ମନ୍ଦିର ଭିତରପଟ ବନ୍ଦ । ଡାକିଲେ, କବାଟ ବାଡ଼େଇଲେ, କେବେ ଭିତର କବାଟ ଫିଟିଲା ନାହିଁ । ତେଣୁ ସେ ରାଜାଙ୍କୁ ଜଣାଇଲେ । କ୍ରୋଧରେ ବୀରବର ରାଜା ଆସି ପହଞ୍ଚିଲେ ଏବଂ କବାଟରେ ଆଘାତ ଦେଇ ଗର୍ଜନ କଲେ । ପଦ୍ମମଣି କବାଟ ଫିଟାଇ ଆଖି ମଳି ମଳି କହିଲେ—"ମୋର କି ଦୁର୍ଭାଗ୍ୟ ଯେ ମୁଁ ପ୍ରଭୁଙ୍କୁ ପାଖରେ ବନ୍ଦୀ କରାଇଲି । ସକାଳେ ବର୍ତ୍ତି କ୍ଳାନ୍ତ ହୋଇ ପଡ଼ିଥିଲି ଆଜ୍ଞା ! ନିଦ୍ରାରେ ଅସାବ୍ଧ ହୋଇ ପଡ଼ିଗଲି । ମୋ'ର ତ ଚେତା ଚଇତନ ନାହିଁ । ଏଠି ଏ କି ଘଟଣା ? ଦେବତା ମଧ୍ୟ କ'ଣ ଅଜ୍ଞାନ ହୋଇ ଶୋଇ ପଡ଼ିଥିଲେ ? ମୁଁ ଠାକୁରଙ୍କର ଚାକର । ମୁଁ କେଉଁ ଘଟଣାରେ ଜାଣେ ଯେ ଠାକୁର ନିଶ୍ଚୟ ଉଠାଇଦେବେ ।

ରାଜା ଏ ଘଟଣା କ'ଣ ବୁଝିପାରିଲେ ନାହିଁ । ଜଣେ ବିଜ୍ଞ ବ୍ୟକ୍ତି ଏପରି କ'ଣ କହିଲେ ? ସକାଳ ଘଟଣାରେ ସେ ଭାବିଲେ କାଲେ ସେ ଜାରଜ ହୋଇଥିବେ ତାଙ୍କୁ ସାତ ପୁରୁଷତ ଦେଖାଗଲା ନାହିଁ । ଅନ୍ୟମାନେ ତ ପୁଣି ଦେଖିଲେ । ସେ ଯାହା ହେଉ, ଏ ଦେବତା କଥା କ'ଣ ?

ପଦ୍ମମଣି ବୁଝାଇଦେଲେ ଯେ, ଦେବତା ଡାକିଲେ ନିଶ୍ଚୟ 'ଓ' କହିବେ । ଏହା ମିଥ୍ୟା ହେଲେ ସେ ମୁଣ୍ଡ କାଟ ଶାସ୍ତି ପାଇବେ । ତାଙ୍କ ସହିତ ନିପୁଣ ବର୍ଣ୍ଣାସୀ ଭିଜ୍ଞ ପାରିଷଦ ଦୁଇ ଜଣ ଦିଆଯାଉ ।

ତାହା ହିଁ ହେଲା । ହାଣ୍ଡିରେ ଦୁଇଜଣ ବଣିଷ୍ଟ କର୍ମଗୃହୀଙ୍କୁ ସାଙ୍ଗରେ ଘେନି ଏହି ଦେବତା ସମସ୍ୟାର ସତ୍ୟାସତ୍ୟ ପରୀକ୍ଷା ଦେବାକୁ ନିଜ ବିଦାକାମାନ ଯତ୍ନରେ ଧରି ଗୃହାଭିମୁଖୀନ ହେଲେ । ଫଳରେ ଖଣ୍ଡ ଦୌରାତ୍ମ୍ୟରୁ ଉଦ୍ଧାର ପାଇ ନିରାପଦରେ ଗୃହରେ ପହଞ୍ଚିଲେ ।

କର୍ମଗୃହୀ ଦୁହିଁଙ୍କୁ ଖାଦ୍ୟପେୟରେ ପରମ ସନ୍ତୋଷ ଦେଇ ଗଡ଼ ବୁଲାଇ ଆଣି ପାଖେ ପାଖେ ରାତ୍ର ଶୟନ କଲେ । ସେ କହିଥିଲେ ଯେ ନିଶୂନ ରାତ୍ରରେ ଏ ପରୀକ୍ଷା ସହଜ ହେବ । ତେଣୁ ତାଙ୍କ ଗ୍ରାମର ଏକ ମନ୍ଦିର, ଯେଉଁ ଦେଉଳକୁ ଲାଗି ଦେବତା ଫଳ୍ଗାଧାରୀ ପଣ୍ଡାମାନଙ୍କ ଘର; ସେଠାକୁ ଗୋପନରେ ନେଇ ଡାକିଲେ;—

"ଆହେ ଦେବତା !" ନିଦ ବାଉଳାରେ ଦେବତା ଫଳ୍ଗାଧାରୀ କେହି ଉତ୍ତର ଦେଲେ;—

"ହୁଁ ହୁଁ"; ପୁନର୍ବାର ମଧ୍ୟ ଡାକଲେ, "ଆହେ ଦେବତା !" ଶୁଭିଲା;— "ହାଁ, ହାଁ କିଏ କହୁଛ ?"

ଅନୁଗୁଳର ଏହି କର୍ମଗୃହୀ ଦୁଇଜଣ ଭୟରେ ବହୁଦୂର ଘୁଞ୍ଚିଯିବା ଦେଖି ଧୂର୍ତ୍ତ ଯଦୁମଣି ସେମାନଙ୍କୁ ଅଭୟ ଦେଇ ସାଥିରେ ନେଇଆସିଲେ । କର୍ମଗୃହୀମାନେ ହାଣ୍ଡିରୁ ଓହ୍ଲାଇଲା ବେଳୁ ଯଦୁମଣିଙ୍କ ସହିତ ମିଶି ରହିଥିଲେ ହେଁ, ଏଥିରେ କୌଣସି କପଟ ଥିବାର ସେମାନେ କାଳେ ଭାବିବେ, ତେଣୁ ରାତ୍ର ପାହାନ୍ତାରୁ ସେମାନଙ୍କୁ ବିଦାୟ ଦେବାକୁ ଯାଇ ଆଉ ଏକ ମନ୍ଦିର ନିକଟରେ ଦେବତାର ହାଁ, ହାଁ ଧ୍ୱନି ମଧ୍ୟ ଶୁଣାଇ ଦେଇଥିଲେ ।

ସେତେବେଳେ ଦେଶରେ ଅନ୍ଧବିଶ୍ୱାସ ପୂରି ରହିଥିଲା ଓ ଯାହାଦ୍ୱାରା କି ସେ ଏହିପରି ଦୁର୍ଦ୍ଦାନ୍ତ ରାଜା ସୋମନାଥ ଜଗଦେବଙ୍କ ଠାରୁ ଧନ ସଂଗ୍ରହ କରିପାରିଥିଲେ ।

## ୮୨—ଖଲ୍ଲିକୋଟ ମର୍ଦ୍ଦରାଜ

ଖଲ୍ଲିକୋଟରେ ନାରାୟଣ ମର୍ଦ୍ଦରାଜ ରାଜା ଥାନ୍ତି । ସେ ବଡ଼ ସହୃଷ୍ଟ, ଭଦ୍ର ଓ ଧୀର ଲୋକ ଥିଲେ । ବହୁକାଳ ପରେ ତାଙ୍କ ପାଖକୁ ଯିବାରୁ ରାଜା ସ୍ନେହର ସହିତ ପଚାରିଲେ;—

"କାରିଗରେ ! ତୁମର ସବୁ କୁଶଳ ତ ?"

ଯଦୁମଣି ତାର ଉତ୍ତରରେ ନିମ୍ନଲିଖିତ କବିତାଟି ଗାନ କରିଥିଲେ ।

**ମଣିମା ! ମୋହର କରମ ଗାରେ**
**ସ୍ନେହ ନ ଛାଡ଼ିଲ କର ମଗାରେ ।**

ହେ ରାଜା ! ମୋ ଜନ୍ମଟା ଏପରି ଦୁଃଖ ଦାୟକ ଯେ ଭାଗ୍ୟରେ ଲେଖାଅଛି ମୋର ହସ୍ତ କେବଳ ମାଗିବାରେ ସ୍ନେହ ଛାଡ଼ିପାରୁ ନାହିଁ । ଭିକ୍ଷା ନେବ ତ ନେବ ତ; ମୁଁ ଜାଣିଲେ ହେଁ କଦାପି ନିରସ୍ତ ରହିପାରୁ ନାହିଁ ।

ଏଥିରେ ରାଜା ନାରାୟଣ ପଦ୍ମମଣିଙ୍କୁ ବହୁ ଆଶ୍ୱାସନା ଦେଇ ଦୟାକରି ତାଙ୍କର ସେ ସମୟର ଯାବତୀୟ ଅଭାବ ପୂରଣ ପାଇଁ ବହୁ ଅର୍ଥ ସାହାଯ୍ୟ ଦେଇ ତାଙ୍କୁ ବିଦା କରିଥିଲେ ।

## ୮୮—ତିଗିରିଆ ଚମ୍ପୂପତି

ତିଗିରିଆ ରାଜା ଚମ୍ପୂପତି ସିଂହଙ୍କ ପାଟମହାଦେଈଙ୍କର ମୃତ୍ୟୁ ହେବାରୁ ତାଙ୍କର ଯୁବରାଜ ବନମାଳୀ ଓ ଜେମା ରତ୍ନମାଳୀ ଥିବା ଯୋଗୁଁ ପାତ୍ର ମନ୍ତ୍ରୀମାନେ ଦ୍ୱିତୀୟ ଦାର ପରିଗ୍ରହ କରିବାକୁ ନିଷେଧ କରୁଥିଲେ । ରାଜା ନ ମାନି ଦ୍ୱିତୀୟ ଦାର ପରିଗ୍ରହ କଲେ । କିନ୍ତୁ ରାଜାଙ୍କର ପାଟଜେମା ଶୋଭାରାଣୀ ସୁପର୍ଣ୍ଣା ତା ରତ୍ନମାଳୀ ନରସିଂହପୁରରେ ମଙ୍ଗଳକୃତ୍ୟ ହୋଇଗଲେ ୧୮୭୨ ରେ । ଅତି ବୃଦ୍ଧ ବୟସରେ ଏହି ମଙ୍ଗଳକୃତ୍ୟ ସମୟରେ ପଦ୍ମମଣି ଶାଳୀଘରକୁ ମାନପୁର ଆସିଥାନ୍ତି ।

ରାଜାଙ୍କର ନୂତନ ରାଣୀ କଳାବତୀ ପ୍ରୌଢ଼ରାଜାଙ୍କୁ ବଡ଼ ହଇରାଣ କରୁଥାନ୍ତି । ରାଜା କିନ୍ତୁ ତାଙ୍କ ମନ ଲକ୍ଷିବା ଲାଗି ଯୁବକ ପରି ସମସ୍ତ କାର୍ଯ୍ୟ କରୁଥାନ୍ତି । ଦିନେ ରାଜା ସାହେବଙ୍କ ସହିତ ପଦ୍ମମଣିଙ୍କର ଦେଖାହେଲା । ରାଜା ଗୋପନରେ ନିଜର ଦୁଃଖ କହନ୍ତେ ପଦ୍ମମଣି ଗାଇଦେଲେ;—

**କଳାଇକି ସିନା କଳାଇ ଧଇଲ ଗ୍ରହୁଁ ଛି ଏଣିକି ତେଣିକି,**
**ଯୁବାକାଳେ ଯାହା ଦେଖା ତ ନ ଥିଲ ମହଣ ହେଉଛି ଏଣିକି ।**

କଳାବତୀ ଏକ ସାଆନ୍ତଆ ଝିଅ ଥିଲା । ସେ ମଧ୍ୟ ଚରିତ୍ରରେ ତ୍ରୁଟି ଘଟାଇବା ଲକ୍ଷ୍ୟରେ ଏଣେତେଣେ ଆଶା କରୁଥିଲେ । କବିଙ୍କର ଏହି ବାକ୍ୟବାଣରେ ତାଙ୍କର ଚରିତ୍ର ସଂଶୋଧିତ ହୋଇଥିଲା ବୋଲି କଥିତ ଅଛି । ସେ ଏହି ରଚନା ଶୁଣିବା ପରେ ସ୍ୱାମୀଙ୍କର ପୂର୍ଣ୍ଣ ସହଯୋଗିନୀ ହୋଇଥିଲେ ବୋଲି ଶୁଣାଯାଏ ।

## ୮୯—ଟିଗିରିଆ ମାନପୁର

ମାନପୁର ମୌଜାରେ ଗୋଟିଏ ଦରିଦ୍ର କୃଷକ ଘର, ଚଉକରଙ୍କ ଘର ପାଖରେ । ପଦ୍ମମଣି ସେବେ ଆସିଲେ ତାହା କଥା ଶୁଣନ୍ତି । ସେ ମାଇପିଟି ଘରୁ ଜନ୍ମମନା ଥାଏ । ତା ପୁଅର ପାଞ୍ଚବରଷ ଯାଏ ନାଁ ଦେଇ ନ ଥିଲି । ତା ବର ତାକୁ ନାଁ ଦେଇଥିଲି 'ବାଳଆ' । ମାଇକିନାର ମନ ମାନିଲା ନାହିଁ । ସେ କହିଲା, ମୋ ପୁଅ ନାଁ ପୁରୁଷୋତ୍ତମ । କାରଣ ସେ ଏଥି ମଧ୍ୟରେ ପୁରୁଷୋତ୍ତମ ଦେଖି ଆସିଥିଲା । ପଦ୍ମମଣି ମନାକଲେ "ଆଲୋ ପଧାନୁଣି ! ଏଡ଼େ ବଡ଼ ନାଁ ତୁ ହୁଣେନା । ତାକୁ ପାରିବୁ ନାହିଁ ।"—ସେ ତାଙ୍କ କଥା ନ ରଖି ପୁରୁଷୋତ୍ତମ ଦେଲା ।

ବହୁଦିନ ପରେ ପଦ୍ମମଣି ସତୁଘରକୁ ଆସି ଦେଖିଲେ ସେ ଛୁଆର ବାପ ମରିଯାଇଛି । ତା ଯୁବା ପୁଅ ପୁରୁଷୋତ୍ତମ ବିଧବା ପ୍ରୌଢ଼ା ମାଆକୁ ନିତ ମାଡ଼ ଚଢ଼ାଉଛି, ସାମାନ୍ୟ ସାମାନ୍ୟ ଦୋଷରେ । ତେଣୁ ପଦ୍ମମଣି ତାକୁ କହିଥିଲେ;—

ପୁଅ ନାଁ ଦେଲୁ ପୁରୁଷୋତ୍ତମ
ଏବେ ତୋ ପିଠିରେ ବାଜେ ନଧୂମ ।

ଏହା ଶୁଣି ଝିଅକମଣି ହସି ହସି ଗଡ଼ି ଯାଇଥିଲି । ଏ ପ୍ରବଚନ ପ୍ରଚୁର ହୁଅନ୍ତେ, ସେ ଲୋକା ମଧ୍ୟ ଟିକିଏ ସଚର୍କ ହେଉଥିଲା ।

## ୯୦—ବୌଦ୍ଧ ଭଞ୍ଜ

ବାର୍ଦ୍ଧକ୍ୟରେ ଥରେ ପଦ୍ମମଣି ବୌଦ ଗଡ଼କୁ ଯାଇଥିଲେ । ରାଜା ପଦ୍ମମଣିଙ୍କୁ ସମାଦର କରି ବସା ସଞ୍ଚାର ବନ୍ଦୋବସ୍ତ କରି ଦେଇଥାନ୍ତି । ପଦ୍ମମଣି ରାଜାଙ୍କ ସମାଦରରେ ଏକାନ୍ତ ମୁଗ୍ଧ ହୋଇ ଯେଉଁଦିନ ବିଦାୟ ନେବେ ବୋଲି ଜଣେଇଲେ, ସେ ଦିନ ରାଜା ତାଙ୍କୁ ଯଥୋଚିତ ପୁରସ୍କାର ଦେଲେ ଏବଂ ବିଦାୟ ବେଳେ କହିଲେ;—

"ତୁମ୍ଭେ ତ ଏକ୍ଷଣି ଆଉ ନୂଆଗଡ଼ ଦରବାରରେ ନାହିଁ । ରାଜା ଦୟାଯୁକ୍ତ ତ ସ୍ୱଳଗଲେ । ତୁମ୍ଭେ ଆମ୍ଭ ଗ୍ରାମରେ ରକ୍ଷକରି କରି ରହିଲେ ଭଲ ହୁଅନ୍ତା ନାହିଁକି ?"—

ପଦ୍ମମଣିତ କେଉଁଠି ପରାଧୀନ ନଥିଲେ । ସେ ନୂଆଗଡ଼ ମାନଧାତାଙ୍କର ସ୍ନେହାସ୍ପଦ ସଖାପରି ରହିଥିଲେ । ରାଜାଙ୍କ ମନରୁ ଏହି ଭ୍ରମ ଧାରଣା ଦୂର କରିବା ଲାଗି ସେ କହିଲେ;—

**ଅବଧାନ ହେଲେ ତୁ ଗ୍ରାମକୁତା**
**ଅବଶ୍ୟ ହୁଅନ୍ତୁ ମୁଁ ଗ୍ରାମ କୁତା ।**

ସାଧାରଣ ଅର୍ଥ ହେଲି—ଗୁରୁଙ୍କରେ ମୁକୁଟାଗୁଡ଼ିଏ ଅବଧାନ ହେଲେ ମୁଁ ଗ୍ରାମୁଁଙ୍କର କୁତା ଭଳିଆ ହୁଅନ୍ତି । ଅନ୍ୟାର୍ଥ:—ଗ୍ରାମ କୁତା ହେବା କଥା ଅବଧାନ ହେଲେ ମୁଁ ଅବଶ୍ୟ ଗ୍ରାମ କୁତା ହୁଅନ୍ତୁ । ଅର୍ଥାତ୍ ତୁମେ କେଉଁଠି ଗୃକର ରହିବା କଥା କହିଲେ ମୁଁ ନିଶ୍ଚୟ ଗୃକର ରହିବାକୁ ସ୍ୱୀକାର କରିବି ।

ପଦ୍ମମଣି ପଣ୍ଡିତ ସାଦ୍ଦସୀ ବୁଦ୍ଧି ଗାଥା କର୍ଣ୍ଣଙ୍କୁ ଗୃକର କରି ରଖିବା ଅପରା ଦୁଃସାଧ୍ୟ, ତାହା ବୁଝିପାରି ରାଜା ଲଜ୍ଜିତ ହେଲେ ଏବଂ ପ୍ରସଙ୍ଗକ୍ରମେ ଭ୍ରମ ଧାରଣା ଦୂର କଲେ ।

## ୯୧—ବଡ଼ାମ୍ବା ମଙ୍ଗରାଜ

ପଦ୍ମମଣି ଥରେ ଅଧେ ବଡ଼ାମ୍ବା ରାଜା ପିଣ୍ଡିକି ମଙ୍ଗରାଜଙ୍କୁ ଭେଟି ଯାଉଥିଲେ । କଟକଠାରୁ ବଡ଼ାମ୍ବା ପ୍ରାୟ ପଚିଶ କୋଶ ରାସ୍ତା । ପଦ୍ମମଣି ପ୍ରୌଢ଼ ସମୟରେ ଥରେ ବଡ଼ାମ୍ବା ଆସିଥିଲେ । ପଦ୍ମମଣି ବଡ଼ାମ୍ବା ଆସିଛନ୍ତି ଶୁଣି ହଇଚଇ ପଡ଼ିଗଲା । ସେତେବେଳର ରାଜା ଗୋପୀନାଥ ବୀରବର ମଙ୍ଗରାଜ ମହାପାତ୍ର ତାଙ୍କୁ ଦୁର୍ଗର ଭିତରେ ଭାଣ୍ଡାର ନାମକ ସ୍ଥାନରେ ତାଙ୍କ ରହିବା ବସା ଠିକ୍ କରି ସେଠା ଦୋକାନରୁ ଯାହା ଦରକାର ସେ ନେବେ, ତାହା ଦେଉଥିବୁ ବୋଲି ଚଳା ଲେଖିଦେଲେ ।

ପଦ୍ମମଣି ରୋଷେଇ ସାମଗ୍ରୀ ସମସ୍ତ ନେଇ ଘିଅ ନଥିବା କଥା ରଜାଙ୍କୁ ଜଣାଇ ପଠାଇଲେ । ରାଜା ଦୁଷ୍ଟାମିକରି ତାଙ୍କ ଧୂର୍ତ୍ତତା ପରୀକ୍ଷା କରିବାକୁ ଘୋଟକ ସ୍ପଂ ଜଗନ୍ନାଥପୁର ଆବଳ—ଯାହା ଦୁର୍ଗନ୍ଧରେ ଅତି ଉତ୍କଟ, ତାହା ମିଶାଇ ଘିଅ ଗୋଟିଏ ଗିନାରେ ତାଙ୍କ ପାଖକୁ ପଠାଇଲେ ।

ପଦ୍ମମଣି ଘିଅକୁ ପରୀକ୍ଷା କରି ଦେଖିଲେ ଯେ ତାହା ଖରାପ ଦୁର୍ଗନ୍ଧ ଯୁକ୍ତ ହୋଇଛି । ତେଣୁ ସେ ଉକ୍ତ ଘିଅକୁ ଗୋଟିଏ ମୃତ୍ତିକା ପାତ୍ରରେ ରଖିଦେଇ ମୂଲ୍ୟବାନ୍ ଗିନାଟିକୁ ବନ୍ଧାଦେଇ ଦୋକାନୀଠାରୁ ଭଲ ଘିଅ ଆଣି ନିଜର ରନ୍ଧନ କାର୍ଯ୍ୟ କରି ଭୋଜନ ସମାପନ କଲେ ।

ଅନନ୍ତର ପୂର୍ବୋକ୍ତ ଘିଅରେ ଧୂଆଁପତ୍ରରେ ନାସ ପ୍ରସ୍ତୁତ କରି ତାହା ଗୋଟିଏ ସୁନ୍ଦର ଡାବରରେ ସାଇତି ରଖିଲେ ଏବଂ ଅତ୍ୟନ୍ତ ସୁବାସିତ ଅତର ଦେଇ ଆଉ ଏକ ଡାବରରେ ନାସ ରଖି ରାଜଦର୍ଶନକୁ ବାହାରିଲେ ।

ସେ ସପାରିଷଦ ରାଜାଙ୍କୁ ଦୂରରୁ ଦେଖି ସୁବାସିତ ନାସ ଶୁଙ୍ଘି ଶୁଙ୍ଘି ଯାଉଥିଲେ । ରଜା ପଚାରିଲେ;—

'କହୋ ! ଦଦେଇଙ୍କ ଅମଳରେ ତ ଦେଖି ନଥିଲି, ଏବେ ନାସ ଅଭ୍ୟାସ କଲେଣି କି ? ଭଲ ଖୁସ୍‌ବୋଇ ଦ୍ରବ୍ୟତ ହୋଇଅଛି । ଆଚ୍ଛା ଆମ୍ଭଙ୍କୁ ଟିପେ ଦେଲ !"—

ତହୁଁ ଯଦୁମଣି କହିଲେ;—ଏ ଦାନ ମୁଁ ଶୁଙ୍ଘିବାହାର ମାରି ହୋଇଛୁ । ଆପଣ କାଳେ ବୁଝିବେ ତେଣୁ ସ୍ୱତନ୍ତ୍ର ନାସ ଦାନଏ ମୁଁ ଆଣିଛୁ ।" ନୂତନ ଦାନଟି ସୁନ୍ଦର ଥିଲା । ତାହା ଦେଖି ରାଜା ହାତ ବଢ଼ାନ୍ତେ ଯଦୁମଣି ଶ୍ରୀ ହସ୍ତରୁ ବଢ଼ାଇ ଦେଲେ ।

ରାଜା ସେ ଦାନରୁ ନାସ କାଢ଼ି ଶୁଙ୍ଘିଦେବା ମାତ୍ରେ ଅତି ଭୀଷଣ ଗନ୍ଧହେଲା । ସେ ତାଙ୍କ ପାରିଷଦମାନଙ୍କୁ ଟିପେ ଟିପେ ଦେଇ ଦେବାରୁ ସମସ୍ତେ ଶୁଙ୍ଘି ବ୍ୟଥିତ ଆକୁଳହୋଇ ଉଠିଲେ । ରାଜାଙ୍କର ଓକାର ଆସିଲା । ତଜ୍ଜାଗ ଦୁର୍ଗନ୍ଧରେ ପୂରିଗଲା । ରଜା ପଚାରିଲେ;—

'କହୋ ଧୂର୍ତ୍ତ ଏଗୁଡ଼ିକ କଣ ସତକଥ ?' ତହୁଁ ଯଦୁମଣି କରଯୋଡ଼ି କହିଲେ, ସ୍ୱାମୀ ଦୋଷ ଧରିବା ହେବେନାହିଁ ।

**ରାଜଚନ୍ଦ୍ର ଯିନା ଖନ୍ଦା ଦେଇଥିଲ ତୃତୀୟ ପାଟଣା ଆଜ**
**ଗିନା ବନ୍ଧାଦେଇ ଖନ୍ଦା ଚଳାଇଲ ଗେନ୍ଧା ଶୁଙ୍ଘା ମଙ୍ଗରାଜ ।**

ରାଜା କହିଲେ ଆମ୍ଭର ଏଥିରେ ଅବଶ୍ୟ ଦୋଷ ଅଛି । ଆମ୍ଭ ସ୍ୱାମୀ ଚନ୍ଦ୍ର ବୁଦ୍ଧିରେ ପଡ଼ି ଏହା କରିଛନ୍ତି । ଗୀତଟା ଅତି କଟୁ ହୋଇଗଲା । ତେଣୁ ଯଦୁମଣି ପୁଣି ଗାଇଲେ;—

**ଚନ୍ଦ୍ର ! ତୁମ୍ଭେ ଯିନା ଖନ୍ଦାଦେଇଥିଲ ତୃତୀୟ ପାଟଣା ଆଜ**
**ଗିନା ବନ୍ଧାଦେଇ ଖନ୍ଦା ଚଳାଇଲ ଗନ୍ଧ ଶୁଙ୍ଘ ମଙ୍ଗରାଜ ।**

ରାଜା ସନ୍ତୋଷ ହେଲେ । ଚନ୍ଦ୍ର ଦିବାନଙ୍କର ପାଖଲୋକ ସରଦାର ଥିଲା । ଗୁରୁଆଡ଼େ କଥା ବାହାରିଲା ଯଦୁମଣିଙ୍କୁ ଜଣିବ କଏରେ ?

ଏହାପରେ ରାଜା ବହୁମାନ ଏବଂ ଯଥୋଚିତ ବିଦାକ ଦେଇ ବିଦାୟ କରିଥିଲେ ।

## ୯୬—ଢେଙ୍କାନାଳ ମହେନ୍ଦ୍ର ବାହାଦୁର

ସେ କାଳରେ ଢେଙ୍କାନାଳ ରଜା ଭଗୀରଥି ମହେନ୍ଦ୍ର ବାହାଦୁର ଗୋଟିଏ ପଣ୍ଡିତ ସଭା କରିଥିଲେ । ଯଦୁମଣି ସେଠାକୁ ଯାଇଥିଲେ । କିନ୍ତୁ ଦେଖିଲେ ଯେ ସ୍ୱୟଂ ରଜା ପଣ୍ଡିତମାନଙ୍କର ଅଭ୍ୟର୍ଥନା କରୁଛନ୍ତି । ଯଦୁମଣି ଯେତେଥର ଭିତରକୁ ପଶିବାକୁ ଇଚ୍ଛା କଲେ ତାଙ୍କୁ ଦ୍ୱାର ରକ୍ଷକମାନେ ଛାଡ଼ ନ ଦେଇ ଅଟକାଇ ରଖି ସର୍ବଶେଷରେ ଛାଡ଼ିଦେଲେ । ଯଦୁମଣିଙ୍କୁ ଦେଖି ରଜା ଗରମ ହୋଇଗଲେ । ଏବଂ 'କ୍ୟୋଽଭୂ' 'କ୍ୟୋଽଭୂ' ବୋଲି ବାରଂବାର କହି ତାଙ୍କୁ ସଭା ମଧ୍ୟକୁ ଯିବାକୁ ଅନୁମତି ଦେଲେ ନାହିଁ ।

ଏପରି କ୍ଷେତ୍ରରେ ଯଦୁମଣି ଫେରି ଆସିଥାନ୍ତେ । କିନ୍ତୁ ସେ ତ ଛାଡ଼ିବା ବାଲା ନୁହନ୍ତି । ଗର୍ବିତ ପଣ୍ଡିତଗଣଙ୍କ 'କ୍ୟୋଽଭୂ' 'କ୍ୟୋଽଭୂ' ଶୁଣି ଯେ ହାସ୍ୟରୋଳ ଉଠିଲା ତାକୁ ନ ଦବାଇ ସେ କ'ଣ ଫେରି ଆସିବେ ?

ହଠାତ୍ ଗମ୍ଭୀର ଧ୍ୱନିରେ ଦଶଦିଗ ଚମକାଇ ଯଦୁମଣି ଏକ ଆଶୁ କବିତା ଗାଇଲେ—

**ମନାସି କାଳୀ ମନ୍ଦିର ଅନ୍ତ**
**ଶୋଭାଗ୍ର ଅଗ୍ରଫଳ ସଙ୍ଗେ ମିତ**
**ଚତୁର ଭଜନରେ ବଳବନ୍ତ**
**ସମାପ୍ତ ଋକ୍ଷ କନ୍ୟାର କାନ୍ତ**
**ସେ ଦେବଙ୍କ ଅନୁଗ୍ରହେ**
**ଶ୍ରୀ ଦେଉ ଶ୍ରୀମୁଖେ ବାନ୍ଧି ଦେଇଛନ୍ତି**
**ନବଗ୍ରହୁ ଏକ ଗ୍ରହେ ।**

ଏ କବିତାଟିର ଅର୍ଥ ହେଲା—ଯେ କାଳୀ—ମନ୍ଦିରର (ଯମୁନାର) ଅନ୍ତ ମନାସିଥିଲେ ଅର୍ଥାତ୍ କାଳିନ୍ଦୀ ଭେଦନ, ଯେ ଶୋଭାଗ୍ର ଅର୍ଥାତ୍ ତାଳ ଗଛର ଅଗ୍ରରେ ଥିବା ଫଳ କ ତାଳ ସହିତ ମିତ ଅଟନ୍ତି ଅର୍ଥାତ୍ ତାଳ ଗଛର ଫଳ ଧ୍ୱଜରେ ଥିବାରୁ ସେ ତାଳଧ୍ୱଜ ବା ତାଳାଙ୍କ ନାମରେ ବିଦିତ, ଚତୁର ବା ଚତୁର୍ଦ୍ଧା ଯେଉଁ ମୂର୍ତ୍ତିମାନ ତନ୍ମଧ୍ୟରେ ଯେ ବଳବନ୍ତ ବା ବଳରାମ ନାମରେ ବିଖ୍ୟାତ ଅଟନ୍ତି, ପୁନଶ୍ଚ ସମାପ୍ତଋକ୍ଷ ଅର୍ଥାତ୍ ଶେଷ ନକ୍ଷତ୍ର ଯେ ରେବତୀ ଉକ୍ତ ନାମବିଶିଷ୍ଟା କନ୍ୟାର ବର ଅଟନ୍ତି ଯେ ବଳଦେବ ଜୀଉ ତାଙ୍କର ଅନୁଗ୍ରହରୁ ଶ୍ରୀଯୁକ୍ତ ରଜା ବାହାଦୁରଙ୍କ ଶ୍ରୀମୁଖରେ ନବଗ୍ରହରୁ

ଶୋଭାଗ୍ର—ତାଳଗଛ । ଚତୁର—ଚତୁର୍ଦ୍ଧାମୂର୍ତ୍ତି । ଋକ୍ଷ—ନକ୍ଷତ୍ର । ସମାପ୍ତଋକ୍ଷ—୨୭ ନକ୍ଷତ୍ରର ଶେଷ ନକ୍ଷତ୍ର ରେବତୀ । ଅନୁଗ୍ରହେ—ଅନୁଗ୍ରହ କରି । ଶ୍ରୀଦେଉ—ସେ ରଜାଙ୍କ ।

ଏକଗ୍ରହ ଅର୍ଥାତ୍ କେତୁ ଯେ କି ଚଣ୍ଡାଳ ଗ୍ରହ, ତାଙ୍କୁ ଦାନ୍ତ ଦେଉଛନ୍ତି । ଯେଉଁ ଚଣ୍ଡାଳଗ୍ରହ ଚନ୍ଦ୍ର ସୂର୍ଯ୍ୟଙ୍କୁ ଗ୍ରାସ କରଥାଏ, ସେହି ଗ୍ରହକୁ ରଜା ମୁଖରେ ଧାରଣ କରୁଛନ୍ତି ।

ରଜା ଏହା ଶୁଣି ଏକାନ୍ତ ଲଜ୍ଜିତ ହୋଇ ତାଙ୍କୁ ଅତ୍ୟଧିକ ସମ୍ମାନ ଦେଖାଇ ନିଜ ପାର୍ଶ୍ୱରେ ଆସନ ଦେଇଥିଲେ ଏବଂ ସମସ୍ତ ପଣ୍ଡିତଙ୍କ ସହିତ ସମାନ ବଦାନ୍ୟ ଏବଂ ମର୍ଯ୍ୟାଦା ମଧ୍ୟ ଦେଇଥିଲେ । ଏ କଥା ଶୁଣିବା ପରେ ପଣ୍ଡିତମାନଙ୍କର ଗର୍ବ ଗଞ୍ଜନ ହୋଇଥିଲା ।

## ୯୩—ତେଣୁ ବିଧାତା କଲା ସୁନାମୁହିଆ

ଢେଙ୍କାନାଳ ରଜାଙ୍କ ଉକ୍ତ ସଭାରେ ନାନା ସମସ୍ୟା ଆଲୋଚନା ହୋଇଥିଲା । ପଦ୍ମମଣି ସେ ସବୁରେ ମଧ୍ୟ ଯୋଗ ଦେଇଥିଲେ । କିନ୍ତୁ ରଜା ପଚାରିଥିବା ଗୋଟିଏ ପ୍ରଶ୍ନ କରିଥିଲେ ଯେ—ବାମ ଏବଂ ଦକ୍ଷିଣ ହସ୍ତ ଯେନ ଏକ ବର୍ଣ୍ଣମୂଳକ କବିତାରେ ପ୍ରତିଯୋଗିତା ହେଉ ।

ନାନା ଭାବରେ ପଣ୍ଡିତମାନେ ଗାଇ ଗଲେ । କିଏ କହିଲେ ରାମଚନ୍ଦ୍ର ଦକ୍ଷିଣ ହସ୍ତ ଟେକି ସୀତାଙ୍କୁ ବନବାସ ଲାଗି ଆଦେଶ ଦେଇଥିବାରୁ ସେ ହସ୍ତ ଦୋଷୀ । କିଏ କହିଲେ ଶୂଦ୍ରକକୁ ରାମଚନ୍ଦ୍ର ହତ୍ୟା କରିଥିବାରୁ ଦକ୍ଷିଣହସ୍ତ ବର୍ଣ୍ଣାଶ୍ରମ ଧର୍ମ ରକ୍ଷାକାରୀ, କିଏ କହିଲେ ଦକ୍ଷିଣ ହସ୍ତ ଭୋଜନ କରାଉଛି ଏବଂ ବାମ ସେବା କାର୍ଯ୍ୟ କରୁଛି । ଇତ୍ୟାଦି ଇତ୍ୟାଦି । କିନ୍ତୁ ପଦ୍ମମଣି କହିଲେ—

ବାମହସ୍ତ ବୋଲେ ସଞ୍ଚିବା ପାଇଁ
ତେଣୁ ବିଧାତା କଲା ଛଞ୍ଚିବା ପାଇଁ
ଦକ୍ଷିଣ ହସ୍ତ ବୋଲେ ସୁନାମୁହିଆ
ତେଣୁ ବିଧାତା କଲା ସୁନାମୁହିଆ ।

ବାମାଙ୍ଗି ରମଣୀ ସଞ୍ଚୟ ଲାଗି ବ୍ୟାକୁଳ ଥାଏ । ତେଣୁ ବିଧାତା ତାକୁ ସୁରକ୍ଷା ସେବକା କରିଛି । ଦକ୍ଷିଣ ହସ୍ତ ପରିଶ୍ରମ କରି କାର୍ଯ୍ୟଦ୍ୱାରା ଧନ ଦାନ କରେ । ତେଣୁ ବିଧାତା ସେଥିରେ ସୁନାମୁହିଁ ଖଂଜିଛି । ଦକ୍ଷିଣ ହସ୍ତଠାରୁ ବାମ ହସ୍ତ ଦୁର୍ବଳ । ନାରୀ ନାୟିକା ବାମା; ପୁରୁଷ ନାୟକ ଦକ୍ଷିଣ ।

ବାଁ ହାତରେ ଛଅଞ୍ଚିବା କାମ ହେଉଛି । ସେ ବାମାଙ୍ଗ ହେତୁ ବାମାଙ୍ଗୀ ଭାବରେ କୃପଣ ହୋଇ ସଞ୍ଚୟ କରିବାକୁ ଇଚ୍ଛୁକ ଥିବାରୁ ତାକୁ ବସ୍ତ୍ର ଛଞ୍ଚିବା କାର୍ଯ୍ୟ ବିଧାତା ଦେଇଛି । କିନ୍ତୁ ଦକ୍ଷିଣ ହସ୍ତ କହେ ମୁଁ ସୁନା ହିଆ ଅର୍ଥାତ୍ ପରିଶ୍ରମ

ହାସ ମୁଁ ସୁନା ଦେଇପାରେ ବା ଧନ ଦାନ କରିଥାଏ । ପ୍ରକୃଷ୍ଟ ଧନ ଆଦାୟ କରିବା ହେଲା ମୂଳକଥା; ସୁତରାଂ ପରବର୍ତ୍ତୀ କଥା । ତେଣୁ, ଦକ୍ଷିଣ ହସ୍ତକୁ ବଧାଟା ସୁନାମୁଦରେ ଶୋଭିତ କରିଥାଏ । ଏତଦ୍ଦ୍ୱାରା କୃପଣ ଏବଂ ଦାତାର ଗୌରବ ସୂଚିତ ହୋଇଛି ।

ଏହା ରାଜାଙ୍କ ମନକୁ ବିଶେଷ କରି ଛୁଇଁବାରୁ ପଦ୍ମମଣି ଏକ ମୂଲ୍ୟବାନ ସ୍ୱର୍ଣ୍ଣ ମୁଦ୍ରିକା ସହିତ ପାଟପୋଡ଼ା ପୁରସ୍କାର ଲାଭ କରିଥିଲେ ।

ରାଜା ରଘୁନାଥ ମହେନ୍ଦ୍ର ବାହାଦୁର ପଦ୍ମମଣିଙ୍କୁ ପରେ ବୁଝାଇଥିଲେ ଯେ ଆପଣଙ୍କୁ ମୁଁ ଅପମାନ ଦେଇ ନ ଥିଲି । ଆପଣଙ୍କର ଆଶୁ କବିତ୍ୱ କପରି ଶୁଣିବି ସେଥିପାଇଁ ଏପରି ଅପମାନିତ କଥା କହିଥିଲି । ଏବେ ଆପଣ ତ ମତେ ଚଣ୍ଡାଳ ଭଳେ ଥୋଇଦେଲେ ।

# ୯୪—କୁଞ୍ଜବନେ ଜଗନ୍ନାଥ ନହେବ ଗୋସାଇଁ

ସେତେବେଳକୁ ଦଶପଲ୍ଲାର ତାଙ୍କ ଶଶୁର ଘରର ପ୍ରତିଷ୍ଠା ଲୋପ ପାଇଥିଲା । ଶାଶୁ ଶଶୁର କେତେଦିନୁ ମରି ଯାଇଥିଲେ । ପଦ୍ମମଣି ବାର୍ଦ୍ଧକ୍ୟରେ ଯାଇ ସେଠାରେ ପହଞ୍ଚିଲେ । ରାଜାଥିଲେ ମଧୁସୂଦନ ଦେଓଭଞ୍ଜ । ରାଜା ପଦ୍ମମଣିଙ୍କୁ ଆଦର କଲେ ନାହିଁ । ତେଣୁ ସେ ବ୍ୟଥିତ ହୋଇ ଘରେ ଉଣ୍ଡୁଥିଲେ । ସେହି ସମୟରେ ନୂତନ ଜଗନ୍ନାଥ ମୂର୍ତ୍ତି ଗଠିତ ହୋଇ ମନ୍ଦିରରେ ବିଜେ ହେବାର ବ୍ୟବସ୍ଥା ସେଠାରେ ରଜା କରାଉଥିଲେ । କାରଣ ନୀଳକଣ୍ଠ ଶିବଙ୍କ ବ୍ୟତୀତ ସେଠାରେ ଅନ୍ୟ ଦେବତା ନଥିଲେ ।

ଜଗନ୍ନାଥଙ୍କର ପ୍ରତିଷ୍ଠା ବିଧି ଶେଷହେବା ପରେ ଜଗମୋହନ ମଣ୍ଡପରେ ଠାକୁର ସିଂହାସନକୁ ବିଜେ ହେଲେ । ରୁନ୍ଧା ହେବାର କଥା । ରୁନ୍ଧା ହେବା କାର୍ଯ୍ୟଟିରେ ତ୍ରୁଟି ରହିବାରୁ ଠାକୁର ଊର୍ଦ୍ଧ୍ୱମୁଖା ହେଲେ । ଯେତେ ସକଳ କଲେ ମଧ୍ୟ କେହି ସମାନ ଭାବରେ ମୁଖକୁ ରଖି ପାରନ୍ତି ନାହିଁ । ପଦ୍ମମଣିଙ୍କର ସଳାର ପୁଅ ଦୁତୁରଟିଏ କହିଲା, ଆମର ପିଉସା ଆସିଛନ୍ତି । ସେ ନୂଆଗଡ଼ ଜଗନ୍ନାଥଙ୍କ ଚିତ୍ରକାର । ସେ ଏହା କରିଦେବେ । ଖୋଜା ପଡ଼ିଲା ପଦ୍ମମଣିଙ୍କୁ । ରଜା ନିଜେ ଶ୍ରୀ ମୁଖରେ ଆଜ୍ଞା ଦେଲେ ।

ତହୁଁ ପଦ୍ମମଣି ପୂର୍ବ ଅପମାନ ମନରେ ରଖି ଚନ୍ଦନ କଲା ଏବଂ ଅପସର ମାଣ୍ଡି ଖଞ୍ଜି ଠାକୁରଙ୍କର ପ୍ରସନ୍ନ ମୁଖ ଅଙ୍କାଇଁ ଦେଲେ । ଏହାପରେ ଠାକୁରଙ୍କର ନୀତି ଆରମ୍ଭ ହେଲା । ରାଜା ସ୍ୱହସ୍ତରେ ଧୂପ ଦୀପ ଦେଲେ । ଆଳଟ ଚାମର ସେବା କରି ପ୍ରଣାମ କରି ଯେତେବେଳେ ହାତଯୋଡ଼ ଛିଡ଼ାହେଲେ, ପଦ୍ମମଣି ପଛରୁ ଗାଇଲେ;—

କୁଞ୍ଜବନେ ଜଗନ୍ନାଥ ନହେବେ ଗୋସାଇଁ
ରଥବୋଲି ଭଣ୍ଡି ନେବେ ଶଗଡ଼େ ବସାଇ ।
ଭୋଗ ବୋଲି ଖଞ୍ଜି ଦେବେ କଡ଼ୁକଆ ମୂଆଁ
ଧୂପ ବୋଲି ମାଡ଼ିଦେବେ ନିଆଁ ଖୁଣ୍ଟା ଧୂଆଁ ।

ରାଜାଙ୍କ ସନ୍ଦେହ ତୁଟିଯାଇଥିଲା । ଆଉ ପରବାଏ କ'ଣ ? ରଜା ଏତକ ଶୁଣି ସାଥିରେ ତାଙ୍କ ନେଇଗଲେ ଏବଂ ତାଙ୍କପ୍ରତି ଭୁଲ କ୍ରମେ ଅନାଦର କରାଯାଇଥିବା ପ୍ରକାଶ କରି ବହୁ ଅର୍ଥ, ବସ୍ତ୍ର ଆଦି ଦାନକଲେ ଏବଂ କହିଲେ;—

"ଯଦୁମଣି ! ତୁମ୍ଭେ ତ କବି ଅଛ । ଆମ୍ଭ ନାମରେ କେତେ ଗୁଡ଼ିଏ ଚଉପଦୀ କରନ୍ତ ନାହିଁ ?"

ଯଦୁମଣି କହିଲେ;—

"ଆଜ୍ଞା, କାଲି ସକାଳୁ ପଣେ ଚଉପଦୀ ଆଣିଦେବି ।"—ଏତିକି କହି ଆପଣା ବସାରେ ପଣେ ଶାଳୁଆ ପଥ ଟୋଲି ତିଆରି କରି ରାଜାଙ୍କ ନିକଟକୁ ପଠାଇଦେଲେ ।

ରାଜା ଚଉପଦୀ ଅର୍ଥ ବୁଝିପାରି ମନେ ମନେ ହସି ସେ ଥର କିଛିଦିନ ତାଙ୍କୁ ରଖାଇ ଶେଷରେ ପଥଖର୍ଚ୍ଚ ଦେଇ ବିଦାୟ କଲେ ।

## ୯୫—ଖଣ୍ଡପଡ଼ା ଭ୍ରମରବର

ଯଦୁମଣିଙ୍କର ଏକମାତ୍ର କନ୍ୟା ରମାର ଶାଶୁଘର ଖଣ୍ଡପଡ଼ା ଗଡ଼ରେ । ତାର ମଧ୍ୟ ସେଠାରେ କେହି ନଥିଲେ । ତଥାପି ମହିମାମେରୁ ନାମକ ଦେବତା ପ୍ରତିଷ୍ଠା ହେଉଥିବାର ଶୁଣି ଯଦୁମଣି ସେଠାକୁ ଯାଇଥିଲେ । କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ଭ୍ରମରବର ରାୟ ରାଜାଥିଲେ । ସେ ଯଦୁମଣିଙ୍କୁ ଅତି ସମାଦର କରିଥିଲେ ।

ମହିମା ମେରୁଙ୍କ ପ୍ରତିଷ୍ଠା ଶେଷରେ ଠାକୁରଙ୍କ ବଳିତ ଭୋଗ ଯଦୁମଣିଙ୍କ ନିକଟକୁ ପଠାଇବାକୁ ରାଜା ହୁକୁମ ଦେଇଥିଲେ । ସେବକମାନେ ବଶିଷ୍ଟ ବଂଶୀ ବୋଲି ଖାତିର ନକରି ଯେଉଁ ବଳିତ ମେଲାରେ ଥିବା ବାଉଁଙ୍କ ପାଖରେ ହୁଏ, ତାହିଁରୁ କିଛି ପଠାଇ ଦେଇଥିଲେ ।

ରାଜା ଏହାଶୁଣି ସମସ୍ତ ବୃତ୍ତିଗଲେ ଓ କ୍ରୋଧରେ ଅଗ୍ନିକ ହୋଇ ପଣ୍ଡାଙ୍କୁ ନିକାଲି ଦେଇ କଠୋର ଅର୍ଥଦଣ୍ଡ ଦେଲେ । ଚର୍ଚ୍ଚା ବେଦେହରୀକୁ ଧମକ ଖର୍ଚ୍ଚା ନ ହେବାରୁ ବେଭାରୀକୁ ପଚିଶି ପାହାର ବେତ ସଜା ଦିଆଯିବାକୁ ହୁକୁମ ହେଲା । କିନ୍ତୁ ପଦ୍ମମଣିଙ୍କ ନିବେଦନରେ ସେ ସେଥିରୁ କ୍ଷମା ପାଇଲା ସତ, ବେଶୀଘାତ ପାହାରେ ଖାଇ ଶହେ ଟଙ୍କା ଜରିମାନା ଦେଲା । ଲଜ୍ଜିତ ରାଜା ପଦ୍ମମଣିଙ୍କୁ ବହୁ ଅର୍ଥ ଦେଇ ବିଦାୟ ଦେଲେ, ଏବଂ କହିଲେ ତୁମେ ଯେପରି ଚନ୍ଦନ ଯାତ୍ରାକୁ ଆସି ରୁମ୍ଭରେ ଭେଟହେବ ।

## ୯୬—ହାଡ଼ୁପାତ୍ର ପୁଅ ରୀତି ଏସନ

ସେଥର ଫେରିଯିବା ପରେ ରଜାଙ୍କ ପାରିଷଦମାନଙ୍କ ମଧ୍ୟରେ ପଦ୍ମମଣିଙ୍କ ବିରୁଦ୍ଧରେ ନାନା କଥା ଆଲୋଚନା ହେଲା । କିନ୍ତୁ ରାଜା କହିଥିବାରୁ ପଦ୍ମମଣି ଚନ୍ଦନଯାତ୍ରାକୁ ଆସି ପହଞ୍ଚିଲେ । ଏଥର ସଭା ବସାରେ କୌଣସି ତ୍ରୁଟି ନ ଥାଏ । କିନ୍ତୁ ରଜାଙ୍କ ପାତ୍ର ମନ୍ଦରବେବର୍ତ୍ତା ତାଙ୍କୁ ଏକାନ୍ତ ଅପମାନିତ କଥା କହୁଥିଲେ । ଏମନ୍ତକି କର୍ଣ୍ଣିଲୋ ନୀଳମାଧବଙ୍କ ଦର୍ଶନ ଲାଗି ରାଜା ହାତୀ ଦେବାକୁ ଆଜ୍ଞା ଦେଇଥିଲେ । ପାହେ ହାତୀ ସବୁ ବେମାରିଆ କହି ପଦ୍ମମଣିଙ୍କୁ ସେ ସୁଯୋଗରୁ ବଂଚିତ କଲେ । ଏପରି ବହୁ ଘଟଣାରେ ପଦ୍ମମଣି ଲଜ୍ଜିତ ହେଲେ ।

ବ୍ୟଥିତ ପଦ୍ମମଣି ଇଚ୍ଛାପୁର ନାମକ ଗ୍ରାମକୁ ଯାଇ ରାଜାଙ୍କର ଗୋସେଇଁ ମହାପ୍ରଭୁଙ୍କ ସହିତ ସାକ୍ଷାତ କରିଥିଲେ । ଗୋସେଇଁ ମହାପ୍ରଭୁ ଅତି ଭଦ୍ର ଏବଂ ବରେଣ୍ୟ ପଣ୍ଡିତ ଥିବାରୁ ପଦ୍ମମଣିଙ୍କୁ ଯଥାର୍ଥ ମର୍ଯ୍ୟାଦା ଦେଇ ପରମାର୍ଥ ତତ୍ତ୍ୱ ସମ୍ବନ୍ଧରେ ବହୁ ଉପଦେଶଦେଇସାରି ମନ୍ଦର ବେବର୍ତ୍ତାର ପରିଚୟ ଭଲକରି ଦେଇଦେଲେ । ପଦ୍ମମଣି ସେଠାରୁ ଫେରି ସପାରିଷଦ ରାଜାଙ୍କୁ ରାଜସଭାରେ ଏହି କବିତାଟି ଶୁଣାଇଲେ —

ହାଡ଼ୁପାତ୍ର ପୁଅ ରୀତି ଏସନ
ଗାଡ଼ୁପାତ୍ରେ ନ ମିଳଇ ବାସନ
ନାଡ଼ୁ ଅଛୁ କଣ୍ଠେ ଗଜମୁକୁତା
ତାଡ଼ୁ ଅଛୁ ମହା ଶମ୍ଭୁ ଦେବତା
ପାଡ଼ୁଛୁ ପାଟରେ
ମାଡ଼ୁଛୁ ଜର ଜୋତା କୁ ବାଟରେ ।

ଉକ୍ତ ମନ୍ଦର ବେବର୍ତ୍ତା ଏକାନ୍ତ ଦରିଦ୍ର ହାଡ଼ୁପାତ୍ର ନାମକ ଏକ ଚଷାର ପିଲା । ସେ ରଜାଙ୍କ ଅନୁଗ୍ରହରେ ଅତି ବଡ଼ଲୋକ ହୋଇଥାଏ ।

କବିତାର ଅର୍ଥ ହେଲା:—

ଅତି ଦରିଦ୍ର ହାଡ଼ିପାଣ ପୁଅର ସଂକ୍ଷିପ୍ତ କଥାର ଶୁଣିବା ହେଉ ! ଯେ ଦିନେ ବାସନ ନ ମିଳିବାରୁ ଗାଡ଼ ଖୋଳି ପଥ ପକାଇ ତାକୁ ପାଣ ସ୍ୱରୂପ କରି ଖିଆପିଆ କରୁଥିଲା, ସେ ଆଜି କାନରେ ଗଜମୋତି ହଲଉଛି । ଅତି ପୂଜ୍ୟ ମହାନ ଦେବତା ଶମ୍ଭୁଙ୍କୁ ମଧ୍ୟ ଡାଡ଼ିବାକୁ କୁଣ୍ଠାବୋଧ କରୁନ, ଅତି ପୁରାତନ ପୂଜ୍ୟ ଲୋକଙ୍କୁ ଅପମାନ ଦେଉଛି ଏବଂ ପାଟ ପିନ୍ଧିବାରୁ ଆନନ୍ଦରେ ପାଦ୍ଧ ପକାଉଛି । ଜରିଜୋତା ବାଟରେ ପିନ୍ଧି ଚାଲୁଅଛି ।

ସଭାସଦ ପଣ୍ଡିତମାନେ ହସି ହସି ଗଡ଼ିଗଲେ । ଖଣ୍ଡପଡ଼ାରେ ସେତେବେଳେ ବହୁ ପଣ୍ଡିତଙ୍କର ସମାଗମ ହେଉଥିଲା । ରାଜା ମନ୍ଦରଙ୍କୁ ପଦ୍ମମଣିଙ୍କ ପ୍ରତି କରିଥିବା ଅପମାନ ଲାଗି ପ୍ରାୟଶ୍ଚିତ୍ତ କରିବାକୁ ଦ୍ୱି ଅଷ୍ଟୋତ୍ତର ଶତ ମୁଦ୍ରା ଅର୍ଥଦଣ୍ଡ କଲେ । ଗୋଟିଏ ଅଷ୍ଟୋତ୍ତର ଶତମୁଦ୍ରା ପଣ୍ଡିତମାନେ ପାଇଲେ ଏବଂ ଗୋଟିଏ ଅଷ୍ଟୋତ୍ତର ଶତମୁଦ୍ରା ପଦ୍ମମଣି ପାଇଲେ ।

ମନ୍ଦର ସେହିଦିନୁଁ ମଣିଷ ହୋଇଗଲେ । ପଦ୍ମମଣିଙ୍କୁ ଏହା ଫଳରେ ସମସ୍ତେ ଧନ୍ୟ ଧନ୍ୟ କଲେ ।

## ୯୬—କୁଂଜବିହାରୀ ଭ୍ରମରବରରାୟ

ପଦ୍ମମଣି ଜୀବନର ଅସ୍ତ ସମୟରେ ଖଣ୍ଡପଡ଼ାର ନବୀନ ରାଜା କୁଂଜବିହାରୀ ସିଂହ ମର୍ଦ୍ଦରାଜ ଭ୍ରମରବର ରାୟଙ୍କୁ ନୀଳମାଧବ ମନ୍ଦିର ଦେଖି ନ ଥିବା କଥା ଲେଖି ପଠାଇ ଥିଲେ । ତେଣୁ ରାଜାଙ୍କ ଆହ୍ୱାନରେ ସେଠାକୁ ଆସି ବହୁ ସମ୍ମାନ ଲାଭ କରିଥିଲେ । ରାଜାଙ୍କ ସହିତ ନୀଳମାଧବ ମନ୍ଦିର ଦର୍ଶନରୁ ଫେରି ତାଙ୍କ ବ୍ୟବହୃତ ପାଦୁକାର ଚୂଡ଼ ଦୁଇଟିର କାରୁକାର୍ଯ୍ୟ ଦେଖି ଆନନ୍ଦିତ ହୋଇ ତହିଁରେ ବାରମ୍ବାର ଦୃଷ୍ଟି ଦେବାରୁ ରାଜା ପଚାରିଥିଲେ—

"ପଦ୍ମମଣି ! କଣ ଦେଖୁଛ ? କେଉଁଠି ଲକ୍ଷ୍ୟ ରଖିଛ ?" ପଦ୍ମମଣି ବରେଣ୍ୟ ବହୁ ପଣ୍ଡିତଙ୍କ ସମକ୍ଷରେ ଏହି କବିତାଟି ଗାଇ ମନ ଏକାନ୍ତ ରଂଜିତ କରିଥିଲେ ।

**ନୀଳମାଧବ-ନିଳୟ-ଧାରୀଧର କ୍ଷତ୍ର ସ୍ଥ କୁଳ କମଳାଙ୍କ**
**କୁଞ୍ଜବିହାରୀ କୁଞ୍ଜରାଶ ଶ୍ରୀମର୍ଦ୍ଦ-ରାଜ ଭ୍ରମବର ରାଜାଙ୍କ**
**ପଦାବ୍ଜ**
**ଧାମ ରମ୍ୟରମା ହୀରକ**
**ତାଟଙ୍କ ଶଂକା ଅଙ୍କୁରାଏ ପାଦୁକା ଦନ୍ତୀ ଦନ୍ତ ଚୂଳ ଯୋଡ଼କ**

# ୯୮—ଅଶୁଭରେ ଶୁଭ ହୋଇଲା ଦେଖା

ନୂଆଗଡ଼ ରାଜା ଲଡ଼ୁକେଶ ମାନଧାତାଙ୍କ ସମୟରେ ଥରେ ପ୍ରଜାମେଳ ହେଲା । ସେଥିପାଇଁ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ହରମୋହନ ଲାଲ ନାମକ ଜଣେ ଅଫିସର ବିଚାର ଲାଗି ଆସିଥିଲେ । ଲାଲ ମହାଶୟ ବିଶିଷ୍ଟ ଲୋକମାନଙ୍କ ଠାରୁ ସାକ୍ଷ୍ୟ ନେଉଥିଲେ । ଲଡ଼ୁକେଶ ଯଦୁମଣିଙ୍କର ପ୍ରିୟତମ ରାଜାବନାସ୍ପକ ମାନଧାତାଙ୍କର ନାତି ଅଟନ୍ତି । ତା ସତ୍ତ୍ୱେ ସେ କୌଣସିକଥା ନ ଲୁଚାଇ ପ୍ରକୃତସତ୍ୟ କବିତା ଛାନ୍ଦରେ କହିଥିଲେ ।

ଗୋଡ଼ି ଗାଡ଼ ସଂସର୍ଗରେ ଯେ ପଡ଼ୁ
ତାଙ୍କର ସୁନାଖଡ଼ୁ ଚଢ଼ୁ ପଡ଼ୁ
ଅଶୁଭରେ ଶୁଭ ହୋଇଲା ଦେଖା
ତାଙ୍କର ଆଢେଣି ପାଲଙ୍କି ଫଖା
ଏହି ସଙ୍କୋଚକୁ କହେ ଯେ
ଛତ୍ରା କାର ଲଙ୍ଗ ଉଭୟ ମେଦନୀ
ହୋଇଗଲା ହତଶିରି ଯେ,

ଲଡ଼ୁକେଶ ଅତି ଶ୍ରେଷ୍ଠ ଲୋକମାନଙ୍କୁ ଅତି ବଡ଼ କରି ଦେଇ ଥିଲେ । ତେଣୁ ସେମାନେ ରାଜ୍ୟରେ ଶୋଷଣ ଅତ୍ୟାଚାର କରାଇବା ଫଳରେ ଏହି ମେଳ ପ୍ରକୃତରେ ହୋଇଥିଲା ।

କବିତାର ଅର୍ଥହେଲା—

ଯେଉଁମାନେ ନିଜ ଗୋଡ଼କୁ ନିଜର ଗାଣ୍ଡିରେ ପୂରାଇ ଲୁଗା ବୁଣନ୍ତି ସେଇ ତନ୍ତିମାନେ ରାଜ ଅନୁଗ୍ରହରୁ ମୁଖ୍ୟହୋଇ ସୁନାଖଡ଼ୁ ପିନ୍ଧି ବଡ଼ଲୋକହେଲେ, ପିଠି ଘଟ ଘୋଡ଼ା ଚଢ଼ିଲେ । ପୁନଶ୍ଚ ଶୁଭ ଅନୁକୂଳରେ ଯେଉଁମାନେ ଅଶୁଭ ବୋଲି ଚିହ୍ନିତ ହୁଅନ୍ତି ସେହି ତେଲି ମାନଙ୍କୁ ରାଜାଙ୍କପୁ ପିଲରେ ଆଢେଣି, ପାଲିଙ୍କି, ଆଲଟ ଫଖା ବ୍ୟବହାର କରିବାକୁ ଦିଆଗଲା । ତାରି ଫଳରେ ଏହି ଜଘନ୍ୟ ନୀଚଲୋକଙ୍କ ଅତ୍ୟାଚାରରେ ସ୍ୱୟଂଭୂ ଛତ୍ରାକାର ଲଡ଼ୁବାବା ଲିଙ୍ଗାଧିଷ୍ଠାନ ଏହି ନୂଆଗଡ଼ ରାଜ୍ୟ ହତଶିରି ହୋଇଗଲା । ସମ୍ଭ୍ରାନ୍ତ ଲୋକେ ବେଳୁଁବେଳ ଅତ୍ୟାଚରିତ ହେବାରୁ ଏଦଶା ଘଟିଲା ।

ଲାଲ ମହୋଦୟ ଏହା ଜାଣିବା ପରେ ଆଉ ଅଧିକ ତଦନ୍ତ ନକରି ମେଳିର ସଙ୍ଘ ଏକମାତ୍ର କାରଣ ନିର୍ଦ୍ଦେଶ କରିଥିଲେ ।

# ୯୯—ଆଠଗଡ଼ ତ ଖୋଜିଲିଣି—

ଯେତେ ଦିନ ଗତ ହେଉଥିଲା, ଯେତେ ବୟସ ବଢ଼ିଯାଉଥିଲା ତଥାପି କବି ଯଦୁମଣି ତାଙ୍କର ଜନ୍ମଭୂମି ଆଠଗଡ଼ର ମମତା ତ୍ୟାଗ କରି ନଥିଲେ । ସେ ଟିକଏ ସୁବିଧା ପାଇଲେ ତାଙ୍କ ସାଇ, ଗଡ଼ର କେତକୀ ଝର ଶିବଲିଙ୍ଗ ମନ୍ଦିର ମାନ ଦେଖି ଆସୁଥିଲେ।

ଅନେକ ସମୟରେ ଲୋକେ ପଚାରୁଥିଲେ—ଆଠଗଡ଼ରୁ କେବେ ଫେରିବେ ? କେତେ ଦିନ ରହିବେ ? ଆଠଗଡ଼ରୁ କଣ ଆଣିଲେ ? ଆଠଗଡ଼ରେ ଆପଣଙ୍କର ଚହ୍ଲାଜଣା ଆଜି କଏଁ କଏଁ ଅଛନ୍ତି ? ସେଠାରେ ଆଉ କଣ ଆକର୍ଷଣ ରହିଛି ।

କବି କହୁଥିଲେ– ଯେଉଁ ମୃତ୍ତିକା ଛୁଇଁ ଜନ୍ମିଥିଲି ତା ଗନ୍ଧ, ରୂପ, ସ୍ୱାଦ ଏବେ ମଧ୍ୟ ମୁଁ ଭୁଲି ପାରିନି । ନିରନ୍ତର ସେଇ ଭୂଇଁର ଆକର୍ଷଣ ମୋତେ ଟାଣୁଛି ।

ତାଙ୍କ ଭାର୍ଯ୍ୟା କହନ୍ତି—ଗଲି ଯେ କେହି ତ ତୁମକୁ ପଚାରି ନାହାନ୍ତି, କାହିଁ ଏତେ ଧାଇଁଛ ଭଲା ?

ତଥାପି ତାଙ୍କର ସେ ଆକର୍ଷଣ ତୁଟୁ ନ ଥିଲା । ବାର୍ଦ୍ଧକ୍ୟ ଯାଏ ହିସ କାନ୍ଧରେ ଗଣ୍ଠି ବାନ୍ଧ ପକାଇ ଅବକାଶ ହେଲେ ବେରେ ପକାଇ ଆସୁଥିଲେ ଏବଂ ତାଙ୍କ ଶୈଶବର ଲୀଳାଭୂମିର ଗୌରବ ଗାଇ ବସୁଥିଲେ ।

ଋଣ ଯୋଗୁଁ ଆଠଗଡ଼ ବନ୍ଧକ ହୋଇଗଲା । ଖଲିକୋଟ ରାଜା ତାହା କିଣିଲେ । ଆଠଗଡ଼ର ସେ ପୂର୍ବ ସୌଭାଗ୍ୟ ସବୁ ସରି ଯାଇଥିଲା । ତଥାପି କବି ଯାଉଥିଲେ । କିନ୍ତୁ ମୃତ୍ୟୁର କିଛି ଦିନ ପୂର୍ବରୁ ସେ ନରସିଂହପୁର ଯାଇ ମନୋଦୁଃଖରେ ଫେରି ଆସି ପିଣ୍ଡାରେ ବସିଥିଲେ । ଜଣେ ତାଙ୍କର ପ୍ରିୟ ଲୋକ ଧର୍ମ୍ମ ସାନ୍ତରା ପଚାରିଲେ 'କହୋ ମହାପାତ୍ରେ ! ଆଠଗଡ଼ ଯିବ ନାହିଁକି ?

ଯଦୁମଣି ହଠାତ୍ କହିଲେ ଆଠଗଡ଼ ତ ଖୋଜିଲିଣି । ଆଉ ଆଠ-ଗଡ଼ ଯିବି କାହିଁ ?

'ନିକଟାଇବ ଦୃଶ୍ୟନ୍ତେ କୃତାନ୍ତ ନଗରସ୍ଥ ଦ୍ରୁମା' ତାଙ୍କୁ ମୃତ୍ୟୁଚିହ୍ନ ଦିଶି ଯାଇଥିଲା । ପରେ ସେ ତାର କେତୋଟି ଦିନପରେ ମୃତ୍ୟୁପୁରକୁ ଯାତ୍ରା କରିଥିଲେ ।

# ୧୦୦—ନରସିଂହପୁର ହରିଚନ୍ଦନ ମହାପାତ୍ର

୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷ ବର୍ଷ ଦାରିଦ୍ର୍ୟରେ ବ୍ୟଥିତ ହୋଇ କବି ୮୫ ବର୍ଷ ବୟସରେ ମୃତଦାର ହୋଇ ବିଭିନ୍ନ ରାଜ୍ୟକୁ କିଛି ଧନ ସାହାଯ୍ୟ ମାଗିଥିଲେ । କିନ୍ତୁ କୌଣସିଠାରୁ ଉତ୍ତର ନ ପାଇ ଶେଷକୁ ନିରୁପାୟ ହୋଇ ତିଗିରିଆ ମାନପୁର, ନିଜର ସଶୁରଘରକୁ ବହୁ କଷ୍ଟରେ ଆସିଲେ । ସଶୁ କମ୍ପା ଶାଳୀ ସେତେବେଳେ ଜୀବିତ ନ ଥିଲେ । ପୁତ୍ତୁରାମାନେ ସମାଦର କଲେ । ସେମାନେ ମଧ୍ୟ କଷ୍ଟରେ ଥାନ୍ତି । ତିଗିରିଆ ରଜା ହରିହର ଚମୂପତି ଯତ୍‌ସାମାନ୍ୟ ଧନ ଦେଲେ ଏବଂ ନିଜର ପ୍ରିୟତମା କନ୍ୟା ନରସିଂହପୁର ପାଟ ମହାଦେଈ ଅଶେଷ ସଦ୍‌ଗୁଣ-ସମ୍ପନ୍ନା ରୂପ କଳ୍ପଲତା ରତ୍ନମାଳୀଙ୍କୁ ଖଣ୍ଡିଏ ଚିଠି ଲେଖି କବିଙ୍କ କଥା ନବୀନ ରାଜାଙ୍କ ଛାମୁଁରେ ଜଣାଇଁ ବିଶେଷ ଅର୍ଥ ସାହାଯ୍ୟ କରିବାକୁ ଅନୁରୋଧ କଲେ । କବି ସାତକୋଶ ପଥ ବହୁକଷ୍ଟରେ ଅତିକ୍ରମ କରି କୃଷ୍ଣପୁର ନାମକ ଗ୍ରାମଠାରୁ ରାହିଥାଇଁ ଚାଲିଆସି ହିବାର୍ଦ୍ଧରେ ନରସିଂହପୁର ଗଡ଼ରେ ପହଞ୍ଚିଲେ ।

ସେତେବେଳେ ରଜା ଥିଲେ ଯୁବକ ବ୍ରଜସୁନ୍ଦର ମାନସିଂହ ହରିଚନ୍ଦନ ମହାପାତ୍ର । ତାଙ୍କର ବାପା ଦେଈ ୧୮୬୨ରେ ସ୍ୱର୍ଗାରୋହଣ କରିଥିଲେ । ମା ମଧ୍ୟ ନ ଥିଲେ । ଭିଖାରି ରାୟଗୁରୁ ନାମକ ଜଣେ ବ୍ରାହ୍ମଣ ଭାଗବତ ପଣ୍ଡିତ ରାଜାଙ୍କର ଅତି ପ୍ରିୟ ଥିଲେ । ରାଣୀ ରାଜାଙ୍କଠାରୁ ଏକାନ୍ତ ଶାସ୍ତ୍ରକୁଶଳା ହେତୁ ଏମନ୍ତକି ରାୟଗୁରୁ ମଧ୍ୟ କେବଳ ଭାଗବତ ଅର୍ଥ କରିବା ଛଡ଼ା ନୈଷଧ, ରଘୁବଂଶ, ଭଟ୍ଟି ଆଦି କାବ୍ୟ ଅର୍ଥ କରି ଜାଣୁନଥିବାରୁ ତା ଦ୍ୱାରା ଲାଞ୍ଛିତ ହେଉଥିବାରୁ ସେଠି ବିରୁଦ୍ଧ ବାତାବରଣ ଚାଲିଥିଲା ।

ଯଦୁମଣି ସିଂହଦୁଆରେ ଉପସ୍ଥିତ ହୋଇ ଚିଠି ଖଣ୍ଡିକ ଭିତରକୁ ପଠାଇଲେ । କିନ୍ତୁ ତାହା ରାଣୀଙ୍କ ଛାମୁଁରେ ଦିଆ ନଯାଇ ରାୟଗୁରୁଙ୍କ ଷଡ଼ଯନ୍ତ୍ରରେ ଲୁଚାଇ ଦିଆଗଲା । ଏମନ୍ତକି ଏହି ଦୁର୍ଦ୍ଦାନ୍ତ ବ୍ୟକ୍ତି ସହିତ ଦେଖା ଯେପରି ରାଜାଙ୍କର ନ ହେବ ତାର ବ୍ୟବସ୍ଥା କରାଗଲା । କାରଣ ସେତେବେଳେ ପୁରାତନ ମନ୍ତ୍ରୀମାନେ ତଡ଼ା ଖାଇ ଜଣେ ମୂର୍ଖ ପଣ୍ଡା ବ୍ରାହ୍ମଣ ମନ୍ତ୍ରୀ ହୋଇଥିଲେ ।

ଯଦୁମଣି 'ଦେଖା ହେବ ନାହିଁ' ଏଭଳି ନିର୍ଭର ଜବାବ ଶୁଣି ରାଜଦ୍ୱାରରୁ ଦୁଃଖରେ ଫେରିଆସି ବଜାରରୁ କିଛି ସଉଦା କଲେ । ପୂର୍ବସୀମାରେ ଥିବା ଗୁଣ୍ଡିଚା ମଣ୍ଡପରେ ମୁଠେ ରୋଷେଇ କରି ରାତି ଯାପନ କରି ଫେରିଯିବାକୁ ସ୍ଥିର କରି ଅଣ୍ଟାଆଡିଏ ସଂସ୍କାର କଲେ । ଜାଳଦେଇ ରୋଷେଇ ଆରମ୍ଭ କଲେ ।

ସଞ୍ଜ ସମୟକୁ ଗଡ଼ର ଏକ ବ୍ୟଙ୍ଗଲକ୍ଷୀ ଜଗନ୍ନାଥଙ୍କ ପୂଜକ ପଣ୍ଡା ପିଣ୍ଡି ସାନ୍ତର ସ୍ନାନଲାଗି ହନୁମନ୍ତକୁ ଗଲେ । ବାର୍ଦ୍ଧକ୍ୟ ହେତୁ ରାତି ଯାପନରେ

ଏକାକୀ ନକାଞ୍ଚନରେ ରହିବାଲାଗି ମନକୁ ଭାବ ଭୁବ ପଦ୍ମମଣି ଉକ୍ତ ପ୍ରୌଢ଼ ବଂଶଜଙ୍କୁ ଭଦ୍ରଲୋକ ଭାବ ପଚାରିଥିଲେ—ଆଜ୍ଞା, ଆପଣଙ୍କ ଗୁଣ୍ଡିଚା ବାଡ଼ିରେ ଚୌକିଆ ଜଗୁଆଳର ବନ୍ଦୋବସ୍ତ ଅଛି କି ?

ସାମନ୍ତେ ପଦ୍ମମଣି ଆସିଥିବାର ଶୁଣିଥିଲେ ଏବଂ ସେଇ ବୋଲି ମଧ୍ୟ ଚିହ୍ନିଥିଲେ । ତେଣୁ କହିଲେ—ଶଙ୍କାରେ ! ଏଠି ଚିଜିକଥା ନ ଥାନ୍ତି, ଛୁଆ ଆଙ୍ଗୁଳା ଆଠ ଆଙ୍ଗୁଳିଆ ଥାନ୍ତି । ଏହା କହି ସେ ପୁଷ୍କରିଣୀକୁ ଚାଲିଗଲେ । ଜିଫବାସୀ ପଦ୍ମମଣି ଏହି ବୟସରେ ଏପରି ଅସମୟରେ ପୁନିଶ୍ଚ ଶିଳାଦ୍ୱାରରେ ସଣ୍ଢ୍ୟ ମନୋବୃତ୍ତିରେ ଏପରି ବସ୍ତ ଥିଲେ ଯେ ତା’ ଶୁଣି ମାରିବି ରହିଲେ । ତାଙ୍କର ଜନଶେଷରେ ଗଡ଼ଦାଣ୍ଡରେ ଆଶ୍ରୟ ଟିକେ ପାଇ ନଥିବାରୁ ମନ ନିର୍ଗୁଣ ହୋଇପଡ଼ିଲା ।

ନରସିଂହପୁର ରାଜାଙ୍କ ସଙ୍ଗେ ଦେଖା ନ ହେବାରୁ ସେ ନିଜର ପ୍ରୌଢ଼ି ରକ୍ଷା କରିବାକୁ ଓ ନିଜର ଧୈର୍ଯ୍ୟ ରକ୍ଷା ପାଇଁ ମନେ ମନେ କହି ଚାଲିଥାନ୍ତି—ଏ ନୃପତି ସାଆନ୍ତଙ୍କ ଦ୍ୱାର ଆମପାଇଁ ମନା ହେଲା । ହେଉ । ଏକ୍ଷି ଏଠି କି କୋଟିଏ ସାମନ୍ତ ନୃପତି ରହିଛନ୍ତି । ଅବଶ୍ୟ ସୁଯୋଗ ମିଳିବ । ନିଜ ଚିତ୍ତକୁ ସେ ଦମ୍ଭ ଦେଉଥିବାବେଳେ, ପୁଣି ପିଣ୍ଡ ସାମନ୍ତ ପଦଙ୍କ ଶୁଣିଲେ ସାଆନ୍ତ କଥା । ତେଣୁ ସେ ଅଟଞ୍ଚା ଭାଷାରେ କହିଲେ—

ଆହେ ମହାପାତ୍ରେ ! ତୁମର ଭଲ ସାନ୍ତ ଅଭାବ କାଆଁ ରହିବ ? ତୁମେ ଯାହା ଲଂଗଳ ଗାଣ୍ଡିରେ କଳାଟାଏ ମାରିଦେବ, ସେଇ ତୁମର ସାନ୍ତ ।

ପିଣ୍ଡ ସାମନ୍ତ ଏପରି କଥା କହି ଚାଲିଯିବା ପରେ ପଦ୍ମମଣି କିଛି ମନେ ଭାଳେ କେଜାଣି, ହାଣ୍ଡି ଭାଙ୍ଗି ଦେଇ ଚୌବେଇ ଜନକ ଫିଙ୍ଗି ଦେଇ ଚାଲିଲେ—

"ଏ ଯାତ୍ରା ଶୁଭଜନକ ନୁହେଁ । ହୁଏତ ବାଧ୍ୟ ହେଲେ ଏଠାରେ ଯାବତ ଯାପନ କଷ୍ଟପ୍ରଦ ଦୁଃଖପ୍ରଦ ହେବ । ତେଣୁ ପଦ୍ମମଣିଙ୍କର ତାଙ୍କ ସଂଗାତ ମାଲ୍ୟ ଚାଲିଲ ଗାଡ଼ିଆ ଗୋବିନ୍ଦପୁର ନୀଳକଣ୍ଠ ମିଶ୍ରଙ୍କ ଝିଅ ଲକ୍ଷ୍ମୀଙ୍କ କଥା ମନେ ପଡ଼ିଗଲା । ‘ଯାଦୃଶି ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ’ । ଲକ୍ଷ୍ମୀ ହରିଚନ୍ଦନପୁର ଶାସନରେ କେତେ ପୁରୁଷ ହେଲା ଦେଶାନ୍ତର ବହୁସ ଗୋଷ୍ଠୀପୂ ଖଣ୍ଡପତି ରାଜଗୁରୁଙ୍କ ବିଧବା ଭାର୍ଯ୍ୟା । ପଦ୍ମମଣି ଭାବୁଥିଲେ ସେ କଷ୍ଟପ୍ଲ ଚିହ୍ନି ପାରିବେ । ଲକ୍ଷ୍ମୀ ବିଧବା ଏଗାର ବେଳୁ ରାଜଗୁରୁ ସାମନ୍ତଙ୍କ ଘରେ ଅଛନ୍ତି ଯେ—ପିତୃସଦନ ଆଉ ଦେଖିନାହାନ୍ତି । କିନ୍ତୁ କି ଆଶ୍ଚର୍ଯ୍ୟ ସେ ପଦ୍ମମଣି ଆସିଥିବା ଜାଣି ଡକାଇ ନେଲେ । ପଦ୍ମମଣିଙ୍କ ବିଶେଷ ଶ୍ରଦ୍ଧା ପରିଚୟ ହେଲା । ତାଙ୍କର ଦୁଃଖ ଶୁଣି ସେ ମହାସମାଦରରେ ଗୃହରେ ସ୍ଥାନ ଦେଲେ । ରାଜୋଚିତ ଭାବରେ ମଧ୍ୟ ଖାଦ୍ୟ ପରିବେଷଣ କଲେ ।

ଯାହାଙ୍କ ଯୋଗୁଁ ଯଦୁମଣି ଲାଞ୍ଛିତ ହେଲେ, ତାଙ୍କଘର ନିକଟରେ ଥିବାରୁ ଯଦୁମଣି ଅନୁରୋଧ ନ ରଖି ରଥ ପାହାନ୍ତାରୁ ରାଜଗୁରୁ ମହାପାତ୍ରଙ୍କର ଛକଡ଼ ଶଗଡ଼ରେ ନଦୀ କୂଳକୁ ଯାଇ ସିଧାମଳାଠାରେ ପାରହୋଇ ଗୋଟିଏ ଗୋଟିଏ ଗ୍ରାମକୁ ବୁଲିଗଲେ । ଶୁଣାଯାଏ ସେକାଳେ ସେହି ଖଣ୍ଡିକ ଶଗଡ଼ ସେ ଅଞ୍ଚଳରେ ଥିଲା ଏବଂ ତାହା ସର୍ବସାଧାରଣଙ୍କର ଏପରି କି ଗ୍ରାମେ ଗ୍ରାମେ ଯାହାର ଲୋଡ଼ା ହେଉଥିଲା ସେ ବ୍ୟବହାର କରୁଥିଲା । ବାଟ ଖର୍ଚ୍ଚ ରାଜଗୁରୁ ସାନ୍ତାଣୀ ଲକ୍ଷ୍ମୀ ଦେବୀ ଯଥାସମ୍ଭବ ଦେଇଥିଲେ ।

ଏହିପରି ସେ ନିଜ ଘର ଇଟାମାଟି ପ୍ରଧାନ ସାହିରେ ପହଞ୍ଚି ଦୁଃଶ୍ଚିନ୍ତାରେ ଅସ୍ଥିର ହୋଇ ଉଠିଲେ । ନିରୁପାୟ ହୋଇ ମୋଟେ ଦୁଇଟି ଦିନପରେ ଅକସ୍ମାତ୍ ତିନିଟାବେଳେ ସ୍ନାନକରି ଗୃହଦେବତା ପୂଜା କରୁ କରୁ ପଚାରିଲେ— ଆଜି କି ତିଥି ? ନାତୁଣି କହିଲେ—ଆଜି ପରା ଶ୍ରୀଗୁଣ୍ଡିଚା ! ଅପରାହ୍ଣ ୪ଟା ବେଳେ ଠାକୁର ପହଣ୍ଡି ବେଳେ ହାୟହାୟ ସେ ଟଳିପଡ଼ିଲେ ।

ରାଜଗୁରୁଙ୍କ ପରିବାର ସହିତ ମହାଦେଈ ରତ୍ନମାଳୀଙ୍କର ଉତ୍ତମ ପରିଚୟ ରହିଥିଲା । ଯଦୁମଣିଙ୍କ ହାତରେ ତଗିରିଆ ବୁଢ଼ା ରଜା ଏଠାକୁ ପଠାଇଥିବା ଚିଠିକଥା ଗୁପ୍ତରେ ଶୁଣି ରାଣୀ ତାଙ୍କର ଗୋପମୀୟ ଚିଠି ଖବର ପାଇନାହାନ୍ତି, ଏଥିରେ ଏକାନ୍ତ ଦୁଃଖିତ ହୋଇ ରାଜାଙ୍କୁ ଜଣାଇଲେ । ବହୁ ତନାଘନାରେ ଚିଠି ପୁଣି ବାହାରିଲା । ରାଣୀ ମହୋଦୟା ରାଜାଙ୍କର ବିଶ୍ୱସ୍ତ ପାଖଲୋକ ବାସୁ ମତ୍ତଗଜସିଂହ ଦ୍ୱାରା ଏକ ବଂଶୋତ୍ତର ଏକଶତ ମୁଦ୍ରା ଯଦୁମଣିଙ୍କ ନିକଟକୁ ତୁରନ୍ତ ପଠାଇଲେ । ଦୈବ ଦୁର୍ବିପାକ ଯେ ତାଙ୍କର ଦଶାହ ଦିନ ଏହି ମୁଦ୍ରାତକ ଉପସ୍ଥିତ ହେବାରୁ ଏକ ଦଶା-ହରେ ବ୍ରାହ୍ମଣ ଭୋଜନ ଯଦୁମଣିଙ୍କ ମନୋମତ ଅନୁଯାୟୀ ହୋଇପାରିଥିଲା । ନଚେତ୍ ପାଞ୍ଚଦଶ ଜଣରେ ତାହା ସମାଧାନ ହୋଇଥାନ୍ତା । ଉକ୍ତ ତଗିରିଆ ଜେମା ରତ୍ନମାଳୀ ଯେ କି ନରସିଂହପୁରର ପାଟରାଣୀ ତାଙ୍କର ମନସ୍ୱୀତା ଓ ସାଧୁତା ଏହା ଫଳରେ ଚଉଦିଗରେ ବ୍ୟାପିଗଲା । କିନ୍ତୁ ଦୈବବିପାକ ଯେ ସେହି ରାଣୀ ପୂର୍ବୋକ୍ତ ପଣ୍ଡିତଙ୍କ ଷଡ଼ଯନ୍ତ୍ରରେ 'ପୁତ୍ର ଜନ୍ମକଲେ ରାଜାଙ୍କର ମୃତ୍ୟୁ ହେବ' ଏପରି ଭବିଷ୍ୟତ୍ ବାଣୀ ଦ୍ୱାରା ଏହାପରେ ସମଗ୍ର ଜୀବନ ନିର୍ବାସିତା ସୀତାଙ୍କ ପରି ବିବାସିତ ହୋଇଥିଲେ । ସେ କରୁଣ କାହାଣୀ ଏବେ ମଧ୍ୟ ଲିପିବଦ୍ଧ ହୋଇନାହିଁ ।



# ଚଉପଦୀ-ମାଳା

## ଭଜନ—୧

ନୀଳାଚଳ କଳାକର ! ସତ କି ଏ ମିଛ
ନେଲ ଯାହା ଦେଲ ତାହା
ଏଥକୁ କପାଳଁ ମହା—
ଦାତା ପଣେ ପତାକା ବାନ୍ଧଛ ? । ୦ ।

ଓଜଶୀଳ ଭୋଜଗଜ—
ଜୀବନ ହରଣେ ତେଜ
ଅର୍ପଣ କଲ କୃପଣ ନୋହି
ଗମ୍ଭୀର ଜଳେ କୁମ୍ଭୀର
ଗଜ ଗ୍ରହଣେ କୁମ୍ଭୀର
ଜୀବ ରକ୍ଷା କଲ କକ୍ଷାବନ୍ଧି । ୧ ।
ବଳ ବଳସ୍ଥ ବଳୀ ଙ୍କ
ଅକଳଙ୍କ ବଦ୍ଧାନ୍ତକ
ଦଳିତ କରରେ କରଥିଲ
ନମାଜ କର ରମାଙ୍କୁ
ଅକିଞ୍ଚନ ସୁଦାମାଙ୍କୁ
ବିପୁଳ ସମ୍ପଦେ ମଣ୍ଡିଦେଲ । ୨ ।

ଗୋକୁଳ କଳ-ଧଉତ
ଗଉରଙ୍ଗିଙ୍କ ମହତ୍ତ୍ୱ
ନେଇଥିବା ସକାଶରୁ କର
ଦ୍ରୁପଦ-ନୃପ-ନନ୍ଦନା
ମହତ୍ତ୍ୱ ହର ବେଦନା
ବିନାଶନେ ହେଲ ଧନ୍ୱନ୍ତରି । ୩ ।

ପାତକୀ—ମୁକୁଟ ଶ୍ରେଣୀ
ଶିରୋମଣି ଯଦୁମଣି
ମନ ତଳେ ନେଇ ନ ପାରିବ
ଏହା ଉଦ୍ଧରଣେ ଯେବେ
ଚିତ୍ତ ଦେଇପାର ଲବେ
ତେବେ ସିନା ଦାତା ବୋଲାଇବ । ୪ ।

---

କଳାକର—ଚନ୍ଦ୍ରମା । ଓଜଶୀଳ—ବଳବନ୍ତ । ଭୋଜ—ଭୋଜବଂଶୀୟ କଂସ । କୁମ୍ଭୀ—ହସ୍ତୀ । କଳଧଉତ—ସୁବର୍ଣ୍ଣବର୍ଣ୍ଣ । ଗଉରଙ୍ଗି—(ଗୌରଙ୍ଗି)—ଗୌରବର୍ଣ୍ଣ ବିଶିଷ୍ଟା; ଗୋପୀମାନେ । ହର —ହରଣଯେନ । ପାତକୀ ମୁକୁଟ—(ପାଠାନ୍ତର) ପରମପାତକୀ । ଏହା—(ପାଠାନ୍ତର) ଏବେ । ଚିତ୍ତଦେଇପାର—(ପାଠାନ୍ତର) କୃପାବସିଅଛ । ଦାତା—(ପାଠାନ୍ତର) ଦାମ୍ଭ ।

ଭଜନ—୨

( ରାଗ—ଛୋଟ୍ଟ ପରଜ । ତାଳ—ଏକତାଳୀ )

ମାନସ
ଚକା ନୟନଙ୍କୁ ଚକା ରେ ମାନସ,
ଚକା ନୟନଙ୍କୁ ଚକା
ନାଳୀକ—ବନ୍ଧୁଜ ନାଲ ନେତ୍ର ତେଜ
କରଇ ପାରନ୍ତ ଫକା । ୦ ।

ଯାହା ବଜେ ଭୁଜେ
ପଡ଼ ଗୁରୁ ଭ୍ରୂଜେ
ବଢ଼ରେ ବକ୍ଷେମେ କକା
ଦର୍ଶନ ମାତ୍ରକେ,
ସେ ଅଘ ଲଘନ
କଲେ ମଘବାର ବକା । ୧ ।

ପଶୁ ଛର୍ଯ୍ୟକେ
ଦୁଷ୍ଟପଣ ସର୍ଜିକେ
ମୃଷ୍ଟ ଯେଉଁ ଷଣ୍ଢା ବକା
ଯୁଗଳ ବଘାତ
ସର୍ଜି ବର୍ଜି ଦେଲେ
ଅର୍ଜିତ ବୃଜନ ଦକା । ୨ ।

ବାଜା ବଜା ପାପୀ—
ରଜା ଅଜାମ୍ଭିଳ
ପୁତ୍ରକୁ ଡାକବା ଡକା
ଗଣସ୍ତୁ ନଷ୍ଟ
ଦୁରତ ପାପୀଷ୍ଠକୁ
ଛୁଟଚେ ମାଇଲେ ଧକ୍କା । ୩ ।

ନିନ୍ଦା ସ୍ତୁତି ଭକ୍ତ
ଯେନ ମୁକ୍ତି ଦେବା
ଶକ୍ତି ମନ୍ତ୍ରେ ଜଣେ ଫକ୍କା
ଚେଦି ରାଜପୁତ୍ର
ନଦୀଜ ପବିତ୍ର
ପାପକୁ ଯେ କଲେ ଏକା । ୪ ।

ମହା ମହିମା—
ବନ୍ଦି ବୋଲି ଯା ନାମେ
ବ୍ରହ୍ମାଣ୍ଡେ ବାଜଇ ଢକ୍କା ।
ମାନ ହାନି କରି
ସେ ମାନଗୋବିନ୍ଦ
ନୃପକୁ ଯେ କଲେ ବୋକା । ୫ ।

ଯଦୁମଣି ଭଣେ
କଲି କର୍ମ ଗୁଣେ
ରଖିବେ ନାହିଁ କଡ଼କା
ନୀଳାଚଳ ଚୂଳେ
ନୀଳଚକ୍ର—ତଳେ
ପାପି ପାବନ ଫଡ଼କା । ୬ ।

---

ଡକା—ସ୍ୱାହାଁ । ନାଳ୍ପିକ (ନାଳିକ)—ପଦ୍ମ । ବନ୍ଧୁଜ—ପଦ୍ମବନ୍ଧୁ ସୂର୍ଯ୍ୟଙ୍କର ପୁତ୍ର ଯମ । ବଜେ ଭୂଜେ—ବଜସ୍ଥ କରିଥିବା କ୍ଷେତ୍ର ମଧ୍ୟରେ । ଶଳ୍ପେମେ ବକା—କାକ, କାକ ଚତୁର୍ଭୁଜ ହେବା କଥା ପୁରୀ ଜଗନ୍ନାଥ ମନ୍ଦିରରେ ଦ୍ରଷ୍ଟବ୍ୟ । ଅଘ—ପାପ । ମଘବାଣ—ଇନ୍ଦ୍ର ଶତ୍ରୁ । ବକା— ବୋକା, ଭର୍ତ୍ସନା, ବକରାକ୍ଷସ । ଉର୍ଯ୍ୟକେ—ମାନବେତର ଜୀବ ମଧ୍ୟରେ । ମୃଷ୍ଟ—ମର୍ଦ୍ଦିତ । ଷଣ୍ଢା ବକା— ଅସୁର ଦ୍ୱୟ । ବୃଜିନ—ପାପ । ଦକା—ଉପରକୁ ବର୍ଜିଦେଲେ । ଦୁରିତ—ପାପ । ଚେଦି ରାଜପୁତ୍ର— ଶିଶୁପାଳ । ନଦୀଜ—ଭୀଷ୍ମ । କଡ଼କା—ସନ୍ତାପ । ଫଡକା—ପତାକା । ମାନଗୋବିନ୍ଦ—ଦୁର୍ଯ୍ୟୋଧନ । ପବିତ୍ର ପ ତ—ଯେଉଁ ବ୍ୟକ୍ତି ଅତି ପବିତ୍ର । (ନିନ୍ଦା କରିବାରେ ଶିଶୁପାଳ, ସ୍ତୁତି କରିବାରେ ଭୀଷ୍ମ ଏବଂ ଯେଉଁ ପବିତ୍ର ବ୍ୟକ୍ତି ଭକ୍ତି କରନ୍ତି ସେ ତାଙ୍କୁ ମୁକ୍ତି ଦଅନ୍ତି ।)

## ଭଜନ—୩

( ରାଗ—ପୂରବୀ । ତାଳ—ଆଠତାଳୀ । )

ଅମ୍ବରଚେ ହରି ଭଜରେ ମାନସ
ଅମ୍ବରଚେ ହରି ଭଜ
ଦମ୍ଭବ ରମ୍ଭଜ ଛମ୍ଭଜ ପଦ୍ମଜ
ଅମ୍ବଳମ୍ବେ ଭୁମ୍ବ ହେଜ । ରେ । ୦ ।

ନମ୍ବୀନ ଜଳଦ ଛମ୍ବ ନଟବର
ପମ୍ବଜ ପଦ ସରୋଜ
ଥମ୍ବର ହୋଇଛୁ ସ୍ତ୍ରମ୍ବବାର ସେଥୁଁ
ମଧୁପାନେ ଭୃଙ୍ଗ ସାଜ ରେ । ୧ ।

ଗମ୍ବାଣ ଧ୍ୱଜ ଅବ୍ଜଜ ଅମ୍ବରାଜ
ଆଦି ଅପର ସମାଜ
ସମ୍ବନୟ ଭରେ କମ୍ବଙ୍କ ଗୁଣରେ
ଲମ୍ବ ହୋନ୍ତି ଯାଙ୍କୁରୋଜ ରେ । ୨ ।

ଗର୍ବି ଗମ୍ବ ଗଞ୍ଜା ଛମ୍ବଣ ନାମ ଯା
ପମ୍ବଧର ଦେବରାଜ
ଦ୍ରୁମ୍ବଗଲ୍ଲ ତାର ଗର୍ବ ଅହଙ୍କାର
ଶରଣାର୍ଥୀ ପଦ କଞ୍ଜ ରେ । ୩ ।

ହମ୍ବ ଆହାର ସମ୍ବତେ ଦେବୀ ଦେବ
ଦାନବାଦିଙ୍କ ଯେ ପୂଜ୍ୟ
କହ ଯଦୁମଣି ନ ବମ୍ବୁରୁ ସେହି
ନନ୍ଦାତ୍ମଜ ନାମ ବ୍ରଜ ରେ । ୪ ।

---

ରମ୍ଭଜ—ପଦ୍ମ । ଛମ୍ଭଜ ପଦ୍ମଜ—ତେଜରୁ ଜାତ ଗର୍ବ । ଥମ୍ବର—ବୃକ୍ଷ । ଗମ୍ବାଣ—ଷଣ୍ଢ । ଗମ୍ବାଣ ଧ୍ୱଜ—ମହାଦେବ ଶିବ । ଅବ୍ଜ—ବ୍ରହ୍ମା । ଅମ୍ବରାଜ—ଅନନ୍ତ । ପମ୍ବଧର—ବଜ୍ରଧର । ଛମ୍ବଣ ନାମ ଯା—ଇନ୍ଦ୍ରଙ୍କର ଛମ୍ବଣ ଗୋଟି ନାମ ଅଛେ । ହମ୍ବ ଆହାର—ଅଗ୍ନି ଦେବତା । ନାମବ୍ରଜ—ନାମ ସମୂହ ।

## ଭଜନ—୪

( ରାଗ—ରସକେଦାର । ତାଳ—ସରମାନ )

ଅନୁକମ୍ପା ଧାମ୍ନ ହର ହର ମୋହର ଆତଙ୍କ
ଦନୁଜାର ଚକ୍ରାୟୁଧ ହେ ଶୀରପତ୍ତ ଶାରଙ୍ଗ । ୦ ।

କୁଞ୍ଜର-ବର-ତାରଣ
କୁଞ୍ଜର ମତ୍ତ ବାରଣ
କୁଞ୍ଜର ନାଶନ ଗୁଞ୍ଜା—ଆବଳୀ ଭୂଷିତ ଅଙ୍ଗ । ୧ ।

ବାସବର ଗର୍ବଗଞ୍ଜା
ଯାମଳ ଅର୍ଜୁନ ଭଞ୍ଜା
ଗୋପିକା ମାନସ ରଞ୍ଜା ଶ୍ରୀ ବୃନ୍ଦାରଣ୍ୟ ଅନଙ୍ଗ । ୨ ।

ଉରଗେଶ ଦଳା କଳା
ବଳାହକ କାନ୍ତିକଳା—
ବକ୍ଷେ ଶ୍ରୀ ଶ୍ରୀନୁଜା ଗଳା—
ମାଳା ଧାରକ ସାରଙ୍ଗ । ୩ ।

ବଇକୁଣ୍ଠ କଣ୍ଠୀରବ
ତବ ମହିମା ପ୍ରଭାବ
ଦେଖାଅ ନକର ଲବ
ଅବହେଳା ମଣି ଖଙ୍ଗ । ୪ ।

ପ୍ରସନ୍ନ ଯଦୁମଣିର
ଯଦୁମଣି—ବାଧା ଘୋର
ପ୍ରସନ୍ନେ ହର ପଦାବ୍ଜେ
ରଖ କର ମତ୍ତ ଭୃଙ୍ଗ । ୫ ।

---

ଆତଙ୍କ—ଭୟ, ପୀଡ଼ା । ଗୁଞ୍ଜ—କାଇଞ୍ଚ । ଉରଗେଶ—କାଳୀୟ । କଳାବଳାହକ—କଳାମେଘ । ଶ୍ରୀନୁଜା—ସୁଧା । କଣ୍ଠୀରବ -ସିଂହ । ଖଙ୍ଗ—ଦୁଃଖ ।

## ଖଞ୍ଜନାଙ୍କ ପ୍ରତି—୨

( ରାଗ—ତୋଡ଼ି ପରଜ । ତାଳ—ଏକତାଳ )

ଜାଣୁ ଜାଣୁ ଖଣାରେ ମୁଁ ପଡ଼ିଲି ରେ
ଜଣା ଶୁଣା ସରଣୀ ଗୁଡ଼ିଲି ରେ । ୦ ।
ଊଣା ଟିଣା ବୁଦ୍ଧିରେ
ଚେଳି ଘଣା ମଧ୍ୟରେ
ଚଣା ପେଷାଇ ବଣା ଅଡ଼ିଲି ରେ । ୧ ।
ନବ ଧଜିତ ତିଳ
ପେଷି ଏରଣ୍ଡ ଫଳ
ନାରିକେଳକୁ ଯା ନ ପେଡ଼ିଲି ରେ । ୨ ।
ଯତି ଜପ ଧ୍ୱଂସନ୍ତି
କରିବା ରସବନ୍ତି
ସନ୍ତି ନାୟିକା ସଙ୍ଗ ଏଡ଼ିଲି ରେ । ୩ ।
ନିପଟ ମରକଟି
ବଜାର ନାହାକାଟି
ପାଦାନ୍ତ ରଥ ମୁଣ୍ଡ ମାଡ଼ିଲି ରେ । ୪ ।
ବହୁକାଳ ସୁରଙ୍ଗ
ପାତାଳ ଫୁଟା ଲଙ୍ଗ
ଶିରେ ବାରୁଣୀ ଆଣି ଢାଳିଲି ରେ । ୫ ।
କୁଶଳ କଥା ମୋର
ମୁଷଳ ମାନ ଗିର
ଗାଣ୍ଡିକ କରପବ ଯୋଡ଼ିଲି ରେ । ୬ ।
ରାବିଟି ଉଜାଗର
ନିଦ୍ରାରେ ଗରଗର
ହୋଇ ଉଚେ ମୁଁ ଯେତେ ରଡ଼ିଲି ରେ । ୭ ।
ନ ଶୁଣିଲ୍ ମୋ ଗିର
ଯଦୁମଣି ଉତ୍ତର
କର୍ମ ଦୋଷରୁ ଏହା ବଢ଼ିଲି ରେ । ୮ ।

---

ଟିଣା—କ୍ରୋଧପୂର୍ଣ୍ଣ । ଊଣା—ନ୍ୟୂନତମ । ବଣା ଅଡ଼ିଲି—ଭ୍ରମପୂର୍ଣ୍ଣ କଳ୍ ଲଗିଲି । ନାହାକାଟି—ନିର୍ଲଜ୍ଜା, ଅଣ୍ଡିରାଚଣ୍ଡୀ । ପାଦାନ୍ତ—ପାଦାତରଥୀ । ସୁରଙ୍ଗ—ନାରଙ୍ଗ ରଙ୍ଗ । ବାରୁଣୀ—ମଦ୍ୟ । ବଢ଼ିଲି—ପଲ୍ଲଷିତ କଲି । କୁଶଳ କଥା—ଶ୍ରଷ୍ଟକଥା ।

## ଖଞ୍ଜନାଙ୍କ ପ୍ରତି—୨

( ରାଗ—ମୁଖାରୀ )

ପୟୋଧର୍ଭରେ
ଚର ଅଚର ବୟସୀ ତୁ ଏ ଧରାରେ । ୦ ।

କୋଟି ସାମନ୍ତାଣି
ମଧ୍ୟ ପ୍ରଥାମଣି
ପଦ ପିନ୍ଧିବେ ମୋ ଶିର ଚର ଧରରେ । ୧ ।

ଲାବଣ୍ୟ ଭୂତି ତୁ
ସ୍ୱରୂପାୟିତା ତୁ
ଲାବଣ୍ୟ ବର୍ଣ୍ଣିତୁ ଚନ୍ଦ୍ର ମେଘାମ୍ବରରେ । ୨ ।

ତୋ ନରକ ଛେଦ
ଦେଲୁ ନର୍କ ଛେଦୀ
ମାଳା ମୋ ଗଳାରେ ଗୁର୍ବିମନୋହରରେ । ୩ ।

ନାହିଁ ଧର୍ଯ୍ୟ ନାହିଁ
ହସ୍ତ ଆମୋଦନ୍ତି
ଖେଳା ଖଞ୍ଜନାଙ୍କ ନେଇ ଜବା ଧରରେ । ୪ ।

କ୍ଷମା ମହୋଦଧି
ରସାମୃତ ନଧି
ତୋ ନଧି ଅବଧି ବଧି ସୁଧା ଧାରରେ । ୫ ।

ଖଞ୍ଜା ତୋ ଖଞ୍ଜନା
ଖଞ୍ଜାଅ ଗଞ୍ଜନା
ଖଳୁ ଖଞ୍ଜା ଯଦୁମଣି ତୋ ଖଟଣି ପରାରେ । ୬ ।

---

ପୟୋଧର—(ପୟଃ—ରସ) ରସମୟୀ, (ପୟଃ—ଦୁଗ୍ଧ) ମନୋହର ସ୍ତନ ଧାରଣୀ । ଚର—ଚରଣ ଜାଲ । ଅଚର ବୟସୀ—ଯୁବତୀ । ଚର ଅଚର ବୟସୀ—ଅନନ୍ତ ଯୌବନା । ଚରଧର—ଚର ଧନ ନିତ । ଭୂତି—ଐଶ୍ୱର୍ଯ୍ୟ, ସମ୍ପଦ । ଲାବଣ୍ୟ ଭୂତି—ଲାବଣ୍ୟର ସମ୍ପଦ ସ୍ୱରୂପା । ସ୍ୱରୂପାୟିତା—ସ୍ୱପସ୍ଥିତ କେଳି ରସିକା । ଚନ୍ଦ୍ର ମେଘାମ୍ବର—ଚନ୍ଦ୍ର ମେଘ ପାଟ, ଘଣ୍ଟିତା । ଗୁର୍ବି ମନୋହର—ଅତି ମନୋହର । ନର୍କଛେଦୀ—ଦିଷ୍ଟ । ନରକ—ଦୁଃଖ । ଧର—ଭୂମି, ଭୁବନ । ଜବାଧର—ପାଠାନ୍ତର 'ତ୍ରୟଧର' । ତ୍ରୟଧର—ତ୍ରିଭୁବନ । ଆମୋଦନ୍ତି—ଆନନ୍ଦ ଦାୟିନୀ । ମହୋଦଧି—ସମୁଦ୍ର । ନଧି—ନଦୀ । ବଧି—ଦେହ । ଖଞ୍ଜନା—ଖଞ୍ଜନା ନାମଧାରିଣୀ । ଖଞ୍ଜା—ଯେବରେ କାମୁକ । ଖଞ୍ଜନା ଖଞ୍ଜା—ଖଞ୍ଜନା ନାମକ ରଗିଣୀକୁ ଗାନକର । ଗଞ୍ଜନା—ମନୋଦୁଃଖ । ଖଞ୍ଜାଅ—ଦୂରକର । ଖଳୁ—ସ୍ୱର୍ଗକୁ । ଖଞ୍ଜା—ସାମୁଦ୍ରିକ ମଣ୍ଡାବଶେଷ । ଖଟଣି—ନରକର ଖଟିନା ।

**ଚଉପଦୀର କଥା ଅଂଶ—**

ରେ ପୀନପୟୋଧରା ରସଦାୟିନି ! ତୁ ଏ ପୃଥିବୀରେ ଚିରକାଳ ଅଚିର ବୟସୀ ଅର୍ଥାତ୍ ଚିରନୂତନା ଅନନ୍ତ ଯୌବନା ଅଟୁ । ତୁ ସମସ୍ତ ଉତ୍କୃଷ୍ଟ ରମଣୀ-ମାନଙ୍କର ମଥାରେ ମଥାମଣି ସ୍ୱରୂପା ଅର୍ଥାତ୍ ଶୀର୍ଷ ସ୍ଥାନୀୟା ଅଟୁ । ତୋପରି ସୁନ୍ଦରୀ ସଦ୍‌ଗୁଣବତୀ ରମଣୀମଣି କ୍ୱଚିତ୍ ଦେଖାଯାନ୍ତି । ତୋ ପଦପଲ୍ଲବରେ ମୋ ଶିର ସର୍ବଦା ନତ ଅଟେ । ନାରୀମାନେ ଦେହର ଲାବଣ୍ୟକୁ ସମ୍ପଦ ମଣିଥାନ୍ତି । କିନ୍ତୁ ତୁ ଲାବଣ୍ୟର ସମ୍ପଦ ସ୍ୱରୂପିଣୀ ଅଟ । ତୁ ବିଧାତାଙ୍କ କୋଳରେ ପ୍ରବୀଣା, ଲାବଣ୍ୟମୟୀ ହୋଇଥିବାରୁ ସର୍ବଦା ମୋଚିତ୍ତକୁ ବିଚିତ୍ରମେଘ ଅମ୍ବରକୁ ଆଚ୍ଛାଦନ କଲାପରି ଅଥବା ଚିତ୍ରମେଘୀ ଶାଢ଼ୀ ଯାହା ତୁ ଅତି ଭଲପାଉ ତା ପିନ୍ଧି ଆଚ୍ଛନ୍ନ କରିଥାଉ ।

ରେ ଅତି ମନୋହାରିଣି ! ତୁ ଯେପରି ରୂପସୀ ଓ ଗୁଣବତୀ ବିଷ୍ଣୁଙ୍କ ଗଳାରେ ବରଣମାଳା ଦେଇଥିଲେ ବି ଅନ୍ୟାୟ ହୋଇ ନ ଥାନ୍ତା । କିନ୍ତୁ ତୁ ମୋର ସମସ୍ତ ଦୁଃଖ ଦୂରକରି ମୋ ଗଳାରେ ମାଳା ଅର୍ପଣ କରିଅଛୁ । ତୋର ଏପରି ତ୍ୟାଗ ଅନନ୍ୟ ଅଟେ ।

ତୁ ଅତିଦୀର୍ଘ କିମ୍ବା ଅତି ହ୍ରସ୍ୱ ଆକୃତି ନୋହୁ । ତ୍ରିଭୁବନରେ ତୋପରି ଖେଳାଖଞ୍ଜରୀଟ ନେତ୍ରୀ ଅର୍ଥାତ୍ ଖେଳୁଥିବା ଖଞ୍ଜନ ପକ୍ଷୀ ଭଳି ଅତି ମନୋହର ଚଞ୍ଚଳ-ନୟନା ରମଣୀ ଆଉ ନାହାନ୍ତି । ତେଣୁ ତୁ ଏକାନ୍ତ ଆମୋଦ ଦାୟିନୀ ଅଟୁ । ପାଠାନ୍ତରରେ—ତୋର ଜବାଫୁଲ ପରି ଅଧର ଅଟେ ଏବଂ ଖେଳାଖଞ୍ଜନ ପକ୍ଷୀ ପରି ଚଞ୍ଚଳ ନୟନ ଅଟେ ।

ତୁ କ୍ଷମାର ସମୁଦ୍ର ଅଟୁ । ଧୀରା ନାୟିକା ହେବାରୁ ମୁଁ ଯେତେ ଅପରାଧୀ ହେଲେହେଁ ମୋତେ କ୍ଷମା ଦେଇଥାଉ ଏବଂ କେବେହେଲେ ଅଧୀର ହେଉନାହିଁ । ଆଉ ମଧ୍ୟ ତୁ ରସାମୃତର ଖଣି ଅଟୁ । ଅର୍ଥାତ୍ ତୁ ଚଉଷଠି କଳାରେ ନିପୁଣା ଥିବାରୁ ସମସ୍ତ ରସରେ ପରିପୂର୍ଣ୍ଣା ଅଟୁ ।

ରେ ଖଞ୍ଜନା ! ମୁଁ ତୋ ସେବାରେ ନିଯୁକ୍ତ ଅଟେ । ଅଥବା ତୁ ଖଞ୍ଜନା ନାମକ ସଙ୍ଗିଣୀକୁ ଗାନ କରି ମୋର ଗଞ୍ଜନା ଦୂରକର ବା ମୋର ମନୋବେଦନା ଶୂନ୍ୟ କର । ତୁ ସ୍ୱର୍ଗ ପରି ଅତି ଉଚ୍ଚରେ ହେଲେ ମୁଁ ସମୁଦ୍ର ବାସୀ ଖଙ୍ଗା ମାଛ ପରି ଅତି ନିମ୍ନରେ । ତଥାପି ସର୍ବଦା ତୋର ଭୃତ୍ୟ ଅଟେ । ତେଣୁ ମୋର ମାନସିକ ଦୁଃଖ ଦୂର କର ।

### ଖଞ୍ଜନାଙ୍କ ପ୍ରତି—୩

( ରାଗ—ତୋଡ଼ି ଚରଜ । ତାଳ—ଆଠତାଳୀ )

କୀରଜିତ ଗୀର ପଦକ ଶୁଣାରେ
ହୀରକ ଦଶନା ବାଳା ରେ
କୀରତି ରଖାଅ ମହୀସୁର ଅଗ୍ରେ
ଖଞ୍ଜନା ପ୍ରୀତି ବଢ଼ାଇଲା ରେ
କୀରତି ରଖାଅ ଏ ମହୀମଣ୍ଡଳେ
ଆରେ ପୀରତି ବଢ଼ାଇଲା ରେ । ୦ ।

ଧୀର ଗତି ନବ ନୀରଦ କୁନ୍ତଳା
ଚିର ଆଶ୍ରିତ ମୁଁ ତୋର
ନିରସ ବଦନ କରି ଯା' ବସିଛୁ
ଶିର କରି ଅବନୀର । ୧ ।

କ୍ଷୀର ଖଣ୍ଡ ମିଶା ତୋ ମଧୁର ଭାଷା
ଶୁଣା ଏ ତୃଷଣାର୍ତ୍ତ ମୁଞ୍ଜ
ଦ୍ୱିରଦ କୁମ୍ଭ ଉରଜା ନାଗରିକା
ବ୍ୟର୍ଥେ ତୁ ନବଯ ଧୁଞ୍ଜ । ୨ ।

ନୀରଦ ନୟନୁଁ ନୀରଧାର ଧାର—
ପଡ଼ରେ ଆଉ ନବରଷା
ଚିର ଶୋଭୀ ହେନ ଅନୁନୟ ମୋର
ତୋ ଛନେ କେବା ଭରସା । ୩ ।

ଢରଣ ଦଶନେ ଧରି ମୁଁ ମାଗୁଛି
ଗୁମାନ ଛୁଅନା ଧନ
ବୀର ମାରକୁ ହଟାଅ ହରମଧ୍ୟା
ଦେଇ କେଳଢ ବର୍ତ୍ତନ । ୪ ।

ତିରସ୍କାର କଲେ କରି ସେ ମୋ ସୁଖ
ଆରେ ମଦାଳସା ମଣି
ଖିରୁ ସେ ନ ଭଷ୍ଟୁ ଆଶୁତୋଷ ମୋଗ୍ଧ୍ରି
ସଦାଧୀନ ଯଦୁମଣି । ୫ ।

---

କୀର—ଶୁକପକ୍ଷୀ ; ଜତ—ପରାଭୂତ । ଗୀର—ବଚନ । ଫନ୍ଦକ—ଫଦଟିଏ । ଧାରକ ଦଶନା—ବ୍ରାହ୍ମଣଜାତ ଶୁକ୍ଳ ଧାରକ ପ୍ରାୟ ସୁନ୍ଦର ଦନ୍ତ ବିଶିଷ୍ଟା । ମହୀସୁର—ବ୍ରାହ୍ମଣ । ଖଞ୍ଜନା—ନାମ ବିଶେଷ । ବତ୍ସଳା—ଅନୁରକ୍ତା । ନିରସ—ଶୁଖିଲା । ଶିର କରି ଅବନୀର—ମୁହଁ ପୋତି । ରୁଷଣା—ରୁଷିବା, ଅଭିମାନ କରିବା । ମୁଞ୍ଚ—ଛାଡ଼ । ଦ୍ୱିରଦ—ହସ୍ତୀ । ଦ୍ୱିରଦ କୁମ୍ଭ ଉରଜା—ହସ୍ତୀମୁଣ୍ଡ ପ୍ରାୟ କୁଚ ଶୋଭିନୀ । ନୀରଦ—ପଦ୍ମ । ଚିର ଶୋଭୀ—ଚିରନ୍ତନ ଶୋଭନୀୟା, ସବୁବେଳେ ସୁନ୍ଦର । ଢରଣ—ତୃଣ, ଘାସ । ଦଶନେ—ଦନ୍ତରେ । ଗୁମାନ—ଅଭିମାନ । ବୀର—ଦୁର୍ଜୟ । ମାର—କାମଦେବ । ହରମଧ୍ୟା—ସିଂହ କଟୀ । କେଳଢ—ରତ । ବର୍ତ୍ତନ—ବୃତ୍ତି, ଜୀବିକା । ମଦାଳସା—ମତ୍ତତା ହେତୁ ଅଳସ୍ୟ ପରାୟଣା । ମଣି—ଶ୍ରେଷ୍ଠତମା । ଆଶୁତୋଷ—ସହଜରେ ସନ୍ତୁଷ୍ଟ । ମୋଗ୍ଧ୍ରି—ମୁଗ୍ଧ କାରିଣୀ । ଖିରୁ—ସହଜରେ ଭୀତା, କୋମଳା ନାରୀ । ନ ଭଷ୍ଟୁ—ନ କହୁ । ସଦାଧୀନ—ଚିର ଅନୁଗତ ।

## ଖଞ୍ଜନାଙ୍କ ପ୍ରଶ୍ନ—୪

( ରାଗ—ଆହାରି । ତାଳ—ଆଠତାଳୀ )

ଆହା କି କର୍ମ କଲି
ଜାଣି ଜାଣିତ ବୁଦ୍ଧି ହୁଡ଼ିଲି କିରେ । ୦ ।
ଆସିବା କାଳରେ
ସୁମନା ମଣ୍ଡନା
    ସୁମନାର ମନା ବାଣୀ
ନ ଘେନିଲି ଛଳେ
ପଡ଼ି ପାଦ ତଳେ
    କରୁଥିଲୁ ଯା ଦଇନ ଯେ । ୧ ।
ଯୋଷା ରତନର
ଓଷା ମୋ ବଚନ
    ପାଳିବାର ବ୍ରତ ନିତ
ଖୋଷା ମଞ୍ଜୁଳାକୁ
ଏକାକିନୀ କରି
    ବିଦେଶରେ ଦେଲି ମଣ୍ଡ ଯେ । ୨ ।
କେତେ ପରମାଦ
ପଡ଼ିଲୁ ଆସିଛି
    ବଗୁର ପାଟିଲି ନାହିଁ
ହୋଡ଼େ ଘେନ ଗାଡ଼େ
ମଣି ଯା ନନେଇ
    ଧନକୁ ମୂର୍ଚ୍ଛିଲି କାହିଁ ଯେ । ୩ ।
ଯଦୁମଣି ଭଣେ
ଅଦୁତେ ଦେଖି ଯେ
    ଆହ୍ଲାଲ୍‌ଦେ ଭାଷେ ବାଣୀ
ସେ ଦୁଃଖ ପାଶୋରି
ନାଗରୀ ହିଆକୁ
    ଦୂର କଲି ଜାଣିଜାଣି । ୪ ।

---

✻ ଯଦୁମଣିଙ୍କ ସ୍ତ୍ରୀ ଖଞ୍ଜନା ଯୁବତୀ ଥିବାବେଳେ ସେ ଥରେ ତାଙ୍କ ମନା ନମାନି ବିଦେଶ କରିଥିଲେ । ଅର୍ଥାତ୍ ନିଜର ପିତୃଭୂମି ଅଠଗଡ଼କୁ ଯାଇ ହଠାତ୍ ଫେରିପାରି ନଥିଲେ ।

ଯୋଷାରତନର ଓଷା—ସେ ନାରୀରତ୍ନ ମୋ ଲାଗି ଓଷା ବାରବ୍ରତ କରିଥାଏ । ପୁଣି ମୋ ବଚନ ନିତ୍ୟବ୍ରତ ପାଳନ କରେ । ଖୋଷା ମଞ୍ଜୁଳା—ଯାହାର ଜୁଡ଼ା ଅତି ରମଣୀୟ । ଆହ୍ଲାଲ୍‌ଦେ—ଆହ୍ଲାଦେ, ଆନନ୍ଦରେ ।

## ଖଞ୍ଜନାଙ୍କ ପ୍ରତି—୫

ଶଶି ବଦନାରେ
ହସି ଗୁହ୍ନିଁଦେ ତୁ ଢାଳେ
ନଗିଡ଼ ପଡ଼ୁ ଛୋ ରଦବାସୁ ଆଶୁ
ଯାଚ ସରପଣା ବାଳେ । ୦ ।

ତରୁଣାଙ୍ଗି ଧନ
କରୁଣା ହୃଦୟା
ନାଗରୀ ମୁକୁଟ ହୀର
ପରାଣ ସଙ୍ଗମା
ସୁରତ ରଙ୍ଗିମା
ଉନ୍ମାଦ ପ୍ରେମ ପସରା । ୧ ।

ମହୀ ମଣ୍ଡଳାର—
ଗନ୍ଧ—ଚମ୍ପା ମାଳା
ସୁନ୍ଦରୀଙ୍କ ପୁରନ୍ଦରୀ
ବୃଷ ପତି ମତି
ମୋହିନୀ—ଚତୁରୀ
ଆତୁରି କୃଶ ଉଦରୀ । ୨ ।

ଚଣ୍ଡୀ ବାହନ
ମଧ୍ୟମା ସୁପଣ୍ଡିତା
ଅଣ୍ଡିର ପିକ ବଚନା
ମଣ୍ଡି ମୋର ହୃଦ
ଖଣ୍ଡି ଦେ ତୁ ଖେଦ
ଦଣ୍ଡି-ଶୋଭ ସୁଲୋଚନା । ୩ ।

ଚଣ୍ଡ ଦୂରୁ—ଦଣ୍ଡ
ମାର ଭଣ୍ଡ ଦଣ୍ଡ
ଖଣ୍ଡ ଖଣ୍ଡ କରିପକା
ଗଣ୍ଡ ଦର ପଣେ
ହଅ ଚୁମ୍ବ ପଣେ
ଯାଉ ଯଦୁମଣି ଦକା । ୪ ।

ରଦବାସୁ—ଦନ୍ତ ବାସ ସ୍ଥାନରୁ, ମୁଖ, ଓଷ୍ଠର । ବାଳେ—ହେ ବାଳା, ଯୁବତୀ ।
ବୃଷପତି-ମତି-ମୋହିନୀ-ଚତୁରୀ—ଶିବପତ୍ନୀ ପାର୍ବତୀଙ୍କ ସମା ଚତୁରୀ । ଅଣ୍ଡିର—କାମ ଅଳସ୍ତ ।
ଚଣ୍ଡୀବାହନ ମଧ୍ୟମା—ସିଂହ କଟୀ ।

## ଖଞ୍ଜନାଙ୍କ ପ୍ରତି—୭

( ରାଗ—କଲ୍ୟାଣ । ତାଳ—ଝୁଲା )

ତୁ ମୋ ପ୍ରୀତି ମୋଦକ୍କା ପସରା ରେ
ମୁଁ ତୋ ଲାଗୁଆ ଗ୍ରାହକ ପରା । ୦ ।

ଗୁମାନକୁ ତୋର
ଗୁଡ଼ ସାର ମଣେ
ସନମାନଟି ତୋ ଛେନା କାକରା । ୧ ।

ଇଙ୍ଗିତ ଭଙ୍ଗି ତୋ
ସୁରସ ଆଣସା
ସମାଦର ସରପୁଳି କାକରା । ୨ ।

ଗାଲପଦକ ତୋ
ମଧୁ ରସାବଳୀ
ଚୁଷାଣି ପଣିଟି ବଲ୍ଲଭ କୋରା । ୩ ।

ପଣରମ୍ଭଣ ତୋ
କନ୍ତାର ଦୋଳୁଅ
ମଦନ ତୃଷାହାରୀ ମନୋହରା । ୪ ।

ଲାବଣ୍ୟ ଜଳଧି
ଭାବ ହାବ ଲଭ
ଆଣେ ଯଦୁମଣି ମନ ଟେକରା । ୫ ।

ମୋଦକ୍କା ପସରା - ଗୁଡ଼ିଆ ପସରା । ଗୁଡ଼ସାର—ଏକ ପୁରୁଣା ଶୀତଳ ମଣୋହି । ଲାଗୁଆ—ଦୈନିକ ଖଞ୍ଜା । ଇଙ୍ଗିତ ଭଙ୍ଗି—ହାସ ପରିହାସ । ସୁରସ—ସୁମିଷ୍ଟ । ସମାଦର—ଅତି ଆଦରଣୀୟ । ମଧୁ—ମିଷ୍ଟ । ପଣରମ୍ଭେ—ନମଣ । (ମଦନ ତୃଷା ହାରୀ ମନୋହର ପଣରମ୍ଭଣ) । ତୋ ଲାବଣ୍ୟ ଜଳଧି ଭାବ ହାବ ଲଭି ଆଣେ ଯଦୁମଣି ମନ ଟେକରା । ଟେକରା—ଅତିଲୋଭୀ, ବାରମ୍ବାର ପ୍ରଲୋଭିତ ।

## ଖଞ୍ଜନାଙ୍କ ପ୍ରତି—୭

( ରାଗ—ମେଘ ମହ୍ଲାର । ତାଳ—ଆଠତାଳୀ )

ବରଷା କାଳ ହୋଇଲା ଆସିରେ
ବର ସାରସ ନେତ୍ରୀ ଯିବ ଭାସି ରେ । ୦ ।
ବରଷାଇ ନେତ୍ର ଅଶ୍ରୁ ଧାରକୁ
ବୁହାଇ ଥିବଟି ବସି ଉରକୁ ରେ । ୧ ।
ବରଷ ପୂରିଲା ହେଲି ବିଦେଶୀ
ବରଷ ପୂରି ନାହିଁ ଚାକୁ ଶଶି ରେ । ୨ ।
ବର ବରମ୍ମାର ଶୁଭ ଖବର
ବରଗନ୍ତା କେହୁ ମୋର ଆଗର ରେ । ୩ ।
ବର ମୁଁ ଧନର କାହିଁ ଆବର
ବରଧନ କରିବ ରାଗ ବର ରେ । ୪ ।
ବରଚ୍ଛି ମାରଇ ମାର ଶବର
ବରଡ଼ା ପରି ଥରେ କଳେବର ରେ । ୫ ।
ବରଦ ହେବେ କି ପାର୍ବତୀବର
ବରତି ଯିବି ମୁଁ ପ୍ରିୟା ନିକର ରେ । ୬ ।
ବରଜ ବାଳୀକି ଯଦୁବବର
ବର ଚନ୍ଦ୍ରାର୍ଥୀ ପ୍ରବାସେ ଥିବାର ରେ । ୭ ।

---

ଏହା କବିଙ୍କର ପ୍ରଥମ କବିତା, ଏହା ସେ ବାଘମାର ଗ୍ରାମରେ ଲେଖିଥିଲେ ୧୮୦୩ରେ । ବର—ଶ୍ରେଷ୍ଠ । ସାରସ—ପଦ୍ମ । ଉର—ସ୍ତନ । ଶଶି—ଚନ୍ଦ୍ର, ବଦନ । ପାଠାନ୍ତର...

୪—ସେ ଧନର କାହିଁ ଆବର ବର ମୁଁ । ବର—ସ୍ୱାମୀ, ବିବାହିତବର । ଧନ—ନୃହକ୍ତର ସମ୍ପତ୍ତି ସ୍ୱରୂପା ନାରୀ । ଆବର—ପୁଣି, ଆଉ । ବରଧନ—ବୃଦ୍ଧି । ରାଗ—କ୍ରୋଧ, ଅଶାନ୍ତି । ବର ରାଗ—ଅତିକ୍ରୋଧ ବା ଅତିପ୍ରୀତି । (ମୁଁ ଧନର ବର ସତ, କିନ୍ତୁ ପୁଣି କାହିଁ ସେ ମୋ ପ୍ରତି ଅଧିକ ପ୍ରୀତି ବା ବଢ଼ାଇବ ?) ବରଚ୍ଛି—ବର୍ଚ୍ଛୀ । ମାର ଶବର—କନ୍ଦର୍ପ ଶିକାରୀ । ବରଡ଼ା—ଏକ ବଣ୍ୟବୃକ୍ଷ, ତାର କୋମଳ ଶାଗ ଖିଆଯାଏ, ସାମାନ୍ୟ ପବନ ହେଲେ ଥରହରେ ବା କମ୍ପମାନ ଥିବାରୁ କଥାରେ କହନ୍ତି ବରଡ଼ା ପତ୍ରପରି ଥରୁଛି । ବରତିଯିବି—ଏହି ରମଣୀ ପାଖକୁ ବର୍ତ୍ତିଯିବି, ସେ କବି ମନୋରମା ନାମକ ବାଘମାରର ଏକ ରମଣୀ ଫାଶରେ ପଡ଼ିଥିଲା ତଥ୍ୟ ଜୀବନ କାଳରେ ଦ୍ରଷ୍ଟବ୍ୟ । ବରଚନ୍ଦ୍ରାର୍ଥୀ—ଅଧିକ ଚନ୍ଦ୍ରାକୁଳ । ଏହି କବିତାଟି ଆଦ୍ୟ ପଦମାନଙ୍କରେ 'ବର'କୁ ଧରି ଲେଖା ଯାଇଛି । କାରଣ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଅଧିକ ପ୍ରଲୋଭନ ଥିବାରୁ ସେ ଏପରି ରଚନା ସର୍ବାଗ୍ରେ କରିପାରିଛନ୍ତି ।

## ସାମୟିକୀ—୧

( ରାଗ—ଚୋଡ଼ ପରଜ । ତାଳ—ଏକତାଳୀ )

ହେ ରସିକେ !
ମଜ୍ଜଳ ପଚ୍ଛକେ ଯିବ
ମରଜ ନ ଥିବା ଜବା-ଅଧରୀ କ
ଅଭେଗେ କେ ବରଜବ ? । ୦ ।
ଦରଜ କୂଳରେ ସରଜ ଅଛୁ କେ
ବଧୂ ସମତୁଲ ହାସ
ମରଜ ବୁଝି ମୁଁ ଅରଜ ଦେବାକୁ
ପାଉ ନାହିଁ ଅବକାଶ । ୧ ।
ମନ୍ଦର ଉରଜା ମନ୍ଦ ଉଦରୀର
ମନ୍ଦ ମନ୍ଦ ହାସ ଶୁଣି
କନ୍ଦରପପ୍ରିୟା ଲୀଳାକୁ ନ ବାଞ୍ଛି
ସୁନ୍ଦରେ ରହିବେ କାହିଁ ? । ୨ ।
ଲଟା କୁରଙ୍ଗି-ନୟନା ଶୋଭାଙ୍ଗୀର
କଟାକ୍ଷ ଗୁହାଣୀ ଛଟା
ପଟାଟୋପ ଭଙ୍ଗୀ ନେତ୍ରେ ସଙ୍ଗୀ ହେଲେ
ଧୈର୍ଯ୍ୟ ଧରିବ କେ ବେଟା ? । ୩ ।
ଯଦୁମଣି ଭଣି ଧନ୍ୟ ସେ ରମଣୀ
ଅଣିମାଦ ଭୂତିଦାତ୍ରୀ
ଅଦୁରେ ଯା ଗୁଳଗନ୍ଧି ମର୍ମେ ଧାଳ
ବାରବାମା ହେମଗାତ୍ରୀ । ୪ ।

---

ଏହି କବିତାଟି ରାଜା ବନାଯୂର ସିଂହ ଏକ ଦରଜ ଯୁବତୀ ପ୍ରତି ଆକୃଷ୍ଟ ହୋଇଥିବା ଜାଣି ବସ୍ତାଦ ମତେ କବି ଲେଖିଥିଲେ । ତାଙ୍କ ଜୀବନକଥାରେ ଏବଂ ହାସ୍ୟଗୀତିକାରେ ଏହା ଦିଆଯାଇଛି ।

ମରଜ—ଇଚ୍ଛା, ଅଭିପ୍ରାୟ । ମରଜ ନ ଥିବା—ଯାହାର ଇଚ୍ଛା ନାହିଁ ଏପରି । ଜବା ଅଧରୀ—ଓଷ୍ଠ ଜବା ଫୁଲ ପରି ରକ୍ତବର୍ଣ୍ଣବିଶିଷ୍ଟ । ଜବା—ମନ୍ଦାର ଫୁଲ । ମଉଳ ଯିବ—ଝାଉଁଳ ଯିବ । ( ଯେଉଁ ରୂପବତୀ କୁମାରୀ ପ୍ରତି ଆକାଙ୍‌କ୍ଷା ଜାଗ୍ରତ ହେଲାଣି, ପୁଣି ଯେ ଏକାନ୍ତ ଅନିଚ୍ଛୁକା ତାକୁ ଭୋଗ ନ କରି ଛାଡ଼ିବା ସହଜ ନୁହେଁ । ସେଥିପାଇଁ ପାର୍ଦ୍ଦନ ଲାଗୁ ଅର୍ଥାତ୍ ତାର ଯୌବନ ମଉଳ ଯାଉ ପଛେ । ) ଅରଜ—ଦରଖାସ୍ତ, ନିବେଦନ । କନ୍ଦରପପ୍ରିୟା—ରତି । ସୁନ୍ଦରେ—ଶୋଭମାନ ପୁରୁଷମାନେ । ଲଟା—ଅରଣ୍ୟ । ଭଙ୍ଗୀ—ଗୁହାଣୀ । ଅଣିମାଦ ଭୂତି—ଅଷ୍ଟଐଶ୍ୱର୍ଯ୍ୟ । ବାରବାମା—ଉତ୍କୃଷ୍ଟ ସ୍ତ୍ରୀ ।

## ସାମୟିକୀ—୨

( ରାଗ—ଚୋଡ଼ ପରଜ । ତାଳ—ଆଠତାଳୀ )

କି ଦେଖିଲ,
ଏ ଧନ ଦରପଣ ମୁହାଁ
ଅଙ୍କେ ବସାଇଲେ ନ ଗଣନ୍ତି ଆଜ
ଧନ ଦର ପଣ ମୁହିଁ । ୦ ।

ବନନ୍ଦ ଶକୁର
ମନୋହର ସୁର—
ପୁରବାଳା ପ୍ରତି ସାର
ସନନ୍ଦ ସନକାଦ
ମୁଗ୍ଧ ମୋହିନୀ
ହେବ କାହା ଗଳାହାର । ୧ ।

କନକ କେତକୀ
ଗୋଷ୍ଠ କଣ୍ଟକୀ
ମତ୍ତ କୋକିଳ ବଚନା
ଜନଙ୍କ ଧଇର୍ଯ୍ୟ-
ଚନ୍ଦ୍ର ଟାଳିଦେବ
କରେ ଯା ଭଙ୍ଗି ରଚନା । ୨ ।

ମନକଥା ପଦେ
ଶୁଣାନ୍ତୁ କି କରି
କସାନ୍ଦ୍ର ବର ଗଣ୍ଡକ
ସନମତ ଯେବେ
କରନ୍ତା ସୁନ୍ଦରୀ
ଜଣନ୍ତୁ ରଣ୍ଡପଣ୍ଡକ । ୩ ।

ଘନ ଜଘନାର ତନମଧ୍ୟ ଭାବ
ନାହିଁ ନା ମହୀମଣ୍ଡଳେ
ଛନ୍ନକା ପୂରାଇ ଦେଉଛି ମରମେ
କଟାକ୍ଷ ଗ୍ଳଳ ସୁଲ୍ଲୋଳେ । ୪ ।

ଅନବରତରେ
ଅବଳା ମଣିର
ଖଟନ୍ତୁ ସେବା ଖଟଣି
ଜନମ ସଫଳ
ମଣନ୍ତୁ ଭଣନ୍ତୁ
ଯଦୁମଣି କବିମଣି । ୫ ।

---

ଏ କବିତାଟି ପୁସ୍ତରେ ଜଗନ୍ନାଥ ସ୍ୱପ୍ନଗୁରୁ ନାମକ ପଣ୍ଡିତଙ୍କ 'କି ଦେଖିଲି, ଏ ଧନ ଦରପଣମୁହିଁ' ପାଦ ପୂରଣରେ କବି ଗାନ କରିଥିଲେ ।

ଦରପଣ—ଦର୍ପଣ । ମୁହିଁ—ମୁଖବିଶିଷ୍ଟା । ଧନ—ସମ୍ପତ୍ତି । ଦର—ଭୟ, ମୂଲ୍ୟ, ଦାମ । ପଣ—ଅଧିକାର । ମୁହିଁ—ମୁଁ । ବନଦ—ମେଘ । ପ୍ରତ—ପ୍ରତନଧି । ସାର—ଶ୍ରେଷ୍ଠ । ସନନ୍ଦ, ସନକାଦ—ଦଣବର୍ଣ୍ଣେଦେବା, ଶ୍ରେଷ୍ଠ ପିତୃପୁରୁଷ । ତନମଧ୍ୟ—ତନ୍ମଧ୍ୟ । ଛନ୍ନକା—ଛନକା । ଖଟଣି ସେବା—ବସ୍ତ୍ରକୃଷ୍ଣବାଦ କାର୍ଯ୍ୟ ।

## ସାମୟିକୀ—୩

ଯଗଣ ଯିବାର ଲୋଡ଼ା
ପ୍ରିୟଜନ ପ୍ରୀତି-ପୀୟୂଷରୁ ଅତି
ଯେବେ ହୁଅଇ ଖଦଡ଼ା । ୧ ।

ପଡ଼ା ଶୁକ ବୋଲ ପୋଷିଲି ତା’ ହେଲା
ତେରଖଗୁ ଖଗେ କଡ଼ା
ପଢ଼ ମୁଁ କହନ୍ତେ ପଡ଼ାର ପଢ଼ଣା
ଦେଖାଇଲା ଆଣି ଅଡ଼ା । ୧ ।

ବେହରଣେ ବେହେରଣିଆ ବେଭାରେ
ମୁଣ୍ଡ ନତ ପାଣି ଛଡ଼ା
ଅଭଡ଼ା ଖାଇ ମୁଁ ଚଢ଼ିଲି ପଢ଼ୋଇ
ବୁଡ଼ିବ ବୋଲି ଅତଡ଼ା । ୨ ।

ଅନ୍ତଯନ୍ତେ ପୁଣି ବାଢ଼ ଆଡ଼େ ଆଣି
ଲଗାଇଲି ବରଗଡ଼ା
ବୋଲେ ଯଦୁମଣି ମୋ କର୍ମକୁ ପୁଣି
ଫଳିଲା ପିତା ତରଡ଼ା । ୩ ।

---

ପ୍ରିୟଜନ ପୀୟୁଷରୁ ପ୍ରୀତି ଯେବେ ଅତି ଖଦଡ଼ା ହୁଅଇ, (ତେବେ) ଯଗଣ ଯିବାର ଲୋଡ଼ା ଅଟେ । ତେରଖଗୁ ଖଗେ କଡ଼ା—କଡ଼ାକର ତେର ଖଗରୁ ଖଗକ ନାମ ‘କାକ’ । ପଢ଼—ସଙ୍ଗୀତର ଏକପ୍ରକାର ଘୋଷା । ପଡ଼ା—ସାନ୍ଧ । ପଢ଼ଣା—ପଢ଼ୋଣୀ । ଅଡ଼ା—ଏକ ଶସ୍ୟ ମାପିବା ପାତ୍ର । ସଙ୍ଗୀତ ହେଉଥିବା ସ୍ଥାନରେ ଘୋଷା ଧରିବାକୁ ପଢ଼ କହନ୍ତେ ପଢ଼ଣାଘର ମୋର ଦାରିଦ୍ର୍ୟ ଜାଣିଥିବାରୁ ଅଡ଼େ ଚାଉଳ ଆଣି ଦେଖାଇଲା ମୁଁ ନେବାକୁ । ବେହରଣ—ସଭାମଣ୍ଡପ । ବେହେରାଣିଆ—ରକ୍ଷିତା ସ୍ତ୍ରୀର ସନ୍ତାନ,ଅନ୍ତର ସା’ନ୍ତ-ସେମାନେ ପ୍ରାୟ ଅସାଧୁ ହୋଇଥାନ୍ତି । ବେଭାର—ଆଚରଣ । ପାଣିଛଡ଼ା ମୁଣ୍ଡ ଅର୍ଥାତ୍ ରଜା ଯେତେ ଭଲ ପାଇଲେ କଣ ହେବ ବେହେରାଣିଆ ପୁଅର ପ୍ରତାପ ଅସହ୍ୟ ହୋଇଥାଏ । ଅଭଡ଼ା—ମହାପ୍ରସାଦ । ପଢ଼ୋଇ—କ୍ଷୁଦ୍ର ଡଙ୍ଗା, ସମୁଦ୍ରରେ ବ୍ୟବହୃତ ପାଲଥିଆ କାଠ ତିଆରି ଡଙ୍ଗା । ଅତଡ଼ା—ଅତଟ, କୂଳ । ଦେବତା ଭୋଗ ଖାଇ ସମୁଦ୍ରର ଅପରାପର ପଢ଼ୋଇରେ ବସି ବୁଡ଼ିଦେବ ବୋଲି ଭାବିଥିଲି ।

## ସ୍ୱାମଗ୍ଯିକୀ—୪

( ରାଗ—ପରଜ ଏକା ତାଳ—ଆଠତାଳୀ )

ହେ ସରସାନନା ରସାର ସାର
ରସାଳସା ଯୋଷା ଦମ୍ଭ ନ ସାର । ୦ ।

ତୁ ରତ୍ତ-ମୁରତ୍ତ ସୁରତ୍ତଦାତ୍ରୀ
ଶତବାମା ଶାତକୁମ୍ଭ ସୁଗାତ୍ରୀ । ୧ ।

ଆଲୀ ଆଳମାଳକାରେ ବାଳୀଶ
ତୂଳବା ଚରଣ କରେ ବାଲଶ । ୨ ।

କ କଶରେ ମତ୍ତ କଗାନ୍ଦ୍ରଗତ
ଶ୍ରୀକର ଧର କିଂକର ହୁଅନ୍ତ । ୩ ।

ଅନଙ୍ଗ ରଙ୍ଗରେ ରଙ୍ଗ ଅଧରା :
ସଙ୍ଗ ଭଙ୍ଗ ବେଳେ ନୁହନ୍ତା ପରା । ୪ ।

ଭଣି ଯଦୁମଣି ରମଣୀମଣି
ଅଣିମାଦ୍ଧ ସୁଖ ଦଅନ୍ତା ଗଣି । ୫

ଖଞ୍ଜନା ଏବଂ ଯଦୁମଣି ଥରେ ପୁଣ୍ୟ ସମୁଦ୍ର ସ୍ନାନକୁ ଯାଇ ଫେରିବା ବାଟରେ ଗୋଟିଏ ଅତି ରୂପବତୀ ଯୁବତୀଙ୍କୁ ଦେଖିଥିଲେ । ସେ ଦାକ୍ଷିଣାତ୍ୟବାସିନୀ ହେଉ ତାର ଭାଷା ବୁଝି ନ ପାରୁଥିଲେହେଁ ତାର ମାଧୁର୍ଯ୍ୟରେ ଖଞ୍ଜନା ମଧ୍ୟ ଆକୃଷ୍ଟ ହୋଇ ଅଲଭ୍ୟ ବସ୍ତୁ ପ୍ରତି କବିଙ୍କର ଆଗ୍ରହ ଜଣାଇ ଏ କବିତାଟି ବୋଲାଇସାରି କହିଥିଲେ—ତୁମେ ତାକୁ ଭୋଗ କରିବାରେ ମୋର ଟିକେ ଆପତ୍ତି ନାହିଁ । ଯଦୁମଣି କହିଥିଲେ—ଅପାଙ୍ଗପାଙ୍ଗ ଦେଖି ଜାଣି ଦିନାଏ ଅନୁଗ୍ରହ ହୋଇଛୁ । ତା ଶୁଣି ଖଞ୍ଜନା ହସିଥିଲେ ।

ସରସ—ସଦା ପ୍ରଫୁଲ୍ଲ । ସରସାନନା—ପ୍ରଫୁଲ୍ଲମୁଖୀ । ରସା—ଧରଣୀ । ସାର—ଶ୍ରେଷ୍ଠ । ରସାଳସା—ରସମୁଗ୍ଧା ନାୟିକା । ଯୋଷା—ରମଣୀ । ଦମ୍ଭ ନ ସାର—ମୋ ଦମ୍ଭ ସାରେନା । ଶତବାମା—ଅତ୍ୟୁତ୍କୃଷ୍ଟ ଏକ ସ୍ୱର୍ଣ୍ଣର ନାମ । ଶାତକୁମ୍ଭ—ସ୍ୱର୍ଣ୍ଣ । ସୁଗାତ୍ରୀ—ଅତି ସୁନ୍ଦର ଦେହ-ବିଶିଷ୍ଟା । ଆଲୀ—ସଖୀ । ଅଲୀ—ଭ୍ରମର । ଆଲୀ ଆଳମାଳକା—ସଖିସମୂହ ଏବଂ ଭ୍ରମର ସମୂହରେ । ବାଲୀଶ—ଶ୍ରେଷ୍ଠତମା ରମଣୀ । ତୋ ତୂଳବା ଚରଣ ବାଲଶ—ତକିଆ, ତୂଳାର ମାଣ୍ଡି ପରି କୋମଳ କରିଥାଏ । କ କଶ—କପଟ ହାସ୍ୟ ରେ । ମତ୍ତ କଗାନ୍ଦ୍ରଗତ—ରେ ମତ୍ତହସ୍ତୀଗାମିନୀ, ଧୀରଗମନା ! ତୋ ଶ୍ରୀକର ଧର ତୋର କିଂକର—ଅନୁଗତ ହୁଅନ୍ତ । ରଙ୍ଗ ଅଧରା—ଜବାଧରା । ବେଳେ—କେତେବେଳେ ହେଲେ । ଏ ରମଣୀମଣି ଅଣିମାଦ୍ଧ—ଅଷ୍ଟୈଶ୍ୱର୍ଯ୍ୟସୁଖ । ଗଣି—ସଙ୍ଖ୍ୟା କରି କରି । ରମଣୀମଣି—(ପାଠାନ୍ତର) ଖମଣିମଣି—ଅଲଭ୍ୟ ସୁନ୍ଦରୀ ।

## ସାମୟିକୀ—୫

( ରାଗ—କାଫି । ତାଳ—ଝୁଲା ;

ସଖିଲ ସରଳ ହର ପୀରତ ଆଶାରେ । ୦ ।
ମଲ୍ଲି ଝଂସ ଦେଲ ମଲ୍ଲ ନ ବୋଲ ଭାଷାରେ
ଖୋସିଲେ ତା ନେଇ ଚନ୍ଦ୍ରାବଳୀର ଖୋସାରେ । ୧ ।

ଡାକ ଗଲା ଶୁକ ଡାକ
ପଢ଼ା ପିପାସାରେ
ତା ମନ୍ଦିର ବାନ୍ଧ ବନ୍ଦୀ
ହସିଲେ ହସାରେ । ୨ ।

ସାରି ତା ତନୁ ଉଜ୍ଜ୍ୱଳ
କଜ୍ଜ୍ୱଳ ଘଷାରେ
ଧରାରୁ ଗୁଡ଼ିଲେ ଖରା
ପ୍ରସାରୁ ରସାରେ । ୩ ।

ଇଙ୍ଗିତ କଲେ ମୋ ମାଳ
ବାଳୀକ କାସାରେ
କେତ୍ତୁ ଶୁକ କାକ ହୁଏ
ରାଧିକା ପୋଷାରେ । ୪ ।

ଭାଷିଲି ବୋଲି ଲେଖିଲି
ବନସ୍ତ ଭାଷାରେ
ରସେ ଯଦୁମଣି ବୋଲେ
ବପକ୍ଷ ଯୋଷାରେ । ୫ ।

---

ମଲ୍ଲ—ମଣିପିବ । ମଲ୍ଲି ଝଂସ ଦେଇ ସେ ଭାବଲା ନାଗଣୀ ନଷ୍ଟସ୍ତ ଭାବବ ନାଗର ନଷ୍ଟସ୍ତ ମଣିପିବ । କିନ୍ତୁ ଭାଷାରେ ନ କହିବାରୁ ଫଳ ଏପରି ହେଲା ଯେ ବପକ୍ଷ ଯୋଷା ଚନ୍ଦ୍ରାବଳୀ ନେଇ ତା ଖୋସାରେ ଖୋସିଦେଲା । ପଢ଼ିବା ପିପାସା ରଖି ଶୁକ ଡାକ ଡାକ ଗଲା ଏହି କଥା । କେଣୁ ମୋ ନାୟିକା ମନ୍ଦିର ବାନ୍ଧ—ଦାସୀଗଣ, ବନ୍ଦୀ—ଗାୟକଗଣ ତା ଶୁଣି ହସାରେ ହସିଲେ—ଖୁବ୍ ହସିଲେ । ମାଳୀ—ମାଳା । କାସାରେ—ପୁଷ୍କରଣୀରେ ।

## ନୂଆଗଡ଼ ରାଜାଙ୍କ ଭଣତରେ—୧

( ରାଗ—ସାରଙ୍ଗ । ତାଳ—ଝୁଲ )

ରଚିଥିଲା ଏହା ବିରଞ୍ଚି
ବିପଞ୍ଚି ଗୀର୍ବକୁ ଅଇଲ ମୁଞ୍ଚି । ୦ ।

କୁଞ୍ଚିତକେଶୀର ଅଞ୍ଚିତ ମୁଖ
ଦେଖି ବଞ୍ଚୁଥିଲି ଲଭଣ ସୁଖ
ସଞ୍ଚିତ ମୋ ତପ ସଙ୍କୁଚିତ ହେଲା
କୁଚିତ୍କାରେ ଯାହା ଅଇଲ ଘୁଞ୍ଚି । ୧ ।

ଯାଚିଲି ମୁଁ ତାକୁ ପୁରୁଷାପ୍ଲିତ
ସୁଚିତ୍ତରେ ଦେଲା ହସି କଞ୍ଚିତ
ରଞ୍ଚିଥିଲା ତାହା ସେ ମୃଣାଳ ବାହା
ଏବେ ଏ କାଳରେ ଥିବ କି ବଞ୍ଚି ? । ୨ ।

ଛୁଟିର ହେବାର ମୁକୁତା ହାର
ଛୁଞ୍ଚି ଗଣି ତାକୁ ହୋଇ ବାହାର
ଖଚିତ ଭୂଷଣ ହେବଣି ଦୂଷଣ
ରଖିଥିବ ଯାହା ପୂରବୁଁ ସଞ୍ଚି । ୩ ।

ନିଶି ଅବସରେ ଲୋତକ ମୁଞ୍ଚି
ମୁଞ୍ଚି ହେଉଥିବ ଧବରେ ବଞ୍ଚି
ନବ ଦୁର୍ଗେଶ୍ୱର ଭଣନ୍ତି ଏ ଗିର
ଫେଡ଼ିବ ସେ ଦୁଃଖ ଯାଇ ପଦଞ୍ଚି । ୪ ।

---

ବିରଞ୍ଚି—ବିଧାତା । ବିପଞ୍ଚି—ବୀଣା । ଗୀର୍ବ—ଭ୍ରମିଣୀ । ମୁଞ୍ଚି—ତ୍ୟାଗ କରି । ଅଞ୍ଚିତ—ବକ୍ରୀକୃତ, ଆକୁଞ୍ଚିତ, ଭୂଷିତ । କୁଚିତ୍କାରେ—ଗାଳରେ । ଯାଚିଲି—ମାଗିଲି । ପୁରୁଷାପ୍ଲିତ—ବିପଣିତ ରତ୍ନ ।

## ନୂଆଗଡ଼ ରାଜାଙ୍କ ଭଣ୍ଡାରେ—୨

( ରାଗ—ଚୋଖ୍ରା ପରଜ । ତାଳ—ଯତ୍‍ପଡ଼ )

ସୁନ୍ଦରୀ, ଭାଲେ ସିନ୍ଦୂର ବିନ୍ଦୁ
　　ମିତ୍ରକୁ କୋଳ କି କରିଛି ଇନ୍ଦୁ । ୦ ।

ସ୍ୱର୍ଣ୍ଣ ଭୂମିରେ ଇନ୍ଦ୍ର ଗୋପ କି ସେ ?
　　ବାନ୍ଧେ଼ୟ ଅନୁରାଗ କିବା ବରଷେ । ୧ ।

ସୁବାଜସୂ ଆଶେ ରଙ୍ଗ ବାନ୍ଧୁଳି
　　ରଖିଅଛି ମାର ସାର କି ଭାଳି । ୨ ।

ସ୍ୱଚ୍ଛ ସେ ଭୂରୁଲତା ପକ୍ୱ ଫଳ
　　ମାଣିକ୍ୟ ମଥାମଣି ପ୍ରତି ତୁଳ । ୩ ।

କି ଅବା ବଦନ ଲାବଣ୍ୟ ଜଳେ
　　ନବ ପ୍ରଫୁଲ୍ଲ କୋକନଦ ଝୁଲେ । ୪ ।

କି କାମଶର ଅରବିନ୍ଦ ଫୁଲ
　　ଶ୍ରୀମାନଧାତା ବୋଲେ (ମୁହିଁ) ସମତୁଲ । ୫ ।

---

ମିତ୍ର—ସୂର୍ଯ୍ୟ

## ନୂଆଗଡ଼ ରାଜାଙ୍କ ଭଣିତରେ—୩

( ରାଗ—ସୁରଠ । ତାଳ— ଝୁଲ୍ଲ )

ନୂଆ ଛଇଲା ମହ୍ଵଲା କାହାର ଏ
ସୁ ଆଳୀ ଗଣେ ଗହଣେ ବାହାର ଏ । ୦ ।

ଅବଳା ମଣିର ବଳା
ନୂପୂର ଶବଦ
ବଳାରିତ ପଦକୁ ତ କରିଅଛି ରଦ୍ଧ । ୧ ।

ରାଜହଂସଗମନାର
ଛଟକ ଗୃଭୁଷି
ସାଜଇ କି ମନୋହର ବେଶଭୂଷା ଶିରି । ୨ ।

ହୋଇପାରନ୍ତି ଭଜନ
ଯଦି ଚୁମ୍ବୁଁ କୁ ତା
ଗଜବ ନଶରେ ପର ଗୁଞ୍ଜନ୍ତି ମୁକୁତା । ୩ ।

ରସାରେ ମୁଁ ଥିବାଯାକେ
ଜୀବନ ଦଶାରେ
ଯଶ ଧ୍ୱଜାକୁ ଉଡ଼ାନ୍ତୁ ରସିକ ସଂସାରେ । ୪ ।

ସତେ ରତେ ବସାଇବ
କରିବ ବିଧାତା
ପ୍ରତେ ନାହିଁ କହେ ବିନାୟକ ମାନଧାତା । ୫ ।

## ନୂଆଗଡ଼ ରାଜାଙ୍କ ଭଣଡରେ—୪

( ରାଗ—ସୁରଠ । ତାଳ—ଏକତାଳୀ )

ସଞ୍ଜ ଘଞ୍ଜ ଜଳ ପୀବର ଉରଜା
ଗଭ୍ର ଗୃହ୍ମରେ । ୦ ।

ଭଲ୍ଲ ତା' ନୟନ-ବାଣ
ରୂପେ ଯୋଗ ଝନା ପ୍ରାଣ
ଦେଲ ଦନ୍ଧ ରେ । ୧ ।

କଞ୍ଚେ ବଦନ ଶଶୀ
ଫେରାଇ ଅଳପ ହସି
ନେଲ ମୋହ୍ନରେ । ୨ ।

ଯେତେ ଅନୁରାଗ ଭାବ
କେତେ ସାଉକାର ଲେଭ
ଥିଲ ଛନ୍ଦରେ । ୩ ।

ନୃପ ମାନଧାତା ଗିର
ସେ କାଳେ ଯା କଲ ମାର
ନୋହେ କନ୍ଧ ରେ । ୪ ।

ଜ—ଜୟଯୁକ୍ତ ।

## ନୂଆଗଡ଼ ରାଜାଙ୍କ ଭଣିତରେ—୫

( ରାଗ—ଆଶାବରୀ । ତାଳ—ଝୁଲା )

ସେ କି ରସିକରେ ଗଣାରେ
ଯେ କି ନ ରଖିଛି ପ୍ରୀତି ପଣାରେ । ୦ ।

ତାର ଥିଲେ ଇନ୍ଦ୍ର ସମ୍ପତ୍ତି
ସାର ବସ୍ତୁର ସେ ବିପତ୍ତି
ଯାର ନାହିଁ ସୁ ରସବନ୍ତି
କରମଟି ତାର ବଡ଼ ଊଣା ରେ । ୧ ।

ଯୋଗୀ ଯୋଗ ଭଙ୍ଗ ନବାନା
ଭୋଗି ଭୋଗ ପାଇଁ ସେ ସିନା
ଭାଙ୍ଗି ଦିଏ କାମ ବେଦନା
ଏହି ରୀତି ଯା'କୁ ନୋହେ ଜଣା ରେ । ୨ ।

ପ୍ରକାଶ ସୁହାସ ମଧୁର
ପରସନ୍ନ ମୁଖ ବନ୍ଧୁର
ଦରଶନ ନୋହୁଛି ଯା'ର
ପଦ୍ମ ସମ ନେତ୍ର ଥିଲେ କଣା ରେ । ୩ ।

ନବଦୁର୍ଗାଧିପ ଭଣିତ!
ଭାଗ୍ୟ ଥିଲେ ଅପରମିତ
ଯୋଗ୍ୟ ହେବ ସ୍ନେହକୁ ସତ
ଭଗବନ୍ତର ଥିଲେ କରୁଣା ରେ । ୪ ।

## ନୂଆଗଡ଼ ରାଜାଙ୍କ ଭଣ୍ଡରେ—୬

( ରାଗ—ଆଶାବରି । ତାଳ—ଝୁଲା )

ରହିଯା ରେ ବନ୍ଧୁ ରହିଯା ରେ
ହସି କଥାପଦେ କହିଯା ରେ ।
ଅରୁଣା ଧରିତ୍ରୁ ତରୁଣାଙ୍କି ବାଳା
ମୋଠାରେ କରୁଣା ବହିଯା ରେ । ୦ ।

ଛଳ ପରିହାସ ପହିଯା ରେ
ଜଳପନା ମୋର ସହିଯା ରେ
ରଦନ ମଞ୍ଜୁଳ ବଦନ ଛପାଇ
ମଦନ ଶରେ ନ ଦହିଯା ରେ । ୧ ।

ମୋ ଅଙ୍କ-ତଳପେ ଶୋହିଯା ରେ
ମନମୋହି ଥରେ ମୋହିଯା ରେ
କୀର୍ତ୍ତିକେତନକୁ ଉଡ଼ାଇ ଅଗ୍ରତେ
ପ୍ରୀତି-ନାବ ମଙ୍ଗ ବାହିଯା ରେ । ୨ ।

ଯାବେ ନିଶିଥିମା ପାହିଯା ରେ
ସଂସାରେ ଯଶ ରୁହାଇଯା ରେ
ଚିର କ୍ଷୁଧାର୍ତ୍ତିକୁ ସାରଙ୍ଗ ଅଧରୁ
ସୁଧାର ଧାର ବୁହାଇଯା ରେ । ୩ ।

ନର୍ଦ୍ଦସ୍ୱାବଶ୍ଚ ରୁ ନୋହିଯା ରେ
ଦସ୍ୟାମ୍ମୁଖି ଏବେ ହୋଇଯା ରେ
ନବଦୁର୍ଗ ରାଣ ପକାଉଛି ରାଣ
ମଧୁବନ ରସ ଦେଇଯା ରେ । ୪ ।

ମଧୁବନ—କାମ, ରତି ।

## ଖଣ୍ଡପଡ଼ା ରାଜାଙ୍କ ଭଣଡ଼ରେ—୧

( ରାଗ—ଯମକ ରାଜ । ତାଳ—ଯତିତାଳ )

ସୁଧୀର ଧୀର—ବପଞ୍ଚ ଶୀରରେ
କ ରଞ୍ଜିଲୁ ମୋହ ପରେ କୁସୁମ ଶିର । ୦ ।

ଗୁରୁ— ମାରଣା ଖର ମାର
ମାର୍ଗଣ ଗଣ ତାର
ବନ୍ଧଇ ଅସୁମାର
ମରଣ ଯନ୍ତ୍ରେଁ ଆର
ବରଣ ଗତି ତାର
ହାରକ ହେଉ ତାର । ୧ ।

ସାର— ଶାରଦ ତାରକାର
ଧାର ଲପନା ବାର
ବେନ ବୟସୀ କାର
ହେବ ମୁଁ ଭୁ ବର୍ତ୍ତର
କରୁଛନ୍ତି ଜୁହାର
ମୋ ମଣିମସ୍ତ ହାର । ୨ ।

ଗାର— ନ କାଠ ବସୁଧାର
ନୟନୁଁ ଧାର ଧାର
ନ ବୁହା ମାରଧାର
ସୁବାଣୀ ତୋ ଲଚାର
ମୁଁ ପର ପର୍ତ୍ତର
ନ କର ନାରଖାର । ୩ ।

ବାର— ଅଦୋଷେ ଭୃଗୁ ଟାର
ନ ମଣ ଅବର୍ତ୍ତର
ମନକୁ ତୋ ପର୍ତ୍ତର
କେବଣ ଉପର୍ତ୍ତର
ସେବାକୁ ନ ଦେବାର
କାରଣେ ରୁଚିବାର । ୪ ।

ଠାଉ— କ ଅବା ଅସ୍ୱୀକାର
କଲ ତୋ ଆଜ୍ଞାଭର
ସଗେଷେ କରୁ ଆଉ—
କତ ଲୋଚନ ବାର
ଜ ଓଷ୍ଠ ଦ୍ୱନ୍ଦଆର
ନ କମ୍ପା ବାରମ୍ବାର । ୫ ।

ଝାଉ— ଖଣ୍ଡ ପଡ଼ନ ସାଇ
ସଚୁମ୍ବା ବର ଯାଉ
ଇସ୍ପାତ ଚରୁ ଆଉ
ସନ୍ତକ ସେ ରାଜାର
ଦୋଷ ଥିଲେ ହଜାର
କ୍ଷମରେ ଗଳାହାର ! ୬ ।

ଖଣ୍ଡପଡ଼ା ରାଜାଙ୍କ ଭଣତରେ—୨

( ରାଗ—ଆଷାଢ଼ ଶୁକ୍ଳ । ତାଳ—ଝୁଲ୍ଲ )

ଆ ଜୀବନ ଧନ
ତୋ ପ୍ରେମେ ମୁହିଁ ଆଜୀବନ ଧନ । ୦ ।

ରାଜୀବନେତ୍ରା ଆଜ କମ୍ପା ମାନ
ତାଜବ ହେଉଛୁ ଦେଖି ଏମାନ
ଯାନ ହେଉ ନାହୁଁ ମୋ ଦୃଷ୍ଟି ଗିରେ
ସାକଲ୍ୟ କ ଏହା ଉସନ୍ଧ ରେ । ୧ ।

ବାଜୀ ରାଜ ପାଜ କାଜ ମଦନ
ଗାଜ ବନ୍ଧ ମର୍ମେ ହେଏ କଦନ
ଝାଙ୍କି ବାକଲ୍ଲ ପଲ୍ଲବ ପ୍ରକାରେ
ଭାଜ ପଡ଼ୁଛି ଅନା ରାମାବର । ୨ ।

ମାଜଦେବ ମୁଖ ଅଙ୍ଗେ ବସାଇ
ସାଜଦେବ କେଶ ଚଉ ରସାଇ
ଲାଞ୍ଜି କଜ୍ଜ୍ୱଳ ଗାରେ ଅକ୍ଷଯୁଗ
ରଞ୍ଜିଦେବ ବଳାଇ ଅନୁରାଗ । ୩ ।

ଖଞ୍ଜିବ ଯଥାସ୍ଥାନେ ଆଭରଣ
ଗଞ୍ଜିବ ଦର୍ପକ ଗାରିମା ପଣ
ମଞ୍ଜିଷ୍ଠା ରାଗେ ଲମ୍ବିବ ଯାବକ
ବର୍ଜ୍ଜିବେ ଗ୍ରମାନ ଯାଉ ମୋଦକ । ୪ ।
ଅର୍ଜ୍ଜିବ ପାକ ଶାସନ ସମ୍ପଦ
ମର୍ଜ୍ଜରେ ବର୍ତ୍ତ୍ତିତ ଦେ ସେହି ପଦ
ଭଜ ମନ୍ତ୍ରମାନେରୁ ଶ୍ରୀପତ୍ନୁର
ଅର୍ଜ୍ଜି ଲେଖେ ନୃପ ଭ୍ରମରବର । ୫ ।

## ଖଣ୍ଡପଡ଼ା ରାଜାଙ୍କ ଭଣତରେ—୩

( ରାଗ—ଚୋଢ଼ ପରଜ । ତାଳ—ଆଠତାଳୀ )

ବଡ଼ ସୁଯୋଗ ଯେ ଆଜ
ଜଣିଥିଲା ପାଇ
ବଜ୍ରଧର ଅଇଶ୍ୱର୍ଯ୍ୟକୁ ଲଭିଲ
ବନଜାକ୍ଷି ଶୋଭା ଗୃହିଁ । ୦ ।
ତ୍ରିଭୁବନ ମୋହି
ଭୁବନ ପ୍ରସାଇ
ବେଜ ଘଟ ଥିଲା ଥୋଇ
ତରଣିଜା ତଟରେ
ଏହି ସମୟରେ
ପ୍ରବେଶ ମୁଁ ହେଲି ଯାଇ । ୧ ।
ବେଜ କରେ କୁମ୍ଭ
ତୋଳିବା ଆରମ୍ଭ
କରୁଁ କଟିକୁମ୍ଭସ୍ତନା
ବୃଷଧ୍ୱଜ ଶିର
ମଣ୍ଡନେ ତତ୍ପର
ବଢ଼ାଯାଇମୁଁ କି ଚନ୍ଦ୍ରମା । ୨ ।
ସେ କାଳେ କି ଦୃଶ୍ୟ
ହେଲା ଏକପାଶ୍ୱ
ବଷକ କକ୍ଷରେ ମାଳି
ରତ୍ନ ସାନୁ ସନ୍ଧି
କନକ ନବ ଘନ
ଉଦୟ ପରବେ ଝଳି । ୩ ।

କଳସକୁ ରଖି
ଶିରେ ସରୋଜାକ୍ଷି
ଈଷଦ୍ଧାସ୍ୟେ ଗ୍ଲହୁଁ ମୋତେ
ମଣିଲୁ ପ୍ରବାଳ
ସଂପୂଟକୁ ଫାଗ
ଝଟକ ଆସିଲୁ ପ୍ରତେ । ୪ ।

ଶ୍ୟାମରମ୍ୟ ବାଣୀ
ସୁଧା ସମ ମଣି
ଆନନ୍ଦିତ ସଖୀବୃନ୍ଦ
ମୋହନ ବଗ୍ରନ୍ଧ
ପଦଯୁଗ୍ମ ବନ୍ଦେ
ଭ୍ରମରବର ନରେନ୍ଦ୍ର । ୫ ।

## ଖଣ୍ଡପଡ଼ା ରାଜାଙ୍କ ଭଣିତରେ—୪

( ରାଗ—ମଙ୍ଗଳ ଗୁର୍ଜ୍ଜରୀ । ତାଳ—ଆଡ଼ଖେମଟା )

ଆସେ କି ରଙ୍ଗେ ତଳି ରସ ରଙ୍ଗମାରେ
ହୁଅନ୍ତା କି ଏ ମୋ ପ୍ରାଣସଙ୍ଗମାରେ । ୦ ।
ସେ ନବ ରଙ୍ଗମା ବର କୁନ୍ଦନ ଅଙ୍ଗମା
ଯୋଗେଣ ଯୋଗ ଭଙ୍ଗିମା ଗ୍ଲରୁ ଭ୍ରୂଭଙ୍ଗିମା । ୧ ।
ବାଳାର ଗ୍ଲତୁର୍ଯ୍ୟ ଭଙ୍ଗି କନ୍ଦର୍ପ କଉତୁରୀ
ସିଦ୍ଧ ବ୍ରହ୍ମଗ୍ଲରୀ ଧୈର୍ଯ୍ୟ ଦେବ ତ କଉତୁରୀ । ୨ ।
ଅନୁକ୍ଷଣେ ତା ତୀକ୍ଷଣ ଇକ୍ଷଣ ଅଞ୍ଚଳ
ବନୁବଣା ଏଣୀ ଗ୍ଲହାଣିରୁ ତ ଚଞ୍ଚଳ । ୩ ।
ଲାବଣ୍ୟ ରସନଧିର ଭାବ ଚମତ୍କାର
ତଳ୍ଲେକନେ ଅଙ୍ଗେ ଜନ୍ମେ ମଦନ ବିକାର । ୪ ।
ପ୍ରିୟ ସଖୀ କରେ କର ଭାର ଦେଇ ରଙ୍ଗେ
କଥା ହୁଅଇ ସ୍ମିତ ହାସ୍ୟ କି ପ୍ରସଙ୍ଗେ । ୫ ।
ଭଲ ସୁଯୋଗରେ ଭେଟ ପଡ଼ିଛି ଛଇଳୀ
କରନ୍ତୁ କି ତାକୁ ମୋର ଗଳା ସୁନାମାଳୀ । ୬ ।
କହେ ଭୃଙ୍ଗବର କୁଞ୍ଜବିହାରୀ କେଶରୀ
ରସିକ ରାଜ୍ୟେ ମୋ ଭୁଲେ ହୁଅନ୍ତା କେ ସରି ? । ୭ ।

## ଖଣ୍ଡପଡ଼ା ରାଜାଙ୍କ ଭଣଡରେ—୫

( ରାଗ—ରେଗୁପ୍ତ । ତାଳ—ନାଣ୍ଡ )

ଆଜ୍ କ କଳାବଣ୍ଟ କ
କେଳପୁରେ ଦେଖିବ । ୦ ।

ପରବାସେ ରହିବାର
ଯେତେ ଦୁଃଖ ସହିବାର
ଦର୍ଶନ ମାତ୍ରକେ ତାର
ଦୁଃଖକୁ ଉପେକ୍ଷିବ । ୧ ।

ଉରଜେ ଉର ଲଗାଇ
ଗାଢ଼େ ମୁଁ ଭିଡ଼ିବ ନେଇ
ଚନ୍ଦ୍ରପଟେ ଯନ୍ତ୍ର ପରି
ତା ଅଙ୍ଗରେ ଲିଖିବ । ୨ ।

ମଦନରେ ମୁକୁର
ବଦନକୁ ଚୁମ୍ବିବାର
ଜୀବନ୍ଲୋକେ ଜୀବନକୁ
ଧନ୍ୟକରି ଲେଖିବ । ୩ ।

ସଖୀ ଭାବେ କରି ବେଶ
ଦେଖାଇବ ଆଦରଶ
ତା' ଅଧର ବଧୂଳର
ସତେ ମଧୁ ଚାଖିବ । ୪ ।

ବନ୍ଧୁ ବନ୍ଧେ ବରେ ରତି
ନରତେ ସୁରତେ ମାତି
ପାଶୋରିଲେ ବନ୍ଧ ସ୍ଥିତି
ଶିଖାଇଲେ ଶିଖିବ । ୫ ।

ବଦନ୍ତି ଭୃଙ୍ଗ ଭୂପତି
କରିବେ କ ଶିଷ୍ୟପତି
ମତି ମୋହନାକୁ ସତେ
କୋଳେ ଧରି ଜାକିବ । ୬ ।

## ଖଣ୍ଡପଡ଼ା ରାଜାଙ୍କ ଭଣତରେ—୭

( ରାଗ—ଭାଟିଆର । ତାଳ—ଏକତାଳୀ )

ରୁଷୁ ରୁଷୁ ତ ରାତ ପାହିଲାରେ
ଧନ ତୋ ଅନୁକମ୍ପା ନୋହିଲାରେ ।
କରୁଣା ବନ୍ତ ବୋଲି
ଶରଣାଗତ ହେଲି
ଅରୁଣ ଦେଖୁ ଦେଖୁ ଉଇଁଲାରେ । ୦ ।
ତରୁଣାଙ୍ଗୀ ଛଇଳା
ଅରୁଣା ଧର ବାଳା
ଫୁରୁଣା ତୋର କାହିଁ ରହିଲାରେ ।
କରୁଣାଳୟା ମତ
ଦନ୍ତୀ-ଗତ ସୁଦନ୍ତୀ
ମୋ ନାଁ ଲଗାଇ କେ' କ କହିଲାରେ । ୧ ।
ଚରଣାର୍ଣ୍ଣିତ ଜନେ
ଏ ରୀତ ଅରଜନେ
ସଂସାରକୁ କ ଶୋଭା ପାଇଲାରେ ।
ଘୋରଣା ସମ ମଥା
ଭ୍ରମୁଛୁ ଯାହା କଥା-
ପଦକ ତୋ ଅଗୁଣା ହୋଇଲାରେ । ୨ ।
ସ୍ମରଣା କର ଗୁଣ-
ଗଣ ସଗ୍ରଗ ପଣ
ଏ ଦାସ ମର୍ମେ କ୍ଳେଶ ବହିଲାରେ ।
ଝରଣା ବମ୍ବାଧରୁ
ସୁଧା ନପିଇବାରୁ
କ୍ଷୁଧା ମରଣ ଦଶା ବହିଲାରେ । ୩ ।
ବରଣା ଭାବ ଦେଖି
ଆଶା ଗୃତକ ପକ୍ଷୀ
ଭବିଷ୍ୟତରେ ନକ ଜାଇଲାରେ ।
ଅରଣା ହରଣାକ୍ଷି
ଅନା ବାଟରେ ସଲକ୍ଷି
ଭ୍ରମରବର ନୃପ କହିଲାରେ । ୪ ।

# ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର

**ପ୍ରଥମ କଳା—**

ଏହି କଳା ବା ଛାନ୍ଦରେ ସପ୍ତମ ପଦ ଶେଷସୁଦ୍ଧା କବି ଗ୍ରନ୍ଥର ନାମକରଣ ଘେନି ବର୍ଣ୍ଣନା କରିଅଛନ୍ତି । ସେ ପୁରୁଷୋତ୍ତମ ବିଷ୍ଣୁଙ୍କ ପୁଣ୍ୟ ଏବଂ ଶ୍ରେଷ୍ଠ 'ପାଦ' ସହିତ ପାର୍ଥିବ 'ପଦ୍ମ'ର ସଂଯୋଗ ଅର୍ଥାତ୍ ପଦ୍ମପାଦ ବା ଚରଣାରବିନ୍ଦ କେବଳ କବି ଗୃହସ୍ଥ କହି ବିଷ୍ଣୁ ପଦର ମାହାତ୍ମ୍ୟ ନିପୁଣ ଭାବରେ ବର୍ଣ୍ଣନା ସଙ୍ଗେ ସଙ୍ଗେ ଅବତାରୀ କୃଷ୍ଣଙ୍କ ପାବନ ନାମ ଶୁଣି ସେ କିପରି ଏହି ପ୍ରବନ୍ଧ ରଚନା କରିଥିଲେ, ତାର ସୂଚନା ଦେଇ ଅଛନ୍ତି ।

ଅନନ୍ତର କୃଷ୍ଣ ଏବଂ ବଳରାମଙ୍କ ନିର୍ମିତ ଦ୍ୱାରକା ନଗରୀର ବର୍ଣ୍ଣନା ସମସ୍ତ ଛାନ୍ଦ ଛତିଶି ପଦରୁ ଅବଶିଷ୍ଟ ମଧ୍ୟରେ ଏକାନ୍ତ ନୂତନ ରୀତିରେ ଦେଇ ପାରଂପାରିକ କାବ୍ୟ ଗ୍ରନ୍ଥ ମାନଙ୍କ ଠାରୁ ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛନ୍ତି ।

ସେ ନିଜକୁ ଜଣେ ଶୂଦ୍ର କବି ବୋଲି ଅଭିହିତ କରି ଚଣ୍ଡାଳ-ରାହୁ-ଉଚ୍ଛିଷ୍ଟ-ଚନ୍ଦ୍ରମା ଯେବେ ମହେଶ୍ୱର ଶିବଙ୍କର ଶିରେ ଭୂଷଣ ହୋଇପାରେ, ତେବେ ପୁରୁଷୋତ୍ତମ କୃଷ୍ଣଙ୍କର ଚରିତ ଶୂଦ୍ର ମୁଖରୁ ନିଃସୃତ ହୋଇଥିଲେ ହେଁ ତାହା ପଣ୍ଡିତମାନେ ରୌଦ୍ରତା ବହନ କରି ତ୍ୟାଗ କରିବା ଅନୁଚିତ ବୋଲି ତାଙ୍କର ଆଡମ୍ବରିକ ସ୍ୱାଚ୍ଛନ୍ଦିକ ସୁଷମିତ ସୁଶ୍ରାବ୍ୟ ଭାଷାରେ ଏପରି ମଧୁରତର ଭାବେ ଗଢ଼ି ପାରିଛନ୍ତି, ଯାହା ଫଳରେ ଏବେ ମଧ୍ୟ ଅଭିଜାତ ଦାମ୍ଭିକ ବର୍ଣ୍ଣାଶ୍ରମୀ ସ୍ୱର୍ଣ୍ଣ-ପ୍ରାଣ ବଜ୍ରକଠିନ ପଥର ହୃଦୟ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଉଛି ।

ଶୂଦ୍ର ମୂର୍ଖଙ୍କ ଏ ହୋଇଛି ବାହାର
ରୌଦ୍ରତା ବହି କେହି ନ ବର୍ତ୍ତିର
ବାଧ୍ୟ ବାଧ୍ୟତ୍ତ ଉଚ୍ଛିଷ୍ଟ ଜଣା
ଶିବେ ବାଜେ ଚନ୍ଦ୍ରଚୂଡ଼ ବାଜଣା ଯେ
ପଦ୍ମା-ପତିଙ୍କର ପଦ ଯେ
ସମ୍ଭବ ସମ୍ପଦ ପଦାର୍ଥରେ ବ୍ୟର୍ଥ
ଖଣ୍ଡିବାରେ ଅପବାଦ ଯେ ।

ଜାତୀୟତାର ମୂର୍ତ୍ତିମନ୍ତ ବିଗ୍ରହ ପଦ୍ମମଣି ମହାପାତ୍ର ଊନବିଂଶ ଶତକର ପ୍ରାରମ୍ଭରେ ଭାରତୀୟ ଏକତା ଲାଗି ଏ ଯେଉଁ ମାନସିକ ଉଦାରତାର ବାଣୀ ଜ୍ଞାପନ କରିଯାଇଛନ୍ତି ତାହା ସମଗ୍ର ବିଶ୍ୱ-ଚିନ୍ତାକୁ ବିସ୍ମିତ କରୁଅଛି ।

ଏହି ଶୂଦ୍ର ମୁଖ ପଦ୍ମରୁ ନିଃସୃତ ବାଣୀ ପଦକ 'ପଦକ' ପରି କୋଟି କଣ୍ଠରେ ଶୋଭିତ ହୋଇ ମଧ୍ୟ ଏବେ ସୁଦ୍ଧା ମାନବ ଚିତ୍ତରୁ ମତ ଦ୍ୱୈଧ ହୋଇ ଦୂରକରି ପାରିନି ଏହାହିଁ ଅତି ବିସ୍ମୟ କର । କିନ୍ତୁ ଏ ପ୍ରକାଶଭଙ୍ଗି କବିଙ୍କର ସ୍ୱକୀୟ ଦାର୍ଶନିକ ଚିନ୍ତା । ଏମନ୍ତକି ଏହା ଚିର ନୂତନ ହୋଇ ରହିଛି ।

# ପ୍ରଥମ-କଳା

## ଗ୍ରନ୍ଥର ନାମ-କରଣ ଘେନ ବର୍ଣ୍ଣନା—

( ରାଗ – ରସକୁଲ୍ୟା )

ମଧୁପର ପଦ ଅନନ୍ତ ଶେଯେ
ପଦ୍ମା-କରର ମଣ୍ଡନତା ସର୍ଜେ
ହଂସ ମତରେ ଜାଣି ଏହ୍ବ ମୂଳ
ତାରକ ବଳେ ବର୍ଜିଥାନ୍ତି କୁଳ, ସେ
ମୀନ, ଧ୍ୱଜ, ଗୃପେ ଶୋଭା, ଯେ
ବିଯୋଗୀ ଯେ ଶୁକ ରାଜାର ତାରଣେ
ପ୍ରକାଶିତ କରେ ପ୍ରଭା, ଯେ । ୧ ।

**ଅନ୍ୱୟ**—ମଧୁପର (ଙ୍କ) ପଦ ଅନନ୍ତ ଶେଯେ (ଥିବାବେଳେ, ତାହା ପରଶିବା ହେତୁ) ପଦ୍ମା (ଙ୍କ) କରର ମଣ୍ଡନତା ସର୍ଜେ । ହଂସ ମତରେ ଏହ୍ବ (ପଦକୁ) ମୂଳ (ବୋଲି) ଜାଣି (ପରମାର୍ଥୀ ମାନେ) ତାରକ ବଳେ କୁଳ ବର୍ଜିଥାନ୍ତି । (ଏବଂ, ଉକ୍ତପଦ) ମୀନ, ଧ୍ୱଜ, ଗୃପେ ଶୋଭା (ପାଏ) । (ପୁନଶ୍ଚ) ଯେ ବିଯୋଗୀ ଶୁକ (ତାଙ୍କଦ୍ୱାରା) ରାଜା (ପରୀକ୍ଷିତ) ତାରଣେ (ତାହାମଧ୍ୟ) ପ୍ରଭା ପ୍ରକାଶିତ କରେ ।

**କଥା**—ବିଷ୍ଣୁ ଅନନ୍ତ ଶଯ୍ୟାରେ ଥିବାବେଳେ ତାଙ୍କ ପାଦ ସମ୍ପର୍କ ଯୋଗୁଁ ଲକ୍ଷ୍ମୀଙ୍କ ହସ୍ତର ଭୂଷଣତା ବା ଅଳଂକରଣର ମର୍ଯ୍ୟାଦା ସୃଷ୍ଟି ହୋଇଥାଏ । ପରମ ହଂସ ଯୋଗିମାନଙ୍କ ମତରେ ଉକ୍ତ ପଦ ଏକମାତ୍ର 'ମୂଳ' ବୋଲି ଅବଧାରିତ ହେବାରୁ ଉକ୍ତ ଯୋଗୀନ୍ଦ୍ର ମାନେ ତାରକ ନାମ ବଳରେ ସମସ୍ତ ବାସନା ରୂପ କୁଳ ତ୍ୟାଗ କରିଥାନ୍ତି । ଏବଂ ଉକ୍ତ ପଦ ମୀନ, ଧ୍ୱଜ, ଗୃପ ଆଦି ଶ୍ରେଷ୍ଠ ଅଷ୍ଟାଦଶ ଚିହ୍ନରେ ଶୋଭିତ ଅଟେ । ପୁନଶ୍ଚ ସର୍ବତ୍ୟାଗୀ ଶୁକ ଦେବଙ୍କ ଦ୍ୱାରା ପରୀକ୍ଷିତ ରାଜାଙ୍କ ତ୍ରାଣ ଲାଗି ସେହ୍ବ ପାଦ ପ୍ରଭା ପ୍ରକାଶିତ କରେ । ଅର୍ଥାତ୍ ସେ ପାଦର ମହତ୍ତ୍ୱଗାନ କରି ଶୁକ ପରୀକ୍ଷିତଙ୍କୁ ତ୍ରାଣ କରିଥାନ୍ତି ।

---

ଶବ୍ଦାର୍ଥ—ମଧୁ-ପର ( ମଧୁ ନାମକ ରାକ୍ଷସର ପରମ ଶତ୍ରୁ ) ବିଷ୍ଣୁ । ହଂସ—ପରମହଂସ-ଯୋଗୀ । ମୀନ, ଧ୍ୱଜ, ଗୃପ—ପାଦର ସର୍ବଶ୍ରେଷ୍ଠ ଚିହ୍ନ । ଯାହାକି ସାମୁଦ୍ରିକରେ ବର୍ଣ୍ଣିତ ଅଛି । ବିଯୋଗୀ—ସର୍ବତ୍ୟାଗୀ । ରାଜା—ପରୀକ୍ଷିତ । ପ୍ରଭା—ମହତ୍ତ୍ୱ, ଜ୍ୟୋତି ।

ଏହି ପ୍ରଥମ ପଦକୁ କେହି କେହି ପଦ୍ମ ଭାବରେ ଏପରି ଅର୍ଥ କରିଥାନ୍ତି —

**ଅନ୍ୱୟ**—ମଧୁପ ର ପଦ (ଯେଉଁ) ଅନନ୍ତ ଶେଯେ (ଥାଏ); (ଯେ) ପଦ୍ମାକରର ମଣ୍ଡନତା ସର୍ଜେ, ମତରେ ହଂସ (ମାନେ) ଏହି ମୂଳ (ସ୍ୱାଦ) ଜାଣି (ପାରି) ତାର କବଳେ (ପଦ୍ମାକର) କୂଳ ବର୍ଜିଥାନ୍ତି । (ତାହା) ମୀନଧ୍ୱଜ (ର) ଗୁଣପ (ମଧ୍ୟ) ଶୋଭା (ପାଏ) । ବିଯୋଗୀ ଯେ(ଉଁ) ସୁକରଜା (ତାଙ୍କ)ର ତାରଣେ (ତାହା) ପ୍ରଭା (ମଧ୍ୟ) ପ୍ରକାଶିତ କରେ ।

**କଥା**—ଭ୍ରମରର ପଦ ଯେଉଁ ଜଳାସ୍ତରଣ ଶେଯରେ ଥାଏ ଅର୍ଥାତ୍ ପଦ୍ମ ଉପରେ ଥାଏ; ଯେଉଁ ପଦ୍ମ ପୁଷ୍କରଣୀର ସୌନ୍ଦର୍ଯ୍ୟ ସୃଷ୍ଟି କରେ, ମତୁଆଳ ହଂସମାନେ ଏହି ପଦ୍ମ ମୂଳର ସ୍ୱାଦ ଜାଣିପାରି ତାହା ଖାଇବାକୁ ପୁଷ୍କରଣୀର ତଟଦେଶ ତ୍ୟାଗ କରିଥାନ୍ତି । ଏମନ୍ତକି ଉକ୍ତ ପଦ୍ମ କନ୍ଦର୍ପର ଧନୁରେ ମଧ୍ୟ ଶୋଭା ପାଇଥାଏ । ବିରହିଣୀ ଯେଉଁ ସୁନଖୀ ସୁନ୍ଦରୀ ମାନେ ତାଙ୍କର ବିରହ ଦୁଃଖ ନିବାରଣ ଲାଗି ସେହିପଦ୍ମ କାମହାରା ପ୍ରଯୁକ୍ତ ହୋଇ ମାଧୁର୍ଯ୍ୟ ପ୍ରକାଶିତ କରେ ।

**ଆଲୋଚନା**—ଏହି କଳାର ପ୍ରଥମ ସାତ ପଦରେ କବି ସଂସ୍କୃତ ଭାଗବତର 'ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦଂ' ଏହି ବିଷ୍ଣୁ ପାଦପଦ୍ମ ବର୍ଣ୍ଣନାରୁ କିପରି ଗ୍ରନ୍ଥ ଉତ୍ପତ୍ତି ଲଭିଛି ଏବଂ ନାମକରଣ କରାଯାଇଛି ତାହା ବିଲକ୍ଷଣ ଭାବରେ ବର୍ଣ୍ଣନା କରି ତାଙ୍କର ସଂସ୍କୃତ ଭାଗବତରେ କିପରି ଅଧିକ ପ୍ରବେଶ ଥିଲା ତାର ପ୍ରମାଣ ଦେଇ ଅଛନ୍ତି । ଭାଗବତକାର 'ଯତ୍ ପାଦପଦ୍ମ' ଯାହାଙ୍କର ପାଦପଦ୍ମ ବୋଲି ଯେ ବର୍ଣ୍ଣନା କରିଛନ୍ତି, କବି ଶିରୋମଣି ଯଦୁମଣି ଏ କ୍ଷେତ୍ରରେ ପଦ୍ମକୁ ଅଧିକ ମର୍ଯ୍ୟାଦା ନଦେଇ ପ୍ରଭୁଙ୍କର ପାଦରହିଁ ଶ୍ରେଷ୍ଠତ୍ୱ ପ୍ରତି ଅଧିକ ମନୋନିବେଶ କରି ଅଛନ୍ତି ।

କବି ବୈଷ୍ଣବ ଧର୍ମ ପ୍ରତି ଗ୍ରନ୍ଥ ରଚନା ବେଳେ ଅଧିକ ଭାବ-ପ୍ରବଣ ଥିବାର ତାଙ୍କ ରଚନାରୁ ଅବଧାରିତ ହୋଇଥାଏ । ପରମହଂସ, ବିଯୋଗୀ ଶୁକ, ପରମ ଭାଗବତ-ପରୀକ୍ଷିତ ରାଜା, ଧ୍ୱଜାଙ୍କୁଶ ଗୃପାଦ୍ର ବିଷ୍ଣୁଙ୍କର ଅଷ୍ଟାଦଶ ପଦଚିହ୍ନ, ଏମନ୍ତକି ଶିବ, ବ୍ରହ୍ମା, ଅନନ୍ତ ଆଦିଙ୍କ ନ୍ୟୂନତା ପ୍ରତିପାଦନ ଦ୍ୱାରା ସେ ବିଷ୍ଣୁଭକ୍ତିରେ ଉଚ୍ଛଳିତ ଥିବାର ଜଣାଯାଏ ।

ମଣ୍ଡନତା ସର୍ଜେ ପ୍ରୟୋଗରୁ ଜଣାଯାଏ—'କମିବହ୍ନ ମଧୁରାଣାଂ ମଣ୍ଡନଂ ନାକୃତୀନାମ୍'—ସୁନ୍ଦରାଣାଂ ଆକୃତୀନାଂ ସମ୍ବନ୍ଧେ କମିବ ବସ୍ତୁ ଭୂଷଣଂ ନଭବତି । ସେ ପଦ ସମ୍ପର୍କରେ ପଦ୍ମଙ୍କ କର ସେଥିର ଭୂଷଣ ପରି ଦେଖାଯାଏ । ଅଥବା ପରମ ଶୋଭାମୟୀ ଲକ୍ଷ୍ମୀଙ୍କ କରପଲ୍ଲବ ସେ ପଦକୁ ଛୁଇଁବା ଯୋଗୁଁ ଶୋଭାମୟ ହୋଇଥାଏ ।

ଶବ୍ଦାର୍ଥ—ମଧୁପ—ଭ୍ରମର । ଅନନ୍ତ—ଜଳାସ୍ତରଣ । ପଦ୍ମାକର—ଜଳାଶୟ । ମତ (ମତ୍ତ)—ମତୁଆଳ । କବଳ—ଖାଇବା । କୂଳ—ତଟ । ମୀନ-ଧ୍ୱଜ—କନ୍ଦର୍ପ । ବିଯୋଗୀ—ବିରହିଣୀ । ସୁକରଜା—ଉତ୍ତମ ନଖ ବିଶିଷ୍ଟା ଅର୍ଥାତ୍ ସୁନ୍ଦରୀରମଣୀ । ପ୍ରଭା—ମାଧୁର୍ଯ୍ୟ ।

ଅଘାର ଅଙ୍ଘ୍ରିକ ଅମ୍ବୁଜ କର
ଛବ ବର୍ଣ୍ଣିବାର କବଚାତୁରୀ
ବିରଞ୍ଚି ଦର୍ପକାର ସର୍ପ-ଇନ
ଚତୁର, ପଞ୍ଚ, ସହସ୍ର ବଦନ ରେ
କାହା କୀର୍ତ୍ତି ଗୁଣ ଗାଇ ଯେ
ଅଷ୍ଟ ପନ୍ଦର ବିଂଶ ଶତ ନେତ୍ରକୁ
ମୁଦନ୍ତି କାହାକୁ ଧ୍ୟାୟି ଯେ । ୨ ।

**ଅନ୍ୱୟ**—ଅଘାର ଅଙ୍ଘ୍ରିକ ଅମ୍ବୁଜ କର ଛବ ବର୍ଣ୍ଣିବାର (କେବଳ) କବ ଚାତୁରୀ (ଅଟେ, କାରଣ) ବିରଞ୍ଚି, ଶିବ, ସର୍ପ-ଇନ, (ଏମାନେ) କାହାକୀର୍ତ୍ତି ଗୁଣଗାଇ ଚତୁର, ପଞ୍ଚ, ସହସ୍ର ବଦନ (ହୋଇ ଅଛନ୍ତି) । (ଏବଂ ସେମାନେ) କାହାକୁ ଧ୍ୟାୟି ଅଷ୍ଟ, ପନ୍ଦର, ବିଂଶ ଶତ ନେତ୍ରକୁ (ଧ୍ୟାନ ଲାଗି) ମୁଦନ୍ତି । ( ପାଦକୁ ନାଁ ପଦ୍ମକୁ ? ) ।

**କଥା**—ବିଷ୍ଣୁଙ୍କ ପାଦକୁ ପଦ୍ମ ଶୋଭା ସ୍ୱରୂପ ବର୍ଣ୍ଣନା କରିବା କେବଳ କବି ନୈପୁଣ୍ୟ ଅଟେ । କାରଣ ବ୍ରହ୍ମା-ଶିବ ଓ ଅନନ୍ତ—ଏମାନେ ଯେଉଁ ପାଦର ଗୁଣ କୀର୍ତ୍ତି ବର୍ଣ୍ଣନା କରିବାକୁ ଚତୁର୍ମୁଖ, ପଞ୍ଚବଦନ, ଓ ସହସ୍ର ଆନନ ହୋଇ ଅଛନ୍ତି; ଏବଂ ସେମାନେ ଯେଉଁ ପାଦକୁ ଧ୍ୟାନ କରିବାକୁ ମଧ୍ୟ ଯଥାକ୍ରମେ ଅଷ୍ଟ, ପନ୍ଦର ଓ ଦ୍ୱିସହସ୍ର ନେତ୍ର ଧାରଣ କରି ମୁଦି ରହିଥାନ୍ତି ତାହା ପଦ୍ମ ନାଁ ପାଦ ? ଏକଥା ସତ୍ୟ ଯେ ତାହାକେବେ ପଦ୍ମ ନୁହେଁ । ତାହା କେବଳ ବିଷ୍ଣୁଙ୍କର ପାଦଅଟେ ।

ଶବ୍ଦାର୍ଥ—ଅଘାର—(ଅଘ—ପାପ ବା ଅସୁର, ଅରି—ଶତ୍ରୁ) ବିଷ୍ଣୁ । ଅଙ୍ଘ୍ରି—ପାଦ । ବିରଞ୍ଚି—ବ୍ରହ୍ମା । ଦର୍ପକାରି—ଶିବ । ସର୍ପ-ଇନ (ଇନ—ଶ୍ରେଷ୍ଠ) ଅନନ୍ତ । ବ୍ରହ୍ମା—ଚାରିମୁଖ, ଅଠଆଖି । ଶିବ—ପଞ୍ଚମୁଖ, ପନ୍ଦର ନେତ୍ର । ଅନନ୍ତ—ସହସ୍ରମୁଖ, ଦ୍ୱିସହସ୍ର ନେତ୍ର ।

**ବରଜ—ବଧୂଙ୍କ ଉରଜ ବଧୂ**
**ରଜ ଚନ୍ଦନ ବନ୍ଦନେ କେ ସାଧୁ ?**
**ଧରା ଆକାଶର ରଡ ସଙ୍କୁଲେ**
**ଧରା ରହିଲେ କାହା ଗର୍ଭସ୍ଥଳେ, ସେ**
**ସନକାଦ୍ୟ—ପୂଜ୍ୟ—ନଦୀ ଯେ**
**ଜନ କାର୍ଯ୍ୟରୁ କାହିଁରୁ ବଜେକଲେ**
**କନକାଦ୍ରି—ହୃଦ ଭେଦ, ଯେ । ୩ ।**

**ଅନ୍ୱୟ**—ବରଜ ବଧୂଙ୍କ ଉରଜ(ର) ବଧୂରଜ (ଏବଂ) ଚନ୍ଦନ ବନ୍ଦନେ କେ ସାଧୁ (ଅଟେ); ଧରା (ଏବଂ) ଆକାଶର ରଡ-ସଙ୍କୁଳେ ଧରା କାହା ଗର୍ଭସ୍ଥଳେ ରହିଲେ ? ସନକାଦ୍ୟ ପୂଜ୍ୟ ନଦୀ, ଜନ କାର୍ଯ୍ୟରୁ କନକାଦ୍ରି ହୃଦଭେଦ କାହିଁରୁ ବଜେ କଲେ ?

**କଥା**—ଗୋପବଧୂ ମାନଙ୍କର ବକ୍ଷରେ ଲିପ୍ତଥିବା କର୍ପୂର ଧୂଳି ଏବଂ ଚନ୍ଦନ ଦ୍ୱାରା କେଉଁ ମହତ୍ ପଦାର୍ଥ ବନ୍ଦିତ ହୋଇଥାଏ ? ସେ ଉକ୍ତ ବିଷ୍ଣୁରୂପୀ କୃଷ୍ଣଙ୍କର ପଦଛଡ଼ା ଅନ୍ୟ କିଛି ନୁହେଁ । ପୃଥିବୀ ଏବଂ ଆକାଶ ମଧ୍ୟରେ ଜାତ ଶୋଭାପୂର୍ଣ୍ଣ ଅବସ୍ଥା ମଧ୍ୟରେ ପୃଥିବୀ କାହାର ଗର୍ଭ ସ୍ଥଳରେ ରହିଥିଲେ ? ତାହା ବାମନ ରୂପୀ ବିଷ୍ଣୁଙ୍କର ପାଦଛଡ଼ା ଅନ୍ୟ କିଛି ନୁହେଁ । (ଅର୍ଥାତ୍ ବାମନ ରୂପୀ ବିଷ୍ଣୁଙ୍କର ତ୍ରିଗଣପୂ ପାଦ ଜାତହେବାରୁ ପୃଥିବୀ ଏବଂ ଆକାଶ ମଧ୍ୟରେ ସେଥିଯୋଗୁଁ ଶୋଭା ପୂର ଉଠିଥିଲା । ଉକ୍ତ ଶୋଭାମୟ ପାଦର ଗର୍ଭ ସ୍ଥଳରେ ବା ତଳେ ପୃଥିବୀ ରହିଥିଲେ ।) ଅତିପୂଜ୍ୟ ସନକାଦ୍ୟ ଋଷିଙ୍କର ମଧ୍ୟ ପୂଜ୍ୟ ଗଙ୍ଗାନଦୀ ଜନ ସମାଜର ହିତାର୍ଥେ ସୁମେରୁ ପର୍ବତ ଭେଦକରି କାହିଁରୁ ବଜେକଲେ ? ସେ ଉକ୍ତ ବିଷ୍ଣୁଙ୍କ ପଦଛଡ଼ା ଅନ୍ୟ କିଛି ନୁହେଁ । ଅତଏବ ପଦ ସହିତ ଏ କ୍ଷେତ୍ରରେ ପଦ୍ମ ତୁଳନୀୟ ନୁହେଁ ।

ଶବ୍ଦାର୍ଥ—ବରଜ ବଧୂ—ଗୋପୀ । ଉରଜ—ସ୍ତନ । ରଧୂ—କର୍ପୂର । ସାଧୁ—ମହତ୍ । ରଡ—ଶୋଭା । ସଙ୍କୁଳ—ସମାକୀର୍ଣ୍ଣ, ପୂର୍ଣ୍ଣ. ଯେପରି ରଡ ସଙ୍କୁଳ, ଶ୍ୱପଦ ସଙ୍କୁଳ, ଶ୍ୱାପଦ ସଙ୍କୁଳ, ସଙ୍କଟ-ସଙ୍କୁଳ । ସନକାଦ—ଏମାନେ ସପ୍ତଋଷି ଅଟନ୍ତି । ଯଥା—ସନକ, ସନନ୍ଦ, ସନାତନ, କପିଳ, ଆସୁରି, ବୋଢ଼ୁ, ପଞ୍ଚଶିଖ; ଏମାନେ ମନୁଷ୍ୟ ମାନଙ୍କର ପ୍ରବର୍ତ୍ତକ ଏବଂ ସନକାଦ୍ୟ ସପ୍ତମନୁଷ୍ୟ ନାମରେ ଅଭିହିତ ହୁଅନ୍ତି । ଏମାନେ ମନୁଷ୍ୟ ଜାତିର ଶ୍ରେଷ୍ଠପୂଜ୍ୟ ଅଟନ୍ତି । ସନକାଦ ପୂଜ୍ୟ ନଦୀ—ଗଙ୍ଗା । ଜନକାର୍ଯ୍ୟରୁ, ଲୋକ ପ୍ରୟୋଜନରୁ ମାନବ ଜାତିର ଆବଶ୍ୟକତା ଯୋଗୁଁ । କନକାଦ୍ରି—ସୁମେରୁ ପର୍ବତ ।

**ସଦ୍ମ କରିବାରୁ ଅର୍ଦ୍ଧ ଚନ୍ଦ୍ରମା**
**ଛଦ୍ମ କରିଛନ୍ତି ପଦ୍ମ ମହିମା**
**ଗଉଡ଼ ମହାଗୃର୍ଯ୍ୟଙ୍କ ମାଧୁର୍ଯ୍ୟ**
**ରସ ତରଙ୍ଗରେ ତାହାଙ୍କ ତେଜ ସେ**
**ଭସାଇ ନେବାରୁ ଘେନ ଯେ**
**ଫନ୍ଦା କରି ଧରି ରହିଛନ୍ତି ଗିରି**
**ଗୋବର୍ଦ୍ଧନ ବୃନ୍ଦାବନ ଯେ । ୪ ।**

**ଅନ୍ୱୟ**—ଅର୍ଦ୍ଧଚନ୍ଦ୍ରମା (ତହିଁ) ସଦ୍ମ କରିବାରୁ (ସେ ମଧ୍ୟ ଜାଣି ଜାଣି) ପଦ୍ମମହିମା ଛଦ୍ମ କରିଛନ୍ତି । ମହାଗୃର୍ଯ୍ୟଙ୍କ ମାଧୁର୍ଯ୍ୟ ରସ ତରଙ୍ଗରେ ତାହାଙ୍କ ତେଜ (ଦେଖାଯାଏ) । (ପୁନଶ୍ଚ ଉକ୍ତ) ରସ ତରଙ୍ଗରେ ଗଉଡ଼ ମହାଗୃର୍ଯ୍ୟଙ୍କ ମାଧୁର୍ଯ୍ୟ (ସେ ପଦ) ଭସାଇ ନେବାରୁ (ହେ ପାଠକ ! ଏକଥା) ଘେନ । (ତେଣୁ ସେମାନେ) ଗିରିଗୋବର୍ଦ୍ଧନ ଧରି ବୃନ୍ଦାବନ ଫନ୍ଦାକରି ରହିଛନ୍ତି ।

**କଥା**—ଅର୍ଦ୍ଧଚନ୍ଦ୍ର ଚିହ୍ନ ସେ ପଦରେ ଆବାସ କରିବାରୁ ଜଣାଯାଏ ଯେ—ସେ ବିଷ୍ଣୁ ନିଜେ ଜାଣିଜାଣି ପଦ୍ମର ମହିମାକୁ ଗୋପନ କରିଅଛନ୍ତି । କାରଣ ଚନ୍ଦ୍ର ସହିତ ପଦ୍ମର ସମ୍ପର୍କ ଆଦୌ ନଥାଏ । ତେଣୁ ପଦ୍ମ ସହିତ ସେ ପାଦର ତୁଳନା ଅବାନ୍ତର ଅଟେ ।

ଗୋସ୍ୱାମୀ ବୈଷ୍ଣବଙ୍କ ମଧୁର ଭକ୍ତିରସ ଲହରୀରେ ଉକ୍ତ ପଦର ପରାକ୍ରମ ଅଧିକ ପ୍ରକାଶିତ ହୋଇଥାଏ । ଫଳରେ ଉକ୍ତପାଦ ମାହାତ୍ମ୍ୟ ସେମାନଙ୍କ ମଧୁର ଭକ୍ତିରସ ବନ୍ୟାରେ ସେମାନଙ୍କ ମାଧୁର୍ଯ୍ୟ ଭକ୍ତି ସହିତ ସେମାନଙ୍କୁ ଭସାଇ ନେବାରୁ ହେ ପାଠକ ! ଏକଥା ସ୍ୱୀକାର କର ଯେ, ତେଣୁ ସେମାନେ ଭସି ଯାଉ ଯାଉ ଗିରିଗୋବର୍ଦ୍ଧନ ଧରି ଅଟକି ଯାଇଛନ୍ତି । ଏବଂ ବୃନ୍ଦାବନକୁ ଅବଲମ୍ବନ କରି ରହିଛନ୍ତି ।

ଅର୍ଥାତ୍ ସେ ପାଦର ଧ୍ୟାନରେ ଯେଉଁଠି ଭକ୍ତିରସ ପ୍ରତି ନିୟତ ମିଳିବ ସେହି ବିଷ୍ଣୁ ସ୍ୱରୂପୀ କୃଷ୍ଣ ପଦ ଦ୍ୱାରା ପବିତ୍ରୀକୃତ ବୃନ୍ଦାବନକୁ ଗୋସ୍ୱାମୀ ମାନେ ତ୍ୟାଗ କରୁନାହାନ୍ତି ।

**ଆଲୋଚନା**—କବି ଶିରୋମଣି ଯଦୁମଣି ଏ ପଦଟିରେ ବିଷ୍ଣୁଙ୍କ ପଦ ରେଖାରେ ଯେଉଁ ଚିହ୍ନମାନ ରହିଛି ତନ୍ମଧ୍ୟରେ ଚନ୍ଦ୍ରମାର ଚିହ୍ନ ରହିଥିବାରୁ ତାଙ୍କ ପଦକୁ ପଦ୍ମପାଦ କହିବା ଅସମୀଚୀନ ବୋଲି ବ୍ୟକ୍ତ କରିଯାଇଛନ୍ତି ।

କିନ୍ତୁ ଅଷ୍ଟାଦଶ ଚିହ୍ନ ହେଉଛି—କମ୍ବୁ, ଚକ୍ର, ପଦ୍ମ, କୁଳିଶ, ଅଷ୍ଟକୋଣ, ଊର୍ଦ୍ଧ୍ୱରେଖା, ଷଟ୍‌କୋଣ, ଧନୁ, ଧ୍ୱଜ, ସ୍ୱସ୍ତିକ, ମୀନ, କଳଶ, ଯବ, ବିନ୍ଦୁ, ଅଙ୍କୁଶ, ଅର୍ଦ୍ଧଇନ୍ଦୁ, ଗୋଷ୍ପଦ ଓ ଅମ୍ବର । ଏଥିମଧ୍ୟରେ ଅର୍ଦ୍ଧଇନ୍ଦୁ, ଯେପରି ରହିଛି, ସେପରି ମଧ୍ୟ ପଦ୍ମ ରହିଛି । କିନ୍ତୁ କବି ଲେଖିଛନ୍ତି—'ଛିଦ୍ର କରିଛନ୍ତି ପଦ୍ମ ମହିମା' । ବିଷ୍ଣୁଙ୍କ ପଦରେ ପଦ୍ମ ଚିହ୍ନ ନଥିବା କଥା ଏଥିରୁ ସୂଚିତ ହେଉଛି । କିନ୍ତୁ ଏ କ୍ଷେତ୍ରରେ କବିଙ୍କର ଉଦ୍ଦେଶ୍ୟ ଯେ ଅଷ୍ଟାଦଶ ଚିହ୍ନ ମଧ୍ୟରେ ଚନ୍ଦ୍ର ଏବଂ ପଦ୍ମ ଉଭୟେ ଥିଲେହେଁ ଯେତେବେଳେ ଚନ୍ଦ୍ରମାର ଚିହ୍ନ ରହିଛି ସେପରି କ୍ଷେତ୍ରରେ ପଦ୍ମର ପ୍ରୟୋଜନୀୟତା ଅସ୍ୱୀକାର୍ଯ୍ୟ । ବିଶେଷରେ ଏଠାରେ ପଦ୍ମଚିହ୍ନ ମାତ୍ର । ସୂର୍ଯ୍ୟ ଯୋଗୁଁ ସିନା ପଦ୍ମର ପ୍ରକାଶ ସମ୍ଭବ କିନ୍ତୁ ଚନ୍ଦ୍ର ଥିଲେତ ପଦ୍ମ ନିଷ୍ପ୍ରଭ । ତେଣୁ ନିଷ୍ପ୍ରଭ ପଦ୍ମକୁ ଏଠାରେ ପ୍ରକୃତ ଆନନ୍ଦ ଦାୟକ କୋଟି ଲାବଣ୍ୟ ନିଧି, ଅମୃତମୟ ବୋଲି ଭାବିବା ନିରର୍ଥକ । ଫଳରେ ଅଷ୍ଟାଦଶ ଚିହ୍ନରେ ଚନ୍ଦ୍ରମା ଚିହ୍ନ ବିରାଜିତ ଥିବାରୁ ମଳିନ ପଦ୍ମ ଚିହ୍ନ ପାଦରେ ଥିବା କଥା ଭାବିବା ନିଷ୍ପ୍ରୟୋଜନ ।

ଯାହାଙ୍କ ପାଦରେ ଏ ଅଷ୍ଟାଦଶ ଚିହ୍ନଥାଏ ସେ ନିଜେ ହେଉଛନ୍ତି ସୃଷ୍ଟିର ନିୟାମକ । ସେ ନିଜଠାରେ ଏହି ଚିହ୍ନ ସୃଷ୍ଟିର ପ୍ରବର୍ତ୍ତକ ଥିବାରୁ ନିଜେ ଜାଣି ଜାଣି ପଦ୍ମ ତାଙ୍କ ପାଦରେ ଯୋଡ଼ା ହେବାର ପ୍ରୟୋଜନ ନାହିଁ ବୋଲି ଯେପରି ପୂର୍ବରୁ ସିଦ୍ଧାନ୍ତ କରିଅଛନ୍ତି ।

ଈଶ୍ୱର ଯେପରି ଅଦ୍ୱିତୀୟ, ଅନୁପମେୟ ଏବଂ ଏକମାତ୍ର ଶାଶ୍ୱତ ତାଙ୍କର ପାଦ ମଧ୍ୟ ସେହିପରି ସ୍ୱତନ୍ତ୍ର ସିଦ୍ଧିର ଅଧିକାରୀ । ତାହା ସହିତ ଯେତେ ପବିତ୍ର-ଦର୍ଶନ ମକରନ୍ଦପୂର୍ଣ୍ଣ ହେଉପଛେ, ଧ୍ୱଂସ ଶୀଳ ପଦ୍ମ ଯୋଡ଼ା ହେବା କିପରି ଉଚିତ ହେବ ବୋଲି ଯଦୁମଣି କହିଛନ୍ତି । ମୋଟରେ ଈଶ୍ୱର ଏବଂ ତାଙ୍କର ପଦ ବା ମାହାତ୍ମ୍ୟ କାହା ସହିତ ମିଶି ନିଜର ପ୍ରତିଷ୍ଠା ପ୍ରକାଶିତ କରିବା ବା ଆମ୍ଭେମାନେ ସେପରି ପ୍ରତିଷ୍ଠାର ବର୍ଣ୍ଣନା କରିବା ତାଙ୍କପ୍ରତି ଅପମାନଜନକ ବୋଲି ସେ ମତପୋଷଣ କରିଛନ୍ତି ।

---

ଶବ୍ଦାର୍ଥ—ସଦ୍ମ—ଆବାସ । ଛିଦ୍ର—ଗୋପନ । ଗଉଡ଼-ମତାଗ୍ରଣୀ—(ଗଉଡ଼ ମାତା—'ଗୋ'; ଅଗ୍ରଣୀ—'ସ୍ୱାମୀ) ଗୋସ୍ୱାମୀ ବୈଷ୍ଣବ । ରସ—ଭକ୍ତିରସ । ତେଜ—ପରାକ୍ରମ । ପେନ—ସ୍ୱୀକାର । ସନ୍ଧା—ଆଶ୍ରୟ । ଅର୍ଦ୍ଧଚନ୍ଦ୍ରମା—ଅଷ୍ଟାଦଶ ଚିହ୍ନର ଏକଚିହ୍ନ । ବିଷ୍ଣୁ ଏମନ୍ତକ ମୂର୍ତ୍ତିବନ୍ତ କୃଷ୍ଣଙ୍କ ପଦରେ ଥିବା ଚିହ୍ନ ବିଶେଷ ।

**ଏମନ୍ତ ଗୁରୁ ଗୀର୍ବାଣଙ୍କ ଗିରୁ**
**'କୃଷ୍ଣ' ବର୍ଣ୍ଣ ମୋର କର୍ଣ୍ଣେ ସଞ୍ଚରୁ**
**ସେ ତ ସୁଧାରସ ଆମୋଦ ଦାୟୀ**
**ହୃଦୟୁରେ ପରି ପୂରଣ ହୋଇ, ସେ**
**ମୁଖୁଁ ହେଲା ଉଚ୍ଛ୍ୱଳିତ ଯେ**
**ଦ୍ୱିବିଧ ପୂର୍ଣ୍ଣଚନ୍ଦ୍ର ସିଦ୍ଧି ନିବନ୍ଧେ**
**ପ୍ରବନ୍ଧ ହୋଇଲା ଖ୍ୟାତ, ଯେ । ୫ ।**

**ଅନ୍ୱୟ**—ଏମନ୍ତ ଗୁରୁ ଗୀର୍ବଣାଙ୍କ ଗିରୁ କୃଷ୍ଣବର୍ଣ୍ଣ ମୋର କର୍ଣ୍ଣେ ସଞ୍ଚରୁ ସେତ ଆମୋଦ ଦାୟି—ସୁଧାରସ (ତେଣୁ ମୋ) ହୃଦୟୁରେ (ତାହା) ପରିପୂରଣ ହୋଇ (ଏବେ) ମୁଖୁଁ ଉଚ୍ଛ୍ୱଳିତ ହେଲା । ଦ୍ୱିବିଧି (ରେ) ପୂର୍ଣ୍ଣଚନ୍ଦ୍ର ନିବନ୍ଧେ ସିଦ୍ଧି (ହେବାରୁ) ଏ ପ୍ରବନ୍ଧ (ସେହି ନାମରେ) ଖ୍ୟାତ ହୋଇଲା ।

**କଥା**—ପୂର୍ବୋକ୍ତ ଗୁରୁଦେବତା ମାନଙ୍କର ସଦ୍‌ବାକ୍ୟ ଯୋଗୁଁ 'କୃଷ୍ଣ' ଏହି ଦୁଇଟି ଅକ୍ଷର ମୋର କର୍ଣ୍ଣରେ ସଞ୍ଚରିତ ହେବାରୁ, ବିଶେଷରେ ଉକ୍ତ କୃଷ୍ଣନାମ ଏକାନ୍ତ ଆମୋଦ ଦାୟକ ସୁଧାରସ ହେତୁ ତାହା ମୋର ହୃଦୟୁରେ ପରିପୂର୍ଣ୍ଣ ହୋଇ ମୁଖରୁ ଉଚ୍ଛୁଳି ଉଠିଲା । ଅର୍ଥାତ୍ ଅମୃତମୟ କୃଷ୍ଣ ରସରେ କବିଙ୍କର ପେଟ ପୂରିଯିବାରୁ ତାହା କବିତା ଆକାରରେ ପ୍ରକାଶିତ ହେଲା । ଷୋଡ଼ଶ କଳାରେ ପରିପୂର୍ଣ୍ଣ କୃଷ୍ଣଙ୍କର ଚରିତ, ପୁଣି ଷୋଡ଼ଶ କଳାରେ ବା ଛନ୍ଦରେ ଏ ଗ୍ରନ୍ଥ ରଚିତ ହେବା ହେତୁ ଉକ୍ତ ଦୁଇଟି ବିମରେ ଅଭିନିବେଶ ସହକାରେ ଏ ପ୍ରବନ୍ଧ ଖ୍ୟାତହେଲା । ଅର୍ଥାତ୍ ଏହି ଗ୍ରନ୍ଥର ନାମ ତେଣୁ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ରଖାଗଲା ।

ଶବ୍ଦାର୍ଥ—ଗୀର୍ବାଣ—ଦେବତା । ଗିର—ବାକ୍ୟ । ବର୍ଣ୍ଣ—ଅକ୍ଷର । ଦ୍ୱିବିଧ—ଦୁଇ ପ୍ରକାର ବିମ । ପୂର୍ଣ୍ଣଚନ୍ଦ୍ର—ପୂର୍ଣ୍ଣଚନ୍ଦ୍ରମା ସଦୃଶ ଷୋଡ଼ଶ କଳା ବା ଛନ୍ଦରେ ପୂର୍ଣ୍ଣକାବ୍ୟ, ଷୋଡ଼ଶ କଳାରେ ପୂର୍ଣ୍ଣ ଭଗବାନ୍ କୃଷ୍ଣ । ନିବନ୍ଧ—ଅବଧାନ ବା ଅଭିନିବେଶ । ପ୍ରବନ୍ଧ—ରଚନା ।

**ଜାତ-ବେଦେ ଭୂତବନ୍ତ ସୁବର୍ଣ୍ଣ**
**ଗ୍ରନ୍ଥମୁଖେ ହୋଇଅଛି ଉତ୍ପନ୍ନ**
**ଶଙ୍କର ମୁକୁଟେ ଅର୍ଜୁନ ପ୍ରଭା**
**ବହଇ ପର୍ବରେ ପ୍ରକାଶେ ବିଭା, ଯେ**
**ଏହି ଚରିତେ ଏ ଗ୍ରନ୍ଥ, ଯେ**
**ଗ୍ରନ୍ଥନ ହେବାରୁ ଗ୍ରାନ୍ଥିକ ବହିଲା**
**ପୂର୍ଣ୍ଣଚନ୍ଦ୍ର ପୁରୁଷାର୍ଥ, ଯେ । ୭ ।**

**ଅନ୍ୱୟ**—ଜାତବେଦେ ସୁବର୍ଣ୍ଣ ଭୂତିବନ୍ତ (ହେବାରୁ) ଗ୍ରନ୍ଥମୁଖେ (ପୂର୍ଣ୍ଣଚନ୍ଦ୍ର ନାମ) ଉତ୍ପନ୍ନ ପ୍ରାୟେ ବେଦେ ଜାତ ଭୂତିବନ୍ତ ସୁବର୍ଣ୍ଣ (ରୂପି, କୃଷ୍ଣନାମ) ଗ୍ରନ୍ଥମୁଖେ ଉତ୍ପନ୍ନ ହୋଇଅଛି । ଶଙ୍କର ମୁକୁଟେ (ଥିବା) ଅର୍ଜୁନ ପ୍ରଭା (ଯେପରି) ପର୍ବରେ ବହଇ ପ୍ରଭା ପ୍ରକାଶେ (ସେପରି) ଶଂ କରମୁଁ କୁଟେ ଅର୍ଜୁନ ପ୍ରଭା ପର୍ବରେ ବହଇ ପ୍ରଭା ପ୍ରକାଶେ । ଏହି ଚରିତେ ଏ ଗ୍ରନ୍ଥ ଗ୍ରନ୍ଥନ ହେବାରୁ ଗ୍ରାନ୍ଥିକ ପୁରୁଷାର୍ଥ (ଯୋଗୁଁ) ପୂର୍ଣ୍ଣଚନ୍ଦ୍ର ବହିଲା ।

**କଥା**—ଅଗ୍ନିରେ ସୁବର୍ଣ୍ଣ ପାଉଁଶ ହେଲେ ରସ ରତ୍ନାକରାଦି ଗ୍ରନ୍ଥ ମୁଖରେ ପୂର୍ଣ୍ଣଚନ୍ଦ୍ର ନାମ ଜାତ ହେଲା ପରି (ପୂର୍ଣ୍ଣଚନ୍ଦ୍ର ରସ) ସାମ, ଯଜୁଃ, ଋକ୍ ଆଦି ବେଦ କଥିତ । ଅଷ୍ଟ ଐଶ୍ୱର୍ଯ୍ୟବନ୍ତ ଅତିସୁନ୍ଦର ବିଷ୍ଣୁଙ୍କର ଷୋଡ଼ଶ କଳାରେ ପୂର୍ଣ୍ଣ କୃଷ୍ଣନାମ ଏହି ଗ୍ରନ୍ଥାଦ୍ୟରୁ ଉତ୍ପତ୍ତି ଲଭିଅଛି । ମହାଦେବ ଶଙ୍କରଙ୍କ ମସ୍ତକରେ ଥିବା ଶୁକ୍ଳବର୍ଣ୍ଣ ଚନ୍ଦ୍ରର କ୍ଷୀଣପ୍ରଭା ଯେପରି ପୂର୍ଣ୍ଣିମାରେ ବଢ଼ାଇ କରି ସମ୍ପୂର୍ଣ୍ଣ ପ୍ରଭା ପ୍ରକାଶ କରିଥାଏ, ସେହିପରି ମଙ୍ଗଳ କାର୍ଯ୍ୟରୁ ଗ୍ରନ୍ଥରେ ଅବତାରଧାରୀ ଶୁକ୍ଳାମ୍ବର ପ୍ରଭା-ବିଶିଷ୍ଟ ସ୍ୱୟଂ ସମ୍ପୂର୍ଣ୍ଣ ବିଷ୍ଣୁରୂପୀ କୃଷ୍ଣ ଏହି ଗ୍ରନ୍ଥର ବିଭିନ୍ନ ଅଧ୍ୟାୟରେ ପ୍ରକଟିତ ହୁଅନ୍ତି ଏବଂ ଏଥିରେ ତାଙ୍କର ପରିଣୟ କଥା ପ୍ରକାଶିତ ହୁଏ । ଏହି ବୃତ୍ତାନ୍ତରେ ଏହି ଗ୍ରନ୍ଥ ରଚିତ ହେବାରୁ କବି ଧର୍ମାର୍ଥ-କାମ-ମୋକ୍ଷ ପ୍ରୟୋଜନ ଲକ୍ଷ୍ୟରେ ପୂର୍ଣ୍ଣଚନ୍ଦ୍ର ନାମ କରଣ କରିଅଛି । (ବିଶେଷରେ ପରିଣୟରେ କୃଷ୍ଣ ନିଜର ଷୋଳକଳାର ସମ୍ପୂର୍ଣ୍ଣ ଶକ୍ତି ପ୍ରକାଶିତ କରି ଯେପରି ରୁକ୍ମଣୀଙ୍କୁ ହରଣ କରି ନେଇଥିଲେ ସେଥିରେ ତାଙ୍କର ପୂର୍ଣ୍ଣତ୍ୱ ପ୍ରକଟିତ ହୋଇଥିଲା) ।

---

ଶବ୍ଦାର୍ଥ—ଜାତବେଦ—ଅଗ୍ନି । ବେଦେ ଜାତ—ବେଦରେ ସମ୍ଭୂତ ବା ବର୍ଣ୍ଣିତ ବିଷ୍ଣୁ । ଭୂତି—ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟ । ଭୂତିବନ୍ତ—ବିଷ୍ଣୁ, ପାଉଁଶ । ସୁବର୍ଣ୍ଣ—ସୁନା, ଅତିସୁନ୍ଦର (ବିଷ୍ଣୁ) । ଶଙ୍କର—ଶିବ । ମୁକୁଟ—ମସ୍ତକ । ବିଭା—ଦୀପ୍ତି, ପରିଣୟ । ଅର୍ଜୁନ—ଶୁକ୍ଳବର୍ଣ୍ଣ । ପର୍ବ—ପୂର୍ଣ୍ଣିମା, ଅଧ୍ୟାୟ । ଶଂ—ମଙ୍ଗଳ । କରମୁଁ—କାର୍ଯ୍ୟରୁ । କୁଟେ—ଛଳରେ । ଅର୍ଜୁନପ୍ରଭା—ଶୁକ୍ଳାମ୍ବର ପ୍ରଭାବିଶିଷ୍ଟ ବିଷ୍ଣୁ । ପର୍ବ—ଉତ୍ସବ ଦିବସରେ । ଗ୍ରନ୍ଥନ—ରଚନା । ଗ୍ରାନ୍ଥିକ—ଗ୍ରନ୍ଥକର୍ତ୍ତା । ପୁରୁଷାର୍ଥ—ପୁରୁଷର ଧର୍ମ ଅର୍ଥ କାମ ମୋକ୍ଷ ରୂପ ପ୍ରୟୋଜନ ।

ଶୂଦ୍ର ମୁଖୁଁ ଏ ହୋଇଛୁ ବାହାର
ରୌଦ୍ରତା ବହ୍ନି କେହ୍ନି ନ ବିଗ୍ରହ
ବିଧୁ ବିଧୁନ୍ତୁଦ ଉଚ୍ଛିଷ୍ଟ ଜଣା
ଶିବେ ବାଜେ ଚନ୍ଦ୍ରଚୂଡ଼ ବାଜଣା, ସେ
ପଦ୍ମାପତିଙ୍କର ପଦ, ଯେ
ସମ୍ଭବ ସମ୍ପଦ ପଦାର୍ଥରେ ବ୍ୟର୍ଥ
ଖଣ୍ଡିବାର ଅପବାଦ, ଯେ । ୬ ।

**ଅନ୍ୱୟ**—ଏ (ହା) ଶୂଦ୍ରମୁଖୁଁ ବାହାର ହୋଇଛୁ (ବୋଲି) କେହ୍ନି ରୌଦ୍ରତା ବହ୍ନି ନ ବିଗ୍ରହ । (ଯେପରି) ବିଧୁ ବିଧୁନ୍ତୁଦର ଉଚ୍ଛିଷ୍ଟ ଜଣା (ଯାଏ) (କିନ୍ତୁ) ଶିବେ ଚନ୍ଦ୍ରଚୂଡ଼ ବାଜଣା ବାଜେ, (ସେହିପରି) ପଦ୍ମାପତିଙ୍କର ପଦ-ସମ୍ଭବ ସମ୍ପଦ ପଦାର୍ଥରେ ଖଣ୍ଡିବାର ଅପବାଦ ବ୍ୟର୍ଥ (ହେବ) ।

**କଥା**—ଏହି ଗ୍ରନ୍ଥ ଜଣେ ଶୂଦ୍ର ବ୍ୟକ୍ତିର ମୁଖରୁ ପ୍ରକାଶିତ ହୋଇଛୁ ବୋଲି କେହ୍ନି ରୌଦ୍ରତା ଧରି ବିଗ୍ରହ କର ନାହିଁ । ଅର୍ଥାତ୍ ଏ ଗ୍ରନ୍ଥର କବି ଜଣେ ଶୂଦ୍ର ବଢ଼େଇ ଜାତିର ଥିବାରୁ ତାଙ୍କ ମୁଖ ନିଃସୃତବାଣୀ 'ବଢ଼େଇ ଅଇଣ୍ଠା' ମନେକରି କେହ୍ନି ଉଚ୍ଚବର୍ଣ୍ଣର ବ୍ୟକ୍ତି କୋପ ବା ଘୃଣା ପ୍ରକାଶ କର ନାହିଁ । ଯେପରି ଚନ୍ଦ୍ରମା ଚଣ୍ଡାଳ ରାହୁର ଉଚ୍ଛିଷ୍ଟ ବୋଲି ଜଣାଥଲେହେଁ ଉକ୍ତ ଚନ୍ଦ୍ରମାକୁ ମଣ୍ଡିହୋଇ-ଥିବାରୁ ଶିବଙ୍କ ନାମରେ 'ଚନ୍ଦ୍ରଚୂଡ଼' (ଚନ୍ଦ୍ରଶେଖର) ବାଜଣା ବାଜଥାଏ ସେହିପରି ପଦ୍ମାପତି ବିଷ୍ଣୁ ସ୍ୱରୂପ କୃଷ୍ଣଙ୍କର ପଦରୁ-ଜାତ ଯେଉଁ ସମ୍ପଦ ଏହି କବିତା, ଉକ୍ତ ପଦାର୍ଥରେ ତର୍କଦ୍ୱାରା ଅପବାଦ ଦେବା ବୃଥା ।

**ଆଲୋଚନା**—ଏଥିରୁ ଜଣାଯାଏ, କବି ଦରିଦ୍ର ବଢ଼େଇ ପରିବାରରେ ଜନ୍ମିଥିବାରୁ ତତ୍କାଳୀନ ସମାଜରେ ଥିବା ଉଚ୍ଚ ବ୍ୟକ୍ତିମାନଙ୍କଦ୍ୱାରା ଅବ୍ୟାହତ ଥିଲେ । ତାଙ୍କ ଯାଏ କାବ୍ୟ, କବିତା ଆଦି ରଚନାରେ ମଧ୍ୟ ଉଚ୍ଚବର୍ଣ୍ଣ ନିମ୍ନ ବର୍ଣ୍ଣଙ୍କୁ ଘୃଣା କରୁଥିଲେ ବୋଲି ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହେଉଅଛୁ ।

---

ଶବ୍ଦାର୍ଥ—ଶୂଦ୍ର—ଚତୁର୍ଥ ବର୍ଣ୍ଣ । ରୌଦ୍ରତା—ଖରତା (ଗର୍ବ, କୋପ, ଘୃଣାଦି) ବିଧୁ—ଚନ୍ଦ୍ର । ବିଧୁନ୍ତୁଦ—ରାହୁ । ଉଚ୍ଛିଷ୍ଟ—ଅଇଣ୍ଠା । ଚନ୍ଦ୍ରଚୂଡ଼—ଚନ୍ଦ୍ରଶେଖର ଶିବ । ପଦ୍ମା—ଲକ୍ଷ୍ମୀ । ସମ୍ଭବ—ଜାତ । ଖଣ୍ଡିବା—କାଟିବା (ତର୍କଦ୍ୱାରା) । ପଦ—ପଦ୍ୟାଂଶ, ଭଗବାନ୍ଙ୍କ ପଦ । ଅପବାଦ—ନିନ୍ଦା, କୁତ୍ସା ।

ଏଠାରୁ ଦ୍ୱାରବତୀ ବା ଦ୍ୱାରକାପୁରୀ ବର୍ଣ୍ଣିତ ହୋଇଛି:—

ସାଧାରଣ ଗଠନ ଓ ଶିଳ୍ପ:—

**ସୁମତି ଦେଇ ବିଚାର ସୁମତି**
**ଅମ୍ବୁଧି ମଧ୍ୟବର୍ତ୍ତୀ ଦ୍ୱାରବତୀ-**
**ପୁରର ଆଶ୍ଚର୍ଯ୍ୟ କଳ୍ପନା ଶିଳ୍ପ**
**ସଙ୍କଳ୍ପ କର୍ତ୍ତାର ପ୍ରଶଂସା କଳ୍ପ, ଯେ**
**ବସିକରି କଳ୍ପ କଳ୍ପ, ଯେ**
**ରମା-କାମ କଳ୍ପ-ପାଦପଙ୍କ ତଳ୍ପ**
**ପ୍ରଜଳ୍ପନେ ହେବ ଅଳ୍ପ, ଯେ । ୮ ।**

**ଅନ୍ୱୟ**—ହେ ସୁମତି ! ସୁମତି ଦେଇ ବିଚାର । ଅମ୍ବୁଧି ମଧ୍ୟବର୍ତ୍ତୀ ଦ୍ୱାରବତୀପୁରର ଆଶ୍ଚର୍ଯ୍ୟ ଶିଳ୍ପ କଳ୍ପନା ( ଏବଂ, ତାର ) ସଙ୍କଳ୍ପକର୍ତ୍ତାର କଳ୍ପ ପ୍ରଶଂସା (କୁ) ବସିକରି ରମା-କାମ-କଳ୍ପ-ପାଦପଙ୍କ-ତଳ୍ପ କଳ୍ପ କଳ୍ପ ବସିକରି (କରନ୍ତି, ତେବେ ତାଙ୍କ) ପ୍ରଜଳ୍ପନେ ଅଳ୍ପ ହେବ ।

**କଥା**—ହେ ସୁନ୍ଦର ମତିମାନ୍ ! ଉତ୍ତମ ବୁଦ୍ଧିରେ ବିଚାର କର । ସାଗର ମଧ୍ୟବର୍ତ୍ତୀ ଦ୍ୱାରବତୀପୁରର ଆଶ୍ଚର୍ଯ୍ୟଜନକ ଶିଳ୍ପକଳ୍ପନା ଏବଂ ସେହି ନଗରୀର ସଙ୍ଗଠକ ଅସୀମ ପ୍ରଶଂସାକୁ ଯେବେ ସ୍ୱୟଂ ଅନନ୍ତ କୋଟି କୋଟି ବର୍ଷ ଧରି କରନ୍ତି, ତେବେ ତାଙ୍କ ବହୁଭାଷଣରେ ମଧ୍ୟ ଅଳ୍ପ ହେବ ।

**ଆଲୋଚନା**—ଅନନ୍ତ ଶେଷଦେବ । ସେ ବିଶ୍ୱର ସମସ୍ତ ଦେଖିବାର ଜଣେ । ଏହି ବର୍ଣ୍ଣନା ଆରମ୍ଭରେ କବି ଜଣେ ଶିଳ୍ପୀ ଥିବାର ଏତଦ୍ୱାରା ପ୍ରକଟିତ ହୋଇଛି । କାରଣ ସେ ନଗରୀର ଶିଳ୍ପ ପ୍ରତି ଅଧିକ ଆକୃଷ୍ଟ ହୋଇ ଅଛନ୍ତି । ବଢ଼େଇ ଥାଇ ସେ ପଣ୍ଡିତ ଥିଲେହେଁ ନିଜ ବୃତ୍ତି ପ୍ରତି ଏକାନ୍ତ ଯେ ଆଗ୍ରହୀ ଥିଲେ ତାହା ଏଥିରୁ ଜଣାଯାଉଛି ।

ଶବ୍ଦାର୍ଥ—ସୁମତି—ସୁ ବୁଦ୍ଧି । ସୁମତି—ସୁନ୍ଦର ମତିମାନ୍ । ସଙ୍କଳ୍ପକର୍ତ୍ତା—ସଙ୍ଗଠକ । କଳ୍ପ—ଅସୀମ । କଳ୍ପ—ଚାରିଶ ବତିଶ କୋଟି ବର୍ଷ ବା ଅନନ୍ତକାଳ । କଳ୍ପପାଦପ—କଳ୍ପବୃକ୍ଷ (ଯେଉଁ ବୃକ୍ଷ କାମନା ପୂରଣ କରେ) । ତଳ୍ପ—ଶଯ୍ୟା । ରମା-କାମ-କଳ୍ପ-ପାଦପଙ୍କ-ତଳ୍ପ-ଅନନ୍ତ, ଶେଷଦେବ । (ରମା ଯେ ଲକ୍ଷ୍ମୀ ତାଙ୍କ କାମ କ କାମନାର କଳ୍ପବୃକ୍ଷ ସଦୃଶ ଅନନ୍ତ ଯେ ବିଷ୍ଣୁ ତାଙ୍କର ତଳ୍ପ କ ଶେଯ ଯେଉଁ ସହସ୍ରମୁଖବିଶିଷ୍ଟ ଅନନ୍ତ । ବିଷ୍ଣୁଙ୍କର ଶଯ୍ୟା ହେଉଛି ଅନନ୍ତ ।) ପ୍ରଜଳ୍ପନ—ବହୁ ଭାଷଣ ।

**ଶତକୋଟିକ ଶତକୋଟି ଗୁଣେ**
**ବଳୀ ବଳିଷ୍ଠ ହୋଇବା ପାଷାଣେ**
**ଘଟଣା ହୋଇଛି ଦୁର୍ଗ ପ୍ରାକାର**
**ରୁଚିରତର ସୂଚି କମ ନିକର, ସେ**
**ତା କପାଟ-ପାତ-ଧ୍ୱନି ଯେ**
**ବଳସୁଁ କୈଳାସେ ମୟୂର ଉଲ୍ଲାସେ**
**ଭୟ ଭଜନ୍ତି ସେନାନୀ ଯେ । ୯ ।**

**ଅନ୍ୱୟ**—ଶତକୋଟି କ ଶତକୋଟି ଗୁଣେ ବଳୀ ବଳିଷ୍ଠ ହୋଇବା ପାଷାଣେ ଦୁର୍ଗ ପ୍ରାକାର ଘଟଣା ହୋଇଛି । (ତହିଁ) ସୂଚିକମ ନିକର ରୁଚିରେ (ଅଛି) । ତା କପାଟ-ପାତ-ଧ୍ୱନି (ଶୁଣି) ସେନାନୀ କୈଳାସେ ବଳସୁଁ ମୟୂର ଉଲ୍ଲାସେ ଭୟ ଭଜନ୍ତି ।

**କଥା**—ବଜ୍ରଠୁଁ ଶତକୋଟି ଗୁଣରେ ବଳୁଆ ଏପରି ବଳିଷ୍ଠ ପଥର-ମାନଙ୍କଦ୍ୱାରା ସେ ନଗରୀର ପାଚେରି ଗଠିତ ହୋଇଅଛି ଏବଂ ତହିଁରେ ଥିବା ସୂଚିକାମସବୁ ସୁନ୍ଦର ଦେଖାଯାଉଛି । ସେହି ପାଚେରିର ଦ୍ୱାରରେ ଥିବା କବାଟ ପଡ଼ିବା ଧ୍ୱନି ଏତେ ଗମ୍ଭୀର ଯେ ତାହା ଦ୍ୱାରକାଠାରୁ କୈଳାସ ପର୍ବତ ଯାଏ ଶୁଭିଥାଏ । ଉକ୍ତ ଧ୍ୱନିକୁ ମେଘଗର୍ଜନ ମନେକରି ବାହନ ମୟୂର ନୃତ୍ୟ କରନ୍ତେ କୈଳାସଳସ୍ଥ କାର୍ତ୍ତିକେୟ ବାହନରୁ ଖସିପଡ଼ିବେ ବୋଲି ଭୟ କରନ୍ତି ।

**ଆଲୋଚନା**—କବିଙ୍କ ରଚନାରେ ଅଦ୍ଭୁତ ଅଳଙ୍କାର ଅତ୍ୟଧିକ ଦେଖାଯାଏ । ତାଙ୍କ ବର୍ଣ୍ଣନାକୁ ସେ ଅତିବଡ଼ କରି ଥୋଇବା ଲାଗି ଯେତେ ବର୍ଣ୍ଣନାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାର ଥାଏ, ସେ ତାହା କରିଥାନ୍ତି । ବଜ୍ରଠୁଁ ଶତକୋଟି ଗୁଣରେ ବଳୁଆକୁ ଏଠାରେ ବୁଝିବାକୁ ହେବ ଯେ ଶତକୋଟି ବଜ୍ରଦ୍ୱାରା ଯେଉଁ ପଥର ଚୂର୍ଣ୍ଣ ନ ହେବେ । ଇନ୍ଦ୍ର ତାଙ୍କର ମହାନ୍ ଅସ୍ତ୍ର, ବଜ୍ରାଘାତରେ ପର୍ବତ ମାନଙ୍କୁ ବିଚୂର୍ଣ୍ଣ କରିଥିଲେ ବୋଲି ପୌରାଣିକ କଥା ରହିଛି । କିନ୍ତୁ ଦ୍ୱାରକାର ପାଚେରି ପଥର-ସବୁରେ ଶହେକୋଟି ବଜ୍ର ବାଜିଲେ ତା ସେହିପରି ଅକ୍ଷୁଣ୍ଣ ରହିବ ।

ଶବ୍ଦାର୍ଥ—କୈଳାସ—ଶିବପାର୍ବତୀଙ୍କ ନିବାସସ୍ଥଳୀ ହିମାଳୟର ଏକ ମହାନ୍ ଶୃଙ୍ଗ । "ଉତ୍ତରଂ ଶିଖରଂ ତସ୍ୟ (ହିମବତଃ) କୈଳାସାଖ୍ୟୋ ମହାନ୍ ଗିରିଃ" । ଶତକୋଟି—ବଜ୍ର । ବଳୀ—ବଳୁଆ । ପ୍ରାକାର—ପାଚେରି । ଘଟଣା—ଗଢ଼ା, ଯୋଜନା । ସେନାନୀ—କାର୍ତ୍ତିକେୟ । ମୟୂର ଉଲ୍ଲାସେ—କପାଟ ଧ୍ୱନିକୁ ମେଘଗର୍ଜନ ମନେକରି ଉଲ୍ଲାସରେ ନୃତ୍ୟ କରିବାରୁ ।

ଦୁର୍ଗ ପ୍ରଶସ୍ତି—

**ଏମନ୍ତ କୋଠର ଗୁମଠ ଦ୍ୱାର**
**ପାର ଅହୋରାତ୍ର ପହରୀ ତାର**
**ଦୃଶ ପୁଣ୍ଡରୀକ କୁମୁଦ ପର**
**କୃଶ ପୁଣ୍ଡରୀକ କୁମୁଦ କରୀ, ସେ**
**ହେବେ ତା' ଗୃପଡ଼ ମାଡ଼େ, ଯେ**
**ଦେବତାଙ୍କ ଆୟୁଧର ଧୂଳି କର**
**ଦେବତା ଆୟୁଧ ଏଡ଼େ, ଯେ । ୧୦ ।**

**ଅନ୍ୱୟ**—ଏମନ୍ତ (ପ୍ରାଚୀରରେ) କୋଠର ଗୁମଠ ଦ୍ୱାର ( ଅଛି )। ତାର ପହରୀ ଅହୋରାତ୍ର ପାରଥାଏ । (ପାଚେରିର) ଦୃଶ୍ୟ ପୁଣ୍ଡରୀକ (ଏବଂ) କୁମୁଦ ପରି ( ଅଟେ )। ତା' ଗୃପଡ଼ ମାଡ଼େ ପୁଣ୍ଡରୀକ (ଏବଂ) କୁମୁଦ (ନାମକ) କରୀ କୃଶ ହେବେ । ତା ଆୟୁଧ ଏଡ଼େ (ଯେ) ଦେବତାଙ୍କ ଆୟୁଧର (କୁ, ସେ) ଧୂଳି କରିଦେବ ।

**କଥା**—ଏପରି ପାଚେରିର କାନ୍ଥ କୋରଡ଼ରେ ଗୁମୁଠ ଦ୍ୱାର ରହିଛି । ତହିଁ ଅହୋରାତ୍ର ଶେଷଯାଏ ପହରୀ ଦିଆଯାଉଛି । ତହିଁ ଥିବା ପାଚେରିର ଚକ୍ଷୁ ଦୁଇଟି ପଦ୍ମ ଏବଂ କଇଁ ସଦୃଶ ଅଟେ । (ଅର୍ଥାତ୍ ଦିବସରେ କଇଁ ଆଖିରେ ଶୋଇଲେ ସେ ପଦ୍ମ ଆଖିରେ ଦେଖେ ଏବଂ ରାତ୍ରରେ ପଦ୍ମ ଆଖିରେ ଶୋଇଲେ ସେ କଇଁ ଆଖିରେ ଦେଖିଥାଏ । ) ତାର ଗୃପୁଡ଼ା ମାଡ଼ରେ ପୁଣ୍ଡରୀକ ଏବଂ କୁମୁଦ ନାମକ ମହାନ୍ ଦିଗହସ୍ତୀ ଦୁହେଁ କୃଶକାୟ ହୋଇଯିବେ । ସେ ଧରିଥିବା ଆୟୁଧ ଏତେ ବଡ଼ ଯେ ପର୍ବତ ତଦ୍ୱାରା ଧୂଳି ହୋଇଯିବ ।

**ଆଲୋଚନା**—ଅଗ୍ନିକୋଣର ଏବଂ ନୈଋତ କୋଣର ଦିଗ୍‌ଦନ୍ତୀମାନେ କୃଶ ହୋଇଯିବା କଥା ଯେ କବି ଲେଖିଛନ୍ତି, ତତ୍କାଳୀନ ଦ୍ୱାରକାର ଉକ୍ତ ଦୁଇ ଦିଗରୁ ଆକ୍ରମଣର ସୂଚନା ବୋଧହୁଏ ରହିଥିଲା । ଦ୍ୱାରକାର ଅଗ୍ନିକୋଣରେ ସାମୁଦ୍ରିକ ଶତ୍ରୁ ଶାଲ୍ୱ ଏବଂ ନୈଋତ କୋଣରେ ଜରାସନ୍ଧ, ଶିଶୁପାଳାଦିଙ୍କର ଆକ୍ରମଣ ଆଶଙ୍କା ଏତଦ୍ୱାରା ସୂଚିତ ହେଉଅଛି । ଏତଦ୍ୱାରା କବିଙ୍କର ସାମରିକ ପ୍ରତିପତ୍ତି-କୌଶଳ ସମ୍ବନ୍ଧରେ କିପରି ଧାରଣା ଥିଲା ଜଣାଯାଉଛି ।

---

ଶବ୍ଦାର୍ଥ—କୋଠର—କାନ୍ଥମଧ୍ୟରେ ଥିବା କୋରଡ଼ ବା ଗର୍ତ୍ତ । ଗୁମଠ—ଗୁମୁଠ(ଗୁମ୍ଫାକୃତି ଶଙ୍କୁସ୍ତମ୍ଭ ଘର) । ପାର—ପ୍ରାନ୍ତ ପ୍ରାନ୍ତ ଏ । ଦୃଶ—ଦୃଷ୍ଟି । ପୁଣ୍ଡରୀକ—ପଦ୍ମ । କୁମୁଦ—କଇଁ । ପୁଣ୍ଡରୀକ—ଅଗ୍ନିକୋଣର ହସ୍ତୀ । କୁମୁଦ—ନୈଋତକୋଣର ହସ୍ତୀ । (ଦିଗଗଜ—ଐରାବତ, ପୁଣ୍ଡରୀକ, ବାମନ, କୁମୁଦ, ଅଞ୍ଜନ, ପୁଷ୍ପଦନ୍ତ, ସାର୍ବଭୌମ, ସୁପ୍ରତୀକ ଏହି ଆଠଟି) କରୀ—ହାତୀ । କୃଶ—କ୍ଷୀଣ, ଦୁର୍ବଳ । ଦେବତାଙ୍କ ଆୟୁଧର—ଦେବତାଙ୍କ ଆୟୁ-ପରମାୟୁ ଧାରଣକର୍ତ୍ତା, ଦେବତାଙ୍କ ପର ତରଂଗାୟୀ—ପର୍ବତ ।

ଭଲ ଓ ମନ୍ଦ—

**ଶକଟ ପ୍ରାତ ବିନା ସେ କଟକେ**
**ନ ପ୍ରକଟନ୍ତି ଅର ଦର ଡାକେ**
**ମନ୍ଦ ସଂସର୍ଗତା ଚନ୍ଦନ ବାତେ**
**କଳି ଜନ୍ମାନ୍ତି ପୁଷ୍ପଲତା ବ୍ରାତେ, ସେ**
**ଉଦ୍‌ବେଗ ମାହକ ପୂଗେ, ଯେ**
**ଉପବାସେ ସଦା ରହିଛନ୍ତି ଏକା**
**କେବଳ ବଜାର ବରଗେ, ଯେ । ୧୧ ।**

**ଅନ୍ୱୟ**—ଶକଟ-ଅର (ଏବଂ) ପ୍ରାତ-ଦର (ଧ୍ୱନି) ବିନା ସେ କଟକେ ଅର-ଦର (ଜନିତ) ଡାକେ ନ ପ୍ରକଟନ୍ତି । ତା ଚନ୍ଦନ ବାତେ ମନ୍ଦ ସଂସର୍ଗ (ଦେଖାଯାଏ) । (ତହିଁ) ପୁଷ୍ପଲତା ବ୍ରାତେ କଳି ଜନ୍ମାନ୍ତି । ପୂଗ ଉଦ୍‌ବେଗ ମାହକ (ଥାଏ) । କେବଳ ବଜାର ବର୍ଗେ ଏକା ସଦା ଉପବାସେ ରହିଛନ୍ତି ।

**କଥା**—ସେ କଟକରେ ଅରଦର ବା ଶବ୍ଦଭୟ ଯୋଗୁଁ କୌଣସି ଡାକ ବା ଚିତ୍କାର କେବେ ଶୁଭେ ନାହିଁ । କିନ୍ତୁ ଶକଟ-ଅର ବା ରଥ ଚକ ଏବଂ ପ୍ରାତଃ କାଳର ଦର ବା ଶଙ୍ଖଧ୍ୱନି ଶୁଭିଥାଏ । (ଅର୍ଥାତ୍ 'ଅରଦର' ଶବ୍ଦଭୟ ଭାବରେ ନ ଥାଇ ସେଠାରେ ରଥଚକ୍ର ଏବଂ ଶଙ୍ଖଧ୍ୱନିରେ 'ଅରଦର' ଥାଏ । ) ସେ ନଗରରେ ମନ୍ଦ ସଂସର୍ଗ ନାହିଁ । କିନ୍ତୁ ମଳୟ ପବନରେ ମନ୍ଦ ବା ମଧୁର ସଂସର୍ଗ ଅଥବା ମନ୍ଦ ମନ୍ଦ ସ୍ପର୍ଶ ଦେଖାଯାଏ । ସେଠାରେ କଳି ଆଦୌ ନାହିଁ । କିନ୍ତୁ କଳି ପୁଷ୍ପିତା ଲତା-ସମୂହରେ ଦେଖାଯାଏ । ଯେଠାରେ କେହି ଉଦ୍‌ବେଗ ବା ମନୋଦୁଃଖରେ ଥିବାର ଜଣାଯାଏ ନାହିଁ । କିନ୍ତୁ ଉଦ୍‌ବେଗ ଅର୍ଥାତ୍ ଗୁଆ ନାମ ଯୋଗୁଁ ସେଠାରେ ବହୁ ଗୁଆଗଛ ଥିବାର ଦେଖାଯାଏ ।

ସେଠାରେ କେହି ଦରିଦ୍ରତା ହେତୁ ଉପବାସୀ ନ ଥାନ୍ତି । କେବଳ ବଜାର ଅର୍ଥାତ୍ ଧନିକ ଦୋକାନଦାରମାନେ ନିରନ୍ତର ବିକାକିଣା ହେତୁ ଅବସର ନ ପାଇ ସର୍ବଦା ଉପବାସରେ ରହିଛନ୍ତି ।

---

ଶବ୍ଦାର୍ଥ—ଶକଟ—ରଥାଦି ଯାନ । ପ୍ରାତ—ସକାଳ । ଅର—ଚକ୍ର । ଦର—ଶଙ୍ଖ । ଡାକେ—ଡାକହାକ, ଚିତ୍କାର, ଧ୍ୱନି । ଅରଦର—ଶବ୍ଦଭୟ । ମନ୍ଦ ସଂସର୍ଗ—ନୀଚ ସମ୍ପର୍କ (ପରଦାର । ଇତ୍ୟାଦି) । ଚନ୍ଦନ ବାତେ—ମଳୟ ପବନରେ । ମନ୍ଦ—ମୃଦୁ, ଧୀର । ସଂସର୍ଗ—ସମ୍ବନ୍ଧ । ବ୍ରାତେ—ସମୂହରେ । ଉଦ୍‌ବେଗ—କ୍ଷୋଭ, ମନୋଦୁଃଖ । ଉଦ୍‌ବେଗ—ଗୁଆ । ପୂଗେ—ଗୁଆଗଛସମୂହରେ । ବଜାର—ଦୋକାନଦାର, ନାଗରିକ । ବର୍ଗେ—ସମୂହ, ମାନେ ।

ପଦ୍ମ ପଦ୍ମ ଯହିଁ ଅଛଦ୍ମ ଗିର
ପଦ୍ମ-ସଦ୍ମ ଭାଙ୍ଗି ଦେଲା ପଦ୍ମାର
ଏଣୁ ପରମାନନ୍ଦେ ସାତବାରେ
ନୃତ୍ୟନ୍ତି ପ୍ରତି ପୁରେ ସାତବାରେ, ସେ
ବନାଶରେ ନାହିଁ ଦର, ଯେ
କୀନାଶପୂରୁ ଗୁରୁପୁତ୍ର ଆଣିବା
ବ୍ୟକ୍ତି ବରଚବା ପୁର, ଯେ । ୧୨ ।

**ଅନ୍ୱୟ**— ଯହିଁ ପଦ୍ମ ପଦ୍ମ ଅଛଦ୍ମ ଗିର (ଅଛି, ତାହା) ପଦ୍ମାର ପଦ୍ମ-ସଦ୍ମ ଭାଙ୍ଗି ଦେଲା । ଏଣୁ ସେ (ପଦ୍ମା) ପରମାନନ୍ଦେ ସାତବାରେ ପ୍ରତି ପୁରେ ସାତବାରେ ନୃତ୍ୟନ୍ତି । (ତହିଁ) ବନାଶରେ ଦୂର ନାହିଁ । (ତେଣୁ ତାହା) କୀନାଶ ପୁରୁ ଗୁରୁପୁତ୍ର ଆଣିବା ବ୍ୟକ୍ତି ବରଚବା ପୁର ଅଟେ ।

**କଥା**—ଯେଉଁ ନଗରୀରେ ପଦ୍ମ ସଂଖ୍ୟାରେ ଅକପଟ ସତ୍ୟବଚନ କୁହାଯାଉଛି, ତାହା ଜାଣିପାରି ଲକ୍ଷ୍ମୀ ତାଙ୍କର ସ୍ୱକୀୟ ପଦ୍ମବାସ ତ୍ୟାଗକରି ବସ୍ତୁ ପଦ୍ମ ପାଇଁ ଉକ୍ତ ନଗରୀରେ ବାସକରିଅଛନ୍ତି । ଏମନ୍ତ କି ଅତ୍ୟଧିକ ସତ୍ୟବଚନ ରୂପକ ପଦ୍ମ ଲଭିବାରୁ ପଦ୍ମା ଅତି ଆନନ୍ଦରେ ଗୋଟିଏ ମାସ ତାଙ୍କର ମଙ୍ଗଳଜନକ ବାରରେ ନୃତ୍ୟ, ଯୋମ, ମଙ୍ଗଳ ଆଦି ଯାତବାରରେ ସେଠାର ପ୍ରତି ଗୃହରେ ସାତ ସାତ ଥର କରି ନୃତ୍ୟ କରୁଅଛନ୍ତି । (ଅର୍ଥାତ୍ ଲକ୍ଷ୍ମୀ ବସ୍ତୁ ଖବରେ ସେ ନଗରରେ ଆବିର୍ଭାବ ହୋଇଛନ୍ତି । ତେଣୁ ସେଠାରେ ଅନାପ ସମ୍ପତ୍ତି ପୂର୍ଣ୍ଣ ରହିଛି ।) ତହିଁ ମୃତ୍ୟୁପ୍ରତି ଭୟ ନାହିଁ । ଯେଣୁ ତାହା ଯମାଳୟରୁ ଗୁରୁପୁତ୍ରଙ୍କୁ ଫେରାଇ ଆଣିଥିବା ବ୍ୟକ୍ତି ଯେ କୃଷ୍ଣ ତାଙ୍କଦ୍ୱାରା ବରଚବା ପୁର ଅଟେ ।

**ଆଲୋଚନା**—ଦ୍ୱାରକା ନଗରୀରେ ସତ୍ୟବଚନ ଏକାନ୍ତ ଶୁଣାଯାଏ । ସତ୍ୟ ହେଉଛି ବ୍ୟବସାୟର ମୂଳ ତତ୍ତ୍ୱ । ସତ୍ୟରେ ସବୁ କାରବାର ହେଉଥିବାରୁ ଉକ୍ତ ନଗରୀ ଧନସମ୍ପଦରେ ଏକାନ୍ତ ପରିପୂର୍ଣ୍ଣ ଥିବାରୁ ଓ ସେଠାର ନରନାରୀ ମାନେ ସ୍ୱାସ୍ଥ୍ୟବାନ୍ ହେତୁ ସେଠାରେ ମୃତ୍ୟୁଭୟ ନ ଥାଏ ।

---

ଶବ୍ଦାର୍ଥ—ପଦ୍ମ ପଦ୍ମ—ପଦ୍ମ ପଦ୍ମ ସଂଖ୍ୟା ( ୧୦୦୦୦୦୦୦୦୦୦୦୦୦୦ ଏହାହିଁ ପଦ୍ମ ସଂଖ୍ୟା । ଗଣନାରେ ଏକ, ଦଶ, ଶତ, ସହସ୍ର, ଅୟୁତ, ଲକ୍ଷ, ନିୟୁତ, କୋଟି, ଅର୍ବୁଦ, ବୃନ୍ଦ, ଖର୍ବ, ନିଖର୍ବ, ଶଙ୍ଖ, ପଦ୍ମ,ସାଗର,ଅନ୍ତ୍ୟ, ମଧ୍ୟ, ପରାର୍ଦ୍ଧ, ଏପରି ଦଶ ଗୁଣିତ ସଂଖ୍ୟା ଦେଖାଯାଏ ।) ଅଛଦ୍ମ—ଅଛଳ, ଅକପଟ । ଗିର—କଥା । ସଦ୍ମ—ଗୃହ, ବାସ । ସାତବାରେ—ରବି,ସୋମାଦି ସାତବାରରେ । ସାତବାରେ—ଥରଥର କରି ସାତଥର । ଦର—ଭୟ । କୀନାଶ—ଯମ । ପୁରୁ—ପୁରରୁ । ଗୁରୁପୁତ୍ର ଆଣିବା ବ୍ୟକ୍ତି—କୃଷ୍ଣ ତାଙ୍କର ଗୁରୁ ସାନ୍ଦିପନି ଋଷିଙ୍କ ପୁତ୍ରଙ୍କୁ ଯମାଳୟରୁ ଫେରାଇ ଆଣିବା ପୁରାଣପ୍ରସିଦ୍ଧ ଅଟେ ।

ରୈବତକ—

ମହା ଉପକାରୀ ରେବତ ନାଗ
ବାହାଉଛି ବହୁ ବହ୍ନିକ ଆଗ
ଆପେ ଆପଣାର ଜଣେ ଲୁଚଛି
ତା ଶୀତ ତାପ ବାରିବାକୁ ଇଚ୍ଛି, ସେ
ଏ ପରମ ସାଧୁ ନୀତ, ଯେ
ଭଣ୍ଡି ଅଖଣ୍ଡିତ ପ୍ରୀତ ହୋଇଛନ୍ତ
ରୁଣ୍ଡୀଭୂତ ହୋଇ ଯତ, ଯେ । ୧୩ ।

**ଅନ୍ୱୟ**—(ଯେଣୁ ତାର) ଆପଣାର ଜଣେ ଆପେ ଲୁଚଛି (ତେଣୁ) ତା ଶୀତ ତାପ ବାରିବାକୁ ଇଚ୍ଛି ମହା ଉପକାରୀ ରୈବତ ନାଗ ଅଗ (ହୋଇ) ବହ୍ନିକ ବହୁ ବାହାଉଛି । ଏ ପରମ ସାଧୁ ନୀତ (ଅନୁଭବ କର) ଭଣ୍ଡି ଏବଂ ଯତି (ତହିଁ) ଅଖଣ୍ଡିତ ପ୍ରୀତରେ ରୁଣ୍ଡୀଭୂତ ହୋଇଛନ୍ତି ।

**କଥା**—ଯେଣୁ ତାହାର ଆପଣାର ଜଣେ ଅର୍ଥାତ୍ ମୈନାକଗିରି ସମୁଦ୍ର ଜଳ ମଧ୍ୟରେ ଲୁଚି ରହିଛି ବା ବୁଡ଼ି ରହିଛି ତେଣୁ ତାର ଶୀତ କଷ୍ଟ ନିବାରଣ କରିବା ଲାଗି ଇଚ୍ଛାକରି ସମୁଦ୍ର ମଧ୍ୟସ୍ଥ ଦ୍ୱାରକାରେ ଥିବା ରୈବତକ ଗିରି ସମ୍ମୁଖବର୍ତ୍ତୀ ହୋଇ ବହ୍ନିମକୁ ମୁଖକରି ନିଜ ଅଙ୍ଗରେ ବହ୍ନିର ଧୂମମାନ କଷ୍ଟସହ୍ୟ ବହନ କରିଅଛି । ପରଲାଗି ସେ କଷ୍ଟ ସହୁଥିବା ଯୋଗୁଁ ଏପରି ପରମ ସାଧୁନୀତିକୁ ଅନୁଭବ କରି ଭଣ୍ଡି ଅର୍ଥାତ୍ କୃତ୍ରିମ-ଧାର୍ମିକ ସାଧୁମାନେ ମଧ୍ୟ ମହାନ୍ ଯତିମାନଙ୍କ ସହିତ ସେହି ଧୂମ ପାଖରେ ଅଖଣ୍ଡିତ ପ୍ରୀତି ରଖି ଏକତ୍ର ହୋଇ ରହିଛନ୍ତି ।

**ଆଲୋଚନା**—ଦ୍ୱାରକା ସ୍ଥିତ ରୈବତକ ପର୍ବତରେ ସାଧୁ ସନ୍ଥମାନେ ନିରନ୍ତର ଥିବାରୁ ସେମାନଙ୍କର ଧୂମଦ୍ୱାରା ପର୍ବତ ଉତ୍ତପ୍ତ ରହିଥାଏ । ତେଣୁ ମୈନାକ ସମୁଦ୍ର ଜଳ ଦ୍ୱାରା ଶୀତ ଏବଂ ରୈବତକଦ୍ୱାରା ତାପ ଲାଭକରି ଶୀତାତପ-ନିପୀଡ଼ିତ ରହେ ।

---

ଶବ୍ଦାର୍ଥ—ରୈବତ—ଦ୍ୱାରକାସ୍ଥିତ ଏକ ବିଖ୍ୟାତ ପର୍ବତ । ମାଘ କାବ୍ୟରେ ବର୍ଣ୍ଣନା ଅଛି—ଅୟମତଃ ଜରଠାଃ ପ୍ରକାମ ଗୁର୍ବୀ, ରଚଲମ୍ବ ବଲମ୍ବି ପୟୋଧରୋପନଦ୍ଧାଃ, ସତତ-ମସୁମତା ମଗମ୍ୟ ରୂପା, ପରିଣତ ଦନ୍ତିରକାନ୍ତ୍ୟଟୀର୍ବିଭର୍ତ୍ତି । ପରବର୍ତ୍ତୀ ପଦ ଭୃଗୁନର୍ଣ୍ଣନାରେ ଏଥିର କିଛି ଥିବାର ଜଣାଯାଏ । ନାଗ—ପର୍ବତ । ଅଗ—ସମ୍ମୁଖବର୍ତ୍ତୀ । ତାପ—ଯାତନା, କଷ୍ଟ । ଆପେ—ଜଳରେ । ବାରିବା—ଦୂର, ନିବାରଣ । ଭଣ୍ଡି—କୃତ୍ରିମ ଧାର୍ମିକ, ଭଣ୍ଡ ସାଧୁ । ରୁଣ୍ଡୀଭୂତ—ଏକତ୍ରୀକୃତ । ଅଖଣ୍ଡିତ—ଅବଭଗ୍ନ, ମୁକ୍ତ । ଆପଣାର ଜଣେ—ରୈବତକ ପର୍ବତରେ ଆପଣାର ଅର୍ଥାତ୍ ସମୁଦ୍ରରେ ଗୁପ୍ତ ଥିବା ମୈନାକ ପର୍ବତ । (ଗିରିରାଜ ହିମାଳୟଙ୍କର ମେନକା ଗର୍ଭସମ୍ଭୂତ ପୁତ୍ର ମୈନାକ । ପୂର୍ବେ ପର୍ବତମାନେ ପକ୍ଷଯୁକ୍ତ ଥିବାରୁ ଜନପଦରେ ପତିତ ହୋଇ ବହୁ ପ୍ରାଣୀ ନାଶ କରନ୍ତେ ଇନ୍ଦ୍ର ବଜ୍ରମାରି ପକ୍ଷଛେଦ କରନ୍ତେ ମୈନାକ ସମୁଦ୍ରଗର୍ଭରେ ଲୁଚିଥିଲା ।)

ମାତଙ୍ଗ କୁମ୍ଭ ଅଗସ୍ତି ସଂସର୍ଗୀ
ଭୃଗୁ କପିଳ ମରୀଚ ସରାଗୀ
ଶାଣ୍ଡିଲ୍ୟ କଉଶିକ ଡ଼ାକେ ବ୍ୟାସ
ଭରଦ୍ୱାଜ ଶୁକ ହାରିତ ବଂଶ, ସେ
ବରାହ ରୋମାଞ୍ଚ ସଙ୍ଗ, ଯେ
ରାମ ଶତାନନ୍ଦ ପର୍ବତ ବଦ୍ଧିତ
ଜନକ ସଂଚର ଭଙ୍ଗ ଯେ । ୧୪ ।

**ଅନ୍ୱୟ**—୧-(ତହିଁ) ମାତଙ୍ଗ, କୁମ୍ଭ, ଅଗସ୍ତି, ସଂସର୍ଗୀ (ଅଛନ୍ତି) । ଭୃଗୁ, କପିଳ, ମରୀଚ, ସରାଗୀ (ଅଛନ୍ତି) । ଶାଣ୍ଡିଲ୍ୟ (ଅଛନ୍ତି) । କଉଶିକ (ଅଛନ୍ତି) । ଡ଼ାକେ (ଅଛନ୍ତି) । ବ୍ୟାସ, ଭରଦ୍ୱାଜ, ଶୁକ, ହାରିତ, ବଂଶ (ଅଛନ୍ତି ଏବଂ ତହିଁ) ସଙ୍ଗ (ଗୁଣରୁ) ବରାହ (ପ୍ରାପ୍ତ ରୋମାଞ୍ଚ (ହେଉଛନ୍ତି) । ଶତାନନ୍ଦ, ପର୍ବତ (ଋଷି) ରାମ ବଦ୍ଧିତ (ଅଛନ୍ତି) । (କିନ୍ତୁ) ଜନକ ସଂଚର (ତହିଁ) ଭଙ୍ଗ (ହୁଏ) ।

(୨)—(ସେଠି) ମାତଙ୍ଗ— କୁମ୍ଭ ଅଗସ୍ତି ସଂସର୍ଗୀ ହୋଇଅଛି । (ତାହାର) ଭୃଗୁ, କପିଳ (ବର୍ଣ୍ଣ ଦେଖା ଯାଉଥିବାରୁ) ମରୀଚ ସରାଗୀ (ହୋଇଅଛି) । (ତହିଁଥିବା) ଶାଣ୍ଡିଲ୍ୟ, କଉଶିକ (ପକ୍ଷୀଙ୍କ ରାଜା ହେତୁ) ଡ଼ାକେ—(ହେ) ବ. ଆସ । (ତହୁଁ) ଭରଦ୍ୱାଜ, ଶୁକ, ହାରିତ ବଂଶ (ସେଠାରେ ଅଛନ୍ତି) । (ତହିଁ) ବରାହ ରୋମାଞ୍ଚ ସଙ୍ଗ (ଥିବାର ଦେଖାଯାଏ) । ଜନକ (ଙ୍କ) ସଞ୍ଚର ଭଙ୍ଗ (ହେତୁ) ରାମଶତ ଆନନ୍ଦ (ରେ, ସେ) ପର୍ବତ (ରେ ବଦ୍ଧିତ (ଅଛନ୍ତି ।

**କଥା**– (୧) ସେ ପର୍ବତରେ ମାତଙ୍ଗ, କୁମ୍ଭ, ଅଗସ୍ତି ସମ୍ବନ୍ଧୀୟ ଋଷି ଅଛନ୍ତି । ଭୃଗୁ, କପିଳ, ମରୀଚଙ୍କ ଅନୁରକ୍ତ ଋଷି ଅଛନ୍ତି । ଶାଣ୍ଡିଲ୍ୟ ଗୋତ୍ରୀୟ ଋଷିମାନେ ଅଛନ୍ତି । କୌଶିକ ଅଛନ୍ତି । ଡ଼ାକ ଋଷିମାନେ ଅଛନ୍ତି । ବ୍ୟାସ, ଭରଦ୍ୱାଜ, ଶୁକ, ହାରିତ ଋଷି ବଂଶ ସେଠାରେ ସଙ୍ଗୀ ହୋଇ ବରାହ ପ୍ରାପ୍ତ ପୁଲକିତ ହେଉଛନ୍ତି । ଶତାନନ୍ଦ, ପର୍ବତ ଋଷି ରମଣୀୟ ଭାବରେ ବଦ୍ଧିତ ଅଛନ୍ତି । କିନ୍ତୁ ଜନକ ସମ୍ବନ୍ଧୀୟ ଋଷିଙ୍କ ଗମନାଗମନ ସେଠି ଜଣାଯାଏ ନାହିଁ ।

(୨)—ସେ ପର୍ବତରେ ହସ୍ତୀ ତାର କୁମ୍ଭ ଦେଶକୁ ଅଗସ୍ତି ବୃକ୍ଷରେ ଘଷୁଥିବାର ଦେଖାଯାଏ । ପୁନଶ୍ଚ ପର୍ବତର ଅନେକ ଅଂଶ କପିଳବର୍ଣ୍ଣ ଦେଖାଯାଉଥିବାରୁ ସେଠାରେ ମରୀଚିକା ଭ୍ରାନ୍ତ ଆସିଥାଏ । ତହିଁଥିବା ବେଲବୃକ୍ଷମାନଙ୍କରେ ବସି ପକ୍ଷୀଙ୍କ ରାଜା ହେତୁ ପେଚକ ଆହ୍ୱାନ କରେ—ହେ ପକ୍ଷିମାନେ ! ଏଠାକୁ ଆସ । ତହୁଁ

ଭରତଆ, ଭଦଭଦଳଆ, ଶୁଆ ଓ ହାରିତ ନାମଧେୟ ବହୁ ଶୁକପକ୍ଷୀ ସେଠାକୁ ଆସି ରହିଛନ୍ତି । ତାଙ୍କ ବରାହମାନେ ନିର୍ଭୟରେ ରୋମାଞ୍ଚିତ ଥିବାର ଦେଖାଯାଏ । ଏମନ୍ତକି ଜନ ମନୁଷ୍ୟର ସଞ୍ଚାର ନଥିବାରୁ ମୃଗମାନେ ଆନନ୍ଦରେ ସେ ପର୍ବତରେ ଅପର୍ଯ୍ୟାପ୍ତ ଥିବାର ଜଣାଯାଏ ।

**ଆଲୋଚନା** – ଉକ୍ତ ପର୍ବତରେ ବର୍ଣ୍ଣିତ ବହୁ ଋଷି ରହିଅଛନ୍ତି ଏବଂ ସେହିମାନଙ୍କ ନାମ ସାଯୁଜ୍ୟ ବୃକ୍ଷ ଅଗସ୍ତି ବଲ୍ଲ ଏବଂ ଆଦି ପେଚକ, ଶୁକ, ଭରତଆ ଆଦି ପକ୍ଷୀ ସେଠାରେ ଥିବାର ଦେଖାଯାନ୍ତି । ଉକ୍ତ ପର୍ବତର ଉପତ୍ୟକା ଅଂଶ ଏକାନ୍ତ ଧୂଷର ଦେଖାଯାଉଥିବାରୁ ଶୂନ୍ୟ ଶୂନ୍ୟ ଜଣାଯାଏ ।

ଶ୍ଳେଷାଳଂକାର କବିଶିରୋମଣି ଯଦୁମଣି ବହୁଳ ବ୍ୟବହାର କରିଛନ୍ତି । ଗୋଟିଏ ନାମବାଚକ ଶବ୍ଦ ଋଷି ଏବଂ ବୃକ୍ଷ ଉଭୟରେ ସେ ବ୍ୟବହାର କରିଛନ୍ତି । ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ—'ଏଠାରେ ପ୍ରଶ୍ନ ଉଠେ ଏକ ଶବ୍ଦ ବୃକ୍ଷ ଓ ଋଷି ଉଭୟ ନାମବାଚକ ହେବାର କାରଣ କ'ଣ ? ବୌଦ୍ଧ ସନ୍ନ୍ୟାସୀମାନଙ୍କୁ କେତେକ ବୃକ୍ଷ ମୂଳରେ ବାସ କରିବାପାଇଁ ବୌଦ୍ଧ ଶାସ୍ତ୍ରରେ ନିର୍ଦ୍ଦେଶ ଦିଆଯାଇଛି । ଏଣୁ ଅନୁମିତ ହୁଏ ଯେ ଯେଉଁ ଋଷି ଯେଉଁ ବୃକ୍ଷ ମୂଳରେ ବାସ କରୁଥିଲେ ସେ ଋଷିଙ୍କ ନାମରେ ସେ ବୃକ୍ଷର ନାମକରଣ ହୋଇଛି । ଯେପରି ଉକ୍ତ ସୂତ୍ର ପ୍ରଣେତା ଶାଣ୍ଡିଲ୍ୟ ଋଷି ଏବଂ ବେଲଗଛର ନାମ ଶାଣ୍ଡିଲ୍ୟ ।"

---

ଶବ୍ଦାର୍ଥ । ମାତଙ୍ଗ—ଜନୈକ ଋଷି, ଯେକି ଋଷ୍ୟମୂକ ପର୍ବତରେ ତପସ୍ୟା କରୁଥିଲେ (ରାମାୟଣ) । ମାତଙ୍ଗ—ହସ୍ତୀ । କୁମ୍ଭ—ଏହି ଋଷିଙ୍କ ପୁତ୍ର ଅଗସ୍ତି ଅଟନ୍ତି; ହସ୍ତୀର ମସ୍ତକ ସ୍ଥିତ ପିଣ୍ଡାକାର ସ୍ଥାନ । ଅଗସ୍ତି—ସ୍ୱନାମଧନ୍ୟ ଋଷି, ବୃକ୍ଷ ବିଶେଷ । ସସର୍ଗ—ସମ୍ବନ୍ଧୀୟ । ଭୃଗୁ—ଶୁକ୍ରାଚାର୍ଯ୍ୟଙ୍କ ପିତା, ପର୍ବତର ଗଡ଼ାଣିଆ ସ୍ଥାନ । କପିଳ—କପିଳମୁନି, ପିଙ୍ଗଳ ବର୍ଣ୍ଣ, ପାଉଁଶିଆ । ମରୀଚ—ସପ୍ତର୍ଷିଙ୍କ ମଧ୍ୟରୁ ଜଣେ, ରଶ୍ମି, ମରୀଚିକା, ମୃଗତୃଷ୍ଣା । ସରାଗୀ—ଔତ୍ସୁକ୍ୟ, ପ୍ରଫୁଲ୍ଲ, ହର୍ଷ । ଶାଣ୍ଡିଲ୍ୟ—ଗୋତ୍ରକାର ମୁନି ବିଶେଷ, ବେଲଗଛ । କଉଶିକ—ବିଶ୍ୱାମିତ୍ର ଋଷି, ପେଚକ । ଡାକେ—ଡାକ ବଚନ ଋଷିମାନେ; ଡାକିବା । ବ୍ୟାସ—ବ୍ୟାସଋଷି, ବି—ପକ୍ଷୀ, ଅହ୍ୱ—ଅହ୍ୱାନ, ଡାକିବା । ଭରଦ୍ୱାଜ—ଗୋତ୍ରକାର ଋଷି, ଭରତିଆ ଓ ଭରଦ୍ୱାଜ ପକ୍ଷୀ । ଶୁକ—ମହାମାନ୍ୟ ଭାଗବତ ରଚୟିତା ଋଷି ବିଶେଷ, ପକ୍ଷୀ ବିଶେଷ । ହାରିତ—ଗୋତ୍ର ପ୍ରବର୍ତ୍ତକ ଋଷି, ହରଡ଼ ଚଢ଼େଇ । ବଂଶ—କୁଳ । ବରାହ—ବରାହ ଅବତାର-ଭକ୍ତ ଋଷି ବିଶେଷ; ବରାହ ପଶୁ ବିଶେଷ । ରୋମାଞ୍ଚ—ରୋମାଞ୍ଚ ବିକାଶ ଋଷି, ଠିଆ ଠିଆ ରୋମ, ପୁଲକିତ ଲୋମ । ସଙ୍ଗ—ସଂଯୋଗୀ, ବୈଷ୍ଣବ, ସଙ୍ଗତ, ମିଳନ, ଅନୁରାଗ, ସହଯୋଗ । ରାମ—ରମଣୀୟ, ହରିଣ । ଶତାନନ୍ଦ—ଋଷି ବିଶେଷ (ଅହଲ୍ୟା ପୁତ୍ର), ଶତ—ବହୁ ସଂଖ୍ୟକ । ପର୍ବତ—ଦେବର୍ଷି ବିଶେଷ, ଗିରି । ବିଦିତ—ଖ୍ୟାତ । ଭଂଗ—ଭଗ୍ନ । ଜନକ—ଜନକ ରାଜର୍ଷିଙ୍କ ପତ୍ନୀ । ସଞ୍ଚାର—ଯାତାୟାତ, ଅବସ୍ଥିତ ।

ନଗର ବୈଶିଷ୍ଟ୍ୟ—

**ଚନ୍ଦ୍ରଗୁପ୍ତେ ଲେଖିବାର କୀବେଣ**
**ମନୁ ଜନ୍ମାଇ ଅତନୁ ଆବେଶ**
**ଗୃପି ଅଧରକୁ ବହଇ ପୀଡ଼ା**
**ଶମନ ଦୁଃଖ ସମ କାମକ୍ରୀଡ଼ା, ସେ**
**ବଗୃର ଭ୍ରମନ୍ତ ଜ୍ଞାନୀ, ଯେ**
**ନିରଞ୍ଜନାଞ୍ଜନେ ନେତ୍ରକୁ ରଞ୍ଜନ**
**କରି ବସିଛନ୍ତି ଧ୍ୟାନୀ, ଯେ । ୧୫ ।**

**ଅନ୍ୱୟ** (୧)— ଚନ୍ଦ୍ରଗୁପ୍ତେ (କେବଳ ଭଲ) ଲେଖିବାରେ, କୀବେଣ (ତହିଁ) ମନୁ ଅତନୁ ଆବେଶ ଜନ୍ମାଇ (ଦଅନ୍ତି) । (ତେଣୁ ସେଠାର ଜନ ସମାଜ ସେଥିରେ ନ ପଡ଼ିବାଲାଗି) କାମକ୍ରୀଡ଼ା ଅଧରକୁ ଗୃପି ଶମନ ଦୁଃଖ ସମ ପୀଡ଼ା ବହଇ । (ଏବଂ) ବଗୃର ଜ୍ଞାନୀ (ତହିଁ) ଭ୍ରମନ୍ତି, (ଏବଂ) ନିରଞ୍ଜନାଞ୍ଜନେ ନେତ୍ରକୁ ରଞ୍ଜନ କରି (ତହିଁ) ଧ୍ୟାନୀ ବସିଛନ୍ତି ।

(୨)—(ନାୟିକାଗଣେ) ଗୁପ୍ତେ ଚନ୍ଦ୍ର ଲେଖିବାରେ କୀବେଣ ଅତନୁ ଆବେଶ ମନୁଜନ୍ମାଇ ଅଧରକୁ ଗୃପି ପୀଡ଼ା ବହଇ । (ଏହା) କାମକ୍ରୀଡ଼ା ଶମନ ଦୁଃଖ ସମ ବଗୃର ଜ୍ଞାନୀ (ଏଠାରେ) ଭ୍ରମନ୍ତି । (ଏବଂ) ନିରଞ୍ଜନ ଅଞ୍ଜନେ ଧ୍ୟାନୀ ନେତ୍ରକୁ ରଞ୍ଜନ କରି ବସିଛନ୍ତି ।

**କଥା** (୧)—ସେ ନଗରର ଲୋକମାନଙ୍କ ସମ୍ବନ୍ଧରେ ପାଞ୍ଜି କାର ଚନ୍ଦ୍ରଗୁପ୍ତ ଭଲ ଲେଖିବାରୁ, ଯମ ସେଠାରେ ଲୋକ ମନରୁ କାମଚନ୍ତା ଜନ୍ମାଇ ସେମାନଙ୍କୁ ପାପ ପଥରେ ନେବାକୁ ବ୍ୟବସ୍ଥା କରନ୍ତି । ତେଣୁ ସେଠାର ଜନସମାଜ ସେଥିରେ ନ ପଡ଼ିବା ଲାଗି ଦେହାପ୍ରା କାମପ୍ରୀତି ଆଦି ପ୍ରବୃତ୍ତି ଲାଳସାକୁ ଓଠ କାମୁଡ଼ି ଯମ ଦୁଃଖ ପରି ଯନ୍ତ୍ରଣା ଦେଇ ପଛେ ସେ ପୀଡ଼ା ସହିଯାନ୍ତି । ଲୋକଙ୍କର ଏ ପ୍ରକାର ବୃତ୍ତି ଦେଖି— ବାଟେବାଟେରେ ଏହି ଉଚ୍ଚ ମନୋଭାବ ଯେନି ସେଠାରେ ଜ୍ଞାନୀମାନେ ଭ୍ରମଣ କରିବାର ଦେଖାଯାଏ ଏବଂ ଧ୍ୟାନବନ୍ତ ଯୋଗିମାନେ ନିରଞ୍ଜନ ବ୍ରହ୍ମରୂପ ଅଞ୍ଜନରେ ନେତ୍ରମାନ ରଞ୍ଜିତ କରି ବସିଥାନ୍ତି ।

(୨)—ସେଠାର ନାୟିକାଗଣ ଗୁପ୍ତରେ କାମୋଦ୍ଦୀପକ ଚନ୍ଦ୍ର ଲେଖିବାରେ ସେମାନଙ୍କ ସ୍ୱାମୀମାନେ କାମରେ ଅଧୀର ହୋଇ ମନରେ ସେ ଚନ୍ତା କରି ଅଧର ଗୃପି ପୀଡ଼ା ହେଉଥାନ୍ତି । ଏହି ଉଚ୍ଛୃଙ୍ଖଳ କାମକ୍ରୀଡ଼ା, ସମୟରେ ଯମ ଦଣ୍ଡଭଳି ଯେ ଦୁଃଖ ଦାୟକ, ଏକଥା ବଗୃରି ଏଠାର ଜ୍ଞାନୀମାନେ ରାଜପଥରେ ଭ୍ରମଣ କରନ୍ତି, ଏବଂ ଧ୍ୟାନୀମାନେ ନେତ୍ରରେ ବ୍ରହ୍ମଙ୍କୁ କେବଳ ଧାରଣା କରୁଥାନ୍ତି ।

**ଆଲୋଚନା**—ଯେ କୌଣସି ନଗରର ମାନଦଣ୍ଡ ହେଲା ସଂଯମ ଏବଂ ଜ୍ଞାନ ଓ ବୁଦ୍ଧିର ନିଷ୍ଠାପର ସମାବେଶ । ତା ଫଳରେ ବିଶୁଦ୍ଧ ମାନ୍ତମୟ ଜୀବନ ଆସିବ । ଯୋଗୁଁ ଜୀବନର ଦୁଃଖ ଦୂର ହୋଇଥାଏ । କବି କହନ୍ତି ଏ ନଗରରେ ଅସଂଯମ, ଉଚ୍ଛୃଙ୍ଖଳତା ଆଦୌ ନାହିଁ । ତେଣୁ ଜ୍ଞାନୀ ଏବଂ ମୁନିମାନେ ସେଥିରେ ବହୁଳ ଦେଖାଯାଇଥାନ୍ତି ।

ଐଶ୍ୱରିକ ଆନନ୍ଦରେ ଯେଉଁମାନେ ମଗ୍ନଥାନ୍ତି,ସେମାନେ ବ୍ୟଭିଚାର ଏବଂ ଭ୍ରଷ୍ଟାଚାରପୂର୍ଣ୍ଣ ସମାଜରେ କେବେ ରହିପାରନ୍ତି ନାହିଁ । ତେଣୁ ଧ୍ୟାନ ମନନର ପୀଠ ଶାନ୍ତ ତପୋବନରେ ଆଶ୍ରୟ କରିଥାନ୍ତି । କିନ୍ତୁ ଏ ନଗରର ବିଶୁଦ୍ଧତାରେ ଆକର୍ଷିତ ହୋଇ ସେମାନେ ବହୁ ଭାବରେ ଥିବାର ଦେଖାଯାଏ ।

---

ଶବ୍ଦାର୍ଥ । ଚନ୍ଦ୍ରଗୁପ୍ତ—ଗୁପ୍ତ ଯେ ରକ୍ଷାକରେ; ଯମ ପାଞ୍ଜିକାର; ଯଥା—ବୃକୋଦରସ୍ୟ ଚନ୍ଦ୍ରାୟ ଚନ୍ଦ୍ରଗୁପ୍ତାୟ ବୈ ନମଃ ଅଥବା ଧର୍ମରାଟ୍ ଚନ୍ଦ୍ରଗୁପ୍ତାଭ୍ୟାଂ ଭୂମୌଦଦ୍ୟାଦ୍ ବଳିଦ୍ୱୟଂ । ଜୀବେଶ—ଯମ, ମୃତ୍ୟୁଦେବତା । ଅତନୁ—କାମ । ଆବେଶ—ଅନୁପ୍ରବେଶ, ମନୋଯୋଗ । ଦ୍ୱିପି—ଦବେଇଦେବା । ପୀଡ଼ା—ଯନ୍ତ୍ରଣା । କାମକ୍ରୀଡ଼ା—ସ୍ତ୍ରୀ ବିଳାସ ନିରଞ୍ଜନ—ଅବିଦ୍ୟାଦିଦୋଷ ଶୂନ୍ୟ, ପରଂବ୍ରହ୍ମ । ଅଞ୍ଜନ—କଜ୍ଜ୍ୱଳ, ରଞ୍ଜେଇବା ପଦାର୍ଥ । ରଞ୍ଜନ—ଅନୁରାଗ, ଉତ୍ପାଦକ, ରଙ୍ଗେଇବା, ପ୍ରୀତିଜନକ ।

ନଗରର ସ୍ୱାସ୍ଥ୍ୟ —

**ବେନି ମଧୁକାଲଙ୍କର ବିହାର**
**ହାର ହୃଦୁଁ ନକରଇ ବାହାର**
**ବିଚିତ୍ର ଶୋଭାଭିରାମ ଆରାମ**
**ଅବସ୍ଥାରେ ଶସ୍ତା ଯୌବନ ଦାମ, ଯେ**
**ଅନିଷ୍ଟ ହେବାକୁ ପୂର୍ବୁଁ, ଯେ**
**କରିଅଛି ଦେବ ବନ୍ଦନ ବନକୁ**
**ନନ୍ଦନ ବଶିଷ୍ଠ ବାପୁ, ଯେ । ୧୭ ।**

**ଅନ୍ୱୟ**—(ତାହା) ବେନି ମଧୁକାଲଙ୍କର ବିହାର (ଅଟେ) । (ତେଣୁ ତହିଁର) ବିଚିତ୍ର ଶୋଭାଭିରାମ ଆରାମ ହୃଦୁଁ ହାର ବାହାର ନକରଇ । (ତେଣୁ ସେଠି) ଅବସ୍ଥାରେ ଶସ୍ତା ଯୌବନ ଓ ଦାମ (ଥାଏ) । ପୂର୍ବୁଁ ଅନିଷ୍ଟ ହେବାକୁ ଦେବ ବନ୍ଦନ ବନକୁ ବଶିଷ୍ଠ ବାପୁ 'ନନ୍ଦନ' କରିଅଛି ।

**କଥା** – ଉକ୍ତ ନଗରରେ ମଧୁକାଳ ବା ବସନ୍ତଋତୁ ଯେପରି ସର୍ବଦା ବିହାର କରେ ତଦ୍ରୂପ ମଧୁରାକ୍ଷସର କାଳ ବା ଶତ୍ରୁ-ବିଷ୍ଣୁରୂପୀ-କୃଷ୍ଣ ମଧ୍ୟ ବିହାର କରନ୍ତି । ତେଣୁ ସେଥିରେ ଅବସ୍ଥିତ ବିଚିତ୍ର ଶୋଭାଭିରାମ ଉପବନ, ତାହାର ହୃଦୟରୁ ପୁଷ୍ପ ସମୂହ ଛାଡ଼ନ୍ତିନାହିଁ । ଏମନ୍ତକି ମଧୁକାଳ ରୂପୀ କୃଷ୍ଣ ଯେକି ବିଚିତ୍ର, ଅତ୍ୟନ୍ତ ସୁନ୍ଦର ଏବଂ ଜନସମାଜର ଆରାମପ୍ରଦ ଅଟନ୍ତି, ତାଙ୍କ ବକ୍ଷରୁ କେବେ ବନମାଳା ବାହାରିବାର ମଧ୍ୟ ଦେଖାଯାଏ ନାହିଁ । ତେଣୁ ସେଠାର ଗଡବନ୍ଧରେ (ସ୍ଥିତିରେ) ଯୌବନ ଏବଂ ପୁଷ୍ପମାଳ ଏକାନ୍ତ ଶସ୍ତା ଅଟେ । କାରଣ ବସନ୍ତଋତୁ ସର୍ବଦା ବିରାଜିତ ଥିବାରୁ, ଏଣେ ଉପବନରେ ନିରନ୍ତର ପୁଷ୍ପ ରାଶିରାଶି ଫୁଟି ଥିବାରୁ ଫୁଲମାଳ ପୁଣି ଅତି ସୁନ୍ଦର ତରୁଣ ମୂର୍ତ୍ତି କୃଷ୍ଣ ଯେଉଁଠାରେ ବିରାଜିତ ଥିବାହେତୁ ତାଙ୍କ ଆଦର୍ଶରେ ଯୌବନର ସେଠି ଅଭାବ ଦେଖାଯାଏ ନାହିଁ ।

ଉକ୍ତ ନଗରର ଉପବନ ସହିତ କାଳେ ସ୍ୱର୍ଗ-ଉପବନର ତୁଳନା ହେଲେ ଅନିଷ୍ଟ ଜାତ ହେବ ସେଥିପାଇଁ ଦେବତାଙ୍କ ନନ୍ଦନବନକୁ ବଶିଷ୍ଠଙ୍କ ଜନକ ବିଧାତା ବ୍ରହ୍ମା 'ନନ୍ଦନ' ନାମ ଦେଇ ଏହି ଦ୍ୱାରକାସ୍ଥ ଉପବନର ସେ ନନ୍ଦନ ବା ପୁତ୍ର ବୋଲି ପୂର୍ବରୁ ଅଭିହିତ କରି ବିବାଦ ଖଣ୍ଡନ କରିଅଛନ୍ତି । କାରଣ ଏ ବନରେ ଦୁଇ ମଧୁକାଳର ବିହାର କିନ୍ତୁ ସ୍ୱର୍ଗୀୟ ନନ୍ଦନରେ ଗୋଟିଏ ମଧୁକାଳ ବିହାର କରେ ।

---

ଶବ୍ଦାର୍ଥ । ବେନି—ଦୁଇ । ମଧୁକାଳ—ବସନ୍ତକାଳ, ମଧୁନାମକ ଦୈତ୍ୟର କାଳ ବା ଶତ୍ରୁ ବିଷ୍ଣୁରୂପଧାରୀ କୃଷ୍ଣ । ହାର—ମାଳ । ଆରାମ—ଉପବନ, ବିଶ୍ରାମ । ଅବସ୍ଥା—ସ୍ଥିତି, ଗଡବନ୍ଧ । ଦାମ—ପୁଷ୍ପମାଳ । ଦେବ-ବନ୍ଦନ-ବନ—ନନ୍ଦନବନ । ବଶିଷ୍ଠ ବାପୁ—ବ୍ରହ୍ମା, ବିଧାତା ।

**ସରସିଜ ବାସିନୀ ଏ ସରସୀ**
**ଅଭୟ୍ୟ ବରକୁ ଅଛୁ ପ୍ରକାଶେ**
**ସନ୍ନିପାତ ରୋଗେ ସଲୀଳ ବର୍ଗେ**
**ଯୋଗ ସାରସ ଯୁଗଳ ସରାଗେ, ସେ**
**ଚତୁର ନାଗରେ ସ୍ନାନ, ଯେ**
**ବିଧାନ ବିଧିରୁ ଏଣୁ ହରଭୀରୁ**
**ପରହୁଏ ଅନୁମାନ, ଯେ । ୧୭ ।**

**ଅନ୍ୱୟ**—ଏ ସରସିଜବାସିନୀ ସରସୀ ସରସିଜବାସିନୀ (କପରି) ସ-ଲୀଳ ବର୍ଗେ ସନ୍ନିପାତ ରୋଗେ, ସଲୀଳବର୍ଗେ ରୋଗ ସନ୍ନିପାତ କରିବାରେ ଅଭୟ୍ୟବରକୁ ଏବଂ ବର (ହୋଇ) ଅଭୟ (ଭାବ) ପ୍ରକାଶି ଅଛୁ । (ପୁଣି) ସାରସ ଯୁଗଳ ସରାଗ ଯୋଗ (ଘଟିଛି) । ସରସିଜ ବାସିନୀ ଚତୁର ନାଗରେ ସ୍ନାନ (କରନ୍ତି) । (ଏଥିରେ ମଧ୍ୟ) ଚତୁର-ନାଗରେ ସ୍ନାନ (କରନ୍ତି) । ଏଣୁ (ଏ ସବୁ) ବିଧାନ ବିଧିରୁ (ଉକ୍ତ ସରସୀ) ହରଭୀରୁ ପର ଅନୁମାନ ହୁଏ ।

**କଥା**—ଏଠାରେ ଯେଉଁ ଜଳାଶୟଟି ଅଛି ତାହା ଲକ୍ଷ୍ମୀଙ୍କ ପରି ଅଭୟ ଓ ବର ଉଭୟକୁ ପ୍ରକାଶିତ କରିଛି । ସେ ଅତିବଡ଼ ହେଲେହେଁ ସୋପାନ ଆଦିଦ୍ୱାରା ଅଭୟ ଦାନକରୁ ଅଛି । ପୁନଶ୍ଚ ସମ୍ୟକ୍ ଲୀଳା ସମୂହ (ବିଳାସ ସମ୍ପର୍କରେ) ଅର୍ଥାତ୍ ମହାଲକ୍ଷ୍ମୀ ବିଳାସ ଔଷଧରେ ଯେପରି ସନ୍ନିପାତ ରୋଗ ନିବାରିତ ହୁଏ, ସେପରି ଏ ଜଳାଶୟର ଜଳସମୂହର ବିଶୁଦ୍ଧତାଦ୍ୱାରା ରୋଗମାନେ ସମୂହଭାବେ ନିପାତ ବା ଦୂର ହେଉଅଛନ୍ତି । ପୁଣି ଲକ୍ଷ୍ମୀ ପଦ୍ମଯୁଗଳ ସରାଗେ ଧାରଣ କରିଛନ୍ତି, ଏ ପୁଷ୍କରିଣୀ ହଂସ ମିଥୁନ ସ୍ନେହରେ ଲଭିଛି । ଲକ୍ଷ୍ମୀ ଗୃହ ହସ୍ତୀର ଯୋଡ଼ାରେ ସ୍ନାନ କରିଥାନ୍ତି, କିନ୍ତୁ ଏଥିରେ ଚତୁର ନାଗରମାନେ ସ୍ନାନ କରନ୍ତି । ଏହିପରି ନାନା ସାଦୃଶ୍ୟ ବିଧାନ ବିଧିରୁ ଏ ପୁଷ୍କରିଣୀ ପଦ୍ମାଳୟା ଲକ୍ଷ୍ମୀ ସ୍ୱରୂପିଣୀ ବୋଲି ଅନୁମାନ କରାଯାଏ ।

**ଆଲୋଚନା**—ଏଠାରେ ଯେପରି ରମଣୀୟ ଉପବନ ମାନ ରହି ବିଶୁଦ୍ଧ ବାୟୁ ସେବନର ସୁବିଧା ନାଗରିକଙ୍କୁ ଦେଉଛି, ସେପରି ନଗରବାସିଙ୍କ ସ୍ୱାସ୍ଥ୍ୟ ସଂରକ୍ଷଣ ଲାଗି ଅତିବୃହତ୍ ପରିଚ୍ଛନ୍ନ ରମଣୀୟ ଏକାନ୍ତ ବ୍ୟବହାର୍ଯ୍ୟ ପୁଷ୍କରିଣୀ ରହିଅଛି ।

ଶବ୍ଦାର୍ଥ । ସରସିଜବାସିନୀ—ଲକ୍ଷ୍ମୀ, ପଦ୍ମପୋଖରୀ । ସରସିଜ—ପଦ୍ମ । ଅଭୟ୍ୟବର—ଭୟଶୂନ୍ୟତା ଏବଂ କରୁଣା । ବର—କରୁଣା, ଶ୍ରେଷ୍ଠ, ଅତିବଡ଼ । ଅଭୟ—ଯହିଁରେ ଭୟର କାରଣ ନାହିଁ । ସ—ସମ୍ୟକ୍, ସମୂହ । ଲୀଳବର୍ଗେ—ବିଳାସ ସମ୍ପର୍କରେ । ସନ୍ନିପାତ—ଏକ ରୋଗ, ସମୂହଭାବରେ ନିପାତ ବା ଦୂର । ସାରସଯୁଗଳ—ପଦ୍ମଯୁଗଳ, ହଂସମିଥୁନ । ଚତୁର—ଗୃହ, ଗୃହଳକ । ନାଗରେ—ହସ୍ତୀରେ, ନାଗରିକମାନଙ୍କର । ହରଭୀରୁ—ଲକ୍ଷ୍ମୀ ।

ନଗରର ସାମରିକ ବ୍ୟବସ୍ଥା—

**ସେ ମହୀ ମହୀନ୍ଦ୍ର ମନ୍ଦିର ଗୃହ**
**ପାଶରେ ଅଛନ୍ତି ଆବାସ କରି**
**ମାତଙ୍ଗ ତୁରଙ୍ଗ ଶତାଙ୍ଗ ସେନା**
**ବଜାଇ ନିଶାଣ ଉଡ଼ାଇ ବାନା, ସେ**
**ଗୁଣିଲେ ତାହାଙ୍କ କୀର୍ତ୍ତି, ଯେ**
**ଖଡ଼ଗାର ଗୁଣ୍ଡ ଭରେ କୁଣ୍ଡଲୀନ୍ଦ୍ର**
**ମୁଣ୍ଡ ବରଜିବ କ୍ଷିତ, ଯେ । ୧୮ ।**

**ଅନ୍ୱୟ**—ସେ ମହୀ ମହୀନ୍ଦ୍ର—ମନ୍ଦିର ଗୃହପାଶରେ ମାତଙ୍ଗ, ତୁରଙ୍ଗ ଶତାଙ୍ଗ (ଏବଂ) ସେନା ନିଶାଣ ବଜାଇ ବାନା ଉଡ଼ାଇ ଆବାସ କରିଅଛନ୍ତି । ତାହାଙ୍କ କୀର୍ତ୍ତି ଗୁଣିଲେ ଖଡ଼ଗାର ଗୁଣ୍ଡଭରେ କ୍ଷିତି (କୁ) କୁଣ୍ଡଲୀନ୍ଦ୍ର ମୁଣ୍ଡ ବରଜିବ ।

**କଥା**—ସେ ମହୀର ମହୀନ୍ଦ୍ରଙ୍କ ମନ୍ଦିର (ଉଆସ) ଗୃହପାଶରେ ଗଜାରୋହୀ, ଅଶ୍ୱାରୋହୀ, ରଥାରୋହୀ ଏବଂ ପଦାତିକମାନେ ନିଶାଣ ବଜାଇ ପତାକା ଉଡ଼ାଇ ଆବାସ କରି ରହିଅଛନ୍ତି । ସେମାନଙ୍କର ଗୌରବାନ୍ୱିତ ବିଶ୍ୱସ୍ତ କୀର୍ତ୍ତି ଗଣନା କଲେ ଯେଉଁତ ଖଡ଼ି ସରିବ, ସେ ଗୁଣ୍ଡ ସବୁର ଓଜନରେ ଧରଣୀକୁ ଅନନ୍ତ ନାଗ ବାସୁକୀ ଟେକିନପାରି ତ୍ୟାଗ କରିଦେବେ ।

**ଆଲୋଚନା**— ରାଷ୍ଟ୍ରସଂରକ୍ଷଣରେ ବିଭିନ୍ନ ସେନା ଯେପରି ପ୍ରସ୍ତୁତ ରହିଛନ୍ତି, ସେପରି ସେମାନଙ୍କର ବିଶ୍ୱସ୍ତତା ଅତୀବ ପ୍ରଶଂସନୀୟ ହୋଇଅଛି । ନଗରଟିଏ ସୃଷ୍ଟି କରିବା ମାନେ ସେଥିର ସଂରକ୍ଷଣ ଲାଗି ଯେ ସୈନ୍ୟବାହିନୀ ଏକାନ୍ତ ପ୍ରୟୋଜନୀୟ ତାହା କବି ଉତ୍ତମ ଭାବରେ ଅନୁଭବ କରିଥିଲେ ।

---

ଶବ୍ଦାର୍ଥ । ମହୀ—ପୃଥିବୀ, ଭୂମି । ମହୀନ୍ଦ୍ର—ରାଜା । ମହୀନ୍ଦ୍ର—ମନ୍ଦିର, ଉଆସ, ଦୁର୍ଗ । ମାତଙ୍ଗ—ଗଜ । ତୁରଙ୍ଗ—ଅଶ୍ୱ । ଶତାଙ୍ଗ—ରଥ । ସେନା—ପଦାତିକ । ନିଶାଣ—ନାଗରା । ବାନା—ପତାକା । ଗୁଣିଲେ—ଗଣନାକଲେ । କୁଣ୍ଡଲୀନ୍ଦ୍ର—ବାସୁକି, ଅନନ୍ତ । ମୁଣ୍ଡ ବରଜିବ—ମୁଣ୍ଡ ତ୍ୟାଗକରିବ ।

**ଉନ୍ନତରେ କରୀଙ୍କ ଗର୍ବ କେଡ଼େ**
**ବର୍ଣ୍ଣିବ କେ ପୂର୍ବ ପର୍ବତ ଚୂଡ଼େ**
**ନ୍ୟସ୍ତ ହେଲାକ୍ଷଣି ରାତ୍ରି ଅରାତି**
**ଅସ୍ତଗିରି ଦିଗେ ଯେତେ ଅଛନ୍ତି, ସେ**
**ଅଭିସାରି କୋକୀ କୋକ, ଯେ**
**ପାହିଗଲା ରାତି ଜାଣିନପାରନ୍ତି**
**ନବର୍ଜନ୍ତି କ୍ରୀଡ଼ା ଶୋକ, ଯେ । ୧୯ ।**

**ଅନ୍ୱୟ**– (ସେଠାରେ) କରୀଙ୍କ ଗର୍ବ ଉନ୍ନତରେ କେଡ଼େ କେ ବର୍ଣ୍ଣିବ ? ପୂର୍ବ ପର୍ବତ ଚୂଡ଼େ ରାତ୍ରି ଅରାତି ନ୍ୟସ୍ତ ହେଲାକ୍ଷଣି ଅସ୍ତଗିରି ଦିଗେ ଯେତେ ଅଭିସାରି ଏବଂ କୋକୀ କୋକ ଅଛନ୍ତି (ସେମାନେ) ରାତି ପାହିଗଲା ଜାଣି ନପାରନ୍ତି । (ତେଣୁ ଅଭିସାରିମାନେ) କ୍ରୀଡ଼ା (ଏବଂ କୋକୀ କୋକ) ଶୋକ ନ ବର୍ଜନ୍ତି ।

**କଥା**—ସେଠାରେ ଥିବା ହାତୀମାନେ ଉଚ୍ଚତାରେ ଏତେବଡ଼ ଯେ ତାହା ବର୍ଣ୍ଣନା କରିବା ଅସାଧ୍ୟ । କାରଣ ପୂର୍ବ ପର୍ବତ ଚୂଡ଼ାରେ ସୂର୍ଯ୍ୟ ଉଦୟ ହେଲେ ସୁଦ୍ଧା ଉକ୍ତ ହାତୀଙ୍କ ଉଚ୍ଚତାରେ ସେ ଘୋଡ଼ାଇ ହୋଇଯାନ୍ତି । ତେଣୁ ହାତୀଙ୍କ ଉଚ୍ଚ ପୃଷ୍ଠରେ ପଶ୍ଚିମ ଦିଗରେ ଥିବା ଅଭିସାରୀ ସ୍ତ୍ରୀ ପୁରୁଷମାନେ ରାତ୍ର ପାଇବା ଜାଣିନପାରି ତାଙ୍କର କାମକ୍ରୀଡ଼ା ତ୍ୟାଗ କରନ୍ତି ନାହିଁ ଏବଂ ଚକ୍ରବାକ ଚକ୍ରବାକୀ ମଧ୍ୟ ସକାଳ ଆଲୋକିତ ହେବା ବିଷୟ ଜାଣିନପାରି ବିରହ ଶୋକ ତ୍ୟାଗ କରିପାରନ୍ତି ନାହିଁ ।

**ଆଲୋଚନା**—ସଂସ୍କୃତ ସାହିତ୍ୟରେ ଏପରି ଅତ୍ୟଦ୍‌ଭୁତ ବର୍ଣ୍ଣନା ମଧ୍ୟ ଦେଖାଯାଏ । ମାଘ ରୈବତକ ପର୍ବତକୁ ଏକହସ୍ତୀ ସ୍ୱରୂପ ବର୍ଣ୍ଣନା କରି ଚନ୍ଦ୍ର ଏବଂ ସୂର୍ଯ୍ୟ ଉଭୟ ଦିଗରେ ଥିବା ଯେକ ତାହା ଉକ୍ତ ପର୍ବତ ରୂପକ ହସ୍ତୀର ଉଭୟ ପାର୍ଶ୍ୱସ୍ଥ ଘଣ୍ଟି ବୋଲିଛନ୍ତି । ମାଘ କାବ୍ୟରେ ଏ କବି ବିବିଡ଼ ପ୍ରତିଷ୍ଠା ଲାଭ କରିଥିବାର ପ୍ରମାଣ ରହିଛି । କିନ୍ତୁ ଏଠାରେ ସେ ନିଜର ସ୍ୱତନ୍ତ୍ର ପ୍ରତିଷ୍ଠା ପ୍ରକାଶିତ କରିଅଛନ୍ତି । ଏ ପଦରୁ ଜଣାଯାଏ ଯେ ଅତି ମହାନ୍ ବଡ଼ ବଡ଼ ଉଚ୍ଚକାୟ ହସ୍ତୀ ଉକ୍ତ ନଗରୀର ହସ୍ତୀ ଶାଳରେ ରହିଅଛନ୍ତି ।

---

ଶବ୍ଦାର୍ଥ । ଉନ୍ନତ—ଉଚ୍ଚତା । ପୂର୍ବ ପର୍ବତ—ପୂର୍ବ ଦିଗସ୍ଥ ପର୍ବତ । ଚୂଡ଼େ—ଶିଖରେ । ରାତି ଅରାତି—ସୂର୍ଯ୍ୟଦେବତା । ଅଭିସାରି—ସଙ୍କେତ ସ୍ଥଳରେ ରତଥିବା ପ୍ରେମିକ ଓ ପ୍ରେମିକା ଯୁଗଳ । କୋକୀ—ସ୍ତ୍ରୀ ଚକ୍ରବାକ ବା ଚକୋ । କୋକ—ଚକୁଆ । ପ୍ରବାଦ ଅଛି—କାମୋନ୍ମତ୍ତ ହୋଇ ଏ ପକ୍ଷୀ ଯୁଗଳ ଧରଣୀର ପରମ ଆଦର୍ଶ ରାମଚନ୍ଦ୍ରଙ୍କ ପ୍ରତି ଅବମାନନା କରି ଥିବାରୁ ତାଙ୍କ ଅଭିଶାପରେ ରାତ୍ର ବିଚ୍ଛେଦ ଦୁଃଖ ଭୋଗୁଛନ୍ତି ।

ନଭ ଗର୍ଭ ସ୍ଥଳେ ହିରଣ୍ୟଗର୍ଭ
ନୀଚ୍ଚୁଁ ଉଚ୍ଚତା କରିଛନ୍ତି ସନ୍ଦର୍ଭ
ପରମ ଉଚ୍ଚ ବିଧାନ କଳ୍ପନା
ବିଧାନ ଏ ବୋଲି ବାନ୍ଧିଛନ୍ତି ବାନା, ସେ
ମେରୁ କଇଳାସ ନାମ, ଯେ
ଆଦ୍ୟପ୍ରାନ୍ତ କରି ଦ୍ୱିବିଧେ ଘେନିଲେ
ବିରାଜନ୍ତି ମେଷ ସମ, ଯେ । ୨୦ ।

**ଅନ୍ୱୟ**—( ଏକଥା ସତ୍ୟ ଯେ ) ହିରଣ୍ୟ ଗର୍ଭ ନଭଗର୍ଭସ୍ଥଳେ ( ପର୍ବତ ଘେନି ) ନୀଚ୍ଚୁ ଉଚ୍ଚତା ସନ୍ଦର୍ଭ କରିଛନ୍ତି । (କିନ୍ତୁ) ମେରୁ କଇଳାସ ନାମ (ରେ) ପରମ ଉଚ୍ଚ ବିଧାନ କଳ୍ପନା ବିଧାନ ଏ (ହିଁ) ବୋଲି ବାନା ବାନ୍ଧିଛନ୍ତି । ( ଏପୁର କବିଙ୍କ ଉକ୍ତିରେ ସେ ଦୁହେଁ ମଧ୍ୟ) ଆଦ୍ୟ ପ୍ରାନ୍ତକରି ଦ୍ୱିବିଧେ ଘେନିଲେ (ମେରୁର ଆଦ୍ୟ ଅକ୍ଷର 'ମେ' ଏବଂ କୈଳାସର ଶେଷ ଅକ୍ଷର 'ସ' ସଂଯୋଗରୁ) ମେଷସମ ବିରାଜନ୍ତି ।

**କଥା**—ପୁନଶ୍ଚ ବିଧାତା ପୃଥିବୀ ମଧ୍ୟରେ ଶ୍ରେଷ୍ଠବଡ଼ ଭାବରେ ପର୍ବତ ମାନ ସୃଷ୍ଟି କରିଛନ୍ତି । କିନ୍ତୁ ମେରୁପର୍ବତ ଯହିଁରେ ଦେବତା ମାନେ ବାସ କରୁଥାନ୍ତି, ଏବଂ କୈଳାସ ପର୍ବତ ଯାହା ପରମେଶ୍ୱର ଶିବ ଗୌରୀଙ୍କର ଆସ୍ଥାନ ଏହି ପର୍ବତ ଦ୍ୱୟ ଅତି ଉଚ୍ଚ ବୋଲି ସିଦ୍ଧାନ୍ତ କରି ତହିଁରେ ପତାକା ଉଡ଼ାଇ ଅଛନ୍ତି ।

ହେଲେହେଁ ଦ୍ୱାରକା ପୁରର ହସ୍ତୀମାନଙ୍କ ଉଚ୍ଚତା ତୁଳନାରେ ସେ ଦୁଇଟି ପର୍ବତ ଅଟେମୂଳ କରି ଯୋଡ଼ି ଉପରତଳ କରି ରଖାଗଲେ ମେଣ୍ଢାପରି ଦେଖାଯିବେ । ମେରୁ ଓ କୈଳାସ ଏ ଦୁଇନାମରୁ ଆଦ୍ୟପ୍ରାନ୍ତ ଅକ୍ଷର ଘେନିଲେ ତାହା ସ୍ପଷ୍ଟ ପ୍ରମାଣିତ ହେଉଅଛି । ଅର୍ଥାତ୍ ମେରୁରୁ 'ମେ' ଏବଂ କୈଳାସରୁ 'ସ' ମିଶିଲେ ମେଷଶବ୍ଦ ଆସୁଅଛି ।

**ଆଲୋଚନା**—ମେଠାର ହସ୍ତୀମାନଙ୍କର ଅତ୍ୟଧିକ ଉଚ୍ଚତାର ଗୌରବ ପୁନଃ ପୁନଃ ପ୍ରକାଶ କରାଯାଇଛି । କାରଣ ଉଚ୍ଚହସ୍ତୀ ବୃନ୍ଦ ସାମରିକ ପ୍ରଶସ୍ତିରେ ଏକାନ୍ତ ପ୍ରୟୋଜନୀୟ ବୋଲି ଏଠାରେ ଦେଖାଇ ଦିଆଯାଇଛି । ପୁନଶ୍ଚ ଉଚ୍ଚ ପର୍ବତ ଆବିଷ୍କାରରେ ପତାକା ପୋତିବା କଥା ମଧ୍ୟ ପରଂପରା ସୂତ୍ରରୁ କବିଙ୍କୁ ଜଣାଥିବାକଥା ଏଥିରୁ ମଧ୍ୟ ଜଣାଯାଇଛି ।

---

ଶବ୍ଦାର୍ଥ । ନଭଗର୍ଭସ୍ଥଳ—ପୃଥିବୀ । ହିରଣ୍ୟ ଗର୍ଭ—ବ୍ରହ୍ମା । ସନ୍ଦର୍ଭ—ପରସ୍ପର ସମ୍ବନ୍ଧ । ବିଧାନ—ସିଦ୍ଧାନ୍ତ । ମେରୁ—ଅତି ଉଚ୍ଚ ପର୍ବତ; ପୁରାଣ ମତରେ ଏହାର ପୂର୍ବରେ ଇନ୍ଦ୍ରଙ୍କ ଅମରାବତୀ ପୁରୀ, ଅଗ୍ନିକୋଣରେ ଅଗ୍ନିଙ୍କର ତେଜସ୍ୱିନୀପୁରୀ, ଦକ୍ଷିଣରେ ଯମଙ୍କର ବୈବସ୍ୱତପୁରୀ ଇତ୍ୟାଦି ଅଛି । ଏହାର ଶୃଙ୍ଗ ସ୍ୱର୍ଣ୍ଣମୟ ।

କରିଛନ୍ତି ଶୃଙ୍ଗକୁ ଶିଖୀରେ ରୁଚିରୁ
ବସୋଇଲେ ସୃଷ୍ଟି ଚିନ୍ତା ଯୋଗରୁ
ଉତ୍ତୁଙ୍ଗ ଉତ୍ତମାଙ୍ଗେ ଟେକାରମ୍ଭ
ସର୍ଜ୍ଜିବାରେ ବର୍ଜିଅଛି ବଜ୍ରୀଭ, ସେ
ରଦ ପୀଡ଼ାବ୍ରୀଡ଼ା ଯୋଗେ, ଯେ
ପୁଣି କାଷ୍ଠାଭ୍ରେ ଉନ୍ନତ ସମ୍ଭାରେ
ଭ୍ରଷ୍ଟ ଅଷ୍ଟନାଗ ସଙ୍ଗେ, ସେ । ୨୧ ।

**ଅନ୍ୱୟ**—(ଧାତା ମେରୁ ଏବଂ କୈଳାସ) ଶୃଙ୍ଗକୁ ଶିଖୀରେ ରୁଚିରୁ କରିଛନ୍ତି । (କିନ୍ତୁ ଦ୍ୱାରକାର ହସ୍ତୀ ମାନଙ୍କୁ ସେମାନଙ୍କୁ ଶ୍ରେଷ୍ଠ କରି ଗଢ଼ିବାରେ ମନେ ହେଉଛି, ସେ) ସୃଷ୍ଟି ଚିନ୍ତା ଯୋଗରୁ ବସୋଇଲେ । ବଜ୍ରୀଭ (ଙ୍କ) ଉତ୍ତୁଙ୍ଗ (ଐରାବତ) ଉତ୍ତମାଙ୍ଗ ଟେକା ଆରମ୍ଭ (ଏଥିଯୋଗୁଁ) ସର୍ଜ୍ଜିବାରେ ବର୍ଜିଅଛି । ପୁଣି ଅଷ୍ଟନାଗ ସଙ୍ଗେ (ରହି) କାଷ୍ଠାଭ୍ରରେ ଉନ୍ନତ ସମ୍ଭାରେ ଭ୍ରଷ୍ଟ (ହୋଇ) ରଦପୀଡ଼ା ଯୋଗେ ବ୍ରୀଡ଼ା ( ବହନ କରିଛି । )

**କଥା**—ବିଧାତା ମେରୁ ପର୍ବତ ଶୃଙ୍ଗକୁ ଅଗ୍ନିରେ ସୁନ୍ଦର କରିଥିଲେ, କାରଣ ଅଗ୍ନି ସେଠାରେ ନିଜର ତେଜସ୍ୱିତା ପୁଣି ନିର୍ମାଣ କରି ରହିଛନ୍ତି । କୈଳାସ ଶୃଙ୍ଗକୁ କାର୍ତ୍ତିକେୟଙ୍କ ମୟୂର ସୁନ୍ଦର କରିଥିଲା । ମାତ୍ର ସେ ଦୁହିଁଙ୍କୁ ଶ୍ରେଷ୍ଠ ବୋଲି ବିଖ୍ୟାତ କରିସାରି ସୃଷ୍ଟି ଚିନ୍ତାରେ ସେ ସିଦ୍ଧାନ୍ତ ପାଶୋରି ଦେଇ ଦ୍ୱାରକାର ହସ୍ତି-ମାନଙ୍କୁ ପୁଣି ସେ ଦୁହିଁଙ୍କ ଠାରୁ ଶ୍ରେଷ୍ଠ କଲେ । ତେଣୁ ଇନ୍ଦ୍ରଙ୍କ ଐରାବତ ହସ୍ତୀ ତାର ଉଚ୍ଚ ମସ୍ତକ ଟେକିବା ଅଭ୍ୟାସ ତା ଫଳରେ ବର୍ଜନ କରିଦେଇଛି । କାରଣ ସହଜେ ସେ ହସ୍ତୀ ହେତୁ ଭାରତେ ନିଜର ପ୍ରଶସ୍ତିରୁ ଭ୍ରଷ୍ଟ ହୋଇ ଯାଇଛି । ପୁଣି ଅଷ୍ଟଦିଗରେ ହସ୍ତୀମାନଙ୍କର ସାଥିରେ ରହିଥିବାରୁ ତାର ସ୍ୱାତନ୍ତ୍ର୍ୟ ଆଉ ନାହିଁ । ତାଛଡ଼ା ତାର ଗୋଟିଏ ଦାନ୍ତ ମଧ୍ୟ ଭାଙ୍ଗି ଯାଇ ଥିବାରୁ ସେ ଲଜ୍ଜାରେ ମୁଣ୍ଡଟେକି ପାରୁନି ।

**ଆଲୋଚନା**—କେଉଁଯୁଗ ଯୁଗାନ୍ତରରୁ 'ସ୍ୱର୍ଗ' ଏକସ୍ଥାନ ବୋଲି ବର୍ଣ୍ଣନା ଚାଲିଛି—ଏ ଦେଶରେ । ଏମନ୍ତକି ତାହା ପ୍ରତ୍ୟକ୍ଷ ଭାବରେ କେହି କେହି ଦେଖିଛନ୍ତି ବୋଲି ମଧ୍ୟ କୁହାଯାଇଛି । ଆଜି କେତେକଣ ଆବିଷ୍କାର ହେଲାଣି । ସେ ସ୍ୱର୍ଗର ସନ୍ଧାନ ମିଳିନାହିଁ । ଯେଉଁଠି ସ୍ୱର୍ଗ ଅଛି, ସେଠାରେ ନରକର ସ୍ଥିତିର ମଧ୍ୟ ସ୍ୱତନ୍ତ୍ର ଅବସ୍ଥିତ ଅଛି । ମେରୁପର୍ବତ ଶୃଙ୍ଗରେ ସେସବୁ ଥିବାର କୁହାଯାଇଛି । ଏମେରୁ କେଉଁଠି ? ଏହି ଧରଣୀରେ ବା ଅନ୍ୟଏକ ଗ୍ରହରେ ତାହା ହେଲେ ସ୍ଥିର ହେବାର ଆଶା କରାଯାଏ—ଯେବେ ଏ ସ୍ୱର୍ଗ କାହାଣୀ ମିଛହୁଏ । ଏ ଦେବୋକ୍ତ ମେରୁ ପର୍ବତର ପ୍ରାଧାନ୍ୟ ସୂଚିତ ହୁଏ ।

---

ଶବ୍ଦାର୍ଥ । ଶିଖୀ—ଅଗ୍ନି, ମୟୂର । ଉତ୍ତମାଙ୍ଗ—ମସ୍ତକ । ବଜ୍ରୀଭ—ଐରାବତ ହସ୍ତୀ ରଦ—ଦନ୍ତ । ବ୍ରୀଡ଼ା—ଲଜ୍ଜା । କାଷ୍ଠା—ଦିଗ । ଅଷ୍ଟନାଗ—ଅଷ୍ଟଦିଗରେ ଥିବା ହସ୍ତୀମାନେ, ଅଷ୍ଟ ଦିଗ୍‌ଗଜ । ସମ୍ଭାର—ପରିପୂର୍ଣ୍ଣତା ।

**ବ୍ୟଗ୍ରଭାବେ ଉଗ୍ରତର ତୁରଙ୍ଗେ**
**କାହାଶକ୍ତ ଲକ୍ଷ ଦେବ ତରଙ୍ଗେ**
**ସଗର ସାଗର, ବାଜୀକ ଛାର**
**ଶଶା ଆଗେ ହୋଇଅଛି ବାହାର, ସେ**
**ଉଚ୍ଚ ହେବ ଗରୁଡ଼ର, ଯେ**
**ବାମନ କଣା କଙ୍କର ଏହାଙ୍କର**
**ମୁଁ ବା ମନ ପଣକର, ଯେ । ୨୨ ।**

**ଅନ୍ୱୟ**—(ଏଠାରେ) ତୁରଙ୍ଗେ ବ୍ୟଗ୍ରଭାବରେ ଉଗ୍ରତର ଅଟନ୍ତି । କାହାଶକ୍ତ (ଯେ,ସେ) ତରଙ୍ଗେ ଲକ୍ଷ ଦେବ ? ସଗର (ଏବଂ) ସାଗର (ର) ବାଜୀ (ଏହାଙ୍କ ତୁଳନାରେ ବାଜୀ କ ଛାର (ନୁହନ୍ତି) । (ସେମାନଙ୍କ) ଆଗେ ଶଶା ବାହାର ହୋଇଅଛି (ଅବା ?) (ଏମାନଙ୍କୁ ଦେଖି) ଗରୁଡର (ର) ଉଚ୍ଚହେବ (ଏହି କାରଣରୁ ଯେ) ମୁଁ ବାମନ କଣା କଙ୍କର (ହେତୁ) ଏହାଙ୍କର (ପଣ କାହୁଁ ହେବ ?) (ବିଶେଷରେ ଏମାନେ ଯେଣୁ) ବା ମନ (ମନପବନ) ପଣକର (ଅଟନ୍ତି ।)

**କଥା**—ଏଠାରେ ଯେଉଁ ଘୋଡାମାନେ ଅଛନ୍ତି, ସେମାନେ ଚଞ୍ଚଳ ଗତିରେ ଏକାନ୍ତ ଉଗ୍ରତର ଅଟନ୍ତି । ଏମାନଙ୍କର ବ୍ୟଗ୍ର ଗମନକୁ କାହାର ସାଧ ଅଛି, ତରଙ୍ଗ ସହିତ ତୁଳନା କରିପାରିବ ? ଅତି ପୁରାତନ ସଗର ରାଜାଙ୍କ ଅତି ବିଖ୍ୟାତ ଯଜ୍ଞ ଅଶ୍ୱ ଓ ସାଗର ମନ୍ଥନରୁ ସମ୍ଭୂତ ସୁନାମଧନ୍ୟ ଉଚ୍ଚୈଃଶ୍ରବା ଅଶ୍ୱ, ଏମାନଙ୍କ ତୁଳନାରେ କି ଛାର ନୁହନ୍ତି ? ତାଙ୍କ ସମ୍ମୁଖରେ ସେ ସବୁ ଶଶା ବା ଠେକୁଆ ପରି ଦେଖାଯାନ୍ତି । ଗତିବାନ୍ ଗରୁଡ଼ ଏମାନଙ୍କ ତୁଳନାରେ ଆସିବାକୁ ଭୟ କରେ—ଏହି କାରଣରୁ ଯେ, ସେ କହେ "ଏମାନଙ୍କର ଯେତେବେଳେ ବାୟୁ ଏବଂ ମନ ସହଚର ପରି ଅଟନ୍ତି ଅର୍ଥାତ୍ ଏମାନେ ମନପବନ-ଗତି କରନ୍ତି, ସେତେବେଳେ ଅତିକ୍ଷୁଦ୍ର ଅବୟବ ବାମନଙ୍କର କଣାକ୍ରୀତଦାସ ହୋଇ ମୁଁ ଯେତେ ବଡ ଆଶା କାହିଁକି କରିବି ?"

**ଆଲୋଚନା**—ଏହି ନଗରରେ ଶିକ୍ଷିତ, ଉଗ୍ର, ବ୍ୟଗ୍ରତମ, ସବଳ ଅଶ୍ୱମାନେ ରହିଅଛନ୍ତି । ଗୋଟିଏ ସମୃଦ୍ଧିବନ୍ତ ନଗର ଲାଗି ହସ୍ତୀ ଯେପରି ପ୍ରୟୋଜନୀୟ, ଅଶ୍ୱ ମଧ୍ୟ ତଦ୍ରୂପ ପ୍ରୟୋଜନୀୟ ।

---

ଶବ୍ଦାର୍ଥ—ଶକ୍ତ—ସାଧ୍ୟ ଲକ୍ଷ—ତୁଳନା, ଦୃଷ୍ଟି । ସଗର—ଇକ୍ଷ୍ୱାକୁ ବଂଶର ପ୍ରଥମ ରାଜାଙ୍କ ପୂରୁଷ, ପୁତ୍ରମାନେ (ଷାଠିଏ ସହସ୍ର) ଯଜ୍ଞ ଅଶ୍ୱ ଯୋଗୁଁ କପିଳଙ୍କ କୋପରେ ଜୀବନ୍ତ ଦଗ୍ଧ ହେବା ପୁରାଣ ପ୍ରସିଦ୍ଧ । ସାଗର ବାଜୀ—ଉଚ୍ଚୈଃଶ୍ରବା ଅଶ୍ୱ । ଶଶା—ଠେକୁଆ । ଗରୁଡର—ଗରୁତ୍ମାନ୍, ଗରୁଡ଼ । ବାମନ—ବାମନ ଅବତାର,ବିଷ୍ଣୁ । କଣା କଙ୍କର—କ୍ରୀତଦାସ । ବା—ବାୟୁ । ପଣକର—ସହଚର, ସଦୃଶ ।

**କୈରବ ବନର ଭୈରବ କର**
**ବାହାର ବମାନ ଭୈରବଙ୍କର**
**ଅଖପର ଯଷ୍ଟି ଅବଲମ୍ବନେ**
**ପାଦକେ ଚଳନ୍ତି ପଙ୍ଗୁ ସମାନେ, ସେ**
**କାହିଁ ପ୍ରକାଶିବେ ଗର୍ବ, ଯେ**
**ରଥପତି ଯୂଥ ଏହି ମନୋରଥ**
**ବିରଚନ୍ତି ଖର୍ବ ଖର୍ବ, ଯେ । ୨୩ ।**

**ଅନ୍ୱୟ**—(ସେଠାରେ) ରଥପତି ଯୂଥ ଏହି ମନୋରଥ ଖର୍ବ ଖର୍ବ (କରି) ବିରଚନ୍ତି (ଯେ) କୈରବ ବନର—ଭୈରବକର (ଙ୍କ) ବାହାର ବମାନ (ଆମ ବମାନଠୁଁ ଊଣା) । (କାରଣ, ତାହା) ଭୈରବଙ୍କର (ସଦୃଶ ଅଟେ) । (ତେଣୁ ଏକପଦପରି ଏକ ଚକ୍ରର) ଅଖପରି ଯଷ୍ଟି ଅବଲମ୍ବନେ ପଙ୍ଗୁ ସମାନେ ପାଦକେ ଚଳନ୍ତି । (ସେ ଆମ୍ଭ ନିକଟରେ) କାହିଁ ଗର୍ବ ପ୍ରକାଶିବେ ?

**କଥା**—ସେଠାରେ ମହାରଥୀମାନେ ଏହି ଇଚ୍ଛା ବହୁବାର ପ୍ରକାଶ କରି କହୁଥାନ୍ତି ଯେ—ଇନ୍ଦୀବର ପୁଷ୍ପକୁଳ ପ୍ରତି ଯାହାଙ୍କ କିରଣ ଏକାନ୍ତ ଭୟଙ୍କର ଏପରି ଯେଉଁ ଅତି ତେଜସ୍ୱୀ ସୂର୍ଯ୍ୟ ଦେବତା, ତାଙ୍କର ନିତ୍ୟପ୍ରତି ବାହାରୁଥିବା ରଥ, ଆମ ରଥମାନଙ୍କ ତୁଳନାରେ କିଛି ନୁହେଁ । କାରଣ ଉକ୍ତ ରଥ ଭୈରବଙ୍କ ପରି ଏକପଦ ବିଶିଷ୍ଟ । ଗୋଟିଏ ଚକରେ ଅଖ ପ୍ରାପ୍ତ ଦଣ୍ଡଟିଏ ଲଗାଇ ଥିବାରୁ ସେ ସୂର୍ଯ୍ୟ ପଙ୍ଗୁପରି ଚାଲନ୍ତି । ତେଣୁ ଆମ ପାଖରେ ସେ କାହିଁ ଗର୍ବ ପ୍ରକାଶ କରିବେ ?

**ଆଲୋଚନା**—ଏଠାରେ ସୈନ୍ୟାଧ୍ୟକ୍ଷମାନେ ନିରନ୍ତର ଯୁଦ୍ଧ ଆହ୍ୱାନର ସମ୍ମୁଖୀନ ହୋଇ ଏପରି ଭାବରେ ଭାବୁଥାନ୍ତି ଯେ ସୂର୍ଯ୍ୟ ଦେବତା ଯେପରି ନିରନ୍ତର ପୃଥିବୀର ପୂର୍ବ ଏବଂ ପଶ୍ଚିମ ଗୋଲାର୍ଦ୍ଧରେ ରଥ ଚାଳନା କରି ଚାଲିଛନ୍ତି । ଏମାନେ ତଦ୍ରୂପ ଏମାନଙ୍କର ଦ୍ରୁତଗାମୀ ରଥମାନ ଧରଣୀର ସବୁ ଅଞ୍ଚଳକୁ କ୍ଷିପ୍ରବେଗରେ ନେଇପାରନ୍ତି । କବି ସୂର୍ଯ୍ୟଙ୍କୁ ପଙ୍ଗୁ ପରି ଗତିକରୁଥିବା ଯେ ବର୍ଣ୍ଣନା କରିଅଛନ୍ତି, ସାଧାରଣ ଦୃଷ୍ଟିରେ ତାଙ୍କର ଗତି ଅତ୍ୟନ୍ତ ଅନୁଦ୍‌ବେଗ ଦେଖାଯାଉଥିବାରୁ ।

---

ଶବ୍ଦାର୍ଥ—କୈରବ—କଇଁଫୁଲ । ଭୈରବ—ଭୟଙ୍କର । କର—କିରଣ । କୈରବ ବନର ଭୈରବ କର—ସୂର୍ଯ୍ୟ । ଭୈରବ—ଏକପଦ ବିଶିଷ୍ଟ ଶିବାନୁଚର । ଅଖ—ଚକମାନଙ୍କୁ ସଂଯୋଗ କରୁଥିବା ଦଣ୍ଡ । ଯଷ୍ଟି—ଦଣ୍ଡ । ପାଦ—ଚକ୍ର । ରଥପତି—ମହାରଥୀ, ରଥସ୍ୱାମୀ । ଯୂଥ—ସମୂହ । ସୂର୍ଯ୍ୟଙ୍କରଥ ଏକ ଚକ୍ର ବିଶିଷ୍ଟ ବୋଲି ବର୍ଣ୍ଣନା ରହିଛି । "ଏକଚକ୍ରରଥୋ ଯସ୍ୟ" ଇତ୍ୟାଦି ।

**ଚମୂଙ୍କ ନିଶାଣ ଚମକ ଭୀତ**
**ଧାଇଁ ଝାଇଁ ଝାଲ ଯମୁଁ ଜନ୍ମାନ୍ତ**
**ନାସୀର ବହାର ବଇଜୟନ୍ତୀ**
**ଜାତ କର ବାତ ଶ୍ରାନ୍ତି ହରନ୍ତ**
**ତପନ ତୃପତ ବହୁ, ଯେ**
**ଜ୍ୟେଷ୍ଠରେ ପ୍ରକୃଷ୍ଟ ତପ୍ତାକାର କୁଷ୍ଠ**
**ସେ ସ୍ଥଳେ ପକାନ୍ତ ନାହିଁ, ଯେ । ୨୪ ।**

**ଅନ୍ୱୟ**—(ସେଠାର) ଚମୂଙ୍କ ନିଶାଣ ଭୀତ (ପୂର୍ଣ୍ଣ) ଚମକ, ଧାଇଁ ଯମୁଁ ଝାଇଁ ଝାଲ ଜନ୍ମାନ୍ତ । କିନ୍ତୁ) ନାସୀର ବହାର ବୈଜୟନ୍ତୀ ବାତ ଜାତ କରି (ଯମର) ଶ୍ରାନ୍ତି ହରନ୍ତି । (ତେଣୁ ଯମପିତା) ତପନ ତୃପ୍ତି ବହି ଜ୍ୟେଷ୍ଠ (ମାସ)ରେ ତାଙ୍କର (ଯମଙ୍କ) ପ୍ରକୃଷ୍ଟ କୁଷ୍ଠ (ସଦୃଶ ଯାତନା ପ୍ରଦ) ତପ୍ତାକାର (କିରଣ) କୁ ସେ ସ୍ଥଳେ ପକାନ୍ତି ନାହିଁ ।

**କଥା**—ସେଠାର ସେନାମାନଙ୍କର ଯୁଦ୍ଧବାଦ୍ୟର ଯେଉଁ ଭୀତିପ୍ରଦ ଚମକ, ତା ଧାଇଁ ଯାଇ ଯମଠାରୁ ଝାଇଁଝାଲ (ଯମଝାଳ) ଜାତ କରାନ୍ତି । କିନ୍ତୁ ଅଗ୍ରବର୍ତ୍ତୀ ସେନା ମାନଙ୍କ ହସ୍ତରେ ଥିବା ବିଜୟ ଧ୍ୱଜାର ପବନ ଦ୍ୱାରା ଯମର ଶ୍ରାନ୍ତି ଦୂର ହୋଇଥାଏ । ତେଣୁ ଯମର ପିତା ଯେ ସୂର୍ଯ୍ୟ ଦେବତା ସନ୍ତୋଷ ଲାଭକରି ଜ୍ୟେଷ୍ଠ ମାସରେ ଯମଙ୍କ କୁଷ୍ଠ ଯନ୍ତ୍ରଣା ଠାରୁ ବିଷତୁଲ୍ୟ ତପ୍ତ କିରଣକୁ ସେ ନଗରୀରେ ପକାନ୍ତି ନାହିଁ ।

**ଆଲୋଚନା** ସେ ନଗରୀ ସମୁଦ୍ର କୂଳରେ ଥିବାରୁ ଗ୍ରୀଷ୍ମତାପ ଅଳ୍ପ ହୋଇଥାଏ । ବିଶେଷରେ ଯେଉଁ ହସ୍ତୀ, ଅଶ୍ୱ, ସୈନ୍ୟଦଳ, ରଥ, ରଥୀମାନଙ୍କର ବର୍ଣ୍ଣନାକୁ କବି ପୂର୍ବରୁ ଦେଇ, ଏକ ନଗରୀର ସୁରକ୍ଷାର ଅବଶ୍ୟ ପ୍ରୟୋଜନୀୟ ସାମରିକ ପଦ୍ଧତି ରଚି କରିଛନ୍ତି, ଏହି ପଦ ଦ୍ୱାରା ତାହାର ଚମତ୍କାରିତା ଅତି ନିପୁଣ ଭାବରେ ରଖାଯାଇ ପାରିଛି । ସେନାଙ୍କ ଯୁଦ୍ଧବାଦ୍ୟ ଚମକରେ ଯମପରି ଭୀଷଣ ବ୍ୟକ୍ତି ଝାଳନାଳ ଯେପରି ହୁଅନ୍ତି, ଏଣେ ପତାକା ମାଳର ଗତିଦ୍ୱାରା ପବନ ସେପରି ସଞ୍ଚାରିତ ହେବାରୁ ସେ ମଧ୍ୟ ଶ୍ରାନ୍ତି ଦୂର କରିଥାନ୍ତି । ଅର୍ଥାତ୍ ଦୁର୍ଦ୍ଧର୍ଷ ଅସୁମାରି ସୈନ୍ୟ ଏଠାରେଥାନ୍ତି ।

ଶବ୍ଦାର୍ଥ । ଚମୂ—ସୈନ୍ୟ । ନିଶାଣ—ନାଗରା । ଯମୁଁ—ଯମଠାରୁ । ଝାଇଁଝାଲ—ଅତ୍ୟଧିକ ପରିଶ୍ରମରୁ ନିର୍ଗତ ଝାଳ । ନାସୀର—ଅଗ୍ରବର୍ତ୍ତୀ ସେନା । ବୈଜୟନ୍ତୀ—ଜୟପତାକା । ତପ୍ତାକାର କୁଷ୍ଠ—କୁଷ୍ଠ ଯନ୍ତ୍ରଣା ସଦୃଶ । ତୃପ୍ତ—ବିଷତୁଲ୍ୟ ।

ନାଗରୀକ ଜୀବନ—

ଜଗତ୍‌-ତତ୍ତଙ୍କ ଘଟଞ୍ଚ ସଞ୍ଚାର
କରନ୍ତେ କି ବାତ ଅରୁଣ କର
ବଜ୍ରପାତ-ଘାତ ଛେଦନ ବାଧି
ପୂର୍ବରୁ ଯେବେ ନଥାନ୍ତେ ଆରାଧି, ଯେ
ତାଙ୍କ ଧ୍ୱଜ ବାତୋଦୟେ, ଯେ
ମେରୁ ମନ୍ଦିର କରି ପଡ଼ ନଥିଲେ
ଉଡ଼ିଥାନ୍ତେ ଦେବତାଏ, ଯେ । ୨୫ ।

**ଅନ୍ୱୟ**—ଜଗତ୍ ତତ୍ତଙ୍କ ଘଟଞ୍ଚ କରନ୍ତେ କି ବାତ (ଏବଂ) ଅରୁଣକର(ର) ସଞ୍ଚାର (ମୃଦୁହୁଏ) । ଦେବତାଏ ଯେବେ ପୂର୍ବରୁ (ବାତଙ୍କୁ) ବଜ୍ରପାତ ଘାତ ଛେଦନ ବାଧି(ରେ) ଆରାଧି ନଥାନ୍ତେ (ତେବେ ଅଣଗୁଣ ଖଣ୍ଡରେ ବିଭକ୍ତ ନହୋଇ ଥିଲେତ କଣ ହୋଇଥାନ୍ତା, ଏବେ ଅଣଗୁଣରେ ବିଭକ୍ତ ହୋଇ ମଧ୍ୟ) ତାଙ୍କ (ଉକ୍ତ ଜଗତ) ଧ୍ୱଜ ବାତୋଦୟେ ମେରୁରେ ମନ୍ଦିର କରି ପଡ଼ନଥିଲେ ଦେବତାଏ ଉଡ଼ିଥାନ୍ତେ ।

**କଥା**—ସେଠାର ଅଟ୍ଟାଳିକାମାନ ଲଗି ଲଗି ରହିଥିବାରୁ କି ପବନ ଅଥବା ସୂର୍ଯ୍ୟ କିରଣ ସଞ୍ଚାର ମୃଦୁ ହୁଏ । ଦେବତାମାନେ ଯେବେ ପୂର୍ବରୁ ଗର୍ଭ ମଧ୍ୟରେ ବଜ୍ର ଦ୍ୱାରା ଛେଦନ ବାଧି ଆଚରଣ କରି ନଥାନ୍ତେ ଅର୍ଥାତ୍ ପବନଙ୍କୁ ଅଣଗୁଣ ଖଣ୍ଡରେ ବିଭକ୍ତ କରି ନଥାନ୍ତେ, ପୁନଶ୍ଚ ମେରୁ ପର୍ବତରେ ଘରକରି ପଡ଼ନଥାନ୍ତେ ତେବେ ଏ ନଗରୀର ଜଗତମାନଙ୍କରେ ଯେଉଁ ସବୁ ପତାକା ଉଡ଼ୁଛି, ସେ ପବନର ବଳ ଏତେ ଯେ ସେଥିରେ ସେମାନେ କୁଆଡ଼େ ଉଡ଼ି ଯାଇଥାନ୍ତେ ।

**ଆଲୋଚନା**—'ଥର୍' ମରୁଭୂମି ରାଜସ୍ଥାନରେ ଅବସ୍ଥିତ । ଅଦୂରରେ ଦ୍ୱାରକା ନଗରୀ ରହିଥିଲା । ଗ୍ରୀଷ୍ମ ଦିନରେ 'ଲୁ'ପବନ ବା ମାରାତ୍ମକ ଉଗ୍ର ପବନ ବହିବା ଯୋଗ ସେଥିରୁ ରକ୍ଷା ପାଇବାକୁ ସେ ଅଞ୍ଚଳରୁ ଉତ୍ତର ପଶ୍ଚିମ କୋଣ ରେଖାରେ ବାନ୍ଧିଯାଏ ପୁରାତନ ନଗର ଗଠନ ପ୍ରଣାଳୀରେ ଗୃହମାନ ଘଞ୍ଚ ରହିଥାଏ । କବି ସେଥିପାଇଁ ଏ ନଗରୀର ଘଞ୍ଚ ଅଟ୍ଟାଳିକା ନିର୍ମାଣ ବର୍ଣ୍ଣନା କରି ଉକ୍ତ ଉଗ୍ର ପବନ ଏବଂ ଗ୍ରୀଷ୍ମକାଳରେ ରବିର କିରଣ ଜାଲ ଫଳରେ ଭେଦପାରେ ନାହିଁ ବୋଲି କହି-ଅଛନ୍ତି । ଏ ଭୌଗୋଳିକ ଦୃଷ୍ଟିକୋଣ ସ୍ୱଳ୍ପ କବିଙ୍କ କାବ୍ୟରେ ଦେଖାଯାଇଥାଏ ।

ସାମୁଦ୍ରିକ ପବନର ଶୃଙ୍ଖଳା ବର୍ଣ୍ଣନା ପ୍ରସଙ୍ଗରେ ଅତି ଅଦ୍ଭୁତ ରସ ସମାବେଶ କରାଯାଇଛି । ମୁଖ୍ୟତଃ ଗୃହସବୁ ଲଗାଲଗି ହେତୁ ତଳେ ବାୟୁ ଏବଂ କରଣରଗତ ମୃଦୁ; କିନ୍ତୁ ଉପରେ ଅତି ପ୍ରଖର ଦେଖାଯାଏ । ଏହା ସାମୁଦ୍ରିକ ପଶ୍ଚିମ ଉପକୂଳର ସ୍ୱାଭାବିକ ଅବସ୍ଥା ।

ଶବ୍ଦାର୍ଥ । କଗନ୍ତ—ଅଟ୍ଟାଳିକା । ତତି—ସମୂହ । ଘଞ୍ଚେ—ଲଗାଲଗି । ସଞ୍ଚାର—ବିଚରଣ । ବଜ୍ରପାତ—ପାତ-ଚ୍ଛେଦନବଧ—ବଜ୍ର ପକାଇ ତାହାର ଆଘାତ ଦ୍ୱାରା ଛିନ୍ନ କରିବା ବିଧାନ, ଇନ୍ଦ୍ର ପୁରାଣ ଅନୁସାରେ ବଜ୍ର ଦ୍ୱାରା ତାଙ୍କ ଜନନୀ ଦିତିଙ୍କ ପ୍ରରୋଚନାରେ ସଉତୁଣୀ ମାଆ ଅଦିତିଙ୍କ ଗର୍ଭରେ ଥିବା ଗର୍ଭସ୍ଥ ବଳାସ୍ ଭ୍ରୂଣ, ଯାହା ପରବର୍ତ୍ତୀ 'ପବନ' ତାକୁ ପ୍ରଥମେ ସାତ ଖଣ୍ଡରେ ତାପରେ ପ୍ରତ୍ୟେକ ପୁଣି ସାତ ସାତ ଖଣ୍ଡରେ ଏପରି ଅଣଚାଶ ଖଣ୍ଡରେ କାଟିଦେଇଥିଲେ । ତଥାପି ସେ ଭ୍ରୂଣ ଅତିବଳୀଷ୍ଠ ଅଣଚାଶ ମୂର୍ତ୍ତି ଧରି ଜନ୍ମିଥିଲେ ।

**ଦ୍ୱିଜ ବୃନ୍ଦାନନ୍ଦ ଦାନେ ଉଗତା**
**ବନ୍ଧବାରେ ତହିଁ ବାର ବନିତା**
**ଅବଳାଙ୍କୁ ବଳ ନୁହନ୍ତି ପୁଂସେ**
**ବନ୍ଧୁଛନ୍ତି ସିନା କର ଶୀରଷେ, ସେ**
**ଚତୁରେ ବର୍ଣ୍ଣର କର, ହେ**
**କେଶ, ଦୃଶ, ନାସା, ଭାଷା, କଣ୍ଠ, ସ୍ତନ,**
**ଗମନେ ବୃହା ତାଙ୍କର, ଯେ । ୨୭ ।**

**ଅନ୍ୱୟ**—(ସେଠାର) ପୁଂସେ (ଅତି ବଳବାନ ହେଲେହେଁ ନିଜର ନମ୍ରତା ଦେଖାଇବାକୁ) ଦ୍ୱିଜ ବୃନ୍ଦ ଆନନ୍ଦ ଦାନେ କର (କୁ) ଶୀର୍ଷେ ବନ୍ଧୁଛନ୍ତି ସିନା ? (କିନ୍ତୁ ସେମାନେ ସେଠାର) ଅବଳାଙ୍କୁ ବଳ ନୁହନ୍ତି । (କାରଣ ସେଠାର) ବନିତା ବାର ଦ୍ୱିଜବୃନ୍ଦ ଆନନ୍ଦଦାନେ ତହିଁ ଉଗତା ବନ୍ଧବାରେ (ଏକାନ୍ତ ପ୍ରବୀଣା) । ଚତୁରେ (ଏକଥା) ବର୍ଣ୍ଣର କର । (ଯେହେତୁ ସେମାନଙ୍କ) କେଶ, ଦୃଶ, ନାସା, ଭାଷା, କଣ୍ଠ, ସ୍ତନ (ଏବଂ ଗମନେ (ଦ୍ୱିଜବୃନ୍ଦ) ତାଙ୍କର ବୃହା (ଅଟନ୍ତି) ।

**କଥା**—ସେଠାର ପୁରୁଷମାନେ ଅତିବଳବାନ ହେଲେହେଁ ନିଜର ନମ୍ରତା ଦେଖାଇବାକୁ ପୂଜ୍ୟ ଦ୍ୱିଜମାନଙ୍କୁ ଆନନ୍ଦ ଦେବାଲଗି ନିଜ ନିଜ ହସ୍ତକୁ ମୁଣ୍ଡ ଉପରକୁ ଟେକଥାନ୍ତି । କିନ୍ତୁ ଅବଳାମାନେ ସେଠାର ପୁରୁଷଙ୍କଠାରୁ ଅଧିକ ବଳବନ୍ତୀ ଥିବାରୁ ଦ୍ୱିଜବୃନ୍ଦ ରୂପୀ ପକ୍ଷୀ ସମୂହର ଆନନ୍ଦ ଛେଦନ ଲାଗି ଉଗ୍ରତା ଧାରଣରେ ପ୍ରବୀଣା ଅଟନ୍ତି । ଏଥିରୁ ଜଣାଯାଏ ଯେ ସେଠାର ପୁରୁଷମାନେ ଦ୍ୱିଜ (ବ୍ରାହ୍ମଣ) ମାନଙ୍କୁ ହସ୍ତ-ଟେକ ସମ୍ମାନ କରୁଛନ୍ତି,ଅଥଚ ନାରୀମାନେ ଦ୍ୱିଜ(ପକ୍ଷୀ ମାନଙ୍କୁଅସମ୍ମାନ କରୁ ଅଛନ୍ତି । ଏଣୁ ସେଠାର ନାରୀ ଯେ ପୁରୁଷଠାରୁ ବଳବତୀ ଅଟନ୍ତି, ଏହା ବୁଝିବାକୁ ହେବ । ଚତୁର ପାଠକମାନେ ଏକଥା ବର୍ଣ୍ଣରେ ବୁଝିପାରିବେ । ଯେହେତୁ ସେଠା ନାରୀମାନଙ୍କର କେଶ, ଚକ୍ଷୁ, ନାସା, ଭାଷା, କଣ୍ଠ, ସ୍ତନ ଏବଂ ଗମନ ସହିତ ଦ୍ୱିଜ ବା ପକ୍ଷୀମାନେ ତାଙ୍କ ବୋଝିଆଗୃକର ପରି ଅଟନ୍ତି । ଯେପରି କେଶ ଭ୍ରମରପରି,ଚକ୍ଷୁ ଖଞ୍ଜନ ପରି,ନାସା ଶୁକ ପରି, ଭାଷା କୋକିଳ ପରି, କଣ୍ଠ ପାରା ପରି, ସ୍ତନ ଚକ୍ରବାକ ପରି ଏବଂ ଗମନ ହଂସ ପରି । ତେଣୁ ଏ ପକ୍ଷୀମାନେ ସେଠା ନାରୀମାନଙ୍କର ଦାସ ସ୍ୱରୂପ ହେଲେ ।

**ଆଲୋଚନା**- 'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ' 'ଇତିଂପ୍ରୀତିଂଚ ଧର୍ମଂଚ ତାସ୍ୱାୟତ୍ତ ମବେକ୍ଷ୍ୟନ୍ତି' ଯେତେ ଉନ୍ନତ ନଗର ସେତି ନାରୀର ପୂଜା, ଶ୍ରେଷ୍ଠତା, ସମ୍ମାନ ଦେଖାଯାଇଥାଏ । ନାରୀର କର୍ତ୍ତିତ୍ୱ ଯେଉଁ ପରିବାରରେ ପୁରୁଷ ଉପରେ ନାହିଁ ସେ ପରିବାର ଅନୁନ୍ନତ, ଅଶୋଭନୀୟ, ଦୁଃଖାର୍ତ୍ତି ହୋଇଥାଏ ।

ଏ ପଦଟିରୁ ଜଣାଗଲା ଯେ ସେହି ନଗରୀର ନାରୀମାନଙ୍କର ପୁରୁଷମାନଙ୍କ ଉପରେ ଏକାନ୍ତ କର୍ତ୍ତୃତ୍ୱ ଥାଏ ।

ଶବ୍ଦାର୍ଥ । ଦ୍ୱିଜ—ବ୍ରାହ୍ମଣ, ପକ୍ଷୀ । ବନ୍ଦିବାରେ—ବନ୍ଦନ କରିବାରେ । ବନିତାବାର—ସ୍ତ୍ରୀ ସମୂହ । ଶିରପେ—ଶୀର୍ଷେ । ଦୃଶ—ଚକ୍ଷୁ । ଦାନ—ଛେଦନ । ଘ୍ରାଣତା—ହୃଗ୍ରତା, କୋଧ । ବୃନ୍ଦା—ବୋହିଆ ।

ପତ୍ତନରେ ବଜ୍ର ବଡ଼ଭୀ ଶୋହେ
ପତ୍ତନରେ ବଜ୍ର ବଡ଼ଭୀ ନୁହେ
ଧନୀ ମଲ୍ଲମାନେ ଏମନ୍ତ ଭଲ
ଦାନୀ ପଳଙ୍କର ଚରଣ ଧୂଳି, ଯେ
ଦେବ ଦେବଦ୍ରୁମ ମୂର୍ଦ୍ଧ୍ନେ, ଯେ
କିଛି କେ ନମାଗୁଁ ଇଚ୍ଛିତ ପଦାର୍ଥ
ବାଣ୍ଟି ଦେବା ଦେନ ଦାର୍ଣ୍ଣେ ଯେ । ୨୭ ।

**ଅନ୍ୱୟ—** (ସେଠାର) ଧନୀ ମଲ୍ଲମାନେ ଏମନ୍ତ ଭଲ **ଅଟନ୍ତି** (ଯେ ତାଙ୍କର) ପତ୍ତନରେ (ଥିବା) ବଡ଼ଭୀ(ରେ) ବଜ୍ର ଶୋହେ । (ତେଣୁ) ବଜ୍ର ପତ୍ତନରେ ବଡ଼ଭୀ ନୁହେ । (ପୁନଶ୍ଚ ସେଠାର) ଦାନୀ ପଳଙ୍କର ଚରଣ ଧୂଳି ଦେବଦ୍ରୁମ ମୂର୍ଦ୍ଧ୍ନେ (ଏଥିପାଇଁ) ଦେବ । (ଯେ ସେମାନେ) କିଛି କେ ନମାଗୁଁ ଇଚ୍ଛିତ ପଦାର୍ଥ ଦାର୍ଣ୍ଣେ ବାଣ୍ଟି ଦେବା (ଇଚ୍ଛା କରନ୍ତି, ତେଣୁ ଏହା) ଦେନ ।

**କଥା—** ସେ ନଗରର ଧନବନ୍ତ ବ୍ୟକ୍ତି ଏପରି ବିଭବଶାଳୀ ଯେ ସେମାନଙ୍କର ପାଟଣାରେ ଥିବା ଅଭ୍ରଂଲିହ କୋଠାଘରମାନଙ୍କ ଉପରମହଲରେ ବା ଚନ୍ଦ୍ରଶାଳା ଉପରେ ହୀରାଖଣ୍ଡ ଶୋଭାପାଏ ।

ପୁନଶ୍ଚ ସେଠାର ଦାନୀମାନଙ୍କର ଚରଣ ଧୂଳି କଳ୍ପ ଦ୍ରୁମ ମୁଣ୍ଡରେ ଏଥିପାଇଁ ଦେବା ସମୀଚୀନ ଯେ କଳ୍ପଦ୍ରୁମକୁ ଯେ ଯାହା ମାଗେ ସେ ତାହାସିନା ଦିଏ କିନ୍ତୁ ଏହାର ଦାତାମାନେ କେହି ନମାଗୁଣୁ ଯାଚକ ବ୍ୟକ୍ତିର ଇଚ୍ଛିତ ପଦାର୍ଥ ସେମାନେ ଦାଣ୍ଡରେ ବାଣ୍ଟିଦେବା ଯୋଗୁଁ ମନଇଚ୍ଛାରେ ନେଇଯାଆନ୍ତି । ତେଣୁ ଏଠାର ଦାତାମାନେ କଳ୍ପଦ୍ରୁମର ଏପରି ବନ୍ଦନୀୟ ଯେ ସେ ସେମାନଙ୍କର ପଦଧୂଳି ଘେନିବା ଯୋଗ୍ୟ ଅଟେ ।

**ଆଲୋଚନା—** ସେଠାରେ ଯେପରି ମହା ମହା ଧନବନ୍ତ ରହି ଅଛନ୍ତି ସେପରି ମହାନ୍ ମହାନ୍ ଦାତା ମଧ୍ୟ ରହି ଅଛନ୍ତି । ଏହାହିଁ ସାମ୍ୟୋତ୍ତର ସମାଜର ଉତ୍କୃଷ୍ଟ ମାନ ଥିବାରୁ ଅର୍ଥନୈତିକ ବୈଷମ୍ୟ ଦେଖାଯାଉ ନଥିଲା । ତତ୍ତ୍ୱବୃତ୍ତିରେ ମାନବିକତାର ପତନ ହେତୁ ଅଜି ସେ ବୈଷମ୍ୟ ବିନ୍ଦୁ ସିନ୍ଧୁରେ ଦେଖାଗଲାଣି ।

---

ଶବ୍ଦାର୍ଥ । ପତ୍ତନ—ସୌଧାବଳୀ ମାନଙ୍କ ପାଟଣା । ବଡ଼ଭୀ—ଉପର ମହଲା, ଚନ୍ଦ୍ରଶାଳା । ବଡ଼ଭୀ— [illegible] । ବଜ୍ର—ହୀରା । ମଲ୍ଲ— [illegible] । ଦାନୀପଳ—ଦାତା-ସମୂହ । ଦେବଦ୍ରୁମ—କଳ୍ପ [illegible] ମିଳିଥାଏ । କଳ୍ପ ବୃକ୍ଷ ମୂଳରେ ଯେ ଯାହା ଇଚ୍ଛାକଲେ ତା ପାଏ ବୋଲି [illegible] । [illegible]

**ମଧୁକ ମଧୁର ? ଅମୃତ ନତ-**
**ଶିର ହେବା ଗିର କରନ୍ତି ଜାତ**
**ସିଦ୍ଧିରୁ ଧୀନାଥ ସିଦ୍ଧିରେ ଧିକ**
**ଅଧିକ ନୋହିବାରୁ ପ୍ରସିଦ୍ଧି କି, ଯେ**
**ମଣ୍ଡିତ ପଣ୍ଡିତ ଗଣ, ଯେ**
**ତୁମ୍ବୁରୁ ନାରଦ ଗାଇଲେ ନା-ରଦ**
**କରିବା ଗୁଣିଙ୍କ ଠାଣ, ଯେ । ୨୮ ।**

**ଅନ୍ୱୟ**—(ସେଠାରେ) ମଣ୍ଡିତ ପଣ୍ଡିତ ଗଣ ଅମୃତ ନତଶିର ହେବାଗିର ଜାତ କରନ୍ତି । (ତା ତୁଳନାରେ) ମଧୁ କ ମଧୁର (ଅଟେ ?) (ଏମନ୍ତକ ତାଙ୍କ) ସିଦ୍ଧିରୁ ଧୀନାଥ ସିଦ୍ଧିରେ ଅଧିକ ପ୍ରସିଦ୍ଧି ନୋହିବାରୁ (ତାଙ୍କୁ) ଧି କ (ନୁହେଁ) କି ? (ପୁନଶ୍ଚ ସେଠାର) ଗୁଣିଙ୍କ ଠାଣ (ଯେ, ସେ) ତୁମ୍ବୁରୁ ନାରଦ ଗାଇଲେ (ତାଙ୍କୁ) ନା-ରଦ କରିବା (ଅଟେ) ।

**କଥା**—ସେଠାରେ ଯେଉଁ ପଣ୍ଡିତ ମାନେ ସଭା ମଣ୍ଡିତ କରି ରହି ଅଛନ୍ତି, ସେମାନେ ଯେଉଁ କୋମଳ ଏବଂ ଯୁକ୍ତି ଯୁକ୍ତ ଭାଷାରେ ବକ୍ତବ୍ୟ ପ୍ରକାଶିତ କରିଥାନ୍ତି, ତାହା ଏତେ ମଧୁର ଯେ ତା ତୁଳନାରେ ମହୁ ମଧ ମଧୁର ବୋଲି ଜଣାଯାଏ ନାହିଁ । ସେ ବାଣୀ ଶୁଣିଲେ ଅମୃତ ମଧ ନିଜ ମାଧୁର୍ଯ୍ୟରେ ହାରିଯାଇ ମଥା ନତ କରିଦେବ । ଏମନ୍ତକ ସେମାନେ ଏମନ୍ତ ସିଦ୍ଧକାମୀ ଯେ ସ୍ୱୟଂ ବିଦ୍ୟାନାଥ ଗଣପତିଙ୍କ ପ୍ରସିଦ୍ଧି ସେମାନଙ୍କଠାରୁ ଅଧିକ ନୋହିବାରୁ ଧିକ୍କାର ଦିଆଯାଉଛି ।

କେବଳ ପଣ୍ଡିତ ନୁହନ୍ତି, ସେଠାର ସଙ୍ଗିତଜ୍ଞ ମାନଙ୍କର ଏପରି ଠାଣ ଯେ ତାଙ୍କ ସମ୍ମୁଖରେ ସ୍ୱୟଂ ସଙ୍ଗୀତର ଆଦି ପୁରୁଷ ତୁମ୍ବୁରୁ ଏବଂ ନାରଦ ଯେବେ ଗାନ କରିବେ, ନିଜର ସଙ୍ଗୀତ ପରାକାଷ୍ଠାରେ ସେମାନେ ସେ ଦୁହିଁଙ୍କୁ ଦନ୍ତହୀନ ବା ପାକୁଆ କରିଦେବେ । ଅର୍ଥାତ୍ ସେଠା ସଙ୍ଗୀତଜ୍ଞ ମାନଙ୍କ ସହିତ ନାରଦ ଏବଂ ତୁମ୍ବୁରୁ ମଧ ତୁଳନୀୟ ହେବେ ନାହିଁ ।

**ଆଲୋଚନା**— ଦ୍ୱାରକା ନଗରୀରେ ଯେପରି ବ୍ୟବହାର କୁଶଳ ମଧୁର-ଭାଷୀ ବିଦ୍ୱାନ ମାନେ ରହିଅଛନ୍ତି, ସେପରି ଉଚ୍ଚାଙ୍ଗ କଳା ବିଶିଷ୍ଟ ସଙ୍ଗୀତଜ୍ଞ ମଧ ରହିଅଛନ୍ତି । 'ସଙ୍ଗୀତ ସାହିତ୍ୟ ରସାନଭିଜ୍ଞଃ ସାକ୍ଷାତ୍ ପଶୁଃପୁଚ୍ଛ ବିଷାଣ ହୀନଃ' ତେଣୁ ଏ ନଗରୀ ଉଭୟରେ କିପରି ସିଦ୍ଧିଲାଭ କରିଥିଲା ତାହା ଏ ପଦରେ ବର୍ଣ୍ଣିତ ହୋଇଅଛି ।

ଶବ୍ଦାର୍ଥ । ଗିର—କଥା । ଧୀ-ନାଥ—ଗଣପତି । ଧିକ—ଧିକ୍ ବୋଲି ଅପମାନ କରିବା । ତୁମ୍ବୁରୁ—ସଙ୍ଗୀତ ବିଦ୍ୟା ବିଶାରଦ ଗନ୍ଧର୍ବ । ନାରଦ—ଦେବର୍ଷି । ନାରଦ—ରଦ ନଥିବା ଦନ୍ତହୀନ, ପାକୁଆ ।

**ରସାତ୍ମକ ବକ୍ର ଉକ୍ତି ଜୀବନ**
**ପ୍ରଧାନ କରି ତାର ଏ ବିଧାନ**
**ବୟସ୍କ ବୃଦ୍ଧେ ରସ ବିଷୟେ ବିଷ**
**ଦେଖିନାହିଁ ନାରୀନେତ୍ର ବିଳାସ, ସେ**
**କବିପଦ ଯାହା ଶୁକ୍ରେ ଯେ**
**ଦିବାକର କାକ ବୋଲାଏ ଏ ଡାକ**
**ବକ୍ରେ ଜାତ କବି ଚକ୍ରେ, ଯେ । ୨୯ ।**

**ଅନ୍ୱୟ**—(ସେଠାରେ) କବିଚକ୍ର ରସାତ୍ମକ ବକ୍ରଉକ୍ତି (କୁ) ଜୀବନ(ରେ) ପ୍ରଧାନ କରି ତାର ଏ ବିଧାନ (କରିଛନ୍ତି; ଯେ)-ଶୁକ୍ରେ ଯାହା କବିପଦ (ଦିଆଯାଇଛି) ସେ ବୟସ୍କ ବୃଦ୍ଧେ ରସ ବିଷୟ ବିଷ (ତୁଲ୍ୟ ମଣେ, ପୁଣି ସେ) ନାରୀ –ନେତ୍ର ବିଳାସ ଦେଖିନାହାନ୍ତି । ( ତେଣୁ ) କାକ ଯେପରି ଦିବାକର ବୋଲାଏ ଏ ଡାକ ବକ୍ରେ ଜାତ (କରନ୍ତି) ।

**କଥା**—ସେଠାରେ କବି ମଣ୍ଡଳୀ ଏପରି ବିଚକ୍ଷଣ ଯେ ସେମାନେ ରସାତ୍ମକ ବକ୍ରୋକ୍ତିକୁ ଶ୍ରେଷ୍ଠ ମନେକରି ଏପରି ଗର୍ବିତ ଉକ୍ତି କରିଥାନ୍ତି ଯେ ଶୁକ୍ରଙ୍କୁ ଯେ **କବିପଦ ଦିଆଯାଇଛି,** ତାହା ଏକାନ୍ତ ଅସୁନ୍ଦର । କାରଣ ଶୁକ୍ର ସହଜେ ଜଣେ ବୃଦ୍ଧଲୋକ, ତାଙ୍କର ରସିକତା ନାହିଁ କି, ସେ ରସ ବିଷୟକୁ ବିଷପରି ମନେ କରିଥାନ୍ତି । ବିଶେଷରେ ସେ ନାରୀ ନେତ୍ରର ବିଳାସ ଆଦୌ ଦେଖି ନାହାନ୍ତି । ତେଣୁ କାକକୁ ଦିବାକର ନାମ ଦେବାପରି ଶୁକ୍ରଙ୍କୁ କବି କହିବା ହାସ୍ୟାସ୍ପଦ କଥା ନୁହେଁ କି ?

କବିମାନେ ଏପରି ଆହ୍ୱାନକୁ ବକ୍ରୋକ୍ତିରେ ପ୍ରକାଶ କରିଥାନ୍ତି ।

**ଆଲୋଚନା**—କବି ନିଜେ ଜଣେ ବ୍ୟଙ୍ଗ ରଙ୍ଗରସର ଏକାନ୍ତ ପୃଷ୍ଠ-ପୋଷକ ଥିବାରୁ ସାଧାରଣ କବିମାନଙ୍କୁ ସେହି ଧର୍ମ୍ମି ବୋଲି ପ୍ରକାଶ କରିଛନ୍ତି ।

---

ଶବ୍ଦାର୍ଥ । ଚକ୍ର—ସମୂହ । କବି— 'ଉଶନା ଭାର୍ଗବଃ କବିଃ'—ଶୁକ୍ର । ଦିବାକର—ସୂର୍ଯ୍ୟ, କାକ । ବକ୍ରେ—ବକ୍ରୋକ୍ତି । ବ୍ୟଙ୍ଗୋକ୍ତି—କାବ୍ୟାଳଙ୍କାର ବିଶେଷ । ବୟସ୍କବୃଦ୍ଧେ—ବୟସରେ ବୃଦ୍ଧଙ୍କଠାରେ । ରସ—ରସିକତା, ଶୃଙ୍ଗାରଭାବ । ନାରୀନେତ୍ର ବିଳାସ—ଯେଉଁ ନାରୀ ଅପାଙ୍ଗର ମାଧୁର୍ଯ୍ୟ ଛଟାରେ ବିଶ୍ୱ ମୋହିତ ହୋଇଥାଏ । ଶୁକ୍ର—ଅସୁରଙ୍କ ଗୁରୁ, ମୃତ ସଞ୍ଜୀବନୀ ଔଷଧର ପ୍ରଥମ ନିର୍ମ୍ମାତା ।

**ମୋକ୍ଷ କରିଦଏ ବେନି ଶରୀର**
**ମୋକ୍ଷ ଏ ନିବିଡ଼େ ଭାମିନୀଙ୍କର**
**ପୂରଣ ଏ ବୋଲି ନ କର ଡ଼ର**
**ପାଣିନି ବାକ୍ୟେ କରିବେ ଇତର, ଯେ**
**ଜଡ଼ିଛନ୍ତି ଅତିରେକେ, ଯେ**
**ପଢ଼ିଛନ୍ତି ବାତ୍ସ୍ୟାୟନ ଶାସ୍ତ୍ର ଯେଉଁ**
**ତତ୍ତ୍ୱଭାଗୀ-ଉପାସିକେ, ଯେ । ୩୦ ।**

**ଅନ୍ୱୟ**—ଯେଉଁ ତତ୍ତ୍ୱଭାଗୀ ଉପାସିକେ ବାତ୍ସ୍ୟାୟନ ଶାସ୍ତ୍ର ପଢ଼ିଛନ୍ତି (ଏବଂ) ଅତିରେକେ ଜଡ଼ିଛନ୍ତି (ସେମାନେ ତାହା) ବେନି ଶରୀର ମୋକ୍ଷ କରିଦଏ (ସ୍ଥିର କରି) ଏ ଭାମିନୀଙ୍କର ନିବିଡ଼େ ମୋକ୍ଷ (କରୁଛନ୍ତି) । (ଅର୍ଥାତ୍ ଏ ମୋକ୍ଷ ପୂରଣ ବୋଲି ଡ଼ର ନ କର । (କାରଣ) ପାଣିନି ବାକ୍ୟେ ("ଡ଼'ର ଯୋ ର ପ୍ରଭେଦଃ" ଜାଣି) ଇତର (ଜନେ, ନିବିଡ଼େ ସ୍ଥାନରେ ନିବିରେ) କହିବେ । (ତେଣୁ ଏ କ୍ଷେତ୍ରରେ ଭାମିନୀଙ୍କର ନିବିରେ ମୋକ୍ଷ କରୁଛନ୍ତି କହିଲେ ଠିକ୍ ହେବ ।)

**କଥା**—ମୋକ୍ଷଧର୍ମ ପ୍ରତି ସେଠାର ରସିକମାନଙ୍କର ବିଶେଷ ଆଗ୍ରହ ଥିବାର ଦେଖାଯାଉ ଥିବାରୁ ଯେଉଁ ରୂପବତୀ ନାରୀ ପ୍ରେମିକମାନେ ବାତ୍ସ୍ୟାୟନ ଶାସ୍ତ୍ର ପଢ଼ିଛନ୍ତି ଏବଂ ସେ ଶାସ୍ତ୍ର ମାତିରେ ଅଧିକଭାବରେ ଜଡ଼ିତ ରହିଛନ୍ତି ସେମାନେ ତଦ୍ୱାରା ଉଭୟ ଦେହ ମୋକ୍ଷ ହେବା ସ୍ଥିର କରି ସେମାନଙ୍କ ସ୍ତ୍ରୀମାନଙ୍କର କଟି ଖୋସଣି ଦୃଢ଼ ଭାବରେ ମୁକୁଳା କରୁଥାନ୍ତି । ଏ ଘଟଣାରେ ମୋକ୍ଷ ପୂରଣ ଅନୁସାରେ ଡ଼ରିବାର କାରଣ ନାହିଁ । କାରଣ ପାଣିନିଙ୍କ ବ୍ୟାକରଣ ସୂତ୍ର ଅନୁସାରେ ସାଧାରଣ ଲୋକେ 'ଡ' ସହିତ 'ର' ର ପ୍ରଭେଦ ନଥିବାରୁ ନିବିଡ଼େ ସ୍ଥାନରେ ନିବିରେ ବୋଲି ବିଶ୍ୱାସ କରିବେ । ତେଣୁ ସ୍ତ୍ରୀର ଅଣ୍ଟାରୁ ଖୋସଣି ଫିଟାଇ ତାକୁ ଉଲଗ୍ନ କରି ପୁରୁଷ ତା ସହିତ ଜଡ଼ି ରହିବା ମୋକ୍ଷର କାରଣ ନ ହେବ କାହିଁକି ? ତେଣୁ ସେଠାର ରସିକ ବର୍ଗ ଉଲଗ୍ନା ନାରୀ ସହିତ ନିରନ୍ତର ନିଜ ଦେହକୁ ଅତି ଅଧିକ ନିବିଡ଼ ଭାବରେ ମିଶାଇ ରଖି ମୋକ୍ଷ ଇଚ୍ଛା କରୁଥାନ୍ତି ।

**ଆଲୋଚନା**—ସେଠାର ନାରୀ ଏବଂ ପୁରୁଷର ଅଗାଢ ପ୍ରୀତି ଗୋଟିଏ ସୂତ୍ରରେ ବନ୍ଧାଥିବା ଦାମ୍ପତ୍ୟ ଜୀବନ ସେଠାରେ ଥିବାର ଜଣାଯାଏ । କବି ବ୍ୟାକରଣ ଶାସ୍ତ୍ର ଅଧ୍ୟୟନ କରିଥିବାର ଏଥିରୁ ଜଣାଯାଉଛି । କାରଣ ପାଣିନୀସୂତ୍ରରେ ମଧ୍ୟ ତାଙ୍କର ପ୍ରବେଶ ରହିଥିଲା ।

---

ଶବ୍ଦାର୍ଥ—ନିବିଡ଼—ଦୃଢ଼ । ନିବି—କଟୀବସ୍ତ୍ର ଗ୍ରନ୍ଥି, ଖୋସଣି । ମୋକ୍ଷ—ମୁକୁଳା, ମୁକ୍ତି । ଭାମିନୀ—ଲଳନା, ସ୍ତ୍ରୀ । ପାଣିନି ବାକ୍ୟ—'ଡ଼,ର, ଯୋ ର ପ୍ରଭେଦଃ' । ଇତର—ସାଧାରଣ । ଅତିରେକେ—ଅତି ଅଧିକ ଭାବରେ । ବାତ୍ସ୍ୟାୟନ ଶାସ୍ତ୍ର—ବାତ୍ସ୍ୟାୟନ ଋଷିପ୍ରଣୀତ କାମଶାସ୍ତ୍ର । ତତ୍ତ୍ୱଭାଗୀ—ରୂପସୀ ନାରୀ, କାମିନୀ ନାରୀ । ଉପାସିକେ—ଯେଉଁମାନେ ସେବା କରନ୍ତି । ତତ୍ତ୍ୱଭାଗୀ ଉପାସିକେ—ସୁନ୍ଦରୀ ରମଣୀର ଅନୁଗତ ପୁରୁଷଗଣ ।

**ଦ୍ୱି ଅଷ୍ଟ ଯୁଗଳ ପୁରାଣେ ଯୋଗ**
**ସିଦ୍ଧାନ୍ତ ବିଧି ବିଧାନେ ବିରାଗ**
**ବହୁଛନ୍ତି ମନେ ଜାଣି ଦ୍ୱିବସେ**
**କହୁଛନ୍ତି କର ନବେଣି ଜଣେ, ସେ**
**ଉଦ୍ଧାରଣ ଧାମ ରାମା, ଯେ**
**ସାକ୍ଷ୍ୟ ପ୍ରତ୍ୟକ୍ଷରେ ମୋକ୍ଷଦ ବକ୍ଷରେ**
**ସୌଖ୍ୟଶୀଳ କରୀରମା, ଯେ । ୩୧ ।**

**ଅନ୍ୱୟ**—(ସେଠାର ପୁଂସେ) ଦ୍ୱି ଅଷ୍ଟ (ଏବଂ) ଯୁଗଳ (ସଂଖ୍ୟକ) ପୁରାଣେ (ଥିବା) ଯୋଗ ସିଦ୍ଧାନ୍ତ ବିଧି ବିଧାନେ ମନେ ଜାଣି ଦ୍ୱିବସ ବିରାଗ ବହୁଛନ୍ତି । ଜଣେ କର ନବେଣି କହୁଛନ୍ତି—(ସେ ମୁକ୍ତିର ବିଧି ବିଧାନ ଭୁଲ) । ରାମା (କେବଳ) ଉଦ୍ଧାରଣଧାମ (ଅଟେ) । ସାକ୍ଷପ୍ରତ୍ୟକ୍ଷରେ (ଦେଖ ଯେ)—ମୋକ୍ଷଦ ବକ୍ଷରେ (କପରି) ରମା ସୌଖ୍ୟଶୀଳ କରି (ହୋଇଅଛନ୍ତି) ।

**କଥା**—ସେଠାର ରସିକ ବ୍ୟକ୍ତିମାନେ ଅଷ୍ଟାଦଶ ପୁରାଣରେ, ମୁକ୍ତି ସମ୍ବନ୍ଧରେ ଯେଉଁ ଯୋଗ ସିଦ୍ଧାନ୍ତର ବିଧି ବିଧାନ ରହିଛି, ସେ ବିଷୟରେ ମନରେ ଦ୍ୱିବା ରାତ୍ର ବିରାଗାନ୍ୱିତ ହୋଇଥାନ୍ତି । ଏମାନଙ୍କ ଜଣରେ ହାତ ଦେଇ କହିଥାନ୍ତି—ସେ ମୁକ୍ତିର ବିଧି ବିଧାନ ଭୁଲ । ନାରୀ କେବଳ ପୁରୁଷର ଉଦ୍ଧାର କର୍ତ୍ତ୍ରୀ ଅଟେ । ସେମାନେ ପ୍ରକୃଷ୍ଟ ସାକ୍ଷ ପ୍ରତ୍ୟକ୍ଷରେ ଦେଇ କହନ୍ତି, ଦେଖ ଯେ—ମୋକ୍ଷଦାତା ଭଗବାନ ବିଷ୍ଣୁଙ୍କର ବକ୍ଷରେ କପରି ତାଙ୍କର ସ୍ତ୍ରୀ ରମା ସୁଖଦାୟିନୀ ହୋଇଅଛନ୍ତି ଯେତେବେଳେ ମୋକ୍ଷଦାତାଙ୍କର ହୃଦୟରେ ତାଙ୍କ ସ୍ତ୍ରୀ ନିରନ୍ତର ରହିଅଛନ୍ତି ସେତେବେଳେ ନାରୀଠାରୁ ଅଧିକ ମୋକ୍ଷ କିଏ ଦେଇପାରେ ?

**ଆଲୋଚନା**—ସ୍ୱକୀୟା ନାରୀ ପ୍ରୀତି, ବିଶେଷରେ ନାରୀ ଗାର୍ହସ୍ଥ୍ୟ ଜୀବନର ଏକାନ୍ତ ବନ୍ଧମାସ୍ଥ ବିଗ୍ରହ ବୋଲି ସେ ନଗରବାସୀ ବିଶେଷ କରି ବୁଝନ୍ତି । ନାରୀ ଜାତିର ଗୌରବ ବ୍ୟାଖ୍ୟାରେ କବି ଏତଦ୍ୱାରା ବିଶ୍ୱର ଏକ ମହାନ୍ ସ୍ଥାନ ଲାଭ କରିବାର ଯୋଗ୍ୟ ହୋଇପାରିଛନ୍ତି ।

---

ଶବ୍ଦାର୍ଥ—ଦ୍ୱି ଅଷ୍ଟ—୧୬ ସଂଖ୍ୟା । ଯୁଗଳ—ଦୁଇ । ଦ୍ୱି ଅଷ୍ଟ ଯୁଗଳ ପୁରାଣ—ଅଷ୍ଟାଦଶ ପୁରାଣ । ଯୋଗ—ଜୀବାତ୍ମା ଓ ପରମାତ୍ମା ସମ୍ବନ୍ଧ । ବିରାଗ—କ୍ରୋଧ । ରାମା—ନାରୀ । ଧାମ—କ୍ଷେତ୍ର । ମୋକ୍ଷଦ—ମୋକ୍ଷଦାତା ବିଷ୍ଣୁ ବା ଭଗବାନ । ରମା—ଲକ୍ଷ୍ମୀ । ସୌଖ୍ୟଶୀଳକରୀ—ସୁଖଦାୟିନୀ

**ଶୋଭ୍ର ନ ବଶନ୍ତ ଗଣିକା ହାରେ**
**ଏମନ୍ତ ଯେ ତାଙ୍କୁ ଗଣି କାହାରେ**
**ବିଟପୀ ଅମୃତ ପାଣି ରମ୍ଭାକୁ**
**ବିଟପୀ ଅମୃତ ପାନୀ-ରମ୍ଭାକୁ, ଯେ**
**ସମକଲେ ନ ଘଟଇ, ଯେ**
**ରସାବଳୀ ତାର ନେତ୍ର ଗଳ ପଡ଼ି**
**ମନ ମୋହନ କରଇ, ଯେ । ୩୨ ।**

**ଅନ୍ୱୟ**—(ସେଠାର) ଗଣିକାହାରେ ଏମନ୍ତ ଯେ ତାଙ୍କୁ କାହାରେ ଗଣି (ଠିକ୍ କରି ହୁଏନାହିଁ, କାରଣ ତାଙ୍କ ସମାନ କେହି) ଶୋଭ୍ର ନ ବଶନ୍ତ । ( ସେଠାର ) ଅମୃତ ପାଣି ରମ୍ଭା ବିଟପୀକୁ ( ସ୍ୱର୍ଗର ) ଅମୃତପାନୀ ବିଟପୀ ରମ୍ଭାକୁ ସମକଲେ ନ ଘଟଇ । ( ଅବଶ୍ୟ ) ବିଟପୀ ନେତ୍ର ତାର ରସାବଳୀ ଗଳପଡ଼ି ମନମୋହନ (ଯେପରି) କରଇ (ସେପରି) ରସ-ଆବଳୀ ତାର (ରମ୍ଭାର) ନେତ୍ରୁ ଗଳପଡ଼ି ମନମୋହନ କରଇ ।

**କଥା**—ସେ ଦ୍ୱାରକା ପୁରୀର ବେଶ୍ୟାମାନେ ଏତେ ସୁନ୍ଦରୀ ଯେ ତାଙ୍କ ସହିତ ଆଉ କେହି ଶୋଭମାୟା ଥିବାର ଗଣନା କରି ହୁଏନାହିଁ । ବିଶେଷ କଣ କହିବା, ସେମାନଙ୍କ ସହିତ ସ୍ୱର୍ଗ ଅପ୍ସରାମାନଙ୍କୁ ତୁଳନା ଅବା କରାଯାନ୍ତା; କିନ୍ତୁ ଦ୍ୱାରକାର ଅମୃତ ପାଣି ରମ୍ଭା (କଦଳୀ) ଗଛକୁ ସ୍ୱର୍ଗବେଶ୍ୟା ଅମୃତ ପାନକାରିଣୀ ରମ୍ଭା ସହିତ ତୁଳନା କଲେ ସ୍ୱର୍ଗରମ୍ଭା ସମାନ ହୁଏନାହିଁ । କାରଣ ସେଠା କଦଳୀର ବୃକ୍ଷ ମୂଳରୁ କ୍ଷରିତ ରସାବଳୀ ଠାରୁ ରମ୍ଭାର ନେତ୍ରରୁ ଗଳିତ ରସାବଳୀ ଅଧିକ ମଧୁର ନୁହେଁ ଓ ମନୋମୁଗ୍ଧ କାରିଣୀ ନୁହେଁ । ତେଣୁ ଯେଉଁ ନଗରୀର ରମ୍ଭାଗଛ ସହିତ ରମ୍ଭା ଅପ୍ସରା ସମାନ ନୁହେଁ, ସେ ପୁରୀର ବେଶ୍ୟା ସହିତ ତୁଳମାୟ କିଏ ବା ହେବ ।

**ଆଲୋଚନା**—ବର୍ତ୍ତମାନ ସଭ୍ୟ ଜଗତରେ ବେଶ୍ୟା ପ୍ରଥା ନିନ୍ଦମାୟ ହେଲେ ହେଁ ଯୌନତତ୍ତ୍ୱ ଦୃଷ୍ଟିରୁ ଅବିବାହିତ ପୁରୁଷ ମାନଙ୍କର ଯୌନକ୍ଷୁଧା ନିବାରଣ ଲାଗି ଏ ସବୁର ଯେ ଆବଶ୍ୟକତା ଥାଏ ତାହା ସ୍ୱୀକାର୍ଯ୍ୟ । ନଚେତ୍ ସାମାଜିକ ଜୀବନ କଳୁଷିତ ହେବାର ଆଶଂକା ଥାଏ । ତେଣୁ ଅତୀତରେ କପରି ତାର ପ୍ରତୀକାର ହୋଇପାରିବ ତାର ମୀମାଂସା କରିହୋଇ ସ୍ୱର୍ଗ ବେଶ୍ୟାରୁ ଆରମ୍ଭ କରି ସର୍ବତ୍ର ବେଶ୍ୟା ମାନଙ୍କୁ ପ୍ରୟୋଜନୀୟ ଏକ ସମାଜ ବୋଲି ସ୍ୱୀକାର କରାଯାଇଛି ।

---

ଶବ୍ଦାର୍ଥ । ଗଣିକା—ବେଶ୍ୟା । ହାର—ସମୂହ । ଗଣିକାହାର—ବେଶ୍ୟାମାନେ । କାହାରେ—କାହା ସହିତ । ଗଣି—ସମକରି । ବିଟପୀ—ବୃକ୍ଷ, ବ୍ୟଭିଚାରିଣୀ ନାରୀ । ଅମୃତ ପାଣି—ତନ୍ନାମ ବିଶିଷ୍ଟ ଏକ ମିଷ୍ଟ ସୁଗନ୍ଧ ଫଳଦାୟି କଦଳୀ ବୃକ୍ଷ ବିଶେଷ । ଅମୃତପାନୀ—ଅମୃତପାନକାରୀ ଥିବା । ରମ୍ଭା—କଦଳୀବୃକ୍ଷ, ଏକ ସୁନ୍ଦରୀ ବେଶ୍ୟା । ନେତ୍ର—ବୃକ୍ଷ ମୂଳରୁ, ଚକ୍ଷୁରୁ ।

ଧାଇ ଧର ଅଙ୍କୁ ରଙ୍କୁ ଖାଇବେ
ଅତି ଜ୍ୟୋତକ୍କ ଚନ୍ଦ୍ର ଦେଖାଇବେ
ପ୍ରଦୀପ ପ୍ରଦୀପ୍ତି ପାଇ ଆଦର
ଆଚରଣ କି ଆଚରେ ତସ୍କର ଯେ,
ନିଷାଦେ ଆଚରି ଭୟ, ଯେ
ଗାଢ଼ ବନ୍ଧନୁ ଶ୍ୱାନକୁ ନ ଛାଡ଼ନ୍ତି
ଥିବାଯାକେ ଚନ୍ଦ୍ରୋଦୟ, ଯେ ।୩୩।

**ଅନ୍ୱୟ**—(ସେଠାର) ନିଷାଦେ ଭୟ ଆଚରି ଶ୍ୱାନକୁ ଚନ୍ଦ୍ରୋଦୟ ଥିବାଯାକେ ଗାଢ଼ବନ୍ଧନୁ ନ ଛାଡ଼ନ୍ତି । (କାରଣ ସେମାନେ) ଧାଇଁ ଧରି (ଚନ୍ଦ୍ର) ଅଙ୍କୁ ରଙ୍କୁ ଖାଇବେ । (ତେଣୁ) ଅତି ଜ୍ୟୋତକ ଚନ୍ଦ୍ର ଦେଖାଇବେ । ପ୍ରଦୀପ ପ୍ରଦୀପ୍ତି ଆଦର ପାଇ ତସ୍କର (ଚୋର) ଆଚରଣ କି ଆଚରେ ?

**କଥା**—ସେଠାର ଶବରମାନେ ଭୟ କରି ସେମାନଙ୍କ ପାଳିତ କୁକୁରକୁ ଚନ୍ଦ୍ର ଉଦିତ ଥିବାଯାଏ ଗାଢ଼ବନ୍ଧନରୁ ଛାଡ଼ନ୍ତି ନାହିଁ । କାରଣ ସେ କୁକୁରମାନେ ଏତେ ବଳବାନ୍ ଓ ଉଗ୍ର ଯେ ଧାଇଁ ଯାଇ ଚନ୍ଦ୍ର ଅଙ୍ଗରେ ଥିବା ଶଶା ଜାତୀୟ ମୃଗକୁ ଖାଇଯିବେ । ତେଣୁ ଚନ୍ଦ୍ରମାର ଅତିଜ୍ୟୋତି ପ୍ରକାଶିତ ହେବ । ଆଲୋକ ଅତି ଉଜ୍ଜ୍ୱଳ ହେଲେ ତସ୍କର ଚୋର ଚୌର୍ଯ୍ୟ କାର୍ଯ୍ୟ କିପରି ଆଚରଣ କରିବ ?

**ଆଲୋଚନା**—ଏତେ ସୁଖ ସମ୍ଭୋଗ ମଧ୍ୟରେ ଦୁଷ୍କୃତି ଯେ ସେ ନଗରୀରେ ନାହିଁ ଏପରି ନୁହେଁ । ସେଠାରେ ବଳବାନ୍ କୁକୁର ରଖି ଶବରମାନେ ବନରୁ ଶିକାର ଯେପରି କରିଥାନ୍ତି ସେପରି ରାତ୍ର ହେଲେ କୁକୁରମାନଙ୍କୁ ବନ୍ଧନରେ ରଖି ଶବରକରି ବାହାରନ୍ତି । ମାନବର ସମସ୍ତ ବିଚିତ୍ର ଚିତ୍ତବୃତ୍ତିର ଚିତ୍ରଣ ନ ରହିଲେ କାବ୍ୟର ଅଙ୍ଗହାନି ହେବ । ତେଣୁ ଅତି ଅଦ୍ଭୁତ ଚିତ୍ରଣ ଓ ଅତି ମଧୁର ଚିତ୍ରଣ ମଧ୍ୟରେ ପ୍ରାକୃତିକ ଚିତ୍ରଣ ଖଂଜି କବି ମାନବିକ ପ୍ରବୃତ୍ତିକୁ ଭୁଲି ନାହାନ୍ତି ।

ଶବ୍ଦାର୍ଥ । ଅଙ୍କୁ—କୋଳରୁ । ରଙ୍କୁ—ମୃଗବିଶେଷ । ପ୍ରଦୀପ—ଆଲୋକ । ପ୍ରଦୀପ୍ତ—ଉଜ୍ଜ୍ୱଳ । ତସ୍କର—ଚୋର । ନିଷାଦ—ଶବରଶ୍ରେଣୀୟ, ସେମାନେ ମଧ୍ୟ ଚୌର୍ଯ୍ୟ ବୃତ୍ତି କରିଥାନ୍ତି । ଶ୍ୱାନ—କୁକୁର । ଚନ୍ଦ୍ରୋଦୟ—ଚନ୍ଦ୍ର ଉଦିତ ହେବା ।

**ଜରାସନ୍ଧ ଦ୍ୱନ୍ଦେ ଧରାକୁ ବର୍ଜି**
**ଗୁମାନେ ଏମାନ ସମୁଦ୍ରେ ସର୍ଜି**
**ମୁଷ୍ଟିକାରି ହରି ବିହରିବାର**
**ଦୃଷ୍ଟି ପାତେ ଦେବେ କଲେ ବିଗ୍ଭର, ସେ**
**ଅନିଷ୍ଟ ଏ ଦୁଷ୍ଟ ନାଶେ, ଯେ**
**ଚକ୍ରି—ଚକ୍ରବର୍ତ୍ତୀ ଚକ୍ରୀଙ୍କ ସଙ୍ଗତ**
**ଲବଣାବ୍ଧି ମଧ୍ୟେ ଦିଶେ, ଯେ । ୩୪ ।**

**ଅନ୍ୱୟ**—ମୁଷ୍ଟିକାରି (ଏବଂ) ହରି ଜରାସନ୍ଧ ଦ୍ୱନ୍ଦେ ଧରାକୁ ବର୍ଜି ଗୁମାନେ ଏମାନ (ଦ୍ୱାରକାପୁରୀ) ସମୁଦ୍ରେ ସର୍ଜି ବିହରିବାର ଦୃଷ୍ଟିପାତେ ଦେବେ ବିଗ୍ଭର କଲେ (ଯେ, ଉକ୍ତ ଜରାସନ୍ଧ) ଦୁଷ୍ଟ ନାଶେ ଓ ଅନିଷ୍ଟ (ଦୂର ହେବାକୁ) ଚକ୍ରୀ—ଚକ୍ରବର୍ତ୍ତୀ (ଏବଂ) ଚକ୍ରୀଙ୍କ ସଙ୍ଗତ ଲବଣାବ୍ଧି ମଧ୍ୟେ ଦିଶେ ।

**କଥା**—ଜରାସନ୍ଧ କଳହ କରିବା ଯୋଗୁଁ ବଳରାମ ଏବଂ କୃଷ୍ଣ ଦୁହେଁ ବିସ୍ତୃତ ଭୂଭାଗ ବର୍ଜନ କରି ଦମ୍ଭାଭିମାନରେ ପୂର୍ବ ବର୍ଣ୍ଣିତ ପ୍ରକାରେ ଦ୍ୱାରକାପୁରକୁ ସମୁଦ୍ର ମଧ୍ୟରେ ସୃଷ୍ଟି କରି ବିହାର କରୁଥିବା ଦେଖି ସ୍ୱର୍ଗର ଦେବତାମାନେ ବିଗ୍ଭର କଲେ ଯେ ଉକ୍ତ ଜରାସନ୍ଧ ଦୁଷ୍ଟକୁ ନାଶ କରି ଅନିଷ୍ଟ ଦୂର କରିବା ଲାଗି ବଳରାମ ଏବଂ କୃଷ୍ଣଙ୍କର ମିଳନ ଲବଣ ସମୁଦ୍ର ମଧ୍ୟରେ ଏ ପ୍ରକାର ଦେଖାଯାଉଛି ।

**ଆଲୋଚନା**—କୃଷ୍ଣଙ୍କଦ୍ୱାରା କଂସ ହତ ହେବାପରେ କଂସପତ୍ନୀ ଦ୍ୱୟଙ୍କମାନେ କି ଜରାସନ୍ଧର କନ୍ୟା ଅଟନ୍ତି ସେମାନଙ୍କର ବାରମ୍ବାର ପ୍ରରୋଚନାରେ ମଥୁରାକୁ ଜରାସନ୍ଧ ମୋଟରେ ବାଇଶି ଥର ଆକ୍ରମଣ କରିଥିଲା । ଜରାସନ୍ଧର କୃଷ୍ଣଙ୍କ ସହିତ ଅତ୍ୟନ୍ତ ବୈରଭାବ ଥିବାରୁ ଏବଂ ଦୁର୍ଦ୍ଦାନ୍ତ ଜରାସନ୍ଧକୁ ଜୟ କରିବାର ସମ୍ବଳ ନ ଥିବାରୁ ବାରମ୍ବାର ଆତ୍ମରକ୍ଷା କରି ଶେଷରେ ବାଧ୍ୟ ହୋଇ ମଥୁରା ତ୍ୟାଗ କରି କୃଷ୍ଣ ଏବଂ ବଳରାମ ଭାରତର ପଶ୍ଚିମ ପ୍ରାନ୍ତରେ ସମୁଦ୍ର ମଧ୍ୟସ୍ଥ ଏକ ଦ୍ୱୀପରେ ଦ୍ୱାରକା ନଗରୀ ନିର୍ମାଣ କରିଥିଲେ । ସେ ଦ୍ୱାରକା ନଗରୀ ବର୍ତ୍ତମାନ ସମୁଦ୍ର ଗର୍ଭରେ ଲୀନ ହୋଇଥିଲେ ହେଁ ତତ୍‌କାଳରେ ତାହାର ସାମରିକ, ସମୃଦ୍ଧିଗତ ପ୍ରସିଦ୍ଧି ଚରିତରେ ଅତି ମହାନ୍ ଥିବାର ବର୍ଣ୍ଣନା ରହିଅଛି ।

---

ଶବ୍ଦାର୍ଥ । ଜରାସନ୍ଧ—ମହାଭାରତ ଯୁଗର ଏକ ନିଷ୍ଠୁର, ଦୁର୍ଦ୍ଦାନ୍ତ ରାଜପୁରୁଷ । ମଗଧ ତାଙ୍କର ରାଜ୍ୟ ଥିଲା । କୃଷ୍ଣ ଭୀମଦ୍ୱାରା ତାକୁ ଦ୍ୱନ୍ଦଯୁଦ୍ଧକରି ହତ କରିଥିଲେ । ଦ୍ୱନ୍ଦ—ବିବାଦ । ଗୁମାନେ—ଅଭିମାନରେ, ଦମ୍ଭରେ । ମୁଷ୍ଟିକାରି—ମୁଷ୍ଟିକ ଦୈତ୍ୟ ଶତ୍ରୁ 'ବଳରାମ' । ଚକ୍ରୀ—ସର୍ପ । ଚକ୍ରବର୍ତ୍ତୀ—ସମ୍ରାଟ୍ । ସଙ୍ଗତ—ମିଳନ । ଚକ୍ରୀ-ଚକ୍ରବର୍ତ୍ତୀ—ଶେଷଦେବଙ୍କ ଅବତାର ବଳରାମ । ଚକ୍ରୀ—ବିଷ୍ଣୁରୂପୀ କୃଷ୍ଣ । ସଙ୍ଗତ—ମିଳନ ।ଲବଣାବ୍ଧି—ଲବଣ ସମୁଦ୍ର ।

**ଅଜ୍ଞାନୀ ଯେ ଜ୍ଞାନୀ ବିଭଗତରେ**
**ଲଭେ କି ଚାତକ ବି-ଭ-ଗତରେ**
**ଯେ କଲେ ପଶୁକୁ ବିଭଗ-ଶରେ**
**ମଜ୍ଜିଛି ଯେ ତାଙ୍କ ବିଭଗ ତୀରେ**
**ଗୃଧ୍ରକ ଦୀକ୍ଷାକୁ ଧରି, ଯେ**
**ଜ୍ଞାନୀ ସେ ତା ତୋଷ ପ୍ରଦାନେ ଏ ରସ**
**ହୁଏ ବଳାହକ ବାରି ପେ । ୩୫ ।**

**ଅନ୍ୱୟ**—ବି-ଭଗତରେ ଯେ ଜ୍ଞାନୀ (ସେ) ଅଜ୍ଞାନୀ (ଅଟେ) । (କାରଣ) ଚାତକବି ଭ—ଗତରେ ଲଭେ କି ? ଯେ ପଶୁକୁ ଶରେ ବିଭଗ କଲେ, ଯେ ତାଙ୍କ ବିଭଗତରେ ମଜ୍ଜିଛି ସେ (ପ୍ରକୃତ) ଜ୍ଞାନୀ । ଗୃଧ୍ରକ ଦୀକ୍ଷାକୁ ଧରି ଏରସ ତା ତୋଷ ପ୍ରଦାନେ ବଳାହକ ପରି ହେବ । ତେଣୁ ଭକ୍ତି ଶାସ୍ତ୍ରାନଭିଜ୍ଞ ଅଜ୍ଞାନୀ ଅଟନ୍ତି ।

**କଥା**—ଭକ୍ତି ଶାସ୍ତ୍ରରେ ଅନଭିଜ୍ଞ ଯେଉଁ ଜ୍ଞାନୀମାନେ ସେମାନେ ଅଜ୍ଞାନ ଅଟନ୍ତି । କାରଣ ଘର ଚଟିଆ ପକ୍ଷୀ ପକ୍ଷୀନାମରେ ନାମିତ ହେଲେ ହେଁ ସେ କେବେ ନକ୍ଷତ୍ର ଗତିପଥ ଯାଏ ଉଚ୍ଚକୁ ଗତି କରିପାରେ ନାହିଁ ।

ମୁଖ୍ୟତଃ ଯେ କପଟୀ ହରିଣ ମୂର୍ତ୍ତି ଧରି ଥିବା ଅଜ୍ଞାନ ଅସୁର ପଶୁକୁ କାଣ୍ଡଦ୍ୱାରା ଛେଦନ କରି ମୁକ୍ତକଲେ, ଯେ ତାଙ୍କ ପ୍ରତି ବିଶେଷ ଭକ୍ତିରେ ମଜ୍ଜିଛି, ସେ ହିଁ ପ୍ରକୃତ ଜ୍ଞାନୀ ଅଟେ । ଏ କ୍ଷେତ୍ରରେ ଗୃଧ୍ରକ ଯେପରି ଅନ୍ୟ ଜଳରେ ତୃଷା ନିବାରଣ ନକରି କେବଳ ବୃଷ୍ଟି ଜଳରେ ନିଜର ତୃଷା ମେଣ୍ଟାଏ, ତଦ୍ରୂପ ସେହି ଜ୍ଞାନୀମାନେ ଗୃଧ୍ରକ ଦୀକ୍ଷାବଲମ୍ବନ କରି ନିଜର ତୁଷ୍ଟି ପାଇଁ ଏହି କଳାର ରସକୁ ମେଘଜଳ ପରି (ବୃଷ୍ଟି ଜଳ) ମନେକରନ୍ତି ।

**ଆଲୋଚନା**—ଏହା ପ୍ରାନ୍ତର ସର୍ବ ଯମକରେ ରଚିତ । ଏ ପଦଟି ନୁହେଁ ଏହି ଗ୍ରନ୍ଥର ବହୁ ପଦ ନାନା ଯମକରେ ରଚିତ ହୋଇଛି ।

କବି ପ୍ରଥମେ ଏକାନ୍ତ ନାସ୍ତିକ ପ୍ରାୟ ଥାଇ ପରେ ଭକ୍ତି ଭାବରେ ଏତେ ପ୍ରମୋଦିତ ଥିଲେ ଯେ ଭକ୍ତି ମାହାତ୍ମ୍ୟକୁ ସର୍ବଶ୍ରେଷ୍ଠ ମନେକରି ଅଛନ୍ତି । ଏହାଙ୍କ ନିଜ ନିଜ ବିଶ୍ୱାସ ଅନୁକ୍ରମେ ଯେଉଁମାନେ ମତ ଜ୍ଞାପନ କରନ୍ତି—ତାହାର ଅନୁରୂପ ମାତ୍ର ।

---

ଶବ୍ଦାର୍ଥ । ବି—ବିଶେଷ, ପକ୍ଷୀ, ନିଷେଧ । ବିଭଗତ—ଭକ୍ତିହୀନତା । ଚାତକ— ଘର ଚଟିଆ ପକ୍ଷୀ । ବି—ପକ୍ଷୀ । ଚାତକ—ବି—ଘରଚଟିଆ ନାମକ ଅତିକ୍ଷୁଦ୍ର ପକ୍ଷୀ । ଭ—ନକ୍ଷତ୍ର । ବିଭଗ—ଛିନ୍ନ । ବିଭଗତ—ବିଶେଷ ଭକ୍ତି । ବଳାହକ—ବାରିବାହକ—ମେଘ ।

**ଚତୁର୍ଦ୍ଦଶ ଦୁଇଦଶ ଷୋଡଶ**
**ଚକ୍ର ଚଳନ୍ତୁ ଜାତ ହେବା ଘୋଷ**
**ଶ୍ରୀ ଗୁଣ୍ଡିଚ୍ଚା ବାହୁଡ଼ାରେ ଚୌଦଶୀ**
**ଜୟ ଶଂଖ ପର ଯାଏ ଆଭାସି, ସେ**
**ଏମନ୍ତ ଉତ୍ସବ ଇଚ୍ଛି, ଯେ**
**ଦିବସ ରଜନୀ ଏଭାବ ଭଜନୀ**
**ଗ୍ରନ୍ଥକାର ହୋଇଅଛୁ, ଯେ । ୩୭ ।**

**ଅନ୍ୱୟ**—ଚତୁର୍ଦ୍ଦଶ, ଦୁଇଦଶ, ଷୋଡ଼ଶ (ଯୁକ୍ତ) ଚକ୍ର ଚଳନ୍ତୁ ଜାତ ହେବା ଘୋଷ (ଯାହା) ଶ୍ରୀଗୁଣ୍ଡିଚ୍ଚା (ଏବଂ) ବାହୁଡ଼ାରେ ଚୌଦଶୀ (ଅଟେ, ତାହା) ଜୟଶଙ୍ଖ ପର ଆଭାସି ଯାଏ । ଏମନ୍ତ ଉତ୍ସବ ଦିବସ ରଜନୀ ଇଚ୍ଛୁ ଗ୍ରନ୍ଥକାର ଭଜନୀ ଏଭାବ (ତାଠୁଁ ଜାତ) ହୋଇ ଅଛୁ ।

**କଥା**— ଚଉଦ, ବାର ଏବଂ ଷୋହଳ ଏପରି ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ରଥଚକ୍ର ଚ୍ଚଳିବାରେ ଯେଉଁ ଘୋଷ ବା ସ୍ୱରବାହାରେ ତାହା ଗୁଣ୍ଡିଚ୍ଚା— ଯାତ୍ରାରେ ଏବଂ ବାହୁଡ଼ା ଯାତ୍ରା ଏ ଦୁଇ ଅନୁଷ୍ଠାନରେ ଚଉଦଶୀଥର ଶୁଣାଯାଏ । ତାହା ଜୟଶଙ୍ଖ ପରି ଘୋଷ ଧ୍ୱନି ଭାବରେ ସମଗ୍ର ବିଶ୍ୱରେ ଆଭାସିତ ହୁଏ । ଏହି ଚଉଦଶି ଚକ୍ର ସମୂହର ତତ୍ତ୍ୱଜ୍ଞାନରେ ଏମନ୍ତ ଉତ୍ସବ ଅହୋରାତ୍ର ଇଚ୍ଛାକରି ଗ୍ରନ୍ଥକାର ସେ ତତ୍ତ୍ୱ ଭଜନ କରିବାରୁ ଏହି ରଚନା ତାଙ୍କଠାରୁ ଜାତ ହୋଇଅଛୁ ।

**ଆଲୋଚନା**—'ଚର୍ମ ବେଢ଼ିଛୁ ପିନ୍ଧା ଚଉଦଶିକ, ଶଉତ୍ରୁ ବିଅ ମାଳ ଗିରି ବାସୀଙ୍କି' । ଏହି ତତ୍ତ୍ୱଜ୍ଞାନ ଉପରେ ଏହି ପଦକୁ କବି ରଚନା କରିଥିବା ଅନୁମାନ କରାଯାଏ । ଜଗନ୍ନାଥ ଧର୍ମ ଶାଶ୍ୱତ ବ୍ରହ୍ମୋପାସନା ବୋଲି ଅନେକଙ୍କର ମତ ଅଟେ । ତନ୍ତ୍ର ସାଧନର ଚଉଦଶି ଚକ୍ର ସାଧନାରୁ ଏହି ଚଉଦଶି ଚକ୍ରର ଧ୍ୱନି ସମଗ୍ର ବିଶ୍ୱକୁ ପ୍ରତିଧ୍ୱନିତ କରୁଛୁ ବୋଲି କବି ବିଶ୍ୱାସ କରନ୍ତି । ବାସ୍ତବରେ ଜଗନ୍ନାଥ ମୂର୍ତ୍ତି ଏବଂ ରଥ ତିଆରିର ଆନୁଷ୍ଠାନିକ ମାପ ସଂଖ୍ୟା ମଧ୍ୟରେ ଗଭୀର ତତ୍ତ୍ୱଯୋଗ ନାନା ସମସ୍ୟା ନେଇ ଲୁଚି ରହିଛୁ—ତାହାର ଅନ୍ୱେଷଣ ଏବେ ମଧ୍ୟ ହୋଇ ପାରି ନାହିଁ ।

---

ଶବ୍ଦାର୍ଥ । ଦୁଇଦଶ—ଦୁଇ ଓ ଦଶ ଅର୍ଥାତ୍ ବାର ସଂଖ୍ୟା । ଚକ୍ର ଚଳନ୍ତୁ—ଚକ ଗଡ଼ିବାରୁ ଘୋଷ—ସ୍ୱନ । ଘୋଷରୁ ଘୋଷଯାତ୍ରା ହୋଇଛୁ । ଭଜନୀ—ଭଜନାକାରୀ, ଉପାସକ, ସିଂହ ଭୂମିରେ ଏହି ଶବ୍ଦ ଏବେ ମଧ୍ୟ ପ୍ରଚଳିତ ଅଛୁ । ଜୟ ଶଙ୍ଖ—ମଙ୍ଗଳ ଅନୁଷ୍ଠାନରେ ଯେଉଁ ଶୁଭ ଶଙ୍ଖ ଧ୍ୱନି କରାଯାଏ । ଆଭାସି—ପ୍ରକାଶି ।

# ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର

**ଦ୍ୱିତୀୟ କଳା:—**

ଏହି କଳା ବା ଛନ୍ଦରେ ବାଉନଟି ପଦ ରହିଛି । ଦ୍ୱାରକାର ଏକ ଚତୁର ଭାଟ ବିଦର୍ଭ ଦେଶରେ ଉପସ୍ଥିତ ହୋଇ କୁଣ୍ଡିନ ନଗରୀର ସମସ୍ତ ସୌନ୍ଦର୍ଯ୍ୟରେ କିପରି ବିମୋହିତ ହୋଇ ଶେଷକୁ ରାଜା ଭୀଷ୍ମକଙ୍କ ଦର୍ଶନ ଲାଭକରି କୃଷ୍ଣଙ୍କର ରୂପ, ଗୁଣ ବର୍ଣ୍ଣନା ଦ୍ୱାରା ଜେମା ରୁକ୍ମିଣୀଙ୍କୁ ଆକୃଷ୍ଟ କରିଥିଲା ତାହା ଏଥିରେ ଅତି ସୁଷମିତ ଭାବରେ ବର୍ଣ୍ଣିତ ହୋଇଛି ।

ବିଦର୍ଭ ଯୁଗେ ଯୁଗେ ଶୋଭାର ଆଧାର ନଗରୀ । ପୁଣି ସେଥିରେ ଜନ୍ମିଥିବା ଜେମାମାନେ ମଧ୍ୟ ବିଶ୍ୱ ସୁନ୍ଦରୀ । ସୁନ୍ଦରୀ ଲୋପାମୁଦ୍ରା ବିଦର୍ଭ ଦେଶର ଜେମା ଥିଲେ । ସେ ନିଜର ସୌନ୍ଦର୍ଯ୍ୟ ଏବଂ ସଦ୍‌ଗୁଣ ଯୋଗେ ଅଗସ୍ତ୍ୟ ମୁନିଙ୍କୁ ବିବାହ କରିଥିଲେ । ନଳ ରାଜାଙ୍କ ପତ୍ନୀ ତ୍ରିଭୁବନର ସୁନ୍ଦରୀ ରାଣୀ ଦମୟନ୍ତୀ ମଧ୍ୟ ବିଦର୍ଭ ଜେମା ଅଟନ୍ତି । 'ଭ୍ରମଯୁକ୍ତ୍ୟୈତତଂ ବିଦର୍ଭଜାନନ ମାରାଜନ—ବର୍ଦ୍ଧମାନକଂ ।'

ରୁକ୍ମିଣୀ ବିଦର୍ଭଜା ଅଟନ୍ତି । ତାଙ୍କର ରୂପ ଗୁଣର ବୈଶିଷ୍ଟ୍ୟ ଜାଣିପାରି ଦ୍ୱାରକାର ବିଭିନ୍ନ ଭାଟମାନଙ୍କ ମଧ୍ୟରୁ ଏକ ଭାଟ କୁଣ୍ଡିନ ନଗରୀର ରାଜଦ୍ୱାରରେ ଉପସ୍ଥିତ ହୋଇ ସେଠାରୁ ଧୀରେ ଧୀରେ ନଗର ମଧ୍ୟରେ ପ୍ରବେଶ ଲାଭକରି ଏପରି ସବୁ ମହନୀୟତାର ସନ୍ଧାନ ପାଇ ପାରିଥିଲା, ଯାହା ଶୋଭାରାଣୀ ରୁକ୍ମିଣୀଙ୍କର ଜନ୍ମଭୂମି ପାଇଁ ଉପଯୁକ୍ତ । କବି ଯଦୁମଣି କିପରି କମନୀୟ, ସୌନ୍ଦର୍ଯ୍ୟ ସମ୍ପନ୍ନ ସ୍ଥାନହେଲେ ସେଥିରୁ ରୁକ୍ମିଣୀଙ୍କ ଜନ୍ମ ସମ୍ଭବ ହେବ ସେଥିପାଇଁ ସେ ସ୍ଥାନକୁ ଅତି ମହାନ୍ କରିବାରେ ଯେପରି ଉଦ୍ୟମ କରିଛନ୍ତି, ସଂସ୍କୃତ ସାହିତ୍ୟର ବର୍ଣ୍ଣନାକୁ ତାଙ୍କ ଶୃଙ୍ଖଳା ଅବା ଟପି ଯାଇଛି ।

ରାଜ ସଭାରେ ଜଣେ କବି ଜଣେ କବିଙ୍କୁ ପଚାରିଲେ,

'କରି ମରମରେ କି ମମତାକୁ—
ରମା ପୋଛୁଛନ୍ତି ହେମ ଲତାକୁ ?'

ଏହାଶୁଣି ଅନ୍ୟକବି କହିଲେ—

ଭୃଗୁଶିଶୁ ଅବତାର ଚୁମ୍ବିଦାକୁ ।
ମୃତ୍ତିକାନ୍ତର ନୋହିଥିଲା ତନୁ
ବଳିଙ୍କ ଦାନ ପାଣି ପାଣି ତହିଁ
ପଡନତ ହେଲା ପତନ ହୋଇ
ମାଟିପାଣି ଧାର ।
ବହୁଛି ଇଚ୍ଛି ପୋଛୁଛେ ଇନ୍ଦିରା ।

କବି କହିଲେ — ବିଷ୍ଣୁଙ୍କର ଶୂକର ଅବତାର ବସୁନ୍ଧରାଙ୍କୁ ମୁହଁରେ ମାଟି ଲାଗିଥିଲା । ସେ ତାଙ୍କ ପ୍ରିୟତମା ଜାୟା ଲକ୍ଷ୍ମୀଙ୍କ ସ୍ତନରେ ଚୁମ୍ବନ ଦେବା ଯୋଗୁଁ ମାଟି ସେଠାରୁ ଛାଡ଼ିନଥିଲା । ମାଧୁର୍ଯ୍ୟଭରା ଚୁମ୍ବନ ଦାଗ ବା ସେ କିପରି ପୋଛିଦେବେ ? ଏହାପରେ ବାମନ ଅବତାର ଆସିଲା । ବଳିଙ୍କ ଦାନ ପାଣିରେ ବିଷ୍ଣୁଙ୍କ ହସ୍ତ ଆର୍ଦ୍ର ହେବା ଯୋଗୁଁ ଅନନ୍ତର ସେ ଲକ୍ଷ୍ମୀଙ୍କ ସ୍ତନ ମର୍ଦ୍ଦନ କରିବାରୁ ଉକ୍ତ ପାଣି ଲାଗି ପୂର୍ବୋକ୍ତ ମାଟି ପାଣିର ଏକଧାର ବକ୍ଷରୁ ନିମ୍ନଗାମୀ ହେଲା । ତେଣୁ ଇଚ୍ଛାକରି ପ୍ରେମ ଲଜ୍ଜାରୁ ସେ ଧାର, ଇନ୍ଦ୍ରିର ପୋଛିଲେ । ପଦ୍ମ କନ୍ୟାର ଯୌନ ସଂଯମ ଏଥିରେ ନିଗୂଢ଼ ଭାବରେ ଅନ୍ତର୍ନିହିତ ରହିଛି । ଏତଦ୍ ବ୍ୟତୀତ ଏ କଳାର ୧୯ଶ ପଦଟି ପାଠିକା ପାଠକ ମାନେ ପଢ଼ିଲେ ଯେଉଁ ଶବ୍ଦବନ୍ଧ ଦେଖିବେ, ତଦ୍ୱାରା ସାମାଜିକ ଜୀବନ ତାଙ୍କ ସମୟରେ କିପରି ଥିଲା ତାର ଏକ ସାଧାରଣ ଚିତ୍ର ଅନୁଭବ କରିବେ ।

ଏହାପରେ ବିଳାସ ପୂର୍ଣ୍ଣ ବର୍ଣ୍ଣନାମାନ ନଗରର ନାଗରିକ ମାନଙ୍କୁ ଯେନି କବି ବର୍ଣ୍ଣନା କରି ତତ୍‌କାଳୀନ ଭୋଗ ବିଳାସର ଅତୁଳ୍ୟ ଚିତ୍ରଣ ଦାନ କରି ଅଛନ୍ତି ।

ରାଜା ଭୀଷ୍ମକଙ୍କ ସମକ୍ଷରେ ଭାଟ କୃଷ୍ଣଙ୍କର ବର୍ଣ୍ଣନା କଲାବେଳେ ଜଗତି ଉପରେ କ୍ରୀଡ଼ାରତା ରୁକ୍ମିଣୀ ତାହା ଶୁଣି କାମାର୍ତ୍ତା ହୋଇ ଅପାଙ୍ଗ ଢ଼ାଳିଥିଲେ । ସଖୀମାନେ କହିଥିଲେ ହାୟ—"ହାୟ ଏ ଯେ ବର୍ଣ୍ଣନା ମାତ୍ର । ଯାହାଙ୍କ କଥା ସେ ଭାଟ କହିଲା, ସେ ଯୋଗକୁ ଏଠାକୁ ଆସି ନାହାନ୍ତି । ନହେଲେ ଜେମାର ଏହି ଅପାଙ୍ଗ ଘାତରେ ମୃତ୍ୟୁ ବରଣ କରିଥାନ୍ତେ ।" ଅନ୍ୟଜଣେ କହୁଛି—କାହିଁକି ଆମ ଜେମାର ଦାସ୍ୟାମୃତ ସ୍ପର୍ଶରେ ସେ ବଞ୍ଚି ନଷ୍ଟପ୍ରାୟ ପଡ଼ିଥାନ୍ତା—ଆଗୋ ବରି ଶୋଭାବରଣୀ ! ଏପରି କାହିଁକି ହେଲୁ ?

ଏହି କଳାରେ ରୁକ୍ମିଣୀଙ୍କର କୃଷ୍ଣଙ୍କ ପ୍ରତି ଆତ୍ମଦାନର ପ୍ରାଥମିକ ଉନ୍ମେଷ ସୂଚିତ ହୋଇଅଛି ।

କବି ପ୍ରଥମ କଳାର ଭଣିତରେ ଜଗନ୍ନାଥଙ୍କ ଚଉରାଶି ଚକ୍ରର ଘୋଡ଼କୁ ବନ୍ଧୁର ଜୟ ଶଙ୍ଖଧ୍ୱନି ସ୍ୱରୂପ ବର୍ଣ୍ଣନା କରିଛନ୍ତି । କିନ୍ତୁ ଏ କଳାରେ ନୀଳଗିରିର ରତ୍ନସିଂହାସନରେ ଆସୀନ ଜଗନ୍ନାଥ ତାଙ୍କ ନନ୍ଦିଘୋଷ ରଥର ଉଚ୍ଚରେ ଅସହାୟ ପାପୀଙ୍କୁ ଯେପରି ଦୁରନ୍ତ ଉଦ୍ଧାର କରିଅଛନ୍ତି, ସେପରି ଗ୍ରନ୍ଥକର୍ତ୍ତାର ଚିନ୍ତା ପଦ୍ମକୁ ତୁଷାର ହୋଇ ନିବାରଣ କରିବାକୁ ନିବେଦନ କରିଅଛନ୍ତି । ତାଙ୍କର ଚିନ୍ତାକୁ ସେ ପଦ୍ମ ସ୍ୱରୂପ କହିବା ଦ୍ୱାରା ପାଠକ ମାନେ ତାଙ୍କର ଆର୍ତ୍ତି ମନରେ ଆହ୍ଲାଦ ଏବଂ ସୌନ୍ଦର୍ଯ୍ୟ କିପରି ପୂରି ରହିଥିଲା ତାହା ଅନୁଭବ କରିବେ । ବିଶେଷରେ ସେ ଗ୍ରନ୍ଥର ପ୍ରଥମଶ୍ଳୋକରେ ପଦ୍ମର ଉତ୍କର୍ଷତା ସ୍ୱୀକାର କରୁ ନ ଥିବାରୁ ଏଠାରେ ମେ ଚିନ୍ତା — ପଦ୍ମ କହିଛନ୍ତି ।

# ଦ୍ୱିତୀୟ କଳା

( ରାଗ—ଆଷାଢ଼ ଶୁକ୍ଳ )

**ମନ ମଗନ କର ଅନଳ୍ପକେ**
**ଏକଳା କଳ୍ପନା କର କଲ୍ପକେ !**
**ବନ୍ଦି ନାରକାରି-କୀର୍ତ୍ତିକୁ ତୁଣ୍ଡେ**
**ବନ୍ଦୀ ଦ୍ୱାରକାରେ ନଥାନ୍ତି ଦଣ୍ଡେ**
**ତହୁଁ ଜଣେ ଭାଟ**
**ଭେଟିଲା ବଦର୍ଭ ନିକଟ ବାଟ । ୧ ।**

**ଅନ୍ୱୟ**—ହେ କଲ୍ପକେ ! ଅନଳ୍ପକେ ମନ ମଗ୍ନ କରି ଏ କଳା କଳ୍ପନା କର । ନାରକାରି—କୀର୍ତ୍ତିକୁ ତୁଣ୍ଡେ ବନ୍ଦି (ବାନ୍ଧୁ) ବନ୍ଦୀ (ମାନେ) ଦଣ୍ଡେ ଦ୍ୱାରକାରେ ନଥାନ୍ତି । ତହୁଁ ଜଣେ ଭାଟ (ଧନେ) ବଦର୍ଭ ନିକଟ ବାଟ(କୁ) ଭେଟିଲା ।

**କଥା**—ହେ ବେଦାଙ୍ଗବିଦ୍ ! ଅଧିକ ଭାବରେ ମନକୁ ବୁଡ଼ାଇ ଏହି ପୂର୍ଣ୍ଣଚନ୍ଦ୍ର ନାମଧେୟ ଗ୍ରନ୍ଥର ଗୋଟିଏ କଳାକୁ କଳ୍ପନା କର । କୃଷ୍ଣଙ୍କ କୀର୍ତ୍ତିକୁ ତୁଣ୍ଡେ ତୁଣ୍ଡେ ବନ୍ଦନା କରିବା ଲାଗି ସେଠାର ଭାଟମାନେ ଦଣ୍ଡେ ହେଲେ ଦ୍ୱାରକାରେ ନଥାନ୍ତି । ସେଥିମଧ୍ୟରୁ ଜଣେ ଭାଟ ଧନେ ବଦର୍ଭ ନାମକ ଦେଶରେ ପ୍ରବିଷ୍ଟ ହେଲା ।

**ଆଲୋଚନା**—ଯେଉଁ ଶୋଭାରାଣୀଙ୍କ ପାଇଁ ଏ ଗ୍ରନ୍ଥ କବି ରଚନା କରି ଅଛନ୍ତି, ତାଙ୍କର ଜନ୍ମଭୂମି କଥା ପଢ଼ିବାରୁ ଏଠାରେ ବେଦାଙ୍ଗବିଦ୍ ବ୍ରାହ୍ମଣମାନେ ଏହା ଭଲ ସମଝିବେ, କାରଣ ତାଙ୍କରଦ୍ୱାରା ଭଗବାନ୍ କୃଷ୍ଣଙ୍କର ରୁକ୍ମଣୀ ଲାଭ ସମ୍ଭବ ହୋଇଛି । ତେଣୁ ସେମାନଙ୍କୁ ଏ ରଚିତ ଗ୍ରନ୍ଥକୁ ଅତି ଗଭୀର ଭାବରେ ନିରୀକ୍ଷଣ କରିବାକୁ ଆହ୍ୱାନ ଜଣାଇଁଛନ୍ତି । ପୁଣି କୃଷ୍ଣଙ୍କର କୀର୍ତ୍ତିଗାଥା କପରି ଶତ ଶତ ସୂତ ପାଠକ ଦେଶ ଦେଶ ବୁଲି ପ୍ରଚାର କରୁଥିଲେ, ତାହା ସୂଚାଇ ଜଣେ ଭାଟ କପରି ବଦର୍ଭ ନଗରର ନିକଟ ପଥକୁ ଲାଭ କରିଥିଲା ତାହା ଜଣାଇଁ ଉଚାଟ ସୃଷ୍ଟି କରୁଛନ୍ତି ।

---

ଶବ୍ଦାର୍ଥ । ମଗନ—ମଗ୍ନ, ବୁଡ଼ାଇ । ଅନଳ୍ପକେ—ପ୍ରଚୁର ଭାବରେ—ଅଧିକ ଭାବରେ । କଲ୍ପକେ—ବେଦବେଦାଙ୍ଗ ବିଦ୍‌ମାନେ, ବେଦାଙ୍ଗ ଗ୍ରନ୍ଥ ବିଦ୍‌ମାନେ । ବନ୍ଦି—ବନ୍ଦନା । ନାରକାରି—ନରକଦୈତ୍ୟ ଅରି, କୃଷ୍ଣ । ବନ୍ଦୀ—ଭାଟ, ସ୍ତୁତିପାଠକ ।

**ନୃପଦ୍ୱାର-ସମୀପରେ ମଞ୍ଜୁଳ**
**ବ୍ରହ୍ମଜାତ ହୀର୍‌-ହରି ଯୁଗଳ**
**କିରଣ-ସମୁଚ୍ଚୟ ଉଦୟତା**
**ଦେଖି ଭ୍ରଲିଲା ଏ ସୁରସରିତା**
**ଶିରେ ମଣ୍ଡିପାଣି**
**ଖରେ କଲା ଗତ ଏ ସ୍ତୁତିଭଣି । ୨ ।**

**ଅନ୍ୱୟ**—( ଉକ୍ତ ରାଷ୍ଟ୍ର ବିଦର୍ଭ ନଗରରେ ପହଞ୍ଚି ) ନୃପଦ୍ୱାର-ସମୀପରେ ବ୍ରହ୍ମଜାତ ହୀର (ଦ୍ୱାରା ଗଠିତ) ମଞ୍ଜୁଳ ହରିଯୁଗଳର କିରଣ ସମୁଚ୍ଚୟ ଉଦୟତା ଦେଖି ଭ୍ରଲିଲା ଏ (ନିଶ୍ଚୟ) ସୁର-ସରିତା (ଅଟେ) । (ତେଣୁ) ଶିରେ ପାଣି ମଣ୍ଡି ସ୍ତୁତିଭଣି ଖରେ ଗତକଲା ।

**କଥା**—ବିଦର୍ଭ ନଗରର ରାଜଦ୍ୱାରରେ ବ୍ରହ୍ମଜାତ ଅତି ଉତ୍କୃଷ୍ଟ ହୀରରେ ଗଠିତ ଦୁଇଟି ସୁନ୍ଦର ସିଂହ ଥିଲେ । ଉକ୍ତ ସିଂହ ଦୁଇଟିର କିରଣମାନ ଏତେ ଶୁଭ୍ର ଏବଂ ଉଜ୍ଜ୍ୱଳ ଥିଲା ଯେ ତାହାର ବିସ୍ତାରରେ ତାହାର ଆଖି ଝଲକିଲା । ତେଣୁ ସେ ନିଶ୍ଚୟ କଲା ଯେ ଏହା ବୋଧହୁଏ ଶୁକ୍ଳ ଗଙ୍ଗାଧାର ହେବେ । ତେଣୁ ସେ ପତିତପାବନୀ ମାନନୀୟା ଗଙ୍ଗା ବୋଲି ଧାରଣା କରି ମୁଣ୍ଡରେ ହାତ ଯୋଡି ସ୍ତୁତି ଗାଇସାରି ଆଉ ଅଧିକ କ'ଣ ଦେଖିବା ଆଶା ରଖି ପୁଣି ଶୀଘ୍ର ଗଲା ।

---

ଶବ୍ଦାର୍ଥ । ମଞ୍ଜୁଳ—ମନୋଜ୍ଞ । ବ୍ରହ୍ମଜାତହୀର—ସର୍ବୋତ୍କୃଷ୍ଟ ହୀର । ହୀର ଚାରିପ୍ରକାର ବର୍ଣ୍ଣଭେଦରେ ଦେଖାଯାଏ । (ବ୍ରହ୍ମଜାତ—ଶୁଭ୍ର, ଉଜ୍ଜ୍ୱଳ । କ୍ଷତ୍ରିୟ ଜାତ—ରକ୍ତବର୍ଣ୍ଣ । ବୈଶ୍ୟଜାତ—ପୀତ ଓ ଶୂଦ୍ରଜାତ—କୃଷ୍ଣବର୍ଣ୍ଣ ) । ହରି—ସିଂହ । ଉଦୟତା—ବିସ୍ତାରତା । ସୁରସରିତା—ଗଙ୍ଗା ।

**ନବୀନ ଘନ ମଘବା ରଞ୍ଜନ**
**ମେଚକ ଜିତ ରୁଚିର ବରନ**
**ବିଗ୍ରହ ପାଦ ଅମ୍ବୁରୁହ ମଧୂ**
**ହର ଗରଜ୍ୱାଳା-ହରଣେ ସାଧୂ**
**ହିମାଦ୍ରି-ଭେଦନୀ**
**ନିର୍ଜ୍ଜର-କୁଞ୍ଜର-ମଦ ମର୍ଦ୍ଦିନୀ । ୩ ।**

**ଅନ୍ୱୟ**—(ଏପରି ସ୍ତୁତିକଲା) (ହେ ଗଙ୍ଗା ଦେବୀ ! ତୁମେ) ମଘବା (ଙ୍କ) ରଞ୍ଜ ନବୀନଘନ (ସଦୃଶ) ମେଚକଜିତ ରୁଚିର ବର୍ଣ୍ଣ ବିଗ୍ରହ (ରେ) ପାଦ ଅମ୍ବୁରୁହ ମଧୂ (ଅଛ) । ହରଗର ଜ୍ୱାଳା ହରଣେ ସାଧୂ (ଅଛ) । (ହେ) ହିମାଦ୍ରି ଭେଦନୀ ! (ତୁମ୍ଭେ) ନିର୍ଜର-କୁଞ୍ଜର-ମଦମର୍ଦ୍ଦିନୀ (ମଧ୍ୟ ଅଛ) ।

**କଥା**—ଏ କ୍ଷେତ୍ରରେ ତୁମ୍ଭେ ଦେବରାଜ ଇନ୍ଦ୍ରଙ୍କୁ ଅତି ଉତ୍କୃଷ୍ଟ ନୂତନ ମେଘ ସଦୃଶ ଦେଖାଯାଉଥିବା ରଙ୍ଗରେ ମୟୂର ଚନ୍ଦ୍ରିକାରୁ ଉତ୍କୃଷ୍ଟ ସୁନ୍ଦର ବର୍ଣ୍ଣବିଶିଷ୍ଟ ମୂର୍ତ୍ତି ବିଷ୍ଣୁଙ୍କର ପାଦପଦ୍ମର ମଧୂ ସ୍ୱରୂପିଣୀ ଅଛ । ତୁମ୍ଭେ ହିଁ ପରମେଶ୍ୱର ଶିବଙ୍କର ବିଷଜ୍ୱାଳା ହରଣ କରିବାରେ ଶ୍ରେଷ୍ଠ ଅଛ । ହେ ହିମାଳୟ-ପର୍ବତ-ଭେଦକାରିଣି ! ତୁମ୍ଭେ ଦେବ ହସ୍ତୀ ଐରାବତର ଗର୍ବ ହିଁ ମର୍ଦ୍ଦନ କରିଥିଲ ।

ଭାଟକୁ ଶୁଭ୍ର ହୀରକମୟ ସିଂହ ଦୁଇଟିର କିରଣ ଏପରି ମୁଗ୍‌ଧ କରିଥିଲା ଯେ ସେ ଉକ୍ତ କିରଣ ଧାରାକୁ ପାବନୀ ଗଙ୍ଗାଧାରା ମନେକରି ଏପରି ସ୍ତୁତି ଗାଇଥିଲା ।

---

ଶବ୍ଦାର୍ଥ । ମଘବା—ଇନ୍ଦ୍ର । ରଞ୍ଜନ—ରଞ୍ଜ; ଉତ୍କୃଷ୍ଟ । ମେଚକ—ମୟୂରଚନ୍ଦ୍ରିକା ବରନ—ବର୍ଣ୍ଣ । ଅମ୍ବୁରୁହ—ପଦ୍ମ । ଗର—ବିଷ । ସାଧୂ—ଶ୍ରେଷ୍ଠ । ନିର୍ଜର—ଦେବତା । ମଦ—ଗର୍ବ ।

ଯଥା ପ୍ରାବୃଟ ସମୟେ କଦମ୍ବ
ତଥା କରି ତନୂରୁହ କଦମ୍ବ
କୁଣ୍ଡି ନପ୍ରର ପୂର୍ବଦ୍ୱାରେ ମିଳୁଁ
ଖଣ୍ଡେଲା ପଲକଦୃକ ଯୁଗଳୁ
ଚଣ୍ଡୀଙ୍କ ମନ୍ଦିର
ଲୋକଙ୍କ ମନେ ଜନ୍ମିଲା ବନ୍ଦୀର । ୪ ।

**ଅନ୍ୱୟ**— (ସେ ଭାଟ) କୁଣ୍ଡିନ ପୁର ପୂର୍ବଦ୍ୱାରେ ମିଳୁଁ (ଯଥା) ପ୍ରାବୃଟ ସମୟେ କଦମ୍ବ (ଫୁଟଇ) ତଥା (ତାର) ତନୂରୁହ କଦମ୍ବକରି ଦୃକ୍‌ଯୁଗଳୁଁ ପଲକ ଖଣ୍ଡିଲା । ଚଣ୍ଡୀଙ୍କ ମନ୍ଦିର ଲୋକଙ୍କ ବନ୍ଦୀର ମନେ ଏପରି ଜନ୍ମିଲା—

**କଥା**—ଭାଟ ବିଦର୍ଭ ରାଜଧାନୀ କୁଣ୍ଡିନ ନଗର ପୂର୍ବ ଦ୍ୱାରରେ ପ୍ରବେଶ କରି ତହିଁର ଶୋଭା ଦେଖି ବର୍ଷାକାଳରେ ଯେପରି କଦମ୍ବ ଫୁଟି ଉଠେ ସେପରି ତାର ଅଙ୍ଗର ଲୋମମାନ ଫୁଟି ଉଠି ରୋମାଞ୍ଚ ହେବାରୁ, ନେତ୍ର ଯୁଗଳରେ ତାର ପଲକ ପଡ଼ିଲା ନାହିଁ । ପୁନଶ୍ଚ ଅତି ରମଣୀୟ ବିକଟବର୍ତ୍ତୀ ନଗରର ଅଧିଷ୍ଠାତ୍ରୀ ଚଣ୍ଡୀଙ୍କ ମନ୍ଦିର ଦେଖି ବନ୍ଦୀର ମନରେ ଏପରି ଭାବନା ଆସିଲା—

**ଆଲୋଚନା**—"ଅମଳକାଂକୁ ଗୃହୀଁ ତନୁରୁହ ଫୁଲଇ" (ବିଶ୍ୱନାଥ)
"ଜଡ଼ଉଦ୍ଧକ୍ଷତାଂ ପକ୍ଷ୍ମକୃତ୍‌ଦୃଶାଂ" (ଭାଗବତ)

---

ଶବ୍ଦାର୍ଥ । ତନୂରୁହ—ଅଙ୍ଗ ଉଦ୍‌ଗମ ଲୋମ । ତନୂରୁହ—ଅଙ୍ଗଲୋମ । କଦମ୍ବ—ସମୂହ । ଦୃକ୍—ଚକ୍ଷୁ । ପଲକ ଖଣ୍ଡେଲା—ପକ୍ଷ୍ମପାତ ନ ହେଲା ।

**ଉଚ୍ଚନ୍ତି ପୁରାଣେ କମର ସରୁ**
**ଅଛନ୍ତି ଅମର ଆଶ୍ରୟ ମେରୁ**
**ତପନୀୟ ଅପଘନ ନଘନ**
**ଖଣ୍ଡେ ଉଡ଼ାଇ ନେଇଛି ପବନ**
**ସେ ହୋଇଛି ଲଙ୍କା**
**ଏ ଧରେ ସେ ଧର ବରନ ଶଙ୍କା । ୫ ।**

**ଅନ୍ୱୟ**— ତପନୀୟ ନଘନ ଅପଘନ ଅମର—ଆଶ୍ରୟ—ମେରୁ କମରସରୁ ଅଛନ୍ତି (ବୋଲି ପୁରାଣେ ଉଚ୍ଚନ୍ତି । (ତହୁଁ ( ଖଣ୍ଡେ ପବନ (ଯାହା) ଉଡ଼ାଇ ନେଇଛି ସେ ଲଙ୍କା ହୋଇଛି । (କିନ୍ତୁ) ସେ ଧର ବରନ ଶଂକା ଏ (ମନ୍ଦର) ଧରେ ।

**କଥା** - ସ୍ୱର୍ଣ୍ଣଦ୍ୱାରା ନିର୍ମିତ ଶରୀର, ଦେବତାମାନଙ୍କର ଆଶ୍ରୟ ସ୍ଥଳୀ ମେରୁ ପର୍ବତର ଅଣ୍ଟା ସରୁ ବୋଲି ପୁରାଣରେ ବର୍ଣ୍ଣନା ଅଛି । ପୁନଶ୍ଚ ସେଥିରୁ ପବନରେ ଯାହା ଉଡ଼ିଯାଇଛି ତାକୁ ସ୍ୱର୍ଣ୍ଣ ଲଙ୍କା କହନ୍ତି । କିନ୍ତୁ କୁଣ୍ଡିନ ପୁରର ଏ ଚଣ୍ଡୀ ମନ୍ଦର ଉକ୍ତ ମେରୁ ପର୍ବତର ରୂପ ପ୍ରାପ୍ତ ଧାରଣା ଆସୁଛି । କିନ୍ତୁ ମେରୁ ଖଣ୍ଡିଆ ଏବଂ ଅଣ୍ଟା ସରୁ ଥିବାରୁ ଏହାଠୁଁ ନ୍ୟୂନ ଜଣା ଯାଉଛି ।

**ଆଲୋଚନା**—କାଞ୍ଚନ ମୟ ମେରୁ ପର୍ବତ ଏ ଚଣ୍ଡୀ ମନ୍ଦର ପରି ଅକ୍ଷୁଣ୍ଣ ନୁହେଁ ।

---

ଶବ୍ଦାର୍ଥ । କମର—କଟି । ତପନୀୟ—କାଞ୍ଚନ । ନଘନ—ଘଞ୍ଚ । (ନଘନ କେଶ । ଅପଘନ—ଅଙ୍ଗ । ଧରେ—ଧାରଣ କରେ । ଧର—ପର୍ବତ । ବର୍ଣ୍ଣ—ରୂପ । ଶଙ୍କା ସମ୍ଭାବନା ।

**ଭୁଜଙ୍ଗ ପ୍ରସଙ୍ଗେ ଏହା ସଙ୍ଗେ ସାଥି**
**ନ ସର୍କ୍ଷେ ଅର୍ଜୁନ ଗରୁତ୍ତ ରଥୀ**
**ମସ୍ତକ ନ୍ୟସ୍ତ କଳସାଗ୍ର ଛାୟା**
**ପତନ ଗାତ୍ର ବଧୂଅଙ୍କ ମାୟା**
**ନମି ଉଗ୍ରାଣୀ କ**
**ଗମି ଦେଖିଲା ନଗ୍ର ଅଗ୍ରଣୀକ । ୭ ।**

**ଅନ୍ୱୟ**— ଅର୍ଜୁନ ଗରୁତ—ରଥୀ ଭୁଜଙ୍ଗ ପ୍ରସଙ୍ଗେ ଏହା ସଙ୍ଗେ ସାଥି ନ ସର୍ଜେ । ବଧୂ ଅଙ୍କ ମାୟା (ଅଟେ) । (କିନ୍ତୁ ଏ ମନ୍ଦିର) ଗାତ୍ର ମସ୍ତକ ଅଗ୍ର ନ୍ୟସ୍ତ କଳସ ଚ୍ଛାୟା ପତନ (ବୋଲି କହିବା ଠିକ ଅଟେ ।) (ଏପରି ମହାନ୍ ମନ୍ଦିରରେ ବିରାଜିତା) ଉଗ୍ରାଣୀ କ ନମି (ସେ ଭାଟ) ଗମି ନଗ୍ର ଅଗ୍ରଣୀକ ଦେଖିଲା ।

**କଥା**—ଶ୍ୱେତପକ୍ଷ ବିଶିଷ୍ଟ ହଂସ ବାହନ ବ୍ରହ୍ମା ଏହି ମନ୍ଦିରର ଉଚ୍ଚତା ସମ୍ପର୍କରେ ଏହାର ସମକକ୍ଷ କରି କାହାକୁ ସୃଷ୍ଟି କରି ନାହାନ୍ତି । ଚନ୍ଦ୍ରମାର ଲାଞ୍ଛନ ନେଇ ଯେଉଁ କଥା ସବୁ ଶୁଣାଯାଏ ତା ସବୁ ଭ୍ରାନ୍ତିମୂଳକ ଅଟେ । କିନ୍ତୁ ଏହି ମନ୍ଦିର ଦେହସ୍ଥ ମସ୍ତକ ଅଗ୍ରରେ ନ୍ୟସ୍ତ କଳସର ଚ୍ଛାୟା ଉକ୍ତ ଚନ୍ଦ୍ରମାରେ ପଡ଼ୁଛି ବୋଲି କହିଲେ ଠିକ୍ ହେବ । ଏହିପରି ଏକ ପ୍ରସିଦ୍ଧ ମହାନ ମନ୍ଦିରରେ ବିରାଜିତା ଚଣ୍ଡୀଙ୍କୁ ନମସ୍କାର କରି ସେ ଭାଟ ଗମନ କରି ନଗର ମଧ୍ୟରେ ଅଗ୍ରଗଣ୍ୟ ବ୍ୟକ୍ତି କଟକଙ୍କୁ ଦେଖିଲା ।

ଶବ୍ଦାର୍ଥ—ଅର୍ଜୁନ—ଶୁକ୍ଳ । ଗରୁତ—ପକ୍ଷ । ରଥୀ—ରଥାରୂଢ଼ । ଅଙ୍କ—ଲାଞ୍ଛନ । ମାୟା—କପଟ, ଭ୍ରାନ୍ତି । ଉଗ୍ରାଣୀ—ଚଣ୍ଡୀ, ପାର୍ବତୀ ।

**ପୀଠେ ହୋଇଛି ସ୍ୱରୁ ଗାରୁତ୍ମତ**
**ସାତକୁମ୍ଭେ ସ୍ତମ୍ଭ ଆରମ୍ଭ ବନ୍ତ**
**ଶିରେ ମନୋରମ ବଦ୍ରୁମ ଶ୍ରେଣୀ**
**ମୀନାଚିତ୍ର ସୁନାପତ୍ର ଛାଆଣି**
**ପାଣିକର ପବ**
**ପାଣିରତ୍ନେ ପାଣିପାଟିଆ ଛବ । ୭ ।**

**ଅନ୍ୱୟ**—ସ୍ୱରୁ ଗାରୁତ୍ମତ ପୀଠେ (ଖଚିତ) ହୋଇଛି । ସାତକୁମ୍ଭେ ସ୍ତମ୍ଭ ଆରମ୍ଭବନ୍ତ ହୋଇଛି । ଶିରେ ମନୋରମ ବଦ୍ରୁମ ଶ୍ରେଣୀ (ସଜ୍ଜିତ ଅଛି) । ଛାଆଣି ସୁନାପତ୍ରମାନଙ୍କରେ ମୀନାଚିତ୍ର (ହୋଇଛି) । ପାଣିକରପବ ଏବଂ ପାଣିରତ୍ନେ (ସେ ନଗରର ଗୃହମାନଙ୍କର) ପାଣିପାଟିଆ ଛବ (ରମଣୀୟ ହୋଇଛି ।)

**କଥା**—ମନୋହର ଗରୁଡ଼ୋଦ୍‌ଗାର ମରକତ ମଣିରେ ସେ ନଗରର ଘରମାନଙ୍କର ପୀଢ଼—ସ୍ୱନ୍ଦମାମାନ ଖଚିତ ହୋଇଛି । ସୁବର୍ଣ୍ଣରେ ତହିଁର ସ୍ତମ୍ଭମାନ ଗଢ଼ାହୋଇଛି । ଅଗ୍ରଭାଗରେ ମନୋରମ ପୋହଳାଶ୍ରେଣୀ ସଜ୍ଜିତ ଅଛି । ଉକ୍ତ ଗୃହମାନଙ୍କରେ ଛାଆଣି ହୋଇଥିବା ସୁନାପାତ୍ରମାନଙ୍କରେ ମୀନା ସ୍ୱରୁଶିଳ୍ପ—କାମ ଫୁଟାଇ ଦିଆଯାଇଛି । ବହୁମୂଲ୍ୟ ଉତ୍କୃଷ୍ଟ ହୀରା ଓ ମୁକ୍ତା ପ୍ରଭୃତିଦ୍ୱାରା ସେ ଘରମାନଙ୍କର ପାଣିପାଟିଆ ଛବ ଏକାନ୍ତ ଶୋଭା ପାଉଛି ।

---

ଶବ୍ଦାର୍ଥ । ଗାରୁତ୍ମତ—ଗରୁଡ଼ଙ୍କ ଶ୍ଳେଷ୍ମାରୁ ଏ ମଣି ମିଳେ—ମରକତ—ମଣି । ଗରୁଡ଼ୋଦ୍‌ଗାର ମଣିବିଶେଷ । ସାତକୁମ୍ଭ—ସୁବର୍ଣ୍ଣ । ବଦ୍ରୁମ—ପୋହଳା, ପ୍ରବାଳ । ମୀନା—ସ୍ୱରୁଶିଳ୍ପ, ସୂକ୍ଷ୍ମକଳା । ସ୍ତମ୍ଭ—ଖମ୍ବ । ପୀଠ—ସ୍ୱନ୍ଦମା, ଚଟାଣ । ଆରମ୍ଭ—ସୃଷ୍ଟପାତ, ଗଠିତ । ପାଣିକର ପବ—ବହୁମୂଲ୍ୟ ସ୍ମାରକ । ପାଣିରତ୍ନ—ମୁକ୍ତା ।

**ସଲକ୍ଷଣ କୁମ୍ଭି-କୁମ୍ଭସ୍ଥ ମୋତି-**
**ସୁଧା ଲେପନେ ଧୃତତର ଭିତ୍ତି**
**ଗଜଦନ୍ତେ ଗଜଦନ୍ତ ଅଳସୀ**
**କନ୍ୟା ଲୋକନେ ଅଜ୍ଞାନ ସନ୍ନ୍ୟାସୀ**
**ନାଶିଦେବ ବାନା**
**ଉଡ଼ାଇଛି ସେ ଦୁର୍ଘଟ ଘଟନା । ୮ ।**

**ଅନ୍ୱୟ**—ସଲକ୍ଷଣ-କୁମ୍ଭି କୁମ୍ଭସ୍ଥ ମୋତି—ସୁଧାଲେପନେ ( ସେ ଗୃହ-ମାନଙ୍କର) ଭିତ୍ତି ଧୃତତର ହୋଇଅଛି । ଗଜଦନ୍ତେ (ଯେଉଁ) ଗଜଦନ୍ତ (ନିର୍ମିତ) ଅଳସୀ କନ୍ୟା (ମାନ ରହିଛନ୍ତି ତାହା) ଲୋକନେ ସନ୍ନ୍ୟାସୀ ଅଜ୍ଞାନ (ହେବେ) (ଏବଂ ତାହା ତାଙ୍କ) ବାନା ନାଶିଦେବ । ଯେ (ଏମନ୍ତ) ଦୁର୍ଘଟ-ଘଟନା (ର ବାନା ସେଠି) ଉଡ଼ାଇଛି ।

**କଥା**—ଲକ୍ଷଣବନ୍ତ ହସ୍ତୀମାନଙ୍କ କୁମ୍ଭ ଦେଶରୁ ମୋତି ସଂଗ୍ରହ କରାଯାଇ ତଦ୍ୱାରା ଯେଉଁ ଚୂନ ହେଉଛି ସେଥିରେ ସେ ଘରମାନଙ୍କର କାନ୍ଥମାନ ଧଉଳା ଯାଇଛି । ତେଣୁ ଯେ କାନ୍ଥମାନଙ୍କର ଉଜ୍ଜ୍ୱଳତା ଓ ସୌନ୍ଦର୍ଯ୍ୟ ଅଧିକରୁ ଅଧିକ ଦେଖାଯାଉଛି ।

ସେ ଘରମାନଙ୍କର ଧ୍ୱଜବଡାରେ ନିର୍ମିତ ଗଜଦନ୍ତର ମୃଦୁସ୍ବରଣୀ ଅଲୋକ-ସାମାନ୍ୟ ରୂପବତୀ କନ୍ୟାମାନଙ୍କ ମୂର୍ତ୍ତିର ଯେଉଁ ସୌନ୍ଦର୍ଯ୍ୟ, ତାହା ଦେଖିଲେ ସନ୍ନ୍ୟାସୀମାନେ ହତଜ୍ଞାନ ହୋଇଯିବେ । ଏମନ୍ତକି ନିଜର ଦୀକ୍ଷା ନାଶ କରି ଗୃହୀ ହୋଇ ପଡ଼ିବେ ।

ଉକ୍ତ ଗୃହମାନେ ଏପରି ଦୁର୍ଘଟ ଘଟଣାର ପତାକା ସେଠାରେ ଉଡ଼ାଇ ଚାଲିଛନ୍ତି ।

**ଆଲୋଚନା**—ଗୃହସ୍ଥାଶ୍ରମହିଁ ସବୁ ଆଶ୍ରମର ମୁଖ୍ୟ ଏବଂ ମୂଳ, ତାହା ଏତଦ୍ୱାରା ସୂଚିତ ହେଉଛି । ଗୃହୀ ନଥିଲେ ଅନ୍ୟାନ୍ୟ ଆଶ୍ରମମାନ ତିଷ୍ଠିବା ଅସମ୍ଭବ । ତେଣୁ ଗୃହ ସମସ୍ତଙ୍କୁ ଗୃହୀ ହେବାକୁ ନାରୀ ମାଧ୍ୟମରେ ଟାଣିନେଉଛି ।

---

ଶବ୍ଦାର୍ଥ । କୁମ୍ଭୀ—ହସ୍ତୀ । ସୁଧା—ଚୂନ । ଭିତ୍ତି—କାନ୍ଥ । ଧୃତତର—ସୁନ୍ଦରତର; ଉଜ୍ଜ୍ୱଳତର । ଗଜଦନ୍ତ—ଧ୍ୱଜବଡା । ବାନା—ଦୀକ୍ଷା । ଅଳସୀ—ସ୍ତ୍ରୀର ପ୍ରତିମା । ଲୋକନେ—ଦେଖି ।

**ଓଜେ ବଇଦୂର୍ଯ୍ୟ ତେଜେ ଜଳନ୍ତି**
**ଅଲକ୍ଷରେ ଦକ୍ଷ ଗବାକ୍ଷ ପନ୍ତି**
**ଦେହୁଳି କବାଟେ ଝୁଳ ଉଦ୍‌ଗାର**
**କରନ୍ତି ମାଣିକ୍ୟ ଗରୁଡୋଦ୍‌ଗାର**
**କୁନ୍ଦନ ବନକେ**
**ବନ୍ଦନ ଭୈରବ ତହିଁ ଝଟକେ । ୯ ।**

**ଅନ୍ୱୟ**— ତହିଁ) ଓଜେ ବୈଦୂର୍ଯ୍ୟ ତେଜେ ଜଳନ୍ତି । ଗବାକ୍ଷ ପନ୍ତି ଅଲକ୍ଷରେ ଦକ୍ଷ (ଅଟନ୍ତି) । ଗରୁଡୋଦ୍‌ଗାର ମାଣିକ୍ୟ (ପ୍ରାନ୍ତେ) ଦେହୁଳି ଝୁଳ କବାଟେ ଉଦ୍‌ଗାର କରନ୍ତି । (ଉକ୍ତ କବାଟରେ) କୁନ୍ଦନ ବନକେ ବନ୍ଦନ ଭୈରବ (ମୂର୍ତ୍ତି) ତହିଁ ଝଟକେ ।

**କଥା**—ଉକ୍ତ ଗୃହମାନଙ୍କରେ ସୌନ୍ଦର୍ଯ୍ୟରେ ବୈଦୂର୍ଯ୍ୟ ରତ୍ନମାନେ ବିଶେଷ ତେଜରେ ଜଳୁଛନ୍ତି । ଝରକାଗୁଡ଼ିମାନ ଏପରି ନିର୍ମିତ ହୋଇଛି ଯେ ସେ ସବୁରେ ଅନ୍ତଃପୁର ରମଣୀମାନେ ଅଜ୍ଞାତରେ ରହି ମଧ୍ୟ ବାହାରେ ଘଟଣା ସବୁ ଦେଖିବାରେ ଦକ୍ଷ ହୁଅନ୍ତି । ସେ ସବୁ ଗୃହର ଦ୍ୱାରବନ୍ଧ ସବୁ ଗରୁଡ଼ ବାନ୍ତି ମାଣିକ୍ୟ ଖଣ୍ଡ ଜଳଜଳ କରୁଥିବା କବାଟମାନ ଯିବା ବାନ୍ତି କରୁଛନ୍ତି ପୁନଶ୍ଚ ଉକ୍ତ କବାଟମାନଙ୍କରେ ସୁନେଲି ବନକରେ ଖଚିତ ହୋଇ ବନ୍ଦନୀୟ ଶିବଙ୍କର ଭୈରବମୂର୍ତ୍ତି ଶୋଭା ପାଉଛି ।

**ଆଲୋଚନା**—ଏକ ପଦବିଶିଷ୍ଟ ଭୈରବମୂର୍ତ୍ତି ରେଖାପଞ୍ଚମୀ ବିନ ସର୍ବୋପଦ୍ରବ ସହାର ଲାଗି ଲିଖିତ ହୋଇଥାଏ ।

---

ଶବ୍ଦାର୍ଥ । ଓଜ—ତେଜ, ଦୀପ୍ତି, ଶୋଭା । ବଇଦୂର୍ଯ୍ୟ—ବୈଦୂର୍ଯ୍ୟମଣି । ଅଲକ୍ଷ—ଅଜ୍ଞାତ । ଗବାକ୍ଷ—ଝରକା । ଦେହୁଳି—ଦୁଆରବନ୍ଧ । ପନ୍ତି—ସମୂହ । ଝୁଳ—ଦୀପ୍ତି, ସୁନ୍ଦର, ଜଳଜଳ ଖଣ୍ଡ । କୁନ୍ଦନ—ସ୍ୱର୍ଣ୍ଣ । ବନକ—ରଙ୍ଗ । ଭୈରବ—ଶିବାନୁଚର, ଏକ ପଦ ଦେବତା ବିଶେଷ, କପାଟ ରକ୍ଷାକାରୀ ଶିବମୂର୍ତ୍ତି ।

ନାନା ରତନ ଘଟନାରୁ ରଜେ
ପତନ ହୋଇ ଯତନରେ ସେଯେ
ବୃତ୍ତି କରନ୍ତି ମୃତ୍ତିକା ଗୁପ୍ତି
ସ୍ଫୁଟ ସ୍ଫଟିକରେ ସୋପାନ ପନ୍ତି
ଲୋକେ ଯେ ଅଛନ୍ତି
ମତ୍ସ୍ୟ କେତୁକୁ ଭର୍ତ୍ସନା କରନ୍ତି । ୧୦ ।

**ଅନ୍ୱୟ**—(ସେ ପୁରର) ରଜେ ନାନାରତନ ଘଟନାରୁ ସେ ଯେ ଯତନରେ ପତନ ହୋଇ ମୃତ୍ତିକା ଗୁପ୍ତି ବୃତ୍ତି କରନ୍ତି । (ସେଠାର) ସୋପାନ ପନ୍ତି ସ୍ଫଟିକରେ ସ୍ଫୁଟ (ଅଟେ) । ତହିଁ ଯେ ଲୋକେ ଅଛନ୍ତି (ସେମାନେ ନିଜ ରୂପୋତ୍କର୍ଷ ଯୋଗୁଁ) ମତ୍ସ୍ୟକେତୁକୁ ଭର୍ତ୍ସନା କରନ୍ତି ।

**କଥା**—ସେ ପୁରର ଦାଣ୍ଡର ଧୂଳିସବୁ ନାନାରତ୍ନ କୁନ୍ଦନାଦ ହେବା ଫଳରେ ତହିଁରୁ ସୃଷ୍ଟି ହୋଇଛନ୍ତି । ତେଣୁ ସେ ଧୂଳିସବୁ କେବଳ ରତ୍ନ କଣିକା ଅଟେ । ସେ ସବୁ ଏପରି ଯତ୍ନରେ ଦାଣ୍ଡ ଉପରେ ବିଛା ହୋଇ ରହିଛି ଯେ ଯାହା ମାଟିକୁ ଘୋଡ଼ାଇବା ବୃତ୍ତି କରି ଅଛନ୍ତି । ସେଠାର ପାହାଚ ସବୁ କେବଳ ସ୍ଫଟିକରେ ନିର୍ମିତ ହୋଇ ଫୁଟି ଉଠୁଛି । ତହିଁ ଯେଉଁ ନାଗରିକମାନେ ଅଛନ୍ତି ସେମାନେ ସ୍ୱ ସ୍ୱ ରୂପୋତ୍କର୍ଷ ଯୋଗୁଁ କାମଦେବଙ୍କୁ ତୁଚ୍ଛଜ୍ଞାନ କରି ନିନ୍ଦା କରୁଛନ୍ତି ।

---

ଶବ୍ଦାର୍ଥ । ଘଟନା—ଗଢ଼ିବା, କୁନ୍ଦିବା । ରଜ—ଧୂଳି । ଗୁପ୍ତି—ଘୋଡ଼ାଇବା । ସ୍ଫୁଟ—ଫୁଟିଉଠିବା । ମତ୍ସ୍ୟକେତୁ—କନ୍ଦର୍ପ । ବୃତ୍ତି—ଜୀବିକା । ଭର୍ତ୍ସନା—ନିନ୍ଦା, ଧମକାର ।

ଗଙ୍ଗାକୂଳେ ମୁନି-ସଙ୍କୁଳ ମେଳେ
ଶୁକ ଭାଷିବାରେ ବସି ନିଷ୍ଠାରେ
ପରୀକ୍ଷିତ ଶୁଣା ବୁଝା ରୀତିକି
ପରୀକ୍ଷିଲେ ବନ୍ଦୀ ହେବେ ଅଧିକ
ବରତ ଗଡ଼କ
ଶୁଣିଲା ଜାଣିଲା ନାନା ରୀତିକି । ୧୧ ।

**ଅନ୍ୱୟ**—ଗଙ୍ଗାକୂଳେ ମୁନି—ସଙ୍କୁଳ ମେଳେ ଶୁକ ନିଷ୍ଠାରେ ବସି ଭାଷିବାର (ଯେଉଁ) ପରୀକ୍ଷିତଙ୍କ (ଶୁକ ଶୁଣିଲେ) ଶୁଣାବୁଝା ରୀତିକି ପରୀକ୍ଷିଲେ (ଏ) ବନ୍ଦୀ ଅଧିକ ହେବ । (କାରଣ ସେ, ଗଡ଼କ ବରତ (ଯେଉଁଠାରୁ) ନାନା ରୀତିକି ଜାଣିଲା (ଓ) ଶୁଣିଲା ।

**କଥା**—ଗଙ୍ଗା କୂଳରେ ମୁନି ସମାବେଶ ଗୋଷ୍ଠୀରେ ଶୁକଦେବ ନିଷ୍ଠାଭାବରେ ବସି ଯେଉଁ ଭାଷଣ ଦେଇଥିଲେ ତାହା ପରୀକ୍ଷିତ ଯେପରି ଶୁଣିଥିଲେ ଓ ବୁଝିଥିଲେ ତାର ସଞ୍ଚୟ ଓ ନିଷ୍ଠାଠାରୁ ଏ ବନ୍ଦୀର ବୁଝା ଶୁଣା ଯଦି ତୁଳନା କରାଯାଏ ତେବେ ତାଙ୍କଠାରୁ ଏ ନିଷ୍ଠା ଅଧିକ ହେବ । କାରଣ ସେ ବୁଲି ଗାଁଇ ଗାଁଇ ଏହି ନଗରର ନାନା ପ୍ରଥା, ଘଟଣା କଥା ଶୁଣିଛି ଓ ସମଝିଛି ।

---

ଶବ୍ଦାର୍ଥ । ସଙ୍କୁଳ—ବ୍ୟାପ୍ତ,ବହୁଜନ ସମାକୀର୍ଣ୍ଣ—ଜନବହୁଳ । ମେଳେ—ଗୋଷ୍ଠୀରେ, ମିଳନରେ । ପରୀକ୍ଷିଲେ—ପରୀକ୍ଷା କଲେ । ଅଧିକ—ଅଧିକ ହେବ । ଗଡ଼କ ବରତ—ଗାଁଇ ଗାଁଇ ।

ହୋଇ ଅଛନ୍ତି ବି ଖି ଦେବର-ତ
କୋହୁ ଅଛନ୍ତି ବିଖି ଦେବରତ
ଦେବୀ କପର୍ଦ୍ଦୀ ବିନାୟକ ଭୋଗେ
ଦେବ କପର୍ଦ୍ଦୀ ବି-ନାୟକ ରୋଗେ
ହୋଇବ ତୁମ୍ଭର
ତିର୍ଯ୍ୟକ-ଜୀବ ପ୍ରାୟେ ଭୋଗକର । ୧୨ ।

ଅନ୍ୱୟ- (ସେ ଶ୍ଳେଷିକ-ଜଣେ ଯୁବତୀ ଆଉ ଜଣେ ଯୁବତୀକୁ କହୁଛି) (ତୁମ୍ଭ) ଦେବର ତ ବି-ଖି ହୋଇ ଅଛନ୍ତି ? (ବୋଧହୁଏ) ବିଖି ନୋହୁ ଅଛନ୍ତି । ତାଙ୍କ ରତ (କେଉଁଠି) ଦେବ ? (ଅନ୍ୟ ଜଣକ ଉତ୍ତର ଦେଲା) ଦେବୀ, କପର୍ଦ୍ଦୀ, ବିନାୟକ ଭୋଗରେ ମୁଁ କପର୍ଦ୍ଦୀ ଦେବି । (ତେଣୁ) ରୋଗରେ (ତୁମେ ବି-ନାୟକ (ହେଲେ, ସେ ତୁମ୍ଭର ହୋଇବେ । (ଏବଂ ତାଙ୍କୁ ତୁମ୍ଭେ) ତିର୍ଯ୍ୟକ୍ ଜୀବପ୍ରାୟେ ଭୋଗକର ।

କଥା--ଘାଟ ମଧ୍ୟରେ ପାଣି ମାଜି ଶୁଣିଲା ଜଣେ ରମଣୀ ଅନ୍ୟଜଣେ ରମଣୀକୁ କହୁଛି-ତୁମ ଦେବରତ ଅତି ସୁନ୍ଦର, ବିଶେଷ ପ୍ରସନ୍ନ ଦେଖାଯାଉଛନ୍ତି । ବୋଧହୁଏ ତାଙ୍କୁ ବିଖି ଦେଉନାହିଁ । ଏକା ଏକା ଭୋଗୁଛ କାହିଁକି ? ତାଙ୍କ ଅନୁରକ୍ତି ମତେ ଟିକିଏ ଦିଅ ।

ତହୁଁ ଅନ୍ୟଜଣକ କହିଲା—ହେବେ ଯା କହିଲୁ ଆଲୋ ! ଦୁର୍ଗାଦେବୀ ମହାଦେବ ଏବଂ ଗଣେଶଙ୍କୁ ଭେଟ କରିବାକୁ ମୁଁ ଟଙ୍କା କଉଡ଼ି ଦେବି । ତୋ ସ୍ୱାମୀ ତା ଫଳରେ ରୁଗ୍ଣ ହୋଇ ମଲେ ତୁ ରାଣ୍ଡୀ ହେବୁ । ଫଳରେ ମୋ ଦିଅର ତୋର ହୋଇଯିବ । ତୁ ତେବେ ତାର ଭଉଣୀ ଲେଖା ହେବୁ । ହେଲେ ହେଁ ପଶୁପକ୍ଷୀ ଭିତରେ ଯେପରି ଭାଇଭଉଣୀ ବିଚାର ନାହିଁ, ସେହିପରି ତୁ ତାକୁ ଭୋଗ କରିବୁ ।

---

ଶବ୍ଦାର୍ଥ । ବି-ଖି—ବିଶେଷ ପ୍ରସନ୍ନ । ରତ—ଅନୁରକ୍ତ, ଅଦତ୍ତ । ଦେବୀ—ଦୁର୍ଗା । କପର୍ଦ୍ଦୀ—ଶିବ । କପର୍ଦ୍ଦୀ—କଉଡ଼ି, ଧନ । ବି-ନାୟକ—ସ୍ୱାମୀହୀନ । ତିର୍ଯ୍ୟକ ଜୀବ—ପଶୁପକ୍ଷୀ ।

ବଗ୍ରବଳ୍‌ ଭ୍ରାତୃ-ରମଣୀଙ୍କ
ଭଗ୍ନୀ ଭଙ୍ଗୀ ଭାଷା ଭାଷୁଁ ତାହାଙ୍କ
ସେହି ପରିହାସେ ଭାଷାଏ ଦେଲ
ଗୁଣି ଯାଉଁ ଯାଉଁ ପୁଣି ଶୁଣିଲୁ
ବେଣୀକଳନ ତ୍ରୁଟି
ଏକ ପଦେ ଭାଷା କଥନ ଗୁରୁ । ୧୩ ।

ଅନ୍ୱୟ—(ଘଟ ଏହାଙ୍କୁଣି) ବଧୂର କଳ ଭ୍ରାତୃ-ରମଣୀଙ୍କ ଭଗ୍ନୀ ଭଙ୍ଗୀ ଭାଷା ଭାଷୁଁ ତାହାଙ୍କ ସେହି ପରିହାସେ ଏ ଭାଷା ଦେଲେ । (ଏକଥା ସେ) ଗୁଣି ଯାଉଁ ଯାଉଁ ପୁଣି ବେଣୀ କଳନର ଏକପଦେ ଭ୍ରୁଟିଭାଷା କଥନ ଧ୍ୱନି ଶୁଣିଲେ ।

କଥା—ଘଟ ଏହାଙ୍କୁଣି ବଧୂର କଳ ଭାଉଜଙ୍କୁ ନଣନ୍ଦ ପରିହାସ କରି କହିବାରୁ ତା ଶୁଣି ସେ ପରିହାସ କରି ତାର ଉତ୍ତର କଲେ । ଏକଥା ସେ ଶୁଣିବାର ଯାଉଁ ଯାଉଁ ଅନ୍ୟ ସ୍ଥାନ ମଧ୍ୟରେ ଦୁଇ ଜଣଙ୍କର ଏହାପରି ଦୃଷ୍ଟି ସୂଚକ କଥାଭାଷା ଶୁଣିଲେ ।

ଏଠାରେ ନଣନ୍ଦ ତାର ଲେଖା ଯୋଖା ନଣନ୍ଦ ହେତୁ ଭାଉଜ ଲେଖା ଯୁବତୀଙ୍କୁ ଚାହିଁବାର ସମ୍ବନ୍ଧରେ ପରିହାସ କରିଛନ୍ତି ।

---

ଶବ୍ଦାର୍ଥ । ବଞ୍ଚନା—ନାଶ । ଭ୍ରାତୃରମଣୀ—ଭାଉଜ । ଭଙ୍ଗୀ—ବ୍ୟଙ୍ଗକଥା ।
ଗୁଣି—ମନେ ମନେ ବିଚାରି । ଭଗ୍ନୀ—ନଣନ୍ଦ ।

କମଳା ପାଣି କର କୁମ୍ଭେ ସାଚ
ସର ସେରେ ଯେ କର ପୂରେ ରୁଚ
ଅଣନମନ୍ତ ତେଜ ପଥିକରେ
ବକୃତେ ଆସିବ ଉପବାସରେ
ନ ଦେବଇ ମୁହିଁ
ଚ୍ୟୁତ ଆଗ୍ରହ କିଛି ହୋଇନାହିଁ । ୧୪ ।

**ଅନ୍ୱୟ**—(କ) କମଳା ପାଣି କୁମ୍ଭେ କରି (ତହିଁ) ସାଚ, ସରସରେ, କର୍ପୂରେ (ଦେଇ) ଯେ ରୁଚ ଉକ୍ତ ଅସନମନ୍ତ ତେଜ । ପଥିକରେ (କେବଳ) ଉପବାସରେ ବକୃତେ ଆସିବ । (ତୋ ଇଚ୍ଛିତ ପଦାର୍ଥମାନ) ମୁହିଁ ନ ଦେବଇ । (ଏତ ବସନ୍ତ ସମୟ, ଯେବେ ଇଚ୍ଛାକରୁଛ, ଏ ଯାଏ) ଚ୍ୟୁତ ଅଗ୍ରହ କିଛି ହୋଇନାହିଁ । (ଖ) (ଯଥା) କମଳାପାଣି (ସମ୍ପୃକ୍ତ) କରି କୁମ୍ଭେ (ତଥା ମୋ ସ୍ତନ-ଯୁଗଳ) ସାଚ (ପର ଅଟେ) ରେ (ପଥିକ) କରପୂରେ (ଥାଇ ତାହା ଏକାନ୍ତ) ସରସେ ରୁଚ (ଜନକ ଅଟେ) । ରେ ପଥିକ ! ଅନନ୍ତ ତେଜ । (ଦେଖ) ଶକୃତେ ଉପବାସରେ ଆସିବ । (ତୁମେ କହିବ ସେଠି କେସୋ ନାହିଁ) ମୁହିଁ ନଦେବଇ । (କିନ୍ତୁ ତୁମେ ଜାଣିବା ଉଚିତ୍ ଯେ) ମୁଁ କିଛି ଆଗ୍ରହ ଚ୍ୟୁତ ହୋଇନାହିଁ ।

**କଥା**—(କ) ଗୋଟିଏ କଥାକୁ ସେ ଭାଟ ଦୁଇ ପ୍ରକାର କରି ବୁଝିଲା । ଗୋଟିଏ ଘରେ ନାରୀ ତାର ରୁଗ୍ଣ ସ୍ୱାମୀକୁ କହୁଛି—ମାଠିଏ କମଳାରସ ସାଥିରେ କଦ, ଗାଈ ସରରୁ ସେରେ ସାଙ୍ଗକୁ କର୍ପୂର ମିଶେଇଲେ ଯେ ମଜାହେବ ସେ ପ୍ରକାର ଖାଦ୍ୟ ଭୋଜନ କଥା ଗୁଡ଼ । ସଂସାରରେ ଯାହା ଲୋକେ ଚେଷ୍ଟାକରନ୍ତି ତାହା କର । ଟିକେ ଉପାସ ରହିଲେ ଶରୀର ଏକାବେଳେ ଖରାପ ହୋଇଯିବ । ଦେଖ ତୁମ ଇଚ୍ଛିତ ପଦାର୍ଥ ମୁଁ କେବେ ଏ ରୋଗରେ ଦେବନାହିଁ । ଏବେଣିତ ବଢ଼ିଲ ହୋଇଛି । ଆମ୍ଭ ଆଗ୍ରହ କେଉଁଠି ହେଲାଣି ଯେ ତୁମକୁ ଦେବ ?

(ଖ) ସେହି କଥାକୁ ଅନ୍ୟପ୍ରକାର ସେ ବୁଝିଲା—ଯେପରି ସେ କାମାତୁର-ନାରୀ ଏକ ଯୁବା ପଥିକକୁ ଲକ୍ଷ୍ୟକରି ଅବା କହୁଛି—

"ଲକ୍ଷ୍ମୀଙ୍କ କୋମଳ ହସ୍ତରେ ଯେଉଁ ହସ୍ତୀ ଥାନ୍ତି ତାଙ୍କ କୁମ୍ଭ ପରି ଦେଖ ମୋ ସ୍ତନଯୁଗଳ କ ଉତ୍କୃଷ୍ଟ ଏବଂ ସୁନ୍ଦର ଓ ମଧୁର ଅଟେ । ହାତରେ ଧଇଲେ ହାତ ପୂରି ଉଠିବ । ତାହା ମିଷ୍ଟ ରସରେ ଯେପରି ପୂର୍ଣ୍ଣ, ସେପରି ଏକାନ୍ତ ରୁଚ ଜନକ ଅଟେ ।

“ରେ ପଥିକ ଯୁବା ! ଏହାସତ୍ତ୍ୱେ ତୁ ଅସ୍ୱୀକାର କରିବୁ କାହିଁକି ? ତେବେ କୌଣସି ପୀଡ଼ା ଛଳନାରେ ତୁ ମୋ ବାସ ଗୃହର ଉପାଂଶ ପିଣ୍ଡାକୁ ଆସିବୁ । ତୁ କହିବୁ ମୋଠିର ପଇସା ନାହିଁ । ମୁଁ ଏ ମଜା କପରି କରିବ ? ତୁ ବୁଝିବା ଉଚିତ ଯେ ମୁଁ ଶିଷ୍ଟାଚାର ତ୍ୟାଗକରି ବେଶ୍ୟାବୃତ୍ତି କରୁନାହିଁ । ତେବେ ମୁଁ ତୁବା ପଇସା କାହିଁକି ମାଗିବି ?”

**ଆଲୋଚନା**—“ନଷ୍ଟେ, ମୃତେ, ପ୍ରବ୍ରଜିତେ କ୍ଳୀବେ ଚ ପତିତେ ପତୌ, ପଞ୍ଚସ୍ୱାପତ୍ସୁ ନାରୀଣାଂ ପତିରନ୍ୟୋ ବିଧୀୟତେ ।” ଏହି ଋଷିବଚନ ଅନୁସାରେ ଦୀର୍ଘକାଳ ରୁଗ୍ଣଥାଇ କ୍ଳୀବ ସ୍ୱାମୀକୁ ସାଧାରଣ ସ୍ତ୍ରୀ ଲୋକ ଏକ ପକ୍ଷରେ ସେବା ଏବଂ ଯତ୍ନରେ ହେଲା ନକରି ଅପର ପକ୍ଷରେ ନିଜର ଯୌବନର କୃତ୍ୟ ବା ପ୍ରବୃତ୍ତି ମେଣ୍ଟାଇବାକୁ ଯତ୍ନ କରିବାକୁ କବି ତତ୍‌କାଳୀନ ମନୋବୃତ୍ତିର ସତ୍ୟାର୍ଥ ଏଠାରେ ପ୍ରକାଶ କରିଛନ୍ତି ।

ଶବ୍ଦାର୍ଥ । କମଳାପାଣି—କମଳାରସ, ଲକ୍ଷ୍ମୀଙ୍କ ହସ୍ତଯୁଗଳ । ସାଦ—କନ୍ଦ, ମଧୁର । ସରସେରେ—ସେରେ ଓଜନର ସର । ସରସେ ରେ—ରସ-ସହିତରେ, ମାଧୁର୍ଯ୍ୟରେ । କର୍ପୂରେ—କର୍ପୂରରେ, ହାତ ସ୍ପର୍ଶଯାଏ । ରୁଚି—ସ୍ପୃହା, ପ୍ରୀତି, ଅନୁରାଗ । ଅଶନ—ଭୋଜନ । ଅଶନମନ୍ଥ—ଅଯତ୍ନମଠ ବା ଅମଠ । ପଥିକରେ—ପଥ୍ୟ କର ; ରେ ପଥିକ ! ବିକୃତ—ମନ୍ଦ ଅବସ୍ଥା, ଛଳନା । ଉପବାସ—ଉପାସ; ‘ଉପ-ବାସ’-ବାସ ବା ଗୃହର ଉପାଂଶ, ପିଣ୍ଡା । ଚ୍ୟୁତ—(ଚୂତ)—ଆମ୍ବ; ପତିତ, ନଷ୍ଟ । ଆଚାର—ଶିଷ୍ଟାଚାର, ସାମାଜିକତା ।

ରୋଗୀ ସ୍ୱୟଂଦତୀ ଗୃହ ହେଜିଲା
ଭୃଙ୍ଗେ ଗତ କରୁ କର୍ଣ୍ଣେ ବାଜିଲା
ଘନର ସମସ୍ତ କରି ଚନ୍ଦ୍ରକୁ
ଘନର ସମସ୍ତ ପଦେ ଗୀତକୁ
ବରଚେ ଏପରି
ସ୍ୱର୍ଗାଧିପ—ଚାପ ରୂପ ଚାତୁରୀ ।୧୫।

**ଅନ୍ୱୟ**—(ସେ ଭଟ୍ଟ ଉକ୍ତ ବୃନ୍ଦକୁ ଗୋଟିଏ) ରୋଗୀ (ଏବଂ) ସ୍ୱୟଂଦୂତୀ ଗୃହ (ବୋଲି) ହେଜିଲା । ଭୃଙ୍ଗେ ସେଠାରୁ ଗତ କରୁ (ତା) କର୍ଣ୍ଣେ ବାଜିଲା—(ଜଣେ) ଚନ୍ଦ୍ରକୁ ଘନରସମସ୍ତ କରି ଘନ ସମସ୍ତର ପଦେ ଗୀତକୁ ସ୍ୱର୍ଗାଧିପ ଚାପ ରୂପ ଚାତୁରୀ (ଯେପରି) ଏପରି ବରଚେ ।

**କଥା**—ଉକ୍ତ ଭଟ୍ଟ ପୂର୍ବ ବର୍ଣ୍ଣିତ ଦ୍ୱି ଅର୍ଥ ସମ୍ଭୂତ କଥା ଶୁଣି ଉକ୍ତ ଗୃହକୁ ଗୋଟିଏ ରୋଗୀ ଏବଂ ନିଜ ନାଗରକୁ ନିଜେ ଠକେଇବା ଗୋଟିଏ ପରକୀୟା ନାୟିକା ଘର ବୋଲି ଜ୍ଞାନ କଲା । ସେଠାରୁ ଶୀଘ୍ର ଚାଲି ଯାଉ ଯାଉ ତା କାନରେ ବାଜିଲା— ଜଣେ ତା ଚନ୍ଦ୍ରକୁ ନବଡ଼ ରସିକତାରେ ପୂର୍ଣ୍ଣ କରି ବର୍ଷାକାଳୀନ ପଦେ ଗୀତକୁ ଇନ୍ଦ୍ରଧନୁ ରୂପ ଚାତୁରୀରେ ଏପରି ରଚନା କରୁଛି ।

---

ଶବ୍ଦାର୍ଥ । ସ୍ୱୟଂଦୂତୀ —ଯେଉଁ ପରକୀୟା ନାୟିକା କୌଣସି ଦୂତ ବା ଦୂତୀର ବିନା ସାହାଯ୍ୟରେ ନାୟକ ନିକଟରେ ନିଜର ପ୍ରେମ ପ୍ରକାଶ କରେ । "ବଦତ ଗୁଳ୍ମ ସ୍ୱୟଂ ଦୂତୀ ବିଶ୍ରାମ ଏଠାରେ କରନ୍ତୁ ।" (ବୈ; ବିଳାସ) ଭୃଙ୍ଗେ—ଚଞ୍ଚଳେ । ଘନ—ନିବଡ଼ । ରସମସ୍ତ—ରସପୂର୍ଣ୍ଣ । ଘନର ସମସ୍ତ—ଘନ ସମୟର । ସ୍ୱର୍ଗାଧିପ—ଇନ୍ଦ୍ର । ସ୍ୱର୍ଗାଧିପ ଚାପ—ଇନ୍ଦ୍ର ଧନୁ ।

ଚନ୍ଦ୍ର ତାଳ ତମ୍ବା ଲୁହା ପିତଳ
ବର୍ଦ୍ଦଳରେ କି ଏ କାଳ କାଳ
କ୍ଷୟ କଲା ମୃତ୍ୟୁଞ୍ଜୟ ମୁକୁଟ
ଅମୃତ ପିଣ୍ଡ କରକା ପ୍ରକଟ
ଏଣୁ ବାତ ପିକ
ମୂକ କଲେ ଲୋଲ ଗମନେ ମୂକ । ୧୬ ।

**ଅନ୍ୱୟ**—ଚିତ୍ର ତାଳ (ଦେଇ) ତମ୍ବା ଲୁହା ପିତଳ (ଧାତୁନିର୍ମିତ) ବରଦଳରେ କି ଏ ମୃତ୍ୟୁଞ୍ଜୟ ମୁକୁଟ (ଇନ୍ଦ୍ରଧନୁ ଗଢ଼ା ଯାଉଛି କି ?) କାଳ କାଳ କ୍ଷୟ କଲା ଅମୃତ ପିଣ୍ଡ କରକା ପ୍ରକଟ (ଅଟେ) । ଏଣୁ ବାତ ଲୋଳ ଗମନେ ମୂକ କଲେ (ଏବଂ) ପିକ ମୂକ ହେଲା ।

**କଥା**—ବର୍ଷାକାଳରେ ଆଶ୍ଚର୍ଯ୍ୟ ତାଳରେ ଘଡ଼ଘଡ଼ ଚଡ଼ଚଡ଼ ଧ୍ୱନି ମଧ୍ୟରେ ତମ୍ବା, ଲୁହା, ପିତଳ ଆଦି ଧାତୁ ନିର୍ମିତ ବରଦଳ ନାମକ ବଜ୍ରକାର କୁନ୍ଦାଘରେ ମହାକାଳ ଶିବଙ୍କ ମୁକୁଟ ସ୍ୱରୂପୀ ଚନ୍ଦ୍ରମା କ୍ଷୟ ହୋଇ ଏ ଇନ୍ଦ୍ରଧନୁ ଗଢ଼ାଯାଉଛି କି ? ଯେଉଁ କରକାମାନ ପଡ଼ୁଛି ତାହା ଚନ୍ଦ୍ରମାର ଅମୃତପିଣ୍ଡ କୁନ୍ଦନାଘରେ ଛିଡ଼ି ଛିଡ଼ି ଯାହା ପଡ଼ୁଛି । ଅର୍ଥାତ୍ ଇନ୍ଦ୍ରଧନୁ ଗଢ଼ା ହେବାକୁ ଚନ୍ଦ୍ରମା କୁନ୍ଦାହେବାରୁ ଯାହା ସବୁ ଛିଡ଼ି ପଡ଼ୁଛି ସେଇସବୁ କରକା ବା କୁଆପଥର । ଚନ୍ଦ୍ରମାର ଏ ଦଶା ଦେଖି ତାଙ୍କର ବନ୍ଧୁ ଯୁଗଳ ମଳୟ ପବନ ଏବଂ ପିକ ଏ ଦୁହେଁ ଯଥାକ୍ରମେ ଚଞ୍ଚଳ ଗମନକୁ ମୂକ କରିଛନ୍ତି ଓ ମୂକ ରହିଛନ୍ତି ।

**ଆଲୋଚନା**—ବର୍ଷାକାଳରେ ମନ୍ଦ ମଧୁର ପରିବର୍ତ୍ତରେ ପବନ ଚଞ୍ଚଳ ହୋଇଥାଏ ଏବଂ କୋକିଳ ମୂକ ଥାଏ ବା ବୋବାଏ ନାହିଁ । "ଦର୍ଦ୍ଦୁରା ଯତ୍ର ବକ୍ତାର ସ୍ତତ୍ର ମୌନଂହି ଶୋଭନାମ୍"—ଅନ୍ୟ ଜଣେ କବିଙ୍କର ଉକ୍ତି ଅଟେ ।

---

ଶବ୍ଦାର୍ଥ । ଚିତ୍ର—ଆଶ୍ଚର୍ଯ୍ୟ । ତାଳ—ଧ୍ୱନିରଚନା । ବରଦଳ—ବଜ୍ରାକାର କୁନ୍ଦନ ଅସ୍ତ୍ରବିଶେଷ । (ଏହା ତମ୍ବା ଲୁହା ପିତଳ ମିଶ୍ରିତ ଧାତୁରେ ଗଠିତ ହୁଏ ) । ମୃତ୍ୟୁଞ୍ଜୟ—ଶିବ । ମୁକୁଟ—ପ୍ରସିଦ୍ଧ । ମୃତ୍ୟୁଞ୍ଜୟ ମୁକୁଟ—ଚନ୍ଦ୍ରମା, ଯେପରି ଚନ୍ଦ୍ରଚୂଡ଼, ଚନ୍ଦ୍ରଶେଖର ଇତ୍ୟାଦି । ଅମୃତପିଣ୍ଡ—ଚନ୍ଦ୍ରମାର ଅଙ୍ଗ । କରକା—କୁଆପଥର । ଲୋଳ—ଚଞ୍ଚଳ ।

ଅର୍ଥ ସ୍ୱର ଯେଣେ ପଥ ଲଙ୍ଘନ
ନୁହନ୍ତେ ଶୁଣିଲା ପୁଣି ଏସନ
ଛଇଲୀ ରତନ ଛାମୁଁ ଛଡ଼ାରୁ
ମତ୍ସ୍ୟନେତ୍ରୀ ମିଛ ନୁହେଁ ମଡ଼ାରୁ
ମୁଁ ବଳୀ ଥିଲଇ
ଅବନୀ-ଅବଳା-ଅଳଙ୍କାପାଇ । ୧୭ ।

**ଅନ୍ୱୟ**—( ସେ ସଂଗୀତର ) ଅର୍ଥ (ଏବଂ) ସ୍ୱର ଯେଣେ ପଥଲଙ୍ଘନ ନୁହନ୍ତେ, ପୁଣି ଏସନ ଶୁଣିଲା—

ରେ ଛଇଲୀ ରତନ, ମତ୍ସ୍ୟନେତ୍ରୀ, ଅବନୀଅବଳା-ଅଳଙ୍କାପାଇ ! (ତୋ) ଛାମୁଛଡ଼ାରୁ ମିଛ ନୁହେଁ । ମୁଁ ମଡ଼ାରୁ ବଳ ଥିଲଇ ?

**କଥା**—ପୂର୍ବୋକ୍ତ ସଙ୍ଗୀତର ଅର୍ଥ ଏବଂ ତାର ସ୍ୱର ସମଷ୍ଟି ବାରେ ବାଣ୍ଟ ନ ସରନ୍ତେ ସେ ନିକଟସ୍ଥ ଏକ ଗୃହରୁ ଯାଉ ଯାଉ ପୁଣି ଶୁଣିଲା ଯେ ଜଣେ ପୁରୁଷ ଜଣେ ରମଣୀକୁ କହୁଅଛି—

ରେ ରସିକା ଶ୍ରେଷ୍ଠ ! ମୀନ ନୟନା ! ଅବନୀନାରୀ ସମାଜର ଶିରୋଭୂଷା ! ତୋ ସମ୍ମୁଖରୁ ଦୂରରେ ଥିବାରୁ ମିଛନୁହେଁ ମୁଁ ମୃତ୍ୟୁରରୁ ବଳ ଥିଲଇ ?

---

ଶବ୍ଦାର୍ଥ । ଛଇଲୀ—ରସିକା, ଚତୁରୀ । ରତନ—ରତ୍ନ । ଛାମୁଁ—ସମ୍ମୁଖ । ଛଡ଼ାରୁ—ଅନ୍ତର ହେବାରୁ । ମତ୍ସ୍ୟନେତ୍ରୀ—ମୀନ ନୟନା । 'ଅବନୀ—ଅବଳା—ଅଳଙ୍କାପାଇ'—ପୃଥ୍ୱୀର ନାରୀ ସମାଜର ଶିରୋଭୂଷା ।

ଆସିଲାରୁ ଏ ନ ଦଶିଲା ସତ
ଋଷିରାଶି-ମୋହିନୀ କର ଶଠ
ସକଳବିଦ୍ୟା-ବିନୋଦିନୀ ପର-
କାୟ ପ୍ରବେଶ ବିଧି ଏହୁ ଚୋର
ବିଚାରୁଛ ସିନା
ସେନାନୀପିତୃଶତ୍ରୁ-ସୈନ୍ୟବାନା । ୧୮ ।

**ଅନ୍ୱୟ**—(ବର୍ତ୍ତମାନ ମୂର୍ଚ୍ଛାରୁ) ଆସିଲରୁ ଏ (ଦ୍ୱା) (ଚୋରେ) ସତ ନ ଦଶିଲା (ତୁମ୍ଭ) (ହେ) ଋଷି ରାଶି ମୋହିନୀ ! ଶଠକର । (ହେ) ସେନାନୀ—ପିତୃଶତ୍ରୁ ସୈନ୍ୟବାନା ! (ତୁ) ସକଳ ବିଦ୍ୟା ବିନୋଦିନୀ (ଅଟୁ । ତେଣୁ) ପରକାୟ ପ୍ରବେଶ ବିଧି ଏହୁ ଚୋର (ବୋଲି) ସିନା ବିଚାରୁଛୁ ।

**କଥା**—ମୁଁ ଯେତେବେଳେ କହିଲି ମୂର୍ଚ୍ଛାପନ୍ନ ହୋଇଥିଲି, ତେବେ ତୋ ଛାମୁଁକୁ ଫେରି ପୁଣି ଆସିଲି ଏହା ତୋତେ ସତ ନ ଲାଗିବ । କିନ୍ତୁ ହେ କୋଟି କୋଟି ଋଷି ମୋହକାରିଣୀ ! ଏକଥା ତୁ ଜ୍ଞାନକର (ଜାଣେ) । ହେ କାମଧ୍ୱଜା ! ତୁ ସକଳ ବିଦ୍ୟାରେ ପ୍ରବୀଣା ହେତୁ ପରକାୟ ପ୍ରବେଶ ବିଧିରେ ଚୋର ଆତ୍ମା ମୋ ମୂର୍ଚ୍ଛାରୁ ପୂର୍ବରୁ ତୁ ମୋତେ ବିଚାରିଅଛୁ । ମୁଁ ଏହା ବିଚାର କରି ଅଛି ।

ଶବ୍ଦାର୍ଥ । ରାଶି—ସମୂହ । ଋଷିରାଶି ମୋହିନୀ—ଅସଂଖ୍ୟ ଋଷିଙ୍କ ମୁଗ୍ଧକାରିଣୀ । ଶଠ—[illegible] । ବିନୋଦିନୀ—ବିହାରିଣୀ । ପରକାୟ ପ୍ରବେଶ ବିଧି—ଗୋଟିଏ ତାନ୍ତ୍ରିକ ବିଧି । ସେନାନୀ—କାର୍ତ୍ତିକେୟ । ସେନାନୀ ପିତୃ—ଶିବ । ସେନାନୀ ପିତୃ ଶତ୍ରୁ—କାମଦେବ । ବାନା—ଧ୍ୱଜ, ପତାକା ।

ସ୍ୱର୍ଗ ସରସୀ—ବିଳାସିନୀ—ଗର୍ଭା-
ଳସୀ ରାଜହଂସୀ ଗମନ ଶୋଭା ।
ଧରନ୍ତୁ ଧରାଧର—ପ୍ରୟୋଧରା
ନ ଘଟିଲା ବୋଲି ବୋଲିବୁ ପରା
କହୁନାହୁଁ ମିଛ
ତଳପ ତ୍ରିଦିବ—କଳପ ଗଛ ।୧୯।

**ଅନ୍ୱୟ**—ହେ ଧରାଧର ପ୍ରୟୋଧରା ! (ତୁ) ସ୍ୱର୍ଗ ସରସୀ—ବିଳାସିନୀ—ଗର୍ଭାଳସୀ ରାଜହଂସୀ ଗମନ ଶୋଭା ଧରନ୍ତୁ । (ଏହା) ନ ଘଟିଲା ବୋଲି ପରା ବୋଲିବୁ ? (କିନ୍ତୁ) ମୁଁ ମିଛ କହୁନାହୁଁ । (କାରଣ) (ତୋର) ତଳପ (ଯେ) ତ୍ରିଦିବ କଳପଗଛ (ଅଟେ) ।

**କଥା**—ହେ ଦେବସ୍ତନା ! ତୁ ମାନସସରୋବର—ବିଳାସିନୀ, ଗର୍ଭବତୀ ଆଳସ୍ୟ ପରିପୂର୍ଣ୍ଣ ରାଜହଂସୀର ଧୀର ଗମନ ଶୋଭା ଧରିଅଛୁ । ମୋର ଏ କଥାଟି ଘଟଣା ହେଲ ନାହିଁ ବୋଲି କହିପାରୁ । କାରଣ କାମୁ ପ୍ରବେଶ ହୃଦୟରେ ନିଜ ଆତ୍ମା ପରର ମୂର୍ତ୍ତଦେହରେ ପ୍ରବେଶ ହୋଇଯାଏ । କିନ୍ତୁ ଏ କ୍ଷେତ୍ରରେ ତୁ କହିବୁ ମୁଁ ତ ଅଛି, ମୁଁ କପରି ତୋ ଦେହରେ ପ୍ରବେଶ କଲି ? କିନ୍ତୁ ତୁ ବୁଝିବା ଉଚିତ ଯେ, ମୁଁ ମିଛ କହୁନାହିଁ । କାରଣ ତୋର ଶଯ୍ୟା ସ୍ୱର୍ଗର କଳ୍ପଦ୍ରୁମ ଅଟେ । ଯେପରି ଯାହା ଇଚ୍ଛା କରିବ ତା ମିଳିବ । ତେଣୁ ଶଯ୍ୟା ଇଚ୍ଛାକଲି ତୁ ମୁଁ ଦୁହେଁ ବସି ସେଥିରେ କ୍ରୀଡ଼ା କରିବା । ତେଣୁ ଆମ୍ଭେ ଦୁହେଁ ବସି ଯାଇଛେ ।

**ଆଲୋଚନା**—ହେ ଉନ୍ନତ ସ୍ତନା ! ତୋର ଗମନ ଅତି ଧୀର ଅଟେ । ତୁ ହସିବୁ ଯେ ହେଳାପୂର୍ବ ଅଧରେ ମୋ ଅତ୍ମାତ ମୋଠି ହୋଇଛୁ ମୁଁ ହେଲି କପରି ? କିନ୍ତୁ ତୋର ଶଯ୍ୟା ଏପରି ବିଚିତ୍ର ଯେ ସେଠାକୁ ସହସ୍ର ଯୁବକ ଟାଣି ହୋଇ ଆସନ୍ତି । ତେଣୁ ସେ ସ୍ୱର୍ଗର କଳ୍ପବୃକ୍ଷ ପରି ଅଟେ । ସେ ଶଯ୍ୟା ମୋତେ ବା ନ ବଞ୍ଚାଇବ କାହିଁକି ? ଫଳରେ ଆମେ ଦୁହେଁ ସେ ଶଯ୍ୟାରେ କେଳି କରିବାକୁ ମୁଁ ପୁନର୍ଜୀବନ ଲଭିଛି ।

---

... ସ୍ୱର୍ଗ ସରସୀ—ମାନସସରୋବର । ଗର୍ଭାଳସୀ—ଗର୍ଭବତୀ । ଗର୍ଭଜ ଅଳସ୍ୟ— ... ଶଯ୍ୟାର୍ଥ । ... । ପୟୋଧର—ସ୍ତନ । ତଳ୍ପ—ଶଯ୍ୟା—... ତ୍ରିଦିବ—ସ୍ୱର୍ଗ । ପରିପୂର୍ଣ୍ଣା । ଧରାଧର—ପର୍ବତ ... ଇଚ୍ଛା ଅନୁସାରେ ଫଳ ମିଳିଥାଏ ... କଳ୍ପଗଛ—କଳ୍ପ ବୃକ୍ଷ, ଯାହା ... 

ତମୋଗୁଣୀ କାଳସ୍ୱରୂପୀ ଶିବ—
ନେତ୍ରାନଳେ ଭସ୍ମୀଭୂତ ଯେ ଜୀବ
ତନ୍ୱୀ ତୋ ନେତ୍ରାନ୍ତେ ସଜୀବ ଭଜେ
ଧନ୍ୱୀ ହୋଇ ଜଗଜ୍ଜୟିତା ସର୍ଜେ
ତୁ ଏଡ଼େ ସମର୍ଥ
ନାଗର-ବୈକୁଣ୍ଠନଗର ରଥ । ୨୦ ।

**ଅନ୍ୱୟ** – ତମୋଗୁଣୀ (ଏବଂ) କାଳ ସ୍ୱରୂପୀ ଶିବ ନେତ୍ରାନଳେ ଯେ ଜୀବ ଭସ୍ମୀଭୂତ (ହୋଇଥିଲା) ରେ ତନ୍ୱୀ ! ତୋ ନେତ୍ରାନ୍ତେ (ସେ) ସଜୀବ ଭଜେ । (ଏବଂ) ଧନ୍ୱୀ ହୋଇ ଜଗଜ୍ଜୟିତା ସର୍ଜେ । ତୁ ଏଡ଼େ ସମର୍ଥ ଅଟୁ (ତେଣୁ) ନାଗର (ମାନଙ୍କୁ) ବୈକୁଣ୍ଠ ନଗର(କୁ) (ନେବାରେ ତୁ) ରଥ (ଅଟୁ) ।

**କଥା**— ମନୁଷ୍ୟ ଜୀବକୁ ବଞ୍ଚାଇବାରେ ତୁ କିଛି ଅସମର୍ଥ ନୋହୁ । କାରଣ ତମୋଗୁଣ ବିଶିଷ୍ଟ ସଂସାର ଲୟକାରୀ ଯମପ୍ରାୟ ଶିବଙ୍କ ନେତ୍ରାଗ୍ନିରେ ଯେଉଁ ଜୀବ କୋଟି ଭସ୍ମିଭୂତ ହୋଇଥିଲା, ସେହି କାମଦେବ ହେ ରୂପସି ! ତୋ ନେତ୍ର କୋଣରେ ଅପାଙ୍ଗ ଘାତରେ ଜୀବନ ଲାଭ କରେ । ଏମନ୍ତ କି ତା ଫଳରେ ସେ ଅମୋଘ ପୁଷ୍ପଧନୁ ଧରି ସମଗ୍ର ଜଗତକୁ ଜୟ କରିଥାଏ । ତୁ ଏଡ଼େ ବଡ଼ ସମର୍ଥ ଅଟୁ । ତେଣୁ ରସିକମାନଙ୍କୁ ତାଙ୍କ କଳ୍ପିତ ବୈକୁଣ୍ଠ ନଗରକୁ ନେବାଲାଗି ତୁ ଏକମାତ୍ର ରଥ ଅଟୁ ।

ଶବ୍ଦାର୍ଥ । ତମୋଗୁଣ— ପ୍ରକୃତିର ତୃତୀୟ ଗୁଣ । କାଳ—ଯମ । ତନ୍ୱୀ— କୃଶାଙ୍ଗୀ, କ୍ଷୀଣା । ନେତ୍ରାନ୍ତେ— ଅପାଙ୍ଗେ । ଧନ୍ୱୀ— ଧନୁର୍ଧାରୀ । ଜଗଜ୍ଜୟିତା— ଜଗତ ଜୟ କରିବା କ୍ଷମତା । ସର୍ଜେ—ସୃଷ୍ଟି କରେ । ନାଗର—ରସିକ । ନାଗରବୈକୁଣ୍ଠ, ନଗର—ରୂପାଜୀବା ମନ୍ଦିର ।

ବର ଶଇଳାଦ୍ରି ଉପମା ବ୍ୟାଜ
ପରଶମଣି ନିଶ୍ଚେ ତୋ ଉରଜ
ପରମ ଭିନ୍ନ ବିପତ୍ତି ସମ୍ଭାଳା
କରକା କପାଁ ମୋ ଫାଟି ନଗଲା
ବୁକୁ ଲୁହା ହେଲା
କୁଙ୍କୁମ- ଛଳେ ଦେଖ ସୁନା କଲା । ୨୧ ।

**ଅନ୍ୱୟ**—ତୋ ଉରଜ (କୁ) ବର ଶଇଳାଦ୍ରି ଉପମା (ଦେବା) ବ୍ୟାଜ (ଅଟେ) (ତାହା) ନିଶ୍ଚେ ପରଶମଣି (ଅଟେ) । (ତାହା ହେଣୁ) ପରମ ଭିନ୍ନ ବିପତ୍ତି ସମ୍ଭାଳ (ହେଣୁ) ମୋ କରମ କପାଁ ଫାଟି ନ ଗଲା ? (ଫଳରେ ମୋ) ବୁକୁ ଲୁହା ହେଲା । ଦେଖ (ତାହା କପରି) କୁଙ୍କୁମ ଛଳେ ସୁନା କଲା ।

**ଭାବ**—ତୋ ସୁନ୍ଦର ସ୍ତନ ସହିତ ବଡ଼ ବଡ଼ ପର୍ବତମାନଙ୍କୁ ଉପମା ଦେବା ଛଳନା ମାତ୍ର ଅଟେ । । ମୋ ବିଚାରରେ ତାହା ନିଶ୍ଚୟ ପରଶମଣି । ପର୍ବତ ହୋଇଥିଲେ ବିପତ୍ତି ସମ୍ଭାଳି ପାରି ନଥାନ୍ତା । କିନ୍ତୁ ସେ ଚରମ ପୃଥକ୍ ତୋ ମୋ ହେବା ବିପତ୍ତି ସମ୍ଭାଳ । ଏକଥା ଭାବିଲେ ମୁଁ ଜାଣୁଛି ମୋ ଅଦୃଷ୍ଟ କାହିଁକି ଫାଟି ବା ନଗଲା ? ମୁଁ ଏ ବିରହରେ ବୃକ୍କକୁ ଲୁହାକରି ସମ୍ଭାଳିନେଲି । ହେଇ ଦେଖ, ତୋର ସେହି ସ୍ତନ ପରଶମଣି ହେତୁ ମୋ ଲୁହା ବୁକୁ ସୁନା ହୋଇଛି । କାରଣ ତୋର ସ୍ତନରଞ୍ଜିତ କୁଙ୍କୁମମାନ ଆଶ୍ଲେଷ ହେତୁ ମୋ ବକ୍ଷରେ ଲାଗି ଯାଇଛି ।

---

ଶବ୍ଦାର୍ଥ । ବର—ଶ୍ରେଷ୍ଠ । ଶଇଳାଦ୍ରି—ପର୍ବତ ସମୂହ । ବ୍ୟାଜ—ଛଳନା । ପରଶମଣି—ସ୍ପର୍ଶମଣି—ଯାହା ଛୁଇଁଲେ ସୁନା ହୁଏ । ଉରଜ—ସ୍ତନ । ପରମ—ଚରମ । ଭିନ୍ନ—ପୃଥକ୍ । କରମ—ଅଦୃଷ୍ଟ । ବୁକୁ—ଛାତି, ବକ୍ଷ । କୁଙ୍କୁମ—ହରିଦ୍ରା ରଙ୍ଗ ବିଶିଷ୍ଟ ସୁବାସିତ ଗନ୍ଧ ଦ୍ରବ୍ୟ ।

ଶୃଙ୍ଗାର ରଙ୍ଗ-ତରଙ୍ଗିଣୀ-ଭୃଙ୍ଗ-
ତରଙ୍ଗ-ଲଙ୍ଘଣରେ ଉତ୍ତମାଙ୍ଗ
ଶିଖାରେଖା ନ ଦେଖାନ୍ତି ଜନକ
ହୃଦ ସ୍ଥଳ ଶତଜାଳ କନକ-
ପଦକ ପରାଏ
ହୋଇବାରୁ ଏ ବଚନ ଉଦୟେ । ୨୨ ।

**ଅନ୍ୱୟ**—ଏ ବଚନ ଉଦୟେ ହୋଇବାରୁ (ତାହା) ଶୃଙ୍ଗାର-ତରଙ୍ଗିଣୀ-ଭୃଙ୍ଗତରଙ୍ଗ-ଲଙ୍ଘଣରେ (ଯେଉଁମାନେ) ଉତ୍ତମାଙ୍ଗ ଶିଖା-ରେଖା, ନ ଦେଖାନ୍ତି (ସେହି) ଜନଙ୍କ ହୃଦସ୍ଥଳ ଶତଜାଳ କନକ-ପଦକ ପରାଏ ହେବ ।

**କଥା**—ଏହି ଯେଉଁ କେତୋଟି ପଦ କବିଙ୍କ ଚିତ୍ତରେ ଉଦିତ ହୋଇଛି ତାହା ରତିରଙ୍ଗ-ତରଙ୍ଗିଣୀର ଭୃଙ୍ଗ ତରଙ୍ଗରେ ଯେଉଁମାନେ ଆଣ୍ଠୁ ଓ ହାତଦ୍ୱାରା ଗତି କରି ଲଙ୍ଘଣ ପହଁରା ଦେଉଛନ୍ତି ଏବଂ ସେମାନଙ୍କର ମସ୍ତକସ୍ଥ ଶିଖାର ରେଖା ମଧ୍ୟ ନ ଦେଖାଇ ବୁଡ଼ି ରହିଛନ୍ତି ସେହି ରସିକଶେଖରମାନଙ୍କ ବକ୍ଷସ୍ଥଳରେ ତାହା ଶତ ଦଗ୍ଧ-କନକ-ପଦକ ପରି ଶୋଭା ପାଇବ ।

**ଆଲୋଚନା**—ଯେଉଁ ରସିକମାନେ ଶୃଙ୍ଗାର ରସରେ ବୁଡ଼ିଅଛନ୍ତି ଏ ପଦ କେତୋଟି ସେମାନେ ସ୍ୱୀୟ ବକ୍ଷରେ ପଦକ ପ୍ରାପ୍ତ ହେବେ ।

"ଦଗ୍ଧଂ ଦଗ୍ଧଂ ତ୍ୟଜତି ନ ପୁନଃ କାଞ୍ଚନଂ ଚାରୁବର୍ଣ୍ଣମ୍" ଏପରି ପ୍ରୟୋଗ ଦେଖାଯାଏ ।

---

ଶବ୍ଦାର୍ଥ । ଶୃଙ୍ଗାର ରଙ୍ଗ—ରତିକ୍ରୀଡ଼ା । ତରଙ୍ଗିଣୀ—ନଦୀ । ଭୃଙ୍ଗ ତରଙ୍ଗ—ଉଜ୍ଜ୍ୱଳ ଲହରୀ । ଲଙ୍ଘଣ—ଆଣ୍ଠୁ ଓ ବାହୁଦ୍ୱାରା ଗତି କରିବା, ଏଠାରେ ରତି କାର୍ଯ୍ୟରେ ଆଣ୍ଠୁ, ହାତ ଓ ବାହୁ ଚାଳିତ ହୋଇଥାଏ ବୋଲି କଳ୍ପିତ ହୋଇଛି । ଉତ୍ତମାଙ୍ଗ—ଶିର, ମସ୍ତକ ଶିଖା—ଅଗ୍ରଭାଗ । ଶତଜାଳ—ଶତଦଗ୍ଧ ।

ବିସ୍ତରିଲା ନୋହେ ବଲ୍ଲଭୀପ୍ରେମ
ବିୟୋଗୀ ସଂଯମେ କାହିଁ କୁଙ୍କୁମ
ଉଚ୍ଛ ବଚନ ଉଚ୍ଚାରଣ ପର-
ନାରୀ, ନୋହେ ଏ ସାଧାରଣ ପୁର
ଲାଳସେ ପ୍ରତ୍ୟକ୍ଷେ
ବିଳାସ କରୁ ଦର୍ଶିଲା ଗବାକ୍ଷେ । ୨୩ ।

**ଅନ୍ୱୟ** -(ସେ ଭଣ୍ଡ ବିସ୍ତରିଲା(ଏ) ବଲ୍ଲଭୀ ପ୍ରେମ ନୋହେ । (ବିଶେଷରେ) ବିୟୋଗୀ ସଂଯମେ କୁଙ୍କୁମ କାହିଁ ? ଉଚ୍ଛ ବଚନ ଉଚ୍ଚାରଣ (ରୁ ଜଣାଯାଏ) ପରନାରୀ ନୁହେଁ । (ତେଣୁ) ଏ ସାଧାରଣ ପୁର । (ସେ) ପ୍ରତ୍ୟକ୍ଷେ ଲାଳସ (ଆଣିବାରୁ) ଗବାକ୍ଷେ ବିଳାସ କରୁଥିବାରୁ ତାକୁ) ଦର୍ଶିଲା ।

**କଥା** - ଭଣ୍ଡ ବିସ୍ତର କଲା ଏ ଯେଉଁ ପ୍ରେମ କଥା ମାନ ଶୁଣିଲ ଏ ଗୃହ୍ୟକ ପୁରୁଷ ତାର ନିଜ ଜାୟାକୁ ପ୍ରେମ କହିବାକୁ ନିଶ୍ଚୟ କରିନାହିଁ । କାରଣ ବିରହୀ ପାଇଁ ଯେଉଁ ନାରୀ ସଂଯମ ଆଚରଣ କରିବ, ତାଠି କୁଙ୍କୁମ ଆସିବ କେଉଁଠୁ ? ବିଶେଷରେ ଏ ନାରୀର ବଡ଼ପାଟିରେ କଥାଭାଷାରୁ ଜଣାଯାଉଛି ଏ ପରନାରୀ ହୋଇ ନ ଥିବ । ଏ ସ୍ଥଳ ସାଧାରଣ ଯାତାୟାତ ବେଶ୍ୟା ଘରଅଟେ । ସେ ବିଭବ ବୋଲି ପ୍ରତ୍ୟକ୍ଷ ଭାବେ ଦେଖିବାକୁ ଲାଳସୀ ହୋଇ ଉଠିଲା । ସେମାନେ ବିଳାସ କରୁଥିବା ମଧ୍ୟ ତାକୁ ଜଳାକବାଟ କଣାରେ ଦେଖାଦେଲା ।

---

ଶବ୍ଦାର୍ଥ । ବଲ୍ଲଭୀ—ସ୍ତ୍ରୀ । ବିୟୋଗୀ—ବିରହୀ । ସଂଯମ—ବିରହ ହେତୁ ଇନ୍ଦ୍ରିୟ ନିଗ୍ରହ, ବିଳାସ ତ୍ୟାଗ । ଲାଳସା—ଇଚ୍ଛା । ପ୍ରତ୍ୟକ୍ଷେ—ପ୍ରତ୍ୟକ୍ଷ ଭାବରେ । ଗବାକ୍ଷ—ଜଳାକବାଟି । ବିଳାସ—କ୍ରୀଡ଼ା । ସାଧାରଣପୁର—ଯେଉଁଠାକୁ ସର୍ବସାଧାରଣ ଗତା ଗତ ହୁଅନ୍ତି ।

**ଦଣ୍ଡୀଧୀରପଣ ଖଣ୍ଡିବା ହୀର-**
**ହାର-ପଦକ ମୋତିବୃନ୍ଦ ଝର**
**ମଣ୍ଡିତ ଚଞ୍ଚଳ କର ; ପ୍ରକମ୍ପ**
**ଜାତ କଲା ଏ କଲ୍ପନା ସଂକଳ୍ପ**
**ତାରପତି କଳା**
**ତାରବୃନ୍ଦମଧ୍ୟେ ଖେଳେକି ଦୋଳା । ୨୪ ।**

**ଅନ୍ୱୟ**—(ବିପରୀତ ରତି ଦେଉଥିବାରୁ ସେ ବାର ନାରୀର) ଦଣ୍ଡୀ ଧୀର ପଣ ଖଣ୍ଡିବା (ରେ ପ୍ରବୀଣ) ହୀରହାର (ର) ପଦକ ମୋତିବୃନ୍ଦ ଝର (ରେ) ମଣ୍ଡିତ (ହୋଇ) ଚଞ୍ଚଳକର ପ୍ରକମ୍ପ ଜାତକଲା । ଏ ସଂକଳ୍ପ କଳ୍ପନା (ଯେ) ତାରପତି-କଳା ତାରବୃନ୍ଦ ମଧ୍ୟେ ଦୋଳା ଖେଳେ କି ?

**କଥା**—ଭାଟ ସେ ଜଳାକବାଟି ଫାଙ୍କରେ ଦେଖିଲା ଜାରର ବିନୟରେ ମୁଗ୍ଧହୋଇ ବାରନାରୀ ବିପରୀତ ରତି ଦେଉଛି । ତେଣୁ ସର୍ବତ୍ୟାଗୀ ଦଣ୍ଡଧାରୀ ଯୋଗୀ ମାନଙ୍କର ଧୈର୍ଯ୍ୟବନ୍ଧ ଭାଙ୍ଗିବାରେ ଏକାନ୍ତ ପ୍ରବୀଣ ହୀରହାରର ଖଣ୍ଡିତ ଚନ୍ଦ୍ରମାକୃତି ପଦକଟି ମୋତିଗୁଚ୍ଛା ଝରମାନଙ୍କରେ ମଣ୍ଡିତ ହୋଇ ଦୋହଲୁ ଥିବାରୁ ବିଶେଷ କମ୍ପନ ଜନ୍ମାଉଛି । ଏ ଅଭିପ୍ରାୟ ଭାଟର କଳ୍ପନାକୁ ଆସିଲା ଯେ ସେ ପଦକରୂପୀ ଚନ୍ଦ୍ରମାର ଖଣ୍ଡିତ କଳା ଯେପରି ସେ ହାର ସନ୍ନିବିଷ୍ଟ ହୀରକଣ୍ଡି ରୂପକ ତାରକା ମାନଙ୍କ ମଧ୍ୟରେ ଦୋଳ ଖେଳୁଛି କି ?

**ଆଲୋଚନା**—ଭାଟ ବେଶ୍ୟା ଘରଟିଏ ଦେଖିଲା ।

ଶବ୍ଦାର୍ଥ । ଦଣ୍ଡୀ—ଦଣ୍ଡଧାରୀ ଅଦ୍ୱୈତ ସନ୍ନ୍ୟାସୀ । ଧୀର—ସହିଷ୍ଣୁତା । ଖଣ୍ଡିବା—କାଟିବା । ମୋତିବୃନ୍ଦ ଝର—ମୋତିଝଲକା । ସଂକଳ୍ପ—ମନୋରଥ, ଅଭିପ୍ରାୟ । ତାରପତି—ଚନ୍ଦ୍ରମା । କଳା—ଅଂଶ ବିଶେଷ । ଦୋଳା—ଦୋଳି ।

ଗମନ୍ତେ ତହୁଁ କେତେଦୂରେ ଶୁଣେ
ଜଣକ ଦ୍ୱାରେ ଜଣେ ରଜ୍ଞ ଭଣେ,
ଗଣିକା କନିଆର ସହଚରୀ
ଜାତି କି ମତେ ଦିଅ ବେଗ କରି
ଏ କଥା ପ୍ରସଙ୍ଗ
ଶୁଣି ଭାଳିଲା ଏ କଥା ପ୍ରସଙ୍ଗ । ୨୫ ।

**ଅନ୍ୱୟ**—(ସେ ଭଟ୍ଟ) ଗମନ୍ତେ ତହୁଁ କେତେଦୂରେ, ଶୁଣେ—ଜଣକ ଦ୍ୱାରେ ଜଣେ ରଜ୍ଞ ଭଣେ (ଯେ) ଗଣିକା କନିଆର ସହଚରୀ ଜାତି କି ମତେ ବେଗ କରି ଦିଅ । ଏ କଥା—ପ୍ରସଙ୍ଗ ଶୁଣି ଭାଳିଲା ଏ କଥା ପ୍ରସଙ୍ଗ (ଅଟେ) ।

**କଥା**—ସେ ଭଟ୍ଟ ଯାଉ ଯାଉ ସେଠାରୁ କେତେ ଦୂରରେ ଶୁଣିଲା ଜଣଙ୍କ ଦ୍ୱାରରେ ଜଣେ ରଜ୍ଞ କହୁଛି—

ବେଶ୍ୟାକୁମାରୀ ଝିଅର ସଖୀ ଜାଈ ଫୁଲକୁ ମତେ ବେଗି ଦିଅ । ଜୁଇଫୁଲ ନାମ୍ନୀ କୁମାରୀ କନ୍ୟାର ସଙ୍ଗାତ ଜାଇଫୁଲକୁ ମତେ ବେଗି ଦିଅ । ଅଥବା ଜୁଇଫୁଲ ନାମ୍ନୀ କୁମାରୀ କନ୍ୟାର ସଙ୍ଗାତର ସନ୍ତାନକୁ ମତେ ବେଗ କରି ଦିଅ ।

ଏ କଥୋପକଥନ ଶୁଣି ସେ ଭାବିଲା ଏହା ଦାଗୁଳଙ୍କ ଉକ୍ତି ନିଶ୍ଚୟ ଅଟେ ।

**ଆଲୋଚନା**—ସେଠାରେ, କାମୁକ ଦାଣ୍ଡକ ମଧ୍ୟ ଅଛନ୍ତି ।

---

ଶବ୍ଦାର୍ଥ । ଜାତ—ସନ୍ତାନ, ନାରୀଧର୍ମ, ଜାଇଫୁଲ । ଗଣିକା—ବେଶ୍ୟା ଜୁଇଫୁଲ । କନିଆଁ—ଅବିବାହିତା କୁମାରୀ ବାଳିକା । କଥା ପ୍ରସଙ୍ଗ—ଦାଗୁଳ, କଥୋପ କଥନ । ସହଚରୀ—ସଖୀ ।

ସୁରଭି ସିଦ୍ଧ ବାନ୍ଧବ ପ୍ରସୂନ
ପରିରମ୍ଭା ରମ୍ଭେ ହୋଇ ପ୍ରସନ୍ନ
ଆଗତ ମରୁତ ଶ୍ୱାସ ବିଳାସ
କରୁଁ ଭାଳିଲା ଏ ମାଳିନୀ ବାସ
ତହୁଁ କେତେ ଦୂରେ
ଯାଇଁ ବଜାଇଲା ଶ୍ରୁତ ଏ ଗୀରେ । ୨୭ ।

**ଅନ୍ୱୟ**– ସୁରଭ ସିଦ୍ଧ ବାନ୍ଧବ ପ୍ରସୂନ ପରିରମ୍ଭା ରମ୍ଭେ (ଦେଖି) ପ୍ରସନ୍ନ ହୋଇ, ଆଗତ ମରୁତ ଶ୍ୱାସ ବିଳାସ କରୁଁ (ସେ ଭାଟ) ଭାବିଲା ଏ (ନଷ୍ଟପ୍ରୁ) ମାଳଣୀ ବାସ (ଅଟେ) । ତହୁଁ କେତେ ଦୂରେ ଯାଇଁ (ତା) ଶ୍ରୁତ ଏ ଗୀରେ ବଜାଇଲା ।

**କଥା**—ସୁଗନ୍ଧ ସଂପନ୍ନ ବାନ୍ଧବ ବୃକ୍ଷ ଯୋଡ଼ ଯୋଡ଼ ହୋଇ ଗୁନ୍ଥାହେବା ମାଳଦେଖି ପ୍ରସନ୍ନ ହୋଇ ଉପସ୍ଥିତ ପବନ ସୁବାସିତ ଥିବାର ଜାଣି ସେ ଭାଟ ଭାବିଲା ଏ ନଷ୍ଟପ୍ରୁ ମାଳଣୀ ଘର ଅଟେ । ସେଠାରୁ କିଛି ଦୂର ଯାଇଁ ତା କାନରେ ଏ କଥା ଶୁଣିଲା—

**ଆଲୋଚନା**—ସେଠାରେ ମ୍ୟାଲ୍ୟାଣୀ ଘର ମଧ୍ୟ ଅଛି ।

---

**ଶବ୍ଦାର୍ଥ** । ସୁରଭି—ବସନ୍ତ କାଳ, ସୁଗନ୍ଧ ଦ୍ରବ୍ୟ । ସିଦ୍ଧି—ସଂପନ୍ନ । ପ୍ରସୂନ—ଫୁଲ । ପରିରମ୍ଭ—ଆଲିଙ୍ଗନ । ଆରମ୍ଭ—ସୂତ୍ରପାତ । ପ୍ରସନ୍ନ—ପ୍ରଫୁଲ୍ଲ, ସନ୍ତୁଷ୍ଟ । ଶ୍ୱାସ ବିଳାସ—ସୁଗନ୍ଧ, ଶ୍ୱାସମୁଖ । ଆଗତ—ଉପସ୍ଥିତ । ବିଳାସ—ସୁଖଭୋଗ । ଶ୍ରୁତ—କର୍ଣ୍ଣ । ଗୀର—ଭାଷା ବଜାଇଲା—ଶବ୍ଦାଇଲା ।

ପୂର୍ଣ୍ଣଚନ୍ଦ୍ର-ପୀଡ଼ା ବଢ଼ିବା ଦେହେ
ପୂର୍ଣ୍ଣଚନ୍ଦ୍ର ଲୋଡ଼ା ସର୍ବଥା ନୁହେଁ
ଏ ତାପକୁ ତଳ୍ପ ସାରସ-ପକ୍ଷ
ସର୍ଜିବ ସର୍ଜିଛି ସାରସ-ପକ୍ଷ
ପଦ୍ମିନୀ ରସକୁ
ଭଜଁ ଭଜିବ ପଦ୍ମିନୀ ରସକୁ । ୨୭ ।

**ଅନ୍ୱୟ**— ପୂର୍ଣ୍ଣଚନ୍ଦ୍ର ପୀଡ଼ା ବଢ଼ିବା ଦେହେ ପୂର୍ଣ୍ଣଚନ୍ଦ୍ର (ଔଷଧ) ସର୍ବଥା ଲୋଡ଼ାନୁହେଁ । ଏ ତାପକୁ ତଳ୍ପ (ଲାଗି) ସାରସ-ପକ୍ଷ ସର୍ଜିବ । (ଯାହା) ସାରସ ପକ୍ଷ ସର୍ଜିଛି । ପଦ୍ମ ନୀରସକୁ ଭଜ (ସେ ପୀଡ଼ିତ) ପଦ୍ମିନୀରସକୁ ଭଜିବ । (ଏବଂ ତାହାର ପୀଡ଼ା ହରଣ ହେବ) ।

**କଥା**— ଜଣେ ଅନ୍ୟ ଜଣକୁ ଉପଦେଶ ଦେଉଛି— ପୂର୍ଣ୍ଣଚନ୍ଦ୍ରର କୌମୁଦୀ ଯେଉଁ କାମ ବିରହୀକୁ ଜ୍ୱର ଦେଉଛି ତା ଦେହ ଭଲ କରିବା ଲାଗି ମଣିଷ ତିଆରି ରସ ପୂର୍ଣ୍ଣଚନ୍ଦ୍ର ବଟିକା ଔଷଧ ସବୁପ୍ରକାର ପ୍ରୟୋଜନ ନୁହେଁ । ଏହି ଜ୍ୱରତାପ ଲାଗି ଶଯ୍ୟା ସର୍ଜିବ ଶୀତଳ ପଦ୍ମପକ୍ଷରେ— ଯାହାକି ବିଧାତା ସୃଷ୍ଟି କରି ଅଛନ୍ତି । ଉପରନ୍ତୁ, ପଦ୍ମ ମଳିନ ହୋଇ ରାତ୍ର ଆସିଗଲେ ସେ କାମଜ୍ୱର ପୀଡ଼ିତ ଶଶ ଜାତୀୟ ଯୁବକ ପଦ୍ମିନୀ କାନ୍ତାର ମିଷ୍ଟ ରସ ପାଇଯିବ । ତେଣୁ ତାର ପୀଡ଼ା ଦୂର ହୋଇଯିବ ।

ଗାନ୍ଧର୍ବ ବିବାହ ଯେମିତି ସେଠାରେ ସହଯୋଗୀ ଅଛନ୍ତି ।

---

ଶବ୍ଦାର୍ଥ । ପୂର୍ଣ୍ଣଚନ୍ଦ୍ର—ଷୋଡ଼ଶ କଳା ବିଶିଷ୍ଟ ଚନ୍ଦ୍ରମା, ପୂର୍ଣ୍ଣଚନ୍ଦ୍ର ରସ ଜ୍ୱର ସମ୍ବନ୍ଧୀୟ ଔଷଧ । ସାରସ ପକ୍ଷ—ପଦ୍ମପକ୍ଷ, ବ୍ରହ୍ମା । ସର୍ବଥା—ସବୁପ୍ରକାରେ । ସାରସ—ହଂସ । ପକ୍ଷ—ବାହନ । ତଳ୍ପ—ଶଯ୍ୟା । ନୀରସ—ଅପ୍ରୀତିକର, ମଳିନ । ପଦ୍ମିନୀ—ପଦ୍ମିନୀ ଜାତୀୟା କନ୍ୟା । ରସ—ପ୍ରେମ ।

ଇଚ୍ଛିଲି ଏତିକି ଛଳ-କଥନ;
କରୁଛି ମନ୍ମଥ କା'ରେ ମଥନ
ଯାଉଛି କିଛି ନେଣେ ହେଲି ନ୍ୟାସ
ମୋଢ଼ ବନ୍ଧନ ଭଜି ଷଡ଼କୁଶ
ଅକ୍ଷତ ଅକ୍ଷତ
ତିଳ ଜଳ ଯୋଗେ ହୋଇଛି ପାତ । ୨୮ ।

**ଅନ୍ୱୟ**—(ସେ ଭଟ୍ଟ) ଏତିକି (ସେ) ଛଳ-କଥନ (ରୁ) ଇଚ୍ଛିଲି (ଯେ) ମନ୍ମଥ କାରେ ମଥନ କରୁଛି । (ସେ) କିଛି (ଜ୍ୱର) ଯାଇଛି (ତା) ନେଣେ ନ୍ୟାସ ହେଲି ମୋଢ଼ ବନ୍ଧନ ଭଜ ଷଡ଼କୁଶ ଅକ୍ଷତ ଅକ୍ଷତ ତିଳଜଳ ଯୋଗେ ପାତ ହୋଇଛି ।

**କଥା**—ସେ ଭଟ୍ଟ ଉକ୍ତ ଚାତୁରୀ ପୂର୍ଣ୍ଣ କଥା ଭାଷାରୁ ଜାଣି ଭାବିଲି ଯେ କାମଦଣ୍ଡ ଦ୍ୱାରା କାହାକୁ ଜ୍ୱର ହେଉଛି । ସେ ଏଠାରୁ କିଛି ଦୂର ଯାଇଛି ତା' ଆଖିରେ ପଡ଼ିଲି ଯେ ଠାଏ ଛ'ଟି କୁଶ ମୋଟକ, ନଖୁଣ ଅରୁଆ ଚାଉଳ ଏବଂ ରାଶି ଜଳ ମିଶି ପଡ଼ିଅଛି ।

ଏହି ଛ'ଟି କୁଶ ମୋଢ଼ା, ଅରୁଆ ଚାଉଳ, ରାଶିଜଳ ତର୍ପଣ ବିଧିରେ ଥାଏ । ତେଣୁ ସେ କୌଣସି ବ୍ରାହ୍ମଣ ପିଣ୍ଡାହ୍ନି ଦେଖିଥିଲି ।

---

ଶବ୍ଦାର୍ଥ—ଇଚ୍ଛିଲି—ଭାବିଲି । ଛଳ—ଚାତୁରୀ, କୌଶଳ । କଥନ—କଥାଭାଷା ମନ୍ମଥ—କାମଦେବ । ମଥନ—ଦଣ୍ଡ । ନ୍ୟାସ—ନିକ୍ଷେପ, ସ୍ଥାପନ । ମୋଢ଼ବନ୍ଧନ—କୁଶକୁ ନିର୍ଦ୍ଦିଷ୍ଟ ନିୟମରେ ବୁଲାଇ ମୋଟକ ଗଢ଼ାଯାଏ ଏହା ତର୍ପଣ, ବୈଶ୍ୱଦେବ ଶ୍ରାଦ୍ଧାଦି କାର୍ଯ୍ୟରେ ଲାଗେ । ଅକ୍ଷତ—ନଖଣ । ଅକ୍ଷତ—ଚାଉଳ । ପାତ—ପଡ଼ିବା । ତିଳ—ରାଶି ।

ହଂସ ଗରୁଡ ବୃଷାରୂଢ଼ ଦେବୀ
ମୂର୍ତ୍ତି ଶବେ ଭିତ୍ତି ଭଜିଛୁ ଛବି
ସେ ବାସେ ବସି ବିଳସିବା ବ୍ୟକ୍ତି
ବକ୍ତି ବାକ୍ୟେ ସୁଧା ତକ୍ର କରନ୍ତି
ତାଙ୍କୁ ନମୁଁ ଯାଇ
ଉଚ୍ଚାରିଲେ ସେ କୃତାଞ୍ଜଳି ହୋଇ । ୨୯ ।

**ଅନ୍ୱୟ**—(ସେ ଗୃହରେ) ଭିତ୍ତି ହଂସ, ଗରୁଡ଼, ବୃଷାରୂଢ଼ (ଏବଂ) ଦେବୀ ମୂର୍ତ୍ତି ଶବେ ଛବି ଭଜୁଛି । ସେ ବାସେ ବିଳସିବା ବ୍ୟକ୍ତି ବସି (ତାଙ୍କ) ବଚନ ବାକ୍ୟେ ସୁଧା ତକ୍ର କରନ୍ତି । ଯାଇଁ ତାଙ୍କୁ ନମୁଁ ସେ କୃତାଞ୍ଜଳି ହୋଇ ଉଚ୍ଚାରିଲେ ।

**କଥା**—ସେ ଗୃହର କାନ୍ଥ ବ୍ରହ୍ମା, ବିଷ୍ଣୁ, ଶିବ ଏବଂ ଦୁର୍ଗାଙ୍କ ମୂର୍ତ୍ତି ଚିତ୍ରଣରେ ଛବି ପ୍ରାପ୍ତ ଦେଖାଯାଉଛି । ଏବଂ ସେ ଗୃହରେ କାରବାର କରୁଥିବା ବ୍ୟକ୍ତି ବସି ରହି ଯେଉଁ ପରିହାସ କଥା କହନ୍ତି, ତାହା ଏତେ ମଧୁର ଯେ ତା ତୁଳନାରେ ଅମୃତ ଆମ୍ବିଳା ପରି ଜଣାଯିବ । ତାଙ୍କ ସମ୍ମୁଖକୁ ଯାଇ ସେହି ପୂଜ୍ୟ ଜନଙ୍କୁ ନମସ୍କାର କରନ୍ତେ ସେ ହସ୍ତଦ୍ୱୟ ଅଞ୍ଜଳି କରି ଉଚ୍ଚାରଣ କଲେ ।

---

ଶବ୍ଦାର୍ଥ । ଭିତ୍ତି—କାନ୍ଥ । ହଂସାରୂଢ଼—ବ୍ରହ୍ମା । ଗରୁଡ଼ାରୂଢ଼—ବିଷ୍ଣୁ । ବୃଷାରୂଢ଼—ଶିବ । ଦେବୀ—ଦୁର୍ଗା । ବାସେ—ଗୃହରେ । ବିଳସିବା—ବିହାର କରିବା, ବିରାଜିତ । ବଚନ—ଥଟ୍ଟା, ପରିହାସ । ତକ୍ର—ଆମ୍ବିଳା (ଦହି) । ନମୁଁ—ନମସ୍କାର କରୁଁ । କୃତାଞ୍ଜଳି—ହସ୍ତଦ୍ୱୟ ଅଞ୍ଜଳିବଦ୍ଧ କରିବା ।

**ସିତ ଅସିତ ଅପରାଜି ଛାଉ**
**ମଧ୍ୟେ ଝଳ କଳିକା ଏ ଚମ୍ପାର**
**ଠାଠିକ ଜୂଡ଼ା ଏ କାଠି ପ୍ରବାଳ**
**ମୁକ୍ତ କନ୍ୟାର ନୀଳାଦ୍ରି କୁନ୍ତଳ**
**ସ୍ଥିରୁ ଚର ସ୍ଥିର**
**ଦାରୁ-ବ୍ରହ୍ମରୂପ ନାଶନ୍ତୁ ଅରି । ୩୭ ।**

**ଅନ୍ୱୟ**—ମୁକ୍ତ (ରୂପିଣୀ) କନ୍ୟାର ନୀଳାଦ୍ରି (ରୂପୀ) କୁନ୍ତଳ ଠାଠିକ ଜୁଡ଼ାରେ ସିତ (ଓ) ଅସିତ ଅପରାଜିତାର ମଧ୍ୟେ ଚମ୍ପାର କଳିକା ଏ ଝଳ (ଦିଶେ) (ଏବଂ) ପ୍ରବାଳ କାଠି (କୁ ମିଶାଇ) ଏ ସ୍ଥିର (ରୂପ) ସ୍ଥିରୁଚର (ଦିଶେ) । ସେହି ଦାରୁବ୍ରହ୍ମ ରୂପ (ତୁମ୍ଭ) ଅରି ନାଶନ୍ତୁ ।

**କଥା**—ମୁକ୍ତ ରୂପିଣୀ କନ୍ୟାର ନୀଳାଦ୍ରି ରୂପ କୁନ୍ତଳରେ ଅତିସୁନ୍ଦର ଜୁଡ଼ାରେ ଶୁକ୍ଳ ଏବଂ କୃଷ୍ଣ ବର୍ଣ୍ଣର ଅପରାଜିତା ଫୁଲ ସଦୃଶ ବଳଭଦ୍ର ଏବଂ ଜଗନ୍ନାଥ ମଧ୍ୟରେ ଚମ୍ପକ କଳି ପ୍ରାୟେ ସୁଭଦ୍ରା ଏକାନ୍ତ ସୁନ୍ଦର ଦେଖାଯାନ୍ତି । ଏବଂ ପ୍ରବାଳ କାଠି ରୂପି-ସୁଦର୍ଶନ ଚକ୍ରକୁ ମିଶାଇ ଏ ସ୍ଥିର ରୂପ ସ୍ଥିରୁରେ ଦେଖାଯାଏ । ସେହି ଚତୁର୍ଦ୍ଧା ମୂର୍ତ୍ତି ଦାରୁବ୍ରହ୍ମ ରୂପ ତୁମ୍ଭର ଶତ୍ରୁଙ୍କୁ ନାଶ କରନ୍ତୁ ।

କବି ଜଗନ୍ନାଥଙ୍କର ଏକାନ୍ତ ଭକ୍ତ ଥିବାରୁ ଦ୍ୱାପର ଯୁଗରେ ମଧ୍ୟ ଚତୁର୍ଦ୍ଧା ମୂର୍ତ୍ତି ନୀଳାଦ୍ରିରେ ଥିବା କଥା ବର୍ଣ୍ଣନା କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ଜଗନ୍ନାଥ ଶାଳଗ୍ରାମ ବା ବ୍ରହ୍ମପୂଜା କ୍ଷେତ୍ରରେ ଥିବା କଥା ରାମାୟଣରେ ମଧ୍ୟ ବର୍ଣ୍ଣିତ ଅଛି । ଯଥା— "ଆରାଧୟ ଜଗନ୍ନାଥମିକ୍ଷ୍ୱାକୁ-କୁଳ ଦୈବତଂ" ଶ୍ରୀରାମଙ୍କର ବିଭୀଷଣ ପ୍ରତି ଉକ୍ତି (ଉତ୍ତର କାଣ୍ଡ) ତେଣୁ କବି ଏପରି ପ୍ରଲୁବ୍ଧ ହେବା ସ୍ୱାଭାବିକ ।

---

ଶବ୍ଦାର୍ଥ । ସିତ—ଶୁକ୍ଳ । ଅସିତ—କୃଷ୍ଣ । ଝଳ—ସୁନ୍ଦର । କଳିକାଏ—କଢ଼ିଟିଏ । ଠାଠିକ—ଅତି ରମଣୀୟ । ପ୍ରବାଳ କାଠି—ପୋହଳା ନିର୍ମିତ କାଠି, (ଝରୀକାଠି) । ମୁକ୍ତ—ମୋକ୍ଷ ପରିତ୍ରାଣ, କୈବଲ୍ୟ ।

**ସଉଧ ଅଭେଟ'ବଇରି-ବଧ**
**କରିବ ଭୂଦେବ ବାକ୍ୟ ପ୍ରସିଦ୍ଧ**
**ଏହି·ମନେ କରି ଗମନ କରୁଁ**
**ରବିରଥପଥ—ଚୁମ୍ବନେ ଗୁରୁ**
**ପ୍ରାକାରେ ଦେଖିଲା**
**ଆକାରେ ସେ ଧରି କରି ରଖିଲା । ୩୧ ।**

**ଅନ୍ୱୟ**—(ଭଟ୍ଟ ବସୁଶର୍ମା) ସଉଧ ଅଭେଟ ବଇରି ବଧ (ଏହି) ଭୂଦେବ ପ୍ରସିଦ୍ଧ ବାକ୍ୟ କରିବ । ଏହି (କଥା) ମନେ କରି ଗମନ କରୁଁ ରବିରଥ—ପଥ ଚୁମ୍ବନେ ଗୁରୁ ପ୍ରାକାରେ ଦେଖିଲା (ତା) ଆକାରେ ସେ ଚିତ୍ତରେ ଧରିକରି ରଖିଲା ।

**କଥା**—ଏହା ଶୁଣି ଭଟ୍ଟ ବସୁଶର୍ମା ଏଠି ବା ମୋର ଶତ୍ରୁ କିଏ ଅଛି ? ତେବେ ରାଜ ଭବନ ଦେଖିପାରୁ ନଥିବା ଶତ୍ରୁ ଏହାଦ୍ୱାରା ନାଶ ହେଲା । ତେଣୁ ମୁଁ ଏଥର ଶୀଘ୍ର ରାଜଭବନ ଭେଟିବି । ଏତଦ୍ଦ୍ୱାରା ପୂଜ୍ୟ ବ୍ରାହ୍ମଣଙ୍କ ଆଶୀର୍ବାଦ ବାକ୍ୟ ସଫଳ ହେବ । ଏହି କଥା ଭାବି ସେ ଯାଉ ଯାଉ ହଠାତ୍ ଦେଖିଲା—ସୂର୍ଯ୍ୟଙ୍କ ଗନ୍ତପଥକୁ ଛୁଇଁବ ଏପରି ଅତ୍ୟୁଚ୍ଚ ପ୍ରାଚୀର ଦେଖା ଯାଉଛି । ସେ ତାହା ଦୂରରୁ ଦେଖି ସେହି ପ୍ରାଚୀରର ସୌନ୍ଦର୍ଯ୍ୟ ଏବଂ ଆକୃତିର ଗରିମାକୁ ଚିତ୍ତରୁ ପାଶୋରି ପାରିଲା ନାହିଁ ।

---

ଶବ୍ଦାର୍ଥ । ସୌଧ—ରାଜଭବନ । ଅଭେଟ—ନ ଦେଖିବା । ବୈରୀ—ଶତ୍ରୁ । ଭୂଦେବ—ବ୍ରାହ୍ମଣ । ରବିରଥପଥ—ସୂର୍ଯ୍ୟଙ୍କ ଗନ୍ତ ପଥ । ଚୁମ୍ବନେ—ସ୍ପର୍ଶ କରିବାରେ । ପ୍ରାକାରେ—ପାଚେରିକୁ । ଆକାରେ—ଆକୃତିର ବୈଶିଷ୍ଟ୍ୟ ସୌନ୍ଦର୍ଯ୍ୟ ।

ଜଳ ବାରେ ତହିଁ ଝଳ ସନ୍ତାନ
ଦର୍ପଣେ ଅର୍ପଣ ନୋହୁଛି ମନ
ରୁଦ୍ଧ ନୋହିବାକୁ ଅଜିରେ ଜଳ
ଶୁଦ୍ଧ ଦକ୍ଷିଣାବର୍ତ୍ତ ଶଙ୍ଖ କୁଳ
ରାଜନ୍ତି ତହିଁରେ
ହୀର–ହରିଯୁଗ ଯୋଗ ଦୁଆରେ । ୩୨ ।

**ଅନ୍ୱୟ**—ତହିଁ ଜଳବାରେ ଝଳ (ଏବଂ) ସନ୍ତାନ (ଅଛି) । ତେଣୁ ଦର୍ପଣେ ଅର୍ପଣ (କରିବାକୁ) ମନ ନୋହୁଛି । ଅଜିରେ ଜଳ ରୁଦ୍ଧ ନୋହିବାକୁ ଶୁଦ୍ଧ ଦକ୍ଷିଣାବର୍ତ୍ତ ଶଙ୍ଖ କୁଳ ତହିଁରେ ରାଜନ୍ତି । (ଏବଂ) ହୀର ହରିଯୁଗ ଦୁଆରେ ଯୋଗ (ହୋଇଛନ୍ତି) ।

**କଥା**—(ସେ ପ୍ରାଚୀର ଚତୁଃପାର୍ଶ୍ୱରେ ଥିବା) ପରିଖାର ଜଳମାନ ଏକାନ୍ତ ସ୍ୱଚ୍ଛ ଏବଂ ବିସ୍ତୃତ ଅଛି । ତେଣୁ ତାର ସ୍ୱଚ୍ଛତା ଦେଖିଲେ ଦର୍ପଣ ଦେଖିବାକୁ ଇଚ୍ଛା ହେବ ନାହିଁ ।

ଅଗଣାରେ ଜଳ ନ ଅଟକିବାକୁ ଶୁଦ୍ଧ ଦକ୍ଷିଣାବର୍ତ୍ତ ଶଙ୍ଖମାନ ସେଥିରେ ଶୋଭମାନ୍ ଭାବରେ ଖଞ୍ଜା ଯାଇଛନ୍ତି ଯାହା ଭିତର ଦେଇ ଜଳ ଖସିଯିବ । ଏବଂ ହୀରା ତିଆରି ସିଂହ ଯୁଗଳ ସେ ପ୍ରାଚୀରର ସଦର ଦରଜାରେ ବିରାଜିତ ଅଛନ୍ତି ।

ଶବ୍ଦାର୍ଥ । ଜଳ—ଗଡ଼ଖାଇ, ପରିଖା । ବାରେ— ଜଳ ସମୂହ । ସନ୍ତାନ—ବିସ୍ତୃତ । ଝଳ—ତୋଫା । ଅଜିରେ—ଅଗଣାରେ । ଯୋଗ—ମିଳନ ।

ଶସ୍ତାକର ଦୁଃଖ ଚକ୍ରଚକ୍ରର
ଅସ୍ତାଚଳ ଗତ ହେଲେ ମିହିର
ସେ ଅବନୀ-ବନୀ-ମୃଗେନ୍ଦ୍ର ଗୃହେ
କର୍ପୂର ପୂର୍ଣ୍ଣ କର୍ବୂର କଟାହେ
ଜଳନ୍ତି ଯେତେ
କଳଲେ ତାରକା ନଥିବେ ତେତେ । ୩୩ ।

**ଅନ୍ୱୟ**—ଚକ୍ରର ଦୁଃଖ ଚକ୍ର ଶସ୍ତାକର ମିହିର ଅସ୍ତାଚଳ ଗତ ହେଲେ ସେ ଅବନୀ-ବନୀ-ମୃଗେନ୍ଦ୍ର ଗୃହେ କର୍ପୂର ପୂର୍ଣ୍ଣ କର୍ବୂର କଟାହେ ଯେତେ (ଦୀପ) ଜଳନ୍ତି କଳଲେ ତେତେ ତାରକା (ଗଗନରେ) ନଥିବେ ।

**କଥା**—ଚକ୍ରବାକର ଦୁଃଖ ସମୂହ ବଢ଼ାଇ ସୂର୍ଯ୍ୟ ଦେବତା ଅସ୍ତାଚଳକୁ ଗମନ କଲେ, ସେହି ପ୍ରାଚୀର ମଧ୍ୟସ୍ଥ ରାଜଭବନରେ ଥିବା ଧରଣୀ ରୂପକ ଅରଣ୍ୟର ସିଂହ ସ୍ୱରୂପୀ ରାଜାଙ୍କ କର୍ପୂର ପୂର୍ଣ୍ଣ ସୁବର୍ଣ୍ଣ କରେଇରେ ଗୃହରେ ଯେତେ ଦୀପ ଜଳେ ତାହା ସଂଖ୍ୟାକଲେ ଆକାଶରେ ସେତେ ତାରକା ନଥିବେ ।

**ଆଲୋଚନା**—ସେ ରାଜଭବନରେ କର୍ପୂର ଦୀପ ଅସଂଖ୍ୟ ଜଳୁଥାଏ ।

ଶବ୍ଦାର୍ଥ । ଚକ୍ର—ସମୂହ; ଚକ୍ର ବାକ ପକ୍ଷୀ । ଶସ୍ତା—ସୁଲଭ । ବନୀ—ଅରଣ୍ୟ । କର୍ବୂର—ସୁବର୍ଣ୍ଣ । କଟାହ—ଚଟକା ପାତ୍ର; କରେଇ । କଳଲେ—କଳନା କଲେ ।

**ସୁଲୋଚନା ବର ଗତାଗତରେ**
**ଅଙ୍ଗଦ ଚଞ୍ଚଳ ବିଧାନ କରେ**
**ବଳି ମୁଖ ଗବାକ୍ଷରେ ମୁଦ୍ରିତ**
**ବସନ୍ତ ସଭର ଗତିରେ ଖ୍ୟାତ**
**କାଞ୍ଚନ ପନସ**
**ଡାଳମ୍ବ ଚନ୍ଦନ ପ୍ରଭା ବିକାଶ । ୩୪ ।**

**ଅନ୍ୱୟ**—(ପୁନଶ୍ଚ, ତହିଁ) ସୁଲୋଚନା ବର ଗତାଗତରେ (ସେମାନଙ୍କର) ଅଙ୍ଗଦ ଚଞ୍ଚଳ ବିଧାନ କରେ । (ଯହିଁ) ବସନ୍ତ ସଭର ଗତିରେ ଖ୍ୟାତ (ଅଛି, ତହିଁ) ବଳିମୁଖ ଗବାକ୍ଷରେ ମୁଦ୍ରିତ (ଥିବାର ଦେଖାଯାଏ) । କାଞ୍ଚନ, ପନସ, ଡାଳିମ୍ବ, ଚନ୍ଦନ (ତହିଁ) ପ୍ରଭା ବିକାଶ (କରେ) ।

**କଥା**—ପୁନଶ୍ଚ ସେ ଭଟ୍ଟ ସେହି ରାଜପୁରୀରେ ଦେଖିଲି ଅତ୍ୟନ୍ତ ସୁନ୍ଦରୀ ପ୍ରତିହାରଣୀ ମାନେ ଶୀଘ୍ର ଶୀଘ୍ର ଯାତାୟାତ କରୁଥିବାରୁ, ସେମାନଙ୍କର ଗାତ୍ରାଙ୍ଗରେ ଶୋଭିତ ବାଜୁବନ୍ଧ ଚଞ୍ଚଳ ହୋଇ ଉଠୁଛି । ପୁନଶ୍ଚ ଯେଉଁଠି ବସନ୍ତ କାଳ ମନ୍ଦ ଗତିରେ ଖ୍ୟାତି ଲଭୁଛି, ତହିଁ ଆତ୍ମବଳି ଦେଇଥିବା ଅନ୍ତଃପୁର ଚାରଣୀ ପରିବାରୀମାନଙ୍କ ମୁଖ ଉକ୍ତ ଜାଲି କବାଟିରେ କ୍ଷୀଣଭାବେ ପ୍ରକାଶିତ ଥିବାର ଦେଖାଯାଏ ।

କାଞ୍ଚନ, ପନସ, ଡାଳିମ୍ବ, ଚନ୍ଦନ ଆଦି ବୃକ୍ଷମାନ ମଧ୍ୟ ସେଠାରେ ବିଶେଷରୂ ପ୍ରକାଶ କରନ୍ତି ।

(ଶ୍ଳେଷାର୍ଥ) ରୁକ୍ମଣୀଙ୍କ ସ୍ୱାମୀ ପ୍ରାପ୍ତି ସମ୍ବନ୍ଧରେ ଆଗତଭଟ୍ଟ ଆସିବାରେ ଦେଖିଲି ତହିଁ ଅଙ୍ଗଦ ନାମକ ସେନାଧ୍ୟକ୍ଷ ଚଞ୍ଚଳ ହୋଇ ଉଠିଛି । ବଳିମୁଖ ନାମକ ସେନାପତି ଜାଲି କବାଟିରେ ଉଣ୍ଡୁଛି । ଗବାକ୍ଷ ନାମକ ସେନାପତି ଚକ୍ଷିତ ହେଉଛନ୍ତି ବା ଧରାପଡ଼ ଯାଉଛନ୍ତି । ବସନ୍ତ ନାମକ ସେନାପତି ମନ୍ଦଗତିରେ ଦୃଷ୍ଟି ଫେରାଉଛି, ଏବଂ କାଞ୍ଚନ, ପନସ, ଡାଳିମ୍ବ, ଚନ୍ଦନ ନାମା ସେନାପତି ମାନେ ନିଜ ନିଜ ପ୍ରଭା ପ୍ରକାଶ କରୁ ଅଛନ୍ତି ।

**ଆଲୋଚନା**—ବସନ୍ତ ଋତୁର ବର୍ଣ୍ଣନାକୁ ଏକାନ୍ତ ମଧୁରତର କରାଯାଇଛି ରାଜଗୃହ ମଧ୍ୟରେ । ଉତ୍ପନ୍ନ ପରିବାରୀଗଣ ଗବାକ୍ଷରେ ଉତ୍ସୁକ ନୟନରେ ପ୍ରତୀକ୍ଷମାଣା । ଏଣେ ସତର୍କ ପ୍ରତିହାରଣୀଙ୍କ ଧାଁ ଧପଡ଼ । ପୁନଶ୍ଚ କାଞ୍ଚନ ଆଦି ବୃକ୍ଷଗଣ ଫୁଟି ଉଠିଛନ୍ତି । ତା ସହିତ ରାଜପୁରୀ ସେନା ସେନାଧ୍ୟକ୍ଷଙ୍କ ଦ୍ୱାରା ସୁରକ୍ଷିତ ଅଛି ।

---

ଶବ୍ଦାର୍ଥ । ସୁଲୋଚନା—ରୁକ୍ମଣୀଙ୍କ ପିତା । ସୁଲୋଚନା—ରୁକ୍ମଣୀ । ସୁଲୋଚନା—ସ୍ତ୍ରୀ, ସୁନୟନା । ବର—ସମୂହ, ଶ୍ରେଷ୍ଠ, ଇଷ୍ଟସିଦ୍ଧି । ବର—ସ୍ୱାମୀ । ଗତାଗତ—ଯାତାୟାତ । ଅଙ୍ଗଦ—ବାଜୁ, ବାହୁ ଭୂଷଣ, ପ୍ରତିହାରଣୀଙ୍କ ଚନ୍ଦ୍ରୋଟ ଚନ୍ଦ୍ର ଭୂଷଣ । ବଳି—ସମୂହ, ଆତ୍ମଦାନ କରିବା । ସଭରଗତି—(ଶବର ମନ୍ଦ ଚଳନ ହେତୁ ଗତି ମନ୍ଦ ସୂଚିତ ହେଉଛି), ମନ୍ଦଗତି । ଗତ—ପ୍ରାପ୍ତ । ବଳିମୁଖ—ବାନର ବିଶେଷ, ଜଣେ ସୈନ୍ୟାଧ୍ୟକ୍ଷର ନାମ । ବସନ୍ତ—ମର୍କଟ ଯୂଥପତି ବିଶେଷ, ସୈନ୍ୟାଧ୍ୟକ୍ଷ । ଗବାକ୍ଷ—ବଡ଼ ଆଖିଆ ରାମାୟଣ ବର୍ଣ୍ଣିତ ବାନର ଯୂଥପତି ବିଶେଷ, ଏକ ସେନ୍ୟାଧ୍ୟକ୍ଷର ନାମ । କାଞ୍ଚନ, ଡାଳିମ୍ବ, ଚନ୍ଦନ, ପନସ—ରାମାୟଣ ବର୍ଣ୍ଣିତ ମର୍କଟ ଯୂଥପତି ବିଶେଷ, ଏକ ଏକ ସୈନ୍ୟାଧ୍ୟକ୍ଷଙ୍କର ନାମ ଓ ବୃକ୍ଷ ବିଶେଷ । ବିକାଶ—ପ୍ରକାଶ ।

**ମାର୍ଗପୂର ଦ୍ୱଗ ତୋଷା ବଜାରୁ**
**ଦେଖ ସଂସର୍ଗତା ଥିଲା ପୂର୍ବରୁ**
**ରାମ-ଲକ୍ଷ୍ମଣ ଏକାଳେ ଉଦିତ**
**କୁମୁଦ ଶତବଳୀ ହରଷିତ**
**ତର୍କ ହେଲା ତାର**
**ଅର୍କକୁଳେନ୍ଦୁ—ଶକ୍ରାରି—ସମର । ୩୫ ।**

**ଅନ୍ୱୟ**— ମାର୍ଗ, ପୁର, ଦ୍ୱଗ, ତୋଷାବଜାରୁ ଦେଖ ପୂର୍ବରୁ (ଏଥି, ଏହି) ସଂସର୍ଗତା ଥିଲା । (କାରଣ) ରାମଲକ୍ଷ୍ମଣ ଏକାଳେ ଉଦିତ (ହେବାରୁ) କୁମୁଦ, ଶତବଳୀ, ହରଷିତ (ହେଉଛନ୍ତି) । (ତେଣୁ) ତାର ତର୍କ ହେଲା ଅର୍କ କୁଳେନ୍ଦୁ (ସହିତ) ଶକ୍ରାରି (ଙ୍କର) ସମର (ହେଉଛି କି ?)

**କଥା**—ଏଥିରେ ଥିବା ପଥ, ପ୍ରାସାଦ, ଚଉଦ୍ୱଗ, ତୋଷା ଆଦିରୁ ଦେଖ ଯେ ପୂର୍ବରୁ ରାମାୟଣର ଏହି ସମ୍ପର୍କ ଅବା ଏଠାରେ ରହି ଆସିଛି । ରାମ ଲକ୍ଷ୍ମଣ ରୂପକ ଚନ୍ଦ୍ର ଏ ସମୟରେ ଉଦିତ ହେବା ଯୋଗୁଁ ଜଳାଶୟରେ ଯେପରି କଇଁଫୁଲ ଏବଂ ମୀନମାନେ ହର୍ଷ ଲଭ କରୁଛନ୍ତି । ସେପରି କୁମୁଦ ଏବଂ ଶତବଳୀ ନାମକ ସେନାପତି ଦ୍ୱୟ ପୂର୍ବୋକ୍ତ ଯୂଥପତିମାନଙ୍କ ସହିତ ହର୍ଷରେ ଅଛନ୍ତି । ଏତେ ଏତେ ସୈନ୍ୟାଧ୍ୟକ୍ଷଙ୍କୁ ଦେଖି ରାମାୟଣର ନାୟକଙ୍କୁ ଲକ୍ଷ୍ମଣ ସହିତ ଚନ୍ଦ୍ରମା ଦେଖିବା ମାତ୍ରେ ସ୍ମରଣ କରି ଭାଟ ମନରେ ତର୍କକଲା ଏଠି ଆଜି କଣ ସୂର୍ଯ୍ୟବଂଶର ଚନ୍ଦ୍ରମା ସ୍ୱରୂପୀ ରାମଚନ୍ଦ୍ରଙ୍କ ସହିତ ଇନ୍ଦ୍ରଜିତର ଯୁଦ୍ଧ ହେଉଛି କି ?

**ଆଲୋଚନା**—ଇନ୍ଦ୍ରଜିତ ଯେଉଁ ସମୟରେ ନାଗ ପାଶ ବନ୍ଧନରେ ରାମଲକ୍ଷ୍ମଣଙ୍କୁ ବନ୍ଦୀ କରିଥିଲା ସେତେବେଳେ ରାବଣ ସେ ଗୋପନୀୟ ଯୁଦ୍ଧ କରିଥିଲା ଏବଂ ଦଶଜଣ ଯୂଥପତି ତାର ସନ୍ଧାନ ନେଉଥିଲେ ।

---

ଶବ୍ଦାର୍ଥ । ମାର୍ଗ—ପଥ । ପୁର—ପ୍ରାସାଦ । ଦ୍ୱଗ—ଚଉଦ୍ୱଗ । ତୋଷା—ବଗିଚ୍ଚା । ବଜାରୁ—ସମ୍ମୁଖରୁ । ଦେଖ—ବିଚାର କର । ରାମ—ମୃଗ । ରାମଲକ୍ଷ୍ମଣ— ଚନ୍ଦ୍ରମା । କୁମୁଦ—କଇଁ, କୁମୁଦ ନାମା ରାମାୟଣର ବାନର ଯୂଥପତି । ଶତବଳୀ—ମତ୍ସ୍ୟ, ଶତବଳୀ ନାମକ ରାମାୟଣର ବାନର ଯୂଥପତି । ଅର୍କ— ସୂର୍ଯ୍ୟ । କୁଳ—ବଂଶ । ଇନ୍ଦୁ—ଚନ୍ଦ୍ରମା ଶକ୍ରାରି—ଇନ୍ଦ୍ର ଅରି, ଇନ୍ଦ୍ରଜିତ ।

**ଇଷ୍ଟକର୍ମେ ଦୃଷ୍ଟ ହେଉ ନୃପତି**
**ଭେଟିବାକୁ ଘଟି ବଳାଇଲା ମତି**
**କରଣେ ପାରିଷଦ ତରବେତ**
**ଧରିଥିଲା ଯେ ସ୍ୱର୍ଣ୍ଣତର ବେତ**
**ତାକୁ ଦ୍ୱାରପାଳ**
**ମିଳାଇଲା କ୍ଷଣି ହେଲା ଏ ମେଳ । ୩୭ ।**

**ଅନ୍ୱୟ**—(ତା) କର୍ମେ ଇଷ୍ଟ ଦୃଷ୍ଟ ହେଉ, ନୃପତି ଭେଟିବାକୁ ଘଟି ମତି ବଳାଇଲା । ତରବେତ କରଣେ ପାରିଷଦ (ଜଣେ) ଯେ ଦ୍ୱାରପାଳ ସ୍ୱର୍ଣ୍ଣତର ବେତ ଧରିଥିଲା । ତାକୁ ମିଳାଇଲା କ୍ଷଣି ଏ ମେଳ ହେଲା ।

**କଥା**—ତା କପାଳକୁ ଶୁଭ ଲକ୍ଷଣମାନ ଯଥା ପୂର୍ବୋକ୍ତ ବର୍ଣ୍ଣିତ ଦ୍ରବ୍ୟ ସ୍ତ୍ରୀ, ମନ୍ଦ ପବନ, ଫଳବନ୍ତ ବୃକ୍ଷ ଇତ୍ୟାଦି ଶୁଭଲକ୍ଷଣ ଦେଖି ରାଜା ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଗି ଉକ୍ତ ଘଟି ମନ ଚଞ୍ଚଳକଲା । ଉଦ୍‌ଯୋଗ କରିବାରେ ଜଣେ ରାଜପାରିଷଦ, ଯେଉଁ ଦ୍ୱାରପାଳ ସ୍ୱର୍ଣ୍ଣ ବେତ ଧରିଥିଲା ତାକୁ ଭେଟାଇ ଦେବାରୁ ତା ସହିତ ତାର ଚିହ୍ନା ଜଣା ହୋଇଗଲା ।

---

ଶବ୍ଦାର୍ଥ । କର୍ମେ—କପାଳରେ । ଇଷ୍ଟ—ଶୁଭ ଲକ୍ଷଣ । କରଣେ—କରିବାରେ । ତରବେତ—ଉଦ୍‌ଯୋଗ । ପାରିଷଦ- ସଭାସଦ୍ । ସ୍ୱର୍ଣ୍ଣ ତରବେତ—ଉତ୍କୃଷ୍ଟ-ସ୍ୱର୍ଣ୍ଣବେତ । ଦ୍ୱାରପାଳ—ଦ୍ୱାରରକ୍ଷକ, ଦ୍ୱାରୀ । ମିଳାଇଲା କ୍ଷଣି—ଭେଟାଇବା ମାତ୍ରେ । ମେଳ—ଚିହ୍ନା, ଜଣା, ସମ୍ବନ୍ଧ ।

ବସି ଏଠାରେ ପାନକର ପାନ
ଭଣି ସେ ଯେ ଆରୋହିଲା ସୋପାନ
ଜାଣି ନୃପତ-ଅଙ୍ଗୀକାର-ମନ
ଆଣି ଆସନ୍ତେ ସେ ଭଟ୍ଟ ଗମନ
କରିଚଲା ତ୍ୱରନ୍ତେ
ସଭା-ସମ୍ଭାଷଣ ସମ୍ଭାଳି କର୍ଣ୍ଣେ । ୩୬ ।

**ଅନ୍ୱୟ**—(ଦାସୀ କହିଲା) ଏଠାରେ ବସି ପାନକର । (ଏହା) ଭଣି ସେ ଯେ ସୋପାନ ଆରୋହିଲା । (ତତ୍ ପରେ) ନୃପତ ମନ ଜାଣି ଅଙ୍ଗୀକାର ଆଣି ଆସନ୍ତେ ସେ ଭଟ୍ଟ ତ୍ୱରନ୍ତେ ଗମନ କରିଚଲା । (ଏବଂ) ସଭା ସମ୍ଭାଷଣ କର୍ଣ୍ଣେ ସମ୍ଭାଳ (ଶୁଣିଲା) ।

**କଥା**—ସ୍ୱର୍ଣ୍ଣ ବେଶଧାରୀ ପାଟଦାସୀ କହିଲା—

ହେ ବିଦେଶୀ ଭଟ୍ଟ ! ତୁମ୍ଭେ ଏଠାରେ ବସି ପାନ ଖାଉଥାଅ । ମୁଁ ଜଣାଇ ଆସୁଛି । ଏହା କହି ତା ପରେ ସେ ରାଜାଙ୍କ ସମ୍ମୁଖରେ ଜଣାଇଁ ତାଙ୍କ ମନ ଜାଣି ସ୍ୱୀକୃତ ଧରି ଆସନ୍ତେ ସେ ଭଟ୍ଟ ଅତିଶୀଘ୍ର ରାଜସଭାରେ ଉପସ୍ଥିତ ହେଲା । ଏବଂ ସଭାର ଆଲୋଚନା ତା କର୍ଣ୍ଣରେ ସମ୍ଭାଳ ଶୁଣିଲା ।

ଶବ୍ଦାର୍ଥ । ପାନକର—ଖାଅ । ସୋପାନ—ପାହାଚ । ଅଙ୍ଗୀକାର—ସ୍ୱୀକୃତ । ତ୍ୱରନ୍ତେ—ଶୀଘ୍ରେ । ସମ୍ଭାଷଣ—ଆଲୋଚନା । ସମ୍ଭାଳ—ଆୟତ୍ତ କର ।

କବି ଏ ପଦ୍ୟରେ କବିକି ତହିଁ
କହ ପଙ୍କେରୁହ ନାଭି କିପାଇଁ
ଅମ୍ବୁରୁହ, ଗଦା, ରଥାଙ୍ଗ, ତେଜି
କମ୍ବୁ-ଆଲିଙ୍ଗନେ ରହିଲେ ମଜ୍ଜି
ଶୁଣି ସେ ଅଳପେ
ତୁଲ୍ୟ କରି ସୁଧା-ମୂଲ୍ୟ ଜଳପେ । ୩୮ ।

**ଅନ୍ୱୟ**—ତହିଁ (ରାଜ ସଭାରେ) କବିଏ କବିକି ପଦ୍ୟରେ କହ ପଙ୍କେରୁହ ନାଭି କିପାଇଁ ଅମ୍ବୁରୁହ, ଗଦା, ରଥାଙ୍ଗ ତେଜି କମ୍ବୁ ଆଲିଙ୍ଗନେ ମଜ୍ଜି ରହିଲେ । ସେ ଶୁଣି ସୁଧା ମୂଲ୍ୟ ତୁଲ୍ୟକରି ଜଳପେ ।

**କଥା**—ତହିଁର ରାଜସଭାରେ କବି ଜଣେ ଅନ୍ୟ କବିଙ୍କୁ ପ୍ରଶ୍ନ କରନ୍ତି—କହ, ବିଷ୍ଣୁ କିପାଇଁ ପଦ୍ମ, ଗଦା, ଚକ୍ର ତ୍ୟାଗ କରି ଶଙ୍ଖ ଆଲିଙ୍ଗନରେ ମଜ୍ଜିତ ରହିଲେ । ଅନ୍ୟ କବି ଏହାଶୁଣି ଅମୃତ ମୂଲ୍ୟକୁ ତୁଚ୍ଛତାରେ ତୁଲ୍ୟ କରି ଅତି ମଧୁର ସ୍ୱରରେ କହେ ।

ଶବ୍ଦାର୍ଥ । ପଙ୍କେରୁହ—ପଦ୍ମ । ପଙ୍କେରୁହନାଭି—ବିଷ୍ଣୁ । ଅମ୍ବୁରୁହ—ପଦ୍ମ । ରଥାଙ୍ଗ—ଚକ୍ର । ଅଳପେ —ସାମାନ୍ୟରେ, ତୁଚ୍ଛରେ । ତୁଲ୍ୟ—ସମାନ । ଜଳପେ— କହେ ।

**ମାଣିକ୍ୟକଙ୍କଣ-କିରଣବ୍ରାତ-**
**ପତନ୍ତ୍ ପ୍ରତିବମ୍ଵ 'ଚଞ୍ଚଳିତ**
**କ୍ଷୀରପାରାବାର-ନନ୍ଦନା ଗଳା**
**ତାମ୍ବୂଳ ବୀଟିକା ଭକ୍ଷଣ ଲୀଳା**
**ଏହୁ ପାଞ୍ଚଜନ୍ୟ**
**ହେଉଁ ଜାକିଲେ ହରି-ପାଞ୍ଚ-ଜନ୍ୟ । ୩୯ ।**

**ଅନ୍ୱୟ**—(ହରିଙ୍କ) ମାଣିକ୍ୟକଙ୍କଣ-କିରଣବ୍ରାତ-ପ୍ରତିବମ୍ଵପତନ୍ତୁ ଏହୁ ପାଞ୍ଚଜନ୍ୟ (କୁ) ଚଞ୍ଚଳିତ (ଦେଖି) କ୍ଷୀରପାରାବାର ନନ୍ଦନ ଗଳା (ର) ତାମ୍ବୂଳ ବୀଟିକା ଭକ୍ଷଣ ଲୀଳା ହରି ପାଞ୍ଚଜନ୍ୟ ହେଉଁ (ତାହା) ଜାକିଲେ ।

**କଥା**—ବିଷ୍ଣୁଙ୍କ ହସ୍ତରେ ଥିବା ମାଣିକ୍ୟ କଙ୍କଣର କିରଣ ସମୂହର ପ୍ରତିବମ୍ଵ ପତନରେ ଉକ୍ତ ପାଞ୍ଚଜନ୍ୟ ଶୁଭ୍ର ଶଂଖ ଚଞ୍ଚଳିତ ହେବାରୁ କ୍ଷୀର ସମୁଦ୍ର-ନନ୍ଦନା ଶୋଭାମୟୀ ଲକ୍ଷ୍ମୀ ପାନପିକ ତାଙ୍କ ଶଂଖାକୃତି କଣ୍ଠରେ ଯେତେବେଳେ ତୋକନ୍ତି ସେହି ଶୋଭା ତହିଁ ଦେଖାଯିବାରୁ ହରି ଭାବନାରେ ଅତ୍ୟନ୍ତ ପ୍ରୀତିବନ୍ତ ହୋଇ ତାହା ଜାକି ଧରିଛନ୍ତି ।

**ଆଲୋଚନା**—ବିଷ୍ଣୁଙ୍କ ହାତରେ ମାଣିକ୍ୟ କଙ୍କଣ ଥାଏ । ତାର ବର୍ଣ୍ଣ ରକ୍ତ । ତାହା ଶ୍ୱେତ ଶୁଭ୍ର ଶଂଖରେ ପଡ଼ିଲେ ଯେପରି ଦେଖାଯାଏ ତାହା ସ୍ୱଚ୍ଛ ଶୁଭ୍ରା ଲକ୍ଷ୍ମୀ ପାନ ପିକ କଣ୍ଠରେ ତୋକିଲେ ଯେପରି ଦେଖାଯିବ, ସେହି ସେପରି ଦେଖାଯାଏ । ତେଣୁ ଜାୟା ପ୍ରେମରେ ନିରନ୍ତର ଆସକ୍ତ ବିଷ୍ଣୁ ଅନ୍ୟାନ୍ୟ ଆୟୁଧ ତ୍ୟାଗକରି କେବଳ ଶଙ୍ଖକୁ ଅଧିକ ଆଲିଙ୍ଗନ କରନ୍ତି । ଲକ୍ଷ୍ମୀଜାତି ପଦ୍ମିନୀ ଥିବାରୁ ତାଙ୍କର କଣ୍ଠ ଶଙ୍ଖପରି ।

---

ଶବ୍ଦାର୍ଥ । ପାଞ୍ଚ—ଭାବନା, ଚିନ୍ତା । ଜନ୍ୟ—ପ୍ରୀତ । ମାଣିକ୍ୟ—ରକ୍ତବର୍ଣ୍ଣର ରତ୍ନ ବିଶେଷ । କଙ୍କଣ—କରଭୂଷଣ । ବ୍ରାତ—ସମୂହ । କ୍ଷୀରପାରାବାରନନ୍ଦନା—କ୍ଷୀରସମୁଦ୍ର ସମ୍ଭୂତା ଲକ୍ଷ୍ମୀ । ବୀଟିକା—ଖିଲ । ତାମ୍ବୂଳ—ପାନ । ଜାକିଲେ—ଆଲିଙ୍ଗିଲେ ।

ନୃପତି ଦତ୍ତ କରୁଁ ମୁକୁତାକୁ
ତୃପତି ଭଜି ସେ ପଚ୍ଛରେ ତାକୁ
କହ ମରମରେ କ ମମତାକୁ
ରମା ପୋଛୁଛନ୍ତି ପ୍ରେମ ଲତାକୁ
ଶୁଣି ସେ ଉଚାର
ଗ୍ୟର ବଦନାନନ୍ଦ କଲା ଜୁରି । ୪୦ ।

**ଅନ୍ୱୟ**—(ଏ ଉତ୍ତରରେ ଉକ୍ତ କବିକୁ) ନୃପତି (ପୁରସ୍କାର ସ୍ୱରୂପ) ମୁକୁତାକୁ ଦତ୍ତ କରୁଁ ସେ ତୃପତିଭଜି ତାକୁ ପଚ୍ଛରେ—'ମରମରେ କ ମମତାକୁ କହି ରମା ପ୍ରେମଲତାକୁ ପୋଛୁଛନ୍ତି ?"

ସେ ଶୁଣି (ଉତ୍ତର) ଉଚାର ଗ୍ୟରବଦନାନନ୍ଦ ଜୁରି କଲା ।

**କଥା**—ଏ ଉତ୍ତର ଶୁଣି ଉକ୍ତ କବିକୁ ରାଜା ପୁରସ୍କାର ସ୍ୱରୂପ ଏକ ବହୁମୂଲ୍ୟ ମୁକ୍ତା ଦାନ କରିବାରୁ ଉକ୍ତ କବି ତୃପ୍ତି ଲାଭକରି ଅନ୍ୟଜଣେ କବିକୁ ପଚ୍ଛରିଲେ ।

'ଶରୀରରେ କ ସ୍ନେହହେତୁ ଶୋଭା ରାଣୀ କମଳାମା ରମା ତାଙ୍କର ପ୍ରେମଲତାକୁ ପୋଛି ପକାଉଛନ୍ତି । ତା ଶୁଣି ଏଥିର ସେ ଉତ୍ତର ଦେଲେ ତାଙ୍କର ଉଚାରଣ ରମାପତି ବିଷ୍ଣୁଙ୍କ ନାଭିକମଳ-ସମ୍ଭୂତ ଚତୁର୍ବଦନ ବ୍ରହ୍ମାଙ୍କ ବେଦପାଠ ଆନନ୍ଦ ଧ୍ୱନିକୁ ଅବା ଉଜାଡ଼ି କରି ପକାଇଲା ।

---

ଶବ୍ଦାର୍ଥ । ମୁକୁତା—ମୁକ୍ତା, ମୂଲ୍ୟବାନ୍ ରତ୍ନ ବିଶେଷ । ତାକୁ—ଅନ୍ୟ ଜଣକୁ । ମରମ—ମର୍ମ୍ମ, ଚିତ୍ତ । ପ୍ରେମଲତା—ନାଭିଠାରୁ ହୃଦସ୍ଥ ଯାଏ ଥିବା ଯୁବା କାଳୀନ ସୂକ୍ଷ୍ମ ପ୍ରେମାବଳି । ଗ୍ୟର ବଦନାନନ୍ଦ—ଗ୍ୟରଟି ବଦନରେ ଆନନ୍ଦ, ବ୍ରହ୍ମାଙ୍କ ବେଦପାଠର ଆନନ୍ଦ ମଧୁର ଧ୍ୱନି । ଜୁରି—ଉଜାଡ଼ି ।

ତୃତୀୟ ଅବତାର ଚୁମ୍ବଦାନୁଁ
ମୃତ୍ତିକାନ୍ତର ନୋହୁଥିଲା ସ୍ତନୁ
ବଳିଙ୍କ ଦାନପାଣି-ପାଣି ତହୁଁ
ପତନ ତ ହେଲା ଯତନ ହୋଇ
ମାଟି-ପାଣି ଧାର
ବହୁଛି ଇଚ୍ଛି ପୋଛୁଲେ ଇନ୍ଦିରା । ୪୧ ।

**ଅନ୍ୱୟ**—ତୃତୀୟ ଅବତାର ବିଷ୍ଣୁ ଚୁମ୍ବଦାନୁଁ (ରମାଙ୍କ) ସ୍ତନୁ ମୃତ୍ତିକାନ୍ତର ନୋହୁଥିଲା । ବଳିଙ୍କ ଦାନପାଣି (ରଂଜିତ) ପାଣି ତହିଁ ଯତନ ହୋଇ ପତନ ତ ହେଲା । (ତେଣୁ) ମାଟି ପାଣି ଧାର ବହୁଛି ଇଚ୍ଛି ଇନ୍ଦିରା ପୋଛୁଲେ ।

**କଥା**—ବିଷ୍ଣୁଙ୍କ ତୃତୀୟ ଅବତାର ବରାହ ପୃଥିବୀର ନବୀନ ମୃତ୍ତିକା ଦନ୍ତରେ ଧାରଣ କରିବା ହେତୁ ମୃତ୍ତିକା ରଂଜିତ ମୁଖରେ ଲକ୍ଷ୍ମୀଙ୍କ ସ୍ତନରେ ଚୁମ୍ବନ ଦେବାଯୋଗୁଁ ସେ ମୃତ୍ତିକା ଗୁଡ଼ା ନଥିଲା । କିନ୍ତୁ ବାମନ ଅବତାରରେ ବଳିଙ୍କ ଦାନ ପାଣିରେ ବିଷ୍ଣୁଙ୍କର ହସ୍ତ ଆର୍ଦ୍ର ହେବା ଯୋଗୁଁ ସେ ଉକ୍ତ ସମୟରେ ଲକ୍ଷ୍ମୀଙ୍କ ସ୍ତନ ମର୍ଦ୍ଦନ କରିବା ଯୋଗୁଁ ଉକ୍ତ ପାଣି ଲାଗି ପୂର୍ବୋକ୍ତ ମାଟି ତରଳ ମାଟିଆ ପାଣିର ଏକ ଧାର ବକ୍ଷରୁ ନିମ୍ନଗାମି ହେଲା । ଇଚ୍ଛାକରି କୋମଳତାରୁ ସେ ଧାର ଇନ୍ଦିରା ପୋଛୁଲେ ।

---

ଶବ୍ଦାର୍ଥ । ତୃତୀୟ ଅବତାର—ବରାହ ଅବତାର । ମୃତ୍ତିକାନ୍ତର—ମୃତ୍ତିକା ଅନ୍ତର, ମାଟି ଗୁଡ଼ା । ପାଣି—ଜଳ, ହସ୍ତ । ମାଟି ପାଣି ଧାର—ମାଟିଆ ପାଣିର ଧାର । ଇଚ୍ଛି—ଇଚ୍ଛାକରି । ଅଭିଳାଷ କରି —ଉଦ୍ଦେଶ୍ୟ, ସ୍ପୃହା । ଇନ୍ଦିରା—ଲକ୍ଷ୍ମୀ ।

ତ୍ରିଦିବଧବ-ରତନନାବରେ
କଳାକର ଲୀଳା ଖେଳ ପ୍ରକାରେ
ଶମଶ୍ରୁ ଶୋଭନ ନୃପ-ଆନନ
ଆସ ଆସ ଭ୍ରଷ୍ଟ ହେଲା କଂପନ
ମିଳନ୍ତେ ସେ କତି
ମୁଣ୍ଡୁଁ ମଣିକି ମଣ୍ଡିଲେ ହସ୍ତେ ।୪୨।

**ଅନ୍ୱୟ**—ତ୍ରିଦିବ ଧବ ରତନ ନାବରେ କଳାକର ଲୀଳା ପ୍ରକାରେ ଖେଳ (ଲା) (ପରି) ଶ୍ମଶ୍ରୁ—ଶୋଭନ ନୃପ—ଆନନ (ସେ କବିକୁ) ଆସ ଆସ ଭ୍ରଷ୍ଟ କଂପନ ହେଲା । ସେ (କବି) କତି ମିଳନ୍ତେ ମୁଣ୍ଡୁ ମଣିକି କାଢ଼ି ହସ୍ତେ (ତାହସ୍ତ) ମଣ୍ଡିଲେ ।

**କଥା**—ଇନ୍ଦ୍ର ନୀଳମଣି ନାବରେ ଚନ୍ଦ୍ରମାର ଭଙ୍ଗୀ କୌଶଳରେ ଖେଳିଲା ପରି ଶ୍ମଶ୍ରୁ ରୂପକ ନୀଳମଣିରେ ସେ ନୃପଙ୍କର ମୁଖ ଚନ୍ଦ୍ରମା ଉକ୍ତ କବିଙ୍କୁ ଆସ ଆସ ଡାକିବା ବେଳେ କଂପି ଉଠିଲା । ସେ କବି ତାଙ୍କ ପାଖକୁ ଆସନ୍ତେ ସେ ନିଜ ମସ୍ତକରୁ ବହୁମୂଲ୍ୟ ମଣିଟିକୁ କାଢ଼ି ଶୀଘ୍ର ତାଙ୍କ ହସ୍ତରେ ମଣ୍ଡନ କରିଦେଲେ ।

ଶବ୍ଦାର୍ଥ । ତ୍ରିଦିବଧବ—ଇନ୍ଦ୍ର । ରତନ—ମଣି । ତ୍ରିଦିବ ଧବରତନ—ଇନ୍ଦ୍ରନୀଳ ମଣି, ନୀଳକାନ୍ତ ମଣି । ନାବ—ନୌକା । କଳାକର—ଚନ୍ଦ୍ରମା । ଲୀଳା—ଭଙ୍ଗୀ, ବିଳାସ ଲୀଳା—ଖେଳ । ପ୍ରକାରେ—କୌଶଳରେ । ଶମଶ୍ରୁ—ଶ୍ମଶ୍ରୁ, ଦାଢ଼ି । କତି—ନିକଟ । ହସ୍ତେ—ଭୂଜନ୍ତ ।

ଏ କାଳେ ନୃପ ସନ୍ନିଧି-ନିଧିକି
ଦେଲା ସେ କଥନ-କଳାନିଧିକି
ନିସ୍ତରିଲା ହୋଇ ହସ୍ତ ମସ୍ତକ
ନ୍ୟସ୍ତ କଲା ତାର ଉକ୍ତ ପୁସ୍ତକ
ବିସ୍ତାରିତା ବହି
ଶସ୍ତା କଲା ସୁଧାତରଙ୍ଗ ତହିଁ । ୪୩ ।

**ଅନ୍ୱୟ**—ସେ (ଦାସୀ) ଏକାଳେ କଥନ—କଳାନିଧିକି ନୃପ-ସନ୍ନିଧି ନିଧିକି ଦେଲା । (ଉକ୍ତଭାଟ) ନିସ୍ତରିଲା ହୋଇ ହସ୍ତ ମସ୍ତକ (ରେ) ନ୍ୟସ୍ତ କଲା । (ତା) ତାର (ତାର) ଉକ୍ତ ପୁସ୍ତକ ବିସ୍ତାରିତା ବହି ସୁଧାତରଙ୍ଗ ଶସ୍ତାକଲା ।

**କଥା**—ସେ ଦାସୀ ଏହି ସମୟରେ ଉକ୍ତ କଥକଚନ୍ଦ୍ରମା ଭାଟକୁ ରାଜାଙ୍କ ନିକଟ ଗମନ ରୂପକ ରତ୍ନ ଆଣିଦେଲା । ଉକ୍ତ ଭାଟ ଏତଦ୍ୱାରା ତାର ବହୁ ଆଶା ସଫଳ ହେବା ଦେଖି ଗୋଟାଏ ଚିନ୍ତାରୁ ଉଦ୍ଧାର ପାଇ ଥିବାରୁ ଦୁଇହାତ ମସ୍ତକରେ ଦେଇ ପ୍ରଣତି କରିଲା । ସେ ପ୍ରଣତିବିଧି ସାରି ତାର ରାଜକୀର୍ତ୍ତି ବର୍ଣ୍ଣନାରୂପ କଥନ ଉକ୍ତ ପୁସ୍ତକକୁ ବିସ୍ତାରିତ କଲା । ତଦ୍ୱାରା ଯେପରି କଥନର ଆନନ୍ଦ ତରଙ୍ଗ ଉଚ୍ଛୁଳିଗଲା ଅବା ।

**ଆଲୋଚନା**—ଭାଟ ସୁମଧୁର ଉକ୍ତିରେ ରାଜାଙ୍କର ପ୍ରଶଂସା ବାଣୀ କହି ଚାଲିଲା ।

---

ଶବ୍ଦାର୍ଥ । କଥନ କଳାନିଧି—କଥନ ଚନ୍ଦ୍ରମା, କୁହାଳିଆ ଭାଟ । ସନ୍ନିଧି—ନିକଟ । ନିଧି—ରତ୍ନ । ନିସ୍ତାରିଲ—ଉଦ୍ଧାର ପାଇଲା, ମୁକ୍ତ ପାଇଲା । ବିସ୍ତାରିତା—ବିସ୍ତୃତ । ସୁଧା—ଆନନ୍ଦ ।

**ପତନ୍ତୁ ତନୁ ରଜପୁଞ୍ଜ ତନୁ**
**କୃଶାନୁ କରେ ଯେଉଁ ଭାନୁ-ଭାନୁ**
**ସେ ତେଜ ଉଚ୍ଛନ୍ନ ଧନୁ କେତୁରେ**
**ହେଲା ପର ତବଧନୁ କେତୁରେ**
**ହୁଅନ୍ତେ ଦିନେଶ—**
**ପଦୁ ପାଳନା କରୁଛୁ ମହୀଶ ! । ୪୪ ।**

**ଅନ୍ୱୟ**—ଯେଉଁ ଭାନୁ—ଭାନୁ ପତନ୍ତୁ ତନୁରଜ ପୁଞ୍ଜ ତନୁ କୃଶାନୁ କରେ, ସେ ତେଜେ ଧନୁକେତୁରେ ଉଚ୍ଛନ୍ନ ହେଲାପର । (କିନ୍ତୁ) ତବ ଧନୁ କେତୁରେ ଉଚ୍ଛନ୍ନ ହେଲା ପର ।

(ହେ) ମହୀଶ ! (ସେ) ଦିନେଶ ହୁଅନ୍ତେ ପଦୁ (ସାମ୍ୟ) ପାଳନା କରୁଛୁ ।

**କଥା**—ଯେଉଁ ସୂର୍ଯ୍ୟକିରଣ ପଡ଼ିବାଦ୍ୱାରା ଅତି କ୍ଷୁଦ୍ର କ୍ଷୁଦ୍ର ଧୂଳି ସମୂହର ଅଙ୍ଗ ତାତି ଜଳିଆଁ ହୋଇଯାଏ, ସେ ତେଜ-ଧନୁରେ ଦିନେ ଶୀତ କାଳରେ ଏକାନ୍ତ ନ୍ୟୂନ ହୋଇଯାଏ । ଏମନ୍ତକି ରାହୁ କେତୁ ଗ୍ରାସରେ ମଧ୍ୟ ତେଜହୀନ ହୋଇଯାଏ । କିନ୍ତୁ ତୁମର ଧନୁର୍ଦ୍ଧରଗଣ ଏବଂ ଦୁର୍ଜୟ ପତାକା ନିକଟରେ ସେ ଉଚ୍ଛନ୍ନ ହେଲାପରି; ଏଣୁ ତୁମ ତେଜ, ସୂର୍ଯ୍ୟ ତେଜଠାରୁ ଅଧିକ ପ୍ରଖର ଅଟେ । ହେ ପୃଥ୍ୱୀଶ୍ୱର ! ସେ ଦିନେଶ ନାମ ବହିବାରୁ ତୁମ ସହିତ କରୁଛୁ ସାମ୍ୟ ରକ୍ଷା କରିପାରୁଛନ୍ତି । ସେ ଯେପରି ଦିନେଶ ସୂର୍ଯ୍ୟ । ତୁମେ ସେପରି ଦୀନଦୁଃଖିମାନଙ୍କର ଈଶ ହୋଇ ସେମାନଙ୍କୁ ବଞ୍ଚାଉଛ ।

---

ଶବ୍ଦାର୍ଥ । ଭାନୁ—ସୂର୍ଯ୍ୟ । ଭାନୁ—କିରଣ । ତନୁ—ଦେହ, ଅତି କ୍ଷୁଦ୍ରକଣା । କୃଶାନୁ—ଅଗ୍ନି । ତେଜେ—ତେଜ ଧନୁସ୍ଥରେ । ଧନୁ—ଧନୁମାସରେ, ଶୀତ ଋତୁରେ । କେତୁ—ରାହୁ କେତୁ, (ରାହୁ ଓ କେତୁ) ଯେଉଁ ରାହୁ ସୂର୍ଯ୍ୟଗ୍ରାସ କରେ । ପାଳନା—ରକ୍ଷା । ପଦୁ—ପଦ ପ୍ରୟୋଗ ଦେଇ, (ଯେପରି ଦିନେଶରେ ଅର୍ଥପଦ ଦେଇ ସୂର୍ଯ୍ୟହେବ ଏବଂ ଦୀନର ରକ୍ଷକ ରାଜା ହେବ) । ଦିନେଶ—ସୂର୍ଯ୍ୟ । ଦୀନେଶ—ଦୀନଜନର ପ୍ରଭୁ, ରାଜା ।

କୈଳାଶ ବୃଷ ରୁଦ୍ର ଭୂତି ଚନ୍ଦ୍ର
ଗଂଗା ଗଣ୍ଡୂସ ଧୂସ୍ତୁର ଅହୀନ୍ଦ୍ର
ସୁଧବଳ ପ୍ରଭା ଶୋଭାରେ ଅତି
ରୁଚକ ଏଣୁ ଶ୍ରୀ-ମେଚକଦ୍ୟୁତି
ତବ କୀର୍ତ୍ତିଦାଗ
କଣ୍ଠେ ହାରି ଧରି ଅଛନ୍ତି ଆଗ ।୪୫।

**ଅନ୍ୱୟ**—ଶୋଭାରେ ଅତି ସୁଧବଳ ପ୍ରଭା ରୁଦ୍ର, (ଏବଂ ତାଙ୍କ) ଭୂତି, କୈଳାସ, ବୃଷ ଚନ୍ଦ୍ର, ଗଂଗା, ଗଣ୍ଡୂସ, ଧୂସ୍ତୁର, ଅହୀନ୍ଦ୍ର (ଆଦିରେ) ରୁଚକ (ହେଲେହେଁ) ତବ କୀର୍ତ୍ତିଦାଗ କଣ୍ଠେ ଶ୍ରୀ ମେଚକ ଦ୍ୟୁତି ଉପରେ ଆଗ ଧରିଅଛନ୍ତି ।

**କଥା**—ସୌନ୍ଦର୍ଯ୍ୟରେ ଅତ୍ୟନ୍ତ ଧବଳମୟ-ଜ୍ୟୋତି ବିଶିଷ୍ଟ ପରମେଶ୍ୱର ଶିବ ଏବଂ ତାଙ୍କର ମହିମା ଯଥା—କୈଳାସ ପର୍ବତ, ବୃଷଭ, ଚନ୍ଦ୍ରମା, ଗଙ୍ଗା, ଗଣ୍ଡୂସଫୁଲ୍, ଦୁଦୁରଫୁଲ, ଭୂଷଣ ବାସୁକି ନାଗ ଇତ୍ୟାଦି ଏକାନ୍ତ ଶୋଭାମୟ ହେଲେହେଁ ତୁମ୍ଭର କୀର୍ତ୍ତି ଏତେ ଅଧିକ ଧବଳ ଯେ ପରମେଶ୍ୱର ଶିବ ଲଜ୍ଜିତ ହୋଇ ତୁମ୍ଭର କୀର୍ତ୍ତି ଚିହ୍ନକୁ ବିଷପ୍ରାପ୍ତେ ପାନକରି କଣ୍ଠରେ ଶୋଭାମୟ ନୀଳ ଦ୍ୟୁତିକୁ ଉପରି ସର୍ବାଗ୍ରେ ଧାରଣ କରିଅଛନ୍ତି । ଆଉ କା କଥା କହିବା ? ଶିବଙ୍କ ଠାରୁ ସବୁ ବିଷୟରେ ଶୁଦ୍ଧ, ଶ୍ୱେତ, ବିଶୁଦ୍ଧ, ମହାନ୍ ବା ଆଉ କିଏ ?

---

ଶବ୍ଦାର୍ଥ । ଅତି ସୁଧବଳ—ଅତ୍ୟନ୍ତ ଶ୍ୱେତବର୍ଣ୍ଣ । ରୁଦ୍ର—ସୃଷ୍ଟିଲୟକାରୀ ଈଶ୍ୱର । ଭୂତି—ମହିମା । ଧୂସ୍ତୁର—ଧୂରୁରି । ଅହୀନ୍ଦ୍ର—ବାସୁକି । ରୁଚକ—ଶୋଭାମୟ । ଶ୍ରୀ—ଶୋଭାମୟ । ଦାଗ—ଚିହ୍ନ । ଆଗ—ଆଗେ ସର୍ବାଗ୍ରେ ।

ବଦନ୍ତ ବସୁଧା-ସୁଧାଦଧିନ୍ତି
ତାପ-ଆପଗାର ପ୍ରବାହ ଭିତ
ଭଙ୍ଗ କରିଦେବା ପ୍ରସଙ୍ଗ ସଙ୍ଗ
ପ୍ରକାଶ କର ମାଧବ ପ୍ରସଙ୍ଗ
ଆନନ୍ଦ ଆଚରି
ବଇତାଳିକ ଉଚ୍ଚରେ ଉଚ୍ଚାରି । ୪୭ ।

**ଅନ୍ୱୟ**—ବସୁଧା-ସୁଧାଦଧିନ୍ତି ବଦନ୍ତି, ମାଧବ ପ୍ରସଙ୍ଗ (ଯାହାର) ତାପ-ଆପଗାର ପ୍ରବାହ ଭିତ୍ତିଭଙ୍ଗ କରିଦେବା ସଙ୍ଗ ପ୍ରସଙ୍ଗ ପ୍ରକାଶ କର । ଆନନ୍ଦ ଆଚରି (ସେ) ବଇତାଳିକ ଉଚ୍ଚରେ ଉଚ୍ଚାରି(ଲା) ।

**କଥା**—ବିଦର୍ଭ ଦେଶର ଚନ୍ଦ୍ରମାରୂପୀ ନରପତି ଭୀଷ୍ମକ ଏହାଶୁଣି କହିଲେ ହେ ଭାଟ । ବର୍ତ୍ତମାନ ଯେଉଁ କୃଷ୍ଣଙ୍କ ପ୍ରସଙ୍ଗ ସମଗ୍ର ଧରଣୀରେ ବ୍ୟାପି ଗଲାଣି, ଯାହାଙ୍କ ଚରିତ ସାଂସାରିକ ତ୍ରିତାପ ରୂପକ ନଦୀ ପ୍ରବାହର ଭିତ୍ତିକୁ ଭଂଗକରି ଦିଏ, ଉକ୍ତ ସତ୍‌ସଙ୍ଗ ପ୍ରସ୍ତାବ ପ୍ରକାଶ କର । ରାଜାଙ୍କ ଠାରୁ ଏହାଶୁଣି ଆନନ୍ଦରେ ଅଧୀର ହୋଇ ସେହି ଭାଟ ଉଚ୍ଚରେ କହିବାକୁ ଲାଗିଲା ।

---

ଶବ୍ଦାର୍ଥ । ବସୁଧା—ପୃଥ୍ୱୀ । ସୁଧାଦଧିତ—ଚନ୍ଦ୍ରମା । ଆପଗା—ନଦୀ । ତାପ—ଦୁଃଖ । ତ୍ରିତାପ—ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ । ପ୍ରସଙ୍ଗ—ସଂବନ୍ଧ, ସମ୍ପର୍କ, ପ୍ରସ୍ତାବ । ବୈତାଳିକ—ଭାଟ ।

**ଓଜଶୀଳ ଭୋଜ କୀର୍ତ୍ତି ପୟକୁ**
**ଛୁଇଁବାରେ ସୂର୍ଯ୍ୟସୁତା ପୟକୁ**
**ଜିଣିଯିବା କରିଦେଲା ଐଶ୍ୱର୍ଯ୍ୟ**
**ଯେଉଁ ଇନ୍ଦ୍ରନୀଳମଣି-ମାଧୁର୍ଯ୍ୟ**
**ମୁନିଙ୍କି ଉଦ୍ଧାରେ**
**ମୁଁ ନକ ଏହା କହିପାରେ ଗିରେ । ୪୬ ।**

**ଅନ୍ୱୟ**--ଯେଉଁ ଇନ୍ଦ୍ର ନୀଳମଣି-ମାଧୁର୍ଯ୍ୟ ଓଜଶୀଳ ଭୋଜ କୀର୍ତ୍ତି ପୟକୁ ଛୁଇଁବାରେ ସୂର୍ଯ୍ୟସୁତା ପୟ ଐଶ୍ୱର୍ଯ୍ୟକୁ ଜିଣିଯିବା କରିଦେଲା । (ପୁଣି ଯେ) ମୁନିଙ୍କି ଉଦ୍ଧାରେ ମୁଁ ନକ ଏହା ଗିରେ କହିପାରେ ?

**କଥା**–ଯେଉଁ ଇନ୍ଦ୍ରନୀଳମଣି ସ୍ୱରୂପ କୃଷ୍ଣଙ୍କର ମାଧୁର୍ଯ୍ୟ ଏକାନ୍ତ ବଳଶାଳୀ ଭୋଜ ବଂଶୀୟ କଂସର ଯଶୋରୂପୀ ଶ୍ୱେତ ଦୁଗ୍ଧକୁ ଛୁଇଁଦେବା ମାତ୍ରେ ଯମୁନା ଜଳର ଐଶ୍ୱର୍ଯ୍ୟ—ରୂପି-ନୀଳମାକୁ ଜିଣି କାଳିମା କରିଦେଲା, ଏବଂ ଯେ ମୁନିମାନଙ୍କୁ ଉଦ୍ଧାର କରି ପାରନ୍ତି, ମୁଁ ତାଙ୍କ ବିଷୟ କିଣ ବର୍ଣ୍ଣନା କରି କଥାରେ କହିପାରେ ?

**ଆଲୋଚନା**—ଯେ ଅତି ବଳବନ୍ତ କଂସକୁ ଛୁଇଁ ଦେଇ ଦେଇ ସେ ମରିଯାଏ ପୁଣି ଯେ ଯୋଗେଶ୍ୱର ତାଙ୍କର ବର୍ଣ୍ଣନା ମୁଁ କିଣ କରି ପାରିବି ?

---

ଶବ୍ଦାର୍ଥ । ଓଜଶୀଳ—ବଳଶାଳୀ । ଭୋଜ—ଭୋଜବଂଶୀୟ, କଂସ । ପୟ—ଦୁଗ୍ଧ । ସୂର୍ଯ୍ୟସୁତା—ଯମୁନା । ପୟ—ଜଳ । ଗିରେ—କଥାରେ ।

**ଅବରୋଧ ପ୍ରିୟ ସଙ୍ଗୀ ସଙ୍ଗରେ**
**ତୁଙ୍ଗଅଟ୍ଟାଳ-ଉତ୍ସଙ୍ଗେ ରଙ୍ଗରେ**
**ଥିଲେ ଯେ ରୁକ୍ମଣୀ କର୍ଣ୍ଣେ ବାଜିଲା**
**ଉଲ୍ଲାସ ତା ଭ୍ରୂଲତାରେ ରାଜିଲା**
**ସମତ୍ତେ ସଖୀଙ୍କୁ**
**ଚାହିଁ କର୍ଣ୍ଣାୟତ କଲେ ଅକ୍ଷିକୁ । ୪୮ ।**

**ଅନ୍ୱୟ**—ଅବରୋଧ-ତୁଙ୍ଗଅଟ୍ଟାଳ-ଉତ୍ସଙ୍ଗେ ରଙ୍ଗରେ ପ୍ରିୟ-ସଙ୍ଗୀ ସଙ୍ଗରେ ଥିଲେ ଯେ ରୁକ୍ମଣୀ ତାଙ୍କ କର୍ଣ୍ଣେ (ଏ କଥା) ବାଜିଲା । ତା (ଙ୍କ) ଭ୍ରୂଲତାରେ ଉଲ୍ଲାସ ବାଜିଲା । (ସେ) ସମତ୍ତେ ସଖୀଙ୍କୁ ଚାହିଁ ଅକ୍ଷିକୁ କର୍ଣ୍ଣାୟତ କଲେ ।

**କଥା**—ଅନ୍ତଃପୁରର ଅତ୍ୟୁଚ୍ଚ କୋଠାଉପରେ ସେତେବେଳେ ପ୍ରିୟତମା ସଙ୍ଗିନୀ ମାନଙ୍କ ସାଥିରେ ଜେମା ରୁକ୍ମଣୀ ହସଖେଳରେ ମାତିଥିଲେ । ତାଙ୍କ କାନରେ ଭାଟର ଏ ମଧୁର ଧ୍ୱନି ବାଜିଗଲା । ତେଣୁ ହଠାତ୍ ତାଙ୍କ ଭ୍ରୂଲତା ଉଲ୍ଲସିତ ହୋଇ ଖେଳି ଉଠିଲା । ଏନନ୍ତର ସେ ସଙ୍ଗିନୀ ମାନଙ୍କୁ ଚାହିଁ ଆଖିକୁ କାନ ଯାଏ ଟାଣି ଚଞ୍ଚଳ ଚଳାଇ ଚାହିଁଲେ ।

---

ଶବ୍ଦାର୍ଥ । ଅବରୋଧ—ଅନ୍ତଃପୁର । ତୁଙ୍ଗ—ଅତ୍ୟୁଚ୍ଚ । ଅଟ୍ଟାଳ—କୋଠା । ଉତ୍ସଙ୍ଗେ—କୋଡ଼ରେ, ଅଙ୍କରେ । ରଙ୍ଗରେ—କୌତୁକରେ, ପରିହାସରେ, କ୍ରୀଡ଼ାରେ । ରାଜିଲା—ପ୍ରକାଶିତ ହେଲା । ଅକ୍ଷି—ଚକ୍ଷୁ । କର୍ଣ୍ଣାୟତ—ଆକର୍ଣ୍ଣ ବିସ୍ତୃତ, କର୍ଣ୍ଣବଶୀଭୂତ ।

**ଦଶିଲ୍ ମତ୍ସ୍ୟ ମତ୍ସ୍ୟରଙ୍କ ଉରେ**
**ଅକଟ ଭେଟ ଧପଟ ପ୍ରକାରେ**
**ପରିହାସ ଏ ଭ୍ରଷେ ଭ୍ରଷା ରୂପ-**
**ବନ୍ତ ନୋହେ କପାଁ ଆଖି ଆକ୍ଷେପ**
**କଲୁ କର୍ଣ୍ଣ ମୂଳେ**
**ବାନା ବନ୍ଧା ପର ଚତୁରୀ କୁଳେ । ୪୯ ।**

**ଅନ୍ୱୟ**—(ସେ ସମୟରେ) ମତ୍ସ୍ୟ ମତ୍ସ୍ୟରଙ୍କ ଉରେ ଧପଟ ଅକଟ ଭେଟ ପ୍ରକାରେ ଦଶିଲ । (ଏହା ଦେଖି) ପରିହାସିଏ ଭ୍ରଷେ-(ଏ) ଭ୍ରଷା (ଯେ) ରୂପବନ୍ତ ନୋହେ । (ତେବେ) କଂପା କର୍ଣ୍ଣମୂଳେ ଆଖି ଆକ୍ଷେପ କଲୁ ? (ତୋଇ) ବାନାପରି ଚତୁରୀକୁଳେ ବନ୍ଧା (ହୋଇଅଛି ? )

**କଥା**—ସେ ସମୟରେ, ମାଧୁରୀ ଏପରି ଦେଖାଗଲା ଯେ—ମାଛ, ମାଛରଙ୍କା ଉରରେ ଦ୍ରୁତଗତିରେ ପଳାଇ ଗାତରେ ଲୁଚିଗଲା କି ? ଏହା ଦେଖି ଜେମାର ଜଣେ ପରିହାସୀ କହିଲା—ଏଯେ କଥା ମାତ୍ର । ରୂପଧର ଏଠି କେହି ଆସିନାହାଁନ୍ତି । ତେବେ କପାଳଁ ଭ୍ରୁ କାନମୂଳଯାଏ ଆଖିକୁ ଟାଣି ନେଇ ପ୍ରଲୁବ୍ଧ କାମବିଳାସୀ ଅପାଙ୍ଗ ଆଡ଼ଚାହାଣୀ ଡ଼ାଳିଦେଲୁ ? ଚତୁରୀ କୁଳରେ ବାନାବାନ୍ଧ ଏପରି ଭ୍ରମ କଲୁ କପରି ?

ଶବ୍ଦାର୍ଥ । ଅକଟ—ଗାଢ । ଧପଟ—ଚଞ୍ଚଳ । ଭ୍ରଷେ—କହିଲା । ଭେଟ—ଭେଟିବା, ସାକ୍ଷାତ୍କାର । ରୂପବନ୍ତ—ପ୍ରକୃତ, ସ୍ୱରୂପ । ଆକ୍ଷେପ—ନିକ୍ଷେପ, ଫିଙ୍ଗିବା । ବାନା—ପତାକା । ଚତୁରୀ—ବୁଦ୍ଧିମତୀ ।

ତନୁ ଥିଲେ ବର୍ଜ୍ଜିଥାନ୍ତା ପ୍ରାଣକୁ !
ଧନୁ ଆଞ୍ଜ, ସର୍ଜ୍ଜିଥିଲୁ ବାଣକୁ
ବାଦ ରଚଲ୍ କେ ସୁଧା ମୂର୍ଦ୍ଧାରେ
ପାଦ ନ୍ୟାସ କଲ୍ ହାସ ସୁଧାରେ
ଆସନ୍ତା କାହିଁକି
ଭାଷନ୍ତା ତୁ ଏହା ହେଲୁ କାହିଁକି ? । ୫୦ ।

**ଅନ୍ୱୟ**— ଧନୁ ଅଞ୍ଜ ବାଣକୁ (ଯେପରି) ସର୍ଜ୍ଜିଥିଲୁ (ଯାହା କଥା ଶୁଣିଲୁ ତା) ତନୁ (ଏଠାରେ) ଥିଲେ (ସେ) ପ୍ରାଣକୁ ବର୍ଜ୍ଜିଥାନ୍ତା । କେ ବାଦ ରଚଲ—ସୁଧା ମୂର୍ଦ୍ଧାରେ ପାଦନ୍ୟାସ କଲ (ତା) ହାସ ସୁଧାରେ ଆସନ୍ତା ନାହିଁକି ? (ଆସି) ଭାଷନ୍ତା ତୁ କାହିଁକି ଏହା କଲୁ ?

**କଥା**—ତୁ ଭ୍ରୂଲତା ଧନୁକୁ ଉଞ୍ଚେଇ କାମଦେବର ନେତ୍ର ବାଣକୁ ଯେପରି ସଜଳ କରି ଲଚ୍ଛିବାକୁ ବାହାରିଥିଲୁ ସେ ସ୍ୱୟଂ ଉପସ୍ଥିତ ଥିଲେ ସେ ମରିଯାଇଥାନ୍ତା ।

ଆଉ ଜଣେ ସଙ୍ଗୀ ପ୍ରତିବାଦୀ ହୋଇ କହିଲା—ମରନ୍ତା କପରି ସେ ? କାହିଁକି ? ଆମ ରୁକ୍ମଣୀର ଯେଉଁ ହାସ ଅମୃତ, ଯାହାକି ପ୍ରକୃତ ଅମୃତ ମୁଣ୍ଡରେ ପାଦନିକ୍ଷେପ କରିପାରେ ସେ ବଞ୍ଚାଇବାରୁ ଆସନ୍ତା ନାହିଁକି ? ବଞ୍ଚିବା ପରେ ଆସି କହନ୍ତା—ଆରେ ବିଶ୍ୱମନୋରମା ! ତୁ ଏପରି କାହିଁକି ହେଲୁ ?

---

ଶବ୍ଦାର୍ଥ । ଅଞ୍ଜ—ଉଞ୍ଚେଇ, ଟାଣି । ସୁଧା— ଅମୃତ । ମୂର୍ଦ୍ଧା—ମସ୍ତକ । ପଦନ୍ୟାସ— ପାଦ ଥୋଇବା, ପଦନିକ୍ଷେପ । ଭାଷନ୍ତା— କହନ୍ତା ।

ଏଥୁ ଅନ୍ତେ ଶୁଣ ଆନ ଚରିତ
ନୃପତି ହୋଇ ଅତି ହରଷିତ
କଲେ ଯେତେ ବିତ୍ତ ଦତ୍ତ ବନ୍ଦୀରେ
ଗଲା ବେଳକୁ ସେ ନିଜ ମନ୍ଦିରେ
ବଳୀବର୍ଦ୍ଦ ପରି
ବାହାରିଲା ଗଜ ସମାଜ ଧରି । ୫୧ ।

**ଅନ୍ୱୟ**—ଏଥୁଅନ୍ତେ ଆନ ଚରିତ ଶୁଣ । ନୃପତି ଅତି ହରଷିତ ହୋଇ ସେ ବନ୍ଦୀରେ ନିଜ ମନ୍ଦିରେ ଗଲା ବେଳକୁ ଯେତେ ବିତ୍ତ ଦତ୍ତ କଲେ (ତାହାସବୁ) ଯେନ ସେ ବଳୀବର୍ଦ୍ଦ ପରି ଗଜ ସମାଜ ଧରି ବାହାରିଲା ।

**କଥା**—ଏହାପରେ ଅନ୍ୟ ବିଷୟ ଶୁଣ । ଉକ୍ତ ନୃପତି ଅତି ଆନନ୍ଦିତ ହୋଇ ସେ ଭାଟକୁ ନିଜ ଗୃହକୁ ଗଲାବେଳକୁ ଯେତେ ଧନ ଦାନ କଲେ, ତାହା ସବୁ ଯେନ ସେ ଲଦନ ବଳଦ ପରି ଶତ ଶତ ହାତୀରେ ଲଦି ବାହାରିଲା ।

**ଆଲୋଚନା**—ଲଦନ ବଳଦ ଯେପରି ଶତ ସଂଖ୍ୟାରେ ଦୁଇପାଖେ ବୋଝ ଜିନିଷ ନେଇଥାନ୍ତି—ସେହିପରି ଅସଂଖ୍ୟ ହାତୀରେ ସେ ଧନମାନ ଲଦି ନେଇଥିଲା ।

---

ଶବ୍ଦାର୍ଥ । ଏଥୁଅନ୍ତେ—ଏହାପରେ । ଚରିତ—ବିଷୟ । ହରଷିତ—ଆନନ୍ଦିତ । ବନ୍ଦୀରେ—ଭାଟକୁ । ରେ—କୁ । ମନ୍ଦିର—ଗୃହ । ବଳୀବର୍ଦ୍ଦ—ବଳଦ, ଲଦନ ବଳଦ ।

**ମେଚକାଚଳ—ରତ୍ନାସନ ଚକା**
**ଚକାନୟନ ନଭକାଇ ଧକ୍‌କା**
**ପକାନ୍ତୁ ଏକାକୀ ଚୟ ପାତକେ**
**ଷଟଦଶ ଚକ୍ର ଚକ୍ରଙ୍କ ଡାକେ**
**ଏମନ୍ତ ବିହାର**
**ଗ୍ରନ୍ଥ କର୍ତ୍ତା ଚନ୍ଦ୍ରା ପଦ୍ମ ନୀହାର । ୫୨ ।**

**ଅନ୍ୱୟ**—(ଯେଉଁ) ମେଚକାଚଳ ରତ୍ନାସନ ଚକା, ଚକା ନୟନ ଷଡ୍‌ଦଶଚକ୍ର ଚକ୍ରଙ୍କ ଡାକେ ଏକାକୀ ଚୟ ପାତକେ ନ ଭକାଇ ଧକ୍‌କା ପକାନ୍ତୁ, ଏମନ୍ତ ବିହାର କର୍ତ୍ତା ଗ୍ରନ୍ଥକର୍ତ୍ତା ଚନ୍ଦ୍ରାପଦ୍ମ (କୁ) ନୀହାର (ସ୍ୱରୂପୀ ହୁଅନ୍ତୁ) ।

**କଥା**—ନୀଳଗିରି ରତ୍ନ ସିଂହାସନରେ ଚକା ପକାଇ ବସିଥିବା ଯେଉଁ ଜଗନ୍ନାଥ ମହାପ୍ରଭୁ ତାଙ୍କ ନନ୍ଦିଘୋଷ ରଥର ଷୋଳ ଚକ ଯାକର ଉଡ଼ରେ ନିଃସଙ୍ଗ ଅସହାୟମାନଙ୍କର ପାପମାନଙ୍କୁ ମୁହୂର୍ତ୍ତେ ଅପେକ୍ଷା ନ କରି ତୁରନ୍ତ ନିବାରଣ କରିଥାନ୍ତି, ଏମନ୍ତ ରଥ ବିହାରକର୍ତ୍ତା ଗ୍ରନ୍ଥକର୍ତ୍ତାର ଚନ୍ଦ୍ରା-ପଦ୍ମକୁ ତୁଷାର ସ୍ୱରୂପ ହୋଇ ନିବାରଣ କରନ୍ତୁ ।



ଶବ୍ଦାର୍ଥ—ମେଚକାଚଳ—ନୀଳଗିରି । ରତ୍ନାସନ—ରତ୍ନ-ସିଂହାସନ । ଚକା—ଦୁଇ ଜାନୁ ଛନ୍ଦି ବସିବା । ଚକା-ନୟନ—ଜଗନ୍ନାଥ । ଚକ୍ର—ସମୂହ । ଷଟଦଶ—ଷୋହଳ । ଏକାକୀ—ନିଃସଙ୍ଗ । ଚୟ—ସମୂହ । ଧକ୍‌କା—ବିନାଶ, ନିବାରଣ । ନୀହାର—ତୁଷାର,ଶୀତ ।

# ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର

**ତୃତୀୟ କଳା:—**

ଆହାସ୍ୟ ସାଗରେ ଚନ୍ଦ୍ରକଳଶି ପଦରେ ଏହି ଗ୍ରନ୍ଥଟି ସଂପୂର୍ଣ୍ଣ ହୋଇଛି ।

ଯାହାଙ୍କ ଲଗି ଏ ଗ୍ରନ୍ଥଟି ଲେଖାଯାଇଛି ସେହି ବିଶ୍ୱସୁନ୍ଦରୀ ରୁକ୍ମଣୀଙ୍କର ବର୍ଣ୍ଣନା କବି ଏପରି ଅନୁପମ ଭଙ୍ଗୀରେ ଦେଇ ପାରିଛନ୍ତି ସେ ଯେବେ ଆଉ କିଛି ଲେଖିନଥାନ୍ତେ ବା ତାଙ୍କର ଲେଖାମାନ ନଥାଇ ଯେବେ ଏ ଗୋଟିକ ଗ୍ରନ୍ଥ ରହି ପାରିଥାନ୍ତା, ତେବେ ତାଙ୍କୁ ମହାକବି କହିବାକୁ ଧରଣୀର ପଣ୍ଡିତମଣ୍ଡଳୀ କେବେ କୁଣ୍ଠାପ୍ରକାଶ କରନ୍ତେ ନାହିଁ ।

ଅନେକ ବହୁମୂଲ୍ୟ ରତ୍ନ ଯେପରି କାଳର କୁ-ଚକ୍ରାନ୍ତରେ ମନୁଷ୍ୟର ନେତ୍ରାନ୍ତଥି ହୋଇନପାରି ଆଜି କେଉଁଠି ଧରଣୀର କେଉଁ କୋଣରେ ଲୁଚିରହିଛି ଅଥବା ଅନାବିଷ୍କୃତ ଭାବରେ ରତ୍ନବହୁଳା ବସୁନ୍ଧରାର ମୃତ୍ତିକା ତଳେ ପଡ଼ିରହିଛି, ତଦ୍ରୂପ ଏହି ଅମୂଲ୍ୟ କଳା ରତ୍ନଟି ଏବେ ମଧ୍ୟ ସ୍ୱକୀୟ ଯୋଗ୍ୟତା ଦ୍ୱାରା ବୀଣାପାଣିଙ୍କର ସାରସ୍ୱତ ଭଣ୍ଡାରରେ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ କରିପାରିନ ।

ଏହି କଳାର ବିଚାର କରିବାକୁ କବି ଏପରି ଆହ୍ୱାନ ଜଣାଇଛନ୍ତି ଯେ ଯାର ନିପୁଣ କୀର୍ତ୍ତି ଅତି ଶୁଦ୍ଧ, ଯେଉଁ ରମାର ହାସ୍ୟରେ ସୁଦ୍ଧା ଅତିକ୍ଷୀଣ ଭାବେ ଅବିଶୁଦ୍ଧତା ନାହିଁ ଅର୍ଥାତ୍ ଯାହା ଅଦୂଷିତ, ତ୍ରିଭୁବନର ପ୍ରଲୋଭମାୟୁ ସେ ଏ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛନ୍ତି । ଅତି ମନୋହର କ୍ଷୀରସାଗର ମଧ୍ୟ ସେ ହାସ୍ୟପରି ଶୁଭ୍ର ନୁହେଁ, କାରଣ ତା ମଧ୍ୟରେ ନୀଳ ବର୍ଣ୍ଣର ବିଷ୍ଣୁ ଅନନ୍ତ ଶୟନରେ ଅଛନ୍ତି । ଶିବ ଧବଳ ଗିରିସମ ଏକାନ୍ତ ଶୁଭ୍ର ହେଲେହେଁ ତାଙ୍କ କଣ୍ଠରେ ବିଷ ଯୋଗ ନୀଳିମା ରହିଛି । ଚନ୍ଦ୍ରମା ଅତ୍ୟନ୍ତ ଶୁଭ୍ର ସତ୍ୟ, କିନ୍ତୁ ସେଥିରେ କଳଙ୍କ ଚିହ୍ନ ବର୍ତ୍ତମାନ ।

ଗ୍ରନ୍ଥର ପ୍ରଥମ ପଦରେ କବି ଯେଉଁ ବରବର୍ଣ୍ଣିନୀଙ୍କର ହାସ୍ୟକୁ ଏପରି ସୁନ୍ଦରତର କରିପାରିଛନ୍ତି, ତାଙ୍କର ମୁଖ, ଦନ୍ତ, ଅଧର ମାଧୁରୀ ପ୍ରତି ଅତି ନିପୁଣ ଭାବରେ ଅଖିଳ ମାନବର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । ପାଠକ ଯେତିକ

ଆଗେଇ ଚାଲିବେ ସେ ନିଶ୍ଚୟ ବୁଝିବେ ଏପରି ନାରୀରତ୍ନ ଜଗତରେ ପ୍ରକୃତରେ ନଥିଲେ ଧରଣୀର ଏବଂ ଜୀବନର ଆନନ୍ଦ ବା କେଉଁଠି ? ନାରୀ ବିଶ୍ୱସୃଷ୍ଟିରେ କି ମହନୀୟ ଆକର୍ଷଣ, କି ଅମୃତ ରସରଧାରା, ତାହା ଅମୃତ ସନ୍ତାନ ମାନବ ନ ସମଝିବା ଯାଏ ତାର ଶାନ୍ତି କାହିଁ, ତାର ମର୍ଯ୍ୟାଦା କାହିଁ, ତାର ରକ୍ଷାରକ୍ଷଣ କାହିଁ ?

ଜେମା ରୁକ୍ମଣୀଙ୍କୁ ବସନ୍ତ ସମୟରେ ସଖୀମାନେ କାନନ ଭ୍ରମଣ ଲାଗି ଅପରୂପ ଯୁକ୍ତି ଦେଖାଇ ସ୍ୱୀକୃତ କରାଇ ପହଣ୍ଡ ମଣାଇଲେ । ଯେଉଁ ମାର୍ଗରେ ପାଟଜେମା ଚାଲିକରିଯିବେ ତାହା କବିମଣି ଏପରି ଲେଖିଛନ୍ତି—

ପରିଚାରୀ ବର୍ଗ ଆଚରିଲେ ମାର୍ଗ ମାର୍ଜନା ସିଦ୍ଧି ବେଗ କରି
ଶିଳ୍ପ କଳ୍ପନାରେ କମଳ କୋମଳ ଦଳ ବହଳ କରିପାରି
ତହିଁ ଉପରେ
କେତକୀ ଗର୍ଭସ୍ଥ ରଜକୁ
ସୁସଞ୍ଜେ ସିଞ୍ଚି ସେ କରାଇଲେ ବିଜେ ଅବଳା ସମାଜ ରାଜକୁ ।

ସୁ କୋମଳ ପଦ୍ମ ପାଖୁଡ଼ା ବହଳ କରି ପାରି ତା ଉପରେ କେତକୀ ଫୁଲ ଧୂଳିକୁ ସଜାଇ ସିଞ୍ଚିବା ପରେ ଅବଳା ସମାଜ ରାଜ ରୁକ୍ମଣୀ ତାଙ୍କର ପାଦାମ୍ବୁଜ ପକାଇଲେ । ମଙ୍ଗଳ ସଙ୍ଗୀତ ଗାନ ଚାଲିଛି । ଚାମର, ଝାଲର, ଆଲଟ ଧାରିଣୀ ମାନେ ଖରାବାସରୁ ସେହି ବିଶ୍ୱ ବିମୋହିନୀଙ୍କୁ ରକ୍ଷାକରି ପହଣ୍ଡ ମଣାଇ ଆଗେଇ ନେଇଯାଉଛନ୍ତି । ପାଠକ ସତେ ବା ଆଖିରେ ଦେଖୁଛନ୍ତି ।

କବି ଜେମାଙ୍କର ବିଜୟ ବେଳେ ଯେଉଁ ବର୍ଣ୍ଣନା ଦେଇଛନ୍ତି ତାର ପ୍ରତିପଦ ଛଣା ଅମୃତ ପଣାପରି ନିରନ୍ତର ପାନ କରିବାକୁ ଇଚ୍ଛାହୁଏ । ତେଣୁ ଗ୍ରନ୍ଥ ମଧ୍ୟକୁ ପାଠକ ପାଠିକା ପ୍ରବେଶ କଲେ ଏହି ବର୍ଣ୍ଣନାର ଚମତ୍କାରିତାର ସତ୍ୟାସତ୍ୟ ଆପେ ସମଝି ଯିବେ ।

ବାସନ୍ତିକ ଫଗୁଗୁଣ୍ଡ ବିନିମୟ, କବି କନ୍ୟାର ରସବନ୍ତ ଉକ୍ତି ପ୍ରତ୍ୟୁକ୍ତି ପରେ ହଠାତ୍ ଅମରଯନ୍ତ୍ର ନାରଦ—ଯେ ଅଖିଳ ଜଗତର ମୁନିମାନଙ୍କ ମଧ୍ୟରେ ମାନନୀୟ ସେ ମଧ୍ୟ ଏ ସୌନ୍ଦର୍ଯ୍ୟକୁ ଭୁଲି ଚାଲିଯାଇ ପାରିନାହାନ୍ତି ।

ରୁକ୍ମଣୀ ନମସ୍କାର କରନ୍ତେ ତାଙ୍କୁ ଏପରି ଆଶୀର୍ବାଦ କରିଛନ୍ତି, ଯେପରି ସେ ପରମ ପ୍ରେମିକ, ପରମ ରୂପବନ୍ତ, ପରମ ଧାର୍ମିକ, ପରମ ଦେବେଶ କୃଷ୍ଣଙ୍କୁ ସ୍ୱାମୀ ସ୍ୱରୂପ ଲାଭ କରିବେ ।

ଏହାପରେ କବି ଯେପରି କୁଶଳଭାବରେ ସମସ୍ତ ଶାସ୍ତ୍ରୀୟ ରାଗ ମାନଙ୍କୁ ଯେଉଁ ଉକ୍ତି ପ୍ରତ୍ୟୁକ୍ତିରେ ଦ୍ୱିବିଧ ଅର୍ଥରେ ଆଲୋଚନା କରିଛନ୍ତି, ତାହା ସେପରି ଅସୀମ ପଣ୍ଡିତ ଏବଂ ବିଚକ୍ଷଣ ନହେଲେ କେହି କରିପାରିବା ଅସମ୍ଭବ ମନେହୁଏ ।

ସମୁଦ୍ର ତରଙ୍ଗ ଯେପରି ମୁହୂର୍ମୁହୁ ନେତ୍ରର ଆକର୍ଷଣକୁ ନିରନ୍ତର ପ୍ରଲୋଭିତ କରିଥାଏ, ଏହି ନେତ୍ର କୌମୁଦୀ ରୁକ୍ମଣୀଙ୍କର ବର୍ଣ୍ଣନାତ୍ମକ କଳାର ପଦ ପରେ ପଦ ପଢୁ ପଢୁ ପାଠକ ସ୍ତମ୍ଭିତ, ଚକିତ, ମୋହିତ ହୋଇଥାଏ । ସେ ସରେନାହିଁ କି ପ୍ରଲୋଭନ ମଧ୍ୟ ଗୁଡ଼ ହୁଏ ନାହିଁ ।

"ସୁନ୍ଦରେ ତୃପ୍ତିର ଅବସାଦ ନାହିଁ ।"

ବର୍ଣ୍ଣିତ ଉଚ୍ଛନ୍ନ ରୂପସୀ ଦଳର ପରିଣତି କଣହେବ, ପାଠକ ଭାବିପାରେ ନାହିଁ । ହଠାତ୍ ବୟୋବୃଦ୍ଧା ପରିଚାରିକା ଶାସନ କରିବାର ସମ୍ଭାବ୍ୟ ଉକ୍ତି ଅତି ବିଚକ୍ଷଣ ଭାବେ ଏଥିରେ ସେ ପଢ଼ିବାରୁ ଉଦ୍‌ବେଗକୁ ସମ୍ଭାଳି ନିଏ ।

ଚନ୍ଦ୍ରମା ଉଦୟ ହେବା ଓ ସୂର୍ଯ୍ୟ ଅସ୍ତ ହେବାର ଚିତ୍ର ଏପରି ଦିଆଯାଇଛି ତାହା ପାଠକ ମାନଙ୍କୁ ଆଲୋଚନା କରିବାକୁ ନିମନ୍ତ୍ରଣ କରାଯାଉଛି । ଶୀତଶୀଳା ବୃଦ୍ଧାଦାସୀ ଭୟରେ ଯୁବତୀମାନେ 'ମହାମଲ୍ଲ ଚକାସାଧନ ଆଶଙ୍କା କୁଚ ଯୁଗଳକୁ ଅଙ୍କୁରାଇ ଯେପରି ରାଜପୁରକୁ ଫେରିଛନ୍ତି, ଯେତେ ପଢୁଥିଲେ କାଳୀଦାସଙ୍କ "ଅଭିଜ୍ଞାନ ଶାକୁନ୍ତଳ" ପରି ପ୍ରାଣ ପୁଲକିତ କରିଦିଏ ।

ଏ ଦୀର୍ଘ ରଚନାର ସବୁପଦ ବିନ୍ଦୁଏ ବିନ୍ଦୁଏ ଅମୃତ ବା ପୂଳେ ପୂଳେ ଛେନା କାକରା ପରି ଅତି ସୁସ୍ୱାଦୁ । ଏପରିକି ତୃଷାତୁର ପକ୍ଷରେ ଗଙ୍ଗାବାଣ ପଇଡ଼ ପଣା ପରି ସନ୍ତୋଷ ଦାୟକ ଅଟେ । ଯୁବତୀର ଲାବଣ୍ୟ ରୂପାଡ଼ମ୍ବର ଯେଉଁ ଏବଂ ତାର ମାଧୁରୀ ମଦନୀପୂତା ଯେଉଁ, ତାର କଳା କୁଶଳତା-ରୁଚିର ବୈଚିତ୍ର୍ୟ ଯେଉଁ ଏକାଠି କେହି ଦେଖିବାକୁ ଗୃହାନ୍ତିତ ସେ ଏ ଗ୍ରନ୍ଥ ପଢ଼ନ୍ତୁ । ଏହି ବର୍ଣ୍ଣନାରେ ଥିବା ଯୁବତୀମାନେ ଉତ୍କଳରେ ରମଣୀ ମଣିଙ୍କ ଅନୁକୃତି ନିଶ୍ଚୟ । ପଦମାନଙ୍କରେ ଅଳଙ୍କାର କବି ଯାହା ଖଞ୍ଜିଛନ୍ତି ତାହା ପରବର୍ତ୍ତୀ କାଳର ପଣ୍ଡିତଙ୍କ ଆଲୋଚନା ପାଇଁ ରଖାଗଲା ।



# ତୃତୀୟ କଳା

ରାଗ—ଆହାରୀ

**କ୍ଷୀରସାଗର-ଉଦର ଆଦରିଛି ନବମୁଦିର-ଜ୍ୟୋତିସଙ୍ଗ**
**ଚଣ୍ଡୀ କଣିଧବ ଧବଳେ ମିଶିଛି ଅଧବଳ ବିଷ କୁରଙ୍ଗ**
**ହାସେ ରମାର**
**ନୀଳିମାରେ ନାହିଁ ସଞ୍ଚାର**
**ଏପରି ବିଦଗ୍ଧ-କୀର୍ତ୍ତି ଯାର ଶୁଦ୍ଧ ସେହି ଏହି କଳା ବିଚାର ।୧।**

**ଅନ୍ୱୟ**—(୧) କ୍ଷୀରସାଗର-ଉଦର ନବମୁଦିର-ଜ୍ୟୋତିସଙ୍ଗ ଆଦରିଛି । ଚଣ୍ଡୀଧବ (ଓ) କଣିଧବ ଧବଳେ ଅଧବଳ (ବିଷ) ଓ କୁରଙ୍ଗ ମିଶିଛି । କିନ୍ତୁ (ଏ) ରମାର ହାସେ ନୀଳିମାର ସଞ୍ଚାର ନାହିଁ । ଏପରି ଯାର ବିଦଗ୍ଧ କୀର୍ତ୍ତି ଶୁଦ୍ଧ ସେହି ଏହି କଳା (ର) ବିଚାର ଅଟେ ।

(୨)—(କିନ୍ତୁ) ରମାର ହାସେ ନୀଳିମାର ସଞ୍ଚାର ନାହିଁ । ଏପରି ଯାର ବିଦଗ୍ଧ କୀର୍ତ୍ତି ଶୁଦ୍ଧ ସେହି ଏହି କଳା ବିଚାର (କରନ୍ତୁ) ।

**କଥା**—ଦୁଗ୍ଧ ସମୁଦ୍ରର ଅଭ୍ୟନ୍ତରରେ ନବମେଘ ଜ୍ୟୋତି ସମ୍ପନ୍ନ ନୀଳବର୍ଣ୍ଣର ବିଷ୍ଣୁ ଅଙ୍ଗ ଅନନ୍ତ ଶୟନରେ ଥିବାରୁ ତାହା ସମ୍ପୂର୍ଣ୍ଣ ଧବଳ ନୁହେଁ । ଚଣ୍ଡୀ (ପାର୍ବତୀ) କାନ୍ତ ଶିବ ରଜତଗିରିନିଭ ଧବଳ ରଙ୍ଗ ବିଶିଷ୍ଟ ହେଲେ ହେଁ, ତାଙ୍କ କଣ୍ଠରେ ବିଷର ନୀଳିମା ଥିବାରୁ ସେ ସମ୍ପୂର୍ଣ୍ଣ ଧବଳ ନୁହନ୍ତି । କଣିଧବ ଚନ୍ଦ୍ରମା ସମ୍ପୂର୍ଣ୍ଣ ଧବଳ ହେଲେହେଁ ତା ଅଙ୍କରେ କୃଷ୍ଣକୁରଙ୍ଗ ଚିହ୍ନ ଯୋଗୁଁ ସେ ମଧ୍ୟ ସମ୍ପୂର୍ଣ୍ଣ ଧବଳ ନୁହେଁ । କିନ୍ତୁ ପୂର୍ବ ବର୍ଣ୍ଣିତ ନବୀନା ରମଣୀୟା ଜେମା ରୁକ୍ମଣୀର ହସରେ ନୀଳିମାର ଚିହ୍ନ ବର୍ଣ୍ଣ ଠୁଳେ ମାତ୍ର ନାହିଁ । କାରଣ ସେ ହାସ୍ୟ, ଜଣକର ଶ୍ରଦ୍ଧା ଲାଗି କେବଳ ଉଦ୍ଦିଷ୍ଟ । ତେଣୁ ଏତେ ଶୁଦ୍ଧ ଯେ ତାହା ସମ୍ପୂର୍ଣ୍ଣ ଧବଳ ଅଟେ । ଯେଉଁ ଲାବଣ୍ୟବତୀ ଜେମାର ଏପରି ନିପୁଣ କୀର୍ତ୍ତି ଏକାନ୍ତ ଶୁଦ୍ଧ ସେହି ବିଷୟ ଏହି କଳା (ଛାନ୍ଦ) ର ବିବେଚନା ଅଟେ ।

**ଆଲୋଚନା**—'ଅପାଂଶୁଳାନାଂ ଧୁରି କୀର୍ତ୍ତନୀୟା । ରୁକ୍ମଣୀ ସେତେବେଳେ ସର୍ବଶ୍ରେଷ୍ଠ ରମଣୀ ରତ୍ନ ଥିଲେ ।

ଏ ପଦର ଅନ୍ୟାର୍ଥ—ରମଣୀର ହାସ୍ୟ ପରି ଯାର, ରସଜ୍ଞତା ରୂପକ କୀର୍ତ୍ତି ଶୁଦ୍ଧ ସାତ୍ତ୍ୱିକ, ସେହି ବ୍ୟକ୍ତିମାନେ ଏ କଳାକୁ ବିଚାର କରନ୍ତୁ ।

---

ଶବ୍ଦାର୍ଥ । କ୍ଷୀରସାଗର—କ୍ଷୀର ସମୁଦ୍ର । ଉଦର—ଗର୍ଭ, ଅଭ୍ୟନ୍ତର । ମୁଦିର—ମେଘ । ନବମୁଦିର ଜ୍ୟୋତି—ମେଦୁର ଜଳଧର ବିଷ୍ଣୁଙ୍କର ନୀଳ ଦେହ । ଚଣ୍ଡୀଧବ—ଶିବ । କଣିଧବ—ଚନ୍ଦ୍ରମା । ଅଧବଳ—କଳା, ନୀଳ । ବିଷ--ନୀଳରଙ୍ଗ । କୁରଙ୍ଗ—ଚନ୍ଦ୍ରର ମୃଗାଙ୍କ । ରମା—ମହାସୁନ୍ଦରୀ ରମଣୀ । ଚଣ୍ଡୀ—ପାର୍ବତୀ । ବିଦଗ୍ଧ—କାମଦଗ୍ଧ; ନିପୁଣ, ଚତୁର, ରସିକ । ବିଚାର—ନିର୍ଣ୍ଣୟ କରିବା, ବିବେଚନା, ମୀମାଂସା, ନିଷ୍ପତ୍ତି, ଭଲମନ୍ଦ ପରୀକ୍ଷା । ସଞ୍ଚାର—ବିସ୍ତାରଚିହ୍ନ ।

**ଭୀଷ୍ମକ ଆନନ୍ଦ ଜନ୍ମାଇଲ୍ ବନ୍ଦୀ ବନ୍ଦିବା ପଦକ ଭାଷା ଯେ**
**ରୁକ୍ମଣୀ-କୁନ୍ଦନେ ନୀଳମଣି-ମେଳ ବହନ୍ତେ ପଦକ ଭାଷା ଯେ**
**ଧରା ଦେବୀଙ୍କି**
**ମଣ୍ଡିବା ଦାସୀଏ ଇଚ୍ଛିଲେ**
**ଡାକଲାଣି ପିକ ବିପିନେ ଠାଠିକ ସ୍ୱରୂପା ଯିବାକ ଭାଷିଲେ । ୨ ।**

**ଅନ୍ୱୟ**—ରୁକ୍ମଣୀ-କୁନ୍ଦନେ ନୀଳମଣି-ମେଳ ପଦକ ଭାଷା ବହନ୍ତେ ବନ୍ଦୀ ବନ୍ଦିବା ପଦକ ଭାଷାରେ ଭୀଷ୍ମକ ଆନନ୍ଦ ଜନ୍ମାଇଲା । ଦାସୀଏ ଧରା ଦେବୀଙ୍କି ମଣ୍ଡିବା ଇଚ୍ଛିଲେ । (ତେଣୁ) ହେ ଠାଠିକ ସ୍ୱରୂପା ! ବିପିନେ ପିକ ଡାକଲାଣି, ଯିବାକ ? ଭାଷିଲେ ।

**କଥା**—ରୁକ୍ମଣୀ ରୂପିଣୀ ସୁବର୍ଣ୍ଣରେ ନୀଳମଣି ସ୍ୱରୂପ କୃଷ୍ଣଙ୍କୁ ମିଳାଇ ତାର ମିଷ୍ଟ ଭାଷଣର କଣ୍ଠ ଭୂଷଣ ପଦକଟିଏ ଗଢ଼ି ଦିଅନ୍ତେ, ଭାଟର ଏହି ବନ୍ଦନା ମୂଳକ ପଦେ କଥା ଯୋଗୁଁ ରାଜା ଭୀଷ୍ମକଙ୍କର ଆନନ୍ଦ ଜାତ ହେଲା ।

ଏପରି ସମୟରେ ଅନ୍ତଃପୁର ମଧ୍ୟରେ ଥିବା ଦାସୀମାନେ ବସନ୍ତ ସମାଗମ ହେତୁ ପ୍ରଫୁଲ୍ଲିତା ପୃଥ୍ୱୀ ଦେବୀଙ୍କି ପ୍ରାକୃତିକ ଭାବରେ ମଣ୍ଡିବାକୁ ଇଚ୍ଛାକଲେ । ତେଣୁ ଜେମା ରୁକ୍ମଣୀଙ୍କୁ ଡାକ କହିଲେ—ହେ ଅତି ସୁନ୍ଦର ଆକୃତିମତୀ ଜେମା ! ଦେଖ, ଅରଣ୍ୟରେ କୋକିଳ ଡାକଲାଣି । ସେଠାକୁ ଯିବାକ ?

---

ଶବ୍ଦାର୍ଥ । କୁନ୍ଦନ—ସୁବର୍ଣ୍ଣ । ନୀଳମଣି—ନୀଳରଙ୍ଗ ବଶିଷ୍ଟ ଅତ୍ୟୁତ୍କୃଷ୍ଟ ମଣି ବିଶେଷ, କୃଷ୍ଣ । ମେଳ—ମିଳନ । ପଦକ—କଣ୍ଠଭୂଷଣ । ପଦକ ଭାଷାରେ—ପଦେ କଥାରେ । ଧରା ଦେବୀଙ୍କି—ପୃଥ୍ୱୀ ଦେବୀଙ୍କ ପ୍ରାକୃତିକତାକୁ । ବିପିନେ—ବନରେ । ଠାଠିକ—ଅତି ସୁନ୍ଦର ଆକୃତି ବଶିଷ୍ଟା ।

**ମଧୁସଙ୍ଗୀ ରତିବନ୍ଧୁ ଥିବ ଜୀବ ନେବ ମୁଁ ଏକାକୀ ଲଳନା**
**ନୁହଇ ଉଚିତ କୁଞ୍ଚିତ-କୁଞ୍ଚିତକୁନ୍ତଳା ! କରନା କଳନା**
**ମହ ଅହରେ**
**ବହଇ ନାହିଁ ସେ ସୋରଷେ**
**ଯେବେ ବା ବହିବ ତେବେ ପଳାଇବ ତବ ଲୋକନେ କିଶୋରୀ ସେ ।୭।**

**ଅନ୍ୱୟ**—(ତୁ କହିବୁ) ମୁଁ ଏକାକୀ ଲଳନା (ଥିବାରୁ ତହିଁ) ମଧୁସଙ୍ଗୀ ରତିବନ୍ଧୁ ଥିବ । ଜୀବ ନେବ, (ଏହା) ଉଚିତ ନୁହଇ । କିନ୍ତୁ (ରେ) କୁଞ୍ଚିତ କୁନ୍ତଳା ! କୁଞ୍ଚିତ କଳନା କରନା । (କାରଣ) ଅହରେ ସେ ସୋରଷେ ମହ ବହଇ ନାହିଁ । ଯେବେ ବା ବହିବ ତେବେ ରେ କିଶୋରୀ ! ତବ ଲୋକନେ ପଳାଇବ ।

**କଥା**—ତୁ କହିବୁ ମୁଁ ଏକାକିନୀ ବିଶେଷରେ ଅବଳା ଥିବାରୁ ଉକ୍ତ ପ୍ରଫୁଲ୍ଲିତ ଅରଣ୍ୟରେ ମଧୁକାଳର ସଙ୍ଗୀ ରତିବନ୍ଧୁ କାମଦେବ ଓ ନିଶ୍ଚୟ ସେଠାରେ ଥିବ, ତେଣୁ ମୋ ଜୀବନ ସେ ନେଇଯିବ । ମୋର ସେଠାକୁ ଯିବା ଉଚିତ ନୁହେଁ ।

କିନ୍ତୁରେ କୁଞ୍ଚିତ କୁନ୍ତଳା ! ଏ ସମ୍ବନ୍ଧରେ କିଞ୍ଚିତ୍ ମାତ୍ର ବିଚାର କରନା । କାରଣ ଦିବସରେ ସେ ସୋଡ଼ଷଷ୍ଟାକର ବଳ ଦେଖାଏ ନାହିଁ । ଯେବେ ସେପରି ତେଜ ବହିବ ତେବେ ରେ କିଶୋରୀ । ତତେ ଦେଖିଲେ ସେ ପଳାଇବ ।

---

ଶବ୍ଦାର୍ଥ । ମଧୁସଙ୍ଗୀ—ମଧୁ କି ବସନ୍ତ କାଳର ସଙ୍ଗୀ କାମ ଦେବ । ରତିବନ୍ଧୁ—ରତିଙ୍କର ବାନ୍ଧବ କାମଦେବ । ଅହ—ଦିବସ । ମହ—ତେଜ, ବଳ । କଳନା—ବିଚାର, ଧାରଣା । ସୋରଷେ—ସୋଡ଼ଷଷ୍ଟାକର, ଟିକେ ମାତ୍ର ବହିବ ।—ବହନ କରିବ ।

**ଅମ୍ବୁଜକଳି-ଉରଜ ଶମ୍ଭୁଭଳି ଭୟ ଭଜିବ ତା ମନକୁ**
**କୁସୁମ କଲ୍ପ ଆକଲ୍ପ ଦଶିଯିବ ଛଡ଼ାଇଲା ପରି ଧନୁକୁ**
**ବଦେ ବୈଦ୍ୟକା**
**ପଥ୍ୟ ପଥିକତା ବସନ୍ତେ**
**ଶ୍ରୁତିଗା ଏ ଉକ୍ତି ଦେଇଁ ସଦନୀତ ଜାଗ୍ରତା ସାଜିଲା ତୁରତେ । ୪ ।**

**ଅନ୍ୱୟ**—(ତୋର) ଅମ୍ବୁଜକଳି-ଉରଜ ଶମ୍ଭୁଭଳି (ଦେଖି) ଏବଂ (ତା) ଧନୁକୁ ଛଡ଼ାଇଲା ପରି ତୋ କୁସୁମ କଲ୍ପ ଆକଲ୍ପ (ଯେତେବେଳେ) ଦଶିଯିବ ତା ମନକୁ ଭୟ ଭଜିବ ।

(ଏମନ୍ତ ସମୟେ) ବୈଦ୍ୟକା ବଦେ, ବସନ୍ତେ ପଥିକତା ପଥ୍ୟ (ଅଟେ) ।

ଶ୍ରୁତିଗା ଏ ଉକ୍ତି ସଦନୀତ ଜାଗ୍ରତା (କୁ) ଦେଇଁ (ସେ) ତୁରତେ ସାଜିଲା ।

**କଥା**—ତୋର ପଦ୍ମ କଳିକାକୃତି ସ୍ତନକୁ ସେ ମହାଦେବଙ୍କ ଭଳି ଦେଖି ଏବଂ ତା ହାତରୁ ତୁ ଫୁଲଧନୁ ଛଡ଼ାଇ ଆଣିବା ପରି ତୋ ଫୁଲମାଳାର ଭୂଷଣ ଯେତେବେଳେ ତାକୁ ଦଶିଯିବ, ସେ ତା ମନକୁ ଭୟ ଭଜିବ ।

ଏପରି ସମୟରେ ବୈଦ୍ୟକନ୍ୟା କହିଲା—"ବସନ୍ତେ ଭ୍ରମଣଂ ପଥ୍ୟଂ" ବସନ୍ତ କାଳରେ ପଥିକ ହେବାଦ୍ୱାରା ପଥ୍ୟର କାମ ଦିଏ । ଉକ୍ତ ବଚନ ଶ୍ରବଣ—କାରିଣୀ କେମାର ପ୍ରିୟତମା ସଙ୍ଗିନୀ ଏହି ଉକ୍ତ ବୃଦ୍ଧା ମୁଦୁଶୁଳକୁ ଦିଅନ୍ତେ ସେ ବନକୁ ଯିବାକୁ ତୁରନ୍ତ ବ୍ୟବସ୍ଥା କଲା ।

---

ଶବ୍ଦାର୍ଥ । ଉରଜ—ସ୍ତନ । କଲ୍ପ—କଳାପ, ସମୂହ, ମାଳ । ଆକଲ୍ପ—ଭୂଷଣ । ଧନୁକୁ—ପୁଷ୍ପ ଧନୁକୁ । ବଦେ—କହେ । ବୈଦ୍ୟକା—ବୈଦ୍ୟ-କନ୍ୟା । ପଥିକତା—ପଥ ଚାଲିବା । ଶ୍ରୁତିଗା—(ଯେପରି ଉର୍ଦ୍ଧ୍ୱଗ, ଶୀଘ୍ରଗ)—ଶ୍ରବଣ କାରିଣୀ । ସଦନୀତ ଜାଗ୍ରତା—ବୃଦ୍ଧା-ପରିଚାରିକା, ବୟସିନୀ ଜାଗ୍ରତ ନୀତିଶୀଳା ।

**ପରିଗ୍ରହ-ବର୍ଗ ଆଚରିଲେ ମାର୍ଗ-ମାର୍ଜନା ସିଦ୍ଧି ବେଗ କରି**
**ଶିଳ୍ପ-କଳ୍ପନାରେ କମଳ-କୋମଳଦଳ ବହୁଳ କରିପାରି**
**ତହିଁ ଉପରେ**
**କେତକୀ-ଗର୍ଭସ୍ଥ ରଜକୁ**
**ସୁସଜ୍ଜେ ସିଞ୍ଚି ସେ କରାଇଲେ ବିଜେ ଅବଳାସମାଜ-ରାଜକୁ । ୫ ।**

**ଅନ୍ୱୟ**—ପରିଗ୍ରହ ବର୍ଗ ବେଗକରି ମାର୍ଗମାର୍ଜନାସିଦ୍ଧି ଆଚରିଲେ । (ତହିଁ) ଶିଳ୍ପ-କଳ୍ପନାରେ କମଳ କୋମଳ ଦଳ ବହୁଳକରି ପାରି ତହିଁ ଉପରେ କେତକୀ ଗର୍ଭସ୍ଥ ରଜକୁ ସୁସଜ୍ଜେ ସିଞ୍ଚି ସେ ଅବଳାସମାଜ-ରାଜକୁ ବିଜେ କରାଇଲେ ।

**କଥା**—ପରିଗ୍ରହମାନେ ଶୀଘ୍ର ପଥ ପରିଷ୍କରଣରେ ସଫଳତା ଆଚରଣ କଲେ । ଅତ୍ୟନ୍ତ ସାଜସଜ୍ଜାରେ ଶିଳ୍ପ କଳା ଦେଖାଇ ଉକ୍ତ ପଥରେ ପଦ୍ମର କୋମଳ ପାଖୁଡ଼ା ବହୁଳ କରି ପାରି ତା ଉପରେ କେତକୀ ଫୁଲ ଗର୍ଭ ଭିତରେ ଥିବା ଫୁଲ ଧୂଳିମାନ ସୁନ୍ଦର ଭାବରେ ସିଞ୍ଚି ସେମାନେ ରମଣୀ ସମାଜର ସର୍ବୋତ୍ତମା ରୁକ୍ମିଣୀଙ୍କୁ ବିଜେ କରାଇଲେ ।

ଶବ୍ଦାର୍ଥ । ପରିଗ୍ରହ—ସେବାକାରିଣୀ । ବର୍ଗ—ସମୂହ । ମାର୍ଗ—ପଥ । ମାର୍ଜ୍ଜନା—ପରିଷ୍କରଣ । ସିଦ୍ଧି—ସଫଳତା । ଆଚରିଲେ—ଆଚରଣ କଲେ । ଶିଳ୍ପ କଳ୍ପନାରେ—ଶିଳ୍ପ ରଚନାରେ, ଚରମ ଉନ୍ନତ ଶିଳ୍ପ ଯୋଜନାରେ । ଦଳ—ପାଖୁଡ଼ା । ରଜ—ଗୁଣ୍ଡି, ଧୂଳି । ସୁସଜ୍ଜେ—ସୁନ୍ଦର ଭାବରେ,ସଜାଇ କରି, ସୁନ୍ଦରଭାବରେ । ସିଞ୍ଚି—ବିଛାଇ, ଛିଞ୍ଚି । ଅବଳାସମାଜରାଜ-ନାରୀବୃନ୍ଦ-ପ୍ରଧାନା, ସର୍ବୋତ୍ତମା ରମଣୀ ।

**ସନକ ଅଙ୍ଗିରସ ବଶୀ କନକଅଙ୍ଗୀ ନୃପଜା କରସଙ୍ଗି**
**ଇଙ୍ଗିତବିଦ୍ୟା-ବିନୋଦୀ ଜଣେ ଜଣେ ସଙ୍ଗୀତରାଗ ରଙ୍ଗେ ରଙ୍ଗି**
**ମୃଗ ମୟୂର**
**ପୁଚ୍ଛ ପିଚ୍ଛ ଲୀଳା ପ୍ରକଟେ**
**ଊର୍ଦ୍ଧ୍ୱ ତେଜ ରୁଦ୍ଧ କଲେ ଯାଉଥିଲେ ଶୁଦ୍ଧ ହୀରା**
**ଭୂଷା ଆଲଟେ । ୭ ।**

**ଅନ୍ୱୟ**—ଇଙ୍ଗିତବିଦ୍ୟା ବିନୋଦୀ ଜଣେ ଜଣେ (ପରିଚାରୀ) ସନକ ଅଙ୍ଗୀରସବଶୀ, କନକଅଙ୍ଗ-ନୃପଜା(ର) କର ସଙ୍ଗି ହୋଇ ସଙ୍ଗୀତ ରାଗରଙ୍ଗେ ରଙ୍ଗି ( ଗମନ କଲେ ) । ( ଗମନ ବେଳେ ) ମୃଗ ପୁଚ୍ଛ, ମୟୂର ପିଚ୍ଛ ଲୀଳା ପ୍ରକଟେ । ଶୁଦ୍ଧ ହୀରା ଭୂଷା ଆଲଟେ (ଯେ) ଯାଉଥିଲେ (ସେମାନେ) ଊର୍ଦ୍ଧ୍ୱ ତେଜ ରୁଦ୍ଧ କଲେ ।

**କଥା**—ପରିହାସ ବିଦ୍ୟା-ବିନୋଦିନୀ ଜଣେ ଜଣେ ସଖୀ ଯେଉଁ ସନକ ଓ ଅଙ୍ଗୀରସଙ୍କ ପରି ଅତି ସଂଯମୀ ଋଷିଙ୍କୁ ନିଜ ଦେହ ସୌନ୍ଦର୍ଯ୍ୟରେ ଯେ ବଶୀଭୂତ କରି ପାରିବ, ପୁଣି କନକାଙ୍ଗୀ ଯେଉଁ ରାଜଜେମା ତାଙ୍କୁ ହାତ ଧରିଥିବା କରି ସଙ୍ଗୀତ ନାନା ରାଗରେ କୌତୁକରେ ଗାଇ, ପଦ୍ମକୁଣ୍ଡ ମଣାଇଁ ଘେନିଗଲେ । ସେ ଗମନ କଲାବେଳେ ସଖୀମାନଙ୍କ ହସ୍ତରେ ମୃଗପୁଚ୍ଛ ଚାମର, ମୟୂରପିଚ୍ଛ ଝୁଲର ଲୀଳା ପ୍ରକଟିତ ହେଲା । ଶୁଦ୍ଧ ହୀରାରେ ଗହଣାମାନ ଆଲଟ ଧରି ଯେଉଁ ସଖୀମାନେ ଯାଉଥିଲେ, ସେମାନେ ସୂର୍ଯ୍ୟର ଊର୍ଦ୍ଧ୍ୱରେ ଥିବା ତେଜକୁ ନିବାରଣ କଲେ ।

**ଆଲୋଚନା**—ସୂର୍ଯ୍ୟ ଅଧରେ ଥିବା ଅର୍ଥହେବ ପୂର୍ବାହ୍ନ । ଊର୍ଦ୍ଧ୍ୱ ତଦନୁସାରେ ହେବ ଅପରାହ୍ନ । ତେଣୁ ଅପରାହ୍ନରେ ବନକୁ ଯାତ୍ରାବିଧି ହେଲା ।

---

ଶବ୍ଦାର୍ଥ । ସନକ—ପ୍ରଥମ ବିଶ୍ୱଦେବ, ଆଦ୍ୟ ପିତୃ ପୁରୁଷ, ନିର୍ଦ୍ଦୋଷ ସଂଯମୀ ପିତୃ । ଅଙ୍ଗିରସ—ସପ୍ତର୍ଷି ମଧ୍ୟରୁ ଏକତମ ଋଷି, ବୃହସ୍ପତିଙ୍କ ପିତା, ଅଗ୍ନି ମଧ୍ୟ ଏହାଙ୍କ ପୁତ୍ର, ଏ ଅତି ସଂଯମୀ ଥିଲେ, ଧର୍ମ ସଂହିତା ଗ୍ରନ୍ଥ ପ୍ରଣୟନ କରିଥିଲେ, ଋଗ୍ ବେଦର ବହୁ ସୂକ୍ତରଷ୍ଟାଥିଲେ । ବଶୀ—ବଶୀଭୂତ କାରିଣୀ । କରସଙ୍ଗୀ—ହାତକୁ ସଙ୍ଗୀ କରିବା ବା ଧରିବା । ନୃପଜା—ରାଜକୁମାରୀ । ଇଙ୍ଗିତ—ପରିହାସ । ରଙ୍ଗେ—କୌତୁକରେ । ରଙ୍ଗି—ମୁଗ୍ଧ କରି । ଭୂଷା—ତୋରା, ଉଜ୍ଜ୍ୱଳ, ଗହଣାମାନ । ମୃଗପୁଚ୍ଛ—ଚମରୀ ମୃଗର ଲାଙ୍ଗୁଳର ଚଅଁର । ମୟୂର ପିଚ୍ଛ—ମୟୂର ଚନ୍ଦ୍ରିକା । ପ୍ରକଟେ—ପ୍ରକାଶେ । ଊର୍ଦ୍ଧ୍ୱ—ଶେଷଭାଗ ।

**ବନ୍ଧିକ ମାତ୍ର କନକ ଦଣ୍ଡ-ଛତ୍ର କେଉଁ ଶତପତ୍ର-ଲୋଚନା**
**ଟେକିଲା, ଡାକିଲା ସାବଧାନେ ଜଣେ ଛଣା ମୃତ-ଜଣା ବଚନା**
**ଗିନ ମର୍ଦ୍ଦଳ**
**ବେଣୁ ବୀଣା ରବା ଅମୃତ**
**ବାଦନୁ ଗାୟନୁ ବରଷିଲେ ବନ ବସୁଧାରେ ସୁଧା ପୃଷନ୍ତ । ୭ ।**

**ଅନ୍ୱୟ**—ବନ୍ଧିକ ମାତ୍ର କେଉଁ ଶତ ପତ୍ର-ଲୋଚନା କନକଦଣ୍ଡ-ଛତ୍ର ଟେକିଲା । ଜଣେ ଛଣାମୃତ ଜଣା-ବଚନା ସାବଧାନେ (କଥା) ଡାକିଲା । (କେହି କେହି) ଗିନ, ମର୍ଦ୍ଦଳ, ବେଣୁ, ବୀଣା, ରବା ଓ ଅମୃତ ବାଦନୁ (ଏବଂ କେହି କେହି) ଗାୟନୁଁ (ଉକ୍ତ) ବନ ବସୁଧାରେ ସୁଧା ପୃଷନ୍ତ ବରଷିଲେ ।

**କଥା**—ଜେମା ମଣିଙ୍କର ବିଜେ ବନ୍ଧି ରକ୍ଷା କରିବା ଲାଗି କେଉଁ ପଦ୍ମ ପଲାଶ ଲୋଚନା ପରିଚାରିକା ଯାହାରକି ଛଣା ଅମୃତ ପ୍ରାୟ ବଚନ ମଧୁର, ସେ ସାବଧାନ "ଛୁମ୍ନୁଁ ଛୁଡ଼" 'ଜେମା ବିଜେ ସାବଧାନ' କଥା ଆଗେ ଆଗେ ଡାକି ଚାଲିଲା । କେହି କେହି ପରିଚାରିଣୀ ଗିନ, ମର୍ଦ୍ଦଳ, ବଂଶୀ, ବୀଣା, ରୁଦ୍ର ବୀଣା, ଅମୃତ ଆଦି ବଜାଇବା ଦ୍ୱାରା ଏବଂ କେହି କେହି ସଙ୍ଗୀତ ଏପରି ମଧୁର ସ୍ୱରରେ ଗାଇଲେ ଯେ ଉକ୍ତ ବନ-ଭୂମିରେ ଅବା ଅମୃତ ବିନ୍ଦୁ ବର୍ଷା ହେଲା ।

---

ଶବ୍ଦାର୍ଥ । ବନ୍ଧିକ ମାତ୍ର—ବନ୍ଧିରକ୍ଷା ପାଇଁକି । କନକଦଣ୍ଡଛତ୍ର—ସୁନାବାଡ଼ି ଛଡ଼ ଲାଗିଥିବା ଛତା । ଶତପତ୍ର—ପଦ୍ମ । ଛଣାମୃତଜଣା ବଚନା—ଅମୃତାଧିକ ମଧୁର ବଚନା । ସାବଧାନେ—ସାବଧାନ ବିଷୟରେ, ରାଜା, ଯୁବରାଜ, ଜେମା, ରାଣୀ ବିଜେହେଲେ କେହି ଆଗରେ ଥିଲେ ତାକୁ ସତର୍କ କରିଦେବା ବିଧି । ରବା—ରୁଦ୍ରବୀଣା, ମୋଗଲଅମଳରେ ଏହାକୁ ରବାବ୍ କହୁଥିଲେ, ଏହା ଲାଉ ଖୋଲରେ ବା ଅଖଣ୍ଡ କାଠ ତିଆରି ଖୋଲରେ ତିଆରି, ଯନ୍ତ୍ରରେ ଛେଳି ଆଦି ଚମଡ଼ା ଘୋଡ଼ି ହୁଏ; ଏଥିରେ ୨ ବା ୩ ବା ୪ ଖଣ୍ଡ କେହି କେହି ଲଗାନ୍ତି । ଏହା କାଠିରେ ବାଜେ । ଅମୃତ—ସ୍ୱରବାଦ୍ୟ ବିଶେଷ । ବନବସୁଧା—ବନଭୂମି । ପୃଷନ୍ତ—ବିନ୍ଦୁ ।

ପର୍ବ-ଶର୍ବରୀଶ-ଗର୍ବବିମର୍ଦ୍ଦନ-ହାସବିରଞ୍ଜିତ-ଆନନେ
ଆଚରି ଚର୍ଚ୍ଚରୀ କେଳିକି ରଚିଲେ ଯାଇ ପାରିଜାତ କାନନେ
ରବି ବିତରେ
ବିରାଜନ୍ତି ଅବିରତରେ
କବି କଞ୍ଜାଟବୀ ମୋଦ ନାନା ପରି ବିରଚିଲି ଅବିର-ତରେ । ୮ ।

**ଅନ୍ୱୟ**—ପର୍ବ-ଶର୍ବରୀଶ-ଗର୍ବବିମର୍ଦ୍ଦନ-ହାସ-ବିରଞ୍ଜିତ ଆନନେ (ସେମାନେ) ଚର୍ଚ୍ଚରୀ ଆଚରି ଯାଇ ପାରିଜାତ କାନନେ କେଳିକି ରଚିଲେ । (ସେ କାନନ) ରବି ବିତରେ ଅବିରତ ରେ ବିରାଜନ୍ତି । (ପୁନଶ୍ଚ ତହିଁ) ତରେ ଅବିର (ଦ୍ୱାରା) ନାନା ପରି ବିରଚିଲି ( ତେଣୁ ) କବି (ହୃଦ) କଞ୍ଜାଟବୀ ମୋଦ ଲଭିଲି ।

**କଥା**—ପୂର୍ଣ୍ଣ ଚନ୍ଦ୍ରମାର ମାଧୁରୀ ଗର୍ବକୁ ବିଶେଷ ଭାବରେ ଦଳି ପକାଉଥିବା ହାସ୍ୟ-ବିରଞ୍ଜିତ ମୁଖରେ ସେମାନେ ଆମୋଦ ପ୍ରମୋଦ କରି ଯାଇ ମନ୍ଦାର ବଣରେ କ୍ରୀଡ଼ା କୌତୁକ ଆରମ୍ଭିଲେ । ଉକ୍ତ ମନ୍ଦାର ବୃକ୍ଷ ଶୋଭିତ କାନନ ବାଳରବି ପ୍ରାପ୍ତ ଅବିରତ ଦେଖାଯାଏ । କାରଣ ଉକ୍ତ ବୃକ୍ଷର ପୁଷ୍ପମାନ ଜବା କୁସୁମ ସଙ୍କାଶ ରବିଙ୍କ ପ୍ରାପ୍ତେ ପ୍ରକାଶିତ ହୁଏ । ପୁନଶ୍ଚ ସେଠାରେ ଶୀଘ୍ର ଉକ୍ତ ନାରୀ ମାନଙ୍କ ଦ୍ୱାରା ଫଗୁ କ୍ରୀଡ଼ା ଭିନ୍ନ ଭିନ୍ନ ଭାବରେ ଚଉଦିଗରେ ଫୁଟି ଉଠିଲା । ତେଣୁ ଫଗୁ ରଙ୍ଗରେ ରଞ୍ଜିତା ଜବାକୁସୁମ-କାନନସନ୍ନିଭିତା ଏହି ବାଳସୂର୍ଯ୍ୟ-ରୂପିଣୀ ନାରୀମାନଙ୍କ ଦ୍ୱାରା କବି ହୃଦୟ ପଦ୍ମବନ ମୋଦ ଲଭିକଲା ।

**ଆଲୋଚନା**—"ଜବା କୁସୁମ ସଙ୍କାଶଂ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରିଂସର୍ବ ପାପଘ୍ନଂ ପ୍ରଣତୋଽସ୍ମି ଦିବାକରମ୍ ।" ଏହି ତୁଳନା କବି ଏଥିରେ ଆଣିଛନ୍ତି ।

ଶବ୍ଦାର୍ଥ । ପର୍ବ—ପୂର୍ଣ୍ଣିମା । ପର୍ବ ଶର୍ବରୀଶ—ପୂର୍ଣ୍ଣଚନ୍ଦ୍ର । ପାରିଜାତ—ମନ୍ଦାର । ବିତରେ—ପ୍ରାପ୍ତ, ସମାନ୍ୟ । ଅବିରତ—ସର୍ବଦା । ନାନା—ବହୁବିଧ, ଭିନ୍ନ ଭିନ୍ନ । ପରି—ଚତୁର୍ଦ୍ଦିଗରେ, ଅତ୍ୟନ୍ତ ଭାବରେ, ବାରମ୍ବାର । ତରେ—ଶୀଘ୍ର, ଚଞ୍ଚଳରେ । ଅବିର—ଫଗୁ । ଚର୍ଚ୍ଚରୀ—ଆମୋଦ ପ୍ରମୋଦ, ନୃତ୍ୟ । କଞ୍ଜ—ପଦ୍ମ । ଅଟବୀ—ବନ । କଞ୍ଜାଟବୀ—ପଦ୍ମବନ ।

**ଚଡା ମୋତ ଜ୍ୟୋତ ଖଣ୍ଡେ ମଣ୍ଡି ଦେଲା ଚଣ୍ଡୀଶ-ଅରାତ-ତୁଣୀର**
**ସଂଗ୍ରହ ବିଗ୍ରହ ଅନ୍ତ ବାଣ ବ୍ରାତ ମୁଗୁର ଆକାରେ ରୁଚିର**
**କରୁ ବିବର୍ତ୍ତି**
**ଲପନ ଚୂର୍ଣ୍ଣି କୁନ୍ତଳକୁ**
**ଉଦିତ ଚନ୍ଦ୍ରମା କିରଣ ସୁଷମା ରମା ମୁଖ କଲା ତୁଲକୁ । ୯ ।**

**ଅନ୍ୱୟ**—(ଜେମାର) (ଅଧର ହୀଡ଼ା ଯୋଗୁଁ) ଚଡା ମୋତ ଜ୍ୟୋତ ଖଣ୍ଡି ଚଣ୍ଡୀଶ ଅରାତ-ତୁଣୀର ମଣ୍ଡିଦେଲା । ସଂଗ୍ରହ ବାଣବ୍ରାତ ମୁଗୁର ଆକାରେ (ରଖିଲେ) । (ସେ ସମସ୍ତର) ଅନ୍ତ ବିଗ୍ରହ ରୁଚିର (ଦେଖାଯାଏ) । (ତାହା ସହିତ ଅଧର ହାସ) ଲପନ, ଚୂର୍ଣ୍ଣି କୁନ୍ତଳ ବିବର୍ତ୍ତି କରୁ ତାହା ଉଦିତ ଚନ୍ଦ୍ରମା କିରଣ ସୁଷମାରେ ରମା ମୁଖ ତୁଲକୁ କଲା ।

**କଥା**—ଫଗୁଖେଳ ଯୋଗୁଁ ରୁକ୍ମଣୀଙ୍କର ଚୂଡ଼ା ମଣିର ଜ୍ୟୋତ ଫଗୁ ଗୁଣ୍ଡରେ ଲଭିପିବାରୁ ତାହାର ଆକାର ଖଣ୍ଡ ଚନ୍ଦ୍ରମା ଆକୃତ ଥିବାରୁ କାମଦେବର ଶରତୂଣୀ ପରି ଦେଖାଗଲା । ସଂଗୃହୀତ ବାଣ ସମୂହକୁ ମୁଦ୍ଗର ଆକାରରେ ରଖିଲେ ସେ ସମସ୍ତର ଉପର ଶେଷାଂଶ ଫଳା ଯେପରି ଅର୍ଦ୍ଧ ଚନ୍ଦ୍ରାକାର ଦେଖାଯାଏ, ତାହା ସେପରି ସୁନ୍ଦର ଦେଖାଗଲା । ତା ସହିତ ଅଧର ଯୋଗୁଁ ଲଲବର୍ତ୍ତି ଜେମାର ସୁନ୍ଦର ମୁଖ ମଣ୍ଡଳ ଏବଂ ଇଲବିଲା ମୁଖକୁ ପଡ଼ିଥିବା ବାଳସବୁ ବିବର୍ତ୍ତି ହେଉ ତାହା ଉଦିତ ଚନ୍ଦ୍ରମାର କିରଣ ସୁଷମାରେ ଏତେ ସୁନ୍ଦର ଦିଶିଲା ଯେ ଶୋଭିବାଣୀ ଲକ୍ଷ୍ମୀଙ୍କ ମୁଖ ଶ୍ରୀ ଊଣା ଜଣାଗଲା ।

**ଆଲୋଚନା**—"ରମାନନାଭଂ ନବ କୁଙ୍କୁମାରୁଣମ୍"

---

ଶବ୍ଦାର୍ଥ । ଚଡ—ଚୂଡ଼ାମଣି, ଶିରୋରତ୍ନ, ଚଡା । ବାଣବ୍ରାତ—ଶରସମୂହ । ବିଗ୍ରହ ଅନ୍ତ—ଉପରଭାଗ । ମୁଗୁର—ମୁଦ୍ଗର ଆକୃତବିଶିଷ୍ଟ । ଅନ୍ତ—ପ୍ରାନ୍ତ, ଶେଷ । ଲପନ—ମୁଖ । ଚୂର୍ଣ୍ଣି କୁନ୍ତଳ—ଅଳକ, ମୁଖ ରଞ୍ଜିତ କୁଟିଳକୁନ୍ତଳ । ବିଗ୍ରହ—ମୂର୍ତ୍ତି, ଅଙ୍ଗ । "କୁଟିଳ କୁନ୍ତଳଂ ଶ୍ରୀମୁଖଂ ଚତେ, ଜଡ଼ ଉଦୀକ୍ଷତାଂ ପକ୍ଷ୍ମକୃଦ୍ଦୃଶାମ୍" । କରୁ—କରିବାରୁ ।

**ଅଞ୍ଜନ ଲାଞ୍ଜିରେ ରଞ୍ଜନ ହୁଅନ୍ତେ ବହିଲ୍ ଏ ପରିପାଟିକି**
**ଯାବ ଦେଇଥାନ୍ତି ପାବକରେ ଯଥା ଚକୋର ଶାବକ ଥୋଟିକି**
**ରୋମରେଖାତ**
**ଦେଖିବାରେ ହେଲା କୃପଣ**
**ସୁରଙ୍ଗ ବନାତ ଭିତରେ ଯେମନ୍ତ ଛପିରହିଥାଏ କୃପାଣ । ୧୦ ।**

**ଅନ୍ୱୟ**—(ଉକ୍ତ ଅଧର) ଅଞ୍ଜନ ଲାଞ୍ଜରେ ରଞ୍ଜନ ହୁଅନ୍ତେ ଏ ପରିପାଟିକି ବହିଲା । ଯଥା ଚକୋର ଶାବକ ଥୋଟିକି ପାବକରେ ଯାବ ଦେଇଥାନ୍ତି । (ଫଳରେ) ରୋମ ରେଖାତ ଦେଖିବାରେ କୃପଣ ହୋଇଲା । (ମନେ ହେଲା) ସୁରଙ୍ଗ ବନାତ (ଖୋଳ) ଭିତରେ କୃପାଣ ଯେମନ୍ତ ଛପିରହିଥାଏ ।

**କଥା**—ଉକ୍ତ ଫଗୁଗୁଣ୍ଡ ଜେମାର କଜ୍ଜଳ ଲାଞ୍ଜ ଗାରରେ ଲାଗି ଯିବାରୁ ଏପରି ସୁଶୋଭନ ଦେଖାଗଲା, ଯେମନ୍ତକି ଚକୋର ପକ୍ଷୀ ଛୁଆର ଥଣ୍ଟି ସାଙ୍ଗରେ ଅଗ୍ନିଶିଖାର ଯାବ ପଡ଼ୁଛି ।

ଫଳରେ ଚକ୍ଷୁର ରୋମରେଖା ଦେଖା ନ ଯିବାରୁ ତାହା ସୁରଙ୍ଗ ବନାତ ଖୋଳ ଭିତରେ ଖଣ୍ଡା ଛପି ରହିବା ପରି ଏକାନ୍ତ ମନୋହର ହେଲା ।

---

ଶବ୍ଦାର୍ଥ । ଅଞ୍ଜନ—କଜ୍ଜଳ । ଲାଞ୍ଜି—ଗାର । ପରିପାଟି—ସାଜସଜ୍ଜା, ସୁଶୋଭନ । ଯାବ—ଲାଗିଯିବା । ଚକୋର—ଚନ୍ଦ୍ରିକାପାନକାରୀ ପକ୍ଷୀ ବିଶେଷ । ଶାବକ—ଛୁଆ । ଥୋଟି—ଥଣ୍ଟି । ଦେଖାରେ କୃପଣ ହେଲା—ଦେଖାନଗଲା । ସୁରଙ୍ଗ—ଅଧିକ ଲାଲ । ବନାତ—ବନାତକନା । କୃପାଣ—ଖଣ୍ଡା ।

**ହଂସ କର ଯଥା ସୁରତ-ପଣ୍ଡିତା-କଟିଘଣ୍ଟି-ରବେ ବଇର**
**ହଂସକର ସ୍ୱନ ପର ହେଲା ବନ ପତନ ହେବାରୁ ଅବର**
**ରହି ସ୍ତବ୍ଧକତେ**
**ସର୍ବେ ଛାଡ଼ିଲେ ପିଛୁଡ଼ାକୁ**
**ସ୍ୱୟଂ ଭୂ ଦେବୀଚୟଙ୍କ ଶୋଭ୍ର ଯଶ ଦ୍ରୁମେ ଲଗାଇଲେ ତଡ଼ାକୁ ।୧୧।**

**ଅନ୍ୱୟ**—ଯଥା ହଂସକର ସୁରତପଣ୍ଡିତା କଟି-ଘଣ୍ଟିରବେ ବଇର (ତଥା) ଅବର-ପତନ ହେବାରୁ ବନ ହଂସକର ସ୍ୱନ ପର ହେଲା । ସ୍ତବ୍ଧକତେ ରହି ସର୍ବେ ପିଛୁଡ଼ାକୁ ଛାଡ଼ିଲେ । ( ତେଣୁ ) ସେମାନେ ସ୍ୱୟଂଭୂ ଦେବୀଚୟଙ୍କ ଶୋଭ୍ର ଯଶ ଦ୍ରୁମେ ତଡ଼ାକୁ (ଅବା) ଲଗାଇଲେ ।

**କଥା**—ଯେପରି ସୂର୍ଯ୍ୟ କରଣ ରତିପଣ୍ଡିତା ବିଳାସିନୀ ରମଣୀ ମାନଙ୍କର ରତିକାଳୀନ କଟି ମେଖଳା ଧ୍ୱନିର ଶତ୍ରୁତା କରେ, ସେହିପରି ଫଗୁ ଏତେ ବହଳ ଭାବରେ ପଡ଼ିବାରୁ ନାଦବିଶିଷ୍ଟ ନେପୁରବନ୍ଧ ଲଗାଇ ମଧ୍ୟ ସେହି ନାରୀଗଣ ଚାଲିଲେ ହେଁ ସେ ବନ ହଂସାକୃତି ରବ ଶୂନ୍ୟ ଚରଣ ଭୂଷଣ ହଂସକ ଧ୍ୱନି ପରି ଜଣାଗଲା । ଫଳରେ ମଧୁର ନୂପୁର ଧ୍ୱନି ଲୁଚିଗଲା । ଏହାଦେଖି ସର୍ବେ ଚାଲି ନପାରି ସ୍ତବ୍ଧକତ ହୋଇ ରହିଗଲେ ଏବଂ ଆଖି ପିଚୁଡ଼ା ପକାଇ ପାରିଲେ ନାହିଁ । ତେଣୁ ସେମାନେ ଅବା ସ୍ୱୟଂଭୂ ବିଧାତା ସୃଷ୍ଟ ଦେବକନ୍ୟା ମାନଙ୍କ ଅତ୍ୟୁତ୍କୃଷ୍ଟ ସୌନ୍ଦର୍ଯ୍ୟ ଯଶ ଦ୍ରୁମକୁ ଛାଡ଼ିପକାଇଲେ । ଫଳରେ ସୌନ୍ଦର୍ଯ୍ୟ କେବଳ ରୁକ୍ମିଣୀଙ୍କୁ ଧରି ଏହି ଦଳରେ ହିଁ ଏକମାତ୍ର ରହିଗଲା ।

ଶବ୍ଦାର୍ଥ । ହଂସ—ସୂର୍ଯ୍ୟ । କର—କରଣ । ସୁରତ ପଣ୍ଡିତା—ଉତ୍ତମ ରତି ବିଚକ୍ଷଣା । ହଂସକ—ହଂସାକୃତି ରବଶୂନ୍ୟ ଚରଣ ଭୂଷଣ ( ବସ୍ତୁତ ଯେ ହଂସକର ନସ୍ୱନ, ଉକ୍ତ ବୈ: ବି: ) । କଟି ଘଣ୍ଟି ରବେ—ମେଖଳା ଧ୍ୱନିରେ । ପିଚୁଡ଼ା—ପିଚୁଳା । ସ୍ୱୟଂଭୂ—ବିଧାତା । ଦେବୀଚୟ—ସ୍ୱର୍ଗ ଦେବକନ୍ୟା ଗଣ । ଶୋଭ୍ର ଯଶ ଦ୍ରୁମେ—ସୌନ୍ଦର୍ଯ୍ୟ ରୂପକ କୀର୍ତ୍ତି-ବୃକ୍ଷକୁ । ତଡ଼ାକୁ—ଛାଡ଼ିବାକୁ । ତଡ଼ାକୁ ଲଗାଇଲେ—ଛାଡ଼ିଲେ । ସ୍ତବ୍ଧକତେ—ସ୍ଥିର ଭାବରେ ।

**ଧରାଧର-ପୟୋଧର ଧୀର-ବୃନ୍ଦ ଧରାଧର ହୋଇ ବାହାର**
**ନିପୁର-ରମଣୀଶ୍ରେଣୀ-ଶିରୋମଣି ରଦବାସ ହାସ ଆଦର**
**ଭଙ୍ଗି ରଚନେ**
**ରଙ୍ଗି ଯେ ଉଚ୍ଚାରଲେ ଯେଣୁ**
**ବପତ୍ତି-ପତନ ବମଳ କମଳେ କୁମୁଦ ବକଶିଲା ତେଣୁ । ୧୬ ।**

**ଅନ୍ୱୟ**—ଧରାଧର- ପୟୋଧର—ଧୀର ବୃନ୍ଦ ଧରାଧର ହୋଇ ବାହାର ନିପୁର ରମଣୀଶ୍ରେଣୀ—ଶିରୋମଣି (ରୁକ୍ମିଣୀର) ରଦବାସ ଓ ହାସ ଆଦର (କୁ) ଯେଣୁ ଯେ ରଙ୍ଗି (ସେ) ଭଙ୍ଗି ରଚନେ ଉଚ୍ଚାରଲେ—

"(ଦେଖ) ବମଳ କମଳେ ବପତ୍ତି ପତନ ହେତୁ ତେଣୁ କୁମୁଦ ବକଶିଲା ।"

**କଥା** – ସେହି ଭୁଙ୍ଗସ୍ତମ୍ଭ ଧୀର ଗମନା ରମଣୀଏ ଧରାଧର ହୋଇ ବାହାର ନିଜପୁରର ନାରୀ ସମାଜର ମସ୍ତକର ମଣି ସ୍ୱରୂପା ଜେମା ରୁକ୍ମିଣୀର ଦନ୍ତ କପଚ ସୁବାସ ଏବଂ ହାସ୍ୟର ମାଧୁର୍ଯ୍ୟ ଆଦରୁଛି, ତାହା ଦେଖିଲେ । ତନ୍ମଧ୍ୟରେ ଯେ କୌତୁକପ୍ରିୟା ସେ ଭଙ୍ଗି କଥା ରଚନା କରି କହିଲେ—

"ଜେମାର ଶୁଭ୍ର ସୁନ୍ଦର ମୁଖ ରୂପକ କମଳକୁ ଫଗୁଗୁଣ୍ଡା ଯୋଗୁଁ ବପତ୍ତି ପଡ଼ିବାରୁ ଦେଖ କପଚ ଦନ୍ତ ରୂପକେ ଶ୍ୱେତ କୁମୁଦରେ ସୁବାସ ଏବଂ ହାସ୍ୟ ଫୁଟିଉଠିଛି ।"

**ଆଲୋଚନା**– ମୁହଁଟି ଫଗୁ ରଞ୍ଜିତ ହେବାରୁ ମୁଖକମଳ ଲୁଚିଗଲା । ଫଗୁ ଶୀତଳ ଗୁଣ ବଶିଷ୍ଟ, ତେଣୁ ହିମ ସହିତ ସମାନ । କିନ୍ତୁ ଶ୍ୱେତ କଇଁ ସ୍ୱରୂପ ହାସ୍ୟ ଦନ୍ତ ପ୍ରକଟିତ ହୋଇ ଦେଖାଗଲା ଓ ଜେମାର ମୁଖବାସ ମଧ୍ୟ ଜଣାଗଲା ।

---

ଶବ୍ଦାର୍ଥ । ଧରାଧର—ପର୍ବତ । ପୟୋଧର—ସ୍ତନ । ଧୀର—ଧୀର ଗତି ବଶିଷ୍ଟା । ନିପୁର ରମଣୀଶ୍ରେଣୀଶିରୋମଣି—ନିଜପୁର ସ୍ତ୍ରୀ ସମୂହରେ ଶ୍ରେଷ୍ଠା । ରଦ—ଦନ୍ତ । ବାସ—ସୁବାସ । ରଙ୍ଗି—କୌତୁକପ୍ରିୟା । ବପତ୍ତି ପତନ—ବିପତ୍ତି ପଡ଼ିବା । ବମଳ—ଶୁଭ୍ର, ସୁନ୍ଦର । କୁମୁଦ—କଇଁ । ବକଶିଲା—ଫୁଟିଲା ।

**ବୁଧଜା କଥିତ ତା କଥନ ପ୍ରାନ୍ତ ପୁଷ୍ପାନ୍ତେ 'ନ'କର ମିଳନ**
**ଆଦ୍ୟକୁ ମିଶାଇ ଘେନଲେ ଯେ ହେଲା ତାହା ବର୍ଣ୍ଣ କଲା ମଳନ**
**ତନ ବର୍ଣ୍ଣକୁ**
**ବ୍ୟସ୍ତ କଲେ ଯାହା ବାହାରେ**
**ତାଙ୍କ ଶୟନାବ୍ଧି-ତରଙ୍ଗେ ବରୋଧି ହୋଇଲା ଏହି ସମୟରେ ।୧୩।**

**ଅନ୍ୱୟ**— (ତାହାଶୁଣି) ବୁଧଜା କଥିତ— ତା' କଥନ ପ୍ରାନ୍ତ ପୁଷ୍ପାନ୍ତେ 'ନ' ମିଳନ କରି ଆଦ୍ୟକୁ ମିଶାଇ ଘେନଲେ ଯେ ହେଲା ତାହା ବର୍ଣ୍ଣ (ଏ ହାସ୍ୟ) ମଳନ କଲା । (ବିଶେଷରେ ଉକ୍ତ) ତିନ ବର୍ଣ୍ଣକୁ ବ୍ୟସ୍ତକଲେ ଯାହା ବାହାରେ ତାଙ୍କ ଶୟନାବ୍ଧି—ତରଙ୍ଗେ (ମଧ୍ୟ ସେ) ଏହି ସମୟରେ (ହାସ୍ୟ ଘେନି) ବିରୋଧି ହୋଇଲା ।

**କଥା**—ତାହା ଶୁଣି ପଣ୍ଡିତ କନ୍ୟା କହିଲା—ପରିହାସିମା ଯାହା କହିଲା ତାର ଶେଷ ବର୍ଣ୍ଣିତ ପୁଷ୍ପ ହେଲା କୁମୁଦ । ଉକ୍ତ ପୁଷ୍ପ ନାମର ଶେଷାକ୍ଷର 'ଦ' ରେ 'ନ' ଟିଏ ମିଶାଇ ଦେଇ ଆଦ୍ୟ ଅକ୍ଷରକୁ ମିଶାଇ ଗ୍ରହଣ କଲେ ଯେଉଁ 'କୁନ୍ଦ' ହେଲା ଉକ୍ତ କୁନ୍ଦ ପୁଷ୍ପକୁ ତୁମାର ସେ ହାସ୍ୟ ମଳିନ କରିଦେଲା । କୁନ୍ଦ ମାଧୁରୀଠୁଁ ତୁମାର ହାସ୍ୟ ନିଶ୍ଚୟ ଅଧିକ ସୁନ୍ଦର ।

ପୁନଶ୍ଚ ଯେଉଁ ବର୍ଣ୍ଣ ତିନୋଟି ଆମକୁ ମିଳିଲା "କୁମୁଦ" ତାକୁ ଏପାଖ ସେପାଖ କରି ବ୍ୟସ୍ତ କରିଦେଲେ ସେଥିରୁ 'ମୁକୁନ୍ଦ' ଶବ୍ଦ ଆପେ ବାହାରୁଛି । ଆମ ତୁମାର ସେ ଶବ୍ଦଟା ଅତିପ୍ରିୟ ହୋଇ ଉଠିଛି । କିନ୍ତୁ ଏ ସମୟରେ ତୁମାର ହାସ୍ୟ ଉକ୍ତ ମୁକୁନ୍ଦ ରୂପୀ ବିଷ୍ଣୁଙ୍କର ଅନନ୍ତ ଶୟନ ସ୍ଥଳୀ ଦୁଗ୍ଧ ସମୁଦ୍ରର ଶ୍ୱେତଲହରୀର ମଧ୍ୟ ଶତ୍ରୁତା କରୁଛି । ତେଣୁ ସେ ଲହରୀ ତୁମା ହସ ସହିତ ସମାନ ନୁହେଁ । ତା'ଠୁ ଉତ୍କୃଷ୍ଟ ।

---

ଶବ୍ଦାର୍ଥ । ବୁଧ—ପଣ୍ଡିତ । ବୁଧଜା—ପଣ୍ଡିତ କନ୍ୟା । କଥିତ—କହିଲା । ତା— କୌତୁକପ୍ରିୟ । କଥନ—କହିଥିବା । ପ୍ରାନ୍ତପୁଷ୍ପ—ପୂର୍ବ ପଦରେ କଥିତ 'କୁମୁଦ' । 'ନ' କରି ମିଳନ—'ନ' ଶବ୍ଦଟିକୁ 'ଦ' ପାର୍ଶ୍ୱରେ ମିଳନ କଲେ 'ନ୍ଦ' ହେବ । ଆଦ୍ୟକୁ ମିଶାଇ—କୁମୁଦର ଆଦ୍ୟଶବ୍ଦ 'କୁ'; ଅତଏବ 'କୁ-ନ୍ଦ' । ବ୍ୟସ୍ତ—ଏପାଖ ସେପାଖ । ତିନବର୍ଣ୍ଣ ବ୍ୟସ୍ତ କଲେ—କୁମୁଦ ଏହି ତିନବର୍ଣ୍ଣକୁ ଏପାଖ ସେପାଖ ଲେଖିଲେ 'ମୁକୁନ୍ଦ' ହେବ । ଶୟନାବ୍ଧି—ବିଷ୍ଣୁଙ୍କ ଶୟନ-ସମୁଦ୍ର (ଦୁଗ୍ଧ ସମୁଦ୍ର) ।

**ପାନ ପାନ କରୁ ସୁମୁଖୀ-ସଖୀଏ ଆଖି ନକ୍ଷେପିଲେ ଅଧରେ**
**ବୋଇଲେ ଏହା ବାଦୀ କେ ସମ୍ପା ଦେହା କପାଁ ରଙ୍ଗକଲା କ୍ରୋଧରେ**
**ଭସ୍ମେ ରଙ୍ଗିମା**
**ଚପାଇଛନ୍ତି ବମ୍ବ ଫଳେ**
**ପଲ୍ଲବ ମନ୍ଦାର ଶରଣ ତୋହର ଚରଣ ଶତପତ୍ର-ତଳେ । ୧୪ ।**

**ଅନ୍ୱୟ**—(ଜେମା) ପାନ ପାନକରୁ ସୁମୁଖୀ ସଖୀଏ (ତା) ଅଧରେ ଆଖି ନକ୍ଷେପିଲେ । (ଏବଂ) ବୋଇଲେ ସମ୍ପାଦେହା ! ଏହା ବାଦୀ କେ ? (ତେବେ) କପାଁ କ୍ରୋଧରେ (ସେ ନିଜକୁ) ରଙ୍ଗ କଲା ? (ସମାନ ନ ହେବାରୁ) ରଙ୍ଗିମା ବମ୍ବଫଳେ ଭସ୍ମେ ଚପାଇଛନ୍ତି । (ଏବଂ) ପଲ୍ଲବ, ମନ୍ଦାର, ତୋହର ଶତପତ୍ର-ଚରଣ ତଳେ ଶରଣ (ପଶିଛନ୍ତି) ।

**କଥା**—ଏହି ସମୟରେ ଜେମା ରୁକ୍ମଣୀ ପାନ ଖାଆନ୍ତେ ଜଣେ ସୁବଦନା ସଖୀ ତାଙ୍କ ଅଧରକୁ ଗୃହିଁଲେ । ଏବଂ କହିଲେ—ହେ ଚପଳାଙ୍ଗି ! ଏ ସୁନ୍ଦର ଅଧରର ବାଦୀ ବା କିଏ ? ତେବେ କପାଇଁ ସେ କ୍ରୋଧରେ ନିଜକୁ ରକ୍ତବର୍ଣ୍ଣ କରିଅଛି ? ତୁମର ମନୋହର ଅଧର ରଙ୍ଗ ସହିତ ସମାନ ହୋଇ ନପାରି ଲାଲ ଟହ ଟହ କୁଆଁମଇଚା (କଇଁସି କାକୁଡ଼) ନିଜ ଅଙ୍ଗରେ ପାଉଁଶ ବୋଳି ହୋଇଛି, ଏବଂ କୋମଳ ପତ୍ର ଓ ମନ୍ଦାର ଫୁଲ ରଙ୍ଗିମାରେ ସମ ନୋହି ତୋର ପଦ୍ମଚରଣ ତଳରେ ଶରଣ ପଶିଛନ୍ତି ।

---

ଶବ୍ଦାର୍ଥ । ପାନକରୁ—ଖାଉ । ସଖୀଏ—ସଖୀଜଣେ । ବାଦୀ—ବିରୋଧି । ସମ୍ପା—ବିଜୁଳି, ତଡ଼ିତ୍ । ସୁମୁଖୀ—ସୁବଦନା । ରଙ୍ଗିମା—ଲାଲ ଟହ ଟହ । ବମ୍ବଫଳେ—କୁଆଁମଇଚା ଫଳମାନେ । ଭସ୍ମେ—ପାଉଁଶରେ । ଚପାଇଛନ୍ତି—ବୋଳିଛନ୍ତି । ପଲ୍ଲବ—କୋମଳ ପତ୍ର । ଶତପତ୍ର—ପଦ୍ମ ।

**ପୀନ କଠିନ ସ୍ତନେ ରଖି ବଦନ ବର୍ଜିଲେ ପିକ ପିକସ୍ୱର**
**କବଜା ପଣ୍ଡିତ-ସୁତାକୁ ମଣ୍ଡିଲା ଏ ଗିରେ ଖଞ୍ଜି ହାସ-ହୀର**
**ଜଳଜନ୍ମା ତ**
**କୋମଳ ତନୁ ବହିଛନ୍ତି**
**ପର୍ବଶୀତଭାନୁ ପର୍ବତ-ପତନୁଁ ରୁଧିର ବମନ କରନ୍ତି । ୧୫ ।**

**ଅନ୍ୱୟ**—ପିକସ୍ୱର (ସେ ଜେମା) ପୀନ-କଠିନ-ସ୍ତନେ ବଦନ ରଖି ପିକ ବର୍ଜିଲେ । (ତାହା ଦେଖି) କବଜା ପଣ୍ଡିତ ସୁତାକୁ ଏ ଗିରେ ଖଞ୍ଜି ହାସ ହୀର ମଣ୍ଡିଲା । (କୁ ଜାଣୁ) ଜଳ ଜନ୍ମାତ କୋମଳ ତନୁ ବହିଛନ୍ତି । (ସେହି) ପର୍ବଶୀତ ଭାନୁ ପର୍ବତ ପତନୁଁ (ନିଷ୍ଟୟ) ରୁଧିର ବମନ କରନ୍ତି ।

**କଥା**—ଏପରି ସମୟରେ କୋକିଳ ଭାଷିଣୀ ସେ ଜେମା ତାଙ୍କର ଉଚ୍ଚ କଠିନ ସ୍ତନ ଉପରେ ମୁଖ ଥୋଇ ପାନ ପିକ ପକାଇଲେ । ଏହା ଦେଖି କବିକନ୍ୟା ପଣ୍ଡିତକନ୍ୟାକୁ ଏହିପରି ଭାଷା ଖଞ୍ଜି ଉତ୍କୃଷ୍ଟ ହସ ହସି କହିଲା—

ସଖି ! କୁ ଜାଣୁ ? ଚନ୍ଦ୍ରମା ସହଜେ କୋମଳ ଦେହ ତ ଧାରଣ କରିଥାନ୍ତି ! ସେ ପୂର୍ଣ୍ଣ ମୂର୍ତ୍ତିରେ ପର୍ବତ ଉପରେ ପଡ଼ିଯିବାରୁ ନିଷ୍ଟୟ ରକ୍ତ ଝରା ବାନ୍ତି କରୁଛନ୍ତି । ଜେମାର ମୁଖ ଚନ୍ଦ୍ରମା, କଠିନ ଓ ଉନ୍ନତ ପର୍ବତପ୍ରାୟ ସ୍ତନ ଉପରେ ରହିବାରୁ ପାନ ପିକ ରକ୍ତବାନ୍ତିର ଉପମା ଆଣୁଅଛି ।

ଶବ୍ଦାର୍ଥ । ପୀନ—ଉନ୍ନତ । ପିକସ୍ୱର—କୋକିଳ ଭାଷିଣୀ । କବଜା—କବି କନ୍ୟା । ହାସହୀର—ହୀରକ ପ୍ରାୟ ହାସ୍ୟ, ଉତ୍କୃଷ୍ଟ ହାସ୍ୟ । ଗିରେ—ଭାଷାରେ । ଜଳ ଜନ୍ମା—ସାଗର ଜଳ ସମ୍ଭୂତ ଚନ୍ଦ୍ରମା । ପର୍ବ—ପୂର୍ଣ୍ଣିମା । ଶୀତ ଭାନୁ—ଚନ୍ଦ୍ରମା । ରୁଧିର—ରକ୍ତ । ବମନ—ବାନ୍ତି

**ସନ୍ତତରେ ଚିତ୍ତ ରତ କରିତୁ'ତ ବାଚରଣ କଲୁ ମନ୍ଦାକ୍ଷ**
**ଯେ ଦତ୍ତ ସେ ପ୍ରାପ୍ତି ପୁରାଣେ ବଦନ୍ତି ତୋତେ ପ୍ରାପ୍ତ ହେଉ ମନ୍ଦାକ୍ଷ**
**ଏହି ଉତ୍ତର**
**କହି ମହିପତି-କୁମାରୀ**
**କବପୂରୀ ନେଇ ଛବି ଭୃଙ୍ଗି ଦେଲା ଅବରିଳ ମାରିମାରି । ୧୭ ।**

**ଅନ୍ୱୟ**—'ତୁ ତ ସନ୍ତତରେ ଚିତ୍ତ ରତ କରି ମନ୍ଦାକ୍ଷ ବାଚରଣ କଲୁ । (ଏ କଣ ? ଜାଣୁ) ପୁରାଣେ ବଦନ୍ତି ଯେ ଦତ୍ତ ସେ ପ୍ରାପ୍ତି । (ତେଣୁ) ତୋତେ (ସେହି) ମନ୍ଦାକ୍ଷ ପ୍ରାପ୍ତ ହେଉ ।' ଏହି ଉତ୍ତର ମହିପତି-କୁମାରୀ କହି କବପୂରୀ ନେଇଛବି (କୁ) ଅବିର ରଜ ମାରି ମାରି ଭୃଙ୍ଗି ଦେଲା ।

**କଥା**—ତୁ ତ ସର୍ବଦା ମୋ ଚିତ୍ତକୁ ଆସକ୍ତ କରି ମତେ ମନ୍ଦାକ୍ଷ ବା ଲଜ୍ଜା ଶିଖାଇ ଚାଲିଲୁ । ଆଜ ଏପରି କଣ ? ତୁ ତ ଜାଣୁ ପୁରାଣ କହେ ଯାହା ଦେଇଥିବ, ତାହା ପାଇବ । ତୁ ମତେ ମନ୍ଦାକ୍ଷ ବା ଲଜ୍ଜା ଦେଇଥିଲୁ । ଏବେ ସେହି ମନ୍ଦାକ୍ଷ ବା ଲୋଚନ ସଂକୋଚ ପାଅ । ଏହି ଉତ୍ତର ରାଜକୁମାରୀ କହି ତାର ପ୍ରିୟତମା କବି କନ୍ୟାର ହସ ହସ ନେତ୍ର ଛବିକୁ ଫଗୁଗୁଣ୍ଡା ମାରି ମାରି ଭୃଙ୍ଗି ଦେଲା । ଯାହା ଫଳରେ ସେ ଆଉ ପରିହାସ କରି ନ ପାରି ଆଖି ମଳି ଲୁଚିଗଲା ।

---

ଶବ୍ଦାର୍ଥ । ରତ—ଆସକ୍ତ । ମନ୍ଦାକ୍ଷ—ଲଜ୍ଜା । ମନ୍ଦାକ୍ଷ—ଚକ୍ଷୁର ସଂକୋଚନ, ଆଖି ଘୋଡ଼େଇ ହୋଇ ପଡ଼ିବା । 'ଯେ ଦତ୍ତ—ସେ ପ୍ରାପ୍ତି'—ଯାହାଦେବ ତା ପାଇବ ।

**ଲତାନ୍ତେ ଲୁଚି ଡାକିଲା ଡାକି-ମଧ୍ୟା ବାକ୍ୟେ ଧୀବର ତୁ ବୋଲାଉ**
**ନାରୀ ନେତ୍ର ମୀନ ପଦବୀ ଅଛୁତ ଉଚତ ତୋର କର ଦାଉ**
**ଗ୍ରାଶ ଶଶୀର**
**ପ୍ରଣୟ୍ଯ ଦୃଢ଼ିମା କେମନ୍ତ**
**ଅବର୍ଣ୍ଣାଙ୍କିତ ଅଶ୍ରୁଜଳ ଛଳଟି ସେହ୍ନ ବାନ୍ତ କଲା ଶୋଣିତ । ୧୭ ।**

**ଅନ୍ୱୟ**—ଡାକୁମଧ୍ୟା (କଟକୁମାରୀ) ଲତାନ୍ତେ ଲୁଚି ଡାକଲା—(ଜେମା !) ତୁ ବାକ୍ୟେ ଧୀ—ବର ବୋଲାଉ । ଯେଣୁ ନାରୀ ନେତ୍ର (ରେ) ମୀନ ପଦବୀ ଅଛୁତ ? (ତେଣୁ) ତୋର ଉଚତ (ସେଥିରେ) ଦାଉ କର । (ବିଶେଷରେ ମୀନ) ଗ୍ରାଶି (ସହିତ) ଶଶୀର କେମନ୍ତ ପ୍ରଣୟ ଦୃଢ଼ିମା (ଅଛି, ତା ଜାଣୁ) । (ଏ କ୍ଷେତ୍ରରେ ଚନ୍ଦ୍ର ମୀନର ବିପତ୍ତି ଦେଖି) ଅବର୍ଣ୍ଣାଙ୍କିତ ଅଶ୍ରୁଜଳ ଛଳଟି ସେହ୍ନ ଶୋଣିତ ବାନ୍ତକଲା ।

**କଥା**—ଡମ୍ବରୁ-ମଧ୍ୟମା ରୂପସୀ କବି କନ୍ୟା ଲତା ମଧ୍ୟରେ ଲୁଚିରହି ଡାକଲା—ଆଗୋ ଜେମା ମଣି ! ତୁ କଥାରେ ଧୀ-ବର କି ଏକାନ୍ତ ବୁଦ୍ଧିମନ୍ତା, ତେଣୁ ତୁ ଏ କ୍ଷେତ୍ରରେ ଧୀବର କି କେଉଟ ଜଣେ ହେଲୁ । ଯେହେତୁ ତୁ ଜାଣୁ ଯେ ନାରୀମାନଙ୍କ ନେତ୍ରରେ ମୀନ ସଜ୍ଞା ତ ରହି ଆସିଛି । ତେଣୁ ଧୀ-ବର ହେତୁ ତୋର ଉଚିତ୍ ଯେ ତୁ ସେଥିରେ ଦାଉ ସାଧିବୁ । କେଉଟ ମାଛକୁ ନିଶ୍ଚୟ ଆଘାତ ଦେବ ହିଁ ଦେବ । ତୁ ସେଇଥି ପାଇଁ ମୋ ଆଖିକି କଷ୍ଟ ଦେଲୁ ।

ଆଉ ଗୋଟିଏ କଥା ମୀନଗ୍ରାଶି ସହିତ ଶଶୀର କପରି ପ୍ରଣୟ ଦୃଢ଼ତା ଅଛି, ତୁ ତା ଜାଣୁ । ବସନ୍ତ କାଳ ମୀନ ରାଶିରେ ପଡ଼େ । ବସନ୍ତ କାଳର ଚନ୍ଦ୍ରମା କପରି ପ୍ରଣୟ ଘେନି ସାଥି ତୁ କଣ ନ ଜାଣୁ ? ଏ ଘଟଣାରେ କଣ ହେଲା ନା ବଦନ ଚନ୍ଦ୍ର ନୟନ ମୀନର ବିପତ୍ତି ଦେଖି ଫଗୁ ଗୁଣ୍ଡା ରଞ୍ଜିତ ଅଶ୍ରୁଜଳ ଛଳରେ ସେହି ରକ୍ତ ବାନ୍ତ କରିଛି । ଏଥର କପରି ହେଲା ?

---

ଶବ୍ଦାର୍ଥ । ଡ଼ାକ—ଡମ୍ବରୁ । ଡ଼ାକ ମଧ୍ୟା—ଡ଼ମ୍ବରୁପ୍ରାୟ କ୍ଷୀଣକଟି ବିଶିଷ୍ଟା । ଲତାନ୍ତେ—ଲତା ମଧ୍ୟରେ । ଧୀ-ବର—ଧୀ-ବୁଦ୍ଧି, ବର—ଶ୍ରେଷ୍ଠ ଅର୍ଥାତ୍ ବୁଦ୍ଧିମନ୍ତା । ଧୀବର—କେଉଟ । ମୀନପଦବୀ—ମୀନ ସଜ୍ଞା । ଦାଉ—ଦୁଃଖ, ଅଦୌଡ । ମୀନ ଗ୍ରାଶି—ବସନ୍ତ କାଳୀନ ଗ୍ରାଶି । ଛଳଟି—ଛଳରେ । ଅବର୍ଣ୍ଣାଙ୍କିତ—(ଅଙ୍କିତ—ରଞ୍ଜିତ) ଫଗୁ ରଞ୍ଜିତ । ଅବିର ସ୍ୱଷ୍ଟବକ ରକ୍ତବର୍ଣ୍ଣ ।

**ଅମରପନ୍ତ ଅମରମାର୍ଗେ ଗନ୍ତ ରଚୁଥିଲେ ଦ୍ୱାରାବତୀକି**
**ସଙ୍ଗିନୀ ସଙ୍ଗ-ସଙ୍ଗୀତ-ଗୀତ-ରଙ୍ଗ ରାଜି ବାଜିଗଲା ଶ୍ରୁତିକି**
**ବାଳା ବିଳାସ**
**ବନେ ପ୍ରବେଶ ହେଲେ ଯାଇଁ**
**ଅଘକର୍ତ୍ତନ-କର୍ତ୍ତା କୀର୍ତ୍ତି-କୀର୍ତ୍ତନ-ନର୍ତ୍ତନେ ରସନା ରସାଇ । ୧୮ ।**

**ଅନ୍ୱୟ**—(ଏମନ୍ତ ସମୟରେ) ଅମରପନ୍ତ ଅମର ମାର୍ଗେ ଦ୍ୱାରାବତୀକି ଗନ୍ତ ରଚୁଥିଲେ । (ତାଙ୍କ) ଶ୍ରୁତିକି ସଙ୍ଗିନୀସଙ୍ଗ-ସଙ୍ଗୀତ-ଗୀତ-ରଙ୍ଗରାଜି ବାଜିଗଲା । (ତହୁଁ ସେ ଉକ୍ତ) ବାଳା ବିଳାସ ବନେ ଅଘକର୍ତ୍ତନ-କର୍ତ୍ତା କୀର୍ତ୍ତି-କୀର୍ତ୍ତନ-ନର୍ତ୍ତନେ ରସନା ରସାଇ ଯାଇଁ ପ୍ରବେଶ ହେଲେ ।

**କଥା**—ଏମନ୍ତ ସମୟରେ ନାରଦ ଆକାଶ ପଥରେ ଦ୍ୱାରକାକୁ ଯାଉଥିଲେ ରୁକ୍ମିଣୀଙ୍କ ସାଥୀ ସଖୀମାନଙ୍କର ସଙ୍ଗୀତ ଗୀତରଙ୍ଗ ସବୁ ତାଙ୍କ କାନରେ ବାଜିଗଲା । ତହୁଁ ସେ ଯେଉଁ ବନରେ ଉକ୍ତ ବାଳାମାନେ ବିଳାସ କରୁଥିଲେ ସେଠାକୁ ପାପ ନାଶକ ବିଷ୍ଣୁଙ୍କର ଗୁଣ କୀର୍ତ୍ତନ ନୃତ୍ୟରେ ତାଙ୍କର ଜିହ୍ୱା ରସାଇ ସେଠାରେ ପ୍ରବେଶ ହେଲେ ।

ଶବ୍ଦାର୍ଥ । ଅମରପନ୍ଥ—ନାରଦ । ଅମରମାର୍ଗେ—ଆକାଶ ପଥରେ । ଦ୍ୱାରାବତୀ—ଦ୍ୱାରକା । ରାଜି—ସମୂହ । ଶ୍ରୁତିକି—କର୍ଣ୍ଣରେ । ବାଳାବିଳାସ-ବନେ—ରମଣୀମାନଙ୍କ ବିଳାସ-କାନନରେ । ଅଘ—ପାପ । ଅଘ-କର୍ତ୍ତନକର୍ତ୍ତା—ପାପବିନାଶର ମାଲିକ, ବିଷ୍ଣୁ । କୀର୍ତ୍ତନ—ଗୁଣ କୀର୍ତ୍ତନ, ଯଶୋଗାନ । ନର୍ତ୍ତନ—ନୃତ୍ୟ । ରସନା—ଜିହ୍ୱା । ରସାଇ—ରଞ୍ଜାଇ ।

**ବହ୍ନିଚ୍ଛଟା ମୁନି ମୁକୁଟ ପିଙ୍ଗଳ ଜ୍ୟୋତି ଜଟା ଭସ୍ମ ଭୂଷିତେ**
**ଗୈରିକ-ଶୃଙ୍ଗେ ନିଘନ କୌଶିକ-ଘନ ହୋଇଥାଇ ଯେମନ୍ତେ**
**ଚନ୍ଦ୍ରେ ଚନ୍ଦ୍ରିକା**
**ଚୟର ଚାତୁରୀ ଯେସନ**
**ଫଳିତ କରିଛି ବଦନ ଶୋଭାକୁ ପଳିତ ଶମଶ୍ରୁ ତେସନ । ୧୯ ।**

**ଅନ୍ୱୟ**—ଗୈରିକ-ଶୃଙ୍ଗେ କୌଶିକ-ଘନ ଯେମନ୍ତେ ନିଘନ ହୋଇଥାଇ, (ତେମନ୍ତ) ମୁନି ଭସ୍ମ ଭୂଷିତେ ପିଙ୍ଗଳ ଜ୍ୟୋତି ଜଟା ମୁକୁଟ ବହ୍ନିଚ୍ଛଟା । ଯେସନ ଚନ୍ଦ୍ରେ ଚନ୍ଦ୍ରିକା ଚୟର ଚାତୁରୀ, ତେସନ (ତାଙ୍କ) ବଦନ ଶୋଭାକୁ ପଳିତ ଶ୍ମଶ୍ରୁ ଫଳିତ କରିଛି ।

**କଥା**—ଗେରୁଆ ପର୍ବତର ଚୂଡ଼ାକୁ କୁହୁଡ଼ି ଯେମନ୍ତ ଘୋଟି ରହିଥାଏ, ତେମନ୍ତ ଏ ମୁନି ପାଉଁଶ ବୋଳା ହୋଇଥିବା ରକ୍ତ ହରିଦ୍ରା ମିଶ୍ରିତ ବର୍ଣ୍ଣ ବିଶିଷ୍ଟ ପିଙ୍ଗଳ ଜ୍ୟୋତିର ଜଟା ମୁକୁଟ ମୁଣ୍ଡରେ ଧାରଣ କରିଅଛନ୍ତି । ଯେସନ ଚନ୍ଦ୍ରକୁ କୌମୁଦୀ ସବୁ ଘେରି ଥାଏ, ତେସନ ସେ ମୁନିଙ୍କର ମୁଖ ଶୋଭାକୁ ପାଚିଲା ଦାଢ଼ି ବେଢ଼ି ରହି ସୁନ୍ଦର କରିଅଛି ।

---

ଶବ୍ଦାର୍ଥ । ପିଙ୍ଗଳ—ହରିଦ୍ରା ମିଶ୍ରିତ ବର୍ଣ୍ଣ । ଗୈରିକ—ଗେରୁଆ । ନିଘନ—ନିଘନ-ଯୁକ୍ତ, ଘୋଟିଯିବା । କୌଶିକ-ଘନ—(ବିଶ୍ୱାମିତ୍ର ସୃଷ୍ଟ ମେଘ) —କୁହୁଡ଼ି । ଶୃଙ୍ଗ—ପର୍ବତ, ଚୂଡ଼ା । ଚନ୍ଦ୍ରିକା-ଚୟ—କୌମୁଦୀ ସମୂହ । ଚାତୁରୀ—ଚତୁରତା, କୌଶଳ । ଚନ୍ଦ୍ରେ ଚନ୍ଦ୍ରିକା ଚୟର ଚାତୁରୀ—ଚନ୍ଦ୍ରକୁ ଚତୁରତା ବଶରେ କୌମୁଦୀ ଯେପରି ବେଢ଼ିଥାଏ । ଫଳିତ—ସଫଳ । ପଳିତ—ପାଚିଲା । ଶମଶ୍ରୁ—ଶ୍ମଶ୍ରୁ, ଦାଢ଼ି ।

**କରକଦନ୍ତୀ କରକଞ୍ଜ ଝଟତ କୋରକତ ହେଲ୍ ଦେଖି ଯେ**
**ବଲ୍ଲକୀ ଅକ୍ଷମାଳାକୁ କକ୍ଷ କର୍ଣ୍ଣେ ଅତ୍ତୂର୍ଣ୍ଣେ ଦେଲେ ରଖି ଯେ**
**ରହ୍ମ ଆନମ୍ରେ**
**ଅଞ୍ଜଳି କରି କରଦ୍ୱୟ**
**ବାହ୍ନଜ ବହ୍ନ ଯତନେ ଏ କଲ୍ୟାଣ ମୋହ୍ନ ଘେନଗଲେ ହୃଦୟ । ୨୦ ।**

**ଅନ୍ୱୟ**—(ତାହାଙ୍କୁ) ଦେଖି ଯେ କରକ ଦନ୍ତୀ କରକଞ୍ଜ ଝଟତ କୋରକତ ହେଲା । (ତହୁଁ) ବାହ୍ନଜ ବଲ୍ଲକ୍ମ (ଓ) ଅକ୍ଷମାଳାକୁ କକ୍ଷ (ଏବଂ) କର୍ଣ୍ଣେ ଅତ୍ତୂର୍ଣ୍ଣେ ରଖି ଯେ ଦେଲେ । ଆନମ୍ରେ ରହ୍ନ କରଦ୍ୱୟ ଅଞ୍ଜଳି କରି ଯତନେ ଏ କଲ୍ୟାଣ ବହ୍ନ ହୃଦୟ ମୋହ୍ନ ଘେନିଗଲେ ।

**କଥା**—ନାରଦଙ୍କ ଆଗମନ ଦେଖି ସୁଦନ୍ତୀ ରୁକ୍ମଣୀଙ୍କର ହସ୍ତପଦ୍ମ ହଠାତ୍ କଳିକା ପ୍ରାପ୍ତ ହୋଇଗଲା । ସେ କରଯୋଡ଼ି ନମସ୍କାର କଲେ । ତହୁଁ ବିଧାତାଙ୍କର ମାନସ ପୁତ୍ର ନାରଦ ତାଙ୍କର ହସ୍ତରେ ଥିବା ବୀଣାକୁ କାଖରେ ଏବଂ ଜପମାଳାକୁ କାନରେ ତୁରନ୍ତ ଲଗାଇ ଦେଇ ନଇଁକରି ତାଙ୍କର କର ଦୁଇଟିକୁ ଅଞ୍ଜଳି କରି ଅତି ଯତ୍ନରେ ଏହି ଆଶୀର୍ବାଦ କରି ଜେମାଙ୍କର ହୃଦୟକୁ ମୋହିତ କରିଦେଲେ ।

---

ଶବ୍ଦାର୍ଥ । କରକ—ଡାଳିମ୍ବବୀଜ । କରକ ଦନ୍ତୀ—ଡାଳିମ୍ବଦନ୍ତୀ; ଅତିସୁନ୍ଦର ଦନ୍ତ ବିଶିଷ୍ଟା । କରକଞ୍ଜ—କରପଦ୍ମ । କୋରକତ କରି—ଯୋଡ଼ି, କରକୁ କଢ଼ ପରି କରିବା । ଝଟତ—ଶୀଘ୍ର । ବଲ୍ଲକୀ—ବୀଣା । ଅକ୍ଷମାଳା—ଜପମାଳା, ସ୍ଫଟିକମାଳା । କକ୍ଷ—କାଖ । ତୂର୍ଣ୍ଣେ—ଶୀଘ୍ରେ । ଆନମ୍ରେ—ନଇଁକରି । ବାହ୍ନଜ—ବିଧାତାପୁତ୍ର ନାରଦ ।

**ଯାହାଙ୍କ ଲୋକନୁ ତ୍ୟକ୍ତ କଲେ ମନୁ ମୁକ୍ତ ହୋଇଯିବା କର୍ମକୁ**
**ନର୍ବିକାରତ ପରୃଶ ଆଚରଲେ ଭରୀ କ୍ଲେଶ ନାରୀ ଜନ୍ମକୁ**
**ସେହି ମୋହନ**
**ଅପଘନେ ହୁଅ ନଘନ**
**ବଦ୍ୟୁଦ୍ବଳ ବମ୍ରସ୍ଥଳ କଳନ୍ଦଜା ଭଳ ଦଶୁ ବଳୀ ମର୍ଦ୍ଦନ । ୨୧ ।**

**ଅନ୍ୱୟ**—ନର୍ବିକାରତ ଯାହାଙ୍କ ଲୋକନୁ ମୁକ୍ତ ହୋଇଯିବା କର୍ମକୁ ମନୁ ତ୍ୟକ୍ତ କଲେ (ଏବଂ) ପରୃଶ ଭରି କ୍ଲେଶ (ସମ୍ପନ୍ନ) ନାରୀ ଜନ୍ମକୁ ଆଚରଲେ ସେହି ମୋହନ ଅପଘନେ ନଘନ ହୁଅ । (ଏବଂ ଉକ୍ତ) ବଳୀ ମର୍ଦ୍ଦନ କଳନ୍ଦଜା ବଦ୍ୟୁଦ୍ବଳ ବମ୍ରସ୍ଥଳ ଭଳ ଦଶୁ ।

**କଥା**—ନର୍ବିକାର ତପସ୍ୱୀଗଣ ଯାହାଙ୍କ ରୂପଶ୍ରୀ ଦେଖନ୍ତେ ମୋକ୍ଷ ପାଇଁ କରୁଥିବା କୁଚ୍ଛ୍ର ସାଧନ ମନରୁ ତ୍ୟାଗ କଲେ ଏବଂ ଉକ୍ତ ମଧୁର ମୂର୍ତ୍ତି ରାମଙ୍କୁ ପରୃଶ ପରଜନ୍ମ ଲାଗି ଅସହ୍ୟ ଦୁଃଖ ସମ୍ପନ୍ନ ନାରୀ ଜନ୍ମକୁ ଗ୍ରହଣ କଲେ ସେହି ମୋହନ କୃଷ୍ଣଙ୍କର ଶ୍ରୀ ଅଙ୍ଗରେ ତୁମେ ଯୁକ୍ତ ହୁଅ । ସେ ବର ହୁଅନ୍ତୁ, ତୁମେ ତାଙ୍କର କନ୍ୟା ହୁଅ । ଏବଂ ଉକ୍ତ ବଳୀ ମର୍ଦ୍ଦନ ବାମନରୂପୀ କୃଷ୍ଣ ; ତୁମ୍ଭଙ୍କୁ ଲାଭ କରି ଯମୁନା ନୀଳ ଜଳରେ ବଦ୍ୟୁତ ଝଟକତ ପ୍ରତବମ୍ବ ଭଳ ଦେଖାଯାନ୍ତୁ ।

**ଆଲୋଚନା**—ଦଣ୍ଡକାରଣ୍ୟରେ ତପସ୍ୱୀମାନେ ରାମଙ୍କ ସୌନ୍ଦର୍ଯ୍ୟରେ ମୋହିତ ହୋଇ ମୋକ୍ଷ ତ୍ୟାଗ କରି ତାଙ୍କର ପ୍ରିୟ ହେବାକୁ କାମନା କରିଥିଲେ ଯାହା କ କୃଷ୍ଣଙ୍କର ଗୋପିମାଗଣ ଅଟନ୍ତି ।

---

ଶବ୍ଦାର୍ଥ । ଲୋକନୁ—ଦର୍ଶନରୁ । ତ୍ୟକ୍ତକଲେ—ତ୍ୟାଗକଲେ । ମୁକ୍ତ—ମୋକ୍ଷ । ନର୍ବିକାରତ—ବବାହ ସ୍ପନ ତପସ୍ୱୀ ବୃନ୍ଦ । ଅରଣ୍ୟରେ ରାମଙ୍କ ଉପରେ ମୋହିତ ହୋଇ ଅନ୍ୟ ଜନ୍ମରେ ତାଙ୍କର ପ୍ରଣୟିନୀ ନାରୀ ହେବାକୁ ଯେଉଁ ମୁନିମାନେ ଇଚ୍ଛା କରିଥିଲେ । ଭରିକ୍ଲେଶ— ଅସହ୍ୟ ଦୁଃଖ । ଅପଘନେ—ଅଙ୍ଗରେ । ନଘନ—ଯୁକ୍ତ, ସଂଯୋଗ । ବଳୀ ମର୍ଦ୍ଦନ—ବିଷ୍ଣୁରୂପୀ କୃଷ୍ଣ । କଳନ୍ଦଜା—ଯମୁନା । ବମ୍ରସ୍ଥଳ—ପ୍ରତବମ୍ବ । ବଦ୍ୟୁଦ୍ବଳ—ବଦ୍ୟୁତପ୍ରାୟ ସୁନ୍ଦର ।

**ଧରଣୀ-ଶିରୀ ଦକ୍ଷିଣ କର ଧରିଥିବା ଜବାଧରୀ ଉତ୍ତର**
**ଗୃଭକ କ୍ରୋଡ଼ୀ କଳ୍ପରେ ଅଳ୍ପବୃଷ୍ଟି କେଉଁ ପୂର୍ଷ୍ଟି ଘନାଘନର**
**ଋଷେ ଭାଷିଲେ ;**
**ହାସେ ମଣ୍ଡି ଦେଇ ଅଧର**
**ଶ୍ରୀପତି-କୀର୍ତ୍ତି-ନର୍ତ୍ତକୀ-ନୃତ୍ୟସ୍ଥଳେ ପାରଦେଲା ପରି କର୍ପୂର । ୨୨ ।**

**ଅନ୍ୱୟ**—ଧରଣୀ-ଶିରୀ ଦକ୍ଷିଣ କର ଧରିଥିବା ଜବାଧରୀ ଉତ୍ତର (କଲା) କଳ୍ପରେ ଗୃଭକ କ୍ରୋଡ଼ୀ(ରେ) ଅଳ୍ପବୃଷ୍ଟି (ହେଲେ) ଘନାଘନର କେଉଁ ପୂର୍ଷ୍ଟି ?

ଶ୍ରୀପତି-କୀର୍ତ୍ତି-ନର୍ତ୍ତକୀ ନୃତ୍ୟସ୍ଥଳେ କର୍ପୂର ପାରଦେଲା ପରି ହାସେ ଅଧର ମଣ୍ଡି ଦେଇ ଋଷି ଭାଷିଲେ ।

**କଥା**—ତା ଦେଖି ଧରଣୀର ଶ୍ରେଷ୍ଠ ସୁନ୍ଦରୀ ରୁକ୍ମଣୀଙ୍କର ଦକ୍ଷିଣ କର ଧରିଥିବା ଜବାଧରୀ ସଖୀ ଉତ୍ତର କଲା—ହେ ଋଷି !

ଅଭିପ୍ରାୟରେ ଗୃଭକ କଣ୍ଠରେ ଯେବେ ଅଳ୍ପ ବୃଷ୍ଟି ହୁଏ, ତଦ୍ଦ୍ୱାରା ବର୍ଷକ—ମେଘର କି ପର୍ଯ୍ୟାପ୍ତି ଜଣାଯିବ ? ତୁମେ କହିଲ କୃଷ୍ଣ ଅଙ୍ଗରେ ଆମସଖୀ ମିଶିଯିବ । ତେବେ କ'ଣ କହିଲେ ବୁଝାଗଲା ନାହିଁ । ବହୁବାର ଧାରଣା କରି ଗୃଭକ କଣ୍ଠରେ ତୃଷା ରହିବା ପରି କିଛି ସ୍ପଷ୍ଟ କହିଲ ନାହିଁ । ଏ ମିଶିଯିବା ଆଉ ମୁକ୍ତ ଧର୍ମର ମିଶିଯିବା ପରି ନୁହେଁତ ?

ତହୁଁ ବିଷ୍ଣୁଙ୍କ କୀର୍ତ୍ତି କାହାଣୀର ନୃତ୍ୟକାରିଣୀ ନୃତ୍ୟସ୍ଥଳରେ ଯେପରି କର୍ପୂର ପ୍ରାୟ ଶୁଭ୍ର ହାସ୍ୟ-ବିଚ୍ଛୁରିତ କରିଦିଏ, ସେପରି ଶୁଭ୍ର ହାସ୍ୟରେ ଅଧର ମଣ୍ଡିତ କରି ଋଷି କହିଲେ—।

---

ଶବ୍ଦାର୍ଥ । ଧରଣୀ ଶିରୀ—ଧରଣୀର ଶ୍ରେଷ୍ଠ ସୁନ୍ଦରୀ, ବଡ଼ ଶୋଭା ରାଣୀ । ଜବାଧରୀ—ମନ୍ଦାର ଫୁଲ ପରି ଓଷ୍ଠ ଥିବା ସ୍ତ୍ରୀ । ଘନାଘନ—ଇନ୍ଦ୍ର, ଦୁଷ୍ଟ ହସ୍ତୀ, ବର୍ଷଣକାରୀ ଘନ ମେଘ । କଳ୍ପ—ଅଭିପ୍ରାୟ, ଇଚ୍ଛା । ପୂର୍ଷ୍ଟି—ପର୍ଯ୍ୟାପ୍ତି । କ୍ରୋଡ଼ୀ—କଣ୍ଠ । ଶ୍ରୀପତି କୀର୍ତ୍ତି ନର୍ତ୍ତକୀ—ବିଷ୍ଣୁଙ୍କ କୀର୍ତ୍ତି-ଗାଥାର ନୃତ୍ୟ କାରିଣୀ । କର୍ପୂର—ଶୁଭ୍ର । ପାର—ବିଚ୍ଛୁରିତ ।

**ମହେନ୍ଦ୍ରମଣି ସୁନ୍ଦର ଯଦୁବୃନ୍ଦ ପୁରନ୍ଦର ରୌପ୍ୟ କନ୍ଦର**
**ନାଥ ଯା ପାଥୋଜ ପଦାଙ୍କେ ପକାନ୍ତି ଯଥାମୁଦ ନେତ୍ର ପନ୍ଦର**
**ଅଷ୍ଟ ନେତ୍ରର**
**କଷ୍ଟ ହରଣେ ସେ କୁଶଳ**
**ଯାହା ରୋମମାଳ-ଲତା ଆଳବାଳ ସଦୃଶ ବ୍ରହ୍ମାଣ୍ଡ ମଣ୍ଡଳ । ୬୩ ।**

**ଅନ୍ୱୟ**—ମହେନ୍ଦ୍ରମଣି (ପ୍ରାୟ) ସୁନ୍ଦର (ଅଟନ୍ତି) ଯଦୁବୃନ୍ଦ ପୁରନ୍ଦର (ଅଟନ୍ତି) । ରୌପ୍ୟ କନ୍ଦର-ନାଥ ଯା ପାଥୋଜ-ପଦାଙ୍କେ ନେତ୍ର ପନ୍ଦର ମୁଦ ମଥା ପକାନ୍ତି । ବ୍ରହ୍ମାଣ୍ଡ-ମଣ୍ଡଳ ଯାହା ରୋମମାଳ (ରୂପକ) ଲତା ଆଳବାଳ ସଦୃଶ (ଅଟେ) ସେ ଅଷ୍ଟ ନେତ୍ରର କଷ୍ଟ ହରଣେ କୁଶଳ ଅଟନ୍ତି ।

**କଥା**—ଇନ୍ଦ୍ରନୀଳମଣି ପ୍ରାୟ ସୁନ୍ଦର ଅଟନ୍ତି, ଯଦୁବଂଶରେ ଇନ୍ଦ୍ର ସଦୃଶ ଶ୍ରେଷ୍ଠ ଅଟନ୍ତି, କୈଳାସ ନାଥ ଯାହାଙ୍କ ପଦ୍ମ ପଦରେ ପନ୍ଦର ନେତ୍ର ମୁଦ ମସ୍ତ ନୁଆନ୍ତି, ବ୍ରହ୍ମାଣ୍ଡ-ମଣ୍ଡଳ ଯାହାର ରୋମମାଳ ରୂପକ ଲତା ମନ୍ଦା ସଦୃଶ ଅଟେ, ସେ ବିଧାତା ବ୍ରହ୍ମାଙ୍କ କଷ୍ଟ ହରଣରେ ଦକ୍ଷ ଅଟନ୍ତି । ଯେଉଁ ବିଧାତା ଏହି ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି କରିଛନ୍ତି ସେ ସବୁ ତାଙ୍କ ଲୋମ-କୂପରେ ଅବସ୍ଥିତ, ପୁଣି ବିଧାତା ଯାବତୀୟ ଦୁଃଖ ତାଙ୍କର ଦ୍ୱାରହିଁ ନିବାରଣ କରିଥାନ୍ତି ।

ଶବ୍ଦାର୍ଥ । ମହେନ୍ଦ୍ରମଣି—ଉଜ୍ଜ୍ୱଳ . ଇନ୍ଦ୍ରନୀଳମଣି । ଯଦୁବୃନ୍ଦ ପୁରନ୍ଦର—ଶ୍ରୀକୃଷ୍ଣ । ରୌପ୍ୟ କନ୍ଦର—କୈଳାସ । କୈଳାସ ନାଥ—ଶିବ । ପାଥୋଜ—ପଦ୍ମ । ନେତ୍ର ପନ୍ଦର—ଶିବ ପଞ୍ଚାନନ ହେତୁ ତାଙ୍କର ପ୍ରତି ମୁଖରେ ତିନିନୟନ ଯୋଗୁଁ ତାଙ୍କର ସଂଖ୍ୟା ପନ୍ଦର ଅଟେ । ମଥା ପକାନ୍ତି—ମୁଣ୍ଡ ନୁଆଁନ୍ତି । ଆଳବାଳ—ମନ୍ଦା । ରୋମ ମାଳକୁ ଲତା ସଦୃଶ ଧାରଣା କରାଯାଇଛି । ଅଷ୍ଟନେତ୍ର—ଚତୁର୍ମୁଖ ବ୍ରହ୍ମାଙ୍କର ଅଷ୍ଟନେତ୍ର, ବ୍ରହ୍ମା, ବିଧାତା । କୁଶଳ—ଦକ୍ଷ ।

**ଦ୍ୱାରକା ପୁର ତାରକାବର କର ବର ଚରଣେ ନାହିଁ ରସି**
**ନଟ ଖଞ୍ଜରୀଟ ନେତ୍ରୀ ରାଟପୁତ୍ରୀ ଏ ହେବ ତା ପଟ ମହିଷୀ**
**ଶୁଣି ସନ୍ନ୍ୟାସୀ-**
**ଜ୍ଞାନ ବିନାଶି, ବାମକର**
**ନ୍ୟାସୀ ହେବା ଦାସୀ ରାଗ ମିଶାମିଶି କରି ଦତ୍ତ କଲା ଉତ୍ତର । ୨୪ ।**

**ଅନ୍ୱୟ**—ଦ୍ୱାରକାପୁର-ତାରକାବର-କର କାର ଚରଣେ ରସିନାହିଁ । ନଟ ଖଞ୍ଜରୀଟନେତ୍ରୀ ଏ ରାଟ-ପୁତ୍ରୀ ତା' ପଟ୍ଟମହିଷୀ ହେବ । (ଏହା) ଶୁଣି ସନ୍ନ୍ୟାସୀ ଜ୍ଞାନ ବିନାଶି (ଜେମାର) ବାମକର ନ୍ୟାସୀ ହେବା ଦାସୀ ରାଗ ମିଶାମିଶି କରି ଉତ୍ତର ଦତ୍ତକଲା ।

**କଥା**—ଏବେ ସୁଦ୍ଧା ଦ୍ୱାରକାପୁର ଚନ୍ଦ୍ରମା କୃଷ୍ଣଙ୍କ କର କେଉଁ ସୁନ୍ଦରୀ ଚରଣକୁ ସ୍ପର୍ଶ କରି ନାହିଁ । ଏହି ନୃତ୍ୟଶୀଳା ଖଞ୍ଜନ ପକ୍ଷୀର ନେତ୍ର ସଦୃଶ ସୁନୟନା ରାଜଜେମାହିଁ ତାଙ୍କର ପାଟରାଣୀ ହେବେ ।

ଏହାଶୁଣି ରୂପରେ ଯେ ସନ୍ନ୍ୟାସୀଙ୍କ ଜ୍ଞାନ ଧ୍ୱଂସ କରିଦେବ ବାଁ ହାତ ଧରିଥିବା ଜେମାର ଦାସୀ ଜଣକ ପ୍ରୀତିରକ୍ଷି ଛନ୍ଦରାଗ ମିଶାମିଶି ଭାଷାରେ ଉତ୍ତର ଦେଲା ।

**ଆଲୋଚନା**—ସେ ଦାସୀ ଜଣକ ବିଭିନ୍ନ ରାଗମାନଙ୍କୁ ଏପରି ସଜାଇ କହିଲା ଯହିଁରୁ ରାଗମାନ ପ୍ରକାଶିତ ହେଲା । ପୁନଶ୍ଚ ଅନୁରାଗ ମଧ୍ୟ ଜଣାଗଲା ।

ଶବ୍ଦାର୍ଥ । ତାରକାବର—ଚନ୍ଦ୍ର । କାର—କାହାର । ଚରଣେ ରସିନାହିଁ—ଉତ୍ତମ ନାରୀ ପଦକୁ ପୁରୁଷ ଯଥାର୍ଥ ସ୍ନେହ ଦେଖାଏ । ତେଣୁ ସେ ହୁଏ ନାରୀର ଚରିତ ଦାସ । ଶିବ—ପାର୍ବତୀଙ୍କୁ କହିଥିଲେ—"ଅଦ୍ୟ ପ୍ରଭୃତ୍ୟବନତାଙ୍ଗି ! ତବାସ୍ମି ଦାସଃ" । ନଟ—ନୃତ୍ୟକାରୀ । ଖଞ୍ଜରୀଟ—ଖଞ୍ଜନ ପକ୍ଷୀ । ଏହାର ସୁନ୍ଦର ଚକ୍ଷୁ ଏବଂ ଏହା ପୁଚ୍ଛକୁ ସର୍ବଦା ହଲଉ ଥାଏ । ତେଣୁ ଏ ପକ୍ଷୀ ସୁଲକ୍ଷଣା ଅଟେ । ରାଟପୁତ୍ରୀ—ରାଜକୁମାରୀ । ସନ୍ନ୍ୟାସୀ ଜ୍ଞାନ ବିନାଶି—ସାଧୁଲୋକର ଜ୍ଞାନ ଯେ ରୂପର ମହତରେ ବିନାଶ କରିପାରେ । ନ୍ୟାସୀ—ଧାରଣ କରିଥିବା । ରାଗ—ଛନ୍ଦ, ଅନୁରାଗ, ପ୍ରୀତି । ଦତ୍ତକଲା—ଦେଲା ।

**ଶଙ୍କର ପର ଜରେ ପଡ଼ି ରହିଲେ ଯୋଗ ଆଶା ବରି ଗଉରୀ**
**ଲଳିତ ବସନ୍ତ ଭୈରବ ହେବାରୁ ବହିବ କୋଳାହଳ ପୂରି**
**ମାଳବରେ ଯେ**
**ହୋଇବ ଶଙ୍କରାଭରଣ**
**ବିଷ ଆହାରି ହୋଇବୁଁ ନ ଭେଟିଲେ ମୋହନ ମଙ୍ଗଳ କଲ୍ୟାଣ । ୨୫ ।**

**ଅନ୍ୱୟ**—ଗଉରୀ (ତାଙ୍କ) ଯୋଗ 'ଆଶାବରି' 'ଶଙ୍କରି' 'ପରଜ'ରେ ପଡ଼ିରହିଲେ । ଏହି 'ଲଳିତ ବସନ୍ତ' 'ଭୈରବ' ହେବାରୁ ପୁରି 'କୋଳାହଳ' (ରୂପ) ବହିବା 'ମାଳ-ବରେ' ଯେ 'ଶଙ୍କର ଭରଣ' ହୋଇବ । (ତୁମ୍ଭ) 'କଲ୍ୟାଣ' 'ମଙ୍ଗଳ' (ଜନକ ହୋଇ) ମୋହନ ନ ଭେଟିଲେ ବିଷ 'ଆହାରି' ହୋଇବୁଁ ।

**କଥା**—ଆପଣ ଯେଉଁ ଆଶୀର୍ବାଦ କଲେ—ଫଳରେ କ'ଣ ହେଲା ?

ଗୌରାଙ୍ଗି ରୁକ୍ମିଣୀ କୃଷ୍ଣଙ୍କ ସହିତ ମିଳିତ ହେବା ଆଶାକୁ ବରଣ କରି କନ୍ଦର୍ପ ଜ୍ୱରରେ ପଡ଼ିରହିଲେ । ଏହି ମାଧୁର୍ଯ୍ୟ ସମ୍ପନ୍ନ ବସନ୍ତକାଳ ତାଙ୍କ ଆନନ୍ଦ ଅଭାବରେ ଭୟଙ୍କର ହେବାରୁ ଆନନ୍ଦମୟ ରାଜପୁରୀ ଜେମା ନିରାନନ୍ଦ ରହିବା ଯୋଗୁଁ ଦୁଃଖ ପୂର୍ଣ୍ଣ କୋଳାହଳ ମୂର୍ତ୍ତି ଧରିବ । ବାସନ୍ତିକ ଉତ୍କୃଷ୍ଟ ଫୁଲହାରମାନ ଶଙ୍କରଙ୍କ ଆଭରଣ ସର୍ପପରି ଜେମାଙ୍କୁ ଜଣାଯିବ । ବିଶେଷରେ ହେ ମୁନି ! ତୁମ୍ଭ କଲ୍ୟାଣ ଶୁଭପ୍ରଦ ହୋଇ ଆମ ଜେମା ସହିତ ମୋହନ କୃଷ୍ଣ ନ ଭେଟିଲେ ଆମେ ସବୁ ବିଷ ଖାଇ ମରିବୁ ।

**ଆଲୋଚନା**—ଏ ପଦରେ ଚଉଦଟି ରୂପସୀ ସଖି—ଆଶାବରି, ଶଙ୍କରି, ପରଜ, ଲଳିତ ବସନ୍ତ, ଭୈରବ, କୋଳାହଳ, ମାଳବ, ଶଙ୍କରାଭରଣ, କଲ୍ୟାଣ, ମଙ୍ଗଳ, ଆହାରି ଏପରି ଶାସ୍ତ୍ରୀୟ ରାଗର ସୂଚନା ଦେଇଅଛନ୍ତି । ଏବଂ ଶଙ୍କର ପରଜ ରାଗରୁ କପରି ଆଶାବରି ଓ ଗୌରୀ, ଲଳିତ ବସନ୍ତ ରାଗରୁ ଭୈରବ ପ୍ରଭୃତି ରାଗର ଉତ୍ପତ୍ତି ଘଟେ ତାହାର ମଧ୍ୟ ସୂଚନା ଦିଆଯାଇଛି ।

---

ଶବ୍ଦାର୍ଥ । ଗଉରୀ—ଗୌରବର୍ଣ୍ଣ ବିଶିଷ୍ଟା । ଯୋଗ—ମିଳନ । ଆଶାବରି—ଆଶାରେ ଆଶକ୍ତି ହୋଇ, ଆଶାକୁ ବରଣ କରି । ଶଙ୍କରପର—କାମଦେବ, କନ୍ଦର୍ପ । ଲଳିତ—ମାଧୁର୍ଯ୍ୟ ସମ୍ପନ୍ନ । ଭୈରବ—ଭୟଙ୍କର । ପୁରି—ରାଜପୁରୀ । କୋଳାହଳ—ଦୁଃଖପୂର୍ଣ୍ଣ ଅବସ୍ଥା । ମାଳ—ହାର, ଗୁନ୍ଥାଫୁଲ । ବର—ଶ୍ରେଷ୍ଠ । ଶଙ୍କରାଭରଣ—ଶଙ୍କରଙ୍କର ଆଭରଣ, ସର୍ପ । ଆହାରି—ପାନକାରୀ, ପିଇବା ।

**ଋଷି ଭୃଷେ ମେଘ ମଲ୍ଲାରୁ କେଦାର ପାଳିତ କାମୋଦତ ହୁଏ**
**ସେହିତୁ ବଭ୍ରସ କଳ ହଂସ-ଗତି ବୃଥା କ୍ଲେଶ ଘଣ୍ଟାରବ ଏ**
**ପୁର ବଧିତ**
**ପରେ କାଳି ନାଟ ହେବାର**
**ଲୁଚିଇ ମନରେ ଗୁପ୍ତକର ଯଥା ତଥାଏ କଥାକୁ ବଚ୍ଚିର । ୨୭ ।**

**ଅନ୍ୱୟ**—(ଏହାଶୁଣି) ଋଷି ଭଷି ପାଳିତ କେଦାର ମେଘ ମଲ୍ଲାରୁ କାମୋଦିତ ହୁଏ । ସେହି ତୁ କଳହଂସ ଗତିର ବଭ୍ରସ କ୍ଳେଶ ବୃଥା । ଘଣ୍ଟାରବ ପୁର ବଧିତ ହେବାର ପରେ ଯଥା କାଳନାଟ (ହୁଏ) ତଥା ମନରେ ଲୁଚିଇ ଗୁପ୍ତକରି ଏକଥାକୁ ବଚ୍ଚିର ।

**କଥା**—ଏହା ଶୁଣି ନାରଦ ଋଷି କହିଲେ-ଯତ୍ନରେ ପରିକ୍ଷିତ କିଆରିରେ ମେଘ ଚଳାଚଳ ହେବାର ଜଣାଗଲେ ମକର କାମୋଦ, କୃଷ୍ଣ କାମୋଦ ଆଦିତ ସୁବାସିତ ଧାନ୍ୟ ହୋଇଥାଏ । ସେହି ହିତକଥାରୁ ତୁମେ ଜାଣିବା ଲୋଡ଼ା ଯେ ମୁଁ ଯେଉଁ ଆଶୀର୍ବାଦ କରିଛୁ ତାହା କେଦାର ସଦୃଶ ଅଟେ । ତାକୁ ତୁମେ ମନରେ ଦୃଢ଼ତା ରଖି ଧରିରଖିଲେ ତାହା ନବମେଘ ସଦୃଶ କୃଷ୍ଣଙ୍କର ଆବିର୍ଭାବରେ ନିଶ୍ଚୟ ଆମୋଦିତ ହୋଇ ସଫଳ ହେବ । ତେଣୁ ରାଜହଂସ ଗମନା ରୁକ୍ମିଣୀ ବୃଥା କ୍ଲେଶବହି ଦ୍ୱୈଧ ଭାବନା ଯେ ଆଣୁଛନ୍ତି ତା ବୃଥାଯିବ । ତାଙ୍କ ଆଶା ନିଶ୍ଚୟ ସଫଳ ହେବ । ଯେପରି ଘଣ୍ଟଧ୍ୱନିରେ ସମଗ୍ର ପୁରୀ ଜଣାଶୁଣା ହୋଇଯାଏ । ହଠାତ୍ ଦେଖା ନ ଯାଇ ପରେ ଗୋପନରେ ଘୋର ଅନ୍ଧାର ମଧ୍ୟରେ କାଳୀ ଠାକୁରାଣୀଙ୍କର ନାଟ (କାଳୀନାଟ) ହୋଇଯାଏ, ସେହିପରି କଳା କୃଷ୍ଣଙ୍କର ନୃତ୍ୟକଥା ମନରେ ଲୁଚିଇ, ଗୁପ୍ତକରି ବଚ୍ଚିର କର ।

**ଆଲୋଚନା**—ଏହି ପଦରେ ସେ, ମେଘମଲ୍ଲାର, ମଯୂର, କେଦାର, କାମୋଦ, ବଭ୍ରସ, କଳହଂସ, କଳହଂସ କେଦାର, ଘଣ୍ଟାରବ, କାଳୀନାଟ ଏପରି ୧୧ ଗୋଟି ରାଗର ସୂଚନା ଦେଲେ ।

---

ଶବ୍ଦାର୍ଥ । କାଳୀ—ଦେବୀ କାଳିକା । ମଲ୍ଲାରୁ—ଗମନ କରିବାରୁ, ଚଳାଚଳରୁ । ପାଳିତ—ଯତ୍ନ ରକ୍ଷିତ । କାମୋଦ—ରଜ କାମୋଦ, କୃଷ୍ଣ କାମୋଦ ଆଦି ଧାନ । ହିତୁଁ—ହିତରୁ । ବଭ୍ରସ—ବିକଳ୍ପ, ଦ୍ୱୈଧଭାବ । କଳହଂସ—ରାଜହଂସ । କଳହଂସ ଗତି—ଧୀରଗମନା ସୁଲକ୍ଷଣା ସ୍ତ୍ରୀ । ଘଣ୍ଟାରବ—ଘଣ୍ଟାଧ୍ୱନି । ପୁର—ନଗରୀ ।

**ସୁରଠ ହେଲେ କାଫିକୁ ଲେଉଟାଇ ମୁଖରେ ପ୍ରକାଶ କରିବେ**
**ସାରଙ୍ଗ ସଙ୍ଗ ବର୍ଜିତ ସୋମଜିତ ମୁଖୀଙ୍କି ପୁନ୍ନାଗ ହରିବେ**
**ଏହି ଆନନ୍ଦ**
**ଭୈରବୀ ଦର୍ଶନେ ହେବ ଯେ**
**ବଙ୍ଗଳା ଶ୍ରୀଜଳ-ଜନନ ଜଳଜ-ପଦମୂଳ କରି ଭାବ ଯେ । ୨୭ ।**

**ଅନ୍ୱୟ**—(ଏ ଜେମା ବିବାହ ସମ୍ପର୍କରେ) ସୁର ୦ ହେଲେ (ମଧ୍ୟ) କାଫିକୁ ଲେଉଟାଇ ମୁଖରେ ପ୍ରକାଶ କରିବେ । ସାରଙ୍ଗ ସଙ୍ଗ ବର୍ଜିତ ସୋମଜିତ ମୁଖୀଙ୍କି (ନିଶ୍ଚୟ) ପୁନ୍ନାଗ ହରିବେ । ଏହି ଆନନ୍ଦ ଭୈରବୀ ଦର୍ଶନେ ଯେ ହେବ । (ତେଣୁ) ବଙ୍ଗଳାଶ୍ରୀ ଜଳ-ଜନନ (ଙ୍କର) ଜଳଜ-ପଦ ଯେ ମୂଳ କରି ଭାବ ।

**କଥା**—ଜେମା ରୁକ୍ମିଣୀଙ୍କୁ ବିବାହ କରିବାକୁ ଦେବତାମାନେ ୦ ପରି ବେଢି କରି ପୂର୍ଣ୍ଣ ବୃତ୍ତାକୃତ ହେଲେ ମଧ୍ୟ ପାଣ୍ଡୁର ଫିକା ମୁଖ ଦେଖାଇବେ । କେବେ ପ୍ରସନ୍ନ ବଦନରେ ବିବାହ କରି ପାରିବେ ନାହିଁ । ମୃଗ କଳଙ୍କ ସଂଯୋଗ ବର୍ଜିତ ଅକଳଙ୍କ ଚନ୍ଦ୍ରମାରୁ ଉତ୍କୃଷ୍ଟ ବଦନୀ ରୁକ୍ମିଣୀଙ୍କି ନିଶ୍ଚୟ ପୁରୁଷୋତ୍ତମ କୃଷ୍ଣ ହରଣ କରିନେବେ । ଏହି ଶୁଭ ଆନନ୍ଦ ଯୋଗ ପାର୍ବତୀଙ୍କ ଦର୍ଶନ ବା ଯେତେବେଳେ ସେଅଁ ମଙ୍ଗଳା ହେବ, ସେତେବେଳେ ହେବ । ବଙ୍ଗଳାର ଉତ୍କୃଷ୍ଟ ଜଳ ଯେ ଗଙ୍ଗା ତାଙ୍କର ଜନ୍ମଦାତା ବିଷ୍ଣୁଙ୍କର ଅବତାରରୂପୀ କୃଷ୍ଣଙ୍କ ପଦ୍ମପଦକୁ ଦୃଢ଼ଭାବରେ ତୁମେ ସବୁ ଚିନ୍ତାକର ।

**ଆଲୋଚନା**—ଏଥିରେ କବି, ସୁରଟ,କାଫି, ସାରଙ୍ଗ, ସୋମ, ଆନନ୍ଦ ଭୈରବୀ, ବଙ୍ଗଳାଶ୍ରୀ ଏପରି ଏଥିରେ ସାତଟି ରାଗର ସୂଚନା ଦେଲେ ।

---

ଶବ୍ଦାର୍ଥ । ସୁରଟ—ରାଗିଣୀ । ସୁର—ଦେବତା । ୦—ପୂର୍ଣ୍ଣ ବୃତ୍ତାକୃତ । କାଫି—ରାଗବିଶେଷ । କାଫିକୁ ଲେଉଟାଇଲେ ଫିକା—ପାଣ୍ଡୁର । ସାରଙ୍ଗ—ମୃଗ, ରତ୍ନକୀଡ଼ା, କୃଷ୍ଣ । ସଙ୍ଗ—ମିଳନ, ସଂଯୋଗ, ସମ୍ବନ୍ଧ, ସହଯୋଗ । ସୋମ—ଚନ୍ଦ୍ରମା, ରାଗ ବିଶେଷ । ଜିତ—ଜିଣା, ଉତ୍କୃଷ୍ଟ । ମୁଖୀ—ମୁହାଁ, ବଦନୀ । ପୁନ୍ନାଗ—ପୁରୁଷ ଶ୍ରେଷ୍ଠ । ଭୈରବୀ—ଦୁର୍ଗା, ମଙ୍ଗଳା । ବଙ୍ଗଳାଶ୍ରୀ ଜଳ—ବଙ୍ଗ ଦେଶର ଉତ୍କୃଷ୍ଟ ଜଳ ଗଙ୍ଗାଜଳ । ଗଙ୍ଗାଜନନ—ବିଷ୍ଣୁ । ଜଳଜ—ପଦ୍ମ । ମୂଳକରି—ଦୃଢ଼କରି ।

**ରୁଣ୍ଡୀଭୂତ ନାରୀ ମୁଣ୍ଡି ଆକୁ ମାର କୁଣ୍ଡୀଶ କୁମାରୀ ସଙ୍ଗତେ**
**କଲ୍ୟାଣେ ପ୍ରବୀଣ ହୋଇ ସୁପର୍ବାଣ-ଯତଗତ କଲେ ତୁରତେ**
**ସର୍ବେ ମଜ୍ଜିଲେ**
**ଏପର ପ୍ରମୋଦ ନଦରେ**
**ଅଣିମାଦ୍ୟ—ଅଷ୍ଟନିଧିଙ୍କ ଅଦୃଷ୍ଟ ଆଣି ନଆଣିଲେ ନଜରେ । ୨୮ ।**

**ଅନ୍ୱୟ**—କୁଣ୍ଡୀଶ-କୁମାରୀ ସଙ୍ଗତେ ରୁଣ୍ଡୀଭୂତ ନାରୀ ମୁଣ୍ଡିଆକୁ ମାର (ଲେ) । (ତଦ୍ପ ) ସୁପର୍ବାଣ ଯତ କଲ୍ୟାଣେ ପ୍ରବୀଣ ହୋଇ ତୁରତେ ଗତି କଲେ । ସର୍ବେ ଏପର ପ୍ରମୋଦ-ନଦରେ ମଜ୍ଜିଲେ—(ଯାହା ଫଳରେ) ଅଣିମାଦ୍ୟ ଅଦୃଷ୍ଟ ନଜରେ ଆଣି ନ ଆଣିଲେ ।

**କଥା**—କୁଣ୍ଡୀଶ ଜେମା ରୁକ୍ମିଣୀଙ୍କ ସଙ୍ଗତେ ସେଠାରେ ଯେତେ ନାରୀ ରୁଣ୍ଡ ହୋଇଥିଲେ, ସେମାନେ ସମସ୍ତେ ମୁନଙ୍କୁ ମୁଣ୍ଡିଆ ମାରିଲେ । ତହୁଁ ଉକ୍ତ ସ୍ୱର୍ଗପତି ନାରଦ ଉତ୍ତମ କଲ୍ୟାଣକର ଶୀଘ୍ର ସେଠାରୁ ଚାଲିଗଲେ ।

ଅନନ୍ତର ସେମାନେ ସମସ୍ତେ ଏପର ଆନନ୍ଦ ରୂପକ ମହା ନଦୀରେ ନିମଜ୍ଜିଗଲେ ଯେ ଯାହା ଫଳରେ ଅଣିମାଦ୍ୟ ଅଷ୍ଟ ଐଶ୍ୱର୍ଯ୍ୟ ସମ୍ପନ୍ନ ସୌଭାଗ୍ୟକୁ ସେମାନେ ଦୃଷ୍ଟିକୁ ଆଣି ନ ଆଣିଲେ । ଅଷ୍ଟନିଧି ଠାରୁ ଏ କଲ୍ୟାଣକୁ ଅଧିକ ମଣିଲେ ।

---

ଶବ୍ଦାର୍ଥ । ରୁଣ୍ଡୀଭୂତ—ଏକତ୍ରିତ । ମୁଣ୍ଡିଆମାରିବା—ମୁଣ୍ଡ ଭୂମିତଳେ ଲଗାଇ ଗୁରୁଜନଙ୍କୁ ପ୍ରଣତି କରିବା । କୁଣ୍ଡୀଶ—କୁଣ୍ଡୀ ନଗର ଈଶ—ଭୀଷ୍ମକ । କୁଣ୍ଡୀଶ କୁମାରୀ—ଭୀଷ୍ମକ କନ୍ୟା ରୁକ୍ମିଣୀ । ପ୍ରବୀଣ—ଦକ୍ଷ, ନିପୁଣ, ବହୁଦର୍ଶୀ । ତୁରତେ—ଶୀଘ୍ରେ । ଗତକଲେ—ଚାଲିଗଲେ । ପ୍ରମୋଦ—ଆନନ୍ଦ । ଅଣିମା—ଐଶ୍ୱର୍ଯ୍ୟ ବିଶେଷ । "ଅଣିମା ଲଘିମା ବ୍ୟାପ୍ତିଃ ପ୍ରାକାମ୍ୟଂ ମହିମା ତଥା ଈଶିତ୍ୱଂ ଚ ବଶିତ୍ୱଂ ଚ ତଥା କାମାବସାୟିତା" ।

ଅଷ୍ଟୈଶ୍ୱର୍ଯ୍ୟ—୧—ଅଣିମା—ଅତି ସୂକ୍ଷ୍ମ ଆକାର ଧରିବା ସିଦ୍ଧି । ୨—ଲଘିମା—ଅତି ଲଘୁ ବା ହାଲୁକା ହୋଇ ସୂର୍ଯ୍ୟପାଏ ଉଠିବା ଶକ୍ତି । ୩—ମହିମା—ଅତି ବୃହତ୍ତର ଆକାର ଧାରଣ କରିବା କ୍ଷମତା । ୪—ବ୍ୟାପ୍ତି—ସବୁଆଡ଼େ ବ୍ୟାପି ଯିବାର ଶକ୍ତି । ୫—ପ୍ରାକାମ୍ୟ—ଯଥେଚ୍ଛା । ୬—ଈଶିତ୍ୱ—ସମସ୍ତଙ୍କ ଉପରେ ଆଧିପତ୍ୟ କରିବା ବା ସୃଷ୍ଟି କରିବା ଶକ୍ତି । ୭—ବଶିତ୍ୱ—ସମସ୍ତ ପ୍ରାଣୀଙ୍କୁ ବଶ କରିବା ବା ଜିତେନ୍ଦ୍ରିୟ ହେବା ଶକ୍ତି । ୮—କାମାବସାୟିତା—ଯେଉଁସୁଖ ଇଚ୍ଛିବ ତା ପାଇବା ଶକ୍ତି । ଏହାଛଡ଼ା ଅନୁର୍ମି, ଦୂରଶ୍ରବଣ, ଦୂରଦର୍ଶନ, ମନୋଜବ, କାମରୂପ, ପରକାୟ-ପ୍ରବେଶନ, ସ୍ୱଚ୍ଛନ୍ଦମୃତ୍ୟୁ, ଅମର ସିଦ୍ଧି, ସଙ୍କଳ୍ପ-ସିଦ୍ଧି, ବଚନ—ସିଦ୍ଧି ଦଶଟି ଅଛି । ଆଣି ନଆଣିଲେ—ଅଷ୍ଟୈଶ୍ୱର୍ଯ୍ୟକୁ ସେ ଆନନ୍ଦରୁ ତୁଚ୍ଛ ମଣିଲେ । ନଜରେ—ଦୃଷ୍ଟିରେ । ଅଦୃଷ୍ଟ—ଭାଗ୍ୟ ।

**ମନମୋହନା ଅଗ୍ରସର ଗହନେ ବହନ ହୋଇଲେ ପ୍ରବେଶ**
**ସ୍ୱାଦୁ ସୁଧା ସିତା ସ୍ୱାଦୁ ଗନ୍ଧହନ୍ତା ଉକ୍ତଦାନେ ହେଲେ ଉଲ୍ଲାସ**
**ଜଣେ ଭଣିଲା**
**କାମ ପୂର୍ଣ୍ଣଧାମ ପରାଏ**
**କେମନ୍ତେ ? ସୀମନ୍ତ—ଶୋଭିଏ ପଚ୍ଛୁରୁଁ ଉଚାରଲା ଗୃରୁଣୀଲା ଏ । ୨୧ ।**

**ଅନ୍ୱୟ**—ମନମୋହନା ବହନ ଅଗ୍ରସର (ହୋଇ) ଗହନେ ପ୍ରବେଶ ହୋଇଲେ । (ସର୍ବେ) ସ୍ୱାଦୁ, ସୁଧା, ସିତା ସ୍ୱାଦୁଗନ୍ଧ ହନ୍ତା ଉକ୍ତ ଦାନେ ଉଲ୍ଲାସ ହେଲେ । ଜଣେ ଭଣିଲା—ଏ ପରା କାମପୂର୍ଣ୍ଣ ଧାମ (ଅଟେ) ? କେମନ୍ତେ (ବୋଲି) ସୀମନ୍ତ—ଶୋଭି ଏ ପଚ୍ଛୁରୁଁ ଗୃରୁଣୀଲାଏ ଉଚ୍ଚରଲା ।

**କଥା**—ମନମୋହନୀ ରମଣୀମାନେ ତ୍ୱରନ୍ତ ଅଗ୍ରସର ହୋଇ ଯାଇ ଗହନ ବନରେ ପ୍ରବେଶ ହେଲେ । ସର୍ବେ ନିଜ ନିଜ ମଧ୍ୟରେ ଦ୍ରାକ୍ଷା ଅମୃତ ଏବଂ ନବାତର ମଧୁର ସ୍ୱାଦ ଗନ୍ଧ ତୁଚ୍ଛକାରୀ ଏପରି ଯେ ଅତି ମଧୁର କଥାଭାଷା ହୋଇ ଉଲ୍ଲସିତ ହେଲେ । ଜଣେ କହିଲା ମିତଣି ! ଏ ବଣ ପରା ସମ୍ଭୋଗ ପ୍ରବୃତ୍ତିରେ ପରିପୂର୍ଣ୍ଣ ସ୍ଥାନ ଅଟେ । ତା ଶୁଣି କେଶ ବଥୀରେ ଶୋଭମାୟୀ ଜଣେ ପଚ୍ଚାରିଲା କେମନ୍ତ ? ତହୁଁ ଗୃରୁଣୀଲା ଜଣେ କହିଲା— ।

ଶବ୍ଦାର୍ଥ । ମନମୋହନା—ମନୋମୋହ କାରିଣୀ । ବହନ—ଶୀଘ୍ର । ଗହନେ—ନିର୍ଜନ କାନନରେ । ସ୍ୱାଦୁ—ଦ୍ରାକ୍ଷା । ସୁଧା—ଅମୃତ । ସିତା—ନବାତ । ସ୍ୱାଦୁଗନ୍ଧହନ୍ତା—ସୁସ୍ୱାଦୁର ଗନ୍ଧ ହରଣ କରନ୍ତା, ସ୍ୱାଦୁରେ ତାଠୁଁ ଅଧିକ । ଉକ୍ତ—ବଚନ । କାମ—ସମ୍ଭୋଗ ପ୍ରବୃତ୍ତି । ସୀମନ୍ତ—କେଶ ବୀଥୀ । ସୀମନ୍ତ ଶୋଭି—କେଶ ବେଶ ଶୋଭିନୀ । ଗୃରୁଣୀଲା—ସତ୍ ସ୍ୱଭାବା ।

**ବଜ୍ରବଟାରେ ବିଜୟ କରାଇଛୁ ବଜ୍ର କୀଟ କଟା ଉପଳ**
**କପଟ ତରୀଟ ସୌରଭ କରୀଟ ଧନେ କିଣାହେବା ଭ୍ରସଳ**
**ଦେହେଁ ପରାଗ**
**ଲାଗିଛୁ କର ଯା ବିବେକ**
**କରି ନାଶ ବଧୂ ବନ୍ଧ ଯାଗ ଭୂତ ଲଗାଇଛୁ ମଧୁ ପୂଜକ । ୭୦ ।**

**ଅନ୍ୱୟ**—( ଦେଖୁନ ? ଏ ବସନ୍ତକାଳ ) ସୌରଭ କରୀଟ ଧନେ କିଣାହେବା ବଜ୍ରକୀଟକଟା ଉପଳ(ସମ) ଭ୍ରସଳକୁ କପଟ ତରୀଟ ବଜ୍ରବଟାରେ ବିଜୟ କରାଇଛୁ । ଦେହେଁ ଯା ପରାଗ ଲାଗିଛୁ ବିବେକ କର । ମଧୁପୂଜକ ବନ୍ଧ ବଧୂ ନାଶ କରି ଯୋଗ ଭୂତ (ତହିଁ) ଲଗାଇଛୁ ।

**କଥା**—ଦେଖୁନାହିଁ ? ଏହି ବସନ୍ତକାଳ ପୁଷ୍ପ ସୌରଭ ରୂପୀ କରୀଟ ଧନରେ କିଣାହେବା ଶାଳଗ୍ରାମ ଶିଳାସମ ଭ୍ରମରକୁ ଛଳରେ ତରୀଟ ଫୁଲ ରୂପକ ହୀରକ ପୀଠରେ ବିଜୟ କରାଇଛୁ । ଭ୍ରମରର ସର୍ବାଙ୍ଗରେ ଯେଉଁସବୁ ପରାଗ ଲାଗିଛୁ ତାକୁ ବିଚାର କର । ବସନ୍ତ, ପୂଜକ ହୋଇ ବନ୍ଧନ କରା ଯାଇଥିବା ବଧୂ ରୂପିଣୀ ନାୟିକା ମାନଙ୍କୁ ବିନାଶ କରି ଯଜ୍ଞର ଭସ୍ମ ସେହି ଦେବତା ରୂପୀ ଶିଳାରେ ଲଗାଇଛୁ ।

**ଆଲୋଚନା**—ଧଳାତରୀଟ ଫୁଲ ଉପରେ କଳାଭ୍ରମର ବସିଛୁ । ତାହା ହୀରା ବଟାରେ ଶାଳଗ୍ରାମ ଦ୍ୟାପ୍ୟେ ଦିଶୁଛୁ । ଭ୍ରମର ବହୁ ଫୁଲ ସମ୍ପର୍କରେ ଆସି ଶ୍ୱେତ ରେଣୁ ସବୁ ବୋଳ ହୋଇଛୁ । ତେଣୁ କୁହାଯାଉଛୁ ଯଜ୍ଞରେ ବସନ୍ତ ନିଜେ ଆଗ୍ରହୀ ହୋଇ ବିରହିଣୀ ନାୟିକା ମାନଙ୍କର ବଳୀ ସାରି ଯଜ୍ଞ ଭସ୍ମ ଦେବତା ଠାରେ ଅବା ଅର୍ପଣ କରିଛୁ ।

---

ଶବ୍ଦାର୍ଥ । ବଜ୍ର—ହୀରକ । ବଟା—ଡବା, ପୀଠ । ବଜ୍ରକୀଟ କଟା ଉପଳ—ଶାଳଗ୍ରାମ ଶିଳା । କପଟ—ଛଳ । କରୀଟ ଧନେ—ଅତି ଗୋପନୀୟ ସମ୍ପତ୍ତିରେ । ଭ୍ରସଳ – ଭ୍ରମର । ବିବେକ—ବିଚାର । ମଧୁ—ବସନ୍ତ । ପୂଜକ—ପୂଜାର ଆଗ୍ରହୀ । ବନ୍ଧ—ବନ୍ଧନକରା ଯାଇଥିବା । ବଧୂ—କାମାର୍ତ୍ତା ନାୟିକା, (ଗୋପବଧୂ ଯେପରି ଭାଗବତ) । ଭୂତ—ଭସ୍ମ, ପାଉଁଶ ।

**କଣେ କମାଣ ଭ୍ରୁରୁ ଭଣେ ପ୍ରମାଣ ଅର୍ଚ୍ଚନ ଅଛି କି ସରିଛି
ହେଠେ ଦାଡ଼ମ୍ବ ରମ୍ଭାଫୁଲ ପାଖୁଡ଼ା ଢ଼ାଳପାଣି ରଖା ହୋଇଛି
ଶୁଣି ସେ କହେ
ସ୍ବାନ୍ତରେ ପ୍ରାନ୍ତକର ଘେନ
କଙ୍କେଲି ଗୁଚ୍ଛରୁ ଅଳି ଚଳିବାର ଗଚ୍ଛେ ନୀରାଜନ ମାଳିନ୍ୟ । ୩୧ ।**

**ଅନ୍ୱୟ**—ତାହା ଶୁଣି କଣେ କମାଣ ଭ୍ରୁରୁ ଭଣେ—ପ୍ରମାଣ । (ଆଜ୍ଞା) ଅର୍ଚ୍ଚନ ଅଛି; କି ସରିଛି ? (କାରଣ) ଦାଡ଼ମ୍ବ ଏବଂ ରମ୍ଭାଫୁଲ ପାଖୁଡ଼ା ଢ଼ାଳ (ଓ) ପାଣୀ (ସ୍ୱରୂପ) ହେଠେ ରଖା ହୋଇଛି ।

ଶୁଣି ସେ କହେ ସୁଅନ୍ତରେ ପ୍ରାନ୍ତକର ଘେନ । (କାରଣ) କଙ୍କେଳି ଗୁଚ୍ଛରୁ ଅଳି ଗଚ୍ଛେ ଚଳିବାର (ଦେଖିଲେ) ନୀରାଜନ ମାଳିନ୍ୟ (ସ୍ପଷ୍ଟ ଜଣା ଯାଉ ନାହିଁକି ?) ।

**କଥା**—ତାହା ଶୁଣି ଧନୁପ୍ରାୟେ ଭ୍ରୂଲତା ଯାହାର ଏପରି ଜଣେ ରମଣୀ କହିଲା—ପ୍ରମାଣ ସତଯେ—ସେ ପୂଜା ଚୂଳିଛି ନା ସରିଗଲାଣି ? ମୁଁ ଭାବୁଛି—ସରିଗଲାଣି । କାରଣ ହୋଇଦେଖ ଡ଼ାଳିମ୍ବ ଫଳ ପୂଜାର ଢ଼ାଳପ୍ରାୟ ଏବଂ କଦଳୀ-ଭଣ୍ଡା ଖୋଳା ପାଣୀ ସ୍ୱରୂପ ଦେଖା ଯାଉଥିଲେ ହେଁ ସେ ସବୁ ତଳ ମୁହାଁ ହୋଇ ପୂଜା ଶେଷରେ ଉଗୁଡ଼ାଇ ରଖିଲପରି ରଖା ଯାଇଛି ।

ତାଶୁଣି ପୂର୍ବୋକ୍ତ ରମଣୀ କହିଲା—ତୁମ କଥା ସତ । ସୁଚିତ୍ତରେ ଶେଷ ହୋଇଛି ବୋଲି ବିଶ୍ୱାସ କର । କାରଣ ଦେଖନ୍ତୁ ! ଅଶୋକଗୁଚ୍ଛରୁ କଳାଭ୍ରମର ଗଛ ଉପରକୁ ଉଡ଼ିଯିବା ଦେଖିଲେ ଜଣାଯାଉଛି ପୂଜା ଶେଷରେ ଯେଉଁ ନୀରାଜନ ଆରତି ହୋଇଥାଏ, ତାହା ଲିଭିଗଲେ, ଯେପରି ଧୂଆଁ ଦେଖାଯାଏ ସେହିପରି ଦେଖାଯାଉଛି ।

---

ଶବ୍ଦାର୍ଥ । କମାଣ—ଧନୁ । ଭ୍ରୁରୁ—ଭ୍ରୂଲତା । ଭଣେ—କହିଲା । ପ୍ରମାଣ—ସିଦ୍ଧାନ୍ତ । ଅର୍ଚ୍ଚନ—ପୂଜା । ଦାଡ଼ମ୍ବ—ଡାଳିମ୍ବ । ରମ୍ଭାଫୁଲ ପାଖୁଡ଼ା—କଦଳୀଭଣ୍ଡା ଖୋଳ । ହେଠେ—ଅବନତ ଭାବରେ, ନମ୍ର ଭାବରେ । ସୁ—ଉତ୍ତମ । ପ୍ରାନ୍ତ—ଶେଷ । କଙ୍କେଳି—ଅଶୋକ । ଗଚ୍ଛେ ଚଳିବାର—ଗଛକୁ ଉଡ଼ିଯିବାର । ନୀରାଜନ—ପୂଜା, ଆଳତି । ମାଳିନ୍ୟ—ମଳିନତା, ଲଭିବା ।

**ଅକାୟକୁ ଆୟସ ଗୁଳିକାଣ୍ଡ ଚୟ ବରଦ ହେଲେ ଏ ସ୍ୱଚ୍ଛରେ**
**ପେଷି ଏକାକୀ ପିଷିତ ଅଣିଅଛ ଭୃଙ୍ଗ କରବୀର ଇଚ୍ଛିରେ**
**ଶୁଣି ନୃପଜା**
**କଂପି ବହିଲେ ଅପଘନେ**
**ଚେଳମେଳ ବକ୍ଷସ୍ଥଳେ ନେତ୍ରାଞ୍ଚଳ ରଖି କେ ଭାଷିଲା ବଚନେ ।୩୨।**

**ଅନ୍ୱୟ**—ଭୃଙ୍ଗ କରବୀର ଇଚ୍ଛିରେ ଦେଖି (ପୁଣିଜଣେ କହିଲା (ଦେଖ ଯାଗଦେବତା) ଅକାୟକୁ (କପଟ) ଅୟ ଗୁଳିକାଣ୍ଡ ଚୟ ସ୍ୱଚ୍ଛରେ ବରଦ ହେଲେ । (ସେ) ପିଷିତ ଏକାକୀ (ଙ୍କୁ) ପେଷି ଆଣି ଅଛି । (ଏହା) ଶୁଣି ନୃପଜା ଅପଘନେ କମ୍ପ ବହିଲେ । (ତାଙ୍କର) ଚେଳ ବକ୍ଷସ୍ଥଳେ ନେତ୍ରାଞ୍ଚଳ ମେଳ ରଖି କେ ବଚନେ ଭାଷିଲା ।

**କଥା**—ଭ୍ରମର କନିଅର ଫୁଲ ଭିତରେ ପଶିଥିବାର ଦେଖି ପୁଣି ଜଣେ କହିଲା ଦେଖ ମ ? ଏହି ଯଜ୍ଞର ଦେବତା ଅନଙ୍ଗଙ୍କୁ କପଟ ଲୁହା ଗୁଳି ଭରି କାଣ୍ଡ ସବୁ ନିର୍ମଳ ମନରେ ଦାନ କରୁଛି । ସେ ସେଇଥିରେ ବିରହୀ ଓ ବିରହିଣୀ ଯେ ସବୁ ଏକୁଟିଆ କାମ-ଦୁଃଖରେ ଦଳି ହେଉଛନ୍ତି ତାଙ୍କୁ ମାରି ତା ଠେକ ବଢ଼ାଉଛି ।

ଏ କଥା ଶୁଣି ରାଜକୁମାରୀ ଦେହ କଂପିଉଠିଲା । ସେତିକି ବେଳେ ତାଙ୍କର କାଞ୍ଚୁଲି ଗଣ୍ଠି ପଡ଼ିଛି ଯେଉଁଠି, ସେଇ ସ୍ଥାନ ଉପରକୁ ନେତ୍ର ପ୍ରାନ୍ତ ଦୃଷ୍ଟି ମିଳାଇ ରଖି କେହିଜଣେ ସଖୀ କହିଲା—।

ଶବ୍ଦାର୍ଥ । ଅକାୟ—କନ୍ଦର୍ପ, ଅନଙ୍ଗ । ଆୟସ—ଲୌହମୟ । ଇଚ୍ଛିରେ—ଇଚ୍ଛା କରିବାରେ । ପେଷି—ମାରି । ଆଣି—ଗର୍ବ, ବଡ଼ିମା, ଆଧିକ୍ୟ, ଠେକ । ପିଷିତ—ଦଳିତ, ମର୍ଦ୍ଦିତ । ଏକାକୀ—ବିରହୀ ଓ ବିରହିଣୀ, ଯେଉଁମାନେ ଯୁଗ୍ମ ନାହାନ୍ତି । ଅପଘନ—ଦେହ । ଚେଳ—କାଞ୍ଚୁଲି । ନେତ୍ରାଞ୍ଚଳ—ନେତ୍ର ପ୍ରାନ୍ତ । ମେଳ—ମିଶାଇ ।

**ପୁଷ୍ପାୟୁଧ—ବ୍ୟାଧ—ଜାଲବନ୍ଧା କୋକଯୁଗଳ ହେଲେ ଅଳସାଇ**
**ଏ ଦର ବରଜ ନ କର ଉରଜ ହରଙ୍କୁ ଅଶ୍ରୁଜଳଶାୟୀ**
**କାମ୍ୟ କର୍ମରେ**
**ଲେଖିଛୁ ଗୃହ ଗୋ ଖୋଜିବା**
**ଈଶ୍ୱର ଦାନରେ ମାଧବୀ ମିଳିଲେ ବାନ୍ଧବ ଏ ଚିନ୍ତା ହରିବା । ୩୩ ।**

**ଅନ୍ୱୟ**—(ହେ ସଖି ! ଦେଖ) ପୁଷ୍ପାୟୁଧ—ବ୍ୟାଧ-ଜାଲ ବନ୍ଧା କୋକ—ଯୁଗଳ ଅଳସାଇ ହେଲେ । (ତୁ) ଏ ଦର ବରଜ । (ତୋ) ଉରଜ-ହରଙ୍କୁ ଅଶ୍ରୁଜଳଶାୟୀ ନ କର । (ଆ) ଗୋ ! ଗୃହ । କାମ୍ୟରେ (ଯା) କର୍ମ ଲେଖିଛୁ ଖୋଜିବା । (ରେ) ବାନ୍ଧବ ! ଈଶ୍ୱର ଦାନରେ ମାଧବୀ ମିଳିଲେ ଏ ଚିନ୍ତା ହରିବା ।

**କଥା**—ହେ ସଖି ! ଦେଖ । କନ୍ଦର୍ପ ବ୍ୟାଧ ହୋଇ ତୋ ସ୍ୱର୍ଣ୍ଣ କାଞ୍ଚୁଲି ରୂପକ ଜାଲରେ ଆବଦ୍ଧ ଚକ୍ରବାକ ପକ୍ଷୀ ଯୁଗ୍ମ ପରି ତୋର ମନୋହର ସ୍ତନ ଯୁଗଳକୁ କପରି ଆଳସ୍ୟଯୁକ୍ତ କରି ଦେଇଛି । ତୋର କୁଚଯୁଗଳ କନ୍ଦର୍ପଦ୍ୱାରା ଏକାନ୍ତ ଆସକ୍ତ ଜଣାଯାଉଛି । କିନ୍ତୁ ତୁ କନ୍ଦର୍ପ ଭୟ ତ୍ୟାଗ କର । ତୋ କୁଚ ଦୁଇଟିକୁ ତୁ 'ହର' ବୋଲି ଜ୍ଞାନ କର । ତାହା ଜ୍ଞାନ କରି ତାକୁ ଆଉ ଜଳଶେଇ କରନା । ଅଶ୍ରୁ, କଂପ, ମୋହ, ମୂର୍ଚ୍ଛା, ଆଦି ଅଷ୍ଟ ସାତ୍ତ୍ୱିକ ବିକାର ପ୍ରକାଶ କରିବା ଅନୁଚିତ ହେବ । ଆଗୋ ତୁ ଗୃହ ଯିବା । ତୋ କାମନା ବିଷୟ ଯାହା ତୋ ଭାଗ୍ୟରେ ଲେଖା ଅଛି ତାକୁଇ ଖୋଜିବା । ରେ ବାନ୍ଧବୀ ! ଈଶ୍ୱରଙ୍କ ଅନୁଗ୍ରହରୁ ଯେବେ ମାଧବୀ ଫୁଲ ମିଳିବ ହର ପୂଜି କାମନା ସିଦ୍ଧି କରିବା । ପୁନଶ୍ଚ ମାଧବ କୃଷ୍ଣଙ୍କୁ ଯେବେ ପାଇବା ଏ ଚିନ୍ତା ଦୂର କରିବା ।

---

ଶବ୍ଦାର୍ଥ । ପୁଷ୍ପାୟୁଧ—କନ୍ଦର୍ପ । କୋକ—ଚକ୍ରବାକ । ଦର—ଭୟ । ବରଜ—ବର୍ଜ୍ଜ, ତ୍ୟାଗକର । ଅଳସାଇ—ଆଳସ୍ୟଯୁକ୍ତ । ଉରଜ—ସ୍ତନ । ଅକାମ୍ୟ—କାମନା, ଇଚ୍ଛା । ମାଧବୀ—ମାଧବୀ ଫୁଲ, ମାଧବଙ୍କୁ । ଜଳଶାୟୀ—ଜଳରେ ପୂର୍ଣ୍ଣ କରିବା, ଅଶ୍ରୁଜଳରେ ପୂର୍ଣ୍ଣ କରିବା ।

**ଶୀର୍ଣ୍ଣମଧ୍ୟାକୁଳ ସ୍ୱର୍ଣ୍ଣ-କର୍ଣ୍ଣୋତ୍ପଳ-ପ୍ରତିମା ପୋଛିଲେ ଶ୍ରୀମୁଖ**
**କହିଲା ପଦକ ପରି ଏ ପଦକ ହେଲା କି ନୋହିଲା ପରଖ**
**ଅଳୀ ବଧୂଲି**
**କେଳି କି କେ କଲା ବଗୁର**
**ବନ ବନିତାର ଅଞ୍ଜନ-ବିନ୍ଦୁ ଏ ସିନ୍ଦୂର ଟିକାନ୍ତେ ସୁନ୍ଦର । ୩୪ ।**

**ଅନ୍ୱୟ**—ଆକୁଳ ଶୀର୍ଣ୍ଣମଧ୍ୟା, ସ୍ୱର୍ଣ୍ଣ କର୍ଣ୍ଣୋତ୍ପଳ—ପ୍ରତିମା (ଟା ଶୁଣି) ଶ୍ରୀମୁଖ ପୋଛିଲେ । ଏ କହିଲା ପଦକ ପଦକ ପରି ହେଲା, କି ନୋହିଲା, ପରଖ । ଅଳି (ର) ବଧୂଲି କେଳିକି କେ ବଗୁର କଲା ବନ ବନିତାର ସିନ୍ଦୂର ଟିକାନ୍ତେ ସୁନ୍ଦର ଅଞ୍ଜନ ବିନ୍ଦୁ ଏ (କି ?) ।

**କଥା**—ସଖୀର କଥା ଶୁଣି ଚନ୍ଦ୍ରାକୁଳା କ୍ଷୀଣକଟି ବିଶିଷ୍ଟା କର୍ଣ୍ଣରେ ସ୍ୱର୍ଣ୍ଣ ପଦ୍ମ-ପୁଷ୍ପ-ଧାରିଣୀ ପ୍ରତିମା ରୁକ୍ମିଣୀ ତାଙ୍କର ଶ୍ରୀମୁଖ ପୋଛିଦେଲେ । କି ମଧୁର ସୁନ୍ଦର କଥା ସେ ନ କହିଲା ? ଯାହା ବିଶ୍ୱସୁନ୍ଦରୀଙ୍କର ମନକୁ ମୁଗ୍ଧ କରିଦେଲା । ଏହି କହିଲା କଥା ପଦକ ହାରସ୍ଥ ଅତି ରମଣୀୟ ପଦକ ପରି ହେଲା କି ନୋହିଲା ପରୀକ୍ଷା କର ବୋଲି ସେ ସମସ୍ତଙ୍କୁ ଇଙ୍ଗିତ କଲା ।

କିନ୍ତୁ ସେତେବେଳେ ବଧୂଲି ଫୁଲ ସାଥିରେ ଭ୍ରମର କେଳି କରୁଥିବାର ଦେଖି ଜଣେ ତା ଭିତରୁ ବଗୁର କଲା—ଏ ବନ ଏକ ବନିତା ପ୍ରାୟ ଅଟେ । ବଧୂଲି ଫୁଲ ସେ ବନିତାର ସିନ୍ଦୂର ଟିକା ହେଲେ ତା ଭିତରେ କଳା ଭ୍ରମର ହେଉଛି—କଜ୍ଜଳ ବିନ୍ଦୁ ପରି । ନୁହେଁ କି ?

---

ଶବ୍ଦାର୍ଥ । ଆକୁଳ—ଅତ୍ୟନ୍ତ କାତର, ଚନ୍ଦ୍ରା କ୍ଳିଷ୍ଟା । ଶୀର୍ଣ୍ଣମଧ୍ୟା—କ୍ଷୀଣ କଟୀ । କର୍ଣ୍ଣୋତ୍ପଳ—କର୍ଣ୍ଣଭୂଷା ପଦ୍ମଫୁଲ । ପ୍ରତିମା—ଛବି, ମୂର୍ତ୍ତି । ପଦକ—ହାର ମଧ୍ୟସ୍ଥ ରମଣୀୟ ପାଦୁକା । ଅଳି—ଭ୍ରମର । ସିନ୍ଦୂର ଟିକା—ସିନ୍ଦୂର ଟୋପା । ଅନ୍ତେ—ମଧ୍ୟରେ । ଅଞ୍ଜନ—କଜ୍ଜଳ ।

ସିନ୍ଦୂର ଟୋପା ମଧ୍ୟରେ ରୂପବତୀମାନେ କଳାବିନ୍ଦୁ ଦେଇ ମୁଖକୁ ଅତି ଆକର୍ଷଣୀୟ କରିଥାନ୍ତି । ଛଳରେ ଅନ୍ୟ ସଖୀ କହିଲା—ତୋ କଥା ପଦକ ନିଷ୍ପ୍ରୟ ପଦକ ସଦୃଶ । ହେଲେହେଁ ଯେଉଁ କାମନା ଆସିଛୁ ତାହା ବଧୂଲି ଫୁଲପରି ରଙ୍ଗ । କୃଷ୍ଣ ଲାଭ ହେବାର ସୂଚନା ଅଳି ସ୍ୱରୂପ କଜ୍ଜଳ ବିନ୍ଦୁରୁ ସୂଚିତ ହେଉଛି ।

**କେ କହ୍ଲ ନାଗେଶ୍ୱର ପଦ୍ମଢୋଲା ବିଦ୍ୟାରେ ନରେନ୍ଦ୍ର ମୁଁ ଅଟେ,**
**ଶୁଣି ବେନି ଅର୍ଥ ମଣି ରମଣୀଏ ବେନି ଅର୍ଥକୁ ରଖି ରଟେ**
**ତେବେ ଭୋଗୀର**
**ବିହାର ବିଧାନ କରିବୁ**
**ରଜନୀକର ଗ୍ଭଳିଲେ ସେ ନାଗର ଉଗ୍ର ପରିତାପ ହରିବୁଁ । ୩୫ ।**

**ଅନ୍ୱୟ** – କେ କହ୍ଲ ନାଗେଶ୍ୱର ବଜାଇବା (ଓ) ପଦ୍ମଢୋଲା ଗାଇବା ବିଦ୍ୟାରେ ଏବଂ ନାଗେଶ୍ୱର ଓ ପଦ୍ମ (ଫୁଲ) ଢୋଳା ବିଦ୍ୟାରେ ମୁଁ ନରେନ୍ଦ୍ର ଅଟେ ।

(ଏହା) ଶୁଣି (ଏହି କଥାର) ବେନି ଅର୍ଥ ମଣି ରମଣୀଏ ବେନି ଅର୍ଥକୁ ରଖି ରଟେ—ତେବେ (ତୁ) ଭୋଗୀର ବିହାର ବିଧାନ କରିବୁ । ରଜନୀକର ଗ୍ଭଳିଲେ ସେ ନାଗର ଉଗ୍ର ପରିତାପ ହରିବୁ ।

**କଥା**—ଗୋଟିଏ ଅତି ରୂପବତୀ ରୁକ୍ମଣୀଙ୍କ ସଖୀ କହିଲ—ନାଗେଶ୍ୱର ଏବଂ ପଦ୍ମଫୁଲ ଢୋଳିବା ବିଦ୍ୟାରେ ମୁଁ ବଡ଼ ପ୍ରବୀଣା ଅଟେ । ପୁନଶ୍ଚ ନାଗେଶ୍ୱର ବଜାଇ ପଦ୍ମଢୋଳା ଗାଇବା ବିଦ୍ୟାରେ ମଧ୍ୟ ମୁଁ ଏକାନ୍ତ ପାରଙ୍ଗମା ଅଟେ ।

ଏ କଥା ଶୁଣି ଏ କଥାର ଦ୍ୱିବିଧ ଅର୍ଥ ବୁଝି ଯେତେ ସେଠାରେ ରମଣୀ ସବୁ ଥିଲେ ସେ ଦ୍ୱିପ୍ରକାର ଅର୍ଥକୁ ଚିତ୍ତରେ ରଖି ରଚନା କଲେ—

—ଏଇ ଚୋଙ୍ଗ ପାରିବ । ଆମ ନେମା ଲାଗି ଏ କଷ୍ଟରୁ ସବୁ ସୁବିଧା କରିଦେବ ।

ଆଲୋ ତୁ ଭୋଗୀ ଯେ ସର୍ପ ତାର ଯେପରି କ୍ରୀଡ଼ା ବିଧାନ କରିବୁ, ସେଇପରି ଭୋଗୀ ଯେ ସୁଖୀ ରାଜା ଆମର କୃଷ୍ଣଚନ୍ଦ୍ର ତାଙ୍କର ମଧ୍ୟ ରୁକ୍ମଣୀ ସହିତ ପୁଷ୍ପ ଶଯ୍ୟାରେ ବିହାର ବିଧାନ କରିବୁ । ଧୂଳି ସବୁ ଫିଙ୍ଗିଦେଇ ସେଇ ନାଗ ସାପର ଉଗ୍ର ପ୍ରତାପ ହରଣ କରିବୁ । ତୁ ଚନ୍ଦ୍ର ଗ୍ଭଳିଲେ ଆମ ସହିର ନାଗରର ଉଗ୍ର ଉତ୍ତାପ ହରିନେବୁ । ତାକୁ ବଶ କରିଦେବୁ ।

---

ଶବ୍ଦାର୍ଥ । ନାଗେଶ୍ୱର—ବାସନ୍ତିକ ଶ୍ରେଷ୍ଠ ପୁଷ୍ପବିଶେଷ, ସର୍ପକୁ ମୁଗ୍ଧ କରିବା ସପ୍ତସ୍ୱର ବିଶିଷ୍ଟ ବାଦ୍ୟ ବିଶେଷ । ପଦ୍ମଢୋଲା—ପଦ୍ମପୁଷ୍ପକୁ ଢୋଳିବା; ସର୍ପକ୍ରୀଡ଼ାରେ ବ୍ୟବହୃତ ଗୀତ ବିଶେଷ । ନରେନ୍ଦ୍ର—ଶ୍ରେଷ୍ଠ, ପାରଙ୍ଗମ । ରଟେ—ରଚନା କରେ, ବ୍ୟକ୍ତ କରିବା । ଭୋଗୀ—ସର୍ପ, ରାଜା, ଶ୍ରେଷ୍ଠ ବିଳାସୀ । ବିହାର—କ୍ରୀଡ଼ା, ମିଳନ କ୍ରିୟା । ରଜ—ଧୂଳି । ନିକର—ସମୂହ । ରଜନୀକର—ଚନ୍ଦ୍ର । ନାଗର—ନାଗ ସର୍ପର, ରସିକ । ପରିତାପ—ଉତ୍ତାପ, ପ୍ରତାପ । ଚନ୍ଦ୍ର ଗ୍ଭଳିବା—କାମଶାସ୍ତ୍ର ସମ୍ମତ ନାଗରକୁ ବିଭିନ୍ନ କଳାସଦୃଶ ଭିନ୍ନ ଭିନ୍ନ ଅଂଶ ପ୍ରତିପ୍ରଲେପିତ କରାଇ ଅଧିକ କାମୋନ୍ମତ୍ତ କରିବା ।

ବନ ଭ୍ରମଣ-ଶ୍ରମ-ଘର୍ମ-ହରଣେ ଆଶାରେ କାସାର ତୁଠରେ
ହର କୋପନା ସ୍ଥାପନା ବଟଦ୍ରୁମ ଶ୍ୱଦ୍ରୁମ ଚୌରଶି ପୀଠରେ
ସର୍ବେ ବସିଲେ
ମୋଦ ପୂରଣ ପାରାୟଣ
କରଣେ ରସିବ ଭାବ ରସିକାଏ ଏଭାଷାରେ ହେଲା ପ୍ରବୀଣ । ୩୭ ।

**ଅନ୍ୱୟ**—ବନ ଭ୍ରମଣ-ଶ୍ରମ-ଘର୍ମ-ହରଣେ ଆଶାରେ କାସାର ତୁଠରେ (ଯେଉଁ) ଶ୍ୱଦ୍ରୁମ ବଟଦ୍ରୁମ (ଅଛି) ହର କୋପନା ସ୍ଥାପନା ଚୌରଶିପୀଠରେ ସର୍ବେ ବସିଲେ ।

ରସିକା ଏ ମୋଦ ପୂରଣ ପାରାୟଣ କାରଣେ ରସିବ ଭାବ ଏଭାଷାରେ ପ୍ରବୀଣ ହେଲା ।

**କଥା**—ବନଭ୍ରମଣ-ଶ୍ରମରୁ ଜାତ ଘର୍ମ-ନିବାରଣ ଆଶାରେ ଏକ ପୋଖରୀ ତୁଠରେ ଯହିଁ ଚଣ୍ଡୀ ଠାକୁରାଣୀ ସ୍ଥାପିତ ଅଛନ୍ତି, ଉକ୍ତ ନବପଲ୍ଲବ-ଶୋଭିତ ବରଗଛ ମୂଳସ୍ଥ ସଖୀଙ୍କ ଚୌରଶି ପୀଠରେ ସର୍ବେ ବସିଲେ । ଜଣେ ରସିକା ରହସ୍ୟ ଜନକ ପୁରାଣ ଗାଇବାଦ୍ୱାରା ଜେମା ରୁକ୍ମଣୀ ତୃପ୍ତିହେବେ ଭାବି ଏପରି ବଳିଷ୍ଠ ଭାଷାରେ କହିଲା—

---

ଶବ୍ଦାର୍ଥ । ଶ୍ୱଦ୍ରୁମ—ନବପଲ୍ଲବ ଶୋଭିତ । ପୀଠ—ବେଦୀ । ମୋଦ—ଆନନ୍ଦ । ପୂରଣ—ରହସ୍ୟ ଜନକ । ମୋଦ—ରହସ୍ୟ । ହରକୋପନା—ଚଣ୍ଡୀ । ଚୌରଶୀ ପୀଠ—ସଖୀଙ୍କ ବସିବା ଉଙ୍ଗ ପଦ୍ଧତି ଏକ ପୁଣ୍ୟ ପୀଠ । ପାରାୟଣ—ଗାନ କରିବା । ରସିକାଏ—ରସିକା ଜଣେ । ପ୍ରବୀଣ—ନିପୁଣ, ଦକ୍ଷ ।

**କ୍ଷତ୍ରିୟକୁଳ-ସମ୍ଭବା ଯେ ତାହାଙ୍କୁ ଅବଳା ପଦ ଅସୁନ୍ଦର**
**ବନ ପୁଣ୍ଡରୀକ ଆଣନ୍ତ ଓଟାଉ କଟାଉ-କଟାକ୍ଷ ତୋହର**
**ମହାବଳଲକ୍ଷ୍ମୁ**
**ପଦବୀ ବାହାଉ ବହଲୁ**
**ଦୁର୍ନୀତ ଜାଗ୍ରତ ଜରଡୀ ବନିତା ଶ୍ରୁତରେ ଏ ଉକ୍ତି ବହଲୁ । ୩୭ ।**

**ଅନ୍ୱୟ**—ଯେ କ୍ଷତ୍ରିୟକୁଳ-ସମ୍ଭବା ତାହାଙ୍କୁ ଅବଳା ପଦ ଅସୁନ୍ଦର ଅଟେ । (ରେ ସଖି !) ତୋହର କଟାକ୍ଷ (ତ) କଟାରୀ (ସଦୃଶ) (ତୁ) ବନୁ ପୁଣ୍ଡରୀକ ଓଟାଉ ଆଣନ୍ତ । (ତୋଠି) ମହାବଳଲକ୍ଷ୍ମୁ ପଦବୀ ବାହାଉ ବହଲୁ । (ଏମନ୍ତ) ଦୁର୍ନୀତ ଜାଗ୍ରତ (ହୁଅନ୍ତେ) ଏ ଉକ୍ତି ଜରଡୀ ବନିତା ଶ୍ରୁତରେ ବହଲୁ— ।

**କଥା**—ସେ ଯୁବତୀ ଜେମାଙ୍କୁ ଲକ୍ଷ୍ୟକରି କହିଲା—ଯେ କ୍ଷତ୍ରିୟ କୁଳରେ ଜନ୍ମ ହୋଇଛନ୍ତି ତାଙ୍କୁ 'ଅବଳା' ବୋଲି କହିବା ଏକାନ୍ତ ଅସୁନ୍ଦର ଅଟେ । ତୁ ତ ଅବଳା ନୋହୁ ଆମ ପରି ? ତୋର ଯେଉଁ ଅପାଙ୍ଗ ଦୃଷ୍ଟି ସେ ତ କଟାରୀ ପରି ତୀକ୍ଷ୍ଣ ଧାର ବିଶିଷ୍ଟ । ତୁ ସେହି ଅପାଙ୍ଗମାରି ଜଳାସରେ ଥିବା ତୋର ପ୍ରୟୋଜନୀୟ ମହାନ୍ ବ୍ୟକ୍ତିଙ୍କୁ ଟାଣିଆଣ । ଏହା ଫଳରେ ତୋଠି ମହାବଳଲକ୍ଷ୍ମୁ ପଦବୀ ବାହାରି ଚତୁର୍ଦ୍ଦିଗରେ ବ୍ୟାପିଯାଉ । ତୁ ନିଜେ ତୋର ପ୍ରଲୋଭନ ଦେଇ ସେଇ ତରୁଣଙ୍କୁ ଟାଣିଆଣ । ଏତେ ଲାଜ ଲୁଗୁ କଥା ?

ଏ ଦଳଙ୍କୁ ଯେଉଁ ମାତମତ ବୃଦ୍ଧା ପହରାରୀ ଜଗିରହିଥିଲା ସେ ବୁଝିଲା ଏତଦ୍ଦ୍ୱାରା ଏ ଦଳ ଦୁର୍ନୀତି କରି ବୁଲିବେ । ଏମାନେ ଜଙ୍ଗଲରେ ପଶି ହାତୀ ଧରିବେ କି, ପାଣିରେ ପଶି ପଦ୍ମଫୁଲ ତୋଳିବେ । ତା ଶ୍ରବଣରେ ଏ ଉକ୍ତି ପଡ଼ନ୍ତେ— ।

---

ଶବ୍ଦାର୍ଥ । ବନୁ—ବନରୁ, ଆଲୟରୁ, ଜଳରୁ । ପୁଣ୍ଡରୀକ—ହସ୍ତୀବିଶେଷ, ଶ୍ୱେତପଦ୍ମ, ମହାନ୍ ସିଦ୍ଧିବନ୍ତ । କଟାକ୍ଷ—ଅପାଙ୍ଗ, କାମାର୍ତ୍ତ ଦୃଷ୍ଟି । ଜରଡୀ—ବୃଦ୍ଧା ।

**ବିସ କରଗତ କରିବାରେ ରତ ନିଶ୍ଚେହେଲେ ଏହା ଜାଣିଲି**
**ସେ ତ ନୀତିଶାସ୍ତ୍ର ଚନ୍ଦ୍ରର ଚକୋର ନେତ୍ରରଙ୍ଗ ହେଲାଭଣିଲି**
**ଦେଲି ଗାଣୀଙ୍କ**
**ଗାଣ ଲଂଘିଲେ ହେବ ଦ୍ୱନ୍ଦ**
**ଅରବିନ୍ଦ କନ୍ଦ ଉତ୍ପାଟନେ ପଦ ଦ୍ୱନ୍ଦ ଚଳନେ କରବନ୍ଦ । ୩୮ ।**

**ଅନ୍ୱୟ**—(ସେ) ଏହା ଜାଣିଲି ବିଷ କରଗତ କରିବାରେ ନିଶ୍ଚେ (ଏଦଳ) ରତ ହେଲେ । ଚନ୍ଦ୍ରର ଚକୋର ପ୍ରାପ୍ୟେ ସେତ ନୀତିଶାସ୍ତ୍ର (ବିଦ୍); (ତେଣୁ) (ତାର) ନେତ୍ର ରଙ୍ଗ ହେଲ (ଓ) ଭଣିଲି—ଗାଣୀଙ୍କ ଦେଲିଗାଣ ଲଂଘିଲେ ଦ୍ୱନ୍ଦ ହେବ । (ଦେଖ) ଅରବିନ୍ଦ କନ୍ଦ ଉତ୍ପାଟନେ ପଦ ଦ୍ୱନ୍ଦ ଚଳନେ ବନ୍ଦ କର ।

**କଥା**—ସେ ପୂର୍ବୋକ୍ତ ଯୁବତୀର କଥାକୁ ଭିନ୍ନ ପ୍ରକାର ବୁଝି ଜାଣିଲି—ପଦ୍ମ ମୃଣାଳ ଖୋଳ ଆଣିବାକୁ ନିଶ୍ଚେ ଏ ଦଳ ବ୍ୟାକୁଳ ହେଲେଣି । ଚନ୍ଦ୍ରକୁ ଚକୋର ପ୍ରାପ୍ତ ଅମୃତ ବଡ଼ ସନ୍ନୀତି କ୍ରୀଡା ସେ ତ ଅଟେ । ତେଣୁ ଏ ପ୍ରକାର ଯୁବତୀ ଦଳର ଅମରମତା ହେବାର ସ୍ଥିତ ଅନୁମାନ କରି ସେ ରାଗରେ ଆଖି ନାଲି କରିଦେଲି ଏବଂ କହିଲି—ଦେଖ, ଗାଣୀଙ୍କ ଗାଣଦେଲି । ଯେ ଲଂଘିବ ନିଶ୍ଚିତ୍ତ ଅନିଷ୍ଟ ଘଟିବ । ପଦ୍ମ ମୂରାଡ଼ ଉପାଡ଼ିବାକୁ ପଦଯୁଗଳ ଚଳାଇବା ବନ୍ଦକର ।

ଶବ୍ଦାର୍ଥ । ବିସ—ମୃଣାଳ । ରତ—ବ୍ୟାକୁଳ । ଚନ୍ଦ୍ରର ଚକୋର—ଚନ୍ଦ୍ରମାରୁ ଯେପରି ଚକୋର ଅମୃତ ପାନ କରେ ଅଲକ୍ଷରେ । ଦ୍ୱନ୍ଦ—ଅନିଷ୍ଟ । ଅରବିନ୍ଦକନ୍ଦ—ପଦ୍ମମୃଣାଳ; ମୁରାଡ଼ । ଦ୍ୱନ୍ଦ—ଯୁଗଳ । ଚଳନେ—ଚାଲିବାରେ ।

**ମାର ମଦରାଗୀ ମଧୂପ ସଂସର୍ଗୀ ଏ ସଲିଲେ ବୁଡ଼ି ରହିଛି**
**ତୁମ୍ଭ ଚହଟ ଆରମ୍ଭରୁ ରମ୍ଭୋରୁ ଦାଢ଼ୀ ଶୋଭା ମୁଖ କାଢ଼ିଛି**
**ଦେଖି ଦେଖିବା**
**ଦେଖାଅ ବୋଲନ୍ତେ ସଖୀଏ**
**ମାଣବକଅଳି-କେଳିକୃତସ୍ଥଳୀକଞ୍ଜେ ନବେଶିଲା ଆଖିଏ । ୩୧ ।**

**ଅନ୍ୱୟ**—ହେ ରମ୍ଭୋରୁ (ବାଳ!) ତୁମ୍ଭ ଚହଟ ଆରମ୍ଭରୁ ମଦରାଗୀ ମାର ମଧୂପ ସଂସର୍ଗୀ (ହୋଇ ) ଏ ସଲିଲେ ବୁଡ଼ି ରହିଛି । (ଦେଖ) ଦାଢ଼ୀ ଶୋଭା ମୁଖ (ମଧ୍ୟ) କାଢ଼ିଛି । ସଖୀଏ, ଦେଖି, ଦେଖିବା, ଦେଖାଅ ବୋଲନ୍ତେ (ସେ ବୃଦ୍ଧା) ମାଣବକଅଳି-କେଳିକୃତସ୍ଥଳୀକଞ୍ଜେ ଆଖିଏ ନବେଶିଲା ।

**କଥା**—ଆଲୋ ଏ ରମ୍ଭୋରୁ ବାଳା ! ତୁମେଗୁଡ଼ାକ ଯେମା ସତ୍ୱରେ ସମସ୍ତେ ପଦ୍ମ ନାୟିକା ଅଟ । ତୁମ ଚହଟ ବାସନା ସୂତ୍ରପାତରୁ ଉନ୍ମାଦ ଅନୁରାଗୀ —କନ୍ଦର୍ପ, ଭ୍ରମର ସତ୍ୱରରେ ଏ ପାଣିରେ ବୁଡ଼ି ରହିଛି । ସେଠିକୁ କେହି ଯାଅନା । ଗଲେ ଯାହା ହେବିବ ମତେ ଆଉ ଦୋଷ ଦେବନା । ହେଇଟି ଦେଖ ! ବେଳେ ବେଳେ ତୁମକୁ ଉଙ୍କି ମାରି ଚାଲିଛି । ତୁମକୁ ନ ପାଇ ତା ମୁହଁସାକ ଦାଢ଼ୀ ହୋଇଯାଇଛି । ସେଇ କୃଷ୍ଣ ଦାଢ଼ୀ ମଣ୍ଡିତ ଶୋଭମାନ ମୁଖ ତାର କେମିତି କାଢ଼ିଛି ଦେଖିଲଣି ?

ଏ କଥା କହନ୍ତେ ଯେମାର ରୂପସୀ ପଦ୍ମଗନ୍ଧା ଦାସୀଗଣ ଆବୁଡ଼ା ପଡ଼ି କହିଲେ—ଦେଖି ଦେଖିବା, ଦେଖାଅ । ବୁଢ଼ୀ ତା' ଶୁଣି ଦଳେ ଶିଶୁ ଭ୍ରମର କେଳି କରୁଥିବା ଗୋଟିଏ ପଦ୍ମ ଉପରକୁ ଆଖି ଠାରିଦେଲା ।

ଶବ୍ଦାର୍ଥ । ରମ୍ଭୋରୁ—ରମ୍ଭାପରି ଜାନୁ ଯାହାର । ଆରମ୍ଭ—ଉପକ୍ରମ, ସୂତ୍ରପାତ ଉଦ୍‌ଯୋଗ । ମଦ—ଉନ୍ମାଦ । ମାଣବକ—ଶିଶୁ । ରାଗୀ—ଅନୁରକ୍ତ । କେଳୀକୃତସ୍ଥଳୀ—କ୍ରୀଡ଼ା କରୁଥିବା ସ୍ଥାନ ।

**କହେ ଚତୁରୀ ଏ କଥା ଚାତୁରୀଏ ରୁଦ୍ର-ନେତ୍ରାନଳ-ଭୂତକ**
**ଭଜିବାର ମାତେ ଶମଶ୍ରୁ ବଦନେ ଘଟେକି ଘଟାଇ ଭୀତକ**
**ବର୍ଦ୍ଧି ଗଭୀର**
**ନ ଥିଲେ କରବନ୍ଧ ନଦୀ**
**ଏ କାଳେ ଅସ୍ତ ଅବସ୍ଥାରେ ପ୍ରଶସ୍ତ ହେଲେ ବିଲୋମ ବଧ ନନ୍ଦ । ୪୦ ।**

**ଅନ୍ୱୟ**—(ତା ଶୁଣି) ଚତୁରୀ କହେ ଏ କଥା ଚାତୁରୀ (ମାତ୍ର) । ଏ (କାମଦେବ) ରୁଦ୍ର ନେତ୍ରାନଳ-ଭୂତକି ଭଜିବାର ମାତେ ଶ୍ମଶ୍ରୁ ବଦନେ ଘଟେ କି ? (ଏଥିରେ) କି ଭୀତି ଘଟାଇ ? ବର୍ଦ୍ଧି (ବା) ଗଭୀର ନ ଥିଲେ ନଦୀ କରବନ୍ଧ (ନୁହେଁ କି ?) । ଏ କାଳେ ଅସ୍ତ ଅବସ୍ଥାରେ ବିଲୋମ ବଧନନ୍ଦ ପ୍ରଶସ୍ତ ହେଲେ ।

**କଥା**—ବୁଢ଼ୀଠାରୁ ଏହା ଶୁଣି ପୂର୍ବୋକ୍ତ ରୂପସୀ ଚତୁରୀ ଯୁବତୀ କହିଲା—ଏ କଥା ଛଳନା ଫନ୍ଦ ମାତ୍ର । ଆମକୁ ଭୁଲେଉଛ । ଏହି ଯେଉଁ କାମଦେବ ସେ ତ ଶିବ ନୟନାଗ୍ନିରେ ଦଗ୍ଧ ହୋଇ ପାଉଁଶ ହୋଇ ଯାଇଛି । ତା ମୁହଁରେ ଦାଢ଼ୀ ଆସିବ କେଉଁଠୁ ? ଏଥିରେ ତୁମେ କି ଭୟ ଦେଖାଉଛ ? ବଢ଼ିଥିଲେ ବା ଗଭୀର ହୋଇ ନ ଥିଲେ ନଦୀ କଣ ମଣିଷ ଆୟତ୍ତରେ ନ ଥାଏ କି ? ସେଥିରେ ବୁଡ଼ିଯିବାର ଭୟ ଆସିବ କାହୁଁ ? କାମ ତ ପୋଡ଼ିଯାଇଛି; ସେ ଆମର କଣ କରିବ ?

ଏହିପରି କଥାଭାଷା ହେଉଁ ହେଉଁ ଏହି ସମୟରେ ଦନଧବ ସୂର୍ଯ୍ୟ ଅସ୍ତ ଅବସ୍ଥାରେ ପ୍ରଶସ୍ତ ହେଲେ । ଅସ୍ତ ହୋଇଯିବାର ଦେଖାଗଲେ ।

ଶବ୍ଦାର୍ଥ । ଚାତୁରୀ—ଛଳନା, କପଟ, ଭୁଲାଣିଆ । ଭୂତ—ପାଉଁଶ । ଶମଶ୍ରୁ—ଶ୍ମଶ୍ରୁ, ଦାଢ଼ୀ । ବଦନେ—ବଦନେ, ମୁଖରେ । ବର୍ଦ୍ଧି—ବଢ଼ି । କରବନ୍ଧ—ହସ୍ତାୟତ୍ତ, କରାୟତ୍ତ । ବିଲୋମ ବଧନନ୍ଦ—ବଧନନ୍ଦର ଓଲଟା ଦନଧବ ଅର୍ଥାତ୍ ଦିନ ର ଧବସର ସ୍ୱାମୀ—ସୂର୍ଯ୍ୟ । ପ୍ରଶସ୍ତ—ବିସ୍ତୀର୍ଣ୍ଣ, ଉଦ୍ୟତ ।

ଦିଶିଲେ ଋଙ୍ଗାଲ ବଲକବଳିତ ହସନ୍ତୀ ଅନଳ-ଆକୃତି
ଚରମାଚଲେ ଚକୋର ଚର୍ବଣରେ ଚତୁର ହୋଇଲ ଝଟିତି
ଜ୍ୟେଷ୍ଠା ଧନିଷ୍ଠା
କାନ୍ତ କାନ୍ତି କରି ମଞ୍ଜିଷ୍ଠା
ପ୍ରକାଶୁ ପ୍ରକାଶେ ଏ ଭକ୍ଷେ କି ନାଶେ କ୍ଷୀର ସାର ମିଠା ପ୍ରତିଷ୍ଠା ।୪୧।

**ଅନ୍ୱୟ**—(ଉକ୍ତ ଅସ୍ତଗାମୀ ସୂର୍ଯ୍ୟ) ଋଙ୍ଗାଳବଳ-କବଳିତ ହସନ୍ତୀ (ରି) ଅନଳ ଆକୃତି ଦିଶିଲେ । (ତା ଦେଖି) ଚରମାଚଳେ ଚକୋର (ତାହା) ଚର୍ବଣରେ ଝଟିତି ଚତୁର ହୋଇଲା । ଜ୍ୟେଷ୍ଠା ଧନିଷ୍ଠା କାନ୍ତ ମଞ୍ଜିଷ୍ଠା କାନ୍ତି କରି ପ୍ରକାଶୁ ଏ ଭକ୍ଷେ କ୍ଷୀରସାର ମିଠା ପ୍ରତିଷ୍ଠା ନାଶେ ପ୍ରକାଶେ କି ?

**କଥା**—ଉକ୍ତ ଅସ୍ତଗାମୀ ରବି, ଅଙ୍ଗାର ସମୁଦାୟକୁ ଗ୍ରାସ କରିଥିବା ହସ୍ତେଇଁ ନିଆଁର ଆକୃତି ପରି ଦେଖାଗଲେ । ଯାହାକୁ ଦେଖି ଅସ୍ତଗିରିରେ ଥିବା ଚକୋର ପକ୍ଷୀ ଅଗ୍ନିକଣା ଜ୍ଞାନ କରି ଗ୍ରାସ କରିବାକୁ ଚଞ୍ଚଳ ଟାକି ଉଠିଲା । ଜ୍ୟେଷ୍ଠା ଧନିଷ୍ଠା ନକ୍ଷତ୍ର-କାନ୍ତ ଚନ୍ଦ୍ରମା ରକ୍ତବର୍ଣ୍ଣ କାନ୍ତିରେ ପ୍ରକାଶିତ ହେବାରୁ ଜଣେ ସଖୀ କହିଲା ଅମୃତର ଯେଉଁ ପ୍ରତିଷ୍ଠିତ ମିଷ୍ଟତା ତାକୁ ନାଶ କରି ଏହି ମଧୁମୟ ଚନ୍ଦ୍ରମା ପ୍ରକାଶିତ ହେଲେ କି ?

ଅସ୍ତଗାମୀ ସୂର୍ଯ୍ୟ ସଙ୍ଗେ ସଙ୍ଗେ ଚନ୍ଦ୍ରମା ଉଦିତ ହେବା ଯୋଗୁଁ ସେ ଦିନ ପୂର୍ଣ୍ଣିମୀ ବୋଲି ପ୍ରକାଶିତ ହେଲା ।

ଶବ୍ଦାର୍ଥ । ଚରମାଚଳ—ଅସ୍ତଗିରି, ଯେଉଁ ପର୍ବତରେ ସୂର୍ଯ୍ୟ ବୁଡ଼ନ୍ତି । ହସନ୍ତୀ—ହସ୍ତେଇଁ, ନିଆଁ ରଖିବା ପାତ୍ର । ଧନିଷ୍ଠା—ତ୍ରୟୋବିଂଶ ନକ୍ଷତ୍ର । ଜ୍ୟେଷ୍ଠା—ଅଷ୍ଟାଦଶ ନକ୍ଷତ୍ର । ମଞ୍ଜିଷ୍ଠା—ରକ୍ତବର୍ଣ୍ଣ ମଞ୍ଜୁଆତି, ଗୁଳ୍ମବିଶେଷ । କ୍ଷୀରସାର—ଅମୃତ । ଋଙ୍ଗାଳ—ଅଙ୍ଗାର । ବଳ—ସମୁଦାୟ ଶବ୍ଦ । କବଳିତ—ଗ୍ରାସ ।

**କୁଣ୍ଡଳ-ଆକୃତ କୁଣ୍ଡ ମଧ୍ୟବର୍ତ୍ତୀ ଚକ୍ରକ୍ରୀଡ଼ା ହୋମ-ଦହନ**
**ବିସର୍ଜନ-ପ୍ରପାନକର ପତନ ସ୍ଥଳଇଚ୍ଛ ମଞ୍ଚ ଲାଞ୍ଛନ**
**ଅଙ୍ଗ ସୁରଙ୍ଗ**
**ଭଙ୍ଗ ପ୍ରସଙ୍ଗକୁ ଲୋଡୁଛି**
**ଧରିଛି ଧବଳ-ବିଭୂତିକ ଯାହା ବିଭୂତି-ବଢ଼ିମା ବଢ଼ୁଛି । ୪୨ ।**

**ଅନ୍ୱୟ**—(ଉକ୍ତ ଚନ୍ଦ୍ରମା) କୁଣ୍ଡଳ ଆକୃତି (ଦେଖାଯିବାରୁ) କୁଣ୍ଡ ମଧ୍ୟବର୍ତ୍ତୀ ହୋମ ଦହନ (ର) ବକ୍ର କ୍ରୀଡ଼ା (ପ୍ରାପ୍ତ) (ଦେଖାଯାଉଛି ।) (ତହିଁ ଥିବା) ଲାଞ୍ଛନ ମିଛ (ଅଟେ) । (ତାହା ହୋମାଗ୍ନିରେ) ବିସର୍ଜନ ପ୍ରପାନକର ପତନ ସ୍ଥଳ ଇଚ୍ଛା ସୁରଙ୍ଗ ଅଙ୍ଗ ଭଙ୍ଗ ପ୍ରସଙ୍ଗକୁ ଲୋଡ଼ୁଛି । ଯାହା ଧବଳ ବିଭୂତିକ ଧରିଛି (ତାହା) (ହୋମ ଅଗ୍ନିର) ବିଭୂତି ବଢ଼ିମା ବଢ଼ୁଛି (ମନେକର) ।

**କଥା**—ଉକ୍ତ ଉଦିତ ଚନ୍ଦ୍ରମା ଗୋଲାକାର ଦେଖାଯିବାରୁ ତାହା ପବିତ୍ରକୁଣ୍ଡ-ମଧ୍ୟବର୍ତ୍ତୀ ହୋମାଗ୍ନିର ଘୂର୍ଣ୍ଣାୟମାନ କ୍ରୀଡ଼ା ପରି ଦେଖାଯାଉଛି । ତେଣୁ ସେଥିରେ ଥିବା ମୃଗ ଲାଞ୍ଛନ ମିଥ୍ୟା ଅଟେ । ତାହା ଉକ୍ତ ହୋମାଗ୍ନିରେ ପୂର୍ଣ୍ଣାହୁତି ପରେ ବିସର୍ଜନ ପଣା ପକାଇବା ଜାଗା ସେଉଁଠାରେ ଲିଭି ଅଙ୍ଗାର ଦେଖାଯାଉଛି ତାହାଙ୍କୁ କହିବା ସମୀଚୀନ । ଚନ୍ଦ୍ରମା ଊର୍ଦ୍ଧ୍ୱଗାମୀ ହେବାରୁ ତାର ରକ୍ତବର୍ଣ୍ଣର ଅଙ୍ଗ ବିକୃତି ସମ୍ବନ୍ଧକୁ ଲୋଡ଼ୁଛି । ଫଳରେ ଯାହା ଧବଳ ସମୃଦ୍ଧିକ ଧରିଛି, ତାହା ଚନ୍ଦ୍ରମାର ଶୁକ୍ଳତା ନୁହେଁ । ତାହା ହୋମ ଅଗ୍ନି ଲିଭି ଲିଭି ପାଉଁଶର ପ୍ରାଧାନ୍ୟ ବଢ଼ାଇ ଚାଲିଛି ।

**ଆଲୋଚନା**—ଚନ୍ଦ୍ରମାକୁ କବି କୁଣ୍ଡଳୀକୃତ ପବିତ୍ର ହୋମାଗ୍ନି ବୋଲି ଧାରଣା କରିଛନ୍ତି । ତେଣୁ ବିସର୍ଜନ ପଣା ଦ୍ୱାରା ଯେଉଁ ସାମାନ୍ୟ ଅଙ୍ଗାର ଦେଖାଯାଉଛି ତାହାକୁ ଲାଞ୍ଛନ ବୋଲି ଧାରଣ କରିଅଛନ୍ତି । ଚନ୍ଦ୍ରମା ଉପରକୁ ଉଠିବାରୁ ଯେ ଶୁକ୍ଳ ଦେଖାଗଲେ ତାହା ହୋମାଗ୍ନି ଲିଭି ଯେ ପାଉଁଶ ହୋଇଛି ତାର ସାମ୍ୟ ଆଣିଛନ୍ତି ।

---

ଶବ୍ଦାର୍ଥ । କୁଣ୍ଡଳାକୃତ—ଗୋଲାକାର । ଭଙ୍ଗ—ବିକୃତ । ବକ୍ରକ୍ରୀଡ଼ା—ଘୂର୍ଣ୍ଣାୟମାନ କ୍ରୀଡ଼ା । ଦହନ—ଅଗ୍ନି । ପ୍ରପାନକ—ପଣା । ଇଚ୍ଛ—ମନେକର । ସୁରଙ୍ଗ—ରକ୍ତିମା । ଭଙ୍ଗ ପ୍ରସଙ୍ଗ—ବିକୃତ ସମ୍ବନ୍ଧ । ବିଭବ—ସମୃଦ୍ଧି । ବିଭୂତ—ଭସ୍ମ । ବଢ଼ିମା—ବୃଦ୍ଧି ।

**ଜାଗ୍ରତୀ ଉଗ୍ର ହେବ ଭାବ ବ୍ୟଗ୍ରକୁ ଗମନ ସର୍ଜିଲେ ସକଳେ**
**ମହାମଲ୍ଲ ଚକାସାଧନ ଆଶଙ୍କା ଅଙ୍କୁରାଇ କୁଚ ଯୁଗଳେ**
**ପୁରେ ପ୍ରବେଶ**
**ତ୍ରିପୁର-ପରେଶା ହୋଇଲେ**
**ବୃତ୍ତି କରିଥାନ୍ତି ନିତ ଯେ ନୀତିକି ସେ ସେବା ଆଦର ରହିଲେ । ୪୩ ।**

**ଅନ୍ୱୟ**—ଜାଗ୍ରତ ଉଗ୍ର ହେବ ଭାବ ସକଳେ ବ୍ୟଗ୍ର ଗମନକୁ ସର୍ଜିଲେ । ମହାମଲ୍ଲ ଚକା ସାଧନ ଆଶଙ୍କା କୁଚ ଯୁଗଳେ ଅଙ୍କୁରାଇ (ଲେ) । (ଏବଂ) ତ୍ରିପୁର ପରେଶା ପୁରେ ପ୍ରବେଶ ହୋଇଲେ । ନିତ ଯେ ନୀତିକି ବୃତ୍ତି କରିଥାନ୍ତି ସେ ସେବା ଆଦର ରହିଲେ ।

**କଥା**—ଜେମା ସମ୍ବନ୍ଧରେ ଯେ ନିରନ୍ତର ସତର୍କ ରହୁଛନ୍ତି ଏପରି ନୀତିଶୀଳା ବୃଦ୍ଧା ଦାସୀ କୁପିତା ହେବ ଭାବ ସମସ୍ତେ ତରତର ହୋଇ ଚାଲିଲେ । ଚଞ୍ଚଳ ଚାଲିବା ବେଳେ ଆଶଙ୍କା ଆସିଲା—ସନ୍ଧ୍ୟାରେ ମହାନ୍ ମାଲ ମାନେ ଯେପରି ଚକାସାଧନ କରି ପେଷିମାନ ଫୁଲାଇ ଦିଅନ୍ତି, ସେହି ଯୁବତୀମାନେ ସେପରି ନିଜ ନିଜର କୁଚ ଯୁଗଳକୁ ଅଙ୍କୁରିତ କରିବାରୁ ଏକାନ୍ତ ମନୋହର ଦେଖାଗଲେ । ସେହିପରି ଅବସ୍ଥାରେ ମଧ୍ୟ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନି ପୁରର ପରେଶ କାରିଣୀ ରୁକ୍ମିଣୀ ରାଜ ପୁରରେ ପ୍ରବେଶ ହୋଇଲେ । ପ୍ରତ୍ୟହ ଯେଉଁ କୁମାରୀମାନେ ତାଙ୍କର ବନ୍ଦନ ନୀତିକୁ ବୃତ୍ତି କରିଥାନ୍ତି, ସେମାନେ ତାଙ୍କର ସେବା ଆଦର ରହିଲେ ।

---

ଶବ୍ଦାର୍ଥ । ଜାଗ୍ରତା—ସାବଧାନ ଶୀଳା । ଉଗ୍ର—ବିରକ୍ତ, କୁପିତ । ଚକାସାଧନ—ଦୁଇ ଜାନୁକୁ ମଣ୍ଡଳା କୃତ କରି ବସି ଉଠ ହେବା; ଏଥିରେ ବକ୍ଷ ଫୁଲି ଉଠେ । ତ୍ରିପୁର—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ । ତ୍ରିପୁର ପରେଶା—ତିନିପୁରରେ ଅଧୀଶ୍ୱରୀ । ନିତ—ପ୍ରତ୍ୟହ । ନୀତି—କର୍ତ୍ତବ୍ୟ । ବୃତ୍ତି—ଜୀବିକା ।

**ମୂର୍ଚ୍ଛି ଲୋଳାଲୀଳା ନୀଳାଚଳ ଲୀଳା ଇଚ୍ଛିତ ପାମର ସଂସର୍ଗ**
**ଖର୍ବରଷାରେ ଧର୍ଷ ରହିବାରେ ଦାଣ୍ଡେ ଭରାଭର ସର୍ଗ**
**ଗ୍ରନ୍ଥ କର୍ତ୍ତାର**
**ଉଦ୍ଧାରେ ସେ ଦୟା ଶକଟ**
**ଚକା ଚକ୍ଷୁ ଚକ ବାହୁଦଣ୍ଡା ଲୋକ ଧରି ପ୍ରକଟାନ୍ତ ଧପଟ । ୪୪ ।**

**ଅନ୍ୱୟ**—(ଯେଉଁ ପ୍ରଭୁ) ଲୋଳଲୀଳା (ଓ) ନୀଳାଚଳ ଲୀଳାମୂର୍ଚ୍ଛି ଇଚ୍ଛିତ ପାମର ସଂସର୍ଗ ହେତୁ ଦାଣ୍ଡେ ଖର ବରଷାରେ ଧର୍ଷ ରହିବାରେ (ଜନ) ସର୍ଗ ଭରା ଭର (ହୋଇଥାଏ) । ସେ ଗ୍ରନ୍ଥ କର୍ତ୍ତାର ଉଦ୍ଧାରେ ଦୟା ଶକଟ (ଅଟନ୍ତି) । (ତାଙ୍କର) ଚକାଚକ୍ଷୁ ଚକ (ପ୍ରାୟ ଅଟେ) ଯାହାକୁ ଲୋକେ ଧରି ଧପଟ ପ୍ରକଟାନ୍ତ ଉକ୍ତ ବାହୁ ଦଣ୍ଡା (ସ୍ୱରୂପ ଅଟେ) ।

**କଥା**—ଯେଉଁ ପ୍ରଭୁ ଲକ୍ଷ୍ମୀଙ୍କ ସହିତ ମଧୁର ଲୀଳା ଏବଂ ନୀଳାଚଳର ସତତ ଅର୍ଚ୍ଚନୀୟ ଲୀଳାକୁ ତ୍ୟାଗକରି ଚିର ଅଭିଳଷିତ ପାପୀଙ୍କୁ ତ୍ରାଣ କରିବା ଇଚ୍ଛାରେ ନୀଚ୍ଚଧମଙ୍କ ସଂସର୍ଗ ଲାଗି ବଡ଼ଦାଣ୍ଡରେ ଖର ବର୍ଷାରେ ବନ୍ଧା ରହି ଅଖିଳଜନ-ପ୍ରୀତି-ଭରାଭର ଲଭିଥାନ୍ତି, ସେହି ଜଗନ୍ନାଥ ଗ୍ରନ୍ଥ କର୍ତ୍ତାଙ୍କୁ ଉଦ୍ଧାର କରିବାକୁ ଦୟାର ଏକ ଶକଟ ଅଟନ୍ତି । ତାଙ୍କର ଚକାଚକ୍ଷୁ ଦୁଇଟି ଉକ୍ତ ଶକଟର ଚକପରି ଏବଂ ଯାହାକୁ ସେବକ ମାନେ ଧରି ଚଞ୍ଚଳ ଗତି କରାନ୍ତି ଉକ୍ତ ବାହୁ ଦଣ୍ଡା ସ୍ୱରୂପ ଅଟେ ।



ଶବ୍ଦାର୍ଥ । ଲୋଳା—ଲକ୍ଷ୍ମୀ । ମୂର୍ଚ୍ଛି—ତ୍ୟାଗକରି । ସର୍ଗ—ପ୍ରୀତ, ଅନୁରକ୍ତ । ଇଚ୍ଛିତ—ଅଭିଳଷିତ । ଧପଟ—ଶୀଘ୍ର, ଧାଇଁବା । ପାମର—ଅଧମ, ନୀଚ । ଧର୍ଷ—ବନ୍ଧନରେ ରହିବା । ଭରାଭର—ସମ୍ପୂର୍ଣ୍ଣ । ଦାଣ୍ଡେ—ବଡ଼ଦାଣ୍ଡରେ ।

# ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର

**ଚତୁର୍ଥ କଳା:—**

କନଡ଼ା ରାଗରେ ବାଇଶିଟି ପଦରେ ଏହି ଛାନ୍ଦ ସଂପୂର୍ଣ୍ଣ ହୋଇଅଛି ।

ସେହି ପବୋକ୍ତ ବସନ୍ତସମୟରେ ଦିନେ କୃଷ୍ଣ ଶୋଭମାୟୁ ବନକୁ ଆସିଲେ । କବି ବସନ୍ତର ଏବଂ ନବୋଦିତ ଚନ୍ଦ୍ରମାର ବର୍ଣ୍ଣନା ନିଜର ସ୍ୱାତନ୍ତ୍ର୍ୟରକ୍ଷାକରି ଯେପରି ଦେଇଛନ୍ତି ତାହା ଉତ୍କଳ ସାହିତ୍ୟରେ ଚିରକାଳ ନିଜତ୍ୱ ରକ୍ଷାକରି ରହିଥିବ ।

ଏ ଛାନ୍ଦରେ ବନକୁ ଗୋଟିଏ ବନିତା କରିବାରେ କବିଙ୍କର ଉଦ୍ୟମ ଅତୀବ ରମଣୀୟ ହୋଇ ପାରିଛି ।

କେଶ, ମୁଖ, ଦୃଶ, ନାସା, ଶ୍ୱାସ, ହାସ, ଓଷ୍ଠ, ଶ୍ରବଣ, ଦନ୍ତକୁଳ,
କଣ୍ଠ, କଳେବର ବର୍ଣ୍ଣ, କୋମଳ,
ବାହୁ, ଅଙ୍ଗୁଳି, ନଖ, ନାଭି, ରୋମାଳି
କଟିଜାନୁ, ପଦାଙ୍ଗୁଳି ସେ

× × × ×

ଏଠି କେଶ ତମାଳ ମୁଖ କମଳ ଦୃଶ ଖଂଜନ ନାସ ଶୁକ । ଶ୍ୱାସ ଦାଇଫୁଲର ସୁଗନ୍ଧ । ହାସ ମଲ୍ଲୀ, ଓଷ୍ଠ ବନ୍ଧୁଳି ଓ ଜବା । ଶ୍ରବଣ ପାଟଳୀ, ଦନ୍ତକୁଳ, କଣ୍ଠ ଶଂଖ, କଳେବର ବର୍ଣ୍ଣ କେତକୀ, କଳେବର କୋମଳତା ଶିରୀଷ, ବାହୁ ପଦ୍ମନାଳ, ହସ୍ତାଙ୍ଗୁଳି ଚଂପକ କଢ଼ି, ନଖ, କିଆଳି, ନାଭି କୂପ, ରୋମାଳି କୂପରଜ୍ଜୁ, କଟୀ ସୂକ୍ଷ୍ମ ପୁଷ୍ପରଜ, ଜାନୁ କଦଳୀଗଛ, ପଦାଙ୍ଗୁଳି ଅଶୋକ କଳିକା ଅଟେ । କବି ଏ ସବୁ ଗୋଟିଗୋଟି କରି ଆଗରୁ ଏପରି କୌଶଳରେ ଖଂଜିଛନ୍ତି, ସ୍ୱତନ୍ତ୍ରଂ ଏ ପଦରେ ସେ ସବୁ ନାରୀର ବିଭିନ୍ନ ଅଙ୍ଗ ପାଇଁ ଉପଯୋଗୀ ହୋଇପାରିଛି । ଦକ୍ଷିଣ ନାୟକ ବୋଲି କୃଷ୍ଣଙ୍କୁ ବର୍ଣ୍ଣନା କରିବାଦ୍ୱାରା ସେ କାମଶାସ୍ତ୍ରରେ ଉର୍ଜ୍ଜିତ ପଣ୍ଡିତ ଥିବାର ଜଣାଇ

ପାରିଛନ୍ତି । ସେତିକି ନୁହେ କାମଶାସ୍ତ୍ରର ପ୍ରମାଣତା ଯେମିତି ସେ ତାଙ୍କର ରଚନାରେ ଆଉ ଅନେକ ଅଗମ୍ୟ ପଦ ମଧ୍ୟ ପ୍ରୟୋଗ କରିଥିବାର ଜଣାଯାଉଛି ।

ଏହି ଛାନ୍ଦରେ ନାରଦ କୃଷ୍ଣଙ୍କ ସହିତ ସାକ୍ଷାତ କରି ରୁକ୍ମଣୀଙ୍କ ପ୍ରତି ତାଙ୍କର ଆକର୍ଷଣ ସମଧିକ ଭାବରେ ବଢ଼ାଇଛନ୍ତି । ନାରଦଙ୍କ ସହିତ ଉକ୍ତି ପ୍ରତ୍ୟୁକ୍ତିମାନ ଜଣେ ପରମ ଖ୍ୟାତ ଯୁବକଙ୍କୁ ବା ଘଟକ ମଧ୍ୟସ୍ଥ ଯେପରି ଭୁଲାଇ ଚାଟଭଙ୍ଗିରେ କହିଥାଏ ତଦନୁରୂପ ହୋଇଅଛି । ପଢ଼ିଲେ ମନେହୁଏ ଯେପରି ଏହା ପୁରାଣ କଥା ନୁହେଁ । ଏଇ ଏବେ କେଉଁଠି ବା ଘଟିଛି ।

ରୁକ୍ମଣୀଙ୍କ ପୂର୍ବୋକ୍ତ ବନ ବିହାର ବର୍ଣ୍ଣନା ନାରଦଙ୍କ ମୁଖରେ ପୁନର୍ବାର କବି ବର୍ଣ୍ଣନା କରି ଥିଲେହେଁ ତାହା କେବେ ପୁନରୁକ୍ତି ବୋଲି ବୋଧ ହେଉନାହିଁ । ସତ୍ କବିମାନେ ଏହିପରି ପୁରାତନ ରଚନା ମାନଙ୍କରୁ ରସ, ଭାବ, ଗଳ୍ପ ଅପହରଣ କରି ଏପରି ରୂପଦେଇ ଦିଅନ୍ତି । ଯାହା ନୂଆ ପରି ଲାଗେ । କେବେ ଜାଣିହୁଏ ନାହିଁ । କାଳିଦାସଙ୍କ କୁମାର ସମ୍ଭବ, ଶକୁନ୍ତଳା ରଚନା ଦୁଇଟି ଏପରି ସ୍ୱାତନ୍ତ୍ର୍ୟ ରକ୍ଷା କରିଛି ଯେ ତାହା ମୂଳ ପୁରାଣ କୁ ପରିହାସ କରୁଛି ନିତିପ୍ରତି ।

ରୁକ୍ମଣୀଙ୍କୁ ସୀତାଙ୍କ ସହିତ ତୁଳନା କରି କବି ପୂର୍ବ ବର୍ଣ୍ଣନାକୁ ପାଠକର କ୍ଲାନ୍ତି ହରଣ କରିଦେଇଛନ୍ତି ।

କୃଷ୍ଣଙ୍କ ସମ୍ମୁଖରେ ନୀଳାଚଳ ପୁରୁଷୋତ୍ତମଙ୍କୁ ସେ ଯେପରି ଭାବେ ଥୋଇ ରୁକ୍ମଣୀଙ୍କ ଅଙ୍ଗ ସାଦୃଶ୍ୟ ଦାନ କରିଛନ୍ତି, ତାର ଆଲୋଚନା ସ୍ୱତନ୍ତ୍ର ସ୍ଥାନରେ ଦିଆଯାଇଛି । ତେଣୁ ଏଠାରେ ତାର ଆଲୋଚନା ପୁନର୍ବାର କରିବା ପ୍ରୟୋଜନ ନାହିଁ ।

ପାଠକ ଏ ପଦଟିକୁ ନିଶ୍ଚୟ ଭଲ ପାଇବେ—"ରଥ ଆରୋହି ଯେ ମିଥୁନେ ଭ୍ରମନ୍ତି ଗ୍ରନ୍ଥ କର୍ତ୍ତାର ସେ ଭେକ, ହେ ସୁଜନେ ।"

ଏ ଛାନ୍ଦରେ ପଦ୍ମମଣି ନିଜକୁ ସର୍ବସ୍ୱ ଗ୍ରନ୍ଥକର୍ତ୍ତା ବୋଲି ଅଭିହିତ କରିଛନ୍ତି । କେବେହେଲେ ନିଜ ନାମ ବା ନିଜ କୁଳ, ବ୍ୟବସାୟ କିଛିହେଲେ ବର୍ଣ୍ଣନା କରି ନାହାନ୍ତି ।

ତେଣୁ ଏହି ଗ୍ରନ୍ଥ ପଦ୍ମମଣି ମହାପାତ୍ରଙ୍କ ରଚନା ନୁହେଁ ବୋଲି କେହି ଅର୍ବାଚୀନ-ବିଦ୍ୱାନ ସାହିତ୍ୟ-ପତ୍ରିକାରେ ପ୍ରବନ୍ଧ ଲେଖି ୧, ୨, ୩, ୪, ୫, ୬, କ୍ରମରେ ପ୍ରମାଣ ନ କରିଲେ ରକ୍ଷା । କାରଣ ପଦ୍ମମଣିଙ୍କ ବଂଶଧର ଏବେ ମଧ୍ୟ ଜୀବିତ ଅଛନ୍ତି । ଏପରିକି ତାଙ୍କ ହାତଲେଖା ପାଣ୍ଡୁଲିପି ମଧ୍ୟ ପୋଥି ଆକାରରେ ବଞ୍ଚି ରହିଛି ।

# ଚତୁର୍ଥ କଳା

( ରାଗ—କନଡ଼ା )

**ଶୃଙ୍ଗାର ରଙ୍ଗ ରତ୍ନାକର ତରଙ୍ଗ ସ୍ନାନୀୟେ ବିହର ମରମେ**
**ପୁଷ୍ପବନ୍ତ ହୋଇଗଲେ ଆରାମେ**
**ହୋଇଲେ ତହିଁ ତ ଏକତ୍ରାବସ୍ଥିତ ରନ୍ଧ୍ର ଦୃଷ୍ଟି ସୂର୍ଯ୍ୟସୋମେ ହେ**
**ରସିକେ !**
**ପାଞ୍ଜିକାରେ କଲେ କୁହୁ ରୋପଣ**
**କଲେ ପଠନ ପିକ ଦ୍ୱିଜଗଣ**
**ମାକନ୍ଦ ମକରନ୍ଦ ଜଳରାଶିରେ ବିଧାନ କରି ତର୍ପଣ ହେ**
**ରସିକେ । ୧ ।**

**ଅନ୍ୱୟ**—ଶୃଙ୍ଗାର ରଙ୍ଗରତ୍ନାକର-ତରଙ୍ଗ ସ୍ନାନୀୟେ ମରମେ ବିହର (କର) । ଆରାମେ ପୁଷ୍ପବନ୍ତ ହୋଇଗଲେ । ସୂର୍ଯ୍ୟ ସୋମେ ଦୃଷ୍ଟି ରନ୍ଧ୍ର ତହିଁତ ଏକତ୍ରାବସ୍ଥିତ ହୋଇଲେ । ହେ ରସିକେ ! ( ତେଣୁ ) ପାଞ୍ଜିକାରେ କୁହୁ ରୋପଣ କଲେ । ମାକନ୍ଦ ମକରନ୍ଦ ଜଳ ରାଶିରେ ତର୍ପଣ ବିଧାନ କରି ପିକ, ଦ୍ୱିଜଗଣ ପଠନ କଲେ ।

**କଥା**—ରତି କୌତୁକ—ସମୁଦ୍ର ଲହରୀ—ସ୍ନାନକାରୀ ମାନେ ଅନ୍ତରରେ ବିହର କରନ୍ତୁ । ବସନ୍ତ ସମାଗତ ହେବାରୁ ବଗିଚା ଗୁଡ଼ିକ ପୁଷ୍ପବନ୍ତ ହୋଇଗଲେ । ଏଠି ପୁଷ୍ପବନ୍ତ ଶବ୍ଦ ଚନ୍ଦ୍ର ସୂର୍ଯ୍ୟ ଉଭୟଙ୍କୁ ବୁଝାଏ । ତେଣୁ ସୂର୍ଯ୍ୟ ଏବଂ ଚନ୍ଦ୍ର ଦୃଷ୍ଟି ଉପରେ ରନ୍ଧ୍ର ସେଠି ଏକତ୍ର ଅବସ୍ଥିତ ହେଲେ ବୋଲି ବୁଝାଗଲା ।

ହେ ରସିକ ବ୍ୟକ୍ତି ମାନେ ! ତେଣୁ ପଞ୍ଜିକାର ଗଣକମାନେ ଅମାବାସ୍ୟା ବୋଲି ନିଶ୍ଚିତ କଲେ । ଫଳରେ ବସନ୍ତ ସମାଗମ ଯୋଗୁଁ ଆମ୍ବ ବଉଳ ମକରନ୍ଦ ରୂପକ ଜଳ ସମୂହରେ ତୃପ୍ତି ବିଧାନ କରି କୋକିଳ ଏବଂ ଭ୍ରମରମାନେ ମଧୁର ଧ୍ୱନି କଲେ । ଅମାବାସ୍ୟା ବୋଧକରି ଆମ୍ବ ବଉଳରୁ ଜାତ ମଧୁକୁ ଜଳ ମଣି ସେଥିରେ ପିତୃ ସନ୍ତୋଷ ଲାଗି ତର୍ପଣ ବିଧି କରି ବ୍ରାହ୍ମଣ ମାନେ ବେଦ ପାଠ କଲେ ।

**ଆଲୋଚନା**—ଅମାବାସ୍ୟାରେ ଚନ୍ଦ୍ର ସୂର୍ଯ୍ୟ ସମସୂତ୍ରରେ ରନ୍ଧ୍ର ପରସ୍ପର ଦୃଷ୍ଟିରେ ଥାନ୍ତି ।

---

ଶବ୍ଦାର୍ଥ । ପୁଷ୍ପବନ୍ତ—ଚନ୍ଦ୍ର ଓ ସୂର୍ଯ୍ୟ, ପୁଷ୍ପଭରା । ମାକନ୍ଦ—ଆମ୍ବ । ଶୃଙ୍ଗାର—ରତି । ରଙ୍ଗ—କୌତୁକ । ସ୍ନାନୀୟେ—ସ୍ନାନକାରୀ । ଆରାମ—ବଗିଚା । ସୂର୍ଯ୍ୟସୋମେ—ଚନ୍ଦ୍ର ସୂର୍ଯ୍ୟ ଦୁହେଁ । କୁହୁ—ଅମାବାସ୍ୟା । ଦ୍ୱିଜଗଣ—ଭ୍ରମର ଗଣ, ବ୍ରାହ୍ମଣ ଗଣ । ମକରନ୍ଦ—ମଧୁ । ତର୍ପଣ—ତୃପ୍ତ, ତର୍ପଣ କରିବା ।

**ବନଗୃହ-ପ୍ରଥା ବନପ୍ରିୟ କଥା ରଥାଙ୍ଗୀ ମନକୁ ମୋହନ୍ତେ,**
**ମନ୍ଦ ଚନ୍ଦନାଦ୍ରି-ବାତ ବହନ୍ତେ**
**କଉମୋଦୀକ ଧର କଉମୋଦକ ନଧଇଲେ ଅନ୍ତର୍ଗତେ ହେ**
**ରସିକେ**
**ବସ୍ତୃରଲେ ମଧୁ ମିତ୍ର ହୁଅନ୍ତ**
**ଚକ୍ରି ଚକ୍ର ଚର୍ବଣୁ ଆସିଛନ୍ତ**
**ଶଙ୍ଖୋଳା ଭାବରେ ମଜ୍ଜାଇ ମନକୁ ବନକୁ ରଚଲେ ଗତ ସେ**
**ମାଧବ । ୨ ।**

**ଅନ୍ୱୟ**—ବନଗୃହ-ପ୍ରଥା, ବନପ୍ରିୟ-କଥା ରଥାଙ୍ଗୀ(ଙ୍କ) ମନକୁ ମୋହନ୍ତେ (ଏବଂ) ମନ୍ଦ ଚନ୍ଦନାଦ୍ରି-ବାତ ବହନ୍ତେ କଉମୋଦୀକ ଧର ଅନ୍ତର୍ଗତେ କଉମୋଦ ନଧଇଲେକ ? (ସେ) ବସ୍ତୃରଲେ (ଯେ) ଚକ୍ରି-ଚକ୍ର-ଚର୍ବଣୁ ଆସିଛନ୍ତ (ଉକ୍ତ ମଳୟକୁ) ବସ୍ତୃରଲେ (ସ୍ୱେ) ମଧୁ ମିତ୍ର ହୁଅନ୍ତ । ( ତେଣୁ ) ଶଙ୍ଖୋଳା ଭାବରେ ମନକୁ ମଜ୍ଜାଇ (ସେ) ମାଧବ ବନକୁ ଗତି ରଚଲେ ।

**କଥା**—ବନର ପୁଷ୍ପିତ ଶୋଭାମୟ ଭଙ୍ଗି ଏବଂ କୋକଳର କୁହୁତାନ କୃଷ୍ଣଙ୍କ ମନକୁ ମୁଗ୍ଧ କରନ୍ତେ, ପୁନଶ୍ଚ ମଳୟ ପର୍ବତର ମନ୍ଦ ପବନ ବହନ୍ତେ କୌମୋଦକୀ ଗଦା ଧାରଣକାରୀ ବିଷ୍ଣୁରୂପୀ କୃଷ୍ଣଅନ୍ତର୍ଗତରେ କେଉଁ ଆନନ୍ଦ ବା ନ ଲଭିଲେ ? ସେ ବିସ୍ତର କଲେ ମଳୟ ପର୍ବତର ନନ୍ଦନ (ପବନ) ତରୁ କୋଟରରେ ଥିବା ସର୍ପମାନଙ୍କ ମୁଖ ବିବରରୁ ଉଦ୍ଧାର ଲଭି ଏହି ମଳୟ ପବନ ନିଜର ମିତ୍ର ବସନ୍ତ ନିକଟକୁ ଆସିଅଛନ୍ତି । ବନ୍ଧୁ ସଙ୍ଖୋଳା ଉପରେ ଦୁହେଁ ଦୁହିଁଙ୍କୁ କରିବେ, ସେହି ଭାବରେ ମନକୁ ମଜ୍ଜିତ କରି ସେହି ମାଧବ କୃଷ୍ଣ ବନକୁ ନିଜର ମନୋହର ଗତି ରଚନା କଲେ । ଅର୍ଥାତ୍ ବନକୁ ଗଲେ ।

ଶବ୍ଦାର୍ଥ । ଗୃହ—ଶୃଙ୍ଗାର ରସର ଉଦ୍ଦୀପନକାରୀ ମଧୁରତା । ନୃତ୍ୟଭଙ୍ଗୀ, ଯେପରି (ଭୂଗୃହ, ଆକାଶଗୃହ, ଯେପରି ବନଗୃହ) । ପ୍ରଥା—ବନର ଶୋଭାମୟ ଉଦ୍ଦୀପନ ଭଙ୍ଗୀ । ବନପ୍ରିୟ—କୋକଳ । ରଥାଙ୍ଗୀ—ବିଷ୍ଣୁରୂପୀ କୃଷ୍ଣ । ଚନ୍ଦନାଦ୍ରି—ମଳୟ ପର୍ବତ । ବାତ—ପବନ । କଉମୋଦକୀ ଧର—କୌମୋଦକୀ ଗଦାଧର, ବିଷ୍ଣୁରୂପୀ କୃଷ୍ଣ । କଉ—କେଉଁ । ମୋଦ—ମାଧୁର୍ଯ୍ୟ, ଆନନ୍ଦ । ମଧୁ—ବସନ୍ତକାଳ । ଚକ୍ରୀ—ସର୍ପ । ଚକ୍ର—ସମୂହ । ଚର୍ବଣ—ଗ୍ରାସରୁ । ଶଙ୍ଖୋଳା—ଆଦର ଅଭ୍ୟର୍ଥନା ।

ଦେଖିଲେ ତମାଲ ବକଚ କମଳ ନଟ ଖଞ୍ଜରୀଟ ବିହଙ୍ଗ
ମୂଳ ଶୁକର ପ୍ରଫୁଲ୍ଲିତ ଅଙ୍ଗ
ସମୀର ସଞ୍ଚାରେ ମଲ୍ଲୀ ବଧୂଲୀର ଅଭଙ୍ଗ ହୋଇଛି ସଙ୍ଗ ସେ
କାନନେ
ଶୋଭା-ପଟଳ ପାଟଣା ପାଟଳୀ
ଶଶି-ଜ୍ୟୋତିନନ୍ଦକ କୁନ୍ଦ କଳି
ଜମ୍ବୁନଦ କଳ-କମ୍ବୁ ଏକମେଳ ଅମ୍ବୁ ଯିବା ପାଇଁ ଖେଳ ସେ
କାନନେ । ୩ ।

**ଅନ୍ୱୟ**—(ସେ) କାନନେ ଦେଖିଲେ ତମାଲ, ବକଚ କମଳ, ନଟ-ଖଞ୍ଜରୀଟ ବିହଙ୍ଗ, ମୂଳ, ଶୁକ'ର ପ୍ରଫୁଲ୍ଲିତ ଅଙ୍ଗ (ଏବଂ) ସମୀର ସଞ୍ଚାରେ ମଲ୍ଲୀ ବଧୂଲୀର ସଙ୍ଗ ଅଭଙ୍ଗ ହୋଇଛି । (ପୁଣି ଦେଖିଲେ) ପାଟଳୀ ଶୋଭା ପଟଳ ପାଟଣା, ଶଶି-ଜ୍ୟୋତିନନ୍ଦକ କୁନ୍ଦକଳି । (ତହିଁ) ଅମ୍ବୁ ଖେଳିଯିବା ପାଇଁ ଜମ୍ବୁନଦ କମ୍ବୁ (ମାନଙ୍କର) ଏକମେଳ କଳ (ଟିଏ ଅଛି) ।

**କଥା**—ସେ ବନରେ ପ୍ରବେଶ କରି ଭିନ୍ନ ଭିନ୍ନ ସ୍ଥାନରେ ଦେଖିଲେ କେଉଁଠି ତମାଳ, କେଉଁଠି ଫୁଟନ୍ତା ପଦ୍ମ, କେଉଁଠି ନୃତ୍ୟଶୀଳ ଖଞ୍ଜନ ପକ୍ଷୀ, କେଉଁଠି ପଦ୍ମନାଳ, କେଉଁଠି ଆନନ୍ଦପ୍ରଦ ଶୁଆର ସୁନ୍ଦର ଦେହ ଏବଂ ପୂର୍ବୋକ୍ତ ମଳୟ ପବନ ସଞ୍ଚାରିତ ହେଉ କେଉଁଠି ମଲ୍ଲୀଫୁଲ ବଧୂଲୀଫୁଲ ଏକାବେଳେ ମିଶି ଯାଇଛନ୍ତି । ପୁଣି ଦେଖିଲେ ପାଟଳୀ ଫୁଲ ଏତେ ଫୁଟିଛି ଯେ ଶୋଭାପୂର୍ଣ୍ଣ ଏକ ଫୁଲର ବଜାର ପରି ତା ଦେଖା ଯାଉଛି । କୁନ୍ଦ କଢ଼ିମାନ ଏତେ ସୁନ୍ଦର ଦେଖାଯାଉଛି ଯେ ତାହା ନିଜ ସୌନ୍ଦର୍ଯ୍ୟରେ ଚନ୍ଦ୍ରମାର କୌମୁଦୀକୁ ନିନ୍ଦା କରୁଛି । ପୁଣି ଦେଖିଲେ ସେଠାରେ ଜଳ ଖେଳିଯିବା ପାଇଁ ସୁନାର ଶଙ୍ଖ ସବୁ ଯୋଡ଼ି ଗୋଟିଏ କୌଶଳ ପୂର୍ଣ୍ଣ ଯନ୍ତ୍ର କରାଯାଇଛି ।

---

ଶବ୍ଦାର୍ଥ । ବକଚ—ଫୁଟନ୍ତା । ନଟ—ନର୍ତ୍ତକୀ । ଖଞ୍ଜରୀଟ—ଖଞ୍ଜନ । ମୂଳ—ପଦ୍ମନାଳ । ଅଭଙ୍ଗ—ମିଶ୍ରଣ । ଖେଳ—ଇତସ୍ତତଃ ସ୍ଖଳିତ ହୋଇ । କଳ—କନ୍ଦର, କୌଶଳ । ପଟଳ—ସମୂହ । ପାଟଣା—ବଜାର । ଶଶିଜ୍ୟୋତି—କୌମୁଦୀ, ଜ୍ୟୋତ୍ସ୍ନା । ନନ୍ଦକ—ନିନ୍ଦାକାରୀ । କଳି—କଢ଼ି । ଜମ୍ବୁନଦ—ସ୍ୱର୍ଣ୍ଣ । ଏକମେଳ—ଯୋଡ଼ା ।

ବିକାଶ କେତକୀ ଶିରୀଷ ମଞ୍ଜୁଳତର ବଲ୍ଲି ଶିଖେ ଚମ୍ପକ—
କଢ଼ି ଗଢ଼ିଛି ନିଆଳି କୋରକ
କୂପ ତଟେ ପାତ ନୀଳମଣି ମିନାମେଲ ମଞ୍ଜୁ ରଞ୍ଜୁ ସେ ଏକ
କାନନେ
ଉଡ଼ୁଛନ୍ତି ପ୍ରଫୁଲ୍ଲ ଫୁଲ ଧୂଳି
ରମ୍ଭା ପାଦପ ମନ୍ଦାର କଙ୍କେଳି
କଳି ଜାଇ କଳି ଗୋଟିକ ଗୋଟି ସେ ଯୋଟିଲେ ଏପରି
ଭାଳି ସେ । ୪ ।

**ଅନ୍ୱୟ:**—ସେ କାନନେ ବିକାଶ କେତକୀ ଶିରୀଷ (ଏବଂ) ଚମ୍ପକ କଢ଼ି ମଞ୍ଜୁଳତର (ହୋଇଛନ୍ତି) । ନିଆଳି ବଲ୍ଲି ଶିଖେ କୋରକ ଗଢ଼ିଛି । ଏକ ନୀଳମଣି ମିନା ମେଳ ମଞ୍ଜୁ ରଞ୍ଜୁ କୂପତଟେ ପାତ (ହୋଇଛି) । ପ୍ରଫୁଲ୍ଲ ଫୁଲ ଧୂଳି ଉଡ଼ୁଛନ୍ତି । ରମ୍ଭା ପାଦପ (ଏବଂ) ମନ୍ଦାର-କଙ୍କେଳି-କଳି (ଓ) ଜାଇ କଳି (ଦେଖି) ଗୋଟିକ ଗୋଟି ସେ ଏପରି ଭାଳି ଯୋଟିଲେ ।

**କଥା:**—ସେ ବନରେ କ୍ରମେ କ୍ରମେ ଫୁଟନ୍ତା କେତକୀ, ଶିରୀଷ ଫୁଲ ସାଙ୍ଗକୁ ଚମ୍ପାକଢ଼ି ମଞ୍ଜୁଳତର ହୋଇଛନ୍ତି । ନିଆଳି ଲତାର ଅଗ୍ର ଭାଗରେ କଢି ଦେଖାଯାଉଛି । ଗୋଟିଏ ଇନ୍ଦ୍ରନୀଳ ମଣି ଗିଲଟି ହୋଇଥିବା ସୁନ୍ଦର ଦଉଡ଼ି ସେଠାର କୂଅ ପାଖରେ ପଡ଼ିଛି । ଫୁଟନ୍ତା ଫୁଲର ରଜ ସବୁ ଉଡ଼ୁଛି । କଦଳୀ ଗଛ, ମନ୍ଦାର, ଅଶୋକ କଳିକା ଏବଂ ଜାଇ କଢ଼ୀ ଦେଖି ଗୋଟିକ ଗୋଟି ସେ ଏପରି ଭାବନା କରି ଯୋଡ଼ିଲେ ।

---

ଶବ୍ଦାର୍ଥ । ବିକାଶ—କ୍ରମେ କ୍ରମେ ଫୁଟିବା । ବଲ୍ଲି—ଲତିକା । ଶିଖେ—ଅଗ୍ରଭାଗରେ । କୋରକ—କଢ଼ି । ଗଢ଼ିଛି—ଜନ୍ମାଇଛି । ନୀଳମଣି—ଇନ୍ଦ୍ରନୀଳମଣି । ମିନା ଖେଳ—ଗିଲଟି ହୋଇଥିବା । ମୀନା—ସୂକ୍ଷ୍ମକାମ । ମଞ୍ଜୁ—ସୁନ୍ଦର । ରଜ୍ଜୁ—ଦଉଡ଼ି । ପ୍ରଫୁଲ୍ଲ—ଫୁଟନ୍ତା । କଙ୍କେଳି—ଅଶୋକ ।

**କେଶ, ମୁଖ, ଦୃଶ, ନାସା, ଶ୍ୱାସ, ହାସ, ଓଷ୍ଠ, ଶ୍ରବଣ, ଦନ୍ତକୁଳ**
**କଣ୍ଠ, କଳେବର ବର୍ଣ୍ଣ, କୋମଳ**
**ବାହୁ, ଅଙ୍ଗୁଳି, ନଖ, ନାଭି, ରୋମାଳି, କଟି, ଜାନୁ, ପଦାଙ୍ଗୁଳି ସେ**
**ହେବାରୁ**
**ବନମାଳୀ ମନେ ବନ ବନିତା**
**ଲକ୍ଷଣରେ ଦକ୍ଷିଣ ହୋଇ ଚିନ୍ତା**
**ପପ୍‌ଲ, ବଟ, ବଟପି କରେ କର ନିକ୍ଷେପିଲେ କ୍ଷପାଭର୍ତ୍ତା ସେ**
**ହେବାରୁ । ୫ ।**

**ଅନ୍ୱୟ**—କେଶ, ମୁଖ, ଦୃଶ, ନାସା, ଶ୍ୱାସ, ହାସ, ଓଷ୍ଠ, ଶ୍ରବଣ, ଦନ୍ତକୁଳ, କଣ୍ଠ, କଳେବର ବର୍ଣ୍ଣ ଓ କୋମଳ, ବାହୁ, ଅଙ୍ଗୁଳି, ନଖ, ନାଭି, ରୋମାଳି, କଟି, ଜାନୁ, ପଦାଙ୍ଗୁଳି (ସମ) ହେବାରୁ ବନମାଳୀ ମନେ ମନେ ବନ ବନିତା ଲକ୍ଷଣରେ ଦକ୍ଷିଣ (ନାୟକ) ହୋଇ ଚିନ୍ତା (କରିବା ବେଳେ) ପିପ୍‌ପଳ, ବଟ ବଟପି-କରେ କ୍ଷପାଭର୍ତ୍ତା କର ନିକ୍ଷେପିଲେ ।

**କଥା**—କେଶ ତମାଳ ସଦୃଶ, ମୁଖ କମଳ ସଦୃଶ, ଦୃଶ ଖଞ୍ଜନ ସଦୃଶ, ନାସା ଶୁକ ସଦୃଶ, ଶ୍ୱାସ ଜାଇଫୁଲର ସୁଗନ୍ଧ ସଦୃଶ, ହାସ ମଲ୍ଲୀ ସଦୃଶ, ଓଷ୍ଠ ବନ୍ଧୁଲି ଓ ଜବା ସଦୃଶ, ଶ୍ରବଣ ପାଟଳୀ ସଦୃଶ, ଦନ୍ତ ସବୁ କୁନ୍ଦ ସଦୃଶ, କଣ୍ଠ ଶଙ୍ଖ ସଦୃଶ, କଳେବର ବର୍ଣ୍ଣ କେତକୀ ସଦୃଶ, କଳେବରର କୋମଳତା ଶିରୀଷ ସଦୃଶ, ବାହୁ ପଦ୍ମନାଳ ସଦୃଶ, ହସ୍ତ ଅଙ୍ଗୁଳି ଚମ୍ପକ କଢ଼ି ସଦୃଶ, ନଖ ନଆଳି ସଦୃଶ, ନାଭି କୂପ ସଦୃଶ, ରୋମାଳି କୂପ ରଜ୍ଜୁ ସଦୃଶ, କଟୀ ପୁଷ୍ପରଜ ସଦୃଶ ସୂକ୍ଷ୍ମ, ଜାନୁ କଦଳୀ ଗଛ ସଦୃଶ, ପଦାଙ୍ଗୁଳି ଅଶୋକ କଳିକା ସଦୃଶ ସମାନ ହେବାରୁ କୃଷ୍ଣ ମନେ ମନେ ଏହି ବନକୁ ବନିତା ଲକ୍ଷଣରେ ପୁଣି ବହୁ ବନିତା ଦୃଷ୍ଟିରେ ଦକ୍ଷିଣ ନାୟକ ହୋଇ ଚିନ୍ତା କରିବାବେଳେ ସେଠାରେ ଥିବା ଓସ୍ତ, ବର ବୃକ୍ଷ ଶାଖା ଉପରେ ଚନ୍ଦ୍ରମା କିରଣ ନିକ୍ଷେପ କଲେ ।

---

ଶବ୍ଦାର୍ଥ । ଦୃଶ—ନେତ୍ର । ଶ୍ୱାସ—ନିଶ୍ୱାସ ପବନ । ଦନ୍ତକୁଳ—ଦନ୍ତ ସବୁ କଳେବର—ଅଙ୍ଗ, ଦେହ । ବର୍ଣ୍ଣ—ରଙ୍ଗ । କୋମଳ—କୋମଳତା । ରୋମାଳି—ରୋମପଙ୍କ୍ତି । ବନ ବନିତା—ବନରୂପିଣୀ ରମଣୀ । ଦକ୍ଷିଣ ନାୟକ—ଯେ ବହୁ ନାୟିକାରେ ମାନସ ରଖେ ଓ ସମସ୍ତଙ୍କୁ ସନ୍ତୋଷ ଦିଏ । ପିପ୍‌ପଳ—ଓସ୍ତ । ବଟ—ବର । କ୍ଷପାଭର୍ତ୍ତା—ଚନ୍ଦ୍ରମା । କରେ—ବାହୁରେ, ଶାଖାରେ । କର—କିରଣ ।

**ଗୋପ ଗଉରାଙ୍ଗୀ ଚିତ୍ତଚୋର ତାଙ୍କ ମୂଳ ଚଉରାକୁ ଅନାଇଁ**
**ବର୍ଣ୍ଣିଲେ ବକ୍ଷୋଜ ଯୁଗ ଏହୁ**
**ପରିପାଟିରେ ମୃଗମଦ ପାଟିରେ ପତ୍ରାବଳୀ ଅଛି କି ଲିହୁ**
**ରୁଚିରେ**
**ବସନରେ କରିନାହିଁ ଆବୃତ**
**ବଶ ନରେ ହେବାରେ ଅଛି ଚିତ୍ତ**
**ମଣି ଏ ଗଣିକା ମଣି ଅଟ୍ଟାଳିକା ଉତ୍ସଙ୍ଗେ ହୋଇଲେ ସ୍ଥିତ ଯେ**
**ମାଧବ । ୭ ।**

**ଅନ୍ୱୟ**—ଗୋପ ଗଉରାଙ୍ଗୀ ଚିତ୍ତଚୋର ତାଙ୍କ ମୂଳ ଚଉରାକୁ ଅନାଇଁ ବର୍ଣ୍ଣିଲେ (ବନ ବନିତାର) ଏହୁ ବକ୍ଷୋଜ ଯୁଗ ପରିପାଟିରେ ମୃଗମଦ ପାଟିରେ ପତ୍ରାବଳୀ ଲିହୁଅଛି କି ? ରୁଚିରେ ବସନରେ ଆବୃତ କରି ନାହିଁ । (ତେଣୁ) ନରେ ବଶ ହେବାରେ ଚିତ୍ତ (ଏହାର) ଅଛି । ମାଧବ (ଏହା) ମଣି ଏ ଗଣିକାମଣି ଅଟ୍ଟାଳିକା ଉତ୍ସଙ୍ଗେ ସ୍ଥିତ ହୋଇଲେ ।

**କଥା**—ଗୋପର ସ୍ୱର୍ଣ୍ଣବର୍ଣ୍ଣା ଗୋପାଙ୍ଗନାମାନଙ୍କ ଚିତ୍ତ ହରଣ କାରୀ ଦକ୍ଷିଣ ନାୟକ କୃଷ୍ଣ ଚନ୍ଦ୍ରକରଣରେ ବର ଓ ଓସ୍ତ ଗଛର ମୂଳରେ ଥିବା ବେଦୀ ଦୁଇଟିକୁ ଅନାଇଁ ବର୍ଣ୍ଣନ କଲେ ଏ ସ୍ଥଳ ବନ୍ୟ ବନିତାର ମିଳନ କ୍ଷେତ୍ର ନୁହେଁ । ବନ ରୂପିଣୀ ବନିତା ଏ ଅଟେ । କାରଣ ଏହୁ ବେଦୀ ଦୁଇଟି ଉକ୍ତ ରମଣୀର କୁଚଯୁଗଳ ଅଟେ । ତାକୁ ସେ ଜାକ ଜମକରେ କସ୍ତୂରୀ ରଚନାରେ ପତ୍ର ସବୁ ଲେଖି ସଜାଇ ଅଛି । ଏହା ଫିଟେଇ ରଖି ସୁନ୍ଦର ବସ୍ତ୍ରଦ୍ୱାରା ଆବୃତ କରି ନାହିଁ । ତେଣୁ ସାଧାରଣ ମନୁଷ୍ୟକୁ ବଶ କରିବାକୁ ଏହାର ମନ ଇଚ୍ଛୁଛି । ଏହା ମନେ କରି ସେ କୃଷ୍ଣ ତାକୁ ଗୋଟିଏ ବେଶ୍ୟା ମନେକରି ସେଠାରୁ ପଳାଇ ଏକ ପକ୍କା ଘରେ ପଶିଗଲେ ।

ଶବ୍ଦାର୍ଥ । ଗଉରାଙ୍ଗୀ—ଗୌର ବର୍ଣ୍ଣା, ସ୍ୱର୍ଣ୍ଣ ବର୍ଣ୍ଣା । ଚିତ୍ତଚୋର—ମନହରଣକାରୀ । ତାଙ୍କ—ଉକ୍ତ ଓସ୍ତ ଓ ବର ଗଛର । ମୂଳ ଚଉରା—ଗଛ ମୂଳରେ ଥିବା ବେଦୀକା । ବକ୍ଷୋଜ—କୁଚ, ସ୍ତନ । ଯୁଗ—ଦୁଇ । ପରିପାଟୀ—ସାଜସଜ୍ଜା । ମୃଗମଦ—କସ୍ତୂରୀ । ପାଟି—ରଚନା । ଲିହୁ—ଲେଖି । ରୁଚିରେ—ସୁନ୍ଦରଭାବରେ । ବସନରେ—ବସ୍ତ୍ରରେ । ଆବୃତ—ଘୋଡାଇବା । ନରେ—ସାଧାରଣ ମନୁଷ୍ୟଙ୍କୁ । (ବେଶ୍ୟା ସାଧାରଣ ମନୁଷ୍ୟଙ୍କୁ ବଶ କରିବାକୁ ନିଜ ବକ୍ଷ, ଜାନୁ ଉନ୍ମୁକ୍ତ କରି ଅଙ୍ଗଭଙ୍ଗି କରିଥାଏ । କିନ୍ତୁ ତାହା ଗୃହସ୍ଥ ନାରୀ ପକ୍ଷରେ ସମ୍ଭବ ନୁହେଁ ।) ଗଣିକା—ବେଶ୍ୟା, ଅସତୀ ସ୍ତ୍ରୀ । ଉତ୍ସଙ୍ଗେ—କୋଡରେ, ମଧ୍ୟରୁ ।

**ସୁବାସବତୀ ସୁମନସ ସୁପାତ ଶେଯେ ବଜେକର ଗବାକ୍ଷ**
**ନିଦ୍ରା ମୁଦ୍ରାରେ ହୁଅନ୍ତ ବପକ୍ଷ**
**ଉଦୟ ସୁରଙ୍ଗ ହୃଦୟ କୁରଙ୍ଗ ଧାରୀ ଦରଶନେ ଦକ୍ଷ ସେ**
**ମାଧବ**
**ଲୟକଲେ ଅକାୟ ଅୟୁଡ଼ାଲ**
**ମେଳ ବନାତ ଖୋଲେ ଅନ୍ତରାଳ**
**ରୁଦ୍ଧତା ଭଙ୍ଗୁଛି ଯୁଦ୍ଧାଗମ ଇଚ୍ଛି ଦଶେ ଫଳକ ଶ୍ୟାମଳ କ**
**ରୁଶରେ । ୭ ।**

**ଅନ୍ୱୟ**—ସୁବାସବତୀ ସୁମନସ ଶେଯେ ବଜେକର ନିଦ୍ରା ମୁଦ୍ରାରେ (ଥିବା) ଗବାକ୍ଷ ବପକ୍ଷ ହୁଅନ୍ତେ, କୁରଙ୍ଗଧାରୀ ସୁରଙ୍ଗ ହୃଦୟ ଉଦୟ ଦରଶନେ ଦକ୍ଷ (ହେଲେ) । ସେ ମାଧବ, ଲୟକଲେ, ଅକାୟ ଅୟୁଡ଼ାଲ ବନାତ ଖୋଲେ ଅନ୍ତରାଳ ମେଳ ରୁଦ୍ଧତା ଯୁଦ୍ଧାଗମ ଇଚ୍ଛି ଭଙ୍ଗୁଛି । ତେଣୁ (ଉକ୍ତ) ଫଳକ ଶ୍ୟାମଳ ଦଶେ ।

**କଥା**—ଏକାନ୍ତ ସୁଗନ୍ଧ-ସମ୍ପନ୍ନ ପୁଷ୍ପ-ଶଯ୍ୟାରେ ବଜୟ କର ଜଳା-କବାଟିର ନିଦ୍ରା ମୁଦ୍ରାରେ ବକ୍ଷପ ହୋଇ ତାହା ଫିଟେଇ ଦେଲେ । ମୃଗ ଲାଞ୍ଛନ ନୀଳରଙ୍ଗର ଦେହଧାରୀ ଚନ୍ଦ୍ରମାଙ୍କ ଉଦୟ ହେବା ଦୃଶ୍ୟକୁ ଦେଖିଲେ । ସେ କୃଷ୍ଣ ମନୋଯୋଗ କର ଦେଖିଲେ ଅନଙ୍ଗ ବନାତ ଖୋଳ ଭିତରେ ଥିବା ତାର ଇସ୍ପାତ ଢ଼ାଲକୁ ଯୁଦ୍ଧଯାତ୍ରା ଇଚ୍ଛାକର ଯେପର ଖୋଲୁଛି । ତେଣୁ ଯେତକ ସମୟ ଯାଉଛି, ସେତକ ଚନ୍ଦ୍ରମାର କଳଙ୍କ ପରିଷ୍କାର ଦେଖାଯାଇ ନୀଳଅଂଶ ଫାକୁଟିଆ ( ଫିକା ) ଦେଖା ଯିବାରୁ କାମ ଢାଲ ଯେପର ଶ୍ୟାମଳ ଦେଖା ଯାଉଛି ।

---

ଶବ୍ଦାର୍ଥ । ସୁବାସବତୀ—ସୁଗନ୍ଧ । ସୁମନସ—ପୁଷ୍ପ । ନିଦ୍ରା ମୁଦ୍ରା—ନିଦମୁଦ । ଗବାକ୍ଷ—ଜଳା କବାଟି । କୁରଙ୍ଗ ଧାରୀ—ମୃଗଲାଞ୍ଛନ, ଚନ୍ଦ୍ରମା । ସୁରଙ୍ଗ—ନୀଳ । ହୃଦୟ—ଦେହ । ଲୟ—ମନଯୋଗ । ଅକାୟ—ଅନଙ୍ଗ, କାମଦେବ । ବନାତ—ନୀଳ ରଙ୍ଗର ବସ୍ତ୍ର ସ୍ୱଦର ଓ ବନା । ଅୟ—ଇସ୍ପାତ୍ । ମେଳ—ବନ୍ଧାଥିବା । ରୁଦ୍ଧତା—ରୁଦ୍ଧ ହୋଇଥିବା । ଯୁଦ୍ଧାଗମ—ଯୁଦ୍ଧଯାତ୍ରା । ଫଳକ—ଢ଼ାଲ । ଶ୍ୟାମଳ—କୃଷ୍ଣ ।

**ପାତକ-ପାରଦ-ପାବକ ନାରଦ ଏକାଳେ ସେଠାରେ ପ୍ରବେଶ**
**ଜଟିବର ଜଟି ନେବେ ମାନସ**
**ପେଟେ ଏ କପଟ ରଖି ଅପ୍ରକଟ କରିଛନ୍ତି ମୁଖେ ହାସ ଯେ**
**ନାରଦ**
**ନମି ସମର୍ପିଲେ ପୃଷ୍ଠ—ଆସନ**
**କମି କାହିଁକି କରିଛ ପ୍ରସନ୍ନ**
**ଗୃମୀକରାମ୍ବର ପଚ୍ଛିରୁଁ ଅମର-ଯତି ବଦନ୍ତି ଏସନ ହେ**
**ସୁଜନ ।୮।**

**ଅନ୍ୱୟ**—ପାତକ ପାରଦ(ର) ପାବକ (ସଦୃଶ) ନାରଦ ଏକାଳେ ସେଠାରେ ପ୍ରବେଶ (ହେଲେ)। (ଏ) ଜଟୀବର ମାନସ ଜଟିନେବେ । (କିନ୍ତୁ) ପେଟେ ଏ କପଟ ରଖି ମୁଖେ ହାସ ଅପ୍ରକଟ କରିଛନ୍ତି । (କୃଷ୍ଣ ତାଙ୍କୁ) ନମି ପୃଷ୍ଠ ଆସନ ସମର୍ପିଲେ । ପ୍ରସନ୍ନ କମି କରିଛ କାହିଁକି ?—ଗୃମୀକରାମ୍ବର ପଚ୍ଛିରୁଁ ହେ ସୁଜନ (ମାନେ) ଅମର ଯତି ଏସନ ବଦନ୍ତି ।

**କଥା**—ପାପ ରୂପକ ପାରଦକୁ ଭସ୍ମ କରିବାରେ ଅଗ୍ନିସ୍ୱରୂପୀ ଯେ ନାରଦ ସେ ଏହି ସମୟରେ ସେଠାରେ ପ୍ରବେଶ ହେଲେ । ଏ ମୁନି ଶ୍ରେଷ୍ଠ ସର୍ବଦା ମନକୁ ମୋହିନେବା ବ୍ୟକ୍ତି ଅଟନ୍ତି । କିନ୍ତୁ ଏ ପେଟରେ କପଟ ରଖି ମୁଖରେ ହସ ଲୁଚାଇ ପହଞ୍ଚିଲେ । କୃଷ୍ଣ ତାଙ୍କୁ ନମସ୍କାର କରି ଏକ ପୃଷ୍ଠ ଆସନ ସମର୍ପଣ କଲେ । ପୀତାମ୍ବର କୃଷ୍ଣ ପଚାରିଲେ—ଆପଣ ନିଜର ପ୍ରସନ୍ନତା କମି କରିଛନ୍ତି କାହିଁକି ? ହେ ସୁଜନ ମାନେ ! ତାହାଶୁଣି ସ୍ୱର୍ଗର ଋଷି ଏପରି କହିଲେ । —

ଶବ୍ଦାର୍ଥ । ପାତକ—ପାପ । ପାରଦ—ପାରାଧାତୁ । ପାବକ—ଅଗ୍ନି, ପାରା ଅଗ୍ନିରେ ଭସ୍ମ ହୋଇଥାଏ । **ଜଟୀ**—ମୁନି, ଜଟାଧାରୀ । **ଜଟିବର**—ମୁନିଶ୍ରେଷ୍ଠ । **ଜଟିନେବେ**—ମୋହିନେବେ । **ନମି**—ନମସ୍କାର କରି । ଗୃମୀକର—ସୁନା, ହରିଦ୍ରାରଙ୍ଗ । ଗୃମୀକର ଅମ୍ବର—ସ୍ୱର୍ଣ୍ଣ ରଙ୍ଗ ବିଶିଷ୍ଟ ବସ୍ତ୍ର, ପୀତାମ୍ବର । ଅମର ଯତି—ସ୍ୱର୍ଗଯତି, ନାରଦ ।

**ତୁମ୍ଭର କଥା ପ୍ରସଙ୍ଗ ରୀତ ଆମ୍ଭ ମତ ମନ୍ଥିଲ୍ ବର୍ତ୍ତମାନ**
**ରସି କରୁଅଛ ଶଶୀ ଦର୍ଶନ**
**ଜନ୍ମୁ ଧକା ମୁଦ୍ରାଧରେ ଏ ଖେଦ କା ପାଇଁ କି ଏକାକୀ ଜ୍ଞାନ ହେ**
**ମାଧବ**
**ବସ୍ତ୍ର ନୋହୁଛ ହୋଇଛ ଏକାକୀ**
**ବ ସ୍ତ୍ର ରଖିବେ ଏ ଷଣ୍ଢ ବକା କି**
**ହସି ହୃଷୀକେଶ ଭାଷିଲେ ଭାଷାକୁ ବଜେ କରୁଛ କାହିଁକି ହେ**
**ନାରଦ । ୯ ।**

**ଅନ୍ୱୟ**—ତୁମ୍ଭର କଥା ପ୍ରସଙ୍ଗ ସ୍ୱିତ ଆମ୍ଭ ମତ ମନ୍ଥିଲ । ବର୍ତ୍ତମାନ ରସି ଶଶୀ ଦର୍ଶନ କରୁଅଛ (କାହିଁକି) ? ଏ (ଶଶି) ଏକାକୀ ଜ୍ଞାନ ପାଇଁକି କା' ଖେଦ ଜନ୍ମୁ ଧକା ମୁଦ୍ରାଧରେ । ହେ ମାଧବ ! ବସ୍ତ୍ର ନୋହୁଛ । ଏକାକୀ ହୋଇଛ । ଏ ଷଣ୍ଢ, ବକା କି ବ, ସ୍ତ୍ର ରଖିବେ । ହସି ହୃଷୀକେଶ 'ହେ ନାରଦ ! କାହିଁକି ବଜେ କରୁଛ' ଭାଷାକୁ ଭାଷିଲେ ।

**କଥା**—ନାରଦ କହିଲେ ତୁମ୍ଭର କଥା ଓ ବ୍ୟବହାରସ୍ୱିତ ଆମ୍ଭ ଚିତ୍ତକୁ ମନ୍ଥି ପକାଇଛୁ । କହିବେ କି ବର୍ତ୍ତମାନ ଏତେ ରସିକର ଚନ୍ଦ୍ରମାକୁ ଦେଖୁଛ କାହିଁକି ? ଜାଣନ୍ତୁକି ଏ ଚନ୍ଦ୍ରମା ଜନ୍ମମାନେ ବିରହୀ ମାନଙ୍କୁ ଧକ୍‌କାଦିଏ । ସେମାନଙ୍କ ଜ୍ଞାନକୁ ନାଶ କରିବା ଲାଗି କା'କୁ ତ୍ୟାଗକରି ଧ ମୂର୍ତ୍ତି ଧାରଣ କରେ । କାରଣ ଧ ପରି ଏହାର ପ୍ରତିପଦାର ମୂର୍ତ୍ତି ଅଟେ । ହେ ମାଧବ ! ବସ୍ତ୍ରହୋଇ ନାହିଁ; ଏକୁଟିଆ ଅଛ । ଏହି ଯେଉଁ ଷଣ୍ଢାର, ଜକାର ନାମ ବହୁଛ ଏହି କଣ ତୁମର ବିଶେଷ ପ୍ରତିଷ୍ଠା ରଖିବେ ? ଏହା ଶୁଣି କୃଷ୍ଣ କହିଲେ—ହେ ନାରଦ ! କଣ ପାଇଁ ଆସିଛନ୍ତି କହିଲେ ?

ଶବ୍ଦାର୍ଥ । ଏକାକୀ ଜ୍ଞାନ—ବିରସ୍ତ୍ରୀ । କଥା—ଭାଷା । ପ୍ରସଙ୍ଗ—ବ୍ୟବହାର । ମନ୍ଥିଲ—ଘାଣ୍ଟି ପକାଇଲ । ରସି—ଶ୍ରଦ୍ଧାକରି । ଏକାକୀ—ବିରସ୍ତ୍ରୀ । କା ଖେଦ—ଧକା ର 'କା'କୁ ତ୍ୟାଗକରି ଖେଦ—ଗୁଡ଼ । ବ—ବିଶେଷ । ସ—ମାପ୍ତି; ପ୍ରତିଷ୍ଠା ।

**କହିଲେ ପ୍ରଖରେ ଆସୁଥିଲୁଁ 'ଖ'ରେ ହାଦର୍ଭ ସୀମାରେ ପତନ**
**ନେତ୍ର ହୁଅନ୍ତେ ସେ ଶୋଭା-ଘଟନ**
**ଧରି ନ ଛାଡ଼ିଲା ମୋହର ନୋହିଲା ଯେତେ ମୁଁ କଲି ଯତନ ହେ**
**ମାଧବ**
**ତୁମ୍ଭେ ନେତ୍ର ବିଯୋଗୀ ଜୀବେ ରାଗି**
**ଆମ୍ଭେ ଆଶ୍ରିତେ ଆସିଅଛୁଁ ମାଗି**
**ଶୁଣି କଇଟଭ-ସୂଦନ ବହନେ ଏଗିରେ ହେଲେ ସରାଗି ସେ**
**ମାଧବ । ୧୦ ।**

**ଅନ୍ୱୟ**—କହିଲେ 'ଖ' ରେ ପ୍ରଖରେ ଆସୁଥିଲୁଁ । (ଆମ୍ଭ) ନେତ୍ର ଶୋଭା ଘଟନ ହାଦର୍ଭ ସୀମାରେ ପତନ ହୁଅନ୍ତେ ସେ ଧରି ନ ଛାଡ଼ିଲା । ଯେତେ ମୁଁ ଯତନ କଲି (କେବେ) ମୋହର ନୋହିଲା । (ଶୁଣିଛ) ହେ ମାଧବ ! ତୁମ୍ଭେ ନେତ୍ର ବିଯୋଗୀ ଜୀବେ ରାଗି ଅଛ । ଆମ୍ଭେ ଆଶ୍ରିତେ ମାଗି ଆସି ଅଛୁଁ । (ଏହା) କଇଟଭ-ସୂଦନ ମାଧବ ଶୁଣି ବହନେ ଏ ଗିରେ ସରାଗି ହେଲେ ।

**କଥା**—ନାରଦ କହିଲେ—ଆକାଶରେ ବ୍ୟଗ୍ର ଗତିରେ ଆସୁଥିଲୁଁ । ସୌନ୍ଦର୍ଯ୍ୟର ଲୀଳାଭୂମି ହାଦର୍ଭ ଅଞ୍ଚଳରେ ଆମ୍ଭ ନେତ୍ର ପତନ ହୁଅନ୍ତେ ସେ ଭୂମି ଆମ୍ଭ ଚକ୍ଷୁକୁ ଛାଡ଼ିଦେଲା ନାହିଁ । ଆମ୍ଭେ ଯେତେ ମତେ ଯତ୍ନକଲୁଁ ସେ ନେତ୍ର ଆମ୍ଭ ଆୟତ୍ତକୁ ନ ଆସିଲା । ଶୁଣିଛୁ ହେ ମାଧବ ! ତୁମ୍ଭେ ଜ୍ଞାନ ନେତ୍ରହୀନ ବ୍ୟକ୍ତିଠାରେ ଅଧିକ ଅନୁରାଗୀ ଅଛ । ବହୁଜ୍ଞାନ-ଅନ୍ଧଙ୍କୁ ଜ୍ଞାନ ଚକ୍ଷୁ ଦାନ କରିଛ । ଆମ୍ଭେ ଆଶ୍ରୟ ପାଇବା ଲାଗି ମାଗି ଆସିଅଛୁଁ । ମୋତେ ମୋ ଆଖି ଦୁଇଟି ଦାନକର । କୈଟଭ-ଅସୁର-ହନ୍ତାକାରୀ ମାଧବ ଏହାଶୁଣି ତୁରନ୍ତ ଏହିକଥା କହିବାରେ ଅନୁରାଗି ହେଲେ । —

ଶବ୍ଦାର୍ଥ : ଖ—ଆକାଶ । ପ୍ରଖରେ—ବ୍ୟଗ୍ରରେ । **ଶୋଭା-ଘଟନ—ଶୋଭାପ୍ରଦ,** ଶୋଭା ଜନକ, ଶୋଭାର ଲୀଳାଭୂମି । ସୀମା—**ଅଞ୍ଚଳ** । ବିଯୋଗୀ—ବିରହିତ । ଜୀବେ—ପ୍ରାଣୀରେ । ରାଗି—ଅନୁରାଗି, ସ୍ନେହ । ଆଶ୍ରିତେ—ଆଶ୍ରୟାର୍ଥେ । କୈଟଭ—ମଧୁ କୈଟଭ ମଧ୍ୟରୁ ଏକ ଦୈତ୍ୟ । ସୂଦନ—ହତ୍ୟାକାରୀ । ସରାଗି—ଅନୁରାଗି ।

**ଦେବରାଜ ଆମ୍ଭ ଅଗ୍ରଜ ଯେ ତୁମ୍ଭ କୁଳୁ ସହସ୍ର ସଂଖ୍ୟା ନେତ୍ର**
**ଆଣି ମଣ୍ଡନ କରିଛନ୍ତି ଗାତ୍ର**
**ତୁମ୍ଭେ ତାହା ଯାହା ମାଗୁଛ ମଣିଲି ମନେ ମୁଁ ମହାବିଚିତ୍ର ସେ**
**ନାରଦ**
**ଭେଳଭାବରେ ରସାଇ ତହିଁରୁ**
**ଷୋଳ ସହସ୍ର ଆଣି କଲ ଭୀରୁ**
**ତାଙ୍କ ନେତ୍ର ଯାହା ହରିଲ ଏ ବେନି ବିଚିତ୍ରେ ହେବକି ଗୁରୁହେ**
**ମାଧବ । ୧୧ ।**

**ଅନ୍ୱୟ:**—ଯେ ଆମ୍ଭ ଅଗ୍ରଜ ଦେବରାଜ (ସେ) ତୁମ୍ଭ କୁଳୁ ସହସ୍ର ସଂଖ୍ୟା ନେତ୍ର ଆଣି ଗାତ୍ର ମଣ୍ଡନ କରିଛନ୍ତି । ତୁମ୍ଭେ ତାହା ଯାହା ମାଗୁଛ ମନେ ମୁଁ ମହାବିଚିତ୍ର ମଣିଲି । ସେ ନାରଦ (କହିଲେ)—ହେ ମାଧବ ! ତହିଁରୁ ଭାବରେ ଭେଳ (କରି) ଷୋଳ ସହସ୍ର ଆଣି ରସାଇ ଭୀରୁ କଲ । ତାଙ୍କ ନେତ୍ର ଯାହା ହରିଲ ବିଚିତ୍ର ଓ ବେନି (ମଧ୍ୟରେ) ଗୁରୁ କି (ଏ) ହେବ (ଠିକ୍‌କର) ।

**କଥା:**—ଯେ ଆମ୍ଭର ବଡ଼ ଭାଇ ଇନ୍ଦ୍ର, ସେ ତୁମ୍ଭ ବ୍ରାହ୍ମଣ ବଂଶର ଗୌତମଙ୍କ ଯୋଗୁଁ ହଜାର ସଂଖ୍ୟକ ଚକ୍ଷୁ ଆଣି ନିଜ ଦେହରେ ମଣ୍ଡି ହୋଇ ଅଛନ୍ତି । ତୁମ୍ଭେ ସେହି ନେତ୍ର ଯାହା ମତେ ମାଗୁଛ, ଏହା ଶୁଣି ମୁଁ ଆଶ୍ଚର୍ଯ୍ୟ ମନେ କରୁଛି । ତାହାଶୁଣି ନାରଦ କହିଲେ—ହେ ମାଧବ ! ତୁମର ମନେଥିବ, ଆମ ବଂଶରୁ ତୁମ୍ଭେ ଅନୁରାଗରେ ମୋହିତ କରି ଷୋଳ ହଜାର ଆଣି ତାଙ୍କୁ ମନରଞ୍ଜେଇ ପ୍ରେମିକା କଲ । ତାଙ୍କର ଯେତେ ନେତ୍ର ହରଣ କରିଛ ତା ସଂଖ୍ୟାରେ ବତିଶ ହଜାର ହେବ । ଯେଉଁ ଚମତ୍କାର ଆଶ୍ଚର୍ଯ୍ୟ କଥା କହିଲ, ଆମ୍ଭ ବଂଶ ଓ ତୁମ୍ଭ ମଧ୍ୟରେ ଗରିଷ୍ଠ କିଏ ହେବ ଠିକ୍ କରିବା ହେଉ ।

ଶବ୍ଦାର୍ଥ । ଦେବରାଜ—ଇନ୍ଦ୍ର । ଅଗ୍ରଜ—ବଡ଼ଭାଇ । କୁଳୁ—ବଂଶରୁ । ସହସ୍ର ସଂଖ୍ୟକ—ଇନ୍ଦ୍ର ସହସ୍ର ଯୋନି ହୋଇ ପଦ୍ମନାଳରେ ଲୁଚନ୍ତେ ବ୍ରହ୍ମା ତାଙ୍କୁ ସହସ୍ରାକ୍ଷ କରିଥିଲେ । ଗାତ୍ର—ଅଙ୍ଗ, ଶରୀର । ବିଚିତ୍ର—ଆଶ୍ଚର୍ଯ୍ୟ । ଭାବରେ—ସ୍ନେହରେ । ଭେଳକରି—ମୋହିତ କରି । ଗୁରୁ—ଶ୍ରେଷ୍ଠ, ଗରିଷ୍ଠ ।

**ତୁନିହୋଇ ଭଜି ଲାଜେ ଗଲେ ମଜ୍ଜି ଶ୍ରୀବତ୍ସ କୌସ୍ତୁଭ-ଭୂଷଣ**
**ମୁନି-ଶେଖର ସୁଖରେ ଗୀର୍ବାଣ**
**ଧୁନି ତରଙ୍ଗକୁ ଦୁନି କରି ହାସ ପ୍ରକାଶି ଭାଷିଲେ ପୁଣ ସେ**
**ନାରଦ**
**ତାତେ ଦେଇଥିଲ ପରା ମନ୍ଦାକ୍ଷ**
**ତା'ତ ଅସଂଖ୍ୟ ଶୁଝିଲ ପ୍ରତ୍ୟକ୍ଷ**
**ସେ ଉର୍ବଶୀ ପ୍ରେମୀ-ତୁମ୍ଭେ ଅନ୍ତର୍ଯ୍ୟାମୀ ଶୁଣି ଭଣିଲେ କଞ୍ଜାକ୍ଷ ହେ**
**ନାରଦ । ୧୨ ।**

**ଅନ୍ୱୟ:**—(ଏହାଶୁଣି) କୌସ୍ତୁଭ ଭୂଷଣ ଶ୍ରୀବତ୍ସ (ଲାଞ୍ଛନ) ତୁନି ହୋଇ ଲାଜେ ମଜ୍ଜି ଗଲେ । ମୁନି ଶିଖର ସେ ନାରଦ ଗୀର୍ବାଣ ଧୁନି-ତରଙ୍ଗକୁ ଦୁନି କରି ହାସ ପ୍ରକାଶି ପୁଣି ଭାଷିଲେ—(ମୋ) ତାତେ ପରା ମନ୍ଦାକ୍ଷ ଦେଇଥିଲ; (ଏବେ) ତା'ତ ପ୍ରତ୍ୟକ୍ଷ ଅସଂଖ୍ୟ ଶୁଝିଲ । ସେ ଉର୍ବଶୀ ପ୍ରେମୀ (ଥିଲେ); ତୁମ୍ଭେ ଅନ୍ତର୍ଯ୍ୟାମୀ ହେଲ । (ଏହା) ଶୁଣି କଞ୍ଜାକ୍ଷ ହେ ନାରଦ ! (କହି) ଭଣିଲେ ।

**କଥା:**—ଏହା ଶୁଣି କୌସ୍ତୁଭମଣି-ଭୂଷିତ ଶ୍ରୀବତ୍ସପଦ ଲାଞ୍ଛନ ବିଷ୍ଣୁରୂପୀ କୃଷ୍ଣ ତୁନିହୋଇ ଲାଜରେ ବୁଡ଼ିଗଲେ । ମୁନି ଶେଖର ସେ ନାରଦ ଆନନ୍ଦରେ ଗଙ୍ଗାଙ୍କ ଲହରୀକୁ ଦ୍ୱିଗୁଣ କରି ଅତିଶୟ ହାସ୍ୟ ପ୍ରକାଶିତ କରି ପୁଣି କହିଲେ—ମୋ ବାପାଙ୍କୁ ପରା ଲଜ୍ଜା ଦେଇଥିଲ । ଏବେ ତାହାତ ପ୍ରତ୍ୟକ୍ଷରେ ଅସଂଖ୍ୟ ଶୁଝିଦେଲ । ତୁମ୍ଭେ ଅନ୍ତର୍ଯ୍ୟାମୀ ପୂର୍ବରୁ ମୋ ପିତାଙ୍କୁ ମୋହ କରି ଉର୍ବଶୀର ନୃତ୍ୟରେ ପ୍ରଲୁବ୍ଧ କରାଇ ଲଜ୍ଜିତ କରିଥିଲ । ମନେଥିବ ? ଏହା ଶୁଣି ପଦ୍ମଲୋଚନ—'ହେ ନାରଦ ! ବୋଲି ଡାକି କହିଲେ— ।

ଶବ୍ଦାର୍ଥ । କୌସ୍ତୁଭ ଭୂଷଣ—କୃଷ୍ଣଙ୍କର ଅଳଙ୍କାରର ନାମ କୌସ୍ତୁଭ । ଶ୍ରୀବତ୍ସ—ବିଷ୍ଣୁଙ୍କ ପଦାଘାତ କରିଥିବା ବ୍ରାହ୍ମଣ । ଗୀର୍ବାଣ—ସ୍ୱର୍ଗ । ଧୁନି—ନଦୀ । ସ୍ୱର୍ଗନଦୀ—ଗଙ୍ଗା । ଦୁନି—ଦ୍ୱିଗୁଣ (ସମ୍ବଲପୁରୀଭାଷା) । ମନ୍ଦାକ୍ଷ—ଲଜ୍ଜା । ପ୍ରତ୍ୟକ୍ଷ—ସାକ୍ଷାତରେ । କଞ୍ଜାକ୍ଷ—ପଦ୍ମଲୋଚନ ।

**ଅହଲ୍ୟା ନ୍ନ୍ଦନ୍ତ ଶତାନନ୍ଦ ଜାତ କରୁଅଛ କେତେ କହିବ**
**ତପୀ ଜଳ୍ପିଲେ ଶତାନନ୍ଦ ହେବ**
**ସୂତ୍ରରେ ଜନକ-ଜା କରେ ରାଘବ ବନ୍ଧିତ କଲେ କରିବହେ**
**ମାଧବ**
**ହସୁଁ ହରି ମୁନି ମୁଖେ ପ୍ରକଟ**
**ବସୁମତୀରୁ ସଙ୍ଗୀତ ଚହଟ**
**ପ୍ରସୁ ଆନନ୍ଦର ଆକାଶେ ହୋଇଲା ଗୃହୁଁ ନେତ୍ରେ କଲା ନାଟ ସେ**
**ମାଧବ । ୧୩ ।**

**ଅନ୍ୱୟ:**—ଅହଲ୍ୟା ନୁହଁତ, ଶତାନନ୍ଦ ଜାତ କରୁଅଛ, କେତେ କହିବ ? ତପୀ ଜଳ୍ପିଲେ (ମୁଁ) ଶତାନନ୍ଦ ହେବ । ହେ ମାଧବ ! ଜନକ-ଜା କରେ ରାଘବ ବନ୍ଧିତ କଲେ ସୂତ୍ରରେ (ବନ୍ଧନ) କରିବ । (ଏକଥା ଶୁଣି) ହରି ହସୁଁ ମୁନିମୁଖେ ପ୍ରକଟ (ହେଲା) । ଆନନ୍ଦର ପ୍ରସୁ ବସୁମତୀରୁ ସଙ୍ଗୀତ ଚହଟ ଆକାଶେ ହୋଇଲା । ଗୃହୁଁ (ତା) ନେତ୍ର ନାଟ କଲା ।

**କଥା:**—ହେ ନାରଦ ! ତୁମ୍ଭେ ତ ଅହଲ୍ୟା ନୁହଁ; ଏତେ ଶତାନନ୍ଦ ଜାତ କରୁଛ କାହିଁକି ? ଏତେ ଅତ୍ୟଧିକ ଆନନ୍ଦ ହେଉଛ କାହିଁ ? ନାରଦ କହିଲେ—ମୁଁ ପରା ଶତାନନ୍ଦ ଋଷି ହେବ । ହେ ମାଧବ ! ତୁମ୍ଭେ ଜାଣିଛ ଜନକ ଜେମା କରସ୍ଥ—ବରଣମାଳାରେ ରାମଚନ୍ଦ୍ର ବରିତ ହୋଇଥିଲେ । ଶତାନନ୍ଦ ସୀତାରାମଙ୍କ ବିବାହରେ ହସ୍ତଗ୍ରନ୍ଥି ପୁରୋହିତ ହୋଇ ବାନ୍ଧିଥିଲେ । ମୁଁ ସେହିପରି ତୁମ୍ଭ ବିବାହରେ ହସ୍ତଗ୍ରନ୍ଥି ପକାଇବି । ଏ କଥା ଶୁଣି କୃଷ୍ଣ ହସନ୍ତେ ମୁନିଙ୍କ ମୁଖରୁ ପ୍ରକାଶିତ ହେଲା—କ'ଣ କହୁଥିଲକି—"ସେ ଦିନ ଆନନ୍ଦମୟୀ ଧରଣୀରୁ ସଙ୍ଗୀତ ଚହଟ ଆକାଶ ଯାଏ ବ୍ୟାପିଗଲା । ତା ଦେଖନ୍ତେ ମୋ ନେତ୍ରରେ ତାହା ନାଚ ଉଠିଲା ।"

---

ଶବ୍ଦାର୍ଥ । ଅହଲ୍ୟା—ଗୌତମ ପତ୍ନୀ, ଶତାନନ୍ଦ ଜନନୀ ଅତ୍ୟନ୍ତ ରୂପବତୀ ରମଣୀ । ଶତାନନ୍ଦ—ଅହଲ୍ୟା ସନ୍ତାନ ,ଶତଆନନ୍ଦ, ବହୁଆନନ୍ଦ । ତପୀ—ତପସ୍ୱୀ ନାରଦ । ଜଳ୍ପିଲେ—କହିଲେ । ଜନକ-ଜା— ଜନକ ନନ୍ଦିନୀ ସୀତା । ରାଘବ—ରାମ । ପ୍ରସୂ—ମାତା । ସୂତ୍ର—ସୂତା, ହାତଗଣ୍ଠି ସୂତା । ପ୍ରକଟ—ପ୍ରକାଶିତ । ଆନନ୍ଦରପ୍ରସୂ—ଆନନ୍ଦମୟୀ, ଆନନ୍ଦ ଜନ୍ମଦାତ୍ରୀ ।

ଭ୍ରମନ୍ତି ତପତ ଭ୍ରମାଙ୍ଗୀ ରସିକା ବନମୂଷିକ-ଗର୍ଭ ସ୍ଥଳେ
ମେଳବାସ ଆଣେ ଭୃଙ୍ଗ ଶଙ୍ଗାଳେ
ପ୍ରଜ୍ୱଳ ଜ୍ୱଳନ ଶଖା ସଙ୍ଗେ ଶାଖା ହୋଇଥିଲେ ଫଗୁକାଳ ହେ
ମାଧବ
ରୁଚଧର ଦେଖିଲୁ ଲୁଚକର
ଜବାବନରୁ ଜଣେ ଜବାଧରୀ
ବାହାରୁଁ ତା ଗୃରୁ ଦହ୍ନ ବହ୍ନିରୁ ସୀତା ବଜେକଲ୍ ପର ହେ
ମାଧବ । ୧୪ ।

**ଅନ୍ୱୟ**—ହେ ମାଧବ ! ତପତ ଭ୍ରମାଙ୍ଗୀ ରସିକା (ଗଣ) ବନମୂଷିକ-ଗର୍ଭସ୍ଥଳେ ଭ୍ରମନ୍ତି । ବାସ ଆଣେ ଭୃଙ୍ଗ—ଶଙ୍ଗାଳେ ମେଳ (ହୁଅନ୍ତି) । (ଦେଖିଲୁଁ) ଫଗୁକାଳେ ପ୍ରଜ୍ୱଳ ଜ୍ୱଳନ ଶିଖା ସଙ୍ଗେ ଶାଖା ହୋଇଥିଲେ । ହେ ମାଧବ ! ରୁଚଧର ଲୁଚକର ଦେଖିଲୁଁ । ଜବା ବନରୁ ଜଣେ ଜବାଧରୀ ବାହାରୁଁ, ଦହ୍ନ—ବହ୍ନିରୁ ସୀତା ବଜେକଲ୍ ପର ତା ଗୃରୁ (ଦଶିଲ) ।

**କଥା**—ହେ ମାଧବ ! ମୁଁ ଦେଖିଲି ତପ୍ତ ସ୍ୱର୍ଣ୍ଣ ଦେହା ରସବନ୍ତମାନେ ଉକ୍ତ ବନସ୍ଥ ରୂପକ ସ୍ୱର୍ଣ୍ଣ ତରଲା କୋଇର ଗର୍ଭସ୍ଥଳରେ ଭ୍ରମୁଥାନ୍ତି । ଅତ୍ୟନ୍ତ ଚହଟ ବାସନା ସେମାନଙ୍କ ଦେହରୁ ନିର୍ଗତ ହେଉଥିବାରୁ ଅସଂଖ୍ୟ ଭ୍ରମର ଧୂଆଁ ପରି ଏକତ୍ର ମେଳାମେଳା ହେଉଥାନ୍ତି । ଏଣେ ନାଲରଙ୍ଗର ଫଗୁ ସମୂହ ଯେ ସେ ରସିକାମାନେ ଖେଳୁଥିଲେ ତାହା ଜ୍ୱଳନ୍ତ ଅଗ୍ନିଶିଖା ସହିତ ସାଥିପରି ସମାନ ଜଣାଯାଉଥିଲା । ହେ ମାଧବ ! ଉଦ୍ଦୀପ୍ତ ଜଗି ଆମ୍ଭେ ସେ ଘଟଣା ଲୁଚକରି ଦେଖିଲୁଁ । ମନ୍ଦାରବନରୁ ଜଣେ ଅତି ଉତ୍କୃଷ୍ଟା ସୁନ୍ଦରୀ ବାହାରନ୍ତେ ଆମ୍ଭେ ବୋଧକଲୁଁ, ଦଗ୍ଧ ଅଗ୍ନିରୁ ସୀତା ବଜେ କଲେ କି ? ସେ କନ୍ୟାର ସୁନ୍ଦରପଣ ତାଙ୍କର ପରି ଦେଖାଗଲା ।

---

ଶବ୍ଦାର୍ଥ । ତପତଭ୍ରମାଙ୍ଗୀ—ତପ୍ତସ୍ୱର୍ଣ୍ଣାଙ୍ଗୀ । ମୂଷିକ—ସୁନା ତରଲା କୋଇ । ଭ୍ରମ—ଭର୍ମ, ସ୍ୱର୍ଣ୍ଣ । ବାସ—ସୁବାସ । ଶଙ୍ଗାଳ—ପାଉଁଶ । ମେଳ—ଯୋଡ଼ହେବା । ଶାଖା—ସଙ୍ଗୀ । ରୁଚଧର—ଉଦ୍ଦୀପ୍ତ ସ୍ୱରରେ । ଜବାଧରୀ—ଅତିସୁନ୍ଦରୀ ସ୍ତ୍ରୀ । ଗୃରୁ—ସୁନ୍ଦର ପଣ ।

**ସେ ସୁତନୁ-ତନୁ-ନୟନ ପଡନ୍ତେ ଶଙ୍କା ହେଲା ଲଙ୍କା ଗ୍ରାମର**
**ତ୍ରେତା ଯୁଗେ ଯୋଗ ଯେଉଁ ବିହାର**
**ଦ୍ୱାପରେ ସେ କିପାଁ ହେଲା ମାନସରେ ଦ୍ୱାପର ହେଉ ଆମ୍ଭର ହେ**
**ମାଧବ !**
**ଏହି ସମୟେ ପ୍ରିୟ ପରିବାରୀ**
**ସେବା ଆଦରି ରହିଗଲେ ଘେରି**
**ତାରା ସ୍ତୋମ କାରା ଲୋମଗାନ୍ତେ ସୋମ ସଂସର୍ଗେ ରହିଲା ପରି ହେ**
**ମାଧବ । ୧୫ ।**

**ଅନ୍ୱୟ**—ହେ ମାଧବ ! ସେ ସୁତନୁ-ତନୁ-ନୟନ-ପଡନ୍ତେ ଲଙ୍କାଗ୍ରାମର ଶଙ୍କା ହେଲା । ଦ୍ୱାପର ହେଉ ମାନସରେ ହେଲା ତ୍ରେତାଯୁଗେ ଯେଉଁ ବିହାର ଯୋଗ, ସେ କିପାଁ ଦ୍ୱାପରେ ହେଲା ? ହେ ମାଧବ ! ଏହି ସମୟେ ତାରାସ୍ତୋମ କାରା-ଲୋମଗାନ୍ତେ ସୋମ ସଂସର୍ଗେ ରହିଲାପରି ପ୍ରିୟ ପରିବାରୀ ସେବା ଆଦରି ଘେରି ରହିଗଲେ ।

**କଥା**—ହେ ମାଧବ ! ସେହି ଅତିରମଣୀୟ ଅଙ୍ଗଟି ଆଖିରେ ପଡ଼ନ୍ତେ ମୋର ଲଙ୍କା ଗଡ଼ର ସନ୍ଦେହ ଆସିଗଲା । ମନରେ ଏହି ସନ୍ଦେହ ହୁଅନ୍ତେ ଭାବନା ହେଲା, ତ୍ରେତା ଯୁଗରେ ଯେଉଁ ବନ ବିହାର ଯୋଗ ତାହା ପୁଣି କାହିଁକି ଦ୍ୱାପର ଯୁଗରେ ହେଖାଗଲା ? ହେ ମାଧବ ! ଏହି ସମୟରେ ଦେଖିଲୁଁ ନକ୍ଷତ୍ର ସମୂହ ପୂର୍ଣ୍ଣିମା ଆକାଶର ଚନ୍ଦ୍ରମାକୁ ଘେରି ରହିଲା ପରି ପ୍ରିୟ ପରିବାରୀ ଯେଝା ଯେଝା ସେବା ଆଦରି ସେ ପୂର୍ଣ୍ଣଚନ୍ଦ୍ରବଦନାକୁ ଘେରି ରହିଗଲେ ।

---

ଶବ୍ଦାର୍ଥ । ସୁତନୁ—ଉତ୍କୃଷ୍ଟ ଦେହ ବିଶିଷ୍ଟା । ତନୁ—ଶରୀର, ଅଙ୍ଗ । ଦ୍ୱାପର—ଯୁଗ, ସନ୍ଦେହ । ପରିବାରୀ—ସଖୀ, ଦାସୀ । ସ୍ତୋମ—ସମୂହ । 'କାରା' ଲୋମରେ ରାକା—ପୂର୍ଣ୍ଣିମା । ସୋମ—ଚନ୍ଦ୍ରମା ।

**ମର୍ତ୍ତ୍ୟଜାତ-ସୁନ୍ଦରୀଙ୍କ ପ୍ରଣିପତ୍ୟ ନିମିତ୍ତରେ ତାକୁ ଜନମ**
**କରିଅଛୁ ଯେ ଧରିଛୁ ନିଗମ**
**ସୁର ସୁନ୍ଦରୀଙ୍କ ଊଣାହେଲା ତେବେ କେବେ ଲବେ ନ ମଣିମ ହେ**
**ମାଧବ !**
**ନାକ ପତି-ମତି ମୋହ୍ୟ ମହିଳା**
**ତାକ ଭୂମିରେ ଶଚୀ କୁଶଳା**
**ଦେଇଥିଲେ ସେ ଗଉତମ ଉତ୍ତମ ସୁଶୀଳା ହୁଅନ୍ତା ଶିଳା ହେ**
**ମାଧବ । ୧୭ ।**

**ଅନ୍ୱୟ**— ହେ ମାଧବ ! ଯେ ନିଗମ ଧରିଛୁ (ସେ) ମର୍ତ୍ତ୍ୟଜାତ ସୁନ୍ଦରୀଙ୍କ ପ୍ରଣିପତ୍ୟ ନିମିତ୍ତରେ ତାକୁ ଜନମ କରିଅଛୁ । (ଏତଦ୍ୱାରା) ତେବେ ସୁରସୁନ୍ଦରୀଙ୍କୁ ଊଣାହେଲା କେବେ ନ ମଣିମ । ହେ ମାଧବ ! ଭୂମିରେ ତାକ ମହିଳା କୁଶଳା ଶଚୀ ନାକପତି ମତି ମୋହ୍ୟ (ତୃପ୍ତି) ଦେଇଥିଲେ । ସେ ଗଉତମ ଉତ୍ତମ ସୁଶୀଳା ଶିଳା ହୁଅନ୍ତା (କି ?) ।

**କଥା**—ହେ ମାଧବ ! ମୁଁ ସ୍ଥିରକଲି ବେଦଧର ବିଧାତା ସେହି ମହିମାମୟୀ ରମଣୀରତ୍ନକୁ ମର୍ତ୍ତ୍ୟରେ ଜନ୍ମିଥିବା ସମସ୍ତ ସୁନ୍ଦରୀଙ୍କର ପ୍ରଣିପତ୍ୟ ଗ୍ରହଣ କରିବାକୁ ଜନ୍ମ ଦେଇଅଛୁ । ମୁଁ ଏହା ଯେ କହିଲି ଏତଦ୍ୱାରା ତେବେ ସ୍ୱର୍ଗସୁନ୍ଦରୀଙ୍କ ଠାରୁ ଏ କନ୍ୟାର ସୌନ୍ଦର୍ଯ୍ୟ ଊଣା ହେଲା ବୋଲି କେବେ ମନେକରିବେ ନାହିଁ । ହେ ମାଧବ ! ଯେବେ ସ୍ୱର୍ଗର ନାରୀମାନେ ମର୍ତ୍ତ୍ୟ ନାରୀଙ୍କଠାରୁ ଉତ୍କୃଷ୍ଟା ହୋଇଥାନ୍ତେ, ତେବେ ଭୂମିମଧ୍ୟନ ହେଉଛୁ ଯେଉଁ ମହିଳାଙ୍କ ଶ୍ରେଷ୍ଠତ୍ୱ ଯେନ; ଏପରି ଯେ ଅନନ୍ତ ଯୌବନା ଶଚୀ ସ୍ୱୀୟ ରୂପରେ ଯେଉଁ ସ୍ୱର୍ଗପତି ଇନ୍ଦ୍ରଙ୍କର ମନ ମୁଗ୍ଧକରି ତୃପ୍ତି ଦେଇଥିଲେ, ସେହି ଇନ୍ଦ୍ରଙ୍କ ଯୋଗୁଁ ଋଷି ଗୌତମଙ୍କର ଶ୍ରେଷ୍ଠା ସଦ୍‌ଗୁଣବତୀ ନାରୀ ଅହଲ୍ୟା ପଥର ହୋଇଥାନ୍ତା କାହିଁକି ?

---

ଶବ୍ଦାର୍ଥ । ନିଗମ—ବେଦ । ଯେ ନିଗମ ଧରିଛୁ—ବିଧାତା, ବ୍ରହ୍ମା । ପ୍ରଣିପତ୍ୟ—ବନ୍ଦନ, ନମ୍ରତା । ଲବେ—କ୍ଷଣକେ । ଭୂମିରେ—ନାଗରରେ । ମହିଳା କୁଶଳା—ନାରୀ ଶ୍ରେଷ୍ଠା, ରମଣୀ ମଣି । ଶଚୀ—ଇନ୍ଦ୍ରପତ୍ନୀ । ନାକ—ସ୍ୱର୍ଗ ।

**ହୃଦୟେ ଉଦୟେ ହେଲ୍ ଚିନ୍ତା ଏହା ନାୟକ ନା ଏକ ଜନକ**
**ଘଟନାଭ କରିଥିବେ ଜନକ ।**
**ତାଙ୍କ ପ୍ରପଞ୍ଚ ପ୍ରପଞ୍ଚ ପାଞ୍ଚ ଗୁଞ୍ଜ କଛ କରନ୍ତି କନକ ହେ**
**ମାଧବ !**
**ପୂର୍ଣ୍ଣ ଚନ୍ଦ୍ରମା ପାର୍ବତୀ ପ୍ରତୀକ**
**ଅର୍ଦ୍ଧ ଅର୍ଦ୍ଧକରେ ଶ୍ରଦ୍ଧା ସର୍ଜକ**
**ସମ୍ପୂର୍ଣ୍ଣା ନନ୍ଦ-ଭାଗ୍ୟ-ଭୋଗେ ନୁହଇ କପାଳୀ କପାଳ ଟେକ ହେ**
**ମାଧବ । ୧୭ ।**

**ଅନ୍ୱୟ**—ହେ ମାଧବ ! (ତାକୁ ଦେଖି) ହୃଦୟେ ଚିନ୍ତା ଉଦୟ ହେଲା, ଏହା ନାୟକ ଏକ ନା (ମୋ) ଜନକ ଘଟନାଭ କରିଥିବେ (ପୁଣି ମନେହେଲା) ତାଙ୍କ ପ୍ରପଞ୍ଚ ପାଞ୍ଚ (ରେ ସେ) କନକକୁ ଗୁଞ୍ଜ କଛ କରନ୍ତି । ହେ ମାଧବ ! ପୂର୍ଣ୍ଣ ଚନ୍ଦ୍ରମା (ଏବଂ) ପାର୍ବତୀ ପ୍ରତୀକ ଅର୍ଦ୍ଧ ଅର୍ଦ୍ଧକରେ ଶ୍ରଦ୍ଧା ସର୍ଜକ (ହେତୁ) ଟେକ କପାଳ କପାଳୀ ଭାଗ୍ୟ ଭୋଗେ ସମ୍ପୂର୍ଣ୍ଣାନନ୍ଦ ନୁହଇ ।

**କଥା**—ହେ ମାଧବ ! ସେହି ରମଣୀ ରତ୍ନକୁ ଦେଖି ମୋ ଅନ୍ତରରେ ଚିନ୍ତା ଉଦୟ ହେଲା ଯେ ଏହାର ସ୍ୱାମୀ ଭାବରେ ମନୁଷ୍ୟ ଏକ,ମୋ ପିତା ବିଧାତା ଉତ୍ପାଦନ ଘଟଣାଭ କରିଥିବେ ! ପୁଣି ମନେ ହେଲା ତାଙ୍କ ସଂସାରକ ସୃଷ୍ଟି ଈଶ୍ୱରରେ ସେ ସୁନା ପାଞ୍ଚରେ କାଇଞ୍ଚକୁ କଛ କରନ୍ତି । ହେ ମାଧବ ! ତା ପାଇଁ ଶିବଙ୍କୁ ଅବା ମୁଁ ସ୍ଥିର କରନ୍ତି ! କିନ୍ତୁ ପୂର୍ଣ୍ଣ ଚନ୍ଦ୍ରମା ଏବଂ ପାର୍ବତୀଙ୍କ ଅଙ୍ଗ ସୁଷମା ଅଧା ଅଧାରେ ଅତଶ୍ରଦ୍ଧା ସୃଷ୍ଟି କରି ଉଚ୍ଚ କପାଳ ଶିବଙ୍କ ଭାଗ୍ୟ ସ୍ଥିର କରିଛନ୍ତି । ତେଣୁ ଭାଗ୍ୟ ଭୋଗ କରିବାରେ ସେ ସମ୍ପୂର୍ଣ୍ଣ ଆନନ୍ଦ କାହାକୁ ଦେଇ ପାରନ୍ତି ନାହିଁ । ସେଠି ଆଉ ଜାଗା କାହିଁ ?

---

ଶବ୍ଦାର୍ଥ । ପ୍ରପଞ୍ଚ—ସଂସାର । ପ୍ରପଞ୍ଚ—ସୃଷ୍ଟି । ପାଞ୍ଚ—ଈଶ୍ୱର । ନା—ମନୁଷ୍ୟ, ନର । ନାୟକ—ସ୍ୱାମୀ । ଜନକ—ଉତ୍ପାଦକ । କଛ—ସଦୃଶ । ପ୍ରତୀକ—ଅଙ୍ଗ । ଟେକ କପାଳ—ଭାଗ୍ୟବାନ୍ । କପାଳୀ—ଶିବ ।

**ଅବର ହେତୁ ସ୍ଥବର ଭଙ୍କେତୁ ଛବକ ଛାଡ଼ିଥିଲା ନେତ୍ର-**
**ଯୁଗେ ଯୋଗ ହୁଅନ୍ତେ ଆତ୍ମ ଗାତ୍ର**
**ଶତ ପତ୍ର ପୁତ୍ର-କଳ୍ପନା ପବତ୍ର ପାତ୍ରୀ ଯୋଡ଼ୁଁ କରପତ୍ର ହେ**
**ମାଧବ !**
**ହସ୍ତୁଁ ମାଳାଯନ୍ତ୍ରକଲୁଁ ଅନ୍ତର**
**କୌସ୍ତୁଭକୁ ବଳି ସ୍ନେହ ହରର**
**ଅସ୍ତୁ ଉଚ୍ଚାରି ସେ ପ୍ରସ୍ତୁତ କସ୍ତୂରୀ-ସୌରଭୀକୁ ଦେଲୁଁ ବର ହେ**
**ମାଧବ । ୧୮ ।**

**ଅନ୍ୱୟ**—ହେ ମାଧବ ! ଅବର (ପାତ) ହେତୁ ସ୍ଥବର ଭଙ୍କ କେତୁ ଛବକ ଛାଡ଼ିଥିଲା । (ଜେମା) ନେତ୍ର ଯୁଗେ ଆତ୍ମ ଗାତ୍ର ଯୋଗ ହୁଅନ୍ତେ (ଉକ୍ତ) ଶତପତ୍ର-ପୁତ୍ର କଳ୍ପନା ପବତ୍ର ପାତ୍ରୀ କରପତ୍ର ଯୋଡ଼ୁଁ ; ହେ ମାଧବ ! ମାଳାଯନ୍ତ୍ର ହସ୍ତୁଁ ଅନ୍ତର କଲୁଁ । କୌସ୍ତୁଭକୁ ବଳି ହରର ସ୍ନେହ ଅସ୍ତୁ ଉଚ୍ଚାରି ସେ ପ୍ରସ୍ତୁତ କସ୍ତୂରୀ-ସୌରଭୀକୁ ବରଦେଲୁଁ ।

**କଥା**—ହେ ମାଧବ ! ଫଗୁ ପଡ଼ିବା ଯୋଗୁଁ ଥିର ହୋଇ ଅପାଙ୍ଗ ଚଞ୍ଚଳତା ତ୍ୟାଗ କରିଥିଲା ଯେଉଁ ନୟନ ସେ ଦୁଇଟି ଆମ ଅଙ୍ଗରେ ଯୋଗ ହୁଅନ୍ତେ ଉକ୍ତ ପ୍ରଜାପତି କଳ୍ପନାର ପବତ୍ର ଗାତ୍ରୀ ଜେମା ରୁକ୍ମଣୀ କରଯୋଡ଼ି ନମସ୍କାର କଲେ । ହେ. ମାଧବ ! ଜପମାଳା ଏବଂ ବୀଣା ହାତରୁ କାଢ଼ିଦେଇ "କୌସ୍ତୁଭ ଠାରୁ ବଳି ତୁମ୍ଭେ ହରଙ୍କର ସ୍ନେହ ଲଭ କର" ଉଚ୍ଚାରଣ କରି ସେହି ଉପସ୍ଥିତ କସ୍ତୂରୀ ସୁଗନ୍ଧିତା ମହୀସୁରୀ ରାଜ ପୁତ୍ରୀକୁ ବରଦେଲୁଁ ।

---

ଶବ୍ଦାର୍ଥ । ଅବର—ଫଗୁ । ଯୁଗେ—ଉଭୟରେ । ସ୍ଥବର—ସ୍ଥିର । କେତୁ—ପତାକା । କେତୁଛବ—ଚଞ୍ଚଳତା । ଶତପତ୍ର—ପଦ୍ମ । ଶତପତ୍ର-ପୁତ୍ର—ବ୍ରହ୍ମା, ପଦ୍ମ ସମ୍ଭବ । ଅସ୍ତୁ—ଲଭହେଉ । ପ୍ରସ୍ତୁତ—ଉଲ୍ଲିଖିତ, କଥିତ, ଉପସ୍ଥିତ । କସ୍ତୂରୀ ସୌରଭ—କସ୍ତୁରୀ ଚନ୍ଦ୍ରା । ଯନ୍ତ୍ର—ବୀଣା । ମାଳା—ଜପମାଳା ।

**ଭକ୍ତି ବଗ୍ରହ ସଂଯୁତ ମଞ୍ଜୁଳତର ଗିର ହରି କଲେ ପ୍ରଦାନ**
**ତୁମ୍ଭେ ଭୂତ ଭବିଷ୍ୟ ବର୍ତ୍ତମାନ**
**ବଧି ବବେଚନା ବଧାନ ନଧାନ ସବୁ ତବ ଅବଧାନ ହେ**
**ନାରଦ !**
**ମୁନମଣି ଭଣିଲେ କେବେ ହେବ**
**ପଗ୍ଭରବାର ଜାତ କଲ ସ୍ତବ**
**କହିବା ନ କହିବା ମନ ମୋହିବା ବଗ୍ରହ ଦେଲେ ଜବାବ ସେ**
**ନାରଦ । ୧୯ ।**

**ଅନ୍ୱୟ**—ଭକ୍ତି-ବଗ୍ରହ-ସଂଯୁତ ମଞ୍ଜୁଳତର-ଗିର ହରି ପ୍ରଦାନ କଲେ । (କହିଲେ) ହେ ନାରଦ ! ତୁମ୍ଭେ ଭୂତ ଭବିଷ୍ୟ ବର୍ତ୍ତମାନ (ଜାଣ) । ବଧି ବବେଚନା ବଧାନ ନଧାନ ସବୁ ତବ ଅବଧାନ (ରେ ଅଛି) (ଶୁଣି) ମୁନମଣି ଭଣିଲେ କେବେ ହେବ ? (ଏହା) ପଗ୍ଭରବାର (କଥା) ସ୍ତବ ଜାତ କଲ । ମନମୋହିବା ନ କହିବା କହିବା ବଗ୍ରହ ଜବାବ ଦେଲେ ।

**କଥା**—ତା ଶୁଣି ପୂଜ୍ୟ ବ୍ୟକ୍ତିଙ୍କ ପ୍ରତି ଶ୍ରଦ୍ଧା ବଗ୍ରହ ସଂଯୁକ୍ତ ହୋଇ ଅତି ସୁନ୍ଦର କଥା କୃଷ୍ଣ କହିଲେ । ହେ ନାରଦ ! ତୁମ୍ଭେ ଅତୀତ, ଭବିଷ୍ୟତ୍, ବର୍ତ୍ତମାନ ତନକାଳର କଥା ଜାଣ । ବଧାତାଙ୍କର ବଗ୍ରହ ବ୍ୟବସ୍ଥାର ସମାଧାନ ଆଦ ତୁମ୍ଭର ପୁଣି ଧ୍ୟାନରେ ଅଛି । ଏହା କହି, ମନ ମୋହ କାରକ ନ କହିବା କହିବା କଥାକୁ ବଗ୍ରହ ଜବାବ ଦେଲେ । ସେ ସୁସମୟ ଯେବେ ଆସିବ ତା ହେବ ବୋଲ ଗୋପନରେ ଇଙ୍ଗିତ ଦେଲେ । ଏହାଶୁଣି ମୁନଶ୍ରେଷ୍ଠ କହିଲେ—କେବେ ତା ହେବ ? ଏକଥା ଯେପର ଭାବେ ପଗ୍ଭରଲେ—ସେ କଥା ବିଷ୍ଣୁଙ୍କ ପ୍ରତି ଏକ ସ୍ତୁତି ଜାତ କଲ ।

ଶବ୍ଦାର୍ଥ । ଭକ୍ତି—ପୂଜ୍ୟ ବ୍ୟକ୍ତିରେ ଅନୁରାଗ । ଅବଧାନ—ମନୋଯୋଗ, ପ୍ରଣିଧାନ । ବବେଚନା—ବଗ୍ରହ । ବଧାନ—ବ୍ୟବସ୍ଥା, ନୟମ । ନଧାନ—ସ୍ଥାନ, ଆଧାର । ମଞ୍ଜୁଳତର—ଅତି ସୁନ୍ଦର । ମୁନମଣି—ମୁନଶ୍ରେଷ୍ଠ । ସ୍ତବ—ସ୍ତୁତି ।

**ମଞ୍ଜୁଳ-ନୀଳ-ନଚୋଳ ଚୈଳ ମେଳ-କୁଚ ନୀଳାଦ୍ରି ଶଙ୍ଖ ଗୋଳ**
**ଲପନତ ଶତ ଦଳ-କମଳ**
**ରତ୍ନ-ସିଂହାସନ ଯତନ ଅଧର ମଧୁର ବିଶ୍ରାମ ସ୍ଥଳ ହେ**
**ମାଧବ !**
**ବି କ୍ରମରେ ରାଜିଲେ ନଗଦ-ରେ**
**ବିକ୍ରମରେ ରାଜିଲେ ନଗଦରେ**
**ଆଣିବତ ତାଙ୍କୁ ହୃଦୟ ବାହୁକୁ ମାନିବାକୁ ଆଶ୍ଳେଷରେ ହେ**
**ମାଧବ । ୨୦ ।**

**ଅନ୍ୱୟ**—ହେ ମାଧବ ! (ତାର) ମଞ୍ଜୁଳ-ନୀଳ-ନଚୋଳ ଚୈଳ-ମେଳ-କୁଚ, ନୀଳାଦ୍ରି (ପ୍ରାୟ ଅଟେ) । (ତାର କଣ୍ଠ) ଗୋଳ ଶଙ୍ଖ (ପ୍ରାୟ ଅଟେ) । (ତା) ଲପନତ ଶତଦଳ-କମଳ (ପ୍ରାୟ ଅଟେ) । (ତାର) ମଧୁର ବିଶ୍ରାମ-ସ୍ଥଳ ଯତନ ଅଧର ରତ୍ନ ସିଂହାସନ ସଦୃଶ ଅଟେ । ହେ ମାଧବ ! ବି-କ୍ରମରେ ନଗଦରେ ରାଜିଲେ, ବିକ୍ରମରେ ରାଜିଲେ ନଗଦରେ ହୃଦୟ ବାହୁକୁ ଆଶ୍ଳେଷରେ ମାନିବାକୁ ତାଙ୍କୁ ଆଣିବ ତ ?

**କଥା**—ହେ ମାଧବ ! ତାର ସୁନ୍ଦର ନୀଳଶାଢ଼ୀ ସାଥିକୁ କାଞ୍ଚୁଲି ଯେଉଁଠି ଏକତ୍ର ହୋଇଛି, ସେହି କୁଚ ଯୁଗ ତୁମ୍ଭର ନୀଳଶୈଳ ପରି ଅଟେ । ତାର ବର୍ତ୍ତୁଳାକାର କଣ୍ଠ ତୁମର ଶଙ୍ଖ-କ୍ଷେତ୍ର ପରି ଅଟେ । ତା ମୁଖ ତୁମର ଶତଦଳ-କମଳାସନ ପରି ଅଟେ । ତାର ମିଷ୍ଟତାର ବିଶ୍ରାମ ସ୍ଥଳ ଅତି ଶୋଭିତ ଅଧର ତୁମ୍ଭର ରତ୍ନ ସିଂହାସନ ସଦୃଶ ଅଟେ । ହେ ମାଧବ ! ଏଥିରୁ ଜାଣିବ ତୁମ୍ଭର ପ୍ରିୟ ବୈକୁଣ୍ଠଧାମ ବିପରୀତ ଶୃଙ୍ଖଳାରେ ଏକାଠି ରହିଛି । ଶଙ୍ଖ ଉପରେ ପର୍ବତ ତହିଁ ବିରାଜିତ । କିନ୍ତୁ ଏହି ଶୋଭିବତୀର କଣ୍ଠ-ରୂପକ ଶଙ୍ଖ କୁଚ ରୂପୀ ପର୍ବତ ଉପରେ ସ୍ଥାପିତ । ଏତିକ ମାତ୍ର ପ୍ରଭେଦ । ତୁମ୍ଭେ ତାର ସ୍ୱୀକୃତ ଲାଭକର ସାହସ ସହିତ ଅଳ୍ପ ସମୟ ମଧ୍ୟରେ ତା କୁଚ ଶୋଭିତ ତା ହୃଦୟ ଏବଂ ତୁମ୍ଭର ବାହୁକୁ ଆଲିଙ୍ଗନରେ ଶୋଭମାୟ କରିବାକୁ ତାଙ୍କୁ ଆଣିବ ତ ?

---

ଶବ୍ଦାର୍ଥ । ନଚୋଳ—ଶାଢ଼ୀ । ଚୈଳ—କାଞ୍ଚୁଲି । ଲପନ—ମୁଖ । ଗୋଳ—ମଣ୍ଡଳାକାର କ୍ଷେତ୍ର, ବର୍ତ୍ତୁଳାକାର ପିଣ୍ଡ । ଯତନ—ସୁନ୍ଦର । ମଧୁ—ଅମୃତ, ମିଷ୍ଟ । ବି—ବିରୁଦ୍ଧ, ବିପରୀତ । କ୍ରମ—ଶୃଙ୍ଖଳା । ନଗ—ପର୍ବତ । ଦରେ—ଶଙ୍ଖରେ । ନଗଦରେ—ନିକଟରେ । ରାଜିଲେ—ରାଜିରେ, ସମ୍ମତିରେ । ମାନିବା—ଶୋଭମାୟ ହେବା ।

**ଯାଦବ-ଯାମିନୀ-ଭର୍ତ୍ତାଙ୍କୁ-ଏକଥା ବାର୍ତ୍ତାରେ ତୋଷି ତପୋବନ୍ତ**
**ଯିବା ଆଶ୍ରମେ କରି ଅଭିମତ**
**ଭଣ୍ଡି ଶିଖଣ୍ଡି-ଶିଖଣ୍ଡ ମଣ୍ଡା-ମୁଣ୍ଡ ତାଙ୍କ ପାଦେ କଲେ ପାତ ଯେ**
**ମାଧବ ।**
**କରି ଆଶୀର୍ବାଦ ମୋଦେ ଚଳିଲେ**
**ହରିଣାଙ୍କ ଅସ୍ତାଦ୍ରିରେ ମିଳିଲେ**
**ହରି ବିହରିବା ମନ୍ଦିରକୁ ପଦ-ଦ୍ୱନ୍ଦ୍ୱ ଚଳନ କରିଲେ ଯେ**
**ମାଧବ । ୨୧ ।**

**ଅନ୍ୱୟ**—ଯାଦବ-ଯାମିନୀ ଭର୍ତ୍ତାଙ୍କୁ ଏକଥା ବାର୍ତ୍ତାରେ ତୋଷି ଆଶ୍ରମେ ଯିବା ଅଭିମତ କରି (ଥିଲେ) । ମାଧବ (ତାଙ୍କ) ଶିଖଣ୍ଡି-ଶିଖଣ୍ଡ-ମଣ୍ଡା ମୁଣ୍ଡ ତାଙ୍କ ପାଦେ ପାତ କଲେ । (ସେ) ମୋଦେ ଆଶୀର୍ବାଦ କରି ଚଳିଲେ । (ଏ ସମୟରେ) ହରିଣାଙ୍କ ଅସ୍ତାଦ୍ରିରେ ମିଳିଲେ । ହରି ବିହରିବା ମନ୍ଦିରକୁ (ତାଙ୍କର) ପଦଦ୍ୱନ୍ଦ୍ୱ ଚଳନ କରିଲେ ।

**କଥା**—ସେହି ତପସ୍ୱୀ ନାରଦ ଯଦୁକୁଳ ଚନ୍ଦ୍ରମା କୃଷ୍ଣଙ୍କୁ ଏମନ୍ତ କଥାବାର୍ତ୍ତାରେ ସନ୍ତୋଷ ଦେଇ ନିଜ ଆଶ୍ରମ ଯିବା ଅଭିପ୍ରାୟ କରନ୍ତେ ମାଧବ କୃଷ୍ଣ ତାଙ୍କର ମୟୂର ଚନ୍ଦ୍ରିକା ଜୁଡ଼ା ମଣ୍ଡିତ ମୁଣ୍ଡ ତାଙ୍କ ପାଦତଳେ ଲଗାଇ ପ୍ରଣାମ କଲେ । ସେ ଋଷି ଆନନ୍ଦରେ ଆଶିଷ ଦେଇ ଚାଲିଲେ । ଏହି ସମୟରେ ଚନ୍ଦ୍ରମା ଅସ୍ତ ଗିରିରେ ପ୍ରବିଷ୍ଟ ହେଲେ । କୃଷ୍ଣ ନିଜର ବିହାର ମନ୍ଦିରକୁ ତାଙ୍କର ପଦ ଯୁଗଳ ଚାଳନା କଲେ ।

---

ଶବ୍ଦାର୍ଥ । ଯାମିନୀଭର୍ତ୍ତା—ଚନ୍ଦ୍ରମା । ଶିଖଣ୍ଡି ଶିଖଣ୍ଡ—ମୟୂର ଚନ୍ଦ୍ରିକା । ଅଭିମତ—ସ୍ୱୀକୃତ, ଅଭିପ୍ରାୟ । ହରିଣାଙ୍କ—ଚନ୍ଦ୍ରମା । ଭଣ୍ଡି—ଜୁଡ଼ା । ଅସ୍ତାଦ୍ରି—ଅସ୍ତଗିରି । ବିହରିବା—ବିହାର କରିବା ।

**ଜଳ-ସ୍ଥଳ-ଅନ୍ତରୀକ୍ଷ-ମୋକ୍ଷଶୀଳ କପାଳିର ବ୍ରହ୍ମକପାଳ**
**ବିମୋଚନ କାରକ ଯେଉଁ ସ୍ଥଳ**
**ତହିଁ ଅଧିପ ବ୍ରହ୍ମ-ଦାରୁ ସ୍ୱରୂପ କି କରୁଣାଶୀଳ ଭାଳ ହେ**
**ସୁଜନେ !**
**କଥନରେ ନ ସରିବା ପାତକ**
**ମଥନରେ ମନ କରି ଉତ୍ସୁକ**
**ରଥ ଆରୋହି ଯେ ମିଥୁନେ ଭ୍ରମନ୍ତି ଗ୍ରନ୍ଥ କର୍ତ୍ତାର ସେ ଭେକ ହେ**
**ସୁଜନେ । ୨୨ ।**

**ଅନ୍ୱୟ**—ଜଳସ୍ଥଳ, ଅନ୍ତରୀକ୍ଷ ମୋକ୍ଷଶୀଳ, କପାଳୀର ବ୍ରହ୍ମକପାଳ ବିମୋଚନ କାରକ ଯେଉଁ ସ୍ଥଳ (ଅଟେ); ହେ ସୁଜନ ! ତହିଁ ଅଧିପ ଦାରୁ ସ୍ୱରୂପ ବ୍ରହ୍ମ କି କରୁଣାଶୀଳ ଭାଳ । କଥନରେ ନସରିବା ପାତକ ମଥନରେ ଉତ୍ସୁକ ମନକରି ଯେ ମିଥୁନେ ରଥ ଆରୋହି ଭ୍ରମନ୍ତି, ସେ ଗ୍ରନ୍ଥକର୍ତ୍ତାର ଭେକ (ଅଟନ୍ତି) ।

**କଥା**—ଜଳ ସ୍ଥଳ ଅନ୍ତରୀକ୍ଷ ସ୍ୱରୂପୀ ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ତିନିପୁରର ମୋକ୍ଷ ଦାୟକ, ଶିବଙ୍କ ବ୍ରହ୍ମହତ୍ୟା କପାଳ-ବିମୁକ୍ତକାରୀ, ଯେଉଁ ସ୍ଥଳ ଅଟେ; ହେ ଉତ୍ତମ ବ୍ୟକ୍ତିମାନେ ତହିଁର ରାଜେଶ୍ୱର ଦାରୁ ସ୍ୱରୂପୀ ବ୍ରହ୍ମ କି ଦୟାବନ୍ତ ଅଟନ୍ତି ଚିନ୍ତାକର । କହିଲେ ସରିନପାରେ ଏପରି ଅସଂଖ୍ୟ ପାତକ ନିବାରଣ ଲାଗି ସ୍ୱତଃ ଇଚ୍ଛାକରି ଯେ ମିଥୁନ ମାସରେ ରଥ ଆରୋହଣ କରି ଭ୍ରମଣ କରନ୍ତି, ସେହିସିନା ଗ୍ରନ୍ଥକର୍ତ୍ତାର ସମ୍ବଳ ଅଟନ୍ତି ।



ଶବ୍ଦାର୍ଥ । ଜଳ ସ୍ଥଳ ଅନ୍ତରୀକ୍ଷ—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ । ମୋକ୍ଷ—ମୁକ୍ତି, ନିର୍ବାଣ । କପାଳୀ—ଶିବ । ବ୍ରହ୍ମକପାଳ—ଶିବ ଦକ୍ଷ ପ୍ରଜାପତିଙ୍କ ମୁଣ୍ଡ ଛିନ୍ନ କରିବାରୁ ତାଙ୍କ କପାଳ ତାଙ୍କ ହସ୍ତରେ ଲାଗିଗଲା । ତାହା ବିଷ୍ଣୁ ଚକ୍ରରେ ଛିନ୍ନ କରିଥିଲେ । ଦାରୁ ସ୍ୱରୂପ—ଦାରୁ ବିଗ୍ରହ । ବ୍ରହ୍ମ—ଜଗନ୍ନାଥ, ଚତୁର୍ଦ୍ଧା-ମୂର୍ତ୍ତି ବ୍ରହ୍ମ ସ୍ୱରୂପ ଅଟନ୍ତି । ଭାଳ—ଭାବନା କର । ମଥନରେ—ବିନାଶିବା । ଉତ୍ସୁକ—ଇଚ୍ଛା । ମିଥୁନେ—ଆଷାଢ଼ ମାସରେ । ରଥାରୋହି ଭ୍ରମନ୍ତି—ବଡ଼ଦାଣ୍ଡରେ ରଥଯାତ୍ରାରେ ବାହାରନ୍ତି । ଭେକ—ସମ୍ବଳ ।

# ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର

## ପଞ୍ଚମ କଳା

ଶ୍ରେଣୀ ବୃତ୍ତରେ ପଞ୍ଚବିଂଶ ପଦରେ ଏହି ଗ୍ରନ୍ଥଟି ଲେଖାଯାଇଛି ।

କବି ପ୍ରଥମରୁ ଲେଖିଛନ୍ତି:—

ଚତୁର ପଣ-ପ୍ରବୀଣ- ଗଣ ଗଣନା-ଭୂଷଣ-
ମଣି ଏ କଳ ଏକଳା-କଳ୍ପନାଶ୍ରିତ

ଅର୍ଥାତ୍—ଚତୁର ପଣରେ ଏକାନ୍ତ ପ୍ରବୀଣ ଏବଂ ଜନଗଣ-ଗଣନାର ଯେଉଁମାନେ ଭୂଷଣର ମଣି ସ୍ୱରୂପ ଅଟନ୍ତି ସେମାନେ ଏହି କଳାର କଳ୍ପନା ଶ୍ରିତ କଳନା କରନ୍ତୁ ।

ବାସ୍ତବିକ ଏହି ଗ୍ରନ୍ଥରେ କବି ଏପରି ଚତୁରତା ଦେଖାଇଛନ୍ତି ଯେ ପଢ଼ୁ ପଢ଼ୁ ତାଙ୍କର କଳ୍ପନା ଚାତୁର୍ଯ୍ୟରେ ପାଠକ ମୁହୁର୍ମୁହୁ ଆପ୍ୟାୟିତ ହୋଇଯିବ ।

ରାଜା ପ୍ରାସ୍ତୁକ ରାଜକାର୍ଯ୍ୟ-ଧାର୍ଯ୍ୟ ସମସ୍ତ ଶେଷକରି ଅନ୍ତଃପୁରକୁ ଆସି ଦେଖିଲେ ଉଆସରେ କେହି ନାହାନ୍ତି । ରାଣୀ ତାଙ୍କ ପ୍ରିୟତମା ଦାସୀଙ୍କ ସହିତ ବନବିହାର ଲାଗି ଚାଲିଯାଇଛନ୍ତି । ରାଜା ମଧ୍ୟ ଏପରି କିଛି ଆଶା କରୁଥିଲେ । ତେଣୁ ସେ ତାଙ୍କ ଅନୁସନ୍ଧାନରେ ଯାଇ ହାସ୍ୟ କୋଳାହଳ ମଧ୍ୟରେ ଲୁଚିକରି ଶୁଣିଲେ—

ମଲ୍ଲିଫୁଲ ଉପରେ ଭ୍ରମର କ୍ରୀଡ଼ା କରୁଥିବାର ଦେଖି କାମୁକା ଯୁବତୀଟିଏ କହିଲା ଅନ୍ୟଜଣେ ସଖୀକୁ, ଆଛା କହିଲ—ଏହା କପରି ଦେଖାଯାଉଛି ?

ଅପର ଜଣକ ଉତ୍ତର ଦେଲା—

ରାତି ସାଙ୍ଗରେ ଚନ୍ଦ୍ର ବିପରୀତ ରତି କରୁଛି, କାରଣ ରାତି କଳା—ଭ୍ରମରପରି । ମଲ୍ଲିଫୁଲ ଧଳା—ଚନ୍ଦ୍ରମାପରି । ରାଣୀ ସେଠାରେ ଥିଲେ । ତା'ଶୁଣି ସେ କହିଲେ—

ମଲ, ଦିନଟାରେ ରାତିସାଥିରେ ଚନ୍ଦ୍ର କେମନ୍ତ ରହି କାହିଁମ? ଏପରି କଣ ସମ୍ଭବ? ଦିନରେ ରାତି ଆସିଲା କେଉଁଠୁ?

ଜଣେ ଅତି ରୂପବତୀ ସହଚରୀକୁ ଜଣେ ଯୁବତୀ କହିଲା-କଲେ! ରାଣୀ ଯାହା କହିଲେ ତୁ ଏବେ ସେ ବିବାଦ ନିଷ୍ପତ୍ତି କର। ତୁ ପାଠପଢ଼ି ସରସ୍ୱତୀଙ୍କଠୁଁ ବଳିଯାଇଛୁ। ସେ ଗୁମାନ ମଧ୍ୟ ତୋର ବହୁତ ବେଶୀ?

ସେ ନୀରବ ହେଲା। କାରଣ ରାଣୀ କଣ କହିବେ ବୋଲି ସେ ଅପେକ୍ଷା କରି ବସିଲା। ପ୍ରକୃତରେ ରାଣୀ କହିଲେ—

ଅଇଲ, ତୁମେ ସବୁ କେହି ବୁଝିନ। ମୋ ଜେମା ବିଭା ନୋହିବାରୁ ମୋ ସ୍ୱାମୀଙ୍କ ଶୁଭ କୀର୍ତ୍ତିରେ କଳଙ୍କ ଶୋଭା ପାଉଛି। ଦେଖୁନ, ଶୁଭ୍ର ମଲ୍ଲିଫୁଲ ମୋ ସ୍ୱାମୀଙ୍କ ଯଶ ଏବଂ କୃଷ୍ଣ ଭ୍ରମର ସେଥିରେ କପରି କଳଙ୍କ ସ୍ୱରୂପ ବିରାଜୁଛି?

ରାଜାଙ୍କ ମଉଜ ମଜଲିସ ଚିନ୍ତା ଦଣ୍ଡକେ ଉଭେଇ ଗଲା। ସେ ଅତି ଦୁଃଖାଭିଭୂତ ହୋଇ ଯେପରି ଲୁଚିକରି ଶୁଣୁଥିଲେ ସେହିପରି ଲୁଚି ପଳାଇଯାଇ ମନ୍ତ୍ରୀମାନଙ୍କୁ ଘେନି ରୁକ୍ମଣୀଙ୍କର ବିବାହ ଉଦ୍ୟୋଗ କଲେ। ରାଜା କୃଷ୍ଣଙ୍କୁ ବିଭା ଦେବାକୁ ସ୍ଥିର କରିଥିଲେ। କିନ୍ତୁ ତାଙ୍କର ବଡ଼ ପୁଅ ରୁକ୍ମ ମୃଗୟାରୁ ଫେରି ଏହା ଶୁଣି ଭୀଷଣ ପ୍ରତିବାଦସ୍ୱରୂପ କୃଷ୍ଣଙ୍କ କୁତ୍ସାରଟନା କରି ଦମଘୋଷ ରଜାଙ୍କ ପୁଅ ଶିଶୁପାଳ ରୁକ୍ମଣୀର ଉପଯୁକ୍ତ ବର ବୋଲି ବାପାଙ୍କୁ ଜାଗର କରି କହିଲା। ଜ୍ୟେଷ୍ଠ ପୁଅ କଥା ବାପ ରକ୍ଷା କଲେ। ନିମନ୍ତ୍ରଣ ପତ୍ର ଚେଦିରାଜ ଦମଘୋଷଙ୍କୁ ଦିଆଗଲା। ସେ ଦୂତ ଠାରୁ ଏ ନିମନ୍ତ୍ରଣ ପତ୍ର ପାଇ ଦୂତକୁ କହିଲେ—ତୁମ୍ଭ ରଜାଙ୍କୁ କହିବ—

ତୁମ୍ଭଙ୍କୁ ଆମ୍ଭଙ୍କୁ ଜନ    ରଚନ୍ତି ସ୍ତୁତି ବଚନ
ଏ ମଣ୍ଡଳରେ ଲୋଚନ ବୋଲନ୍ତି ଯାହା
ସତେ ଦେଖା ଦେଖି ନାହିଁ
ବିଭା ଦର୍ପଣେ ଅର୍ପଣ    କରିଛୁ ଇହା।

ଅର୍ଥାତ୍ ତୁମ୍ଭଙ୍କୁ ଆମ୍ଭଙ୍କୁ ଏ ମଣ୍ଡଳର ଚକ୍ଷୁ ବୋଲି ଯାହା ଲୋକମାନେ ସ୍ତୁତି ବଚନରେ ବ୍ୟକ୍ତ କରିଥାନ୍ତି, ତୁମ୍ଭେ ଏକଚକ୍ଷୁ, ଆମ୍ଭେ ମଧ୍ୟ ଏକଚକ୍ଷୁ। ସତରେ ଆମ ମଧ୍ୟରେ ଦେଖା ଦେଖି ହେବାର ସୁଯୋଗ ଆସିନାହିଁ। ଦର୍ପଣରେ ଦୁଇ ଚକ୍ଷୁ ଯେପରି ଏକତ୍ର ହେବାର ସୁଯୋଗ ଲାଭ କରନ୍ତି, ସେହିପରି ଏ ଶୁଭ ବିବାହ ରୂପକ ଦର୍ପଣରେ ବିଧାତା ଆମ୍ଭ ଦୁଇ ଜଣଙ୍କୁ ଦୁଇ ଚକ୍ଷୁପରି ମିଳାଇବ। ତେଣୁ ଏ ବିବାହ ଦର୍ପଣ ଦାନ କରୁଛୁ।

ଅନନ୍ତର ଉକ୍ତ ଚେଦି ରଜା ତାଙ୍କ ପୁତ୍ର ଶିଶୁପାଳକୁ ସଙ୍ଗରେ ନେଇ ବିଦର୍ଭ ରାଜ୍ୟରେ ପହଞ୍ଚିଲେ । ରୁକ୍ମିଣୀଙ୍କ ବିବାହ ଦିନଯାଏ ଚର୍ଚ୍ଚା ପାଇ ରହିଲେ ।

ଏପରି ସୁନ୍ଦର ଚାତୁର୍ଯ୍ୟବନ୍ତ ରଚନାର ବୈଚିତ୍ର୍ୟ ଏ ଛାନ୍ଦରେ ମୂଳରୁ ଶେଷଯାଏ ଏତେ ସଂଯମ ପ୍ରକୃତ ସତ୍ୟ ରକ୍ଷାକରି ବର୍ଣ୍ଣିତ ହୋଇଛି, ପଢ଼ୁ ପଢ଼ୁ ମନେହେବ ନୂଆ କିଛି ଆମେ ପଢ଼ୁଚୁଁ । ଅଥଚ ଶିଶୁପାଳଆ ହୋଇଯିବା ଗଳ୍ପ ଆମେ ସମସ୍ତେ ଜାଣୁ ।

ଘୁମ୍ପ୍ ପ୍ରୟୋଗ କେବଳ ରଜାଙ୍କଠାରେ ହେଉଥିବାର ଦେଖାଯାଏ । କିନ୍ତୁ କବି ଲେଖିଛନ୍ତି 'ଛଇଳୀ ଘୁମ୍ପୁଁ ଘୁଡ଼ିବା ଛଇଳେ' ରସିକା ରମଣୀର ଘୁମ୍ପୁଁ ଘୁଞ୍ଚି ଯେଉଁ ରସିକମାନେ' ତେଣୁ ସୌଖିନ ଆଭିଜାତ୍ୟ ଘରେ ଘରେ ପ୍ରତି ପରିବାରରେ ଯେ ଏ ରାଜ୍ୟରେ ଥିଲା, ଏ ଦେଶର ପ୍ରତି କୁମାରୀ ନେଜମା ନାମରେ ଅଭିହିତ ହେଉଥିଲେ ସେ ସ୍ୱପ୍ନପୁରୀ ସେ ପରସ୍ପର ସ୍ନେହ ସମ୍ବନ୍ଧୀୟ ବୈକୁଣ୍ଠର ସ୍ମୃତି ଆମେ ଯଦୁମଣି ସାହିତ୍ୟରୁ ବହୁଭାବରେ ପାଇଥାଉଁ ।

ଶୁଭସୂଚକପାରା ଉଡ଼ିବା ଆଜିର ଗବ କେହି ନ ଭାବନ୍ତୁ । ବରଯାତ୍ରୀ ଆସିବାବେଳେ 'ଉଡ଼ିଲେ ଧବଳ ପାରା ବକାଳବତ' କବି ଲିପିବଦ୍ଧ କରିଛନ୍ତି । ଏ ଗୋଟିକ କଥା ନୁହେଁ, ଯେଉଁମାନେ ଏହା ପାଠ କରିବା ପରେ ଯଦୁମଣିଙ୍କର ବିଶେଷତ୍ୱ ସୃଷ୍ଟି ଲାଗି ସମାଲୋଚନା ଉଚ୍ଚ କୋଟିରେ ଚର୍ଚ୍ଚା କରି ଲେଖିବେ, ସେମାନେ ସାମାଜିକ ବ୍ୟବହାର, ଦାମ୍ପତ୍ୟ ଜୀବନର ଆଦର୍ଶ, ଗ୍ରାମ, ନଗର, ରାଜଗୃହ, ସ୍ୱାସ୍ଥ୍ୟ ରକ୍ଷାର ମର୍ଯ୍ୟାଦା, ଏପରିକି ମନୁଷ୍ୟ ଜୀବନର ଏପରି ସବୁ ଉତ୍କୃଷ୍ଟଚିହ୍ନ ଏଥିରୁ ପାଇ ପାରିବେ । ଅତ୍ୟାଧୁନିକତାରେ ଯେଉଁମାନେ ମୁଗ୍ଧ ହୋଇ ଅତୀତରେ କିଛି ନ ଥିଲା, ଏବେ ଆମେ ସଭ୍ୟ ହେଲୁ କହୁଛନ୍ତି, ସେହିମାନଙ୍କ ଅନଭିଜ୍ଞତା ଏହା ଦ୍ୱାରା ସହଜରେ ଦୂର ହୋଇ ପାରିବ ।

ଜଗନ୍ନାଥ, ପୁରୀରେ ବିରାଜିତ ମର୍ତ୍ତ୍ୟବୈକୁଣ୍ଠ ନାଥ—ଜଗନ୍ନାଥ, ନୀଳାଚଳରେ ରତ୍ନସିଂହାସନାଧିଷ୍ଠିତ ଜଗନ୍ନାଥ, ଯଜ୍ଞବେଦୀ ଗୁଣ୍ଡିଚାମଣ୍ଡପ, ସ୍ନାନବେଦୀ, ବଡ଼ଦେଉଳ ଛପନଭୋଗ ଭୋଗୀ ଜଗନ୍ନାଥ, କୋଟିସୂର୍ଯ୍ୟ ସମପ୍ରଭ ସୁଦର୍ଶନ ଚକ୍ରଧାରୀ ଜଗନ୍ନାଥ, ଗ୍ରନ୍ଥକର୍ତ୍ତାର ସର୍ବସମ୍ପତ୍ତି ବୋଲି ସେ ବାରଂବାର ବର୍ଣ୍ଣନା କରି ଅଛନ୍ତି । ଏପରି ଜାତୀୟତା ଏପରି ଦୃଢ଼ତା କ୍ୱଚିତ୍ ଦେଖାଯାଇଥାଏ ।

# ପଞ୍ଚମ କଳା

( ରାଗ—ଶ୍ଳେଷ )

ଚତୁରପଣ—ପ୍ରବୀଣ— ଗଣ ଗଣନା—ଭୂଷଣ—
ମଣି ଏକଲ ଏ କଳା—କଳ୍ପନା ରୀତ
ତାପ-ଆପଗା—ତରଣୀ ଅରାତି-ରାତ—ତରଣି
ବିଦର୍ଭବସୁଧା—ପୂର୍ଣ୍ଣ-ସୁଧାଦୀଧିତ
ବାହାର ବିହାର ସମୟ
ଅନ୍ତେ ଅନ୍ତଃପୁରେ କଲେ ଗମନୋଦୟ । ୧ ।

**ଅନ୍ୱୟ**—ଚତୁରପଣ—ପ୍ରବୀଣଗଣ—ଗଣନା-ଭୂଷଣ—ମଣିଏ ଏ କଳା କଳ୍ପନା ରୀତ କଳ । ତାପ-ଆପଗା—ତରଣୀ, ଅରାତି-ରାତ—ତରଣି ବିଦର୍ଭ—ବସୁଧା ପୂର୍ଣ୍ଣ ସୁଧାଦୀଧିତ ବାହାର—ବିହାରସମୟ ଅନ୍ତେ ଅନ୍ତଃପୁରେ ଗମନୋଦୟ କଲେ ।

**କଥା**—ଚତୁର ପଣରେ ଏକାନ୍ତ ପ୍ରବୀଣ ଏବଂ ଜନଗଣ ଗଣନାରେ ଯେଉଁମାନେ ଭୂଷଣର ମଣି ସ୍ୱରୂପ ଅଟନ୍ତି ସେମାନେ ଏହି କଳାର କଳ୍ପନାରୀତି କଳନା କରନ୍ତୁ ।

୧ ଦୁଃଖ ନଦୀର ଭେଳା ସ୍ୱରୂପୀ, ଶତ୍ରୁ ରୂପକ ରାତିର ସୂର୍ଯ୍ୟ ସ୍ୱରୂପୀ, ପୁନଶ୍ଚ ବିଦର୍ଭ—ଧରଣୀର ପୂର୍ଣ୍ଣ ଚନ୍ଦ୍ରମା ସ୍ୱରୂପୀ ଯେ ଶ୍ରୀକୃଷ୍ଣକରାଜା ବାହାରେ ରହି କରୁଥିବା ରାଜକାର୍ଯ୍ୟ ଧାର୍ଯ୍ୟ ସମୟରେ ଶେଷ ହୁଅନ୍ତେ, ଅନ୍ତଃପୁରକୁ ଗମନ କରିବାକୁ ଉଦିତ ହେଲେ ।

**ଆଲୋଚନା**—ରାଜାଙ୍କର କର୍ତ୍ତବ୍ୟ ମଧ୍ୟରେ ସେ ପ୍ରଜାର ଦୁଃଖ ନିବାରଣ କରିବେ । ଏଣେ ଦୁର୍ମତି ପରାୟଣ ଶତ୍ରୁଙ୍କୁ କଠୋର ଦଣ୍ଡ ବିଧାନ କରିବେ ଏବଂ ନିଜ ଶାସିତ ଅଞ୍ଚଳରେ ଅମୃତମୟ ସ୍ୱରୂପ ଦେଖାଦେବେ । ଏମନ୍ତକ ରାଜକାର୍ଯ୍ୟ ଧାର୍ଯ୍ୟ ସମୟରେ ସମାହିତ କରିବେ । ଏପରି ପବିତ୍ରତମ ନୃପତିଙ୍କ ଗମନକୁ କବିଙ୍କ ଦ୍ୱାରା ଉଦୟ ବୋଲି ଅଭିହିତ ହୋଇଅଛି ।

---

ଶବ୍ଦାର୍ଥ । ତାପ—ଯାତନା, ଦୁଃଖ । ଆପଗା—ନଦୀ । ତରଣୀ—ନୌକା, ଭେଳା । ଅରାତି—ଶତ୍ରୁ । ତରଣି—ସୂର୍ଯ୍ୟ । ପୂର୍ଣ୍ଣସୁଧା ଦୀଧିତ—ପୂର୍ଣ୍ଣଚନ୍ଦ୍ରମା । ବାହାର ବିହାର—ରାଜ କାର୍ଯ୍ୟ । ଏ—ମାନେ, ଏହି । ଭୂଷଣ—ଅଳଙ୍କାର । କଳ—କଳନା କର, ବିବେଚନା କର ଧାରଣା କର ।

**ଶୁଣିଲେ ପଞ୍ଚ ମହିଷୀ ଘେନ ସର୍ବ ପ୍ରିୟଦାସୀ**
**ପଶ୍ଚପାଟ୍ଟୀ ପୁଷ୍ପବାଟ୍ଟୀ ବିନୋଦଅର୍ଥୀ**
**ଅନ୍ତର୍ଗତେ ଥିଲା ଭାବ ଶୁଣାଇ ଦେଲା ଦଇବ**
**ତୋଷେ ନୃପତି ଗତିକ ରଚିଲେ ତଥି**
**ଗଲେ ଦାସୀ ମହାଦେବୀଙ୍କି**
**କହିବାକୁ ନୃପାଗମ ପୁଷ୍ପାଟବୀକି । ୨ ।**

**ଅନ୍ୱୟ**—(ଅନ୍ତଃପୁର ଗତିକରି) ପଞ୍ଚମହିଷୀ ଶୁଣିଲେ ସର୍ବପ୍ରିୟ ଦାସୀ ଘେନ ପଶ୍ଚପାଟ୍ଟୀ ପୁଷ୍ପବାଟ୍ଟୀ ବିନୋଦଅର୍ଥୀ (ହୋଇଛନ୍ତି) । (ତାଙ୍କର) ଅନ୍ତର୍ଗତେ (ଏହି) ଭାବଥିଲା । (ଯୋଗକୁ) ଦଇବ ଶୁଣାଇ ଦେଲା । ନୃପତି ତୋଷେ ତଥି ଗତିକ ରଚିଲେ । ପୁଷ୍ପାଟବୀକି ନୃପାଗମ (ବାର୍ତ୍ତା) ମହାଦେବୀଙ୍କି କହିବାକୁ ଦାସୀଗଲେ ।

**କଥା**—ଅନ୍ତଃପୁରକୁ ଯାଇ ଶୁଣିଲେ ପାଟରାଣୀ ସମସ୍ତ ପ୍ରିୟ ଦାସୀଙ୍କୁ ସାଥିରେ ଘେନ ସୁସଜ୍ଜିତ ମନୋହର ବଗିଚା ଆଡ଼େ କ୍ରୀଡ଼ା ଉଦ୍ଦେଶ୍ୟରେ ଗମନ କରି ଅଛନ୍ତି । ତାଙ୍କ ହୃଦୟରେ ବନ ବିହାର ଇଚ୍ଛା ଆଗରୁ ଥିଲା । ଯୋଗକୁ ଦୈବ ବଶରୁ ଏହିପରି ସୁସମ୍ବାଦ ଶୁଣି ସନ୍ତୋଷରେ ସହିତ ସେ ସେଠାକୁ ଯିବାକୁ ବାହାରିଲେ । ଏହା ଦେଖି ଉକ୍ତ ଫୁଲ ବଗିଚାକୁ "ରାଜା ଆସୁଛନ୍ତି"; ଏ ବାର୍ତ୍ତା ମହାଦେଈଙ୍କୁ ଦେବାକୁ ଏକ ଦାସୀ ଚାଲିଗଲା ।

**ଆଲୋଚନା**—କାର୍ଯ୍ୟ ଶେଷରେ ଗୃହକୁ ଫେରିଲେ ପ୍ରଣୟିନୀ ଭାର୍ଯ୍ୟାକୁ ଗୃହସ୍ଥ କେବଳ ଲୋଡ଼ିଥାଏ ।

ଶବ୍ଦାର୍ଥ । ପଶ୍ଚପାଟ୍ଟୀ—ସୁସଜ୍ଜିତ, ମନୋହର । ପୁଷ୍ପବାଟ୍ଟୀ—ଫୁଲ ବଗିଚା । ବିନୋଦ—ବିହାର, କ୍ରୀଡ଼ା, ବିଳାସ । ଅର୍ଥୀ—ଇଚ୍ଛୁକ । ନୃପାଗମ—ରାଜାଙ୍କ ଆଗମନ ।

**କୁସୁମରେଣୁଲମ୍ପଟ— ଭୃଙ୍ଗଧାଟିକା-ଧପଟ-**
**ଲୋକନେ ନୃପ ମୁକୁଟ ହେଲେ ତରସ୍ତ**
**ବଚୃରିଲେ ଅନ୍ତର୍ଗତେ ଏକା ଦେଖି କାମ ମୋତେ**
**କଲା ମନ୍ତ୍ରରଜାଙ୍କିତ-କାଳ ସର୍ପାସ୍ତ୍ର**
**ବାମା ଭେଟେ ମନ ବଳିଲା**
**କାମାନଳ ମରମ ସ୍ଥଳରେ ଜଳିଲା । ୩ ।**

**ଅନ୍ୱୟ**—କୁସୁମରେଣୁ-ଲମ୍ପଟଭୃଙ୍ଗ-ଧାଟିକା (ର) ଧପଟ-ଲୋକନେ ନୃପ-ମୁକୁଟ ତରସ୍ତ ହେଲେ । ଅନ୍ତର୍ଗତେ ବଚୃରିଲେ-କାମ ମୋତେ ଏକା ଦେଖି ମନ୍ତ୍ର ରଜାଙ୍କିତ କାଳ ସର୍ପାସ୍ତ୍ର (ବନ୍ଧ) କଲା । ( ତେଣୁ ) ବାମା ଭେଟେ ମନ ବଳିଲା (ଏବଂ) ମରମସ୍ଥଳରେ କାମାନଳ ଜଳିଲା ।

**କଥା**—ଫୁଲ ରେଣୁ ଲୋଭୀ ଭ୍ରମର ଧାଡ଼ିର ଦଉଡ଼ିବା ଦେଖି ନୃପଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କ କାମନାରେ ଖିନ୍ନ ହୋଇ ଉଠିଲେ । ହୃଦୟରେ ବିଚାର କଲେ-କାମ ମତେ ଏକାକୀ ଦେଖି ମନ୍ତ୍ରରଜ ଧୂଳିରଞ୍ଜିତ କାଳସର୍ପ-ଅସ୍ତ୍ରରେ ବନ୍ଧନ କରି ଦେବ କି ? ଏହା ଭାବି ତାଙ୍କର ନିଜ ସ୍ତ୍ରୀଙ୍କ ପାଖକୁ ଯିବାକୁ ଉତ୍କଣ୍ଠା ଆସିଲା । ତାଙ୍କର ମର୍ମ ସ୍ଥଳରେ କାମାଗ୍ନି ଜଳି ଉଠିଲା ।

---

ଶବ୍ଦାର୍ଥ । କୁସୁମ ରେଣୁ—ପୁଷ୍ପ ପରାଗ । ଲମ୍ପଟ—ଲୋଭୀ । ଧାଟିକା—ଧାଡ଼ି । ଧପଟ—ଦଉଡ଼ିବା । ଲୋକନେ—ଦେଖି । ନୃପମୁକୁଟ—ନୃପ ଶ୍ରେଷ୍ଠ । ତରସ୍ତ—ତ୍ରସ୍ତ, ଖିନ୍ନ । ମନ୍ତ୍ର ରଜାଙ୍କିତ—ମନ୍ତ୍ରରଜ ଧୂଳିଚିହ୍ନ । କାଳ ସର୍ପାସ୍ତ୍ର—ଦୁର୍ଦ୍ଦମନୀୟ ଅସ୍ତ୍ର । ବାମା—ସ୍ତ୍ରୀ ।

ସାରସ-ସୌରଭଦ୍ୱଗେ ଗମନ କଲେ ଉଦ୍‌ବେଗେ
ଶୁଣିଲେ ଦୂରେ ସୁନ୍ଦରୀବୃନ୍ଦ-ଚହଲ
ବିପିନଶୋଭା ଲୋଭରେ ଦୃଷ୍ଟି ଉପମା ପ୍ରଭାରେ
କରିଛନ୍ତି ବଚନାମୃତକୁ ବହଳ
ଯହୁଁ ରୁଚିତରେ ରୁଚିଲା
ଶୁଣିବାକୁ ଲତାନ୍ତେ ଭୂପତି ଲୁଚିଲା । ୪ ।

**ଅନ୍ୱୟ**—ସେ ସାରସ-ସୌରଭ ଦ୍ୱଗେ ଉଦ୍‌ବେଗେ ଗମନ କଲେ । ଦୂରେ ସୁନ୍ଦରୀବୃନ୍ଦ-ଚହଲ ଶୁଣିଲେ । (ଯହୁଁ) ବିପିନ ଶୋଭା ଲୋଭରେ ଦୃଷ୍ଟି (ଦେଇ) ଉପମା ପ୍ରଭାରେ ବଚନା—ମୃତକୁ ବହଳ କରିଛନ୍ତି । ଯହୁଁ ରୁଚିତରେ ରୁଚିଲା । ଭୂପତି ଶୁଣିବାକୁ ଲତାନ୍ତେ ଲୁଚିଲା ।

**କଥା**—ପଦ୍ମ ସୁବାସ ଯେଉଁଆଡୁ ଆସୁଥିଲା, ସେହି ଦ୍ୱଗକୁ ରାଜା ଚଞ୍ଚଳ ଗମନ କଲେ । ଦୂରରେ ସୁନ୍ଦରୀ ମାନଙ୍କର ଚହଲ ଶୁଣି ପାରିଲେ । ସେ ଚହଲରୁ ସେ ଜାଣିଲେ ଯେ ବନଶୋଭାକୁ ଲୋଭରେ ଦୃଷ୍ଟି ପକାଇ ସେ ସମ୍ବନ୍ଧେ ଉପମା ପ୍ରକାଶିତ କରି ମଧୁର ବଚନ ବହୁ ଭାବରେ କୁହା ହୋଇ ଚାଲିଛି । ସେ କଥାମାନ ଯେଣୁ ରୁଚିଜନକ ଭାବରେ ଭଲ ଲାଗିଲା; ତେଣୁ ରାଜା ତାହାସବୁ ଶୁଣିବାକୁ ଲତା ମଧ୍ୟରେ ଲୁଚିଲେ ।

ଶବ୍ଦାର୍ଥ । ସାରସ—ପଦ୍ମ । ସୌରଭ—ସୁବାସ । ଉଦ୍‌ବେଗ—ଚଞ୍ଚଳ । ଦୃଷ୍ଟି—ନେତ୍ର । ପ୍ରଭା—ପ୍ରକାଶ । ବହଳ—ବିଶେଷ । ରୁଚିତରେ—ରୁଚିଜନକ ଭାବରେ । ରୁଚିଲା—ଭଲ ଲାଗିଲା ।

**ଅଳିବିନୋଦ-ନିଧାନ ପ୍ରସନ୍ନ-ମଲ୍ଲୀପ୍ରସୂନ**
**ଦେଖାଇ ଦେଇ କାହାକୁ କେ କହେ ପ୍ରେମେ**
**କପରି ହୁଏ ପ୍ରତୀତ ଶୁଣି ସେ ଭାଷେ ଝଟିତ**
**ବିପରୀତ ରତି ରତି ରଚିଛି ସୋମେ**
**ମହିଷୀର ହେଲା ଉତ୍ତର**
**ରତି ରତି ଚନ୍ଦ୍ରର କି ଦିବା ସଞ୍ଚାର ? । ୫ ।**

**ଅନ୍ୱୟ**—ଅଳି ବିନୋଦନିଧାନ-ପ୍ରସନ୍ନ-ମଲ୍ଲୀପ୍ରସୂନ ଦେଖାଇ ଦେଇ ପ୍ରେମେ କେ କାହାକୁ କହେ—କପରି ପ୍ରତୀତ ହୁଏ ? ସେ ଶୁଣି ଝଟିତ ଭାଷେ, ରତି ବିପରୀତ ରତି ସୋମେ ରଚିଛି (ତା ଶୁଣି) ମହିଷୀର ଉତ୍ତର ହେଲା—ଦିବା ସଞ୍ଚାର (ବେଳେ) ରତି (ଓ) ଚନ୍ଦ୍ରର କି ରତି ହୁଏ ?

**କଥା**—ଯେଉଁ ଫୁଟନ୍ତା ମଲ୍ଲୀ ଫୁଲରେ ବସି ଭ୍ରମର କ୍ରୀଡ଼ା କରୁଥାଏ, ତାକୁ ଦେଖାଇ କାମାତୁର ଜଣେ ସଖୀ ଅନ୍ୟଜଣେ ସଖୀକୁ କହୁଛି—ଏହା ଦେଖିଲେ କପରି ଜଣାଯାଏ ? ଶୁଣିବା ଜଣକ ତା ଶୁଣି ହଠାତ୍ କହୁଛି ରତି ଚନ୍ଦ୍ର ସାଥିରେ ବିପରୀତ ରତି କରୁଛି । ରତି କଳା; ତେଣୁ ଭ୍ରମର ପରି ! ମଲ୍ଲୀଫୁଲ ଧଳା; ତାହା ଚନ୍ଦ୍ରମା ସଦୃଶ । ଏହା ଶୁଣି ରାଣୀ କହିଲେ—ମଲା, ଦିନବେଳେ ରତି ସାଥିରେ ଚନ୍ଦ୍ର କମିତି ରତି କଲାମ ? ଏପ୍ରକାର ସମ୍ଭବ ? ଦିନରେ ରତି କେଉଁଠୁ ବା ଅଇଲା ?

ଶବ୍ଦାର୍ଥ । ଅଳିବିନୋଦ—ଭ୍ରମର କ୍ରୀଡ଼ା । ନିଧାନ—ସ୍ଥାନ, ଆଧାର । ପ୍ରସନ୍ନ—ପ୍ରସ୍ଫୁଟିତ । ପ୍ରସୂନ—ଫୁଲ । ପ୍ରତୀତ—ବିଶ୍ୱାସ । ଝଟିତ—ଶୀଘ୍ର । ରତ—ରତି । ସୋମେ—ଚନ୍ଦ୍ର ସହିତ । ମହିଷୀ—ରାଣୀ । ଦିବା ସଞ୍ଚାର—ଦିନବେଳ ।

**ଶ୍ରବଣେ ପ୍ରମଦା ଜଣେ ଭଣିଲ୍ କୋବିଦା ଗୁଣେ**
**ସୁରଦା ତୋର ଶାରଦା ତୁଲେ ଗୁମାନ**
**କହ ତେବେ ହେବ କସ ଭୂପାଲକୁଳାବତଂସ-**
**ରମଣୀ ରମଣୀ ମଣି କଲେ ରଚନ**
**ନୋହିବାରୁ ଦୁହିତା ବିଭା**
**କାନ୍ତ କୀର୍ତ୍ତି ଯଥା ତଥା ପାଉଛି ଶୋଭା । ୬ ।**

**ଅନ୍ୱୟ**—(ତାହା) ଶ୍ରବଣେ ଜଣେ ପ୍ରମଦା ଭଣିଲ୍ (ହେ) ସୁରଦା ! କୋବିଦା ଗୁଣେ ଶାରଦା ତୁଲେ ଗୁମାନ ତୋର (ଅଛି) । କହ ତେବେ କସ ହେବ । (ଯହୁଁ) ଭୂପାଲକୁଳାବତଂସ-ରମଣୀ ରମଣୀ ମଣି ରଚନା କଲେ—ଦୁହିତା ବିଭା ନୋହିବାରୁ କାନ୍ତ କୀର୍ତ୍ତି (ରେ) ଯଥା ତଥା ଶୋଭା ପାଉଛି ।

**କଥା**—ତାହା ଶୁଣିକରି ଜଣେ ଅତି ସୁନ୍ଦରୀ ରମଣୀ କହିଲା-ଆଲୋ ସୁରଦା ! ପଣ୍ଡିତା ଗୁଣରେ ସରସ୍ୱତୀଙ୍କ ସହିତ ସମାନ ବୋଲି ତୋର ଅଭିମାନ ରହିଛି । ତେବେ ତୁ ଗୋଟିଏ କଣ ଉପମା ଦେଲୁ ।

ଏକଥା ଶୁଣି ରାଜବଂଶଜା ନାରୀ ଶ୍ରେଷ୍ଠା ରାଣୀ ଏପରି କହିଲେ—

—ଆଲୋ ! ତୁମେ କେହି ବୁଝିନ । ମୋ ଜେମା ବିଭା ନୋହିବାରୁ ମୋ ସ୍ୱାମୀଙ୍କ ଶୁଭ୍ର କୀର୍ତ୍ତିରେ କଳଙ୍କ ଶୋଭା ପାଉଛି । ଶୁଭ୍ର ମଲ୍ଲୀଫୁଲ ମୋ ସ୍ୱାମୀଙ୍କ ଯଶ ଏବଂ କୃଷ୍ଣ ଭ୍ରମର ସେଥିରେ କଳଙ୍କ ଅଟେ ।

---

ଶବ୍ଦାର୍ଥ । ସୁରଦା—ସ୍ତ୍ରୀ ନାମ ବିଶେଷ । ପ୍ରମଦା—ମନୋହାରଣୀ ରମଣୀ । ଭୂପାଳ-କୁଳାବତଂସ—ରାଜ କୁଳରେ ଜନ୍ମ । ଗୁମାନ—ଦମ୍ଭ, ଅଭିମାନ ।ଶାରଦା—ସରସ୍ୱତୀ । ଯଥାତଥା—ଦେଖିବା ପ୍ରକାର; କଳଙ୍କ ସ୍ୱରୂପ କୃଷ୍ଣବର୍ଣ୍ଣ ।

**ପଡ଼ୁଁ ଏ ଉତ୍ତର କର୍ଣ୍ଣେ ବାହୁଡ଼ା ବିଜୟ ତୂର୍ଣ୍ଣେ**
**ବିଧାନ କରି ଏକାନ୍ତ ନିଧାନେ ରହି**
**ସଚିବ, ପୁରୋଧା ମେଳେ ସଚିନ୍ତେ ମାନସେ ଭାଳେ**
**କେମା ଦୁର୍ଲଭ-ବଲ୍ଲଭ ଲଭିବେ କେହି**
**ପଞ୍ଚ ମହର୍ଷୀର ଉତ୍ତର**
**ଛାତକୁ କରୁଛି କାତ ଲେପି କହର । ୭ ।**

**ଅନ୍ୱୟ—**ଏ ଉତ୍ତର କର୍ଣ୍ଣେ ପଡ଼ୁଁ ତୂର୍ଣ୍ଣେ ବାହୁଡ଼ା-ବିଜୟ ବିଧାନ କରି ସଚିବ, ପୁରୋଧା ମେଳେ ଏକାନ୍ତ ନିଧାନେ ରହି ମାନସେ ସଚିନ୍ତେ ଭାଳେ—କେମା (ଲାଗି) ଦୁର୍ଲଭ ବଲ୍ଲଭ କେହି ଲଭିବେ । (କାରଣ) ପଞ୍ଚ ମହର୍ଷୀର ଉତ୍ତର କହର ଲେପି କାତ ଛାତିକି କରିଛି ।

**କଥା—**ଏ ଉତ୍ତର କାନରେ ପଡ଼ନ୍ତେ ଶୀଘ୍ର ବାହୁଡ଼ା ବିଜେ ହୋଇ ମନ୍ତ୍ରୀ ଏବଂ ପୁରୋହିତଙ୍କ ସଙ୍ଗତରେ ଗୋପନୀୟ ସ୍ଥାନରେ ରହି ସେ କଥା ମନରେ ଚିନ୍ତା କରି ସେମାନଙ୍କ ସହିତ ଭାବିଲେ—ଆଚ୍ଛା ! କେମା ଲାଗି ଅତ୍ୟୁତ୍କୃଷ୍ଟ ବର ଟିଏ କେହି ଖୋଜି ଠିକ୍ କରିପାରିବ ନାହିଁ ? କାରଣ ମୋତେ ପାଟରାଣୀ ଯାହା କହିଲେ ମହା ବିଷ ବୋଳା କାତ ଗୋଟି ପରି ମୋ ଛାତିରେ ଗଳିଯାଇଛି ଏବଂ ଜ୍ୱାଳା କରୁଛି ।

---

ଶବ୍ଦାର୍ଥ । ତୂର୍ଣ୍ଣେ—ଶୀଘ୍ରେ । ଏକାନ୍ତ—ଗୋପନୀୟ । ନିଧାନ—ସ୍ଥାନ । ଭାଳିଲେ—ମନ୍ତ୍ରଣା କରିବାକୁ କହିଲେ, ଚିନ୍ତା କଲେ । ସଚିବ—ମନ୍ତ୍ରୀ, ଅମାତ୍ୟ । କାତ—କଣ୍ଟକ । କହର ଲେପି—ବିଷ ଲେପିତ, ବିଷ ବୋଳା । ଦୁର୍ଲଭ—ଉତ୍କୃଷ୍ଟ, ଦୁଷ୍ପ୍ରାପ୍ୟ । ବଲ୍ଲଭ—ସ୍ୱାମୀ, ବର ।

ଏତେ ବହୁଅଛୁ ପୀଡ଼ା ସର୍ପ ଦନ୍ତ-ଦର୍ପ ବ୍ରୀଡ଼ା
ଲୋଡ଼ା କରିବ ତା ସଙ୍ଗେ ତୁଳି ବସିଲେ
ଉଗ୍ରତାରେ ଅଗ୍ରସର କୁଗ୍ରହୀ ବରକୁମର
ମୃଗୟା ବନୋଦୁଁ ଗମି ନମି ବସିଲେ
ନୃପ ପଗୃଚ୍ଛିବା ବଗ୍ଭରେ
ଭ୍ରମାଇଁ ଭ୍ରମାଇଁ ମନ ମନ୍ତ୍ରୀ ଉଚାରେ । ୮ ।

**ଅନ୍ୱୟ**—ଏତେ ପୀଡ଼ା ବହୁ ଅଛୁ ଯେ) ତା ସଙ୍ଗେ ସର୍ପ ଦନ୍ତ-ଦର୍ପ ତୁଳି ବସିଲେ । (ସେ) ବ୍ରୀଡ଼ା ଲୋଡ଼ା କରିବ । (ଏମନ୍ତ ସମୟରେ) ଉଗ୍ରତାରେ ଅଗ୍ରସର କୁଗ୍ରହୀ ବରକୁମର ମୃଗୟା ବନୋଦୁଁ ଗମି ନମି ବସିଲେ । ନୃପ ପଗୃଚ୍ଛିବା ବଗ୍ଭରେ ମନ୍ତ୍ରୀ ମନ ଭ୍ରମାଇଁ ଭ୍ରମାଇଁ ଉଚାରେ ।

**କଥା**—ତାଙ୍କ କଥା ମତେ ଏତେ କଷ୍ଟ ହେଉଅଛୁ ଯେ ତା ସହିତ ସାପର ଦନ୍ତାଘାତକୁ ତୁଳନା କଲେ ତାହା ମଧ୍ୟ ଲଜ୍ଜିତ ହେବ ।

ରାଜା ଏପରି କହିବା ସମୟରେ ଅତି ଉଗ୍ର ଚଞ୍ଚଳ ମନା, ନିନ୍ଦନୀୟ ଗ୍ରହ ପରି ଦୁଷ୍ଟ ତାଙ୍କର ଜ୍ୟେଷ୍ଠ ପୁତ୍ର ତୁରନ୍ତ ବନ୍ୟ ଶିକାର ବିଳାସରୁ ଫେରି ବାପାଙ୍କୁ ନମସ୍କାର କରି ବସିଲେ । ତେଣୁ ପଗୃଚ୍ଛିବା କଥାର ମନ୍ତ୍ରଣାରେ ମନ୍ତ୍ରୀ ଚିତ୍ତକୁ ଆଲୋଚନା ମଧ୍ୟରେ ଘୁରାଇ ଘୁରାଇ କହିଲେ— ।

ଶବ୍ଦାର୍ଥ । ପୀଡ଼ା—କଷ୍ଟ, ଯାତନା । ବ୍ରୀଡ଼ା—ଲଜ୍ଜା । ସର୍ପଦନ୍ତ ଦର୍ପ—ସାପ ଦାନ୍ତର ଆଘାତ । କୁଗ୍ରହୀ—ନିନ୍ଦନୀୟ, କୁଗ୍ରହ ସମାନ । ଅଗ୍ରସର—ଅଗ୍ରଗଣ୍ୟ, ଅଗ୍ରଗାମୀ । ବର—ଜ୍ୟେଷ୍ଠ । ନମି—ନମସ୍କାର କରି । ମୃଗୟା ବନୋଦୁଁ—ଶିକାର ବ୍ୟସନରୁ ।

ଉଦୟାଚଳ-ସଂଯୋଗୁଁ ରକ୍ତିମା ଲାଞ୍ଛନ ସଙ୍ଗୁଁ
ଗୁଞ୍ଜା ଛବି କାଞ୍ଚାଟବୀ କଣ୍ଟକ ଧରେ
କୁନ୍ଦନାଙ୍ଗୀ ନନ୍ଦନାଙ୍କୁ ତୁଲନ୍ତାଇଁ ଅବା ତାଙ୍କୁ
ବହ୍ନି ବିହିଛି ଜନମ ସେହି ବଂଶରେ
ଜେମା ସମେ ସର୍ବସ୍ଥାବର
ଦିଶୁନାହିଁ କାହିଁ ହେ ଭୂ-କଳ୍ପସ୍ଥାବର । ୯ ।

**ଅନ୍ୱୟ**—କଞ୍ଜ ଉଦୟାଚଳ-ସଂଯୋଗୁଁ ରକ୍ତିମା ଲାଞ୍ଛନ ସଙ୍ଗୁଁ ଅଟବୀ କଣ୍ଟକ ଗୁଞ୍ଜା ଛବି ଧରେ । (ତା ହେଲେ ହେଁ) କୁନ୍ଦନାଙ୍ଗୀ (ତୁମ୍ଭ) ନନ୍ଦନାଙ୍କୁ ତାଙ୍କୁ ଅବା ତୁଲନ୍ତାଇଁ; (କନ୍ତୁ) ବହ୍ନି ସେହି ବଂଶରେ ଜନମ ବହିଛି । ହେ ଭୂ-କଳ୍ପସ୍ଥାବର ! ଜେମା ସମେ ସର୍ବସ୍ଥାବର କାହିଁ ଦିଶୁନାହିଁ ।

**କଥା**—ଚନ୍ଦ୍ରମା ଉଦୟ ପର୍ବତରେ ଯୋଗହେବା ବେଳେ ତାଙ୍କ ଅଙ୍ଗର ଲାଲବର୍ଣ୍ଣ ସହିତରେ କଳଙ୍କ ମିଶି ତାହା ଅରଣ୍ୟଜାତ କଣ୍ଟକୀ ଲତାର କାଇଁଚ ଛବି ଧାରଣ କରେ । ଏପରି ହେଲେ ହେଁ ତାଙ୍କପରି କାଇଁଚ ସାଥିରେ କନକ ଦେହା ତୁମ ଜେମାଙ୍କୁ ଅବା ତୁଲନା କରନ୍ତେ । ବର ତ ମିଳୁ ନାହିଁ । ତୁମ ଜେମା ସୁନା ହେଲେ ସେ ନିଷ୍ଟୟ କାଇଁଚ । ହେଲେ ତା ମଧ୍ୟ ସମ୍ଭବ ନୁହେଁ । କାରଣ ବିଧାତା ତୁମ ଝିଅକୁ ସେହି ଚନ୍ଦ୍ର ବଂଶରେ ଜନ୍ମ ଦେଇଛି । ହେ ଅଚଳସମ ସ୍ଥିର ନୃପତି ! ତୁମଦ୍ୱାରା ଏ ଭୂମି କଳ୍ପବୃକ୍ଷ ସମ ସମସ୍ତ ସୁଖ ସମ୍ଭୋଗ ଦାନ କରିପାରୁଛି; କନ୍ତୁ ଦୁଃଖର ବିଷୟ ଯେ ତୁମର ଏକମାତ୍ର ପରମା ସୁନ୍ଦରୀ ଜେମା ଲାଗି ଗୋଟିଏ ଶ୍ରେଷ୍ଠ ବର କାହିଁତ ଦେଖାଯାଉ ନାହିଁ ।

---

ଶବ୍ଦାର୍ଥ । କଞ୍ଜ—ଚନ୍ଦ୍ର । କୁନ୍ଦନ—ସ୍ୱର୍ଣ୍ଣ । ଅଟବୀ—କାନନ । ଗୁଞ୍ଜା—କାଇଁଚ । ଲାଞ୍ଛନ—କଳଙ୍କ । ସ୍ଥାବର—ଅଚଳ, ସ୍ଥାୟୀ । ଭୂ-କଳ୍ପସ୍ଥାବର—ଭୂମିର କଳ୍ପ ବୃକ୍ଷ ସଦୃଶ୍ୟ ପୁଣି ଅଚଳ ସଦୃଶ, ନୃପତି । ସର୍ବସ୍ଥା—ସର୍ବୋତ୍ତମ, ଶ୍ରେଷ୍ଠ । ବର—ସ୍ୱାମୀ ।

**ପୂରେ୍ୱାଧା କହେ କଷଟି ଶଳା ପରରେ ଧୂର୍ଜ୍ଜଟି-**
**ଗଳାକୁ ଗରଳ ପାଶେ କରିଅଛନ୍ତି**
**ବାହ୍ମ ରେଖା ଲେଖାଯାଉ ସଚିବ ବଦତ୍ତି ତହୁଁ**
**ଅର୍ଦ୍ଧାସନ ବତ୍ତୀ ହୈମବତୀ ହୁଅନ୍ତି**
**ନୃପ ଭାଷେ ତୁଳ ବସିଲେ**
**କି କାର୍ଯ୍ୟ ସେ ପୂଜ୍ୟରତ୍ନ ମେଳେ ବସିଲେ । ୧୦ ।**

**ଅନ୍ୱୟ**—ପୁରେ୍ୱାଧା କହେ ଧୂର୍ଜ୍ଜଟି ଗଳାକୁ ଗରଳ ପାଶେ କଷଟି ଶିଳାପରରେ କରିଅଛନ୍ତି । (ଯେମା) ବାହ୍ମ ରେଖା (ତହିଁ) ଲେଖାଯାଉ । ତହୁଁ ସଚିବ ବଦନ୍ତି (ତହିଁ) ହୈମବତୀ ଅର୍ଦ୍ଧାସନବତୀ ହୁଅନ୍ତି । ନୃପ ଭାଷେ ତୁଳ ବସିଲେ କି କାର୍ଯ୍ୟ ? ସେ ରତ୍ନ ମେଳେ ବସିଲେ (ସିନା) ପୂଜ୍ୟ (ହେବ) ।

**କଥା**—ତା ଶୁଣି ପୁରୋଧା କହିଲେ ଶିବ ତାଙ୍କ କଣ୍ଠକୁ ଗରଳ ସମ୍ମୁଖରେ କଷଟି ପଥର ପରି ନୀଳ କରି ଅଛନ୍ତି । ଯେମାର ସ୍ୱର୍ଣ୍ଣ ରଙ୍ଗିମା ବାହ୍ମ ରେଖା ସେ କଣ୍ଠରେ ଲେଖାଯାଉ । ଶିବଙ୍କୁ ବର କରାଯାଉ । ତା ଶୁଣି ମନ୍ତ୍ରୀ କହିଲେ—ତହିଁପରି ହୈମବତୀ ପାର୍ବତୀ ଅର୍ଦ୍ଧାଙ୍ଗ ଆବୋରି ରହିଛନ୍ତି ! ସେଠି ଆଉ ଯାଗା କାହିଁ ? ଏ ସବୁ ଶୁଣି ରାଜା କହିଲେ ଯେମାକୁ ସୁନା ସାଥିରେ ତୁଳନା କରି ଲାଭ କ'ଣ ? ସ୍ୱର୍ଣ୍ଣ ସିନା ରତ୍ନ ସଂଯୋଗ ଲଭିଲେ ପ୍ରଶଂସା ଯୋଗ୍ୟ ହେବ !

---

ଶବ୍ଦାର୍ଥ । ଧୂର୍ଜ୍ଜଟି--ଶିବ । ପାଶେ—ସମ୍ମୁଖରେ । କଷଟି ଶିଳା—କଷଟି ପଥର । ଅର୍ଦ୍ଧାସନ—ଅର୍ଦ୍ଧାଙ୍ଗ । ମେଳେ—ଯୋଗ ହେଲେ । ପୂଜ୍ୟ—ପ୍ରଶଂସନୀୟ ।

କଂସ-ବାମାବଂଶ-ନେତ୍ର— ରଞ୍ଜନ-ଅଞ୍ଜନଚନ୍ଦ୍ର
ଭଜନ ହୋଇଲା ଯାହା ଜ୍ୟୋତ୍ସ୍ନା ସ୍ପରଶେ
ଏମନ୍ତ ମହୀନ୍ଦ୍ର ନୀଳ— ମଣି ଆଣି କର ମେଳ
ଅଛନ୍ତି ଦ୍ୱାରକାପୁର ମଞ୍ଜୁ ମଞ୍ଜୁଷେ
ପ୍ରମାଣ ପ୍ରମାଣ ବଚନ
ବକ୍ତା ହୋଇଥିଲେ ଦୁହେଁ କଲେ ରଚନ । ୧୧ ।

**ଅନ୍ୱୟ**—ଯାହା ଜ୍ୟୋତ୍ସ୍ନା ସ୍ପରଶେ କଂସ-ବାମା-ବଂଶ-ନେତ୍ର-ରଞ୍ଜନ-ଅଞ୍ଜନ ଚନ୍ଦ୍ର ଭଜନ ହୋଇଲା, ଏମନ୍ତ ମହୀନ୍ଦ୍ର-ନୀଳମଣି ଦ୍ୱାରକାପୁର ମଞ୍ଜୁମଞ୍ଜୁଷେ ଅଛନ୍ତି (ତାଙ୍କୁ) ଆଣି ମେଳ କର । (ଯେଉଁ) ଦୁହେଁ ବକ୍ତା ହୋଇଥିଲେ 'ପ୍ରମାଣ' 'ପ୍ରମାଣ' ବଚନ ରଚନ କଲେ ।

**କଥା**—ରାଜା କହିଲେ—ଯାହାଙ୍କ କାନ୍ତି ସ୍ପର୍ଶରେ କଂସର ସ୍ତ୍ରୀମାନଙ୍କର ଚକ୍ଷୁ ରଞ୍ଜିତ କଜ୍ଜଳ ଚନ୍ଦ୍ର ନଷ୍ଟ ହୋଇଗଲା, (କଂସ ମୃତ୍ୟୁରେ ସେମାନଙ୍କ ଚକ୍ଷୁରୁ ଲୋତକ ବହି କଜ୍ଜଳ ବହିଗଲା)—ଏପରି ଯେଉଁ ବର୍ତ୍ତମାନ ଧରଣୀର ଶ୍ରେଷ୍ଠ ନୀଳମଣି—କାନ୍ତ କୃଷ୍ଣ, ଯେ କି ଦ୍ୱାରକାପୁରୀ ରୂପକ ସୁନ୍ଦର ପେଡ଼ିରେ ଅଛନ୍ତି, ସେହି ନୀଳମଣି ସାଥିରେ ଆମ ଜେମା-ସୁନାକୁ ମେଳ କରିଦିଅ ।

ଯେଉଁ ପୁରୋହିତ ଓ ମନ୍ତ୍ରୀ ଦୁହେଁ ଏହି ଘଟଣାରେ ବକ୍ତା ହୋଇଥିଲେ, ସେମାନେ ଏକଥା ଶୁଣି ଆନନ୍ଦରେ 'ପ୍ରମାଣ ପ୍ରମାଣ' କହିବାକୁ ଲାଗିଲେ ।

ଶବ୍ଦାର୍ଥ । ଜ୍ୟୋତ୍ସ୍ନା—କାନ୍ତି, ଶୋଭା । କଂସବାମାବଂଶ—କଂସସ୍ତ୍ରୀମାନଙ୍କର । ନେତ୍ର-ରଞ୍ଜନ ଅଞ୍ଜନ—ଆଖିରେ ଲାଗିଥିବା କଜ୍ଜଳ । ଭଂଜନ—ନଷ୍ଟ । ମହୀନ୍ଦ୍ର—ଧରଣୀରେ ଶ୍ରେଷ୍ଠ । ନୀଳମଣି—କୃଷ୍ଣ । ମଞ୍ଜୁ—ସୁନ୍ଦର । ମଞ୍ଜୁଷ—ସିନ୍ଦୁକ, ପେଡ଼ି । ପ୍ରମାଣ ପ୍ରମାଣ—'ତାହାହିଁ ସତ୍ୟ' ।

କୁମର ଶ୍ରବଣ-ନଳ ଯୋଗେ ଏ ବଚନାନଳ
ଢାଳି ଦେଲା ମର୍ମସ୍ଥଳ କ୍ରୋଧ ଅନଳ
ଉଡ଼ିଲା ପରି ସ୍ଫୁଲିଙ୍ଗ ଦିଶିଗଲା ନେତ୍ରରଙ୍ଗ
ତାମ୍ବୁଳ-ସଂସର୍ଗି-ଓଷ୍ଠ ଶିଖା ଚଞ୍ଚଳ
ଧୂମ ଟେକ ଦେଲା ପ୍ରକାରେ
ବୀରକେଶ ଫୁଲାଇ ଏ ଭାଷା ଉଚ୍ଚାରେ । ୧୨ ।

**ଅନ୍ୱୟ**—କୁମର (ର) ଶ୍ରବଣ-ନଳ ଯୋଗେ ଏ ବଚନାନଳ (ତା) ମର୍ମସ୍ଥଳ (ରେ) କ୍ରୋଧ ଅନଳ ଢାଳି ଦେଲା । ସ୍ଫୁଲିଙ୍ଗ ଉଡ଼ିଲା ପରି ନେତ୍ରରଙ୍ଗ ଦିଶିଗଲା । ତାମ୍ବୁଳ ସଂସର୍ଗ ଓଷ୍ଠ ଶିଖା (ପ୍ରାପ୍ତ) ଚଞ୍ଚଳ (ହୋଇ ଉଠିଲା) । ଧୂମ ଟେକ ଦେଲା ପ୍ରକାରେ ବୀରକେଶ ଫୁଲାଇ (ସେ) ଏ ଭାଷା ଉଚ୍ଚାରେ ।

**କଥା**—ରାଜପୁତ୍ର ରୁକ୍ମର କର୍ଣ୍ଣ ନଳାରେ ଏହି ବାକ୍ୟ ରୂପକ ପବନ ତା ମର୍ମ ଭିତରକୁ ଯାଇ ସେଠି କ୍ରୋଧ ଅଗ୍ନି ଢାଳି ଦେଲା । ସେ "ରୁକ୍ମିଣୀ କୃଷ୍ଣଙ୍କୁ ବରଣ କରିବ" ଏହା ଶୁଣନ୍ତେ କ୍ରୋଧରେ ଯାଚିଗଲା । ନିଆଁଗୁଲ ଉଡ଼ିଲା ପରି ତା ଆଖି ଲାଲ ହୋଇଗଲା । ତାର ପାନଖିଆ ଓଠ ଅଗ୍ନିଶିଖା ପରି ଲହ ଲହ ହୋଇ ଉଠିଲା । ଧୂଆଁ ଟେକ ଦେଲା ପରି ତା କେଶ ଫୁଲ ଉଠିଲା । ସେ ଏହି କଥା କହିଲା—

**ଆଲୋଚନା**—ଯୁବକ ରୁକ୍ମର କେଶ କୃଷ୍ଣ ବର୍ଣ୍ଣ ହେଲେହେଁ ଧୂମ ମଧ୍ୟ କୃଷ୍ଣ ବର୍ଣ୍ଣ ଦେଖା ଯାଇଥାଏ ଏବଂ ତାହା କୁଣ୍ଡଳୀଧରେ; କେଶ ପରି ।

---

ଶବ୍ଦାର୍ଥ । କୁମର—ରାଜପୁତ୍ର ରୁକ୍ମ । ଶ୍ରବଣନଳ—କର୍ଣ୍ଣ ରୂପକ ନଳ । ବଚନାନଳ—କଥା ରୂପକ ପବନ । ସ୍ଫୁଲିଙ୍ଗ—ଅଗ୍ନିକଣା । ତାମ୍ବୁଳ ସଂସର୍ଗି—ପାନଖିଆ । ଶିଖା—ଅଗ୍ନି-ଶିଖା । ବୀର କେଶ—କେଶ ।

**ଦଳିତାଞ୍ଜନ ପ୍ରକାର ପ୍ରତୀକ ରୁଚିରତର**
**ଗୋକୁଳ କୁଳାବତାର ଆୟୁଧ ବେଣୁ**
**ଶିରମଣି କେକି-ପୁଚ୍ଛ ହୃଦମଣି ଗୁଞ୍ଜା ଗୁଚ୍ଛ**
**ତନୁ ଭୂଷଣ ତ ଧେନୁ ଚରଣ ରେଣୁ**
**ବ୍ରଜ ଜଦାଧରୀ-ଲମ୍ପଟ**
**ଷଣ୍ଢୀ-ବତ୍ସା-ହତ୍ୟାଭରବୁହା ଶକଟ । ୧୩ ।**

**ଅନ୍ୱୟ**—(ସେହି) ଗୋକୁଳ-କୁଳାବତାର-ପ୍ରତୀକ ଦଳିତାଞ୍ଜନ-ପ୍ରକାର ରୁଚିରତର (ଅଟେ) । (ତା) ଆୟୁଧ ବେଣୁ, ଶିରମଣି କେକିପୁଚ୍ଛ, ହୃଦମଣି ଗୁଞ୍ଜା ଗୁଚ୍ଛ, ତନୁଭୂଷଣ ତ ଧେନୁ ଚରଣ ରେଣୁ (ଅଟେ) । (ପୁଣି ସେ) । ବ୍ରଜଜଦାଧରୀ-ଲମ୍ପଟ (ଜଣେ) । (ବିଶେଷରେ) ଷଣ୍ଢୀ-ବତ୍ସା-ହତ୍ୟାଶକଟ-ଭରବୁହା (ସେ) ।

**କଥା**—ଯେଉଁ କୃଷ୍ଣ ଜଣକୁ ଆମ ପିତା ମୋ ଭଉଣୀ ଲାଗି ବର କରିବାକୁ ଚାହୁଁଛନ୍ତି—ସେ କପରି ଜାଣ ? ସେ ମ୍ଳେଚ୍ଛ ଆଭୀର-ଗଉଡ଼ କୁଳରେ ଅବତାର ଗ୍ରହଣ କରିଛି । ତା ଅବୟବ କଳା କଜଳ ପରି ସୁନ୍ଦର ଅଟେ । ତାର ଆୟୁଧ ବାଉଁଶ ବଇଁଶୀ ଖଣ୍ଡିଏ । ତା ଶିରର ମଣି ମୟୂର ଲାଞ୍ଜ । ବକ୍ଷର ମଣିହାର ହୋଇଛି କାଇଁଚମାଳ । କର୍ପୂର ପରି ତା ସର୍ବାଙ୍ଗରେ ଗୋରୁଙ୍କ ପଦଧୂଳି ଭୂଷିତ ହୋଇଥାଏ । ପୁଣି ସେଥିରେ ଗୁଣ ଅଳ୍ପ ନୁହେଁ । ବିବାହ ନ କରୁଣୁ ମ୍ଳେଚ୍ଛ ଆଭୀରୀ ବ୍ରଜ ଗଉଡୁଣୀଙ୍କଠାରେ ସେ ଜଣେ ଲମ୍ପଟ ଧୁରନ୍ଧର ନାଗର । ବିଶେଷରେ ଯେ ଷଣ୍ଢୀ, ବତ୍ସା ନାମରେ ଷଣ୍ଢ, ବାଛୁରୀ ମାରି ମହାପାତକ ଶଗଡ଼ ଭାର ବୋହିଛି, ତା କଥା କଣ କହିବା ?

**ଶବ୍ଦାର୍ଥ** । ପ୍ରତୀକ—ଅବୟବ । ଦଳିତାଞ୍ଜନ—ଦଳା କଜଳ । ଗୋକୁଳ—ଗଉଡ଼ କୁଳ । ବେଣୁ—ବଂଶୀ । କେକୀ ପୁଚ୍ଛ—ମୟୂର ପୁଚ୍ଛ, ଚନ୍ଦ୍ରିକା । ଗୁଞ୍ଜା ଗୁଚ୍ଛ—କାଇଁଚମାଳୀ । ଜଦାଧରୀ—ନାରୀ । ଷଣ୍ଢୀ—ଏକ ଦୈତ୍ୟ, କୃଷ୍ଣଙ୍କ ଦ୍ୱାରା ନିହତ । ବତ୍ସା—ଏକ ଦୈତ୍ୟ, କୃଷ୍ଣଙ୍କ ଦ୍ୱାରା ନିହତ । ହତ୍ୟା ଶକଟ—ପାପ ଶଗଡ଼ ।

**କହିଲି ଚେଦି ନଗର- ନଭଚନ୍ଦ୍ରମା-କୁମର**
**ଗୁଣ-ନିକେତନ ବୀରଗଣ-କେତନ**
**ଅର୍ଥଦାନେ କାମଧେନୁ ସାମର୍ଥ ଦିଶଇ ତନୁ**
**ପୀନ-ଜଘନୀ କୁଳର ମୀନକେତନ**
**ଅସି ଯେବେ କଷି ଧରଇ**
**ମୃତ୍ୟୁ ଦେବ ବୋଲି ମୃତ୍ୟୁଦେବ ଡ଼ରଇ । ୧୫ ।**

**ଅନ୍ୱୟ**—(ସେ) କହିଲି ଚେଦିନଗର-ନଭ-ଚନ୍ଦ୍ରମା (ଙ୍କ) କୁମର ଗୁଣ-ନିକେତନ (ଏବଂ) ବୀରଗଣ କେତନ (ଅଟେ) । ଅର୍ଥଦାନେ କାମଧେନୁ ସାମର୍ଥ (ତା) ତନୁ ଦିଶଇ । (ସେ) ପୀନ-ଜଘନୀକୁଳର ମୀନକେତନ (ଅଟେ) । (ସେ) ଅସି ଯେବେ କଷି ଧରଇ (କେତ) ମୃତ୍ୟୁଦେବ ବୋଲି ମୃତ୍ୟୁଦେବ (ତାକୁ) ଡ଼ରଇ ।

**କଥା**—ସେ ଯୁବରାଜ ରୁକ୍ମୀ ଗର୍ବିତ ଉକ୍ତିରେ କହିଲା—ଚେଦି ନଗର ଆକାଶରେ ଚନ୍ଦ୍ରମା ସଦୃଶ ଦମଘୋଷ ରାଜା ବିରାଜିତ ଅଛନ୍ତି । ତାଙ୍କ ପୁତ୍ର ଶିଶୁପାଳ ସଦ୍‌ଗୁଣର ନିକେତନ ଅଟେ । ବୀର ମାନଙ୍କ ମଧ୍ୟରେ ଧ୍ୱଜା ସ୍ୱରୂପ ଶ୍ରେଷ୍ଠ ଅଟେ । ଅର୍ଥଦାନ କରିବାରେ କାମଧେନୁର ସାମର୍ଥ୍ୟ ଅଛିବୋଲି ତା ଅଙ୍ଗରୁ ଜଣାଯାଏ । ସେ ସ୍ଥୂଳ ନିତମ୍ବିନୀ ନାରୀକୁଳର କାମଦେବ ସ୍ୱରୂପ ଅଟେ । ସେ ଖଣ୍ଡା ଯେବେ ଭିଡ଼ିକରି ଧରି ମାରିଦେବ ବୋଲି କହିବ, ସତରେ ଯମ ତାକୁ ଡ଼ରିଯିବ ।

ଶବ୍ଦାର୍ଥ । ଚେଦି—ରାଜ୍ୟବିଶେଷ । ଚେଦିରାଜ—ଦମଘୋଷ । ଚେଦିରାଜ ପୁତ୍ର—ଶିଶୁପାଳ । ନିକେତନ—ଗୃହ, ଭଣ୍ଡାର । କେତନ—ଧ୍ୱଜା, ଶ୍ରେଷ୍ଠ । କାମଧେନୁ ସାମର୍ଥ୍ୟ—ଇଚ୍ଛାନୁସାରେ ଧନଦାତ୍ରୀ କାମଧେନୁର ଶକ୍ତି ସମାନ । ପୀନ—ସ୍ଥୂଳ । ଜଘନୀ—ନିତମ୍ବିନୀ । ମୀନକେତନ—କାମଦେବ । ଅସି—ଖଣ୍ଡା । କଷି—ମୁଠାଇ, ଦୃଢ଼କରି । ମୃତ୍ୟୁ—ମରଣ । ଦେବ—ଦେଇଦେବ । ମୃତ୍ୟୁଦେବ—ଯମ ।

ଏହା ଯୋଗେ ଆମ୍ଭ ବଂଶ ପ୍ରକାଶିବ କେଉଁ ଯଶ
ମନ୍ତ୍ରୀ ତୁମ୍ଭ ସନମତକୁ ହିଁ ଦର୍ଶିଲୁ,
କୁଳାଚାର୍ଯ୍ୟଙ୍କ କହିବା କିଛୁ ପ୍ରାଶ୍ଚିତ କରିବା
ମହା ଦୁର୍ଯୋଗ କଥାଏ କର୍ଣ୍ଣେ ବାଜିଲୁ
ପରୋହିତ ହସେ ହରଷେ :
ଦାନକର ହରବର ବସ୍ତୁର କ୍ଳେଶେ ।୧୪।

**ଅନ୍ୱୟ**—ଏହା ଯୋଗେ ଆମ୍ଭ ବଂଶର କେଉଁ ଯଶ ପ୍ରକାଶିବ ? (ହେ) ମନ୍ତ୍ରୀ (ଏହା) ତୁମ୍ଭ ସନମତକୁ ହିଁ ଦର୍ଶିଲୁ ? କୁଳାଚାର୍ଯ୍ୟ (ଙ୍କ କଥା) (କଣ) କହିବା ? (ସେ ମଧ୍ୟ ମତ ଦେଲେ) ଏ ମହା ଦୁର୍ଯୋଗ କଥା (ଯେତେବେଳେ) କର୍ଣ୍ଣେ ବାଜିଲୁ; କିଛୁ ପ୍ରାଶ୍ଚିତ କରିବା । (ଏହାଶୁଣି) ପୁରୋହିତ ହରଷେ ହସେ । କ୍ଳେଶେ, ହରବର ବସ୍ତୁର ଦାନ କର ।

**କଥା**—ଏହିପରି ଏକ କୁତ୍ସିତ ଲୋକ ସାଥିରେ ଜେମାର ବିବାହର ହେଲେ ଆମ ମହାନ୍ ବଂଶର କେଉଁ ଯଶ ବା ପ୍ରକାଶିତ ହେବ ? ହେ ମନ୍ତ୍ରୀ ! ତୁମ୍ଭେ ଏଥିରେ କିପରି ସ୍ୱୀକୃତ ଦେଲ ? କୁଳ ପୁରୋହିତଙ୍କ କଥା କଣ କହିବା ? ସେ ମଧ୍ୟ ଏଥିରେ ମତ ଦେଇଛନ୍ତି । ତେଣୁ ଏ ମହା ଦୁର୍ଯୋଗ କଥା ଯେତେବେଳେ ମୋ କାନରେ ପଡ଼ିଛି କିଛି ପ୍ରାୟଶ୍ଚିତ୍ତ କରିବାକୁ ହେବ ।

ଏହା ଶୁଣି ପୁରୋହିତ ଆନନ୍ଦିତ ହୋଇ ହସିଦେଲେ ଏବଂ କହିଲେ ଏ କଥା ଯେବେ କଷ୍ଟପ୍ରଦ ହୋଇଛି, ବୃଥାରେ କାହିଁକି ହରବର ହେବେ ଏହା ବସ୍ତୁର କରି ଧନ ଦାନ କରିଦିଅନ୍ତୁ; ଦୋଷ କଟିଯିବ ।

---

ଶବ୍ଦାର୍ଥ । କୁଳାଚାର୍ଯ୍ୟ—ବଂଶର ପୁରୋହିତ । ପ୍ରାୟଶ୍ଚିତ୍ତ—ପାପକ୍ଷୟ ସାଧନ କର୍ମ । ହରଷେ—ହର୍ଷେ, ଆନନ୍ଦରେ । ହରବର—ହଇରାଣ, ବିପତ୍ତି ।

ଯୋଗ୍ୟ ହେବାକୁ ଏବର                ଶୁଣି ଏମନ୍ତ ଉତ୍ତର
ଦ୍ୱିଜ ମନ୍ତ୍ରୀ ଅନାଇଲେ ମହୀପତିଙ୍କି
ମାନସିକେ ସେ ରାଜନ                ଦାନ ବାରିକ ପ୍ରଦାନ
କରି କପଟ-ସଂଯୋଗେ ଦେଲେ ଉକ୍ତିକ
ଚାଳ ଦୂତ ଲେଖି ଉଦନ୍ତ
ଆସନ୍ତୁ ସେ ବଳବନ୍ତକୁଳ-ଦ୍ୱିଦନ୍ତ । ୧୬ ।

**ଅନ୍ୱୟ**—(ଜେମା) ଯୋଗ୍ୟ ହେବାକୁ ଏ ବର (ଅଟେ) ଏମନ୍ତ ଉତ୍ତର ଶୁଣି ଦ୍ୱିଜ ଏବଂ ମନ୍ତ୍ରୀ ମହୀପତିଙ୍କି ଅନାଇଲେ । ସେ ରାଜନ ମାନସିକେ ଦାନ ବାରିକ ପ୍ରଦାନ କରି କପଟ ସଂଯୋଗେ ଉକ୍ତି କ ଦେଲେ—ଉଦନ୍ତ ଲେଖି ଦୂତ ଚାଳ । ସେ ବଳବନ୍ତ—କୁଳ ଦ୍ୱିଦନ୍ତ ଆସନ୍ତୁ ।

**କଥା**— ଜେମା ରୁକ୍ମିଣୀଙ୍କ ଲାଗି ଯୋଗ୍ୟ ହେବାକୁ ଶିଶୁପାଳ ଏକମାତ୍ର ବର ଅଟେ—ସେହି କଥା ରୁକ୍ମଙ୍କ ଠାରୁ ଶୁଣି ପୁରୋହିତ ଏବଂ ମନ୍ତ୍ରୀ ଦୁହେଁ ରାଜାଙ୍କୁ ଅନାଇଁଲେ । ସେ ରାଜା ଭୀଷ୍ମକ ଯେଉଁ କୃଷ୍ଣଙ୍କୁ କନ୍ୟା ଦେବାକୁ ଇଚ୍ଛା କରିଥିଲେ, ସେଠି କନ୍ୟାଦାନ ବାରି (ଜଳ) ମନମଧ୍ୟରେ ପ୍ରଦାନ କରି କପଟତା ଯୁକ୍ତ କରି ଏପରି କଥା କହିଲେ-'ହେଉ, ଶୁଭ ଖବର ଲେଖି ଦୂତ ପଠାଇ ଦିଅ । ବଳବନ୍ତ କୁଳ-ଦନ୍ତାବଳ ଆସନ୍ତୁ ।'

---

ଶବ୍ଦାର୍ଥ । ଦ୍ୱିଜ—ପୁରୋହିତ ବ୍ରାହ୍ମଣ । ମନ୍ତ୍ରୀ—ସଚିବ । ମହୀପତି—ରାଜା । ମାନସିକେ—ମନମଧ୍ୟରେ । ଦାନବାରି—କନ୍ୟାଦାନ ପାଣି । କପଟ ସଂଯୋଗ—ଛଳକରି । ଉଦନ୍ତ—ଚିଠି । ଚାଳ—ପଠାଅ । ଦ୍ୱିଦନ୍ତ—ଦନ୍ତାବଳ ହସ୍ତୀ ।

**ଆଜ୍ଞା ମାନ ପତ୍ରଧର          ମନ୍ତ୍ରୀ ମୁଦ ନର୍ଭା କର**
**ଚତୁରବନ୍ତ ଦୂତକୁ ଡ଼କାଇ ଦେଲେ**
**ଝଟିତ ଆଣିବ କହୁ          ଦ୍ୱିଜ ନୃପେ ମାନ୍ୟବାହୁ**
**ମନତୁଲ୍ୟ ତୁରଙ୍ଗମେ ଆରୋହୀ ଗଲେ**
**ନୃପ ପ୍ରବର୍ତ୍ତିଲେ ନୀତରେ**
**ଦୂତ ପରବେଶ ଦମଘୋଷ-କ୍ଷିତରେ । ୧୭ ।**

**ଅନ୍ୱୟ**—ମନ୍ତ୍ରୀ ଆଜ୍ଞାମାନ ପତ୍ରଧର ମୁଦ ନର୍ଭାକର ଚତୁରବନ୍ତ ଦୂତକୁ ଡ଼କାଇ ଦେଲେ । ଝଟିତ ଆଣିବ କହୁ (ପଠ ଦେଲେ) । (ଦୂତ) ଦ୍ୱିଜ (ଏବଂ) ନୃପେ ମାନ୍ୟ ବାହୁ ମନତୁଲ୍ୟ ତୁରଙ୍ଗମେ ଆରୋହୀ ଗଲେ । (ଅନନ୍ତର) ନୃପ ନୀତରେ ପ୍ରବର୍ତ୍ତିଲେ । (ତେବେଣେ) ଦୂତ ଦମ ଘୋଷ-କ୍ଷିତରେ ପରବେଶ ହେଲେ ।

**କଥା**—ମନ୍ତ୍ରୀ ରାଜାଙ୍କର ଆଜ୍ଞା ଶିରୋଧାର୍ଯ୍ୟ କର ଚଠିଲେଖି ତହିଁରେ ରାଜକୀୟ ମୁଦ ଦେଇସାର ଏକାନ୍ତ ଚତୁର ଦୂତକୁ ଡ଼କାଇ ଦେଲେ ଏବଂ ତାକୁ କହିଲେ—ଦେଖ ଯେପର ଶୀଘ୍ର ତାଙ୍କୁ ନେଇ ଆସିବ । ଏହା କହି ଉକ୍ତ ଦୂତକୁ ପଠ ଦେଇଦେଲେ । ସେ ଦୂତ ପୁରୋହିତଙ୍କୁ ଏବଂ ରାଜାଙ୍କୁ ମାନ୍ୟଧର୍ମ କର ମନ ସମାନ ଗତିଶୀଳ ଏକ ଅଶ୍ୱରେ ବସି ଚାଲିଗଲା । ଅନନ୍ତର ମନ ଉଶ୍ୱାସ ଲଗିବାରୁ ରାଜା ନଜ ନୀତରେ ମନଦେଲେ । ତେଣେ ଦୂତ ଯଥା ସମୟରେ ଦମଘୋଷଙ୍କ ରାଜ୍ୟ ଚେଦ୍ଦି-ରାଜଧାନୀରେ ଉପସ୍ଥିତ ହେଲେ ।

---

ଶବ୍ଦାର୍ଥ । ମୁଦ—ଲଖ ବା ଜଉରେ ସଙ୍କେତ ଚହ୍ନ ଦେବା । ନର୍ଭା—ନଷ୍ପତ୍ତି, ସାରବା । ଚତୁରବନ୍ତ—ବୁଦ୍ଧିମାନ୍ ବ୍ୟକ୍ତି । ଝଟିତ—ଶୀଘ୍ର । ଦ୍ୱିଜ—ପୁରୋହିତ । ମନତୁଲ୍ୟ—ମନସମାନ ଗତିଶୀଳ । ତୁରଙ୍ଗମ—ଘୋଡ଼ା । ନୀତ—ଦୈନିକ କାର୍ଯ୍ୟ । ଦମଘୋଷ-କ୍ଷିତ—ଚେଦ୍ଦି ରାଜଧାନୀ ।

ବାଜୀଙ୍କ ବର କରକି କରୀ ଅଶ୍ୱଦ୍ୱାର ଦ୍ୱାରୀ
ପାଶେ ମଳ ଭ୍ରଷେ ଯାଇଁ କହେ ତରସେ
ବଦର୍ଭୁଁ ଆଗତ ଦୂତ ଶୁଣି ସେ ଗମନେ ରତ
ହୋଇକର କହେ ସଦ୍ୟ ଚୈଦ୍ୟ ମହୀଶେ
କୁଣ୍ଡିନରୁ ଆଗତ ଦୂତେ
ଉଣ୍ଡିଲ ସେ ଲୋଭୀ ଛାମୁଁ ଦର୍ଶନ ବତ୍ତେ ।୧୮।

**ଅନ୍ୱୟ**—(ସେ ଦୂତ) ବାଜୀକ ବରକ କରି, କରୀ-ଅଶ୍ୱଦ୍ୱାର ଦ୍ୱାରୀ ପାଶେ ତରସେ ମିଳି ଭ୍ରଷେ ଯାଇ (ରାଜାଙ୍କୁ) କହ (ଯେ) ବଦର୍ଭୁଁ ଦୂତ ଆଗତ (ହୋଇଛି)। ସେ (ଦ୍ୱାରୀ) ଶୁଣି ଗମନେ ରତ ହୋଇକର ଚୈଦ୍ୟ ମହୀଶେ ସଦ୍ୟ କହେ—କୁଣ୍ଡିନରୁ ଦୂତେ ଆଗତ (ହୋଇଅଛି)। (ମୁଁ) ଉଣ୍ଡିଲି ସେ ଛାମୁଁ ଦର୍ଶନ—ବତ୍ତେ ଲୋଭୀ (ଅଛି)।

**କଥା**—ସେ ଦୂତ ଅଶ୍ୱ ପୃଷ୍ଠରୁ ଓହ୍ଲାଇ ସିଂହଦ୍ୱାରରେ ଥିବା ଦ୍ୱାରୀ ନିକଟରେ ତୁରନ୍ତ ପହଞ୍ଚି କହିଲେ—ଯାଇ ରାଜାଙ୍କ ଛାମୁଁରେ ଜଣାଅ, ବିଦର୍ଭ ଦେଶରୁ ଦୂତ ଆସିଅଛି। ଏହା ସେ ଦ୍ୱାରୀ ଶୁଣି ଯାଇଁ ଚୈଦ୍ୟ ନୃପତି ଦମଘୋଷଙ୍କୁ ସଜ ଖବର ଦେଲା ଯେ କୁଣ୍ଡିନରୁ ଦୂତ ଜଣେ ଆସିଅଛି। ମୁଁ ଅନୁସନ୍ଧାନରୁ ଜାଣିଛି ଯେ ଛାମୁଁଙ୍କ ଦର୍ଶନ ରୂପକ ଧନକୁ ସେ ଲୋଭ କରୁଅଛି।

**ଆଲୋଚନା**—ରାଜା ଧନଦାନପାଇଁ ଜଣାଶୁଣା ପ୍ରଶଂସା ଥିବାରୁ ଦର୍ଶନ—ଧନ ବୋଲି କବି ଉତ୍ପ୍ରେକ୍ଷା କରିଛନ୍ତି।

---

ଶବ୍ଦାର୍ଥ। ବାଜୀ—ଅଶ୍ୱ। ବରକ—ବଲ୍ଗା, ତ୍ୟାଗକରି। କରୀ—ହସ୍ତୀ। କରୀ-ଅଶ୍ୱଦ୍ୱାର—ସିଂହଦ୍ୱାର। ତରସେ—ଶୀଘ୍ର। ସଦ୍ୟ—ସଜ, ଆଦ୍ୟ, ପ୍ରଥମ। ଉଣ୍ଡିଲି—ଅନୁସନ୍ଧାନ କଲି। ବତ୍ତ—ଧନ।

**ଜାଣି ଅଙ୍ଗୀକାର ଗଲ୍ ଆଣି ତାକୁ ଭେଟାଇଲ୍**
**ନୃପେ ମୁଦ ସମର୍ପି ସେ ନମି ବସିଲେ**
**ଭୂପକରୁଁ ମନ୍ତ୍ରୀ ନେଇ କୁଶଳ ପତ୍ରିକା ଦେଇ**
**ଫେଡ଼ି ଗଣ୍ଠି ପଢ଼ି ଉକ୍ତ ଚିତ୍ତେ ଭାଷିଲେ**
**ନନ୍ଦନମଣିକି ସାରସ-**
**ସ୍ୟନ୍ଦନ ମଣ୍ଡିବେକି ବନ୍ଦନ-ଯଶ । ୧୯ ।**

**ଅନ୍ୱୟ**—(ଦ୍ୱାରୀ) (ରାଜାଙ୍କ) ଅଙ୍ଗୀକାର ଜାଣିଗଲ୍ । (ଏବଂ) ତାକୁ ଆଣି ଭେଟାଇଲ୍ । ସେ ନୃପେ ମୁଦ ସମର୍ପି ନମି (ତହିଁ) ବସିଲେ । ମନ୍ତ୍ରୀ (ଦୂତଙ୍କୁ) କୁଶଳ ପତ୍ରିକା ଭୂପ କରୁଁ (ପତ୍ର) ନେଇ (ତହିଁର) ଗଣ୍ଠି ଫେଡ଼ିଦେଇ ଚିତ୍ତେ ଉକ୍ତ ପଢ଼ି ଭାଷିଲେ—(ତୁମ୍ଭ) ନନ୍ଦନ ମଣିକି ସାରସ-ସ୍ୟନ୍ଦନ-ବନ୍ଦନଯଶ ମଣ୍ଡିବେକି ?

**କଥା**—ଦ୍ୱାରୀ ରାଜାଙ୍କ ସ୍ୱୀକୃତି ଜାଣି ଫେରିଆସି ସମାଗତ ଦୂତକୁ ଆଣି ରାଜାଙ୍କ ସହିତ ଭେଟ କରାଇଲା । ଦୂତ ରାଜାଙ୍କୁ ମୁଦ ଦିଆଯାଇଥିବା ରାଜକୀୟ ପତ୍ର ସମର୍ପଣ କରି ନମସ୍କାର କରିସାରି ସେଠାରେ ବସିଲେ । ମନ୍ତ୍ରୀ ଉକ୍ତ ଦୂତକୁ କୁଶଳ ସମାଚାର ପଚାରି ରାଜାଙ୍କ ହାତରୁ ଶୁଭ ଚିଠାଉ ନେଇ ମୁଦ ଫିଟାଇ ମନେ ମନେ ସେଥିରେ ଥିବା ବିବରଣୀ ପାଠକରି ରାଜାଙ୍କୁ କହିଲେ—ମହାରାଜ ! ଆପଣଙ୍କ ପୁତ୍ରମଣିଙ୍କୁ ପ୍ରଜାପତି ଶୁଭ ବନ୍ଦାପନା ଯଶରେ ମଣ୍ଡନ କରିବେକି ? ରାଜପୁତ୍ର ବିବାହ ହେବେ କି ?

---

ଶବ୍ଦାର୍ଥ । ମୁଦ ସମର୍ପି—ମୁଦ ଦିଆଯାଇଥିବା ପତ୍ର ଦେଇ । ନମି—ନମସ୍କାର କରି । କୁଶଳ ପତ୍ରିକା—ରାଜଦୂତ ମାନଙ୍କୁ କୁଶଳ। କୁଶଳ ସମ୍ବାଦ ମଙ୍ଗଳ ପତ୍ରିକା ଆନ୍ତି । ଗଣ୍ଠି—ମୁଦ । ଉକ୍ତ—ବିବରଣ । ଚିତ୍ତେ—ମନେ ମନେ । ନନ୍ଦନମଣି—ପୁତ୍ରଶ୍ରେଷ୍ଠ । ସାରସ—ହଂସ । ସାରସ ସ୍ୟନ୍ଦନ—ପ୍ରଜାପତି ବ୍ରହ୍ମା । ବନ୍ଦନ—ବନ୍ଦାଣ । ବନ୍ଦନ ଯଶ—ବିବାହ କାର୍ଯ୍ୟର ମହତ୍ତ୍ୱ ।

କୁଣ୍ଡିନନଗର-କ୍ଷୀର- ସାଗର-ଲକ୍ଷ୍ମୀ ଆମ୍ଭର
ମନ୍ଦିର ମଣ୍ଡିବେ ଅଛୁ ଏହୁ ସମ୍ମତ
ଋତୁପକ୍ଷ ତିଥିବାର ଶୁଭ ଯୋଗ ଯୋଗେ ସାର
ସ୍ନାନେ ଅଷ୍ଟମ ଚନ୍ଦ୍ରାଦ୍ଧ ରିଷ୍ଟ ନୂହନ୍ତ
ଗୃହେ ଗୃହ୍ଣୁଁ ଚୈଦ୍ୟ-ଶେଖର
ଉଚ୍ଚାରେ ସେ ଏ ମଧୁର ତର ଉତ୍ତର । ୨୦ ।

**ଅନ୍ୱୟ** – (ଏଥି) ଏହୁ ସମ୍ମତ ଅଛୁ (ଯେ) କୁଣ୍ଡିନନଗର-କ୍ଷୀର ସାଗର-ଲକ୍ଷ୍ମୀ ଆମ୍ଭର ମନ୍ଦର ମଣ୍ଡିବେ । (ଉକ୍ତ ସାଗର) ସାର ସ୍ନାନେ ଋତୁ, ପକ୍ଷ, ତିଥି, ବାର ଶୁଭଯୋଗ ଯୋଗେ (ଅଥବା) ଅଷ୍ଟମଚନ୍ଦ୍ରାଦ୍ଧ ରିଷ୍ଟ ନୁହନ୍ତ । (ଏହା ଶୁଣି) ଚୈଦ୍ୟ ଶେଖର ଗୃହେ ଗୃହ୍ଣୁଁ ସେ ଏ ମଧୁରତର ଉତ୍ତର ଉଚ୍ଚାରେ ।

**କଥା**—ଏହୁ ଶୁଭ ପର୍ବକାଳେ ଏହୁ ସ୍ୱୀକୃତ ହେଉଛୁ ଯେ କୁଣ୍ଡିନ ନଗର ସ୍ୱରୂପୀ କ୍ଷୀରସାଗର-ଉଦ୍‌ଭବା ଲକ୍ଷ୍ମୀ-ରୂପିଣୀ ରୁକ୍ମଣୀ ବଧୂ ଭାବରେ ଆମ୍ଭ ରାଜସଦନକୁ ମଣ୍ଡନ କରିବେ । ଉକ୍ତ ସାଗରରେ ଶ୍ରେଷ୍ଠ ସ୍ନାନଯୋଗ ଆସିଥିବାରୁ ଆମକୁ ଶୁଭ ଋତୁ, ଶୁଭପକ୍ଷ, ଶୁଭତିଥି, ଶୁଭବାର, ଶୁଭଯୋଗ ମିଳିବାରେ ଯେପରି ପ୍ରୟୋଜନ, ତାହା ପ୍ରୟୋଜନ ନାହିଁ, ସେପରି ଅଷ୍ଟମ ଚନ୍ଦ୍ରାଦ୍ଧ ଏ କ୍ଷେତ୍ରରେ ମଧ୍ୟ ଅଶୁଭ ନୁହନ୍ତ । ତୁରନ୍ତ ଯାତ୍ରା କରିବା ସମୀଚୀନ । ଏହାଶୁଣି ଚୈଦ୍ୟ ଶିରୋଭୂଷଣ ଦମଘୋଷ ଦୂତଙ୍କୁ ଗୃହାନ୍ତେ ସେ ଏପରି ମଧୁରତର ଉତ୍ତର ଉଚ୍ଚାରଣ କଲେ ।

**ଆଲୋଚନା**—ଦୁଷ୍ଟଚିତ୍ତ ଶିଶୁପାଳକୁ କନ୍ୟାମିଳିବା ଦୁଷ୍କର, ମନ୍ତ୍ରୀ ଏହା ଜାଣିପାରି ତତ୍‌କାଳୀନ ବିଶ୍ୱସୁନ୍ଦରୀ ରୁକ୍ମଣୀଙ୍କୁ ଲାଭ କରିବା ବିଷୟରେ ଶୁଭ ଅନୁକୂଳ ପ୍ରତି ଅପେକ୍ଷା କରିବାକୁ ଭୁଲାଇ ଦେଲେ ।

---

ଶବ୍ଦାର୍ଥ । ମନ୍ମଥ—ଶ୍ରୀକୃଷ୍ଣ । କ୍ଷୀର ସାଗର—ଦୁଗ୍ଧ ସମୁଦ୍ର, ସେଥିରୁ ଲକ୍ଷ୍ମୀ ଜନ୍ମିଥିବାର କଥିତ ଅଛି । ସାର—ଶ୍ରେଷ୍ଠ । ଯୋଗେ—ମିଳନରେ, ମିଳିବାରେ । ଅଷ୍ଟମ ଚନ୍ଦ୍ର—ଅଷ୍ଟମ ସ୍ଥାନସ୍ଥ ଚନ୍ଦ୍ର । ରିଷ୍ଟ—ଅଶୁଭ । ଗୃହେ—ଦୂତରେ । ଶେଖର—ଶିରୋଭୂଷଣ ।

**ବିଷକଣ୍ଠ ବିପଶ୍ଚିତ ଯେବେ ରସି ପାରିଜାତ-**
**ବନ ଜାତ-ବିଧୂ ଯେଉଁ ମୋହିନୀ ମୂର୍ତ୍ତି**
**ସେହି ଲକ୍ଷଣ ସନ୍ଦର୍ଭେ କନ୍ୟା ଗୋଟିଏ ବିଦର୍ଭେ-**
**ଶ୍ୱରଙ୍କ ପଟ୍ଟମହୀଷୀ ଗର୍ଭୁଁ ଉତ୍ପତ୍ତି**
**ବର କରି କାହାକୁ ଦେବା**
**ଭଜନୀ ହୋଇଲେ ରାଜା ରଜନୀ ଦିବା ।୨୧।**

**ଅନ୍ୱୟ**—ଯେବେ ବିପଶ୍ଚିତ (ଶିବ) ବିଷକଣ୍ଠ (ହେଲେ), (ତେବେ) ପାରିଜାତ ବନ-ଜାତ ଯେଉଁ ମୋହିନୀ ମୂର୍ତ୍ତି (ପ୍ରତି) ବିଧୂ ରସିକ (ଥିଲେ) ସେହି ଲକ୍ଷଣ ସନ୍ଦର୍ଭେ କନ୍ୟା ଗୋଟିଏ ବିଦର୍ଭେଶ୍ୱରଙ୍କ ପଟ୍ଟମହୀଷୀ ଗର୍ଭୁଁ ଉତ୍ପତ୍ତି (ହୋଇଛନ୍ତି) । ବର କରି କାହାକୁ ଦେବା (ଏ କଥା) (ଆମ) ରାଜା ରଜନୀ ଦିବା ଭଜନୀ ହୋଇଲେ ।

**କଥା**—ଯେଉଁ ସମୟରେ ମହାଜ୍ଞାନୀ ଶିବ କଣ୍ଠରେ ବିଷଧାରଣ କରି ବିଶ୍ୱରକ୍ଷା କରିଥିଲେ, ସେହି ସମୟରେ ବିଷ୍ଣୁ ପାରିଜାତ କୁଞ୍ଜରୁ ଜନ୍ମିଥିବା ବିଶ୍ୱ ମୋହକାରିଣୀ ମୂର୍ତ୍ତି ଯେଉଁ ଲକ୍ଷ୍ମୀଙ୍କ ପ୍ରତି ରସିଥିଲେ, ଉକ୍ତ ଲକ୍ଷ୍ମୀଙ୍କ ଲକ୍ଷଣ ସମ୍ବନ୍ଧ ଯେନ କନ୍ୟା ଗୋଟିଏ ବିଦର୍ଭ ନରପତିଙ୍କ ପାଟରାଣୀଙ୍କ ଗର୍ଭରୁ ଜନ୍ମ ହେଲା । ବର କରି ତାଙ୍କୁ କାହାକୁ ପ୍ରଦାନ କରିବେ, ଏହି କଥାରେ ଆମ ରାଜା ରାତ ଦିବସ ଚିନ୍ତିତ ହେଲେ ।

ଶବ୍ଦାର୍ଥ । ବିଷକଣ୍ଠ—କଣ୍ଠରେ ବିଷ ଯାହାର, ଶିବ । ବିପଶ୍ଚିତ—ମହାଜ୍ଞାନୀ ଯେ ସମସ୍ତଙ୍କର ଉପକାରୀ । ବିଧୂ—ବିଷ୍ଣୁ । ସନ୍ଦର୍ଭେ—ସମ୍ବନ୍ଧ ଯେନ । ଭଜନୀ—ଚିନ୍ତିତ ।

**ମନ୍ତ୍ରୀ ପୁରୋହିତ ବସି ପ୍ରତିଦଗେ ଦୂତ ପେଷି**
**ଆଣିଲେ ନରେନ୍ଦ୍ର-ନନ୍ଦନଙ୍କରନାମ**
**ତୁମ୍ଭ ସୁତ ନାମ ମେଳ ହୋଇଥିବାରୁ ସୁଶୀଳ**
**ମରମରେ ବହି କରି ପରମ ପ୍ରେମ**
**କାମ୍ୟ କର୍ମେ କରି ଉଦ୍ୟମ**
**ଦେଇ ଆମ୍ଭଙ୍କୁ ଉଦନ୍ତ ବୋଇଲେ ଗମ ।୨୨।**

**ଅନ୍ୱୟ**—ମନ୍ତ୍ରୀ ପୁରୋହିତ (ଙ୍କ ସହିତ) ବସି (ରାଜା) ପ୍ରତିଦଗେ ଦୂତପେଷି ନରେନ୍ଦ୍ର-ନନ୍ଦନଙ୍କର ନାମ ଆଣିଲେ । ତୁମ୍ଭ ସୁତ ନାମ ମେଳ ସୁଶୀଳ ହୋଇ ଥିବାରୁ ପରମ ପ୍ରେମ ମରମରେ ବହି କରି କାମ୍ୟ କର୍ମେ ଉଦ୍ୟମ କରି ଉଦନ୍ତ ଆମ୍ଭଙ୍କୁ ଦେଇ ବୋଇଲେ—'ଗମ' ।

**କଥା**—ଅନନ୍ତର ଆମର ନରପତି; ମନ୍ତ୍ରୀ ଏବଂ ପୁରୋହିତଙ୍କ ସହିତ ବସି ପ୍ରତି ଦିଗ୍‌ଦେଶ ରାଜାମାନଙ୍କ ନିକଟକୁ ଦୂତ ପଠାଇ ବହୁ ରାଜପୁତ୍ରଙ୍କର ନାମ ଆଣିଲେ । ଆପଣଙ୍କ ପୁତ୍ର ସହିତ ଆମ ଜେମାର ନାମରେ ଶୁଭ ମେଳକ ଶୁଝିବାରୁ ହୃଦୟରେ ଏକାନ୍ତ ଆନନ୍ଦ ଧାରଣ କରି ମଙ୍ଗଳକୃତ୍ୟ କାର୍ଯ୍ୟ କରିବାକୁ ଉଦ୍ୟମ କରି ନିମନ୍ତ୍ରଣ ପତ୍ର ଆମ୍ଭଙ୍କୁ ଦେଇ କହିଲେ—ଯାଅ । (ତେଣୁ ମୁଁ ଏଠାକୁ ଆସିଛୁ) ।

ଶବ୍ଦାର୍ଥ । ପ୍ରତିଦଗେ – ପ୍ରତ୍ୟେକ ଦିଗରେ ଥିବା ରାଷ୍ଟ୍ରକୁ । ନରେନ୍ଦ୍ର ନନ୍ଦନ—ରାଜ-ପୁତ୍ର । ସୁଶୀଳ—ଶୁଭ ଜନକ । କାମ୍ୟ କର୍ମ—ଶୁଭ କର୍ମ, ବିବାହ କାର୍ଯ୍ୟ । ଉଦ୍ୟମ – ଉଦ୍‌ଯୋଗ । ଗମ—ଯାଅ । ଉଦନ୍ତ—ନିମନ୍ତ୍ରଣ ପତ୍ର ।

ବହୁ ପ୍ରମୋଦ ରାଜନ କହିଲେ କୁଣ୍ଡିନ-ଇନ
ଅଗ୍ରତେ କହିବ କହି ଅଛନ୍ତି ଏହା
ତୁମ୍ଭଙ୍କୁ ଆମ୍ଭଙ୍କୁ ଜନ ରଚନ୍ତି ସ୍ତୁତି ବଚନ
ଏ ମଣ୍ଡଳରେ ଲୋଚନ ବୋଲିଟି ଯାହା
ସତେ ଦେଖା ଦେଖିତ ନାହିଁ
ବିଧି-ଦର୍ପଣେ ଅର୍ପଣ କରନ୍ତୁ ବହି । ୨୩ ।

**ଅନ୍ୱୟ**—ରାଜନ (ଏହାଶୁଣି) ପ୍ରମୋଦ ବହି କହିଲେ କୁଣ୍ଡିନ-ଇନ (ଙ୍କ) ଅଗ୍ରତ କହିବେ—(ଚେଦି ରାଜା) ଏହା କହି ଅଛନ୍ତି—

'ତୁମ୍ଭଙ୍କୁ ଆମ୍ଭଙ୍କୁ ଏ ମଣ୍ଡଳରେ ଲୋଚନ ବୋଲିଟି ଯାହା ଜନ ସ୍ତୁତି ବଚନ ରଚନ୍ତି, ସତେ (ତାହା) ଦେଖା ଦେଖିତ ନାହିଁ । (ଆଶା ହୁଏ) ବିଧି-ଦର୍ପଣେ ବହି (ତାହା) ଅର୍ପଣ କରନ୍ତୁ ।

**କଥା**—ଦମ ଘୋଷ ନୃପତି ଦୂତଠାରୁ ଏହାଶୁଣି ଅଧୀର ହୋଇ କହିଲେ—କୁଣ୍ଡିନନଗର ସୂର୍ଯ୍ୟ ରୂପୀ ତୁମ୍ଭ ରାଜାଙ୍କ ସମ୍ମୁଖରେ କହିବ-ଚେଦି ରାଜା ଏହା କହି ଅଛନ୍ତି । ତୁମ୍ଭଙ୍କୁ ଆମ୍ଭଙ୍କୁ ଏ ମଣ୍ଡଳରେ ଚକ୍ଷୁ ବୋଲି ଯାହା ଲୋକମାନେ ସ୍ତୁତି ବଚନରେ ବ୍ୟକ୍ତ କରଥାନ୍ତି-ତୁମ୍ଭେ ଏକ ଚକ୍ଷୁ, ଆମ୍ଭେ ମଧ୍ୟ ଏକ ଚକ୍ଷୁ । ସତରେ ଆମ ମଧ୍ୟରେ ଦେଖା ଦେଖି ହେବାର ସୁଯୋଗ ଆସିନାହିଁ । ଦର୍ପଣରେ ଦୁଇଚକ୍ଷୁ ଯେପରି ଏକାଠି ହେବାର ସୁଯୋଗ ଲାଭ କରନ୍ତି, ସେହିପରି ଏ ଶୁଭ ବିବାହ ରୂପକ ଦର୍ପଣରେ ବିଧାତା ଆମ୍ଭ ଦୁଇଜଣଙ୍କୁ ଦୁଇଚକ୍ଷୁ ପରି ମିଳାଇବ । ତେଣୁ ବିବାହ ଦର୍ପଣ ଦାନ କରନ୍ତୁ ।

ଶବ୍ଦାର୍ଥ । ପ୍ରମୋଦ—ଅଧିକ ଆନନ୍ଦିତ । କୁଣ୍ଡିନ—କୁଣ୍ଡି କଟକ । ଇନ—ସୂର୍ଯ୍ୟ, ଶ୍ରେଷ୍ଠ । ମଣ୍ଡଳ—ଅଞ୍ଚଳ ସମୂହ । ବିଧି ଦର୍ପଣେ—ବିବାହ ରୂପକ ଦର୍ପଣରେ ।

**ପ୍ରେମ ବନ୍ଧୁ ହେମଦାମେ ଦୂତେ ଦତ୍ତ କରୁଁ ଗମେ**
**ସଚିବେ ସୂଚିଲେ ବିରଚିବା ପ୍ରସ୍ଥାଣ**
**ବଳାରାତି ବଳବନ୍ତ— କୁଳେ କୁମର ଦ୍ୱିଦନ୍ତ**
**ଆରୋହିବେ ହୋଇଥିବେ ବଜ୍ରଭୂଷଣ**
**ଚଢ଼ି ବୃଷ ଗତ ବିମାନ**
**ବାହାର ହେବେ ପୁରୋଧା ଯଜ୍ୱା ଈଶାନ । ୨୪ ।**

**ଅନ୍ୱୟ**—ପ୍ରେମ ବନ୍ଧୁ (ସେ ନରପତି) ହେମ ଦାମେ ଦୂତେ ଦତ୍ତ କରୁଁ (ସେ) ଗମେ । (ତହୁଁ) ସଚିବେ ପ୍ରସ୍ଥାଣ ବିରଚିବା ସୂଚିଲେ । (ଆମ୍ଭ) କୁମର ବଳବନ୍ତ କୁଳେ ବଳାରାତି (ସଦୃଶ ଅଟନ୍ତି) । (ତେଣୁ ସେ) ବଜ୍ର ଭୂଷଣ ହୋଇଥିବେ (ଏବଂ) ଦ୍ୱିଦନ୍ତ ଆରୋହିବେ । (ଆମ୍ଭ) ପୁରୋଧା ଯଜ୍ୱା (ମାନଙ୍କ ମଧ୍ୟରେ) ଈଶାନ (ସ୍ୱରୂପ ଅଟନ୍ତି, ତେଣୁ ସେ) ବୃଷଗତ ବିମାନ ଚଢ଼ି ବାହାର ହେବେ ।

**କଥା**—ସ୍ନେହ ବଶରେ ସେ ରାଜା ସ୍ୱର୍ଣ୍ଣମାଳା ଦୂତଙ୍କୁ ଦାନ କରନ୍ତେ ସେ ଚାଲିଗଲେ । ତହୁଁ ମନ୍ତ୍ରୀଙ୍କୁ କମଳ ବିଦର୍ଭ ଦେଶକୁ ଯାତ୍ରା କରିବାକୁ ହେବ ତାହାର ନିର୍ଦ୍ଦିଷ୍ଟ ସୂଚନା ଦେଲେ । କହିଲେ-ଆମ୍ଭ ଯୁବରାଜ ଶିଶୁପାଳ ବଳବନ୍ତ କୁଳରେ ବଳାରାତି ଇନ୍ଦ୍ରଙ୍କ ସମାନ ଅଟନ୍ତି । ତେଣୁ ସେ ବଜ୍ର ଭୂଷଣ ହେବା ପ୍ରୟୋଜନ । ବଜ୍ର ନାମିତ ଉତ୍କୃଷ୍ଟ ହୀରକ ହାରରେ ତାଙ୍କୁ ଭୂଷିତ କରିଦିଅ ଏବଂ ଇନ୍ଦ୍ର ଯେପରି ଐରାବତରେ ଆରୋହଣ କରନ୍ତି ସେ ସେହିପରି ଆମର ଦ୍ୱିଦନ୍ତ ପାଟହାତୀରେ ଆରୋହଣ କରି ଅନୁକୂଳ କରନ୍ତୁ । ଆମ୍ଭ ପୁରୋଧା ଯଜ୍ଞକାରୀମାନଙ୍କ ମଧ୍ୟରେ ଅତି ଶ୍ରେଷ୍ଠ ଈଶାନ ସ୍ୱରୂପୀ ଅଟନ୍ତି । ତେଣୁ ସେ ବୃଷଭ ଯୋଗିତ ବିମାନ (ବଳଦଗାଡ଼ି)ରେ ଯିବେ ।

---

**ଶବ୍ଦାର୍ଥ** । ହେମ—ସ୍ୱର୍ଣ୍ଣ । ଦାମ—ହାର, ମାଳ । ଗମେ—ଯାଏ । ପ୍ରସ୍ଥାଣ—ଯାତ୍ରା । ସୂଚିଲେ—ସୂଚନା କଲେ । ବଳାରାତି—ଇନ୍ଦ୍ର । ଦ୍ୱିଦନ୍ତ—ହସ୍ତୀ । ବଜ୍ର—ହୀରକ । ବୃଷ ଗତ ବିମାନ—ବଳଦ ଯୋଗ୍ୟ ଶଗଡ । ଈଶାନ—ଶିବ, ଶ୍ରେଷ୍ଠ ।

**ଆମ୍ଭେତ ସହଜେ ଶୂର ମଣ୍ଡି ସାରସରେ କର**
**ଧ୍ୱନେ ଚକ୍ରେ ତୋଷ ବରଧନ କରିବା**
**ଚନ୍ଦ୍ର ଚରଣ ଆରୋହି ଖରେ ଗମନକୁ ବହି**
**ବଇର-କଇରବକୁ ଭୈରବ ହେବା**
**ସୁଖାସନେ ବନ୍ଧୁ ବାନ୍ଧବେ**
**ବସିବେ, ଆଉ ସମସ୍ତେ ବସିବେ ଅର୍ବେ । ୨୫ ।**

**ଅନ୍ୱୟ**—(ଯେସନେ) ସୂର ସାରସରେ କରମଣ୍ଡି ଧନେ (ଏବଂ) ଚକ୍ରେ ତୋଷ ବର୍ଦ୍ଧନକରି ଚନ୍ଦ୍ରଚରଣ ଆରୋହି ଖରେ ଗମନକୁ ବହି ବଇର-କଇରବକୁ ଭୈରବ (ହୁଅନ୍ତି), (ତେହ୍ନେ) ଆମ୍ଭେ ତ ସହଜେ ଶୂର, (ତେଣୁ) ସାର ଶରେ କରମଣ୍ଡି ଧାନ ଚକ୍ରେ ତୋଷ ବର୍ଦ୍ଧନ କରିବା । ଚନ୍ଦ୍ର ଚରଣ ଆରୋହି ଖରେ ଗମନକୁ ବହି ବଇର କଇରବକୁ ଭୈରବ ହେବା । ବନ୍ଧୁ ବାନ୍ଧବେ ସୁଖାସନେ ବସିବେ (ଏବଂ) ଆଉ ସମସ୍ତେ ଅର୍ବେ ବସିବେ ।

**କଥା**—ଯେମନ୍ତ ସୂର୍ଯ୍ୟ ଦେବତା କିରଣ ମଣ୍ଡନ କରି ଦିବସ ଏବଂ ଚକ୍ରବାକ ପକ୍ଷୀର ସନ୍ତୋଷ ବର୍ଦ୍ଧନ କରି ରଥାରୋହଣରେ ବ୍ୟଗ୍ରରେ ଗମନ କରି ତାଙ୍କର ଅନାଦରଣୀୟ ଶତ୍ରୁ ସମାନ କଇଁଫୁଲକୁ ହସ୍ତ କରି ମୁଦ୍ରିତ କରନ୍ତି, ସେହିପରି ଆମ୍ଭେତ ସହଜେ ବୀରପୁରୁଷ ଅଟୁଁ । ତେଣୁ ଶ୍ରେଷ୍ଠ ଶରରେ ହସ୍ତକୁ ମଣ୍ଡନ କରି ଆଶ୍ରିତବ୍ୟକ୍ତିମାନଙ୍କର ସନ୍ତୋଷ ବର୍ଦ୍ଧନ କରିବୁଁ ଏବଂ ରଥରେ ଚଢ଼ି ଶୀଘ୍ର ଗମନ କରି ବୀରତ୍ୱ ସମ୍ପନ୍ନ ଶତ୍ରୁକୁଳ ନିକଟରେ ଭୟାନକ ହେବୁଁ । ଆମ୍ଭର ବନ୍ଧୁବାନ୍ଧବମାନେ ପାଲିଙ୍କି, ସବାରି ଆଦି ଯାନରେ ବସିବେ ଏବଂ ଆଉ ସମସ୍ତେ ଘୋଟକ ପୃଷ୍ଠରେ ଯାତ୍ରା କରିବେ ।

ଶବ୍ଦାର୍ଥ । ସୂର—ସୂର୍ଯ୍ୟ ଶୂର—ଯୋଦ୍ଧା, ବୀର । ସାର—ଶ୍ରେଷ୍ଠ । ଶର—କାଣ୍ଡ । ସାରସରେ—ପଦ୍ମରେ । କର—କିରଣ, ହସ୍ତ । ଧାନ ଚକ୍ରେ—ଦରିଦ୍ର ସମୂହରେ । ଧନ—ଦିବସ । ଚକ୍ରେ—ଚକ୍ରବାକ ପକ୍ଷୀରେ । ଚନ୍ଦ୍ର ଚରଣ—(ଯାହାର ଚରଣ ଚନ୍ଦ୍ର;) ରଥ । ଖରେ—ଶୀଘ୍ର । ବଇର—ବୈର, ବୀରତ୍ୱ, ଶତ୍ରୁତା । କଇରବ—(କୈରବ) କଇଁଫୁଲ, ଶତ୍ରୁ । ଭୈରବ—ଭୟଙ୍କର, ଭୟାନକ । ସୁଖାସନ—ପାଲିଙ୍କି, ସୁଆରି । ଅର୍ବ—ଘୋଡ଼ା ।

କହିଲେ ଯାହାକୁ ଯାହା ଦେବାକୁ ବସୁଧାନାହା
ତାହା ସେହିପରି ମନ୍ତ୍ରୀ ସଦ୍ୟ ସର୍ଜ୍ଜିଲା
କରୀ ବାଜୁ କରତାରୁ ଧପଟ ଧୂଳି ମହୀରୁ
ଭାସ୍କର କର ଭାନୁ ପୃଷ୍ଟରେ ତର୍ଜ୍ଜିଲା
ଘନ ଘୋଟିଗଲା ସମାନେ
ସ୍ତନିତ ପରିଜନିତ ବାଦ୍ୟ ଗର୍ଜ୍ଜନେ । ୨୭ ।

**ଅନ୍ୱୟ**—ବସୁଧାନାହା ଯାହାକୁ ଯାହା ଦେବାକୁ କହିଲେ ମନ୍ତ୍ରୀ ତାହା ସେହିପରି ସଦ୍ୟ ସର୍ଜ୍ଜିଲା । କରୀ, ବାଜୁ ଧପଟ କରିବାରୁ ମହୀରୁ ଧୂଳି (ଯାଇ) ପୃଷ୍ଠରେ ଭାସ୍କର କର ଭାଁକୁ ତର୍ଜିଲା । ଘନ ଘୋଟିଗଲା ସମାନେ ବାଦ୍ୟ ଗର୍ଜନେ ସ୍ତନିତ ପରିଜନିତ ହେଲା ।

**କଥା**—ନୃପତି ଯାହାକୁ ଯାହା ଦେବାକୁ କହିଲେ ମନ୍ତ୍ରୀ ତାହା ସେହିପରି ତତ୍‌କ୍ଷଣାତ୍ ସୁବିଧା କରିଦେଲେ । ଆରୋହିମାନେ ହସ୍ତୀ, ଘୋଡ଼ା ଦଉଡ଼ାଇ କରି ନେବାରୁ ପୃଥିବୀରୁ ଧୂଳି କଣା ଏତେ ଉଠିଲା ଯେ ଆକାଶରେ ସୂର୍ଯ୍ୟ କିରଣର ତେଜ ସେଥିରେ ମଉଳିଗଲା । ମେଘ ଘୋଟିଗଲା ପ୍ରାୟେ ବାଦ୍ୟ ଗର୍ଜ୍ଜନରେ ମେଘର ଉଚ୍ଚଧ୍ୱନି ପ୍ରାୟ ଧ୍ୱନି ବିଶେଷ ଜାତ ହେଲା ।

---

ଶବ୍ଦାର୍ଥ । ବସୁଧାନାହା—ଭୂପତି, ରଜା । ସଦ୍ୟ—ତତ୍‌କ୍ଷଣାତ୍ । କରୀ—ହାତୀ । ବାଜୁ—ଘୋଡ଼ା । ଧପଟ—ଧାଉଡ଼, ଚଞ୍ଚଳ ଗତି । ଭାସ୍କର କର—ସୂର୍ଯ୍ୟ କିରଣ । ଭା—ଦୀପ୍ତି । ପୁଷ୍କର—ଆକାଶ । ସ୍ତନିତ—ଗମ୍ଭୀର ମେଘଧ୍ୱନି । ପରିଜନିତ—ଅଧିକ ଜାତ । ତର୍ଜିଲା—ଭୟ ଦେଖାଇଲା ।

ଆଳାପି ବାରପୀ ବେଣୀ          କଳାପୀ ନୃତ୍ୟ ସେ କ୍ଷଣି
ବନ୍ଧି କର ମୋହ ଧରନେଲା ମାନସେ
ସୁପୂରଟତରବେତେ            ତରବେତେ ଚହଟନ୍ତେ
ବିଦ୍ୟୁତ୍ ସମୂହ ସମାନେ ହେଲେ ବିଦ୍ୟୁସେ
ମୋଦାଶ୍ରୁ-ଜଳରେ ଜବନେ
ମଜ୍ଜନ ହୋଇ ରହିଲେ ନେତ୍ର ନଳନେ । ୨୭ ।

**ଅନ୍ୱୟ**—ସେ କ୍ଷଣି ଆଳାପୀ ବାରପୀର ବେଣୀ କଳାପୀ ନୃତ୍ୟ ବନ୍ଧି କର ମାନସେ ମୋହ ଧରି ନେଲା । ସୁପୂରଟ ତରବେତେ ତରବେତେ ଚହଟନ୍ତେ ସେ ବିଦ୍ୟୁତ୍ ସମୂହ ସମାନେ ବିଦ୍ୟୁ ହେଲେ । ଜବନେ ମୋଦାଶ୍ରୁ ଜଳରେ ନେତ୍ରନଳନେ ମଜ୍ଜନ ହୋଇ ରହିଲେ ।

**କଥା**—ରାଜାଙ୍କ ଶୁଭଯାତ୍ରା କାଳରେ ନୃତ୍ୟାଳାପ କରୁଥିବା ବେଶ୍ୟାର-ବେଣୀ ମୟୂର ନୃତ୍ୟ ପରି ସମସ୍ତଙ୍କ ଚିତ୍ତକୁ ମୁଗ୍ଧ କରି ବାନ୍ଧି ରଖିଲା । ଅତି ଉତ୍ତମ ସ୍ୱର୍ଣ୍ଣ ନିର୍ମିତ ବେତ ସବୁ ଜନସମାଜକୁ ଘୁଞ୍ଚାଇବାକୁ ସଙ୍କେତକ୍ରମେ ଚହଟନ୍ତେ ସେ ସବୁ ବହୁ ବିଦ୍ୟୁତ ଏକ ସଙ୍ଗେ ସ୍ଫୁରିତ ହେବାର ଶୋଭା ଧାରଣ କଲେ । ଏହି ଶୁଭ ଆୟୋଜନର ଯାତ୍ରା ଦେଖି ଉପସ୍ଥିତ ଜନସମାଜର ଚକ୍ଷୁରୁ ଆନନ୍ଦ ଅଶ୍ରୁ ନିର୍ଗତ ହୋଇ ଉକ୍ତ ଅଶ୍ରୁଜଳରେ ନେତ୍ର କମଳ ବୁଡ଼ିଗଲେ ।

---

ଶବ୍ଦାର୍ଥ । ସେ କ୍ଷଣି—ସେ ସମୟରେ । ଆଳାପି—ନୃତ୍ୟାଳାପରେ ମଗ୍ନ । ବାରପୀ—ବେଶ୍ୟା । କଳାପୀ—ମୟୂର । ପୁରଟ—ସ୍ୱର୍ଣ୍ଣ । ସୁପୁରଟତର—ଅତି ଅଧିକ ଭଲ ସୁନା । ତରବେତେ—ସଂକେତ କ୍ରମେ । ବିଦ୍ୟୁ—ବିଶେଷ ଦ୍ୟୁତିମନ୍ତ । ମୋଦାଶ୍ରୁ—ଆନନ୍ଦାଶ୍ରୁ । ଜବନେ—ଶୀଘ୍ରେ ।

**ଛନ୍ଦକରେ ବିରାଜିଲେ ଛନ୍ଦକ ପରି ରାଜିଲେ**
**ହାସରେ ପ୍ରକାଶ ହେଲେ ଯାତୀ ମାଳତୀ**
**ବାଞ୍ଛନ୍ତେ ମାଣିକ୍ୟ ହୀରା ଭରାଭର ହେଲା ଧରା**
**ଧଇଲେ ସେ ଇନ୍ଦ୍ରଗୋପ କରକାକୃତି**
**ନଟ ନାଟ କନ୍ଦୁକ ବାରେ**
**ହେଲା ଲକ୍ଷ୍ୟ ପ୍ରିୟକର ଲୀଳା ପ୍ରକାରେ । ୨୮ ।**

**ଅନ୍ୱୟ**—(ଯେ) ଛନ୍ଦକରେ ବିରାଜିଲେ (ସେ) ଛନ୍ଦକ ପରି ରାଜିଲେ । (ତହିଁ) ହାସରେ ଯାତୀ ମାଳତୀ ପ୍ରକାଶ ହେଲେ । (ନୃପତି) ମାଣିକ୍ୟ ହୀରା ବାଞ୍ଛନ୍ତେ ଧରା ଭରାଭର ହେଲା । ସେ ଇନ୍ଦ୍ରଗୋପ କରକାକୃତି ଧଇଲେ । ନଟ (ଙ୍କ) ନାଟ କନ୍ଦୁକ ବାରେ ପ୍ରିୟକର ଲୀଳା ପ୍ରକାରେ ଲକ୍ଷ୍ୟ ହେଲା ।

**କଥା**—ରାଜା ବିଜେ ହେବାରୁ ବନ୍ଧ ଛତ୍ର ଫିଟିଲା । ତେଣୁ ଛତ୍ର ହାତରେ ଧରି ବନ୍ଧୁଲୋକ ବିରାଜିତ ହେଲେ । ତାଙ୍କୁ ଦେଖିଲେ ଜଣାଗଲା ଭୂମି ଉପରେ ଅବା ଛତୁ ଫୁଟିଅଛି । ଏ ଦୃଶ୍ୟ ଦେଖି ଜନ ସମୂହରେ ଯେଉଁ ହସ ଫୁଟିଲା ତାହା ଯାଈ, ମାଳତୀ, ଫୁଲ ପରିପ୍ରାୟ ଜଣାଗଲା । ଯାଈ ମାଳତୀ ଅବା ପ୍ରକାଶିତ ହେଲେ । ରାଜା ଏହି ଶୁଭ ଯାତ୍ରାରେ ମାଣିକ୍ୟ ହୀରା ଦାନରେ ବାଣ୍ଟି ଦେଉଥିବାରୁ ତଦ୍ଦ୍ୱାରା ପୃଥିବୀ ପୂରି ଉଠିଲା । ତା ସବୁ ଭୂଇଁରେ ପଡ଼ି ସାଧବାଣୀ ପୋକ ଏବଂ କୁଆପଥର ଆକୃତି ପ୍ରାପ୍ତ ଦେଖାଗଲା । କୁତୂକ ନୃତ୍ୟକାରୀ କେଳାମାନେ ଅସଂଖ୍ୟ ନାଚ୍ୟ ପେଣ୍ଡୁ ଖେଳାଇଲେ । ବର୍ଷା ଋତୁରେ ପବନ ସଞ୍ଚାରରେ କଦମ୍ବ ଫୁଲ ସବୁ ଖେଳିଲା ପରି ତାହା ସବୁ ଜଣାଗଲା ।

**ଆଲୋଚନା**—"କୁର୍ବନ୍ତୁ ମେଘାଃ କୁସୁମସ୍ୟ ବୃଷ୍ଟିଂ" ତତ୍କାଳରେ ବର୍ଷାପାତହିଁ ଶୁଭଦ୍ୟୋତକ ମଣି ବର୍ଷାକାଳ ସମ୍ବନ୍ଧିତ ପଦାର୍ଥକୁ ବର୍ଣ୍ଣନା କରାଯାଇଛି ।

---

ଶବ୍ଦାର୍ଥ । ଛନ୍ଦ—ଛତ୍ର । କରେ—ହସ୍ତରେ । ଛନ୍ଦକ—ଛତୁ । ବାରେ—ସମୂହରେ । ଯାତୀ—ଯାଈଫୁଲ । ଇନ୍ଦ୍ରଗୋପ—ସାଧବାଣୀ ପୋକ । କରକା—କୁଆପଥର । ନଟ—ନୃତ୍ୟକାରୀ, କେଳା । କନ୍ଦୁକ—ପେଣ୍ଡୁ । ଲକ୍ଷ୍ୟ—ଜ୍ଞାତ, ଜଣା । ପ୍ରିୟକର—କଦମ୍ବ ।

**ଛଇଳୀ ଛାମୁଁ ଛାଡ଼ିବା — ଛଇଳେ ପୁଲକେ ଦୁବ୍ବା**
**ଅଙ୍କୁରିତ ଖରଶ୍ୱାସ ପ୍ରଖରବାତ**
**କାଦମ୍ବ-କଦମ୍ବମାନେ — ରସିଲେ ଆଗ ଗମନେ**
**ଉଡ଼ିଲେ ଧବଳ ପାଗ ବକାଳିବତ**
**ନୀଳ ରଙ୍ଗ ପୀତକେତନ**
**ଉଡ଼ି ଦିଶିଲେ ବାସବଗୃପ ସମାନ । ୨୯ ।**

**ଅନ୍ୱୟ**— ଛଇଳୀ ଛାମୁଁ ଛାଡ଼ିବା ଛଇଳେ ପୁଲକେ ପୁଲକେ ଦୁବ୍ବା ଅଙ୍କୁରିତ (ହେଲା) । (ତାଙ୍କ) ଖରଶ୍ୱାସ ପ୍ରଖର ବାତ (ସ୍ୱରୂପ ହେଲା) । ଆଗ ଗମନେ (ଯେ ଥିଲେ) କାଦମ୍ବ କଦମ୍ବ ରସିଲେ । ଧବଳ ପାଗ ବକାଳିବତ ଉଡ଼ିଲେ । ନୀଳ, ରଙ୍ଗ, ପୀତ କେତନ ଉଡ଼ି ବାସବ ଗୃପ ସମାନ ଦିଶିଲେ ।

**କଥା**—ରସିକା—ଛାମୁଁ ଛାଡ଼ି ଆସିଥିବା ନାଗରମାନଙ୍କଠାରେ ପୁଲକିତ ଭାବ ହେତୁ ଯେଉଁ ରୋମ ଟାଙ୍କୁରି ଥିଲା ତାହା ଏ କ୍ଷେତ୍ରରେ ଦୁବ୍ବାଙ୍କୁର ସମାନ ହେଲା । ସେମାନଙ୍କର କାମୋନ୍ମାଦିତ ଖରତର ଶ୍ୱାସ ବର୍ଷା କାଳର ପ୍ରଖର ପବନ ସ୍ୱରୂପ ହେଲା । ଆଗରେ ଯେଉଁମାନେ ବଳବାନ୍ଧ ଚହଟି ଯାଉଥିଲେ, ସେମାନେ ବର୍ଷାକାଳୀନ ଶ୍ୟାମ ପକ୍ଷ ବିଶିଷ୍ଟ ହଂସଦଳ ପ୍ରାୟ ଜଣାଗଲେ । ଶୁଦ୍ଧସୂଚକ ଯେଉଁ ଶ୍ୱେତ ପାଗମାନ ଉଡ଼ାଇ ଦିଆଗଲା ତାହା ବକ ଦଳ ପ୍ରାୟ ଦେଖାଗଲେ । ନୀଳ, ନାଲି, ହଳଦିଆ ପତାକା ଉଡ଼ୁଥିବାରୁ ତାହା ଇନ୍ଦ୍ର ଧନୁ ପ୍ରାୟ ବୋଧ ହେଲା ।

---

ଶବ୍ଦାର୍ଥ । ଛଇଳୀ—ପ୍ରିୟତମା ରମଣୀ । ଛାମୁଁ—ପାଖ । ଛଇଳେ—ରସିକମାନେ । ପୁଲକେ—ରୋମାଞ୍ଚିତ ହେବା ଯୋଗୁଁ । କାଦମ୍ବ—ଶ୍ୟାମ ପକ୍ଷ ବିଶିଷ୍ଟ ରାଜହଂସ । କଦମ୍ବ—ସମୂହ, ଗୁଚ୍ଛ, ଦଳ । ମାନେ—ସନ୍ନିହିତରେ । ରସିଲେ—ଜଣାଗଲେ । ବକାଳି—ବକ—ଆଳି—ବକସମୂହ । ବତ—ପ୍ରାୟେ । ରଙ୍ଗ—ନାଲି । ବାସବ ଗୃପ—ଇନ୍ଦ୍ରଧନୁ ।

**ବଦର୍ଭେ ମିଳିଲେ ଯାଇ କୁଣ୍ଡିନ ପାଚ୍ଛୋଟି ନେଇ**
**ରସା-ଶିରଭୂଷା ପୁରବସା ବହିଲେ**
**ସନ୍ତୋଷି ସଞ୍ଜା ସମ୍ଭାରେ ବିବାହ ତିଥି-ଆଶାରେ**
**ଚାତକଭାବ ସେ ଜାତକର ରହିଲେ**
**ରୁକ୍ମଣୀଙ୍କ ସଖୀଏ ବାର୍ତ୍ତା**
**ଶୁଣି କହିଲେ ଗୋ ଶୋଭା ଭୁବନ କର୍ତ୍ତା । ୩୦ ।**

**ଅନ୍ୱୟ**—(ବରଯାତ୍ରୀ ଦଳ) ବଦର୍ଭେ ଯାଇ ମିଳିଲେ । (ସେମାନଙ୍କୁ) କୁଣ୍ଡୀନ ପାଚ୍ଛୋଟି ନେଇ ରସା—ଶିର ଭୂଷା ପୁର ବସା ବହିଲେ । ସଞ୍ଜା ସମ୍ଭାରେ ସନ୍ତୋଷ (ଦେଲେ) । ସେ (ଦମଘୋଷ ରାଜା) ବିବାହ ତିଥି ଆଶାରେ ଚାତକ ଭାବ ଜାତକର ରହିଲେ । (ଏହି) ବାର୍ତ୍ତା ରୁକ୍ମଣୀଙ୍କ ସଖୀଏ ଶୁଣି ଗୋ ଶୋଭାଭୁବନ କର୍ତ୍ତା ! (ବୋଲି) କହିଲେ ।

**କଥା**—ଏପରି ସମ୍ଭାରରେ ବର ଯାତ୍ରୀ ଦଳ ବଦର୍ଭରେ ଯାଇ ପହଞ୍ଚିଲେ । ସେମାନଙ୍କୁ ଖ୍ୟାତିକ ପାଚ୍ଛୋଟି ନେଇ ଧରଣୀର ଶିରୋଭୂଷଣ ରୂପ ଗୃହରେ ବସାଦେଲେ ଏବଂ ଖାଦ୍ୟପେୟ ଆଦି ସଞ୍ଜାସମ୍ଭାରରେ ସନ୍ତୋଷ କଲେ । ସେ ଦମଘୋଷ ରାଜା ଧାର୍ଯ୍ୟ ବିବାହ ତିଥି ପର୍ଯ୍ୟନ୍ତ ଚାତକ ପରି ଅନାଇଁ ରହିଲେ ।

ଏଣେ ଏହି ବାର୍ତ୍ତା ଅନ୍ତଃପୁରରେ ରୁକ୍ମଣୀଙ୍କ ସଖୀମାନେ ଶୁଣି ତାଙ୍କୁ ଆଗୋ ଶୋଭା ଭୁବନର ରାଣୀ ବୋଲି ଡାକି କହିଲେ ।

---

ଶବ୍ଦାର୍ଥ । କୁଣ୍ଡିନ—ବିଦର୍ଭେଶ୍ୱର, ରାଜମାନଙ୍କ ରାଜ୍ୟ ବା ରାଜଧାନୀ ନାମରେ ଉଲ୍ଲିଖିତ କରାଯାଏ । ପାଚ୍ଛୋଟି ସମ୍ଭାବନା ଦେଖାଇ, ଡାକି । ରସାଶିର ଭୂଷା—ପୃଥିବୀର ଶିରୋଭୂଷଣ । ବସା—ବସାଘର ସନ୍ତୋଷି— । ସନ୍ତୋଷ ଦାନ କରି । ଚାତକ ଭାବ—ଚାତକ ଯେପରି ଆଶାକରି ନୀରଆଶାରେ ଅପେକ୍ଷା କରିଥାଏ । ଶୋଭା ଭୁବନ କର୍ତ୍ତା—ଶୋଭା ରାଜ୍ୟର ରାଣୀ ।

ଦମଘୋଷାତ୍ମଜ ତମ ସମାନେ ଆସିଛୁ ବାମ-
ନେତ୍ରୀ ବୃନ୍ଦ ପୂର୍ଣ୍ଣଚନ୍ଦ୍ର ଗ୍ରହଣ ପାଇଁ
ଶୁଣିଲା ବେଳରୁ କିଛି ସ୍ମରଣେ ମନେ ନୋହୁଛି
ଜୀବନ ଧନ ରହିଛି ଉତ୍ସର୍ଗ ହୋଇ
ସଂଯୋଗରେ ଦାନ ହୋଇବ
କି ଦୁର୍ଯୋଗ ପକାଇଲା ଆଣି ଦଇବ । ୩୧ ।

**ଅନ୍ୱୟ**—ବାମ ନେତ୍ରୀ ବୃନ୍ଦ ପୂର୍ଣ୍ଣଚନ୍ଦ୍ର ଗ୍ରହଣ ପାଇଁ ଦମଘୋଷାତ୍ମଜ ତମ ସମାନେ ଆସିଛୁ । (ତାହା) ଶୁଣିଲାବେଳରୁ କିଛୁ ସ୍ମରଣେ ମନେ ନୋହୁଛୁ । ସଂଯୋଗରେ ଦାନ ହୋଇବ (ବୋଲି) ଜୀବନ ଧନ ଉତ୍ସର୍ଗ ହୋଇ ରହିଛୁ ।

**କଥା**— ସୁନ୍ଦର ନୟନ-ରମଣୀ ବୃନ୍ଦ ମଧ୍ୟରେ ପୂର୍ଣ୍ଣଚନ୍ଦ୍ରମା ସଦୃଶ ଯେ ତୁମେ ଅଛ । ତୁମ୍ଭଙ୍କୁ ଗ୍ରହଣ କରିବାକୁ ଦମଘୋଷ ପୁଅ ଶିଶୁପାଳ ରାହୁ ପ୍ରାୟ ଆସି ପହଞ୍ଚିଛି । ଏକଥା ଶୁଣିଲା ବେଳରୁ କିଛି ଛୁଇଁବାକୁ ଇଚ୍ଛା ହେଉନାହିଁ । ଗ୍ରହଣ ଲାଗିଲେ ତ ସହଜେ କିଛି ଛୁଆଁ ଯାଏ ନାହିଁ । ଗ୍ରହଣ ସଂଯୋଗରେ ଦାନ କରାଯାଏ । ଯେପରି ଏହା ସଂଯୋଗ ସମୟ ଆସିଲେ ସତ୍ପାତ୍ରରେ ଦାନ କରାଯିବାକୁ ଏହି ଅମଳାନଧି ପ୍ରାଣ ସମ୍ପତ୍ତି ଉତ୍ସର୍ଗ ହୋଇ ରହିଛି । ଛି, ଦୈବ ! କି ଦୁର୍ଯୋଗ ଆଣି ପକାଇଲା !

---

ଶବ୍ଦାର୍ଥ । ଦମଘୋଷାତ୍ମଜ—ଶିଶୁପାଳ । ତମ—ରାହୁ । ବାମ—ସୁନ୍ଦର । ଜୀବନ-ଧନ—ପ୍ରାଣସମ୍ପତ୍ତି । ସଂଯୋଗ—ମିଳନ ।

ପରମଚିନ୍ତା-ଅର୍ଣ୍ଣବେ          ମଜ୍ଜିଲେ ସଜନୀ ସର୍ବେ
ତ୍ରୁଟିକ କାଳ କୋଟିଏ କଳ୍ପ କଳ୍ପିଲେ
ସଦ୍ମ ସତ୍ୟ ସମୂହର          ପଦ୍ମଜ-ପୁତ୍ର ଉତ୍ତର
ଛଦ୍ମ ତ ନୋହିବ କେହି କେହି ଜଳ୍ପିଲେ
ଯିବା ଜୀବ ଛଟକାକ୍ଷୀର
ଝଟକର ଅଟକ ରଖିଲା ଏ ଗିର । ୩୨ ।

**ଅନ୍ୱୟ**—ସଜନୀ ସର୍ବେ ପରମ ଚିନ୍ତା ଅର୍ଣ୍ଣବେ ମଜ୍ଜିଲେ । ତ୍ରୁଟିକ କାଳ କୋଟିଏ କଳ୍ପ କଳ୍ପିଲେ । ସତ୍ୟ ସମୂହର ସଦ୍ମ (ଗୃହ) ପଦ୍ମଜ ପୁତ୍ର (ଙ୍କ) ଉତ୍ତର ଛଦ୍ମ ତ ନୋହିବ (ଏ କଥା) କେହି କେହି ଜଳ୍ପିଲେ । ଛଟକାକ୍ଷୀ (ରୁକ୍ମିଣୀ)ର ଜୀବ ଯିବା (ପରି ହୋଇଥିଲା) । (କିନ୍ତୁ) ଏ ଗିର ଝଟ କରି ଅଟକ ରଖିଲା ।

**କଥା**—ଟଜମାର ସମସ୍ତ ସଖୀ ଅତି ଅଧିକ ଚିନ୍ତା ସାଗରରେ ବୁଡ଼ିଗଲେ । ପୁନଶ୍ଚ ପରମଚିନ୍ତା-ସାଗରଙ୍କ ଧ୍ୟାନରେ ମଜ୍ଜିଗଲେ । ଏତେବେଳେ ଏପରି ଚିନ୍ତା ଲାଗିଲା ଯେ କ୍ଷଣମାତ୍ର ସମୟ କୋଟିଏ କଳ୍ପ ପ୍ରାୟ ଜଣାଗଲା । ସତ୍ୟ ସମୂହର ନିବାସ ଅଟନ୍ତି ଯେଉଁ ବିଧାତାଙ୍କ ପୁତ୍ର ନାରଦ, ତାଙ୍କର ବାକ୍ୟ ତ ମିଥ୍ୟା ନୋହିବ ! ଏ କଥା କେହି କେହି ସଖୀ କହିଲେ । ଏ ଘଟଣା ଶୁଣି ଛଟକ ନେତ୍ରୀ ରୁକ୍ମିଣୀଙ୍କର ପ୍ରାଣ ଚାଲିଯିବା ପରି ହୋଇଥିଲା, କିନ୍ତୁ ସେ ସଖୀମାନଙ୍କର ଏପରି କଥା ଶୁଣିବାରୁ ତାଙ୍କ ପ୍ରାଣ ଝଟ କରି ଅଟକିଗଲା ।

---

ଶବ୍ଦାର୍ଥ । ପରମଚିନ୍ତା—ଗାଢ଼ଚିନ୍ତା । ପରମଚିନ୍ତା ଅର୍ଣ୍ଣବେ—ପରମଚିନ୍ତା ସାଗରେ; ବିଷ୍ଣୁରୂପୀ ଚିନ୍ତାମଣି କୃଷ୍ଣଙ୍କଠାରେ । ତ୍ରୁଟିକ—କ୍ଷଣକ । କଳ୍ପିଲେ—କଳ୍ପନା କଲେ, ଜାଣିଲେ । ସଦ୍ମ—ନିବାସ, ସମୂହ, ବସ୍ତୁ । ପଦ୍ମଜ—ବିଧାତା । ପଦ୍ମଜ ପୁତ୍ର—ନାରଦ । ଛଦ୍ମ—ମିଥ୍ୟା ।—ଜଳ୍ପିଲେ—ଭାଷିଲେ । ଛଟକାକ୍ଷୀ—ଛଟକ ନୟନୀ, (ଯାର ଛଟକ ଚାହାଣି), ତରଙ୍ଗେକ୍ଷଣା । ଗିର—କଥା ।

**କୂପଗର୍ଭୁଁ କୂପଛାଇ ଯଥା ବାହାର ନୁହଇ**
**ସେପରି ହରିରେ ପ୍ରେମ ମଜ୍ଜି ରହିଲେ**
**ବିଦର୍ଭ ମଣ୍ଡଳ ଦଣ୍ଡ- ଧର କୁମର ଉଦ୍ଦଣ୍ଡ**
**ଅଧିକାରୀ କି ହକାରି କରି କହିଲେ**
**ଘଟ ଘଟକର ରଥାଙ୍ଗ—**
**ଅର୍ଚ୍ଚନ ଚର୍ଚ୍ଚାରେ ମଜ୍ଜା ମଜ୍ଜାଅ ବେଗ । ୩୩ ।**

**ଅନ୍ୱୟ**—କୂପଗର୍ଭୁଁ କୂପଛାଇ ଯଥା ବାହାର ନୁହଇ ସେପରି (ରୁକ୍ମଣୀ) ହରିରେ ପ୍ରେମେମଜ୍ଜି ରହିଲେ । ବିଦର୍ଭ ମଣ୍ଡଳ ଦଣ୍ଡଧର-ଉଦ୍ଦଣ୍ଡ କୁମର ଅଧିକାରୀ-କି ହକାରି କରି କହିଲେ ଘଟ-ଘଟକର ରଥାଙ୍ଗ ଅର୍ଚ୍ଚନ ଚର୍ଚ୍ଚାରେ ମଜ୍ଜା ବେଗେ ମଜ୍ଜାଅ ।

**କଥା**—କୂଅ ଭିତରୁ ଯେପରି କୂଅ ଛାଇ ବାହାରି ନ ଥାଏ ସେପରି ରୁକ୍ମଣୀ କୃଷ୍ଣଙ୍କ ପ୍ରେମରେ ମଜ୍ଜି ରହିଲେ । ବିଦର୍ଭ ମଣ୍ଡଳ ନରପତି ଖ୍ରୀଷ୍ମକଙ୍କ ର ଦୁଷ୍ଟ ବଡ଼ ପୁଅ କାର୍ଯ୍ୟୀକୁ ଡ଼ାକି କହିଲେ-'କୁମ୍ଭାର ଚକ ବନ୍ଧାଣ ଯେପରି ହେବ ଶୀଘ୍ର ଆୟୋଜନ କର ।

**ଆଲୋଚନା**—ମଙ୍ଗଳ ପାକ ବିଧି ଦିନ ପୂର୍ବରୁ ହାଣ୍ଡି ମଙ୍ଗୁଳି ଆଗେ କୁମ୍ଭାର ଚକ ବନ୍ଧାଣ ହେଲେ ବିବାହ ବିଧି ଆରମ୍ଭ ହୋଇଥାଏ ।'

ଶବ୍ଦାର୍ଥ । ଉଦ୍ଦଣ୍ଡ—ଦୁଷ୍ଟ, ପ୍ରଚଣ୍ଡ, ପ୍ରତାପୀ । ଅଧିକାରୀ—କାର୍ଯ୍ୟୀ, ହେଶ୍ୱର । 'ଘଟ-ଘଟକ'—କୁମ୍ଭାର । ରଥାଙ୍ଗ—ଚକ୍ର । ଅର୍ଚ୍ଚନ—ବନ୍ଧାଣ ।

**ଚଳିଲ୍ ଗୃଳିଲ୍ ସର୍ବ— ବିଧି ବିଧାନେ ସେ ପର୍ବ**
**ଗର୍ବିତ ହେବାରେ ଦର ମହୁରୀ ନାଦ**
**ବିଚ୍ଛରିଲ୍ ଚେଦି ପତି— ନନ୍ଦନ ମୋ ବେନ ଶ୍ରୁତି**
**ପାଇଲେ ଅଲକା ପ୍ରଭୁ ସର୍ବ ସଂପଦ**
**ସମ୍ଭାବତେ ସମ୍ଭାର କୁମ୍ଭ-**

**କାର ପାଇ ପୁରେ କଲ୍ ଗମନାରମ୍ଭ । ୩୪ ।**

**ଅନ୍ୱୟ**—(ତା ଶୁଣି ସେ ଅଧିକାରୀ) ଚଳିଲ । ସର୍ବବିଧ ବିଧାନେ ସେ ପର୍ବ ଗୃଳିଲ ।.ଦର, ମହୁରୀ ନାଦ ଗର୍ବିତ ହେବାରେ (ତା ଶୁଣି) ଚେଦିପତି-ନନ୍ଦନ ବିଚ୍ଛରିଲ ମୋ ବେନଶ୍ରୁତି ଅଳକାପ୍ରଭୁ ସର୍ବ ସଂପଦ ପାଇଲେ । କୁମ୍ଭକାର ସମ୍ଭାବତେ ସମ୍ଭାର ପାଇ (ତା) ପୁରେ ଗମନାରମ୍ଭ କଲା ।

**କଥା**—ଯୁବରାଜଙ୍କ ହୁକୁମ ଶୁଣି ସେ କାର୍ଯ୍ୟୀ ବୁଲିଗଲା । ସର୍ବ ବିଧି ବିଧାନରେ ସେ ଚନ୍ଦ ବନ୍ଦାଣ ମଙ୍ଗଳ ବିଧି ଚଳାଇଲା । ଏହି ଶୁଭ କାର୍ଯ୍ୟ ବେଳେ ଶଂଖ, ମହୁରୀ ଧ୍ୱନି ଅତି ଗର୍ବିତ ହୋଇ ବାଜିବାରୁ ତାହା ଶୁଣି ଶିଶୁପାଳ ବିଚ୍ଛରିଲା—ମୋର ଦୁଇ କାନ କୁବେରର ପୁରୀର ସର୍ବ ସମ୍ପଦ ଲାଭ କଲେ । ଏହାପରେ କୁମ୍ଭାର ମର୍ଯ୍ୟାଦା ସହିତ ତାର ଯଥୋଚିତ ସମ୍ଭାର ନେଇ ତା ଘରକୁ ଯାତ୍ରା କଲା ।

---

ଶବ୍ଦାର୍ଥ । ଚଳିଲ—ଗଲା, ଯାତ୍ରାକଲା । ଗୃଳିଲ—ଚଳାଇଲା । ସର୍ବ—ସମସ୍ତ । ବିଧି ବିଧାନ—ନିୟମାନୁମୋଦିତ । ଦର—ଶଙ୍ଖ । ଗର୍ବିତ—ଅତ୍ୟଧିକ । ଚେଦିପତି ନନ୍ଦନ—ଶିଶୁପାଳ । ଅଳକା ପ୍ରଭୁ—କୁବେର । ସମ୍ଭାବତେ—ସମ୍ମାନ ସହିତ । ସମ୍ଭାର—ବିଦାୟ ।

**ଯଜ୍ଞବେଦୀ ସ୍ନାନ ବେଦୀ ନୀଳାଦ୍ରି ଭୋଜନ ଗାଦି**
**ଏଣୁ ସୁଦରଶନଙ୍କ ଧାମଟି ବାମେ**
**ବର୍ଜି ଅଶନ ଅନ୍ନରେ ସର୍ଜି ଜାତକୁ ତୂର୍ଣ୍ଣରେ**
**ଅର୍ଜିତ ଦୁରିତଚୟ-ଛେଦନ କାମେ**
**ତାଙ୍କୁ ଦକ୍ଷମାର୍ଗେ ଧରନ୍ତି**
**ଯେ ପ୍ରଭୁ ଗ୍ରନ୍ଥକର୍ତ୍ତାର ସର୍ବସଂପତ୍ତି ।୩୫।**

**ଅନ୍ୱୟ**—ଯେ ପ୍ରଭୁ (ଙ୍କର) ଯଜ୍ଞ ବେଦୀ (ଏବଂ) ନୀଳାଦ୍ରି ଭୋଜନ ଗାଦି (ଅଛି) । ଏଣୁ ସୁଦରଶନଙ୍କ ଧାମଟି ବାମେ (ଥାଏ) । କିନ୍ତୁ ଅର୍ଜିତ ଦୁରିତ ଚୟ-ଛେଦନ କାମେ ଅଶନ ଅନ୍ନରେ ବର୍ଜି ତୂର୍ଣ୍ଣରେ ଜାତକୁ ସର୍ଜି ତାଙ୍କୁ ଦକ୍ଷ ମାର୍ଗେ ଧରନ୍ତି, ସେ ଗ୍ରନ୍ଥ କର୍ତ୍ତାର ସର୍ବ ସଂପତ୍ତି (ଅଟନ୍ତି) ।

**କଥା**—ଯେଉଁ ମହାପ୍ରଭୁଙ୍କର ଯଜ୍ଞବେଦୀ, ଗୁଣ୍ଡିଚ୍ଚା ମଣ୍ଡପ, ସ୍ନାନ ମଣ୍ଡପ ଏବଂ ବଡ଼ ଦେଉଳ ଭୋଜନଗାଦି ଅଛି । ଏହି ହେତୁରୁ ସୁଦର୍ଶନ ଚକ୍ରଙ୍କ ସ୍ଥାନ ବାମ ପାଖେ ଥାଏ । ସେ ଦକ୍ଷ ହସ୍ତରେ ଭୋଜନ କରିବାରୁ ତାଙ୍କ ବାଁ ପାଖେ ସୁଦର୍ଶନ ବିରାଜିତ ଥାନ୍ତି । କିନ୍ତୁ ମନୁଷ୍ୟର ଜନ୍ମାର୍ଜିତ ପାପସମୂହ ଛେଦନ କରିବା ଲାଗି ଭୋଜ୍ୟ ଅନ୍ନକୁ ବର୍ଜନ କରି ଶୀଘ୍ର ରଥ-ଯାତ୍ରାକୁ ସର୍ଜନା କରି ଉକ୍ତ ସୁଦର୍ଶନ ଚକ୍ରକୁ ଦକ୍ଷିଣ ହସ୍ତରେ ଧାରଣ କରିଥାନ୍ତି । ସେହି ପ୍ରଭୁ ଗ୍ରନ୍ଥକର୍ତ୍ତାର ସର୍ବ ସଂପତ୍ତି ଅଟନ୍ତି ।



ଶବ୍ଦାର୍ଥ—ଯଜ୍ଞବେଦୀ—ଗୁଣ୍ଡିଚ୍ଚା ଘର, ସେଇଠୁ ଯଜ୍ଞରୁ ଜଗନ୍ନାଥଙ୍କର ଜନ୍ମ ହୋଇଥିଲା । ସ୍ନାନବେଦୀ—ସ୍ନାନମଣ୍ଡପ । ନୀଳାଦ୍ରି—ବଡ଼ଦେଉଳ, ଯେଉଁଠି ରତ୍ନ ସିଂହାସନରେ ପ୍ରଭୁ ବିରାଜିତ ଥାଆନ୍ତି । ଏହି ତିନି ସ୍ଥାନରେ ଅନ୍ନଭୋଜନର ବ୍ୟବସ୍ଥା ଅଛି, ତେଣୁ ସୁଦର୍ଶନ ଚକ୍ର ପ୍ରଭୁଙ୍କ ବାମ ପାଖରେ ଥାନ୍ତି । ଅଶନ—ଭୋଜ୍ୟ,ଭୋଜନ । ଜାତ—ଗୁଣ୍ଡିଚ୍ଚାଯାତ୍ରା । ତୂର୍ଣ୍ଣ—ଶୀଘ୍ର । ଅର୍ଜିତ—ମନୁଷ୍ୟ କୃତ । ଦୁରିତ—ପାପ । ଚୟ—ସମୂହ । କାମେ—ଇଚ୍ଛାରେ । ଦକ୍ଷ ମାର୍ଗେ—ଡାହାଣ ପାଖେ । ରଥଯାତ୍ରାରେ ତାଳଧ୍ୱଜ ରଥର ଦକ୍ଷିଣ ପାଖେ ସୁଦର୍ଶନ ବିଜେହୁଅନ୍ତି ।

# ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର

## ଷଷ୍ଠ କଳା

କାମୋଦୀ ରାଗରେ ଛନ୍ଦିତ ପଦରେ ଏହି ଗ୍ରନ୍ଥଟି ରଚିତ ହୋଇଛି ।

ବିବାହର ପ୍ରଥମ ମାଙ୍ଗଳିକ ଅନୁଷ୍ଠାନ ହାଣ୍ଡିମଙ୍ଗୁଳାରେ କୁମ୍ଭାରଚକ ବନ୍ଦାଣ ଯେତେବେଳେ ଆରମ୍ଭ ହୋଇଗଲା ବିଭିନ୍ନ ବାଦ୍ୟ ବାଜି ଉଠିଲା, ତା ଶୁଣି ଭୟ ଏବଂ ଚିନ୍ତାରେ ରୁକ୍ମଣୀ କରୁଡ଼ ହୋଇ ପଡ଼ିଗଲେ । ତାଙ୍କ ଆଖିରୁ ଲୁହ ଉବାଳି ଦେଲା ଏବଂ ସେ ଝାଳରେ ସର ସର ହୋଇଗଲେ । ସେ ଏକା ନୁହନ୍ତି ତାଙ୍କର ପ୍ରିୟତମା ସଖୀଗଣ ମଧ୍ୟ କାନ୍ଦି କାନ୍ଦି ଅସ୍ଥିର ହୋଇଗଲେ ।

ଜେମା ମଣି ରୁକ୍ମଣୀଙ୍କ ଇଚ୍ଛା ବିରୁଦ୍ଧରେ ବିଦର୍ଭରାଜ ଭୀଷ୍ମକ ଏବଂ ତାଙ୍କର ରାଣୀ ଦୁଷ୍ଟ ବଡ଼ ପୁଅ ରୁକ୍ମୀକୁ ଖାତିର କରି ଚରିତ୍ରହୀନ, ନରପିଶାଚ ଏକ ରାଜପୁତ୍ର ଶିଶୁପାଳକୁ ତାଙ୍କୁ ଦାନ କରିବା ସ୍ଥିର କଲେ । କୁମାରୀ କୋମଳମନା ଏକ କନ୍ୟାର ଆପତ୍ତି କଣ ? ସେ ଜଣକୁ ଆତ୍ମଦାନ କରିଛି ବୋଲି ବ୍ୟକ୍ତ କଲେ ମଧ୍ୟ ପିତା ମାତା ତା' ଶୁଣିଲେ ନାହିଁ । କାରଣ ନୃପତିପ୍ରଧାନ ଜରାସନ୍ଧର ସେ ସେତେବେଳେ ନିମ୍ନସ୍ଥ । ଜରାସନ୍ଧ ସ୍ୱୟଂ ଉପସ୍ଥିତ । ହଠାତ୍ ଜେମାର ନାନା ପ୍ରତିବାଦ ସତ୍ତ୍ୱେ ହାଣ୍ଡିମଙ୍ଗୁଳା ଆରମ୍ଭ କରି ଦିଆଗଲା ।

ଚହ୍ନବନ୍ଦନ ବାଦ୍ୟ ବହ୍ନନେତ୍ରୀଙ୍କ ସଦ୍ୟ
ପତନ କଲା ବସୁଧାରେ

କି ଦୁଃଖପ୍ରଦ ସମୟଟିଏ ଏକାନ୍ତ ରୂପବତୀ କୁମାରୀ ଭାଗ୍ୟରେ ଆସିଗଲା—ତାର ଇଚ୍ଛା ବିରୁଦ୍ଧରେ ? ଭାବିଲେ ଚିତ୍ତ ଅସମ୍ଭାଳ ହୋଇ ଉଠେ । ଏହିପରି କେତେ ରୁକ୍ମଣୀ ଏବେ ମଧ୍ୟ ମଦ୍ୟପ ଦୁଷ୍ଟଚରିତ୍ର, ଅଧମ, ନିଷ୍ଠୁରଙ୍କ ହାତ ଧରି କି ଯମ ଯାତନା ଭୋଗୁ ନାହାନ୍ତି ? ଯେତେଦିନ ଯାଏ ଅଶ୍ୱପତିଙ୍କ ପରି ପିତା ଏ ଦେଶରେ ଜନ୍ମି ନାହାନ୍ତି ସେତେଦିନଯାଏ ସାବିତ୍ରୀରୂପିଣୀ ନାରୀ ଏ ଦୁର୍ଦ୍ଦଶା ଭୋଗି ଚାଲିଥିବ । ବ୍ୟକ୍ତିଗତ ଭାବେ ନାରୀ ସ୍ୱତଃ ତାର ବର ସଂଗ୍ରହ କରିବା ବା ସ୍ୱୟଂବର ଦ୍ୱାରା ବହୁ ବର ମଧ୍ୟରୁ ନିଜ ବର ବାଛିନେବା ଅଥବା ଏକ ପଣରେ କନ୍ୟା ବରଟିକୁ

ଲାଭ କରିବା ପ୍ରଥା ଏ ଦେଶରେ ପ୍ରଥା ସ୍ୱରୂପ ଦେଖା ନ ଯାଉଛି, ସେତେବେଳଯାଏ ରୁକ୍ମଣୀର ଦୁଃଖ ଯୁବତୀଙ୍କୁ ଭୋଗିବାକୁ ହେବ ।

ସଖିଏ କୁହାକୋହି ହେଲେ ଜେମା ଆମର ଦୁଃଖ ସମୁଦ୍ରରେ ଭାସିଯିବ । ଚାଲିଲା ଯୁବତୀ ଗୋଷ୍ଠୀରେ ମନ୍ତ୍ରଣା । ଜଣେ ସଖୀର କଥା ଜେମାଦେଈ ପସନ୍ଦ କରି ଚିଠି ଖଣ୍ଡିଏ ଲେଖିବାକୁ ସ୍ଥିର କଲେ । ଅଦେଖା ଅଶୁଣା ଅଜ୍ଞାତ ଏକ ଯୁବକ ପାଖକୁ ଚିଠି ଲେଖାଯିବ । ଚଉଦବର୍ଷରେ ଶବ୍ଦଗଣ ଘୁରିବୁଲୁଛନ୍ତି । ତଥାପି ସେ ଯୁବତୀର ଧୈର୍ଯ୍ୟ ସାହସ ଅଳ୍ପ ନୁହେଁ ? ରୂପବତୀ ଯୁବତୀ ଚଉଦ ପନ୍ଦର ବର୍ଷରେ ଏପରି ଚତୁରୀ ଓ ଜ୍ଞାନବତୀ ହୋଇଯାଏ, ବାସ୍ତବିକ୍ ଭାବ ହୁଏନାହିଁ । ସେ ସୌଭାଗ୍ୟ ଯେ କେତେଜଣ ଜଗତରେ ଅନୁଭବ କରିଛନ୍ତି ସେଇମାନେ ଜାଣନ୍ତି ।

ସଖୀ କହିଲା ଚଉଦ ଭୁବନର ମୋହକାରୀ କୃଷ୍ଣଙ୍କୁ ଏପରି କଥାମାନ ଲେଖ । ଯାହା ମୋହିତ କରିଦେବ ତାଙ୍କୁ । ସେ ଲାଗି ପଦ ଏବଂ ଭାବ ସବୁ ସାବଧାନ ରହି ପ୍ରୟୋଗ କର ।

'ମୋହନ ହେବା ଉକ୍ତି ଲେଖନେ ହୁଅ ସାବଧାନ' କବି ଯଦୁମଣି ଏ ଗୁଢ ରଚନା ଏପରି ପ୍ରାକୃତିକ ଭାବରେ ଥୋଇଛନ୍ତି ଯାହା ସର୍ବକାଳ ସର୍ବଜନ ଲାଗି ଅମୃତୋପମ ଏବଂ ପ୍ରଚଳିତ ଘଟଣା ପରି ଜଣାଯାଉଛି । ସଖୀ ଜଣେ ପତ୍ର ଲେଖା ପୂର୍ବରୁ ଜେମାର ମନ ମୋହିତ କରି କହିଲା—

ଭାଜିଯିବ ଏ ଦୁଃଖ—ଭାଜି ରାଜୀବ ମୁଖ
ବାଜୀ ବାନ୍ଧିବେ ଯେବେ ରଥେ
ସାଜ ବଜା ସମ୍ଭାର ସାଜିତ ହେବା ବର
ପାଜ ଭାଜିବ ମନୋରଥେ
ରେ ରସନିଧି
ସର୍ବଥା ନୋହିବ ଏ ଛଧି—
ନନ୍ଦନ ବଚନ ପ୍ରସିଦ୍ଧି
ଊଣା ନୋହିବ କେବେ କ୍ଷୁଣା ଯାଉଛି ଭାବେ—
ବନ୍ଧା ସେ କରୁଣା ଜଳଧି ରେ ।

ଯେତେ ଥର ଗାଅ, ପଢ଼ ସଙ୍ଗୀତ ଧ୍ୱନିରେ ବୋଲାଅ ଶ୍ରୋତା କହିବେ ଆଉ ଥରେ ଗାଅ, ଆଉ ଥରେ ଗାଅ । ପ୍ରତି ଅକ୍ଷରରେ ଅମୃତ ଯେପରି ସେଚିତ ହୋଇଛି । ସରସ୍ୱତୀ ନିଜ ବୀଣାରେ ଏ ଗୁମ୍ଫିତ ଅକ୍ଷରଗୁଡ଼ିକୁ ଯେପରି ସ୍ଥାନ ଦେଇଛନ୍ତି ? ଏହାର ପଦପଦଟି ଉଦ୍ଧାର ନ କଲେ ଆତ୍ମ ତୃପ୍ତି ଆସୁନାହିଁ । ଜେମା ସଖୀର ଏ କଥା ଶୁଣିବା ପରେ—

ସତ କହିଲ ଇତ୍ତୁ ଦୁକୂଳାଞ୍ଚଳେ ପୋଛୁ
ଲୋଚକ ସଙ୍ଗତେ ଶୋଚନା
ଲେଖଣ ପଶ ଧର ଲେଖିଲେ ଏହିପର
ଷଗ୍ରର କଶ୍ ସୁଲୋଚନା
ସେ ପତ୍ରିକାର
ଲୋକନ ମାହେ ପୀଚପଠ
ଉଛାଟେ ହୋଇବେ ଲମ୍ପଟ
ଖଗ ବନ୍ଧଚ ନନ୍ଦ-ଘୋଷଙ୍କ ବେଗ ନନ୍ଦ
ସ୍ୱପାଦେ କରିବେ ଧପଟ ।

ସ୍ୱର୍ଗରୁ ଏ ରଚନାରେ ପୁଷ୍ପବୃଷ୍ଟି ହୋଇଛୁ । କିନ୍ତୁ ଗ୍ରନ୍ଥ ରଚନା ଉପରେ କିଛିଦିନ ପରେ ସାହିତ୍ୟର ଆଧୁନିକ ପ୍ରବାହର ବାଲି ପଙ୍କ ମାଡ଼ି ଯାଇଛୁ । ଚିକିଏ ଖୋଳି ହାତରେ ପେଲି ଉଠେଇ ଦେଲେ ବୀଣା ମୁରଜ ଧ୍ୱନିରେ ଏସବୁ ବାଜି ଉଠିବ । ପୁଣି ଜୀବନରସ ଘରେ ଘରେ ପୂରି ଉଠିବ । ଓଡ଼ିଆ ଓଡ଼ିଆ ହେବାକୁ ଯେ କେତୋଟି ସ୍ୱତନ୍ତ୍ର ସମ୍ପତ୍ତି ରଖିଯାଇଛୁ ତନ୍ମଧ୍ୟରେ ଏ ଗ୍ରନ୍ଥ ହେଲା ଗୋଟିଏ ମୁଖ୍ୟ ବିଭବ । ବିଶେଷରେ ଯଦୁମଣିଙ୍କ ରଚନା କ୍ଷିପ୍ର ଧ୍ୱନିରେ ନାୟିକଣ୍ଠରେ ବୋଲି ହେଲେ ବିଶ୍ୱବକ୍ଷରେ ପୁଲକ ସଂଚରିତ ହେବ ।

ଜେମା ରୁକ୍ମଣୀଙ୍କ ଚଉତି ଖଣ୍ଡି ୭ଟି ପଦରେ ଯଦୁମଣିଙ୍କ ରଚନାରେ ପ୍ରକାଶିତ ହୋଇଛୁ । ଜଣେ ଅପରିଚିତା ଯୁବତୀ ଜଣେ ଅପରିଚିତ ଯୁବକଠାରେ ଭକ୍ତିମତୀ ହୋଇ ନିଜର ଲଜ୍ଜା ବିସର୍ଜନ ଦେଇ କିପରି ଭକ୍ତିରେ ସଂଯମ, ସାମାଜିକ ନିଷ୍ଠା ସହିତ ନିଜର ଆଚରଣ ଅବସ୍ଥା ବର୍ଣ୍ଣନା କରିଛୁ ତାହା ପାଠକ ଷଷ୍ଠ ପଦରୁ ଦ୍ୱାଦଶ ପଦଶେଷଯାଏ ଆପେ ପଢ଼ନ୍ତୁ ।

ଅତି ଗୋପନରେ ମହା ବିଦ୍ୱାନ ଦଣ୍ଡୀ ବ୍ରାହ୍ମଣ ଏଉଠି ଯେକ ସେହି ଗୁପ୍ତ ପୁରରୁ ଯାଇଛନ୍ତି ।

ଅତୀତର ସେ ନିର୍ମଳ ଅନୁଷ୍ଠିତ ସମାଜ କଥା ଭାବିଲେ ଦୁଃଖରେ ହୃଦୟ ଭାଜିପଡ଼େ । ବ୍ରାହ୍ମଣ, ମାଳୀ, ଭଣ୍ଡାରୀ, ଗଉଡ଼, ଧୋବା, ଇଇତ, ଧାଈ ଏମାନେ ଅନ୍ତଃପୁରର ପରମ ବିଶ୍ୱାସୀ । ଏପରି ଚରିତ୍ରବାନ୍ ଏମାନେ ଯେ ସେପରି ନିଷ୍କଳଙ୍କତା କେବଳ ଶୁକ୍ରଙ୍କଠାରେ ସମ୍ଭବ ହୁଏ । ଏପରି ବିଶ୍ୱାସୀ ସେମାନେ ଯେ ସୁନା ମୁଣ୍ଡାକୁ ମାଟି ଢେଲାପରି ବାସ୍ତବିକ୍ ଦେଖିଥାନ୍ତି । ମାଳୀଘରର ପୁଅକୁ ଚଷାଘର ଝିଅ ଅତି ଗୋପନରେ ବାର୍ତ୍ତାଦେଇ ତା ବିପଦରୁ ଉଦ୍ଧାର ପାଇଥାଏ । ବ୍ରାହ୍ମଣ କୁମାରୀ ଗଉଡ଼ ବେହେରା ବା ବାରିକ ହାତରେ ଖବର ଦେଇ ନିଜ ଦୁଃଖ ଦୂର କରିଛୁ ।

ସମାଜ ଆଜ ଏପରି ଦୂଷଣ ମଧ୍ୟରେ ଗତି କରୁଛି ଯେ ସତର୍କ ପ୍ରହରୀ ମଧ୍ୟରେ ନାରୀପ୍ରତି ଲାଞ୍ଛନା ଘଟୁଛି ପ୍ରତି ମୁହୂର୍ତ୍ତରେ । କିନ୍ତୁ ରୂପସୀ ଶକୁନ୍ତଳା ଏଇ ପଚିଶ ଶହେ ବର୍ଷ ପୂର୍ବେ ଉଦ୍ଭିନ୍ନ ଯୌବନ ଘେନ ଯୁବକ ଏକ ଭଣ୍ଡାରି ସହିତ, ପୌଢ଼ ଏକ ମାଲୀ ସହିତ ପଚାଶ ମାଇଲ ପଥ ଅତିକ୍ରମୀ ଶାଶୁଘରକୁ ବା ବାପଘରକୁ ଯା ଆସ କରୁଥିଲେ । ନାଆଁରେ ହାତଦେଇ କହିହେବ ଅଣୁମାତ୍ରାରେ କଳଙ୍କ ସେଠି ନଥିଲା ।, ଭାଇ ଭଉଣୀ ସାଥିହୋଇ ଦୀର୍ଘପଥ ଅତିକ୍ରମ କରି ନଗ୍ନପଦରେ ଶାଶୁଘରେ ପହଞ୍ଚିପାରୁଥିଲେ । ଇଂରେଜ ରାଜତ୍ଵରେ କଟକଜିଲ୍ଲାରେ ବାଘମାରିରେ ଏ କଳଙ୍କ ପ୍ରଥମେ ଦେଖା ଦେଇଥିଲା । ଦେଶ ପୂଜ୍ୟ ଗୋପବନ୍ଧୁ ସେ କାହାଣୀ ଲେଖି ବନ୍ଦୀ ହୋଇଥିଲେ । ହାୟ ଆଜ ସିନେମା ଚକ୍ଷୁରେ ସମାଜ ଉଚ୍ଛନ୍ନ । ରସାତଳ ଗାମୀ । ନରକରୁ ରୁକ୍ମଣୀକୁ ଉଦ୍ଧାର କରିବାକୁ ବିଶ୍ବସ୍ତ ବ୍ରାହ୍ମଣ ଜଣେ କାହାନ୍ତି ?

ଶଠି ଶେଷରେ ରୁକ୍ମଣୀ ଲେଖିଲେ—

ସଙ୍କଟକୁ ମୋ ନାହିଁ କଛ

ତୁମ୍ଭଙ୍କୁ ଦେଲି ବହ          ବହିବା ପାଇଁ ସ୍ନେହ

ବୋହିତ ହୋଇଥିଲ କଛ ।

ମନୁଷ୍ୟର ପ୍ରାରମ୍ଭିକ ଅବସ୍ଥା କଚ୍ଛପ ସର୍ବ ପ୍ରଥମେ ମୃତ୍ତିକାର କାଦୁଅ ମେଞ୍ଚା ବହନକରି ଆନନ୍ଦିତ ହୋଇଥିଲା । ଏହି ମୃତ୍ତିକା କହିଲେ ସମଗ୍ର ଧରଣୀମଣ୍ଡଳ ଧାରିଯାଇଛି । ଯେଉଁ ମାନବର ପୂର୍ବ ସ୍ଵରୂପ ଏପରି ବହିବାରେ ପ୍ରବୀଣ ସେ କ୍ଷୁଦ୍ର ବାଳକାର ସଙ୍କଟ ବା ନବହିବ କାହିଁକି ?

ସଙ୍ଗ ସର୍ବଙ୍ଗ ବିପ୍ର ଡାକ

ଧନ ପତ୍ରିକା ଦେଲା ଟେକ

କହିଲା ଯିବ ଧାଇଁ          କେମା ହୋଇବ କେହି

ସେବକ ଶପୁର ସେବକୀ

ବକୀ—ପୁତନାର ଶପୁ କୃଷ୍ଣଙ୍କର ଆମ କେମା ସେବକୀ ହେବ । ବିପ୍ର ଯେପରି ଟାକ ବସିଥିଲେ । ଶଠି ଧଇଲେ ତ ଗ୍ଳାଲେ । ନଶ୍ଚୟ କେମାର ମାନ ରକ୍ଷିବାକୁ ହେବ । ସଖୀ ବୁଝାଇଲ ।—

ଦେଖ—'ସେ ଯେ ଦକ୍ଷିଣ ଧୂର୍ତ୍ତ ଶଠ ଅଟନ୍ତି । ତାଙ୍କୁ ଯେବେ ସାଥିରେ ଧରି ନ-ଆସିବ ଭଗ୍ୟଟାଣ ଆପଣଙ୍କ ଯାଗ ଯୂପ କାଠରେ ମୁଣ୍ଡ ବାଡ଼େଇ ଆମେ ସମସ୍ତେ ମୁଣ୍ଡ ଫାଳ ଫାଳ କରିଦେବୁ । ଏଇଠି ମୁଁ ରହିଁ ରହିଛୁ । କେବେ ମଠକରିବେ ନାହିଁ ।

ବ୍ରାହ୍ମଣ ପୁଂଗବ ଶ୍ରୀକୃଷ୍ଣଙ୍କୁ ଦେଖା କରି କେମାଙ୍କ ସଖୀର କଥାଯାକ ଏବଂ କେମାଙ୍କର କଥାମାନ ଏପରି ଭାବରେ ବୁଝାଇ କହିଲେ ଏବଂ ଏପରି ସୁନ୍ଦର ଯୁକ୍ତି ତର୍କର ଅବତାରଣାରେ ପରମ ଭାବୁକ କୃଷ୍ଣ ଏପରି ମୋହିତ ହୋଇଗଲେ ଯେ—

ଶୁଣି ମଧୁ ନଗର—ବଧୂ ନେଞ୍ଚ ଚକୋର
ବିଧୁ ମଧୁରତର ଗିର
କ ସବୁଗରେ

କହିଲେ କହିଲ ଯେ ଏତେ
ତାହାକୁ କହ ଯାଇ ଏତେ
ଯାହାର ଏଡ଼େ କ୍ଷୀଣ ଦଶା ତାହାର ମନ
ମଜ୍ଜନ କ୍ଷୀଣ ଜନ କେତେ ?

ହେ ମହାତ୍ମା ! ଆପଣଙ୍କୁ ଯେଉଁ ସଖୀ ଏତେ କଥା କହିଲ ତାକୁ ଯାଇ ଏତିକ କହ ଯେ ଯାହାର ଏଡ଼େ କ୍ଷୀଣ ଦଶା ହୋଇଛି, ତାର ମନରେ ମଜ୍ଜିଥିବା ତାର ଦାସ ସ୍ୱରୂପ କ୍ଷୁଦ୍ର ମଣିଷଟି ତାକୁ ଭୁଲି କଣ ସମ୍ଭାଳି ରହିପାରିବ ? ସେ କେତେ ମାତ୍ର ?

ବିଶ୍ୱ ସୁନ୍ଦରୀ ଯୁବତୀ ରୁକ୍ମଣୀ ଜଣେ ମୋର ପରି ଯୁବକକୁ ତାଙ୍କର ପ୍ରୀତିଦାନ କରିବାକୁ ଇଚ୍ଛା କରନ୍ତି । ତା'ଶୁଣି ସେ ଯୁବକ ତ ଯୁବକ ଏପରି କିଏ ଅଛି ସମ୍ଭାଳି ରହିପାରେ ?

ଏ ସମାଜ ଆଜ କାହିଁ ? ଅସହାୟା ନାରୀର ଚିତ୍କାର ଶୁଣି ନିତ୍ୟ ଆମେ ବାଟ ଛାଡ଼ି ପଳାଇଥାଉଁ । ଅଥବା ଆଶ୍ରୟ ଦେଇ କଣ ନା' କଣ କରିବସୁଁ । ସେ ଯୁବତୀ ନାହାନ୍ତି କି ଯୁବକ ନାହାନ୍ତି, କୁହାଯାଉନ । ସବୁ ଅଛନ୍ତି, କିନ୍ତୁ ଏବର ବିଧି ବିଧାନ ତାଙ୍କୁ ଅସମ୍ମାନିତ କରି ରଖିଛି ।

ପୁଣି ବ୍ରାହ୍ମଣ ପଦ ଛୁଇଁ ନିଯ୍ୟମ କଲେ—

ଥରେ ତ କହିଅଛି ତୁମ୍ଭ ପାଦ ଛୁଉଁଛି
ଆଣିବ ଦେବୀ କର ଧରି ।

ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରରେ ଯେଉଁ ଆଠଗୋଟି କଳା ଅଛି ତନ୍ମଧ୍ୟରେ ତୃତୀୟ ଏବଂ ଷଷ୍ଠ ଦୁଇଟି କଳା ଅତି ରମଣୀୟ ଅଟେ । ଏହା ସମାନ ରଚନା କେଉଁ କବିଙ୍କ ରଚନାରେ ନାହିଁ ବୋଲି ବିଶ୍ୱାସ ଆସେ ।

ଏପରି ମଧୁର ସୁନ୍ଦର ସାହିତ୍ୟ ପ୍ରତି ରସିକତା ଏ ଜାତିର ନ ଆସିଲେ ଆମର ଭାଷାସମ୍ପଦ ଧୂଳିସାତ୍ ହୋଇଯିବାର ଆଶଙ୍କା ଆସେ ।



# ଷଷ୍ଠ କଳା

ରାଗ—କାମୋଦ

କଳ୍ପକବର ବାରେ          ଏ କଳା-କଳ୍ପନାରେ
ମଜ୍ଜା ମଜ୍ଜାଅ ଶରଧାରେ
ଚକ୍ରବନ୍ଦନ-ବାଦ୍ୟ          ବକ୍ରନେତ୍ରୀଙ୍କି ସଦ୍ୟ
ପତନ କଲା ବସୁଧାରେ
ସେ, ବାରିଜାକ୍ଷୀ
ବାରିଧି-ପ୍ରତିନିଧି ଝାଳ-
ବାରକୁ ବହିଲା ତତ୍କାଳ
ତହିଁ ହୋଇଲା ମେଳ          ସଖୀକୁଳ ଆକୁଳ
ରୋଦନ ଜଳ ଅଶୃଙ୍ଖଳ ସେ । ୧ ।

**ଅନ୍ୱୟ**—କଳ୍ପକବର ବାରେ ଏ କଳା—କଳ୍ପନାରେ ଶରଧାରେ ମଜ୍ଜା ମଜ୍ଜାଅ । ଚକ୍ର ବନ୍ଦନ ବାଦ୍ୟ ସଦା ବକ୍ରନେତ୍ରୀଙ୍କି ବସୁଧାରେ ପତନ କଲା । ସେ ବାରିଜାକ୍ଷୀ (ଠାରୁ) ତତ୍କାଳ ବାରିଧି ପ୍ରତିନିଧି ଝାଳ ବାରକୁ ବହିଲା । ସଖୀକୁଳ ଅଶୃଙ୍ଖଳ ଆକୁଳ ରୋଦନ ଜଳ ତହିଁ ମେଳ ହୋଇଲା ।

**କଥା**—କଳ୍ପନାବିଳାସୀ କବି ଥରେ ଏ କଳାରେ କଳ୍ପନାରେ ଶ୍ରଦ୍ଧାରେ ହୃଦୟକୁ ମଜ୍ଜିତ କର । କୁମ୍ଭାର ଚକ ବନ୍ଦାଣ ବାଦ୍ୟ ହଠାତ୍ ରୁକ୍ମିଣୀଙ୍କି ଭୂଇଁରେ ଫୋପାଡ଼ି ପକେଇଦେଲା । ସେହି ପଦ୍ମ—ପଲାଶନୟନାଠାରୁ ସେତେବେଳେ ଚିନ୍ତା ଓ ଭୟରୁ ସମୁଦ୍ର ପ୍ରାୟ ଝାଳ ଏବଂ ଲୁହ ବୋହିଗଲା । ତା ସାଥିରେ ସଖୀମାନଙ୍କରେ ଅସଂଯତ ଅତି ଅସ୍ଥିର ରୋଦନର ଲୁହସବୁ ନଦୀ ଧାର ପ୍ରାପ୍ତ ମିଶିଗଲା ।

---

ଶବ୍ଦାର୍ଥ । କଳ୍ପକ—କଳ୍ପନାକାରୀ । ମଜ୍ଜା—ହୃଦୟ, ହାଡ଼ର ଗୁଦି । ମଜ୍ଜାଅ—ମଜ୍ଜିତ କର । ଚକ୍ର—କୁମ୍ଭାର ଚକ । ସଦ୍ୟ—ତତ୍କ୍ଷଣାତ୍ । ବକ୍ର ନେତ୍ରୀ—ଅପାଙ୍ଗ ନୟନା, ଅତି ସୁନ୍ଦରୀ । ବାରିଜାକ୍ଷୀ—ପଦ୍ମପତ୍ରନୟନା । ବାରିଧି—ସମୁଦ୍ର । ପ୍ରତିନିଧି—ପ୍ରତିରୂପପ୍ରାପ୍ତ । ଝାଳ ବାରି—ଝାଳ ଓ ଲୁହ । ଅଶୃଙ୍ଖଳ—ଅସଂଯତ । ଆକୁଳ—ଅତି ଅସ୍ଥିରଚିତ୍ତ ।

ଭ୍ରସିଯିବ ସୁଭାଷୀ, ଦାସୀଏ ହେଲେ ଭାଷି
ଏ ଚନ୍ଦ୍ରାବଣି ନାଶିବ କେ
ପ୍ରଳୟେ ମାର୍କଣ୍ଡେୟ ଦଶାପର ଉଦୟ
ଦଶା ଏ ହୋଇଛି ଉଦକେ
ସେ ସହଚରୀ
ଭାଳିଲେ ଗ୍ଳାନିବା ଉଦନ୍ତ
ମରଣ-କଷ୍ଟକୁ ଦ୍ୱିଦନ୍ତ
ହରଣ କଲେ ଯାହା ଚରଣ କର ସାହା
ଶରଣ ସେହି ବଳବନ୍ତ ସେ । ୨ ।

**ଅନ୍ୱୟ**—ସୁଭାଷୀ ଭାସିଯିବ ଏ ଚନ୍ଦ୍ରାବଣି କେ ନାଶିବ (ବୋଲି) ଦାସୀଏ ଭାଷି ହେଲେ । ପ୍ରଳୟେ ଉଦକେ ମାର୍କଣ୍ଡେୟ ଦଶା ପର ଏ ଦଶା ଉଦୟ ହୋଇଛି । ସେ ସହଚରୀ ଭାଳିଲେ—ଉଦନ୍ତ ଗ୍ଳାନିବା । ଯାହା ଚରଣ ସାହାକର ଦ୍ୱିଦନ୍ତ ମରଣ କଷ୍ଟକୁ ହରଣ କଲେ, ସେହି ବଳବନ୍ତ (ଠାରେ) ଶରଣ (ନେବା), (ସମୀଚୀନ ଅଟେ) ।

**କଥା**—ମଧୁରଭାଷିଣୀ ଆମର ଜେମା ଏହା ଫଳରେ ଦୁଃଖ ସମୁଦ୍ରରେ ଭାସିଯିବ ଏ ଚନ୍ଦ୍ରାବଣି କିଏ ନାଶ କରିବ ବୋଲି ଦାସୀମାନେ କୁହାକୁହି ହେଲେ । ପ୍ରଳୟ କାଳରେ ଅସୀମ ଜଳରାଶି ମଧ୍ୟରେ ମାର୍କଣ୍ଡେୟ ଋଷିଙ୍କ ପରି ଏ ଦୁଃଖ ଉପସ୍ଥ ହୋଇଛି । ସେହି ସହଚରୀମାନେ ଚିନ୍ତା କଲେ ଗୋଟିଏ ଚିଠି ଦିଆଗଲେ ଭଲ ହୁଅନ୍ତା । ଯାହାଙ୍କ ପଦ ଆଶ୍ରୟ କରି ହସ୍ତୀ ପରି ପଶୁଜନ୍ତୁ ମଧ୍ୟ ନିଜର ମରଣ କଷ୍ଟ ଦୂର କରିପାରିଛି, ସେହି ବଳବନ୍ତଠାରେ ଶରଣ ନେବା ଉଚିତ ହୋଇବ ।

---

ଶବ୍ଦାର୍ଥ । ସୁଭାଷୀ—ମଧୁରଭାଷିଣୀ । ଉଦକେ—ଜଳରେ । ଉଦନ୍ତ—ବାର୍ତ୍ତା, ଚିଠି । ଦ୍ୱିଦନ୍ତ—ହସ୍ତୀ ।

**କୁଞ୍ଚିତକୁନ୍ତଳାର ସୁଚିତ୍ତକୁ ଏ ଗିର**
**ରୁଚିରେ ରୁଚିବାର ଜାଣି**
**ଲେଖିବାକୁ ଉଦନ୍ତ ସମ୍ଭାରକୁ ସୀମନ୍ତ-**
**ଶୋଭୀ କଣ୍ଠରେ ଦେଲା ଆଣି**
**ସେ ସହଚରୀ**
**କହିଲା ମହିଳା ରତନ**
**ଦ୍ୱି-ପଞ୍ଚ-ଚତୁର-ଭୁବନ-**
**ମୋହନ ମୂର୍ତ୍ତିମନ୍ତୀ ମୋହନ ହେବା ଉକ୍ତି**
**ଲେଖନେ ରଖ ସାବଧାନ ସେ । ୩ ।**

**ଅନ୍ୱୟ**— କୁଞ୍ଚିତକୁନ୍ତଳାର ସୁଚିତ୍ତକୁ ଏ ଗିର ରୁଚିରେ ରୁଚିବାର ଜାଣି ଲେଖିବାକୁ ଉଦନ୍ତ – ସମ୍ଭାରକୁ (ଉକ୍ତ) ସୀମନ୍ତଶୋଭୀ କଣ୍ଠରେ (ଏକ) ସହଚରୀ ଆଣି ଦେଲା । (ସେ) କହିଲା (ହେ) ମହିଳା ରତନ ! ଦ୍ୱିପଞ୍ଚ-ଚତୁର-ଭୁବନ-ମୋହନ (ଙ୍କୁ) ମୂର୍ତ୍ତିମନ୍ତୀ ମୋହନ ହେବା ଉକ୍ତି ଲେଖନେ ସାବଧାନ (ତା) ରଖ ।

**କଥା**— କୁଞ୍ଚିତକୁନ୍ତଳା ରୁକ୍ମିଣୀଙ୍କର ଉଦାର ଚିତ୍ତକୁ ଏକଥା ମଧୁର ସ୍ୱରରେ ରୁଚିକର ହେବାର ଜାଣି ଲେଖିବା ନିମିତ୍ତ ଚିଠି ଲେଖା ସାମଗ୍ରୀମାନଙ୍କୁ, ଉକ୍ତ ସୀମନ୍ତ-ଶୋଭମାନ୍ଙ୍କ ନିକଟରେ ଜଣେ ସଖୀ ଆଣି ଦେଲା । ସେ କହିଲା ହେ ମହିଳାରତ୍ନ ! ଚଉଦ ଭୁବନର ମୋହକାରୀ କୃଷ୍ଣଙ୍କୁ ଏପରି କଥାମାନ ଲେଖ, ଯାହା ମୋହିତ ହେବାର ମୂର୍ତ୍ତି ଗ୍ରହଣ କରିବ । ତେଣୁ ତୁମେ ସାବଧାନ ହୋଇ ପଦ ଓ ସ୍ୱରସବୁ ପ୍ରୟୋଗ କର ।

ଶବ୍ଦାର୍ଥ । କୁଞ୍ଚିତକୁନ୍ତଳା—ବଙ୍କୀଭୂତ କେଶ ଯାହାର । ରୁଚିରେ—ମଧୁରସ୍ୱରେ । ରୁଚିବାର—ରୁଚିଜନକ ହେବାର । ଉଦନ୍ତ-ସମ୍ଭାର—ଚିଠି ଲେଖା, କାଗଜ ସ୍ୟାହି କଲମ ଆଦି । ସୀମନ୍ତଶୋଭୀ—ଯେ କେଶ ବଣୀରେ ଅତି ଉତ୍କୃଷ୍ଟ ଅଳଙ୍କାରଦ୍ୱାରା ଶୋଭମାନ୍ୟା । କଣ୍ଠ—ନିକଟ । ଦ୍ୱିପଞ୍ଚ—ଦଶ । ଦ୍ୱିପଞ୍ଚ ଚତୁର ଭୁବନ—ଚଉଦ-ଭୁବନ । ମୋହନ—ମୋହ କରଣ । ମୂର୍ତ୍ତି ମନ୍ତୀ ମୋହନ—ମୂର୍ତ୍ତିମନ୍ତ ମୋହକାରକ । ଉକ୍ତି—ବଚନ ।

ଭଜିଯିବ ଏ ଦୁଃଖ- ରାଜି ରାଜୀବ ମୁଖ
ବାଜୀ ବାନ୍ଧିବେ ଯେବେ ରଥେ
ସାଜି ସର୍ବ ସମ୍ଭାର ସାଜିତ ହେବା ବର
ପାଜି ଭଜିବ ମନୋରଥେ
ରେ ରସନିଧି,
ସର୍ବଥା ନୋହିବ ଏ ବିଧି
ନନ୍ଦନ ବଚନ ପ୍ରସିଦ୍ଧି
ଊଣା ନୋହିବ କେବେ ଶୁଣା ଯାଉଛି ଭବେ
ବନ୍ଦୀ ସେ କରୁଣା-ଜଳଧିରେ । ୪ ।

**ଅନ୍ୱୟ**— ରେ ରସନିଧି ! ଯେବେ ରାଜୀବମୁଖ ରଥେ ବାଜୀ ବାନ୍ଧିବେ, ଏ ଦୁଃଖରାଜି ଭଜିଯିବ । ସର୍ବ ସମ୍ଭାର ସାଜି ସାଜିତ ହେବା ପାଜିବର-ମନୋରଥ ଭଜିବ । ଏ ସର୍ବଥା ନୋହିବ । ବିଧି ନନ୍ଦନ ବଚନ ପ୍ରସିଦ୍ଧି କେବେ ଊଣା ନୋହିବ । ଶୁଣାଯାଉଛି ସେ ଭବେ ବନ୍ଦୀ କରୁଣା-ଜଳଧି (ଅଟନ୍ତି) ।

**କଥା**—ସଖୀ କହିଲା—ରେ ସର୍ବରସର ଭଣ୍ଡାର । ଶୁଣ, ଯେବେ ପଦ୍ମମୁଖ କୃଷ୍ଣ ତାଙ୍କ ରଥରେ ଘୋଡ଼ା ବାନ୍ଧିବେ ତୋର ଏ ଦୁଃଖସମୂହ ଦୂର ହୋଇଯିବ । ହିବାହର ସର୍ବବିଧ ସମ୍ଭାର ସଜ୍ଜାରେ ସଜ୍ଜିତ ହୋଇ ଯେଉଁ ନୀଚ ଦୁଷ୍ଟ 'ବର' ଆସିଛି, ତାର ଅଭିଳାଷ ଭାଙ୍ଗିଯିବ । ମୁଁ ଜବାବ ଦେଉଛି ତା ସହିତ ବିଭା ହେବା କଥା କଦାପି ସମ୍ଭବ ହେବ ନାହିଁ । ନାରଦଙ୍କ କଥାର ମାହାତ୍ମ୍ୟ କେବେହେଲେ ଊଣା ହେବ ନାହିଁ । କୃଷ୍ଣଙ୍କ ବିଷୟରେ ଶୁଣଯାଉଛି-ସେ ସ୍ନେହରେ ବନ୍ଧା ଦୟାସାଗର ଅଟନ୍ତି । ଆଉ ତୋର ଚିନ୍ତା କାହିଁକି ?

---

ଶବ୍ଦାର୍ଥ—ରସନିଧି—ସମସ୍ତ ରସର ଭଣ୍ଡାର । ରାଜୀବମୁଖ—ପଦ୍ମମୁଖ କୃଷ୍ଣ । ବାଜୀ—ଅଶ୍ୱ । ସାଜି—ସଜାଇ ହୋଇ । ସାଜିତ—ସୁସଜ୍ଜିତ । ପାଜୀ—ନୀଚ, ଦୁଷ୍ଟ, ଦୁରାତ୍ମା । ମନୋରଥ—ଅଭିଳାଷ, ଆଶା । ସର୍ବଥା—କଦାପି । ବିଧିନନ୍ଦନ—ନାରଦ । ଭବେ—ଶ୍ରଦ୍ଧାରେ । ବନ୍ଦା—ବନ୍ଦୀ । ରାଜି—ସମୂହ ।

**ସତ କହିଲା ଇଚ୍ଛି ଦୁକୂଳାଞ୍ଚଳେ ପୋଛି**
**ଲୋଚକ ସଙ୍ଗତେ ଶୋଚନା**
**ଲେଖନୀ, ପତ୍ର ଧରି ଲେଖିଲେ ଏହିପରି**
**ବିଗ୍ରହ କରି ସୁଲୋଚନା**
**ସେ ପତ୍ରିକାର**
**ଲୋକନ ମାତ୍ରେ ପୀତପଟ୍ଟ**
**ଉଚାଟେ ହୋଇବେ ଲମ୍ପଟ**
**ଖଗ-ବନ୍ଦିତ ନନ୍ଦି- ଘୋଷଙ୍କ ବେଗ ନିନ୍ଦି**
**ସ୍ୱପାଦେ କରିବେ ଧପଟ ସେ । ୫ ।**

**ଅନ୍ୱୟ**—ସେ ସୁଲୋଚନା (ତାର ସଖୀ) ସତ କହିଲା ଇଚ୍ଛି ଦୁକୂଳାଞ୍ଚଳେ ଲୋଚକ ସଙ୍ଗତେ ଶୋଚନା ପୋଛି ଲେଖନୀ ପତ୍ର ଧରି ବିଗ୍ରହ କରି ଏହିପରି ଲେଖିଲେ । ସେ ପତ୍ରିକାର ଲୋକନ ମାତ୍ରେ ପୀତପଟ୍ଟ (ଯେମନ୍ତ) ଉଚାଟେ ଲମ୍ପଟ ହୋଇବେ । ବନ୍ଦିତ-ଖଗ ଏବଂ ନନ୍ଦଘୋଷଙ୍କ ବେଗ ନିନ୍ଦି ସ୍ୱପାଦେ ଧପଟ କରିବେ ।

**କଥା**—ସେହି ସୁଲୋଚନା ରୁକ୍ମଣୀ ସଖୀ ତାଙ୍କୁ ସତ କହିଲା ମନେକରି ନିଜର ଶାଢ଼ୀ ପଣତରେ ଲୁହ ସହିତ ଚିନ୍ତା ସବୁକୁ ପୋଛିଦେଇ କଲମ ଏବଂ ପତ୍ର ଧରି ବିଗ୍ରହ କରି ଏହିପରି ଲେଖିଲେ । ସେ ଚିଠି ଦେଖିବା ମାତ୍ରେ କୃଷ୍ଣ ଯେପରି ଉତ୍କଣ୍ଠାରେ ଲୋଲୁପ ହେବେ, ଚଞ୍ଚଳତାରେ ବନ୍ଦମାପୂ ଗରୁଡ଼ ଏବଂ ନନ୍ଦଘୋଷରଥକୁ ନିନ୍ଦାକରି ସେ ନିଜ ପାଦରେ ଦଉଡ଼ି କରି ଆସିବେ ।

ଶବ୍ଦାର୍ଥ । ଦୁକୂଳ—ଶାଢ଼ୀ । ଅଞ୍ଚଳ—ପଣତ । ଶୋଚନା—ଦୁଃଖ । ଶୋଚନା ପୋଛି—ଦୁଃଖ ତ୍ୟାଗକରି । ପୀତପଟ୍ଟ—ପୀତବସ୍ତ୍ର ପରିଧାନକାରୀ କୃଷ୍ଣ । ଉଚାଟେ—ଉତ୍କଣ୍ଠାରେ । ଲମ୍ପଟ—କାମୁକ, ପ୍ରଲୋଭିତ । ଖଗ—ଗରୁଡ଼ । ଧପଟ—ଧାଇଁବା ।

**ନଗମ-ବନଡାର ଫୁଲଗଣ୍ଡ-ଶଖର-**
**ମଞ୍ଜୁ-ବଞ୍ଜୁଳ-କଳ-ଗୁଚ୍ଛ**
**ପଦାଙ୍ଗୁଳରୁ ଚଳ ବ୍ରହ୍ମ ସଲଳ ଶୂଳ-**
**ଗରଳ-ଜ୍ୱାଳା କଲ ତୁଚ୍ଛ**
**ହେ ଯଦୁ ବସ୍ତ୍ର !**
**ଧାତା ଚନ୍ତାକୁ ହେଲ ମସ୍ତ୍ୟ**
**ସିନ୍ଧୁ ସିନ୍ଧୁକ ହେଲ ପୁଚ୍ଛ**
**ଶକ୍ର ଆର୍ତ୍ତ କର୍ତ୍ତନ କର୍ତ୍ତରୀ କଲ ବନ**
**ନର୍ତ୍ତନ କାରୀ ହର ଅଚ୍ଛ ଦେ । ୭ ।**

**ଅନ୍ୱୟ**—ହେ ଯଦୁବର ! ନଗମ-ବନଡାର ଫୁଲଗଣ୍ଡ-ଶିଖର (ରେ ଥିବା) ମଞ୍ଜୁ-ବଞ୍ଜୁଳ-କଳ ଗୁଚ୍ଛ (ସଦୃଶ) ପଦାଙ୍ଗୁଳରୁ ବ୍ରହ୍ମସଲଳ ଢ଼ାଳ ଶୂଳ ଗରଳ-ଜ୍ୱାଳା ତୁଚ୍ଛ କଲ, ଧାତା ଚନ୍ତାକୁ ମସ୍ତ୍ୟ ହେଲ । ସିନ୍ଧୁ-ସିନ୍ଧୁକ ପୁଚ୍ଛ ହେଲ, ଶକ୍ର ଆର୍ତ୍ତ କର୍ତ୍ତନ (ଲାଗି) ବନ-ନର୍ତ୍ତନକାରୀ ହର (ଏବଂ) ଅଚ୍ଛ (ଙ୍କୁ) କର୍ତ୍ତରୀ କଲ ।

**କଥା**—ହେ ବସ୍ତ୍ରସ୍ୱରୂପୀ ଯାଦବ ! ତୁମ୍ଭେ ଥରେ ବେଦଶାସ୍ତ୍ର ରୂପିଣୀ କନ୍ୟାର ଫୁଲଗଣ୍ଡ ଉପରେ ଥିବା ସୁନ୍ଦର ଅଶୋକ କଳକା ଗୁଚ୍ଛ ପ୍ରାୟ ତୁମ୍ଭର ପଦାଙ୍ଗୁଳରୁ ପରମ ପାବନୀ ଜାହ୍ନବୀ-ଜଳ ଢ଼ାଳ ମହାଦେବଙ୍କର ଗରଳ-ଜ୍ୱାଳା ନବାରଣ କଲ । ପୁଣି ଥରେ ବଧାତା ଚନ୍ତତ ହେବାରୁ ମତ୍ସ୍ୟାବତାର ଗ୍ରହଣ କଲ । ଫଳରେ ବଶାଳ ସମୁଦ୍ର କ୍ଷୁଦ୍ର ସିନ୍ଧୁକ ପ୍ରାୟେ ତୁମ୍ଭ ପୁଚ୍ଛରେ ଆନ୍ଦୋଳିତ ହେଲା । ପୁନଶ୍ଚ ଥରେ ରାବଣ ହାତରେ ପୀଡ଼ିତ ଇନ୍ଦ୍ରର ଆର୍ତ୍ତି କର୍ତ୍ତନ ଲାଗି ଅରଣ୍ୟର ହତ୍ୟାକାରୀ ମର୍କଟ ଏବଂ ଭଲ୍ଲୁକମାନଙ୍କୁ କଟାରିକଲ ।

**ଆଲୋଚନା**—ବସ୍ତ୍ରଙ୍କ ପାଦପଦ୍ମର ବର୍ଣ୍ଣନା ହିଁ ନଗମ ଶାସ୍ତ୍ର ସକଳ ଅଟେ । ତେଣୁ ନଗମ ଶାସ୍ତ୍ରର ଉପରେ ଥିବା ଅଶୋକ କଳକାକୁ ରକ୍ତବର୍ଣ୍ଣ ଅଙ୍ଗୁଠିର ସାମ୍ୟ ରଖାଯାଇଛି ।

ମତ୍ସ୍ୟାବତାରର ପୁଚ୍ଛ ସମ୍ଭାଳିବାକୁ ସିନ୍ଧୁଟା ସିନ୍ଧୁକ ପ୍ରାୟ ହୋଇଥିଲା ।

---

ଶବ୍ଦାର୍ଥ । ନଗମ—ବେଦାଦ ଶାସ୍ତ୍ର । ଶିଖର—ଶୀର୍ଷ, ଉପର । ମଞ୍ଜୁ—ସୁନ୍ଦର । ବଞ୍ଜୁଳ—ଅଶୋକ । କଳଗୁଚ୍ଛ—କଢ଼ି ସମୂହ । ବ୍ରହ୍ମସଲଳ—ଗଙ୍ଗାଜଳ । ଶୂଳ—ମହାଦେବ । ଶକ୍ର—ଇନ୍ଦ୍ର । ହର—ମାଙ୍କଡ । ଅଚ୍ଛ—ଭାଲୁ । କର୍ତ୍ତରୀ—କଟୁରୀ ।

**ଏହାଙ୍କ ପରିହାଣ- ବନୋଦେ ବିଚକ୍ଷଣ**
**ହେଲ ତନୁ, ତନୁଜ, ଭାଇ**

**ଘୁଞ୍ଚିଗଲା ପ୍ରଳୟ ବଞ୍ଚିଲେ ମାର୍କଣ୍ଡେୟ**
**ଉଚାରିଅଛ ନୁହ ଦୁଇ**
**ହେ ବ୍ରଜସ୍ଥାୟୀ-**
**ମାନେ ତୁମ୍ଭର ସୁଖଦାୟୀ**

**ଧର-ଧାରଣେ ହେଲ ବାଇ**
**କୁମ୍ଭୀ କୁମ୍ଭୀର ହିଂସା- ରମ୍ଭେ ତୁମ୍ଭ ପ୍ରଶଂସା**

**ଧଂଶା କାହିଁକି ଗଲେ ଦେଇ ହେ । ୭ ।**

**ଅନ୍ୱୟ**—ଏହାଙ୍କ ପରହାଣ ବନୋଦେ (ଯେ) ବିଚକ୍ଷଣ ହେଲ (ଏଥିରେ ପ୍ରଶଂସା କଅଁ ବା ପାଇବ ? କାରଣ ସେମାନେ ତୁମ୍ଭର) ତନୁ, ତନୁଜ, ଭାଇ (ଅଟନ୍ତି) । (ତୁମ୍ଭ ଯୋଗୁଁ) ପ୍ରଳୟ ଘୁଞ୍ଚିଗଲା, ମାର୍କଣ୍ଡେୟ ବଞ୍ଚିଲେ (ଏହା ସତ ହେଲେହେଁ ଏଥିରେ ମଧ୍ୟ ତୁମର ପ୍ରଶଂସା ନାହିଁ କାରଣ ତୁମ୍ଭେ) ଉଚାରିଅଛ (ସେ ଓ ତୁମ୍ଭେ) ଦୁଇ ନୁହଁ । ବ୍ରଜସ୍ଥାୟୀମାନେ ତୁମ୍ଭର ସୁଖଦାୟୀ (ହୋଇଥିବାରୁ ତୁମ୍ଭେ) ଧର ଧାରଣେ ବାଇ ହେଲ । କୁମ୍ଭୀକୁମ୍ଭୀର ହିଂସାରମ୍ଭେ ତୁମ୍ଭ ପ୍ରଶଂସା ଧଂଶା (ସବେ) କାହିଁକି ଦେଇଗଲେ (ତା କହୁଛି) ।

**କଥା**—ଶିବ, ବ୍ରହ୍ମା, ଇନ୍ଦ୍ର ଏମାନଙ୍କ ପରିରକ୍ଷଣ ରୂପକ ଆମୋଦ ଦାନରେ ଯେ ତୁମ୍ଭେ ଦକ୍ଷ ହୋଇଛ, ଏଥିରେ ପ୍ରଶଂସା ବା କଣ ପାଇଁ ପାଇବ ? କାରଣ ସେମାନେ ତୁମର ତନୁ, ତନୁଜ ଏବଂ ଭାଇ ଅଟନ୍ତି । କାରଣ ତୁମେ ହରିହର ଅଭେଦ ହେତୁ ଶିବଙ୍କ ସହ ଏକ ତନୁ ଅଟ । ପଦ୍ମନାଭଙ୍କ ନାଭିକମଳରୁ ଜନ୍ମିଥିବାରୁ ବ୍ରହ୍ମା ନାଭିଜନ୍ମା କମଳୋଦ୍ଭବ ନାମରେ ତନୁଜ ଅଟନ୍ତି ଏବଂ ଇନ୍ଦ୍ର ତୁମର ଭାଇ ଅଟନ୍ତି, ଯେଣୁ ତୁମ୍ଭର ନାମ ଉପେନ୍ଦ୍ର ଏବଂ ଇନ୍ଦ୍ରାବରଜ ଅଟେ । ଆଉ ଏକ କଥା ତୁମ୍ଭ ଯୋଗୁଁ ପ୍ରଳୟ ଘୁଞ୍ଚିଗଲା । ମାର୍କଣ୍ଡେୟ ଋଷି ବଞ୍ଚିଗଲେ । ଏହା ସତ ହେଲେହେଁ ଏଥିରେ ତୁମର ପ୍ରଶଂସା କିଛି ନାହିଁ, କାରଣ ତୁମ୍ଭେ କହୁଛ ଯେ ସେ ଓ ତୁମ୍ଭେ ସ୍ୱତନ୍ତ୍ର ଦୁଇଜଣ ନୁହଁ । ବ୍ରଜର ସ୍ଥାୟୀ ନାରୀ ଗୋପିଣୀମାନେ ତୁମ୍ଭର ସୁଖଦାୟିନୀ ହୋଇ-

ଶ୍ରବାରୁ ସିନା ତୁମ୍ଭେ ଗୋବର୍ଦ୍ଧନ ପର୍ବତ ଧାରଣ କରିବାକୁ ବ୍ୟାକୁଳ ହୋଇଥିଲ ? ଏଥିରେ ବା ତୁମର ପ୍ରଶଂସା କଣ ଅଛି ? ହସ୍ତୀ ଓ କୁମ୍ଭୀର ହିଂସା ଘଟଣାରେ ତୁମ୍ଭେ ହସ୍ତୀକୁ ରକ୍ଷା କରିଛ ବୋଲି ଲୋକେ ତୁମ୍ଭର ପ୍ରଶଂସା ପତାକା କାହିଁକି ଉଡ଼ାଉଛନ୍ତି ତା କହୁଛି ତୁମ୍ଭେ ପୁଅ, ଭାଇ, ସ୍ୱଦେହ, ଆତ୍ମୀୟ, ଉପକାରୀଙ୍କୁ ରଖିବାରେ ପ୍ରଶଂସନୀୟ ହେବ କପରି ?

**ଆଲୋଚନା**--"(ଇନ୍ଦ୍ର ଉପେନ୍ଦ୍ର) ଇନ୍ଦ୍ର ମୁପଗତୋଽନୁଜତ୍ୱା ଦୁପେନ୍ଦ୍ରଃ । ଇନ୍ଦ୍ରସ୍ୟାବରଂ ଜାତୋଽନୁଜ ଇନ୍ଦ୍ରାବରଜଃ" । "ଆବୟୋ ନାସ୍ତି ଭେଦୋ ବୈଭେଷା ନରକମାପ୍ନୁୟାତ୍ (ହରିହର)" ମମାତ୍ମୈବ ମହାଦେବୋ ବ୍ରହ୍ମଣୋ ଗାନ୍ଧସମ୍ଭବଃ, ସୁରେଶୋହି ମମଭ୍ରାତା ବକ୍ଷ୍ୟାମିଶୃଣୁ ନାରଦ ! (ଭାଗବତ) ମାର୍କଣ୍ଡେୟ ମହାଭାଗ ସପ୍ତକଳ୍ପନାନ୍ତ ଜୀବନ । ଦୀର୍ଘାୟୁ ହେତୁ ମାର୍କଣ୍ଡେୟ ବସ୍ତୁଙ୍କ ସମକକ୍ଷ

ଶବ୍ଦାର୍ଥ । ପରିତ୍ରାଣ--ସଂରକ୍ଷଣ । ବିନୋଦ—ଆମୋଦ ଦାନରେ । ବିଚକ୍ଷଣ—ଦକ୍ଷ । ତନୁ—ଦେହ । ତନୁଜ—ପୁତ୍ର । ବ୍ରଜସ୍ଥାୟୀ—ଯେଉଁମାନେ ବ୍ରଜର ସ୍ଥାୟୀ ଭାବରେ ସ୍ଥିତ, ଗୋପିନୀ । ଧର—ପର୍ବତ । ଦାଉ—ବ୍ୟାକୁଳ । କୁମ୍ଭୀ—ହସ୍ତୀ । ଧ୍ୱଜା—ପତାକା ।

ଏହାଙ୍କ ପରବ୍ରାଣ- ବନୋଦେ ବଚକ୍ଷଣ
ହେଲ ତନୁ, ତନୁଜ, ଭ୍ରାଇ

ଧ୍ୱଂସ୍ତ ଗଲ୍ ପ୍ରଳୟ ବଞ୍ଚିଲେ ମାର୍କଣ୍ଡେୟ
ଉଚ୍ଚାରଅଛ ନୁହ ଦୁଇ
ହେ ବ୍ରଜସ୍ଥାୟୀ-
ମାନେ ତୁମ୍ଭର ସୁଖଦାୟୀ

ଧର-ଧାରଣେ ହେଲ ବାଇ
କୁମ୍ଭୀ କୁମ୍ଭୀର ହିଂସା- ରମ୍ଭେ ତୁମ୍ଭ ପ୍ରଶଂସା

ଧଂଶା କାହିଁକି ଗଲେ ଦେଇ ହେ । ୭ ।

**ଅନ୍ୱୟ**—ଏହାଙ୍କ ପରହାଣ ବନୋଦେ (ଯେ) ବଚକ୍ଷଣ ହେଲ (ଏଥିରେ ପ୍ରଶଂସା କଅଁ ବା ପାଇବ ? କାରଣ ସେମାନେ ତୁମ୍ଭର) ତନୁ, ତନୁଜ, ଭାଇ (ଅଟନ୍ତି) । (ତୁମ୍ଭ ଯୋଗୁଁ) ପ୍ରଳୟ ଧ୍ୱଂସଗଲା, ମାର୍କଣ୍ଡେୟ ବଞ୍ଚିଲେ (ଏହା ସତ ହେଲେହେଁ ଏଥିରେ ମଧ୍ୟ ତୁମର ପ୍ରଶଂସା ନାହିଁ କାରଣ ତୁମ୍ଭେ) ଉଚ୍ଚାରଅଛ (ସେ ଓ ତୁମ୍ଭେ) ଦୁଇ ନୁହଁ । ବ୍ରଜସ୍ଥାୟୀମାନେ ତୁମ୍ଭର ସୁଖଦାୟୀ (ହୋଇଥିବାରୁ ତୁମ୍ଭେ) ଧର ଧାରଣେ ବାଇ ହେଲ । କୁମ୍ଭୀକୁମ୍ଭୀର ହିଂସାରମ୍ଭେ ତୁମ୍ଭ ପ୍ରଶଂସା ଧଂଶା (ସବେ) କାହିଁକି ଦେଇଗଲେ (ତା କହୁଛି) ।

**କଥା**—ଶିବ, ବ୍ରହ୍ମା, ଇନ୍ଦ୍ର ଏମାନଙ୍କ ପରିରକ୍ଷଣ ରୂପକ ଆମୋଦ ଦାନରେ ଯେ ତୁମ୍ଭେ ଦକ୍ଷ ହୋଇଛ, ଏଥିରେ ପ୍ରଶଂସା ବା କଣ ପାଇଁ ପାଇବ ? କାରଣ ସେମାନେ ତୁମର ତନୁ, ତନୁଜ ଏବଂ ଭାଇ ଅଟନ୍ତି । କାରଣ ତୁମେ ହରିହର ଅଭେଦ ହେତୁ ଶିବଙ୍କ ସହ ଏକ ତନୁ ଅଟ । ପଦ୍ମନାଭଙ୍କ ନାଭିକମଳରୁ ଜନ୍ମିଥିବାରୁ ବ୍ରହ୍ମା ନାଭିଜନ୍ମା କମଳୋଦ୍ଭବ ନାମରେ ତନୁଜ ଅଟନ୍ତି ଏବଂ ଇନ୍ଦ୍ର ତୁମର ଭାଇ ଅଟନ୍ତି, ଯେଣୁ ତୁମ୍ଭର ନାମ ଉପେନ୍ଦ୍ର ଏବଂ ଇନ୍ଦ୍ରାବରଜ ଅଟେ । ଆଉ ଏକ କଥା ତୁମ୍ଭ ଯୋଗୁଁ ପ୍ରଳୟ ଧ୍ୱଂସଗଲା । ମାର୍କଣ୍ଡେୟ ଋଷି ବଞ୍ଚିଗଲେ । ଏହା ସତ ହେଲେହେଁ ଏଥିରେ ତୁମର ପ୍ରଶଂସା କିଛି ନାହିଁ, କାରଣ ତୁମ୍ଭେ କହୁଛ ଯେ ସେ ଓ ତୁମ୍ଭେ ସ୍ୱତନ୍ତ୍ର ଦୁଇଜଣ ନୁହଁ । ବ୍ରଜର ସ୍ଥାୟୀ ବାସୀ ଗୋପିମାନେ ତୁମ୍ଭର ସୁଖଦାୟିନୀ ହୋଇ-

ଥିବାରୁ ସିନା ତୁମ୍ଭେ ଗୋବର୍ଦ୍ଧନ ପର୍ବତ ଧାରଣ କରିବାକୁ ବ୍ୟାକୁଳ ହୋଇଥିଲ ? ଏଥିରେ ବା ତୁମର ପ୍ରଶଂସା କଣ ଅଛି ? ହସ୍ତୀ ଓ କୁମ୍ଭୀର ହିଂସା ଘଟଣାରେ ତୁମ୍ଭେ ହସ୍ତୀକୁ ରକ୍ଷା କରିଛ ବୋଲି ଲୋକେ ତୁମ୍ଭର ପ୍ରଶଂସା ପତାକା କାହିଁକି ଉଡ଼ାଉଛନ୍ତି ତା କହୁଛି ତୁମ୍ଭେ ପୁଅ, ଭାଇ, ସ୍ୱଦେହ, ଆତ୍ମୀୟ, ଉପକାରୀଙ୍କୁ ରଖିବାରେ ପ୍ରଶଂସନୀୟ ହେବ କପରି ?

**ଆଲୋଚନା**—"(ଇନ୍ଦ୍ର ଉପେନ୍ଦ୍ର) ଇନ୍ଦ୍ର ମୁପଗତୋଽନୁଜତ୍ୱା ଦୁପେନ୍ଦ୍ରଃ । ଇନ୍ଦ୍ରସ୍ୟାବରଂ ଜାତୋଽନୁଜ ଇନ୍ଦ୍ରାବରଜଃ" । "ଆବୟୋ ନାସ୍ତି ଭେଦୋ ବୈଭେଧା ନରକମାପ୍ନୁୟାତ୍ (ହରିହର)" ମମାତ୍ମୈବ ମହାଦେବୋ ବ୍ରହ୍ମଣୋ ଗାତ୍ରସମ୍ଭବଃ, ସୁରେଶୋହ୍ୟ ମମଭ୍ରାତା ବକ୍ଷ୍ୟାମି ଶୃଣୁ ନାରଦ ! (ଭାଗବତ) ମାର୍କଣ୍ଡେୟ ମହାଭାଗ ସପ୍ତକଳ୍ପନାନ୍ତ ଜୀବନ । ଦୀର୍ଘାୟୁ ହେତୁ ମାର୍କଣ୍ଡେୟ ବସ୍ତୁଙ୍କ ସମକକ୍ଷ

ଶବ୍ଦାର୍ଥ । ପରିତ୍ରାଣ—ସଂରକ୍ଷଣ । ବିନୋଦ—ଆମୋଦ ଦାନରେ । ବିଚକ୍ଷଣ—ଦକ୍ଷ । ତନୁ—ଦେହ । ତନୁଜ—ପୁତ୍ର । ବ୍ରଜସ୍ଥାୟୀ—ଯେଉଁମାନେ ବ୍ରଜର ସ୍ଥାୟୀ ହୋଇ ରହିଥିଲେ, ଗୋପିକା । ଧର—ପର୍ବତ । ଦାଇ—ବ୍ୟାକୁଳ । କୁମ୍ଭୀ—ହସ୍ତୀ । ଧ୍ୱଜା—ପତାକା ।

ନାଗରବର ନାରୀ- ଗତ ବିହାର-ବାରି
ମଜ୍ଜା ମଜ୍ଜାଇବା ହୋଇଲେ
ମୂଳ କରିବା ଯେବେ କୁବଳୟା ତ ତେବେ
ସେ ଭାଗ୍ୟ ଭୋଗ କରୁଥିଲେ
ହେ ଗେଲେ ଗେଲେ
ରଦନ ଉପାଡ଼ଣ ଭଲେ
କଦନ ବିରଚନ୍ତେ ମଲେ
ଆପଣ ତ ବିଦଗ୍ଧ, ଏପରି ଏ ସନ୍ଦିଗ୍ଧ
ତାଠାରେ ଲଗାଇବା ହେଲେ ହେ । ୮ ।

**ଅନ୍ୱୟ**—(ତୁମ୍ଭେ) ନାଗରବର (ହେତୁ) (ଗଜଠାରେ) ନାରୀଗତ ବିହାର-ବାରି ମଜ୍ଜା ମଜ୍ଜାଇବା ହୋଇଲେ । ଯେବେ (ସେ କଥାକୁ) ମୂଳ କରିବା, ତେବେ କୁବଳୟା ତ ସେ ଭାଗ୍ୟ ଭୋଗ କରୁଥିଲେ । ଗେଲେ ଗେଲେ (ତା) ରଦନ ଉପାଡ଼ଣ ଭଲେ କଦନ ବିରଚନ୍ତେ (ସେ ତ ପୁଣି) ମଲେ । ଆପଣ ତ ବିଦଗ୍ଧ (ଅଟନ୍ତି) ଏ ସନ୍ଦିଗ୍ଧ ତାଠାରେ (କାହିଁକି) ଲଗାଇବା ହେଲେ (ବୋଲି) ଏପରି (ମୁଁ ଭାବୁଛି) ।

**କଥା**—ଆପଣ ରସିକଶ୍ରେଷ୍ଠ ହୋଇଥିବା ହେତୁ ହସ୍ତୀଠାରେ ନାରୀର ମନ୍ଥର ଗତି ଦେଖି ତାର ସଂରକ୍ଷଣରେ ନିଜକୁ ହୃଦୟରୁ ମଜ୍ଜିତ କଲ । ଯେବେ ସେଇ କଥାକୁ ମୂଳ କରିବା ତେବେ କୁବଳୟା ଗଜ ତ ସେହି ନାରୀ ମନ୍ଥର ଗତି 'ଗଜଗମନ' ଭୋଗ କରୁଥିଲା । ତା ଚାଲି ତ ଉତ୍ତମ ରମଣୀମାନଙ୍କର ତୁଲ ପ୍ରାପ୍ୟ ହୋଇଥିବ । ତାକୁ ଗେଲ ଗେଲରେ ତାର ଦାନ୍ତ ଉପାଡ଼ି ତା ମୁଣ୍ଡରେ କଚଡ଼ା ମାରିବାର ହେତୁ କ'ଣ ? ଆପଣ ତ ପଣ୍ଡିତ ଏବଂ ରସିକ ପୁରୁଷ ଅଟନ୍ତି । ଏପରି ସନ୍ଦେହଜନକ ଘଟଣା କାହିଁକି ଘଟାଇଲେ ବୋଲି ପୁଣି ଏପରି ମୁଁ ଭାବୁଛି ।

ଶବ୍ଦାର୍ଥ । ନାଗରବର—ରସିକଶ୍ରେଷ୍ଠ । କୁବଳୟା—କଂସ ହସ୍ତୀ । ରଦନ—ଦନ୍ତ । ବିଦଗ୍ଧ—ରସିକ, ଚତୁର, ପଣ୍ଡିତ । ବାରି—ବୁଝି, ଦେଖି । କଦନ—ପୀଡ଼ନ, କଚଡ଼ିବା । ଭଲେ—ମୁଣ୍ଡରେ । ସନ୍ଦିଗ୍ଧ—ସନ୍ଦେହ ।

ରଖ-ରଖ ଶବଦ　　ଯୋଗେ ଶ୍ରୁତ ସ୍ତବଧ
ବୃଂହିଦ ହୋଇଲେ ଗଜେନ୍ଦ୍ର
ରଖ ରଖ ଉଚ୍ଚାର　　କେତେ କଲେ ଦେବାର
କାର୍ମୁକ ମିଥିଳା ନରେନ୍ଦ୍ର
ହେ ଯାଦବେନ୍ଦ୍ର !
ତବ ସ୍ତବରେ ଶ୍ରୁତ ସାନ୍ଦ୍ର
ବରଚ ଥିଲେ ତ ମୁନୀନ୍ଦ୍ର
ଭକ୍ତ ବାକ୍ୟାନୁରକ୍ତ　　ମହିମା କଲ ବ୍ୟକ୍ତ
ଅପକ୍ଷ-ଶରଣପାରନ୍ଦ୍ର ହେ । ୯ ।

**ଅନ୍ୱୟ**—(ବୋଧହୁଏ) ରଖ ରଖ ଶବଦ ଯୋଗେ ଶ୍ରୁତି ସ୍ତବଧ (ହେବାରୁ) (ଆପଣ) ଗଜେନ୍ଦ୍ର (ପ୍ରତି) ବୃଂହିଦ ହୋଇଲେ । ମିଥିଳା ନରେନ୍ଦ୍ର ଦେବାର କାର୍ମୁକ ରଖ ରଖ ଉଚ୍ଚାର କେତେ କଲେ (ତ ?) (ସେ ତ କିନ୍ତୁ ରକ୍ଷା ନ ପାଇଲେ !) ହେ ଯାଦବେନ୍ଦ୍ର ! ମୁନୀନ୍ଦ୍ର ତବ ସ୍ତବରେ ଶ୍ରୁତି (କୁ ସାନ୍ଦ୍ର ଭାବରେ) ବିରଚିଥିଲେ ତ ? (ତେଣୁ) ଭକ୍ତ ବାକ୍ୟାନୁରକ୍ତ ଅପକ୍ଷ-ଶରଣପାରିନ୍ଦ୍ର (ହୋଇ) ମହିମା ବ୍ୟକ୍ତ କଲ ।

**କଥା**—ବୋଧହୁଏ କରୁଣ ସ୍ୱନରେ ମୋତେ ରଖ ରଖ ବୋଲି ଡାକିବାରୁ ଏବଂ ତଦ୍ଦ୍ୱାରା କର୍ଣ୍ଣ ସ୍ତବ୍ଧ ହେବାରୁ ଆପଣ ଗଜେନ୍ଦ୍ର ପ୍ରତି ଦୟାର୍ଦ୍ର ପ୍ରବୃତ୍ତି ଆଣିଲେ । ମିଥିଳା ନରେନ୍ଦ୍ର ଜନକ ପଣରେ ଦେଇଥିବା ଧନୁ ରଖରଖ ବୋଲି କେତେଥର କହିଥିବେ, କିନ୍ତୁ ତାହା କାରୁଣ୍ୟପୂର୍ଣ୍ଣ ନ ହୋଇ ଗର୍ବିତ ଭାବରେ ହେବାରୁ ତାକୁ ରଖି ନ ଥିଲ । ହେ ଯାଦବଶ୍ରେଷ୍ଠ ! ଗଜୋଦ୍ଧାର ବେଳେ ଜୟ ବିଜୟ ତବ ସ୍ତବରେ ତୁମର ଶ୍ରବଣକୁ ସ୍ନିଗ୍ଧ କରିଦେଇଥିଲେ । ତେଣୁ ଆପଣ ଭକ୍ତବାକ୍ୟରେ ଅନୁରକ୍ତ ହୋଇ ପକ୍ଷପାତବିହୀନ ଶରଣସିଂହ ମହିମା ବ୍ୟକ୍ତ କଲ । ଏଥିରୁ ଜଣାଗଲା ତୁମ୍ଭଙ୍କୁ ଭକ୍ତିରେ ନ ଡାକିଲେ ତୁମ୍ଭେ ଶୁଣ ନାହିଁ ।

**ଆଲୋଚନା**—(ଗୋଟିଏ ଅତ୍ୟଧିକ-ରୂପବତୀ ସଦ୍‌ଗୁଣବତୀ ଯୁବତୀ ଜଣେ ଶ୍ରେଷ୍ଠ ତରୁଣଙ୍କୁ ବର ରୂପେ ପାଇବାକୁ ନିଜେ ଆବେଦନ କରିବାରେ କିପରି ଲଜ୍ଜିତ ତାହା ହିଁ ବର୍ଣ୍ଣିତ ହୋଇଛି ।)

---

**ଶବ୍ଦାର୍ଥ । ଅପକ୍ଷ—ନିରପେକ୍ଷ । ପାରନ୍ଦ୍ର—ସିଂହ, ଶ୍ରେଷ୍ଠ । ସାନ୍ଦ୍ର—ନିବିଡ଼, ଘନ, ସ୍ନିଗ୍ଧ । ଶ୍ରୁତ—ଶ୍ରବଣ, ବେଦ । ବୃଂହିଦ—ବୃଂହିତକଲେ । ମୁନୀନ୍ଦ୍ର—ଜଗଦ ଜେଜ୍ୱ, ବ୍ରହ୍ମଦେବ । କାର୍ମୁକ—ଧନୁ ।**

**ବିକ୍ରମ କରି ବ୍ୟୋମ — ଚୁମ୍ବିବା ପରାକ୍ରମ-**
**ଚୟ ମୟ ପୟର ଧୂଆ**
**ଜଳଜାଳ ମଞ୍ଜୁଳ — ଯତି ବିପଞ୍ଚି ମାଳ**
**କକ୍ଷ କଣ୍ଠରେ ହେଲା ଥୁଆ**
**ସେ । ଜୀବରୁଆ**
**ଜଳାଞ୍ଜଳି ହେବାରୁ ଦୟା**
**ହେ ବ୍ରଜ ଦାବାନଳ ପିଆ**
**ଚେଦି ବନ୍ଦନ-ଜ୍ୟେଷ୍ଠ- — ନନ୍ଦନ ହେବ ଜ୍ୟେଷ୍ଠ**
**ବୋଲି ଦେଖାଉଛି ଉଦୟା ହେ । ୧୦ ।**

**ଅନ୍ୱୟ**—ବିକ୍ରମ କରି ବ୍ୟୋମ ଚୁମ୍ବିବା ପରାକ୍ରମଚୟ ମୟ ପୟର ଧୂଆ ଜଳଜାଳ (ତାରୁ) ମଞ୍ଜୁଳ, ଯତି (ଙ୍କର) ବିପଞ୍ଚି (ଏବଂ) ମାଳ (ଯେବେ) କକ୍ଷ କଣ୍ଠରେ ଥୁଆହେଲା, (ଏ) ଜୀବ (କୃଷ୍ଣ, ଯେତେବେଳେ) ରୁଆ (ହେଲା) । (ମୁନି ଆଶୀର୍ବାଦ) ଜଳାଞ୍ଜଳି ଦୟା ହେବାରୁ (ତା ବଢ଼ିଗଲା) । ହେ ବ୍ରଜ ଦାବାନଳ ପିଆ ! ଚେଦି ବନ୍ଦନ ଜ୍ୟେଷ୍ଠ ନନ୍ଦନ (ତାକୁ ପୋତି ଦେବାକୁ) ଜ୍ୟେଷ୍ଠ ହେବ ବୋଲି ଉଦୟା ଦେଖାଉଛି ।

**କଥା**—ଆପଣଙ୍କର ଯେଉଁ ପାଦ, ନିର୍ବିକ୍ରମ ରୂପରେ ଆକାଶକୁ ଚୁମ୍ବିବା ପରାକ୍ରମ ସମୂହରେ ବ୍ୟାପ୍ତ ଥିଲା, ତାହାଁର ଧୌତ ଜଳ ଯେଉଁ ପାବନୀ ମନ୍ଦାକିନୀ ତାର ଜଳସମୂହରୁ ସୁନ୍ଦରତର ଏପରି ଯେ ନାରଦ ଋଷିଙ୍କର ବୀଣା ଏବଂ ଜପମାଳା ଯେବେ ତାଙ୍କର କାଖରେ ଏବଂ କାନରେ ମୋତେ ଆଶୀର୍ବାଦ କରିବା ଲାଗି ଥୁଆହେଲା, ସେତିକିବେଳେ ମୋ ଯେଉଁ ଆଶୀର୍ବଚନ ଶୁଣାଇଥିଲେ—'କୃଷ୍ଣ ତୁମର ମିତ୍ର ହେବେ' ଏହି ଆଶା ଯୋଗୁଁ ମୋ ଜୀବନ ବୃକ୍ଷ ସେତେବେଳେ ରୁଆ ହେଲା ବୋଲି ଜାଣ । ପୁଣି ମୁନିଙ୍କଦ୍ୱାରା ବିଦାୟ ବେଳେ ଆଶୀର୍ବାଦ 'ଜଳାଞ୍ଜଳି ଦିଆ' ହେବାରୁ ତା ବଢ଼ିଗଲା । ହେ ବ୍ରଜ ଘୋରତର ଦାବାନଳକୁ ମୁଖରେ ପାନକାରୀ ! କ'ଣ କହିବି ? ତୁମ ପରି ଦାବାନଳ ବନ ଅଛି, ପାନକାରୀଥାଇ ଥାଉ ଚେଦି ରାଜାଙ୍କ ଜ୍ୟେଷ୍ଠ ପୁତ୍ର ଶିଶୁପାଳ ସେହି ବୃକ୍ଷକୁ ପୋଡ଼ିଦେବାକୁ ଜ୍ୟେଷ୍ଠ ମାସ ହେବା ଲାଗି ତେଜସ୍ୱୀରୂପଣିଆଁ ଦେଖାଉଛି ।

ଶବ୍ଦାର୍ଥ । ବିକ୍ରମ କରି—ଊର୍ଦ୍ଧ୍ୱକୁ ପଦକ୍ଷେପଣ କରି । ଚୟ—ସମୂହ । ମୟ—ବ୍ୟାପ୍ତ । ଜାଳ—ସମୂହ । ମଞ୍ଜୁଳ—ମନୋଜ୍ଞ, ସୁନ୍ଦରତର, ଉତ୍କୃଷ୍ଟ । ଯତି—ନାରଦ । ବିପଞ୍ଚି—ବୀଣା । ମାଳ—ଜପମାଳା । କକ୍ଷ—କାଖ । ଉଦୟା—ତେଜସ୍ୱର । ଜଳାଞ୍ଜଳି—ହସ୍ତକୁ ଅଞ୍ଜଳି କରି ଆଶୀର୍ବାଦ କରିବାରୁ ଜଳ ଧାରାପାତ ହେବା । ଚେଦି ବନ୍ଦନ—ଚେଦି ନରପତି । ଜ୍ୟେଷ୍ଠ—ମାସ ବିଶେଷ ।

**ଆହ୍ଲାଦ ତେଜରେ ଦୁଃଖଚନ୍ଦ୍ର ସୂର୍ଯ୍ୟରେ**
**ଦେବାରେ ବହୁଛନ୍ତି ରାଗ**
**ନବଘନ-ମୂରତି ବର୍ତ୍ତମାନରେ ଗତ**
**ଲୀଳାରେ ଚଳାର୍ଦ୍ଧ ଉଦ୍‌ବେଗ**
**ହେ ! ଅଘନଗ**
**ମଘବା ଅସ୍ତ୍ରକରେ ଯୋଗ**
**ହେବ ସେ ନିଦାଘର ରୋଗ**
**ତୁମ୍ଭ ଚରଣ ଦୀନ- କରୁଣା-ନିକେତନ-**
**କଳଶ-କେତନ ଶୁଭଗ ହେ ।୧୧।**

**ଅନ୍ୱୟ**—ଚନ୍ଦ୍ର ସୂର୍ଯ୍ୟରେ ଆହ୍ଲାଦ (ଏବଂ) ତେଜରେ (ମୋତେ) ଦୁଃଖ ଦେବାରେ ରାଗ ବହୁଛନ୍ତି । ନବଘନ-ମୂରତି (ଆପଣ) ବର୍ତ୍ତମାନରେ ଗତ ଲୀଳାରେ ଚଳାର୍ଦ୍ଧ ଉଦ୍‌ବେଗ (ଦେଖାଇଲେ, ମୋ ଦୁଃଖ ଦୂର ହୁଅନ୍ତା ।) ହେ ଅଘନଗ ! ନିଦାଘର ରୋଗ ମଘବା ଅସ୍ତ୍ରକରେ । (ମୋ ଲାଗି) ସେ ଯୋଗ ହେବ । ତୁମ୍ଭ ଚରଣ କରୁଣା-ନିକେତନ-କଳଶ-କେତନ ଦୀନ (ଙ୍କ) ଶୁଭଗ (ହୋଇଥାଏ) ।

**କଥା**—ଚନ୍ଦ୍ର ସୂର୍ଯ୍ୟ ଦୁହିଁଙ୍କ ମଧ୍ୟରେ ଦୁହିଁଙ୍କୁ ଦୁହେଁ ଆହ୍ଲାଦ ଗୁଣରେ ଏବଂ ତେଜରେ ମୋତେ ଦୁଃଖ ଦେବାରେ କ୍ରୋଧ ବହନ କରିଛନ୍ତି । ମୁଁ ତୁମ୍ଭଦର୍ଶନ ଆକାଂକ୍ଷା କରି ବିରହୀ ଥିବାରୁ ଚନ୍ଦ୍ରର ଆମୋଦଦାୟକ କିରଣ ମୋତେ ଦୁଃଖ ଦେଉଛି । ଏଣେ ସୂର୍ଯ୍ୟର କଠିନ ତେଜରେ ମୋ ଜୀବନ-ବୃକ୍ଷ ଅତି ଦୁଃଖାର୍ତ୍ତ ହୋଇଅଛି । ତେଣୁ ନୟନ ଚନ୍ଦ୍ର ଦେବାରେ ମୁଁ ଯେପରି ଦୁଃଖିତ ମୁଣି ଜ୍ୟେଷ୍ଠ ମାସର ସୂର୍ଯ୍ୟ ଦେବାରେ ମୋ ଜୀବବୃକ୍ଷ ମରିବା ଉପରେ । ନବଘନ ପ୍ରକାଶ ତୁମେ ନବୀନ ଘନ ହୋଇ ପୂର୍ବ ନିକଟରେ ଗତି ଲୀଳାରେ କାହିଁକି ଉଦ୍‌ବେଗ ଦେଖାଇ ଯାତ୍ରା କଲେ ମୋ ଦୁଃଖ ଦୂର ହେବ । ନୂତନ ମେଘ ବର୍ଷାରେ ଜ୍ୟେଷ୍ଠ ମାସର ଖରାରେ ଝାଉଁଳିଯାଇ ଥିବା ଗଛ ଯେପରି ସଜୀବ ହୁଏ ସେହିପରି ମୁଁ ମୋ ହୃଦୟରେ ଚେତି ଉଠିବି । ହେ ଅଘାସୁର ପର୍ବତ ଉଦରରୁ ଗୋପାଳଙ୍କୁ ରକ୍ଷା କରିଥିବା ପ୍ରଭୁ ତୁମେ ! ଜ୍ୟେଷ୍ଠ ନିଦାଘର ଗ୍ରୀଷ୍ମ ରୋଗ ଇନ୍ଦ୍ର ନାଶ କରିଥାନ୍ତି । ମୋ ଲାଗି ବର୍ଷାର ସେ ଯୋଗ ନିଶ୍ଚୟ ହେବ । କାରଣ ମୁଁ ଜାଣେ ତୁମର ଚରଣ ଦୀନଙ୍କ ପ୍ରତି ନିକେତନର କଳଶ ଉପରିସ୍ଥ ପତାକା ପରି ଶୁଭଜନକ ହୋଇଥାଏ ।

ଶବ୍ଦାର୍ଥ । ରେ—ପାଇଁ, ନିକଟରେ, ମଧ୍ୟରେ । ନବଘନ—ନୂତନ ମେଘ । ନବଘନ-ମୂର୍ତ୍ତି—କୃଷ୍ଣ । ଅହ୍ଲାଦ—ହର୍ଷ, ଆନନ୍ଦ, ଆମୋଦ । ରାଗ—କ୍ରୋଧ, ପ୍ରୀତି, ଉତ୍ସାହ । ଅନ୍ତ—ଅଦର୍ଶନ, ନାଶ, ପ୍ରାଣେଶ୍ୱରୀ । ଅଘ—ସର୍ପାକୃତି ଅଘାସୁର । ନଗ—ପର୍ବତ । ଅଘାସୁର ବଦନ ପାଟି ଆଁ କରି ପର୍ବତ ହେବାର ପ୍ରାୟ ଥିଲା—ତା' ପେଟରେ ପର୍ବତ ପ୍ରାୟ କୃଷ୍ଣ ପଶିଯାଇ ବଧ କରିଥିଲେ । ବର୍ତ୍ତମାନରେ—ନିକଟରେ । ଚଳାର୍ଦ୍ଧ—କମ୍ପିତ । ଉଦ୍‌ବେଗ—ଉତ୍କଣ୍ଠା, ଆଗ୍ରହ । ମଘବା—ଇନ୍ଦ୍ର । ଘନ—କାତର । ଶୁଭଗ—ଶୁଭଦାୟକ ।

**ବ୍ୟାଜ ନୁହେଁ ଏ ଚିର ତ୍ୟାଗ କରି ନ ପାର**
**ପଯ୍ୟର ପୁରାଣରେ ସ୍ୱଚ୍ଛ**
**ମଥା ପୋଡିଲେ ବ୍ୟଥା ଲଭିବଟି ସର୍ବଥା**
**ମିଥ୍ୟା ଏ ନୁହନ୍ତି ଶ୍ରୀବସ୍ତ୍ର**
**ହେ ! କେକି ପୁଚ୍ଛ-**
**ମୁକୁଟ ! ନ କରିବ ମିଛ**
**ସଂକଟକୁ ମୋ ନାହିଁ କଛ**
**ତୁମ୍ଭଙ୍କୁ ଦେଲି ବନ୍ଧ ବନ୍ଧିବା ପାଇଁ ସ୍ନେହ**
**ବନ୍ଧ ତ ହୋଇଥିଲ କଚ୍ଛ ହେ । ୧୬ ।**

**ଅନ୍ୱୟ**- (ମୋର) ଏ ଚିର ବ୍ୟାଜ ନୁହେଁ । ତୁମ୍ଭେ ଯେ (ଭକ୍ତର) ପଯ୍ୟର ତ୍ୟାଗ କରି ନ ପାର (ଏହା) ପୁରାଣରେ ସ୍ୱଚ୍ଛ (ବର୍ଣ୍ଣିତ ଅଛି ।) ଏ ଶ୍ରୀବସ୍ତ୍ର ମିଥ୍ୟା ନୁହନ୍ତି; (ତେଣୁ) ମଥା ପୋଡିଲେ ସର୍ବଥା ବ୍ୟଥା ଲଭିବଟି । ହେ କେକିପୁଚ୍ଛମୁକୁଟ ! (ମୋ କଥାକୁ) ମିଛ ନ କରିବ । ମୋ ସଂକଟକୁ କଛ ନାହିଁ । ତୁମ୍ଭଙ୍କୁ ଦେଲି ବନ୍ଧ । (ତୁମ୍ଭେ ଯେବେ ଭାରି) ବନ୍ଧିବା ପାଇଁ ସ୍ନେହ ବନ୍ଧ ତ କଚ୍ଛ ହୋଇଥିଲ ।

**କଥା**– ପୁନଶ୍ଚ ଆଉ ଗୋଟିଏ କଥା ଶେଷରେ କହୁଛି ଶୁଣ । ଭକ୍ତ ପ୍ରତି ଦୟା କରିବା କଥା ପଡ଼ିବାରୁ ଏ କଥା କହିଲି । ତେଣୁ ମୋର ଏ କଥା କପଟପୂର୍ଣ୍ଣ ନୁହେଁ ଜାଣିବ । ତୁମ୍ଭେ ଅସି ଦେଖିଲେ ଜାଣିବ ମୁଁ କପଟ ଭକ୍ତମଣି । ତେଣୁ କହୁଛି ତୁମ୍ଭେ ଯେ 'ଭକ୍ତ ତ ଭକ୍ତ' ତା'ର ପାଦ ମଧ୍ୟ ତ୍ୟାଗ କରିପାର ନାହିଁ ଏହା ପୁରାଣରେ ସ୍ପଷ୍ଟ ଭାବରେ ବର୍ଣ୍ଣିତ ହୋଇଅଛି । ଶ୍ରୀବସ୍ତ୍ର କେବେ ମିଥ୍ୟା ନୁହନ୍ତି । ତୁମ୍ଭେ ମୋ ଦଣ୍ଡରେ ମନ୍ତ୍ର ପୋଡିଦେଲେ ଚିର ଜୀବନ ବ୍ୟଥା ଲଭିବ । ମୁଁ ତୁମ୍ଭ ପ୍ରତି ଭକ୍ତିମତୀ ଗୋଟିଏ କନ୍ୟା ମାତ୍ର । ତେଣୁ ହେ ଗୋପିନୀପ୍ରିୟ ! ମୟୂର ଚନ୍ଦ୍ରିକା ମୁକୁଟ-ଧାରୀ ! ତୁମର ଶୈଶବର ଲୀଳା ଖେଳା ମୁଁ ଜାଣେ । ତେଣୁ ତୁମଠି ଏତେ ଭରସା କରୁଛି । ମୋର ଏପରି ଅସୀମ ସଙ୍କଟ ଉପସ୍ଥିତ ହୋଇଛି ଯେ ତା ସମାନ ଦୁଃଖ ଆଉ ନ ଥିବ । ସେଥି ପାଇଁ ଭାର ଏବେ ତୁମକୁ ଦେଲି– ବହନ କର । କନ୍ୟାର ସମସ୍ତ ଦୁଃଖ ଯନ୍ତ୍ରଣା ବର ହିଁ ବହନ କରିଥାଏ । ଭାର ବହିବାରେ ତୁମେ ତ ପ୍ରବୀଣ । କାରଣ ସ୍ନେହ ବନ୍ଧ ଭାର ବହିବାକୁ ତୁମ୍ଭେ ତ ଯେବେ କଚ୍ଛାବତାର ହୋଇଥିଲ । ମୋ ଭାରକୁ ବା ନ ବହିବ କାହିଁକି ?

**ଆଲୋଚନା**– ତୃପ୍ତିଗର୍ବିଣୀ ରମଣୀ କେବେ ସ୍ୱାମିତ୍ୱ ଲାଗି ନିବେଦନ କରି ନ ଥାଏ । ପାର୍ବତୀ କୃଚ୍ଛ୍ରସାଧ୍ୟ ଶିବଙ୍କୁ ବଶୀଭୂତ କରି ନ ପାରି ତପସ୍ୟାରୂପକ ଅଗ୍ନି-ହୋତ୍ରଦ୍ୱାରା ଶିବଙ୍କୁ ବରଂ ପ୍ରାର୍ଥୀ ନ ହୋଇ ଏପରି ମୁଗ୍ଧ କରିଥିଲେ ଯେ ପ୍ରେମ ଯୋଗୀ ଶିବ ତାଙ୍କୁ କହିଥିଲେ– ଆଜଠୁଁ ମୁଁ ତୁମର କ୍ରୀତଦାସ ହେଲି ।

କିନ୍ତୁ ସାଧାରଣ ମାନବୀ ବିଶ୍ୱସୁନ୍ଦରୀ ରୁକ୍ମଣୀଙ୍କ ଭାଗ୍ୟରେ ତାଙ୍କର ଦୁଷ୍ଟ ସହୋଦର ସକାଶେ ଏପରି ଘଟଣା ଘଟିଲା ଯା ଫଳରେ ସେ ଜଣେ ଅଜ୍ଞାତ ସ୍ୱନାମଧନ୍ୟ ପୁରୁଷ ପ୍ରତି ନିଜର ନିବେଦନ ଜଣାଇବାକୁ ବାଧ୍ୟ ହେଲେ । ରୁକ୍ମଣୀଙ୍କ ଚରିତ୍ରରେ ଏହି କାରଣରୁ ଅନୁତ୍କର୍ଷିତା ସମ୍ଭବପର ନାହିଁ ଯେ ସେ ଯେହେତୁ ଭାଟ ମୁଖରୁ ଶୁଣି ମନେ ମନେ କୃଷ୍ଣଙ୍କୁ ଆତ୍ମଦାନ କରିଥିଲେ । ଏମନ୍ତ କି ତାହା ଜଣେ ମହାନ ପୂଜ୍ୟ ଘଟକ ନାରଦଙ୍କଦ୍ୱାରା ମଧ୍ୟ ସମର୍ଥିତ ହୋଇଥିଲା । ରୁକ୍ମଣୀ ଚିଠିରେ କହିଲେ—

ମୋର ଏ କଥା କପଟପୂର୍ଣ୍ଣ ନୁହେଁ । ଯେଉଁ ଶ୍ରୀବତ୍ସ-ଘଟଣା ମିଥ୍ୟା ନୁହେଁ, ଯାହା ପୁରାଣରେ ବର୍ଣ୍ଣିତ ରହିଛି, ତୁମେ ଉକ୍ତ ଦରିଦ୍ର ବ୍ରାହ୍ମଣକୁ କଷ୍ଟ ଦେଇଥିବାରୁ ତାର ପଦାଘାତ ଚିହ୍ନ ବକ୍ଷରେ ଧାରଣ କରିଅଛ । ଏଥିରୁ ତୁମର ଭକ୍ତପ୍ରତି କି ପ୍ରକାର ଅନୁକମ୍ପା ମୁଁ ଜାଣୁଛି । ସେଇପରି ମୋ ବକ୍ଷୟୁରେ ମୁଣ୍ଡ ପୋତିଦେଲେ ଶ୍ରୀବତ୍ସ ଘଟଣାରୁ ଅଧିକ ବ୍ୟଥା ଚିରଦିନ ଲଭୁଥିବ । କାରଣ ମୁଁ ତୁମଙ୍କୁ ନ ଦେଖିଲେ ବା ମୋତେ ତୁମେ ଏ ବିପଦରୁ ଉଦ୍ଧାର ନ କଲେ ମୁଁ ଯେ ମରିଯିବି ଏ କଥା ନିଶ୍ଚିତ । ତେଣୁ ମୋ ମୃତ୍ୟୁ ପରେ ମୋ ସମ୍ବନ୍ଧରେ ଅନୁସନ୍ଧାନ କରି ଯେତେବେଳେ ଜାଣିବ ମୁଁ କ'ଣ କପଟ ଥିଲି ସେତେବେଳେ ମୋ ସ୍ମୃତି ଲାଗି କି ଯାତନା ନ ଭୋଗିବ ତା କ'ଣ କହିବ ? ମୋ ସଙ୍କଟ ପରି ସଙ୍କଟ ଆଉ ନ ଥିବ କାରଣ ମୁଁ ଏକାକୀ ମାତ୍ର ତୁମଠାରେ ରତ ରହି ବିଶାଳ ଏକ ବିରାଟ ରାଜପୁରୀରେ ସମସ୍ତଙ୍କର ବିରୁଦ୍ଧାଚରଣ କରୁଛି—କି ପିତା, ମାତା, ଭ୍ରାତା, ଆତ୍ମୀୟସ୍ୱଜନ ସମସ୍ତଙ୍କ ସହିତ । ତୁମେ ପିଲା ଦିନେ କେକିପୁଚ୍ଛ-ମୁକୁଟ ଧାରଣ କରିବା ବେଳେ ସେମାନଙ୍କ ପ୍ରତି କପଟ ଦୟାର୍ଦ୍ର ଥିଲ, ତା ମୁଁ ଜାଣି ମୋର ଭାର ବହିବାକୁ ତୁମକୁ ଦେଇଛି । ତୁମେ ତାହା ବହନ କର । ତୁମେ ତ ପୃଥିବୀର ଏତେବଡ଼ ଭାର ସ୍ନେହ ବଶରୁ ବହି କଚ୍ଛାବତାର ହୋଇଥିଲ । ମୋର ପରି ସରଳା ବାଳିକାର ଭାର ବା ନ ବହିବ କାହିଁକି ? ଏ ଘଟଣାରେ ଯେବେ ତୁମେ ମୁଣ୍ଡ ପୋତି ରହ ତେବେ ହାସ୍ୟ ଚିରଦିନ ବ୍ୟଥା ଲଭିବଟି ! ଭକ୍ତ ଶ୍ରୀବତ୍ସର ପାଦକୁ ଯେବେ ତୁମେ ବକ୍ଷରେ ଧାରଣ କରିପାରିଲ ମୋ ପରି ଜଣେ ଭକ୍ତକୁ ବକ୍ଷରେ ଧାରଣ କରିବାକୁ କୁଣ୍ଠିତ ହେବ କାହିଁକି ? ଏପରି ସାହସିକ ଆତ୍ମଦାନ ବିଶ୍ୱଜଗତରେ ଦିଶୁଥିବାର ଜଣାଯାଏ ନାହିଁ । ଇତିହାସରେ ସଂଯୁକ୍ତାଙ୍କୁ ଏ ଉତ୍କର୍ଷତା ଦିଆଯାଇପାରେ, କିନ୍ତୁ ରୁକ୍ମଣୀଙ୍କର ସ୍ୱୟମ୍ବର ସୁଯୋଗ ମଧ୍ୟ ନ ଥିଲା ।

---

ଶବ୍ଦାର୍ଥ । ବ୍ୟାଜ—କପଟ । ସ୍ୱଚ୍ଛ—ସୁସ୍ପଷ୍ଟ । ଠଅ ପୋତିଲେ—ମୁଣ୍ଡ ନୁଆଁଇଦେଲେ । ଶ୍ରୀବତ୍ସ—ଜଣେ ବିଷ୍ଣୁଭକ୍ତ ବ୍ରାହ୍ମଣ । କେକିପୁଚ୍ଛ ମୁକୁଟ—ମସ୍ତକରେ ମୟୂର ଚନ୍ଦ୍ରିକା ଧାରଣକାରୀ । କଛ—ସମାନ । କଚ୍ଛ—କଚ୍ଛପ ଅବତାର ।

**ପରମ ମୋଦପ୍ରଦ ମୁଦ ମୁଦ୍ଭୁଁ କୁମୁଦ**
**ହସୀ ଦାସୀଏ ଘେନିଗଲା**
**ମୋଦକ ଚମ୍ପା ଜବା ଗଣେଶ ଶିବ ଶିବା**
**ସେବା ନାରୀ ହକାରି ଦେଲା**
**ସେ ସହଚରୀ**
**ବଙ୍ଗ-ସର୍ବଜ୍ଞ ବିପ୍ର ଡାକି**
**ଧନ ପର୍ଦ୍ଧିକା ଦେଲା ଟେକି**
**କହିଲା ଯିବ ଧାଇଁ କେମା ହୋଇବ କେହି**
**ସେ ବକୀ-ଋପୁର ସେବକୀ ହେ । ୧୩ ।**

**ଅନ୍ୱୟ**—କୁମୁଦହାସୀ ପରମମୋଦ-ପ୍ରଦ ମୁଦ ମୁଦ୍ଭୁଁ ଦାସୀଏ (ତାହା) ଘେନିଗଲା । ମୋଦକ, ଚମ୍ପା, ଜବା, ଗଣେଶ, ଶିବ, ଶିବା (ଙ୍କ ଲାଗି) ସେବାକାରୀ ହକାରି ଦେଲା । ସେ ସହଚରୀ ବଙ୍ଗ, ସର୍ବଜ୍ଞ ବିପ୍ର (ଜଣକୁ) ଡାକି ଧନ (ସହିତ) ପତ୍ରିକା ଟେକିଦେଲା (ଏବଂ) କହିଲା ଧାଇଁଯିବ । (ଯେପରି) କେମା ସେ ବକୀ-ଋପୁର କେହି ସେବକୀ ହୋଇବ ।

**କଥା**—ଆନନ୍ଦ-ହାସ୍ୟକାରିଣୀ କେମା ରୁକ୍ମିଣୀ ଅତ୍ୟନ୍ତ ଆହ୍ଲାଦଦାୟକ ପତ୍ରିକା ଖଣ୍ଡ ମୁଦ ମାରିବା ପରେ ତାଙ୍କର ସଖୀ ଜଣେ ତାହା ତାହାଙ୍କ ହାତରୁ ନେଇଗଲା ଏବଂ ଶୁଦ୍ଧ ଅନୁକୂଳ କରି ସେ ଦାସୀମାନଙ୍କୁ ଡକାଇ ଗଣେଶଙ୍କୁ ମୋଦକ, ଶିବଙ୍କୁ ଚମ୍ପାଫୁଲ ଏବଂ ପାର୍ବତୀଙ୍କୁ ମନ୍ଦାରଫୁଲ ଲାଗି କରିବାକୁ ଦେଇସାରି ଜଣେ ବଙ୍ଗ ସର୍ବଜ୍ଞାତା ବିଶ୍ୱାସୀ ବ୍ରାହ୍ମଣଙ୍କୁ ଡକାଇ ଆଣି ତାଙ୍କ ହସ୍ତରେ ପଥଖର୍ଚ୍ଚ ଲାଗି ମୁଦ୍ରା ଏବଂ ଉକ୍ତ ମନୋହର ପତ୍ର ଖଣ୍ଡିକ ଟେକିଦେଲା । କହିଲା —ମହାପ୍ରଭୁ ! ଆପଣ ତୁରନ୍ତ ଧାଇଁ କରି ଯିବେ । ଏଠା ଘଟଣା ତ ଜାଣିଛ । ଯେପରି ଆମର କେମାମଣି ସେଇ ଯେଉଁ ପୂତନାରିପୁ କୃଷ୍ଣ ତାଙ୍କର କପରି ଭାର୍ଯ୍ୟା ହେବ, ତାର ସବୁ ବନ୍ଦୋବସ୍ତ କରି ଆସିବେ ।

**ଆଲୋଚନା**—କେତୋଟି ଯୁବତୀ ମଧ୍ୟରେ ଏ ଯେଉଁ ଉଦ୍ୟମ ଏଥିରେ ସାହସିକତାର ପରାକାଷ୍ଠା ନାହିଁ । କାଳିଦାସଙ୍କ ଶକୁନ୍ତଳାର ସାଥି ଅନସୂୟା, ପ୍ରିୟମ୍ବଦା ଏମାନଙ୍କ ରୁକ୍ମିଣୀଙ୍କ ପ୍ରିୟତମା ସାଥି ଆଉ ସମାଜରେ ଜନ୍ମହେଲେ ଦେଖାଯାଉ ନାହାନ୍ତି । ଅଦୂଷିତ ପ୍ରଣୟ ଗାଁ ଗହଳରୁ ମଧ୍ୟ ବିଦାୟ ନେବାକୁ ବସିଲାଣି ।

---

**ଶବ୍ଦାର୍ଥ** । ପରମ ମୋଦପ୍ରଦ—ଅତ୍ୟନ୍ତ ଆହ୍ଲାଦଜନକ । ମୁଦ୍ଭୁଁ—ମୁଦବାପରେ । ମୁଦ—ପତ୍ର । କୁମୁଦ—ଆନନ୍ଦ । ମୋଦକ—ଲଡ଼ୁ । କେହି—କପରି । ଚମ୍ପା—ଚମ୍ପାଫୁଲ । ଜବା—ମନ୍ଦାର । ହକାରି—ଡାକି । ଶିବା—ପାର୍ବତୀ, ଚଣ୍ଡୀ । ସର୍ବଜ୍ଞ—ସବୁ ଜାଣିବାବାଲା । ଧନ—ସମ୍ପଦ । ପର୍ଦ୍ଧିକା—ଚିଠି । ବକୀ—ପୂତନା, ବକର ଭଉଣୀ । ବକୀରିପୁ—କୃଷ୍ଣ । ସେବକୀ—ଭାର୍ଯ୍ୟା ।

**ଯାଗ-ଯୂପ ରୋପଣ କରିବାରେ ପ୍ରବୀଣ**
**ହୋଇ ତ ଅଛ ଅବନୀରେ**
**ମୁଣ୍ଡମାରି ଦ୍ୱିଖଣ୍ଡ କରିବୁଁ ଯେବେ ପୁଣ୍ଡ-**
**ରୀକାକ୍ଷ ନ ଥିବେ ସଙ୍ଗରେ**
**ହେ ବିପ୍ରବର !**
**ସେ ଯେ ଦକ୍ଷିଣ ଧୂର୍ତ୍ତ ଶଠ**
**ମୋରେ ଏ ନୋହିବ କପଟ**
**ଭୂଗୀର୍ବାଣ ଆପଣ ଭୁଜଙ୍ଗ ଆଚରଣ**
**ଜାଣନ୍ତି ନ କରିବେ ମଠ ହେ । ୧୪ ।**

**ଅନ୍ୱୟ**—(ଜେମାଙ୍କ ସଖୀ ବ୍ରାହ୍ମଣଙ୍କୁ କହିଲା) (ଆପଣ) ଅବନୀରେ ଯାଗଯୂପ ରୋପଣ କରିବାରେ ପ୍ରବୀଣ ତ ହୋଇଅଛ । ଯେବେ (ତୁମ୍ଭ) ସଙ୍ଗରେ ପୁଣ୍ଡରୀକାକ୍ଷ ନଥିବେ (ତେବେ) (ତୁମ୍ଭଙ୍କୁ) ମୁଣ୍ଡ ମାରି ଦ୍ୱିଖଣ୍ଡ କରିବୁଁ । ହେ ବିପ୍ରବର ! ସେ ଯେ ଦକ୍ଷିଣ, ଧୂର୍ତ୍ତ (ଏବଂ) ଶଠ (ଅଟନ୍ତି) । (ଦେଖ) ମୋରେ ଏ (ଯେପରି) କପଟ ନୋହିବ । ଆପଣ ଭୂଗୀର୍ବାଣ । ଭୁଜଙ୍ଗଙ୍କ ଆଚରଣ ଜାଣନ୍ତି । ମଠ ନ କରିବେ ।

**କଥା**—ଉକ୍ତ ସହଚରୀ ବ୍ରାହ୍ମଣଙ୍କୁ କହିଲା—ଆଜ୍ଞା, ଆପଣ ଏହି ପୃଥିବୀରେ ପବିତ୍ର ଯଜ୍ଞ କାର୍ଯ୍ୟ କରି ବହୁତ ଯୂପ ଖୁଣ୍ଟକୁ ପୋତିବାରେ ଏକାନ୍ତ ଦକ୍ଷ ହୋଇଛନ୍ତି । ଯେବେ ଏତେ ପୁଣ୍ୟ କାର୍ଯ୍ୟ କରି ମଧ୍ୟ ଆପଣ ଫେରନ୍ତି ସାଥିରେ ଯଜ୍ଞର ସର୍ବ-ପୂଜ୍ୟ ପଦ୍ମଲୋଚନଙ୍କୁ ଆଣି ନ ଥିବେ ତେବେ ସେହି ଯୂପ ଖୁଣ୍ଟରେ ମୁଣ୍ଡ ବାଡ଼େଇ ଆପଣଙ୍କ ଯଜ୍ଞ ଯଶକୁ ଦ୍ୱିଖଣ୍ଡ କରିଦେବୁଁ । ହେ ବ୍ରାହ୍ମଣପୁଙ୍ଗବ ! ଯାହାଙ୍କ ପାଖକୁ ଯାଉଛନ୍ତି ସେ କପରି ଅଟନ୍ତି ଆପଣ ତ ଜାଣନ୍ତି । ସେ ଚିର୍‌କାଳରୁ ଜଣେ ଦକ୍ଷିଣ ନାୟକ । ତାଙ୍କର ବହୁ ନାୟିକାରେ ଅନୁରାଗ ଥାଏ, ପୁଣି ସବୁଠି ତୁଲ୍ୟ ଅନୁରାଗ ଦେଖାନ୍ତି । ସେ ଜଣେ ଲମ୍ପଟ ତ ଜାଣିଥିବେ । ସେତିକ ନୁହନ୍ତି ଶଠତାରେ ସେ ଗୂଢ଼ ବିପ୍ରିୟକାରୀ ମଧ୍ୟ ଅଟନ୍ତି । ତାହାକୁ କେତେବେଳେ ଭଲ ପାନ୍ତି ଜାଣିବା ମୁସ୍କିଲ । ଏସବୁ ବିଚାର କରିବେ । ଦେଖନ୍ତୁ ମୋ ପାଖରେ ଯେପରି କପଟ ନ କରନ୍ତି । ଆପଣ ଏ ମର୍ତ୍ତ୍ୟ-ମଣ୍ଡଳରେ ବାକ୍ୟରେ ଯାହା କହନ୍ତି ତା ମଧ୍ୟ କାର୍ଯ୍ୟରେ କରିଥାନ୍ତି । ତେଣୁ ଆପଣ ଭୂଗୀର୍ବାଣ ଅଟନ୍ତି । ଲମ୍ପଟ ବ୍ୟକ୍ତିଙ୍କ ଆଚରଣ ଜାଣିଥିବାରୁ ଯେପରି କଲେ କାର୍ଯ୍ୟସିଦ୍ଧ ହେବ ତା କରି ମଠ ନ କରି ଫେରିବା ହେବେ ।

---

ଶବ୍ଦାର୍ଥ । ଦକ୍ଷିଣ—ନାୟକ ବିଶେଷ । ଯେଉଁ ନାୟକର ବହୁତ ନାୟିକା ପ୍ରତି ଅନୁରାଗ ଥାଏ ଅଥଚ ସବୁ ନାୟିକାଠାରେ ତାଙ୍କର ତୁଲ୍ୟ ଅନୁରାଗ ଦେଖାଯାଏ । ଧୂର୍ତ୍ତ—ଲମ୍ପଟ, ପ୍ରେମିକ, ନାଗର । ଶଠ—ଗୂଢ଼ ବିପ୍ରିୟକାରୀ । ନାୟକ—ଯାହାବେ ଜଣକୁ ଭଲପାଏ କିନ୍ତୁ ଭିତରେ ଆଉ ଜଣକୁ ଭଲପାଏ । ଗୀର୍ବାଣ—ବାକ୍ୟ ଯେଉଁମାନଙ୍କର କାର୍ଯ୍ୟସାଧନ ରୂପ ଅସ୍ତ୍ର ଅଟେ । ଭୂ—ଭୂମଣ୍ଡଳ । ଭୁଜଙ୍ଗ—ଲମ୍ପଟ ବ୍ୟକ୍ତି । ଯୂପ—ଯଜ୍ଞୀୟ ଜୟସ୍ତମ୍ଭ । ଭୂ—ଭୂମି । ଗୀର୍ବାଣ—ଦେବତା । ଭୂଗୀର୍ବାଣ—ବ୍ରାହ୍ମଣ (ଭୂଦେବ) ।

**ଗତିକି ଅତି ତ୍ୱର 'ଧରା-ଅମର' ଦ୍ୱାର-**
**ବତୀ-ପତି କଟକ କଲେ**
**ଯତି ଜପ ସ୍ୱରୂପ ସତୀ ସମାଜ ଯୂପ-**
**ମତ-ମର୍ଦ୍ଦନଙ୍କୁ ଦେଖିଲେ**
**ସେ । ଅତିଶୟ**
**ସୁନ୍ଦରଚକ୍ର-ଚକ୍ରବର୍ତ୍ତୀ**
**ବତିଶ ଦ୍ୱିଗୁଣରେ ଖ୍ୟାତ**
**ରତିବନ୍ଧ-ବିଧାନ ରତିବନ୍ତ ମୋହନ**
**ଭକ୍ତିରେ ଶିର କଲେ ନତ ସେ । ୧୫ ।**

**ଅନ୍ୱୟ**—'ଧରା-ଅମର' (ତାଙ୍କର) ଗତିକ ଅତି ତ୍ୱରା ଦ୍ୱାରବତୀ-ପତି କଟକ କଲେ । (ଦ୍ୱାରକାରେ ପହଞ୍ଚି) ଯତି (ଙ୍କ) ଜପ ସ୍ୱରୂପ ଏବଂ ସତୀ ସମାଜ(ର) ଯୂପ-ମତ-ମର୍ଦ୍ଦନ ଅତିଶୟ(ସୁ) ସୁନ୍ଦର ଚକ୍ର-ଚକ୍ରବର୍ତ୍ତୀ (ଙ୍କୁ ଦେଖିଲେ ।) ବତିଶ ଦ୍ୱିଗୁଣରେ ଖ୍ୟାତ ରତିବନ୍ଧ-ବିଧାନ ରତିବନ୍ତ ମୋହନ (ବପୁଙ୍କୁ) ଭକ୍ତିରେ ଶିର ନତ କଲେ ।

**କଥା**—ସେହି ବ୍ରାହ୍ମଣ ରୁକ୍ମିଣୀଙ୍କ ଚିଠାଉ ଦେନ ଶୀଘ୍ର ଗତିରେ ଦ୍ୱାରବତୀ-ପତି ଶ୍ରୀକୃଷ୍ଣଙ୍କ ନିକଟକୁ ଗଲେ । ଦ୍ୱାରକାରେ ପହଞ୍ଚି ତପସ୍ୱୀମାନଙ୍କର ଧ୍ୟାନ ସ୍ୱରୂପ ଏବଂ ପତିବ୍ରତା ସମାଜର ଦୃଢ଼ ଜୟସ୍ତମ୍ଭ ସ୍ୱରୂପ ଚେଉକୁମର୍ଦ୍ଦନକାରୀ ଅତ୍ୟନ୍ତ ଏମନ୍ତ ଅତିଶୟ ସୁନ୍ଦରମାନଙ୍କ ମଧ୍ୟରେ ସମ୍ରାଟ ତାଙ୍କୁ ଦେଖିଲେ । ଚଉଷଠୀ ପ୍ରକାର ବଶିଷ୍ଟ ରତିବନ୍ଧବିଧାନରେ ପ୍ରୀତିବନ୍ତ କୃଷ୍ଣ ଉକ୍ତ ବପୁଙ୍କୁ ଦେଖି ଭକ୍ତିରେ ଶିର ନୁଆଁଇ ନମସ୍କାର କଲେ ।

---

ଶବ୍ଦାର୍ଥ । ଧରା-ଅମର—ଭୂମିର ଦେବତା, ବ୍ରାହ୍ମଣ । ଦ୍ୱାରବତୀ-ପତି—ଶ୍ରୀକୃଷ୍ଣ । ଯତି—ତପସ୍ୱୀ । ଜପ—ଧ୍ୟାନ । ଯୂପ—ଜୟସ୍ତମ୍ଭ, ଦୃଢ଼ତା । ମତମର୍ଦ୍ଦନ—ଗର୍ବ ଦଳନ । ଅତିଶୟ—ଅତିଶୟ । ଚକ୍ର—ସମୂହ । ଚକ୍ରବର୍ତ୍ତୀ—ସମ୍ରାଟ । ବତିଶ ଦ୍ୱିଗୁଣ—ଚଉଷଠୀ । ଖ୍ୟାତ—ବଶିଷ୍ଟ । ରତିବନ୍ତ—ପ୍ରୀତିସଂପନ୍ନ । ନତ—ନମ୍ର ।

**ବିପ୍ର ପ୍ରସାରି ପାଣି ଭଣି ଅନ୍ତ-କ-ରୁଣୀ**
**ଉଦ୍ଧାର-ସିଦ୍ଧି ବୃଦ୍ଧି ହେଉ**
**ଅର୍ଥେକ ମାତ୍ରା ଶୂନ୍ୟେ ଯାହା କଲେ କଥନେ**
**ମନ୍ତୁନେ ତାର୍କିକଙ୍କର ଦାଉ**
**ସେ । ଲକ୍ଷ ଲକ୍ଷ**
**ମୋକ୍ଷରେ ଦକ୍ଷ ଏ ବ୍ରାହ୍ମଣ**
**ଗ୍ରବଲେ ଅରକ୍ଷ୍ୟ ରକ୍ଷଣ**
**ନିଜ ଆସନୁଁ ଅର୍ଦ୍ଧେ ତାଙ୍କୁ ଅତି ସଂଭ୍ରମେ**
**ଝଟତି କଲେ ବିତରଣ ସେ । ୧୭ ।**

**ଅନ୍ୱୟ**—ବିପ୍ର ପାଣି ପ୍ରସାରି ଅନ୍ତ-କ-ରୁଣୀ ଉଦ୍ଧାର-ସିଦ୍ଧି ବୃଦ୍ଧି ହେଉ (ବୋଲି) ଭଣି(ଲେ) । (ସେ) ଅର୍ଥେକ ମାତ୍ରା ଶୂନ୍ୟେ କଥନେ ଯାହା କଲେ ତାର୍କିକଙ୍କର ମନ୍ତୁନେ ଦାଉ (ହେଲା) । ଅରକ୍ଷ୍ୟରକ୍ଷଣ ଗ୍ରବିଲେ ଲକ୍ଷ ଲକ୍ଷ ମୋକ୍ଷରେ ଏ ବ୍ରାହ୍ମଣ ଦକ୍ଷ (ଅଟନ୍ତି) (ତେଣୁ) ନିଜ ଆସନୁଁ ଅର୍ଦ୍ଧେ ତାଙ୍କୁ ଅତି ସମ୍ଭ୍ରମେ ଝଟତି ବିତରଣ କଲେ ।

**କଥା**—ସେ ବିପ୍ର ହସ୍ତ ପ୍ରସାରିତ କରି ଆଶୀର୍ବାଦରେ କହିଲେ, ପିତୃଋଣରୁ ଉଦ୍ଧାର ପାଇବା ବିଷୟରେ ଯେ ସିଦ୍ଧି ତା ବୃଦ୍ଧି ହେଉ । କିନ୍ତୁ ଏହି ଅନ୍ତ-କ-ରୁଣୀରେ ସେ ଶ୍ଳେଷ କଲେ ଯେ ମଧ୍ୟରେ 'ରୁ'ଣୀର 'କ' ରଖିଲେ ରୁକଣୀର ଉଦ୍ଧାର କରିବା ସିଦ୍ଧି ବୃଦ୍ଧି ହେଉ ଏପରି ମଧ୍ୟ ଆଶିଷ କଲେ । ତାଙ୍କର ସେ ଶ୍ଳେଷ କଥାରେ ଅର୍ଥ କରିବାରେ 'କ'ରେ ମ ମାତ୍ରା ଶୂନ୍ୟ କରିବା ହେତୁ ତାର୍କିକଙ୍କ ଆଲୋଡ଼ନରେ ଭ୍ରମ ହେଲା । ଅରକ୍ଷ୍ୟରକ୍ଷଣ କୃଷ୍ଣ ଗ୍ରବିଲେ, ଲକ୍ଷ ଲକ୍ଷ ମୋକ୍ଷ ଧର୍ମରେ ଏ ବ୍ରାହ୍ମଣ ଦକ୍ଷ ଅଟନ୍ତି । ସେ ଯେଉଁ ଆଶୀର୍ବାଦ କରିଛନ୍ତି ତାର ଗୂଢ଼ ଅର୍ଥ ଥିବ । ପରେ ବୁଝିବା ଏହା ଗ୍ରବି ନିଜ ଆସନରୁ ଅଧେ ତାଙ୍କୁ ଅତି ସ୍ନେହରେ ତତ୍‌କ୍ଷଣାତ୍ ଦେଇ ପାଖରେ ବସାଇଲେ ।

---

ଶବ୍ଦାର୍ଥ । ଦାଉ—ସନ୍ତାପ, ଦୁଃଖ, ଭ୍ରମ । ମୋକ୍ଷ—ପ୍ରଧାନ, ମୁଖ୍ୟ । ଅନ୍ତକ—ଯମ, ପିତୃସ୍ୱରୂପ । ଦେବଋଣ, ପିତୃଋଣ, ଋଷିଋଣ ମଧ୍ୟରୁ ପିତୃଋଣ ପୁତ୍ରୋତ୍ପାଦନଦ୍ୱାରା ସୁଝାଯାଏ । ଅନ୍ତ—ମଧ୍ୟ । ରୁଣୀର ଅନ୍ତ କ ଅର୍ଥାତ୍ ରୁକଣୀ—ରୁକ୍ମିଣୀ । ଅର୍ଥେକ ମାତ୍ରା ଶୂନ୍ୟେ ଅର୍ଥରେ 'କ' ରେ ମାତ୍ରା ମ୍ ଶୂନ୍ୟ ହେବୁ । ମନ୍ଥନ—ଆଲୋଡ଼ନ । ତାର୍କି—ତାର୍କିକ, ସମାଲୋଚକ । ଦାଉ—ଭ୍ରମ, ସନ୍ତାପ । ମୋକ୍ଷଧର୍ମ—ଜୀବର ଉଦ୍ଧାର ସମ୍ବନ୍ଧୀୟ ସଦୁପଦେଶ । ଅରକ୍ଷ୍ୟ—ଅନାଥ, ଅପାଳିତ ।

**କ କାର୍ଯ୍ୟ ଇଚ୍ଛାକରି ଆସିବା ହେଲ ହରି**
**ଭୃଷୁଁ ଭଷିଲେ ମହୀସୁର**
**ଶ୍ରୁତିରଞ୍ଜନ ଶାସ୍ତ୍ର ଜଠରୁ ଏତେ ମନ୍ତ୍ର**
**ହୃତ କେ କରନେଲ ମୋର**
**ହେ ଚନ୍ଦ୍ରାମଣି !**
**ଅଣୁଏ ଅପ୍ରମାଣ ନାହିଁ**
**ଲେଖିଛୁ ଦ୍ୱିଜରାଜ ମୁହିଁ**
**ଶିଖି-ଶିଖଣ୍ଡ-ମଣ୍ଡୀ ତାଙ୍କୁ ପଦିକା ଖଣ୍ଡି**
**ଦେଲେ ଏପରି ଦୈନ୍ୟ ବହି ହେ । ୧୬ ।**

**ଅନ୍ୱୟ** – କ କାର୍ଯ୍ୟ ଇଚ୍ଛାକରି ଆସିବା ହେଲ (ଏକଥା) ହରି ଭୃଷୁ ମହୀସୁର ଭଷିଲେ– ହେ ଚନ୍ଦ୍ରାମଣି ! ମୁହିଁ ଦ୍ୱିଜରାଜ ଲେଖିଛୁ, ମୋର ଶ୍ରୁତିରଞ୍ଜନ ଶାସ୍ତ୍ର ଜଠରୁ ଏତେ ମନ୍ତ୍ର କେ ହୃତ କରନେଲ । ଅଣୁଏ (ଏଥିରେ) ଅପ୍ରମାଣନାହିଁ । (ଏହା କହି) ଶିଖି-ଶିଖଣ୍ଡମଣ୍ଡୀଙ୍କୁ ତାଙ୍କୁ ଏପରି ଦୈନ୍ୟ ବହି ପଦିକା ଖଣ୍ଡି ଦେଲେ ।

**କଥା**—"କଣ କାର୍ଯ୍ୟ ଇଚ୍ଛାକରି ଆସିବା ହେଲ" ବୋଲି କୃଷ୍ଣ କହନ୍ତେ ସେ ବ୍ରାହ୍ମଣ କହିଲେ-ହେ ଚନ୍ଦ୍ରାମଣି ! ତୁମ୍ଭେ ବାଞ୍ଛିତ ଫଳପ୍ରଦ ଅଟ । ମୁଁ ଜଣେ ଶ୍ରେଷ୍ଠ ବ୍ରାହ୍ମଣ ଲେଖିଛୁ ଯାହା, ମୋର ଶ୍ରୁତିସୁଖକର ସେହି ପୁରାଣ ଶାସ୍ତ୍ର ମଧ୍ୟରୁ 'ଭକ୍ତଠାରେ ଈଶ୍ୱରର ଅନୁକଂପା ସମୀଚୀନ' ଏହି ସମ୍ବନ୍ଧୀୟ ମନ୍ତ୍ରତକ କିଏ ହରଣ କରି ନେଇଗଲା । ଶ୍ଳେଷରେ କହିଲେ–ହେ ଚନ୍ଦ୍ରାମଣି ! ଚନ୍ଦ୍ରମା ବଦନା ରୁକ୍ମଣୀ ଲେଖିଛନ୍ତି "କ୍ଷୁଣିବା ମାନେ ଭକ୍ତପ୍ରତି ଦୟା କରନ୍ତି" ଏହା ଶ୍ରୁତିରଞ୍ଜନଶାସ୍ତ୍ର—ଗର୍ଭରୁ କିଏ ହରଣ କରିନେଲ । କୃଷ୍ଣ ମତେ କପରି ଭୁଲିବେ, ନାରଦଙ୍କ ସମ୍ବାଦ ପ୍ରଦାନ ସେ କଣ ପାଶୋରିଦେଲେ ? ଏଥିରେ କିଛିମାତ୍ର ମିଥ୍ୟା ନାହିଁ । ଏହା କହି ବ୍ରାହ୍ମଣ ଶିଖିପୁଚ୍ଛ-ମଣ୍ଡିତ କୃଷ୍ଣଙ୍କୁ ପଦିକା ଖଣ୍ଡି ଏପରି ଦୈନ୍ୟ ହୋଇ ବଢ଼ାଇଦେଲେ ।

ଶବ୍ଦାର୍ଥ । ମହୀସୁର— ବ୍ରାହ୍ମଣ । ଚନ୍ଦ୍ରାମଣି—ବାଞ୍ଛିତ ଫଳପ୍ରଦ ଯେ । ଦ୍ୱିଜରାଜ— ବ୍ରାହ୍ମଣ ଶ୍ରେଷ୍ଠ, ଚନ୍ଦ୍ରମା । ମୁହିଁ—ମୁଁ ନଜେ, ମୁଖୀ । ମଣ୍ଡିତ—ଭୂଷିତ, ସଜ୍ଜିତ । ଶ୍ରୁତିରଞ୍ଜନ— ଯଦ୍ୱାରା ଶ୍ରୁତି-ସୁଖ ହୁଏ । ଶ୍ରୁତିରଞ୍ଜନଶାସ୍ତ୍ର—ପୁରାଣ, ଶୁଣି ଦୟାର୍ଦ୍ର ହେବାର ବର୍ଣ୍ଣିତ ଶାସ୍ତ୍ର, ଯେପରି ଗଜ ଉଦ୍ଧାରଣ । ଜଠରୁ—ଗର୍ଭରୁ । ହୃତ—ହରଣ । ଅଣୁଏ—ଅଳ୍ପମାତ୍ର । ଅପ୍ରମାଣ— ମିଥ୍ୟା । ଶିଖୀ—ମୟୂର । ଶିଖଣ୍ଡ—ମୟୂରପୁଚ୍ଛ ।

**ଭୂଦେବ-ପଦ ହୃଦେ ଉଦେ କରିଛ ମୋଦେ**
**କମଳା କୌସ୍ତୁଭକୁ ଦଳି**
**ମୋହର ପର ଚନ୍ଦ୍ରା କହୁଥିଲେ ବଧାତା**
**ତାଙ୍କୁ ତୋଷିଲ ଦର ଦଳି**
**ସେ ଚନ୍ଦ୍ରାମଣି !**
**ମୋଠାରେ ଅନୁଗ୍ରହ କହ**
**ଶ୍ରବଣେ ସେ ସଲିଲରୁହ –**
**ଲୋଚନ ଏ ବଚନ ହସି କଲେ ରଚନ**
**ତେବେ ହୋଇଲ ପିତାମହ ହେ । ୧୮ ।**

**ଅନ୍ୱୟ**—କମଳା (ଓ) କୌସ୍ତୁଭକୁ ଦଳି ଭୂଦେବ-ପଦ ମୋଦେ ହୃଦେ ଉଦେ କରିଛ । ମୋହର ପର ଚନ୍ଦ୍ରା (ଦିନେ) ବଧାତା ବହୁଥିଲେ । ତାଙ୍କ ଦର ଦଳି ତୋଷିଲ । ହେ ଚନ୍ଦ୍ରାମଣି ! ମୋଠାରେ ଅନୁଗ୍ରହ କହ । (ଏହା) ଶ୍ରବଣେ ସେ ସଲିଲରୁହ-ଲୋଚନ ହସି ଏ ବଚନ ରଚନ କଲେ—ତେବେ (ଆପଣ) ପିତାମହ ହୋଇଲ ।

**କଥା**—ଏବଂ କହିଲେ—ଆପଣ ଲକ୍ଷ୍ମୀ ଏବଂ କୌସ୍ତୁଭ-ମଣିକୁ ତ୍ୟାଗ କରି ଦରିଦ୍ର ଶ୍ରୀବତ୍ସ-ବ୍ରାହ୍ମଣର ପାଦ ଆନନ୍ଦରେ ହୃଦୟରେ ଧାରଣ କରିଛନ୍ତି । ମୋ'ର ପର ଚନ୍ଦ୍ରା ଦିନେ ବେଦପତି ବିଧାତା ବନ୍ଧନ କରିଥିଲେ । ତାଙ୍କୁ ତାଙ୍କର ଭୟ ନିବାରଣ କରି ତୋଷ କଲ । ହେ ଚନ୍ଦ୍ରାମଣି ! ମୋଠାରେ ଅନୁଗ୍ରହ ବନ୍ଧନ କରିବା ହେଉ । ଏହା ଶୁଣି ସେ ପଦ୍ମପଳାଶ-ଲୋଚନ ହସିକରି ଏହି କଥା କହିଲେ—ତେବେ ଆପଣ ଆମର ପିତାମହ ହେଲେ !

ଶବ୍ଦାର୍ଥ । ଭୂଦେବ—ବ୍ରାହ୍ମଣ । କମଳା—ଲକ୍ଷ୍ମୀ । କୌସ୍ତୁଭ—ବିଷ୍ଣୁଙ୍କର କଣ୍ଠମଣି । ଦଳି—ଫିଙ୍ଗି । ହୃଦେ—ଚରହଣ । ଦର—ଭୟ । ଦଳି—ନାଶି । ସଲିଲରୁହ—ପଦ୍ମ । ପିତାମହ—ଜେଜେବାପା—ବ୍ରହ୍ମା ।

**ପୁଷ୍କରବନ୍ଧୁ-ଗର୍ଭେ ବେଦ-ତସ୍କର ଶୋଭେ**
**ସେ ଜନ୍ମୁଁ ତାହା ଦେଲି ଆଣି**
**ଚୋର କେ କହ ତଥ୍ୟ ଆଣିବି ଦେବି ସତ୍ୟ**
**ସନ୍ତୋଷ ଭଜି ବିପ୍ର ଭଣି**
**ସେ । ଚନ୍ତାମଣି**
**ନିୟମ ତୁମ୍ଭେ କଲ ଯେବେ**
**ଚୋର ମୁଁ ଦେଖାଇବି ତେବେ**
**ଜଗତେ ଜଣା ଜଣେ ତିନି ଜଣ ପୁରାଣେ**
**ଜଣେ ଶ୍ରୁତିଗୋଚର ହେବେ, ସେ । ୧୯ ।**

**ଅନ୍ୱୟ**—ପୁଷ୍କରବନ୍ଧୁ-ଗର୍ଭେ ବେଦ-ତସ୍କର ଶୋଭେ । ସେ ଜନ୍ମୁଁ (ମୁଁ) ତାହା ଆଣିଦେଲି । ତଥ୍ୟ (କରି) କହ କେ ଚୋର ? ସତ୍ୟ (କରୁଛି) ଆଣିବି (ଓ) ଦେବି । ବିପ୍ରମଣି ସନ୍ତୋଷ ଭଜି (କହିଲେ) ହେ ଚନ୍ତାମଣି, ତୁମ୍ଭେ ଯେବେ ନିୟମ କଲ ତେବେ ମୁଁ ଚୋର ଦେଖାଇବି ! ଜଗତେ ଜଣେ (ଚୋର) ଜଣା (ଶୁଣା) ପୁରାଣେ ତିନି ଜଣ (ଏବଂ) ଜଣେ (ଏବେ) ଶ୍ରୁତିଗୋଚର ହେବେ ।

**କଥା**—କୃଷ୍ଣ କହିଲେ—ହଁ, ହଁ, ସମୁଦ୍ରଗର୍ଭରେ ବେଦଚୋର ଥିଲା । ପିତାମହ କହିବାରୁ ପୂର୍ବ ଅବତାରରେ ମୁଁ ତାହା ଆଣିଦେଇଛି । ଏବେ ଆପଣ ତଥ୍ୟ କରି କୁହନ୍ତୁ ଆପଣଙ୍କ ଜିନିଷର ଚୋର କିଏ ? ସତ୍ୟ କରୁଛି ନିଶ୍ଚୟ ତାଠୁ ମୁଁ ଆପଣଙ୍କ ଜିନିଷ ଆଣିବି ଓ ଆପଣଙ୍କୁ ଦେବି । ବିପ୍ରଶ୍ରେଷ୍ଠ ଏ କଥାରେ ସନ୍ତୋଷ ହୋଇ କହିଲେ—ହେ ଚନ୍ତାମଣି ! ତୁମ୍ଭେ ଯେବେ ନିୟମ କଲ ତେବେ ମୁଁ ଚୋର ଦେଖାଇ ଦେଉଛି । ଦେଖନ୍ତୁ ଜଗତରେ ଜଣେ ଚୋର ଏକାନ୍ତ ଜଣାଶୁଣା । ପୁରାଣରେ ତିନି ଜଣ ଏବଂ ଜଣେ ବେଦଶାସ୍ତ୍ରରେ ଜଣାଯାନ୍ତି ।

ଶବ୍ଦାର୍ଥ । ପୁଷ୍କର—ଜଳ । ପୁଷ୍କରବନ୍ଧୁ—ସମୁଦ୍ର । ଶ୍ରୁତି—ବେଦ । ଶ୍ରୁତିଗୋଚର—ବେଦବିଦିତ ।

**ଏପରି ପାଞ୍ଚ ଜଣ        ଜଣାଇଁ ଦେବ ଗଣ**
**ଜଣେ ସେ ଦୁର୍ବାସନା-ଚ୍ଚୈର**
**ଜଗଜ୍ଜଣା ସମୀର        ପୁରାଣେ ବ୍ରଜଧର-**
**ଚୌର୍ଯ୍ୟେ ଚତୁର ଜଳେଶ୍ୱର**
**ହେ ଶକ୍ରାମଣି**
**ଜ୍ୟେଷ୍ଠ, କନିଷ୍ଠ ବେନିଭାଇ**
**ଇନ୍ଦ୍ର ଉପେନ୍ଦ୍ର ନାମ ବହି**
**ଅଛନ୍ତି ଅଇଶ୍ୱର୍ଯ୍ୟେ        ନାନା ଜାତି ଚଉର୍ଯ୍ୟେ**
**କୁଶଳ ପୁରାଣେ ପଢ଼ଇ ହେ । ୨୦ ।**

**ଅନ୍ୱୟ**—ଏପରି ପାଞ୍ଚ ଜଣ ଜଣାଇଁ ଦେବ—ଗଣ । ବାସନା ଚ୍ଚୈର (ଜଣେ) ବାସନା ଓ ଦୁର୍ବାସନା ଚ୍ଚୈର (ଜଣେ) । (ସେ) ଜଗଜ୍ଜଣା ଏ ସମୀର (ଅଛନ୍ତି) । ପୁରାଣେ ବ୍ରଜଧର ଚୌର୍ଯ୍ୟେ ଜଳେଶ୍ୱର ଚତୁର (ଅଛନ୍ତି) । ହେ ଶକ୍ରାମଣି ! (ତଦ୍‌ବ୍ୟତୀତ) ପୁରାଣେ ପଢ଼ଇ ଜ୍ୟେଷ୍ଠ କନିଷ୍ଠ ବେନି ଭାଇ ଇନ୍ଦ୍ର, ଉପେନ୍ଦ୍ର ନାମ ବହି ଐଶ୍ୱର୍ଯ୍ୟେ (ଥାଇ) ନାନା ଜାତି ଚଉର୍ଯ୍ୟେ କୁଶଳ (ଅଛନ୍ତି) ।

**କଥା**—ଏହିପରି ପାଞ୍ଚ ଜଣଙ୍କୁ ଚହ୍ନାଇ ଦେବି । ଆପଣ ତାହା ଗଣନ୍ତୁ । ଭୋଗ ବାସନା ଚ୍ଚୈର ଜଣେ ସେ କି ଶ୍ରୁତି ଶାସ୍ତ୍ରରେ ବ୍ରହ୍ମ-ସ୍ୱରୂପ ଜଗଦ୍ ବନ୍ଦିତ ଅଛନ୍ତି, (ଜଗନ୍ନାଥ) । ସୁବାସ ଏବଂ ଦୁର୍ବାସନାର ଚ୍ଚୈର ଅଛନ୍ତି ପବନ ଦେବତା । ପୁରାଣରେ ଅଛି ବ୍ରଜଧାରଣକାରୀ ନନ୍ଦଙ୍କୁ ଚୋରାଇ ନେବାରେ ବରୁଣ ଚତୁର ଅଛନ୍ତି । ହେ ଶକ୍ରାମଣି ! ତଦ୍‌ବ୍ୟତୀତ ପୁରାଣରେ ଵଡ଼େ ସାନବଡ଼ ହୋଇ ଦୁ'ଭାଇ ଯାହାଙ୍କ ନାମ ଇନ୍ଦ୍ର ଆଉ ଉପେନ୍ଦ୍ର ସେମାନେ ସମସ୍ତ ଐଶ୍ୱର୍ଯ୍ୟ ମଧ୍ୟରେ ଥାଇ ମଧ୍ୟ ନାନା ପ୍ରକାର ଚ୍ଚୈର କୌଶଳ ଜାଣନ୍ତି ।

ଶବ୍ଦାର୍ଥ । ବାସନା—ସୁବାସ । "ଅଘ୍ରାଣଂ ଗୃହ୍ଣ ଭୋଜନଂ" । ବ୍ରହ୍ମସ୍ୱରୂପ ଦେବତାଙ୍କ-ଠାରେ ଭୋଗ ବଢ଼ାହୁଏ ତାହାର ବାସନା ହିଁ ଦେବତା ଗ୍ରହଣ କରନ୍ତି । ଦୁର୍ବାସନା—ଦୁର୍ଗନ୍ଧ । ଜଗଜ୍ଜଣା—ଜଗତରେ ବନ୍ଦିତ । ବ୍ରଜଧର—ନନ୍ଦ । ଜଳେଶ୍ୱର—ବରୁଣ । ବରୁଣ ନନ୍ଦଙ୍କୁ ସ୍ନାନ ସମୟରେ ଚୋରି କରିନେବା ଅଭିହିତ ଅଛି । ଇନ୍ଦ୍ର, ଉପେନ୍ଦ୍ର—ଇନ୍ଦ୍ର, କୃଷ୍ଣ ଦୁଇଭାଇ ବୋଲି ପୁରାଣରେ କଥିତ ଅଛି । ଐଶ୍ୱର୍ଯ୍ୟ—ଭୋଗ । ନାନା ଜାତି—ନାନା ପ୍ରକାର । ଚଉର୍ଯ୍ୟେ—ଚୋରିରେ ।

**ଉଚ୍ଚୈଃଶ୍ରବା ନର୍କ୍କର ଭୋଗ ଅଙ୍ଗ ରୁଚର**
**ଶଚୀର ସଂସର୍ଗତା ଥାଉ**
**ଯାଗ ତୁରଙ୍ଗ ଋଷି— ଅଙ୍ଗ ତାଙ୍କ ସୁକେଶୀ**
**ହରଲେ ଲଭି ଶାପ ଦାଉ**
**ହେ ଚନ୍ଦ୍ରାମଣି**
**ବମଳ କର ଅଙ୍ଗରୁଚ**
**କମଳ-ନାଳେ ଗଲେ ଲୁଚ**
**ଅତ ଦୁର୍ଦ୍ଧର୍ଷ ଦଣ୍ଡ ମଣ୍ଡନ ହେଲେ ପିଣ୍ଡ**
**ବ୍ରହ୍ମାଣ୍ଡେ ଡିଣ୍ଡିମ ବାଜୁଛି ହେ । ୨୧ ।**

**ଅନ୍ୱୟ**—ନର୍କ୍କର ଉଚ୍ଚୈଃଶ୍ରବା (ଏବଂ) ଅଙ୍ଗରୁଚର ଶଚୀର ଭୋଗ ସଂସର୍ଗତା ଥାଉ ଯାଗ—ତୁରଙ୍ଗ (ଏବଂ) ଋଷି ଅଙ୍ଗ (ଧର) ତାଙ୍କ ସୁକେଶୀ ହରଲେ । ହେ ଚନ୍ଦ୍ରାମଣି ! ଶାପ ଦାଉ ଲଭି ଅଙ୍ଗରୁଚ ବମଳ କର କମଳ-ନାଳେ ଲୁଚଗଲେ । (ତଥାପି) ପିଣ୍ଡ (ରେ) ଅତ ଦୁର୍ଦ୍ଧର୍ଷ ଦଣ୍ଡ ମଣ୍ଡନ ହେଲେ । (ଏକଥା) ବ୍ରହ୍ମାଣ୍ଡେ ଡିଣ୍ଡିମ ବାଜୁଛି ।

**କଥା**—ଜଣେ ଚୋରର କଥା କହୁଛି ଶୁଣିବା ହେଉ—ମାରେଗ ଉଚ୍ଚୈଃଶ୍ରବା ଅଶ୍ୱ ଏବଂ ଏକାନ୍ତସୁନ୍ଦରଦେହା ଅନନ୍ତ-ଯୌବନା ଶଚୀଙ୍କୁ ଭୋଗ କରୁଥିଲେହେଁ ଇନ୍ଦ୍ର ସଗର ରଜାଙ୍କ ଯଜ୍ଞ ଅଶ୍ୱ ଚୋର କଲେ, ପୁଣି ଗୌତମସ୍ୱରୂପ ଧାରଣ କର ତାଙ୍କର ସୁନ୍ଦରୀ ଭାର୍ଯ୍ୟା ଅହଲ୍ୟାଙ୍କୁ ଚୋର ପର ହରଣ କଲେ । ହେ ଚନ୍ଦ୍ରାମଣି ! ଅଭିଶାପ ଦୁଃଖ ଲାଭ କର ନିଜର ଦେହର ସୌନ୍ଦର୍ଯ୍ୟକୁ ରକ୍ଷାକରିବା ଲାଗି ପଦ୍ମନାଳରେ ଚୋର ପର ଲୁଚଗଲେ । ତଥାପି ତାଙ୍କର ସୌନ୍ଦର୍ଯ୍ୟସମ୍ପନ୍ନ ଦେହ ଅତ ଦୁଃଖପ୍ରଦ ଶାପ ଦଣ୍ଡରେ ଦଣ୍ଡିତ ହୋଇ ସହସ୍ର ଘୃଣ୍ୟ ଚିହ୍ନରେ ମଣ୍ଡିତ ହେଲା । ଏ କଥା ତ ବ୍ରହ୍ମାଣ୍ଡରେ ଡିଣ୍ଡିମ ବାଜୁଛି ।

---

ଶବ୍ଦାର୍ଥ । **ଉଚ୍ଚୈଃଶ୍ରବା—ସ୍ୱର୍ଗର ଶ୍ରେଷ୍ଠ ଅଶ୍ୱ, ଯେ କ ସମୁଦ୍ରମନ୍ଥନରୁ ଜନ୍ମିଥିଲା । ନର୍କ୍କର—ବାର୍ଦ୍ଧକ୍ୟରହିତ, ମାରେଗ । ଯାଗ ତୁରଙ୍ଗ—ଯଜ୍ଞ-ଅଶ୍ୱ । ଋଷି ଅଙ୍ଗ—ଗୌତମ ଦେହ । ସୁକେଶୀ—ସୁନ୍ଦରୀ । ଦାଉ—ଦୁଃଖ ।**

କନଷ୍ଟୁଙ୍କର କୋଟି- କନ୍ଦର୍ପ-ଆରମ୍ଭଟି
ଘଟି ନ ଘଟିବ ସୁଷମା
ଦ୍ୱିଷଟ-ଦ୍ୱନ୍ଦ୍ୱପୁର- କୁନ୍ଦନାଙ୍ଗୀବୃନ୍ଦର
ବନ୍ଦନା ରମା ମନୋରମା
ହେ ଚନ୍ତାମଣି
ଏ ପୁଣି ଦୈତ୍ୟରୂପ ହୃତ
କରି ହରି ତା ଭୀରୁ-ବ୍ରତ
ତା ଶାପ ଚନ୍ତା ଗିରି ଶିରରେ ଦେଲ କରି
ସହନ୍ତ ବଜ୍ରକୀଟାଘାତ ହେ । ୨୨ ।

**ଅନ୍ୱୟ**—କନସ୍ତୁଙ୍କର (ଯେ ରୂପ) କୋଟିକନ୍ଦର୍ପ-ଆରମ୍ଭଟି ଘଟି (ଲେ) ସୁଷମା ନ ଘଟିବ । (ତାଙ୍କର ପୁଣି) ଦ୍ୱିଷଟ-ଦ୍ୱନ୍ଦ୍ୱପୁର-କୁନ୍ଦନାଙ୍ଗୀବୃନ୍ଦର ବନ୍ଦନା ରମା ମନୋରମା (ଅଟନ୍ତି) । ହେ ଚନ୍ତାମଣି ! ଏ ପୁଣ (ସ୍ୱୟଂ) ଦୈତ୍ୟରୂପ ହୃତ କରି ତା ଭୀରୁ (ର) ବ୍ରତ ହରି (ଥିଲେ) । ତା ଶାପ-ଚନ୍ତା ଶିରରେ ଗିରି କରିଦେଲା । (ତେଣୁ) ବଜ୍ରକୀଟାଘାତ ସହନ୍ତି ।

**ଭାବ**—ଏ ତ ଗଲା ବଡ଼ ଭାଇଙ୍କ ଗୁଣ ଗୁଣ । ସାନ ଭାଇଙ୍କର ଯେ ରୂପ କୋଟିଏ କନ୍ଦର୍ପ ଆଡ଼ମ୍ବରରେ ଏକାଠି ହେଲେ ତାଙ୍କ ସୁଷମା ପରି ନ ହେବ । ଅଥଚ ତାଙ୍କର ପୁଣି ଚତୁର୍ଦ୍ଦଶପୁର-ମୋହିନୀ କନକ ଦେବାମାନଙ୍କର ବନ୍ଦନୀୟା ଲକ୍ଷ୍ମୀ ମନୋହାରିଣୀ ପ୍ରିୟତମା ଅଟନ୍ତି । ହେ ଚନ୍ତାମଣି ! ସେ ପୁଣି ସ୍ୱୟଂ ଗୋଟାଏ ଅସୁରର ଛଦ୍ମ ରୂପ ଧାରଣ କରି ତା ଭାର୍ଯ୍ୟାର ପତିବ୍ରତା ବ୍ରତକୁ ହରଣ କରିଥିଲେ । (ଜଳନ୍ଧରର ସ୍ତ୍ରୀ ବୃନ୍ଦାବତୀଙ୍କୁ ସ୍ୱୈର ଭାବେ ହରଣ କରିଥିଲେ) ସେହି ପତିବ୍ରତାର ଶାପ-ଚନ୍ତାରେ ତାଙ୍କ ମସ୍ତକ ପଥର ହୋଇଗଲା । ତେଣୁ ବଜ୍ରକୀଟର ଆଘାତ ଶାଳଗ୍ରାମ ହୋଇ ବହନ କରୁଛନ୍ତି ।

ଶବ୍ଦାର୍ଥ । କନସ୍ତୁ—ଏ ନକ୍ଷତ୍ରର ବନ୍ଧୁ । ଆରମ୍ଭ—ଆଡ଼ମ୍ବର । ଘଟି—ଏକାଠି ହେଲେ । ଦ୍ୱିଷଟ ଦ୍ୱନ୍ଦ୍ୱପୁର—ଚଉଦପୁର । କୁନ୍ଦ—ମୋହିନୀ । ବୃନ୍ଦ—ସମୂହ । ବନ୍ଦନ— ବନ୍ଦନୀୟା । ମନୋରମା—ମନୋହାରିଣୀ ଭାର୍ଯ୍ୟା । ହୃତ—ହରଣ ଭୀରୁ—ସ୍ତ୍ରୀ । ବ୍ରତ—ପତିବ୍ରତା । ବ୍ରତ । ଗିରି—ପର୍ବତ, ପଥର ସମୂହ । ବଜ୍ରକୀଟ—ଶାଳଗ୍ରାମ କଟା କୀଟ । ଘାତ—ଆଘାତ ।

ବଦନ୍ତି ବଳାନୁଜ          ଜଣେ ତ କୁଶଧ୍ୱଜ
ଛାଡ଼ିଲ ପର କଂଶ ବଶୁଁ
ଚୋର ଚୋରାଇ ନେଇ          ଦିଅନ୍ତି କି ଫେରାଇ
ବ୍ରହ୍ମାଣ୍ଡେ କେ କହିବ ବସୁ
ହେ ଚିନ୍ତାମଣି
ତବ ପ୍ରତିଜ୍ଞା ବିଧି ବୃଦ୍ଧି
କରିବା ପାଇଁ କଲେ ବିଧି
ନୋହେ ସେ ଅପବାଦ          ମିଥ୍ୟା କର ବିବାଦ
ବଦୁଁ ବଦିଲେ ଦୟାନିଧି ହେ । ୨୩ ।

**ଅନ୍ୱୟ**—(ତହୁଁ) ବଳାନୁଜ ବଦନ୍ତି, ଜଣେ (ଚୋର ତ) କୁଶଧ୍ୱଜ (ଅଟନ୍ତି) । କଂଶ ବଶୁଁ (ତା) ଛାଡ଼ିଲ ପରା ? (ବ୍ରାହ୍ମଣ କହିଲେ) ଚୋର ଚୋରାଇ ନେଇ ଫେରାଇ ଦିଅନ୍ତି କି ? (ଏ କଥା) ବ୍ରହ୍ମାଣ୍ଡେ କେ କହିବ ବସୁ । ହେ ଚିନ୍ତାମଣି ! ତବ ପ୍ରତିଜ୍ଞାବିଧି ବୃଦ୍ଧି କରିବା ପାଇଁ (ତାହା ସିନା) ବିଧି କଲେ । ସେ (କଦାପି) ଅପବାଦ ନୁହେଁ । ମିଥ୍ୟା କର ବିବାଦ ବଦୁଁ ଦୟାନିଧି ବଦିଲେ—

**କଥା**—ତହୁଁ କୃଷ୍ଣ କହିଲେ, ଜଣେ ଚୋର ତ ବ୍ରହ୍ମା ଅଟନ୍ତି । ସେ ବ୍ରାହ୍ମଣ, ଆପଣ ବି ବ୍ରାହ୍ମଣ । ତେଣୁ ଏକା-କଂଶବଶରୁ ସେ ବର୍ତ୍ତିନା ତ ଛାଡ଼ିଦେଲେ । ନିଜ ନିନ୍ଦା କିଏ କରେ ? ବ୍ରାହ୍ମଣ କହିଲେ—ଚୋର ଚୋରାଇ ନେଇ ଫେରାଇ ଦିଅନ୍ତି କି ? ବ୍ରହ୍ମା ବତ୍ସ ହରଣ କରିଥିଲେ ସତ କିନ୍ତୁ ସେ ତୁମ୍ଭଙ୍କୁ ତ ତା ଫେରାଇ ଦେଇଛନ୍ତି । ସେ ଚୋର କିପରି ହେବେ ? ବ୍ରହ୍ମାଣ୍ଡ ଭିତରେ ଏହା ଚୋର ବୋଲି କିଏ କହିବ ? ମୋ ସାମ୍ନାରେ ବସୁ ଦେଖି ? ହେ ଚିନ୍ତାମଣି ! ତୁମର ପ୍ରତିଜ୍ଞା ବିଧାନକୁ ବଢ଼ାଇବା ଲାଗି ବିଧାତା ତାହା ସିନା କଲେ । ତୁମ୍ଭେ କିପରି ପ୍ରସିଦ୍ଧ ହେବ ଏହା ତାଙ୍କର ଲକ୍ଷ୍ୟ ଥିଲା । ଏହା ତ ଅପବାଦ ନୁହେଁ । ମିଛରେ ଏପରି ବିବାଦ କାହିଁକି କରୁଛ ? ଏପରି କହନ୍ତେ ଦୟାନିଧି କୃଷ୍ଣ କହିଲେ —

ଶବ୍ଦାର୍ଥ । ବଳାନୁଜ—ବଳଭଦ୍ରଙ୍କ ସାନଭାଇ କୃଷ୍ଣ । କୁଶଧ୍ୱଜ—ବ୍ରହ୍ମା । କଂଶବଶୁଁ—ନିଜ ବଂଶ କାରଣରୁ । ବଶ—ବଶୀଭୂତ, ଅଧୀନ । ପ୍ରତିଜ୍ଞାବିଧି—ପଣ ବ୍ୟବସ୍ଥା । ବିଧି—ବ୍ରହ୍ମା । ତହୁଁ—ତହୁ । ବଶୁଁ—ହେତୁରୁ ।

**ତୁମ୍ଭ କୁଳର ଗିର ଅଟମ୍ଭ ଚମତ୍କାର**
**ନାରୀଙ୍କେ ପଥର କରଛ**
**ବନ୍ଧ୍ୟା ହରଣ ଦାଗ ଲଛା ଲାଞ୍ଛନେ-ଦାଗ**
**ବୈଭବେ କରିଦେଲ ମିଛ**
**ହେ ବାକ୍ୟେ ପଶୁ-**
**ଘାତ ପାତକେ କର ଊଣା**
**ନ ବହୁଁ ଷଣ୍ଢୋର ପୁରୁଣା**
**ହସ ଭୂଦେବ ଭସି କର୍ଣ୍ଣେ ମୁଖ ନବେଶି**
**ବଜାଇଲେ ମନ୍ତ୍ରଣା ବୀଣା ହେ । ୨୪ ।**

**ଅନ୍ୱୟ**— ତୁମ୍ଭ କୁଳର ଗିର ଅଟମ୍ଭ ଚମତ୍କାର (ଅଟେ) । ନାରୀଙ୍କେ ପଥର କରଛ । ବନ୍ଧ୍ୟା ହରଣ ଦାଗ ଲଛା ଲାଞ୍ଛନେ ଦାଗ ବଇଭବେ ମିଛ କରିଦେଲ, (ପୁନଶ୍ଚ) ବାକ୍ୟେ ପଶୁଘାତ ପାତକେ ଊଣା କର । (ଅମ୍ଭେ) ଷଣ୍ଢୋର (ହୋଇ), (କିନ୍ତୁ) ପୁରୁଣା ନ ବହୁଁ । ଭୂଦେବ ହସି ଭସି କର୍ଣ୍ଣେ ମୁଖ ନବେଶି ମନ୍ତ୍ରଣା ବୀଣା ବଜାଇଲେ ।

**ଟୀକା**—ତୁମ୍ଭ କୁଳର ଭଷା ବାହାଦୁରୀ ଏବେ ଚମତ୍କାର ଯେ ଗୋଟିଏ ନାରୀଙ୍କୁ ଅଭିଶାପ ଦେଇ ପଥର କରିଛ । ଅବଶ୍ୟ ବନ୍ଧ୍ୟା ହରଣ କରିଥିବା ଦାଗ ଅନ୍ଧାରର କଳଙ୍କ, ଭଷା-ବୈଭବରେ ମିଛ କରିଦେଲ । ପୁନଶ୍ଚ ସେହିପରି ବାକ୍ୟଦ୍ୱାରା ବ୍ୟବସ୍ଥା ଦେଇ ଗୋବଧ ଆଦି ପଶୁଘାତ-ପାତକ ଊଣା କରିଥାଅ । କିନ୍ତୁ ଆମ୍ଭେ ଷଣ୍ଢ ଦୈତ୍ୟକୁ ହତ୍ୟା କରିଥିବାରୁ ଆନନ୍ଦିତ ନୋହୁଁ । ଏ କଥା ଶୁଣି ବ୍ରାହ୍ମଣ ହସରେ ଭସମାନ ହୋଇ କୃଷ୍ଣଙ୍କ କର୍ଣ୍ଣରେ ମୁଖ ଲଗାଇ ରୁକ୍ମିଣୀଙ୍କ ସମ୍ବନ୍ଧରେ ମନ୍ତ୍ରଣାର ବୀଣା ବଜାଇଲେ ।

---

ଶବ୍ଦାର୍ଥ । ଗିର ଅଟମ୍ଭ—ଭଷା ବାହାଦୁରୀ । ବନ୍ଧ୍ୟା—ବାଳୁଙ୍ଗୀ । ହରଣ—ହରଣ କରି । ଲଛା—ଆଁଠ । ଲାଞ୍ଛନ—କଳଙ୍କ । ବଇଭେଭ—ଭଷାବୈଭବ । ବାକ୍ୟେ ପଶୁଘାତ ପାତକେ ଊଣା କର—ବ୍ରାହ୍ମଣମାନେ ଗୋବଧ ପରି ପ୍ରାୟଶ୍ଚିତ୍ତର ନିମନ୍ତେ ବ୍ୟବସ୍ଥା ଦିଅନ୍ତି । ଷଣ୍ଢୋର—ଷଣ୍ଢ ଦୈତ୍ୟର ଶତ୍ରୁ କୃଷ୍ଣ । ପୁରୁଣା—ଆନନ୍ଦ । ହସି ଭସି—ହସରେ ଭସିଯାଇ ।

ସୁଧାନିଧି-କୁଳର   ମୂର୍ଦ୍ଧାଳଙ୍କାର ବୀର
ଭୀଷ୍ମକ ନୃପ ସୁତା ଦାସୀ
ଏ ପତ୍ର ଦେଇ ମତେ   କହିଥିଲା ଏମନ୍ତେ
କହିବ କାହୁଁ ଥିଲ ଆସି
ହେ ଭବଗ୍ରାହୀ !
ମହାମୋହନ ବକ୍ତା ଭଟେ
ରଚିଲ ନୃପତି ନିକଟେ
ନୀଳମଣି-ମହିମା   ଅଟ୍ଟାଳିକାରେ ଜେମା
ଥିଲା ବାଜିଲା କର୍ଣ୍ଣତଟେ ହେ । ୨୪ ।

**ଅନ୍ୱୟ**- ସୁଧାନିଧି-କୁଳର ମୂର୍ଦ୍ଧାଳଙ୍କାର ବୀର ଭୀଷ୍ମକ-ନୃପସୁତା (ର) ଦାସୀ ଏ ପତ୍ର ଦେଇ ମତେ ଏମନ୍ତେ କହିଥିଲା । କହିବ ହେ ଭବଗ୍ରାହୀ ! କାହୁଁ ମହାମୋହନ-ବକ୍ତା ଭଟେ ଆସିଥିଲା । (ସେ) ନୃପତି-ନିକଟେ ନୀଳମଣି ମହିମା ରଚିଲା । (ସେତେବେଳେ) ଅଟ୍ଟାଳିକାରେ ଜେମା ଥିଲା । (ସେ କଥା) (ତା) କର୍ଣ୍ଣତଟେ ବାଜିଲା ।

**କଥା**—ଚନ୍ଦ୍ରବଂଶ ମସ୍ତକର ଅଳଙ୍କାର ବୀର ଭୀଷ୍ମକ ନରପତିଙ୍କ ଜେମାଙ୍କର ଦାସୀ ଏହି ପତ୍ରଟି ଦେଇ ମତେ ଏହିପରି କହିଥିଲା । କହିବ--ହେ ଭବଗ୍ରାହୀ ! କେଉଁଠୁ ଜଣେ ବିଶିଷ୍ଟ ମୋହନକାରୀ କଥକ ଭାଟ ଆସିଥିଲା । ସେ ରାଜାଙ୍କ ନିକଟରେ ନୀଳମଣି କୃଷ୍ଣଙ୍କର ମହିମା ବଖାଣିଲା । ସେତେବେଳେ ଉପର ମହଲରେ ଜେମା ଥିଲା । ସେ କଥା ତା କାନ ପାଖରେ ବାଜିଗଲା ।

---

ଶବ୍ଦାର୍ଥ । ସୁଧାନିଧି—ଚନ୍ଦ୍ରମା, ଚନ୍ଦ୍ର । ସୁଧାନିଧି-କୁଳ—ଚନ୍ଦ୍ରବଂଶ । ମୂର୍ଦ୍ଧା—ମୁଣ୍ଡ । ମୋହନ—ମନୋହାରୀ । ନୀଳମଣି—କୃଷ୍ଣ । ଅଟ୍ଟାଳିକା—କୋଠାର ଉପର ମହଲ । ତଟେ—ପ୍ରାନ୍ତେ ।

**ସେ ଧନ୍ୟ ପଦ୍ମଗନ୍ଧା ନବ୍ୟ ମୁଦ୍ରାକୁ ଫନ୍ଦା**
**କରିଛି ଅନ୍ଧାର ଛନ୍ଦାରେ**
**ଚକୋରାକ୍ଷୀ-ଚକୁର- ଚୟ କରିଛି ହାର**
**ନ ବନ୍ଧ ବନ୍ଧନ ମୂର୍ଦ୍ଧାରେ**
**ହେ ଭାବଗ୍ରାହୀ**
**ଅଞ୍ଜନ କସ୍ତୁରୀ ବହିନେ**
**ଆକଳ୍ପ ନ କଳ୍ପଇ ମନେ**
**କୁହୁ ରାକା ରଜନୀ ଯାକ ନାକ-ଅବନୀ**
**ବନିତା ହେଉଛି ନୟନେ ହେ । ୨୭ ।**

**ଅନ୍ୱୟ**— ସେ ଧନ୍ୟ ପଦ୍ମଗନ୍ଧା ଅନ୍ଧାର-ଛନ୍ଦାରେ ନବ୍ୟ ମୁଦ୍ରାକୁ ଫନ୍ଦା କରିଛି । ଚକୋରାକ୍ଷୀ ଚକୁରଚୟ ମୂର୍ଦ୍ଧାରେ ବନ୍ଧନ ନ ବନ୍ଧ ହାର କରିଛି । ହେ ଭାବଗ୍ରାହୀ ! ଅଞ୍ଜନ (ଏବଂ) କସ୍ତୂରୀବହିନେ ଆକଳ୍ପ ମନେ ନ କଳ୍ପଇ । (ସେ) ନାକ-ଅବନୀ ବନିତା ନୟନେ ରାକା ରଜନୀ ଯାକ କୁହୁ (ହେଉଛି) ।

**କଥା**— ସେ ଧନ୍ୟ ପଦ୍ମିନୀ ଜେମା ମାନବର୍ଣ୍ଣି ସ୍ନେହରେ କୃଷ୍ଣବର୍ଣ୍ଣର ଅନ୍ଧାର ଛନ୍ଦାରେ ନବ୍ୟାବିନ୍ୟାସକୁ ଆଶ୍ରୟ କରିଛି । ସେ ଚକୋରନେତ୍ରୀ କେଶସବୁ ମୁଣ୍ଡରେ ନ ବାନ୍ଧି ତାକୁ ବେକରେ ହାର ପରି କରିଛି । ହେ ଭାବଗ୍ରାହୀ ! କଜ୍ଜଳ ଏବଂ କସ୍ତୂରୀ ଏ ଦୁଇଟି ଛଡ଼ା କୌଣସି ବେଶଭୂଷା ଓ ଅଳଙ୍କାର ମନରେ ଧେନୁ ନାହିଁ । ସେ ଦୁଃଖ ବହିନ ଅବନୀ-ବନିତାର ନୟନରେ ପୂର୍ଣ୍ଣିମା ଜ୍ୟୋତ୍ସ୍ନା ରାତି ତମାମ ଅମାବାସ୍ୟା ପରି ବୋଧ ହେଉଛି ।

**ଆଲୋଚନା**— କଜ୍ଜଳ ଏବଂ କସ୍ତୂରୀ ଏ ଦୁଇଟିର ରଙ୍ଗ କୃଷ୍ଣ ବର୍ଣ୍ଣ ଥିବାରୁ ତାହାହିଁ ଧେନୁଅଛି ।

---

ଶବ୍ଦାର୍ଥ । କୁହୁ—ଅମାବାସ୍ୟା । ନାକ—ଦେବଙ୍କ ସ୍ଥାନ ନାକ, ସ୍ୱର୍ଗ, ଶ୍ରେଷ୍ଠ । ମୁଦ୍ରା—ବିନ୍ୟାସ । ଫନ୍ଦା—ଆଶ୍ରୟ । ପଦ୍ମଗନ୍ଧା—ପଦ୍ମିନୀ । ଅନ୍ଧାର—କୃଷ୍ଣବର୍ଣ୍ଣ ସଦୃଶ । ଚକୋରାକ୍ଷୀ—ସୁନ୍ଦରନେତ୍ରୀ । ଚକୁରଚୟ—କେଶସମୂହ । ମୂର୍ଦ୍ଧା—ମୁଣ୍ଡ । ଆକଳ୍ପ—ବେଶଭୂଷା ଅଳଙ୍କାର । ନ କଳ୍ପଇ—କଳ୍ପନା ନ କରେ । ରାକା—ପୂର୍ଣ୍ଣିମା, ଜ୍ୟୋତ୍ସ୍ନାରାତ୍ର ।

**ଶିବସଦନ-ଭିତ୍ତି- ଚିତ୍ରରେ ଅତି ପ୍ରୀତ**
**ନୀଳକଣ୍ଠ-ଯୁଗଳଗଳେ**
**ମାର-ମାର୍ଗଣେ ଭୀତ ନ କରଇ ତା ମତ**
**ନୀଳାବ୍ଜ ଥିବାରୁ ସେ ମେଳେ**
**ହେ ଭାବଗ୍ରାହୀ**
**ଦନକ-ରଜା ଯଥା ଧନେ**
**ତଥା ଦନକରଜା ବନେ**
**ଜାତକର ଛଟକ ଗୃତକ ଘନୋଦକ**
**ଭକ୍ଷଣ ଲକ୍ଷ୍ୟ ନୁହେଁ ଧ୍ୟାନେ ହେ । ୨୭ ।**

**ଅନ୍ୱୟ**—ଶିବସଦନ-ଭିତ୍ତି-ଚିତ୍ରରେ ନୀଳକଣ୍ଠ-ଯୁଗଳଗଳେ (ଦେଖି) ଅତି ପ୍ରୀତ (ହେଉଛନ୍ତି ।) ମାର-ମାର୍ଗଣେ ମେଳେ ନୀଳାବ୍ଜ ଥିବାରୁ ତା ମତ (ତନ୍ଧିରେ) ଭୀତ ନ କରଇ । ହେ ଭାବଗ୍ରାହୀ ! ଦନକ ରଜା ଧନେ ଯଥା (ଲୋଭକରେ) ତଥା ଦନକରଜା-ବନେ (ସେ ଲୋଭ କରୁଛନ୍ତି ।) ଛଟକ ଜାତ କର ଗୃତକ (ର, ଯେ) ଘନୋଦକ ଭକ୍ଷଣ (ତା) ଧ୍ୟାନେ ଲକ୍ଷ୍ୟ ନୁହେଁ ।

**ଅର୍ଥ**—ଶିବାଳୟର କାନ୍ଥ ବାଡ଼ରେ ହୋଇଥିବା ଚିତ୍ରରେ ଶିବଙ୍କ ଗଳାରେ ଏବଂ କାର୍ତ୍ତିକେୟଙ୍କ ମୟୂର ଗଳାରେ ନୀଳରଙ୍ଗ ଦେଖି ସେ ଅତ୍ୟନ୍ତ ପ୍ରୀତି ବହନ କରୁଛନ୍ତି । କାମଦେବ-ଧନୁରେ ପଞ୍ଚଶର ମେଳରେ ନୀଳପଦ୍ମ ଥିବାରୁ ତାର ଚିହ୍ନ ତହିଁରେ ଭୀତ ହେଉନାହିଁ । ହେ ଭାବଗ୍ରାହୀ ! ଦନକଆ ରଜା ସମ୍ପତ୍ତି ଉପରେ ଯେପରି ଅଧିକ ଲୋଭ କରିଥାଏ, ସେହିପରି ସେ ଯମୁନାଜଳରେ ଲୋଭ କରୁଛି । ତମର ଯମୁନା ବିହାର କଥା ସ୍ମରଣ କରୁଛନ୍ତି । ଭଙ୍ଗୀ ଜାତକର ଗୃତକର ଯେ ବର୍ଷାପାଣି ଭକ୍ଷଣ ଶ୍ରାନ୍ତ ଆମ ଜେମାର ଧ୍ୟାନରେ ଲକ୍ଷ୍ୟ ହେବ ନାହିଁ । ଗୃତକଠାରୁ ସେ ଅଧିକ ନିଷ୍ଠା ରଖିଛନ୍ତି ।

**ଆଲୋଚନା**—ଗୃତକ ଯେପରି ବର୍ଷା ପାଣିକୁ ଆଶା କରିଥାଏ ସେପରି ସେ ତୁମର ଯମୁନା ବିହାର ଏବଂ ଯମୁନା ବିହାରକାଳୀନ ତୁମର ରୂପଶ୍ରୀକୁ ଆଶାକରି ରହିଛନ୍ତି ।

ଶବ୍ଦାର୍ଥ । ଶିବସଦନ—ଶିବମନ୍ଦିର । ଭିତ୍ତି—କାନ୍ଥବାଡ଼ । ନୀଳକଣ୍ଠ—ଶିବ ଓ ମୟୂର । ଯୁଗଳ—ଦୁଇ । ଗଳେ—କଣ୍ଠରେ । ମାରମାର୍ଗଣେ—କାମଦେବ ଧନୁରେ । ମେଳେ—ସମ୍ମିଳନେ । ନୀଳାବ୍ଜ—ନୀଳପଦ୍ମ । ମତ—ଚିହ୍ନ । ଦନକର ରଜା—ଦନକଆ ରଜା । ଦନକର—ସୂର୍ଯ୍ୟ । ଦନକରଜା—ଯମୁନା । ବନେ—ଜଳରେ । ଛଟକ—ଭଙ୍ଗି, ପଲକ ।

**ଭୃଙ୍ଗ ପିକ ଦେଖିକନେ ଯାଇଥିଲୁଁ ବିପିନେ**
**ସେ ମନୋରଥ ସାର୍ଥ କଲୁଁ**
**ବିପୁଳ-ବନଛବି ବହିଲା ସେ ଅଟବୀ**
**ମୁନି-ରାଘବଙ୍କୁ ଦେଖିଲୁଁ**
**ହେ ଭାବଗ୍ରାହୀ !**
**ପଦେ କଲ୍ୟାଣ ପ୍ରକାଶିଲେ**
**ଉପଳ ଦଶାକୁ ନାଶିଲେ**
**ସୀତା ବିଭା ବିଧିକ ବରଚଲା ସିଦ୍ଧିକ**
**ଗଲାବେଳରେ ପ୍ରକାଶିଲେ ହେ । ୨୮ ।**

**ଅନ୍ୱୟ**—ଭୃଙ୍ଗ-ପିକ-ଲୋକନେ ବିପିନେ ଯାଇଥିଲୁଁ । ସେ ମନୋରଥ ସାର୍ଥ କଲୁଁ । ସେ ଅଟବୀ (ତତ୍କାଳରେ) ବିପୁଳ ବନଛବି ବହିଲା । (ତେଣୁ) ମୁନି (ଓ) ରାଘବଙ୍କୁ (ତହିଁ) ଦେଖିଲୁଁ ପୁଣି ମୁନି-ରାଘବଙ୍କୁ ଦେଖିଲୁଁ । ହେ ଭାବଗ୍ରାହୀ ! (ସେ) ପଦେ କଲ୍ୟାଣ ପ୍ରକାଶିଲେ (ଏବଂ) ଉପଳ ଦଶାକୁ ନାଶିଲେ । ଗଲାବେଳରେ (ସେ) ସିଦ୍ଧିକ ବରଚଲା ସୀତା ବିଭା ବିଧିକ ପ୍ରକାଶିଲେ ।

**କଥା**—ତାର ପାଇଁ କଳା ଭ୍ରମର ଏବଂ କଳା କୋକିଳ ଦେଖିବାକୁ ବନକୁ ଯାଇଥିଲୁଁ । ସେ ଇଚ୍ଛା ଆମର ପୂରଣ ହେଲା । ଆମେ ଦେଖିଲୁଁ ସେ ବନ ସେ ସମୟରେ ବିପୁଳ ବନର ଛବିକୁ ଧାରଣ କଲା । ତେଣୁ ଆମେ ସେଠି କଳ୍ପନାରେ ମୁନି ବିଶ୍ୱାମିତ୍ର ଏବଂ ରାଘବଙ୍କୁ ବିପୁଳ ନାମକ ବନରେ ଦେଖିଲୁ ଅବା । ପୁଣି ସେ ସ୍ୱଚ୍ଛନ୍ଦର ବନଛବିରେ ମୁନିଶ୍ରେଷ୍ଠ ନାରଦଙ୍କୁ ଦେଖିଲୁଁ । କଳ୍ପନାରେ ଜାଣିଲୁଁ ଯେ ଭାବଗ୍ରାହୀ-ରାମ ତାଙ୍କ ପାଦସ୍ପର୍ଶରେ ମଙ୍ଗଳ ପ୍ରକାଶ କଲେ । ଫଳରେ ପଥର ହୋଇ ପଡ଼ିଥିବା ମହାସୁନ୍ଦରୀ ରୂପସୀ ଅହଲ୍ୟାର ଦଶାକୁ ନାଶ କଲେ । ତେଣୁ ସେ ସିଦ୍ଧି ଅବା ସୀତାଙ୍କ ବିବାହବିଧି କଳ୍ପନା ଅନ୍ତର୍ହିତ ହେଲାବେଳେ ପ୍ରକାଶିତ ହେଲା । ହେ ଭାବଗ୍ରାହୀ କୃଷ୍ଣ ! ସେ ନାରଦ ଋଷି ପଦଟିଏ ମାତ୍ର କଲ୍ୟାଣ ପ୍ରକାଶ କଲେ ଏବଂ ଜଡ଼ ଦଶାକୁ ନାଶ କଲେ । ଅର୍ଥାତ୍ ସିଦ୍ଧିର ଫଳ ସ୍ୱରୂପ ମଧୁର-ବିବାହବିଧି କଥା ଗଲାବେଳରେ ପ୍ରକାଶ କଲେ ।

**ଆଲୋଚନା**—ସେ ଦାସୀ କହୁଛି—ତୋମାର କୃଷ୍ଣବର୍ଣ୍ଣରେ ଶ୍ରଦ୍ଧା ଥିବାର ଜାଣି ତାକୁ ନେଇ କଳା ଭ୍ରମର, କଳା କୋକିଳ ଦେଖାଇବାକୁ ବଣକୁ ନେଇଥିଲୁଁ । ସେ ବିପୁଳ ବନଛବି ଦେଖିବାବେଳେ ମୁନିଶ୍ରେଷ୍ଠ ନାରଦଙ୍କୁ ଭେଟିଲୁଁ । ଯେପରି ମୁନି ବିଶ୍ୱାମିତ୍ର ଏବଂ ରାଘବ ରାମଚନ୍ଦ୍ର ବିପୁଳ ବନ ଦେଖିଥିଲେ ରାମ ପଦ **ସ୍ପର୍ଶରେ**

ଅହଲ୍ୟା ପାଷାଣୀକୁ ମୁକ୍ତ କରିଥିଲେ । କିନ୍ତୁ ନାରଦ ପଦେମାତ୍ର କଲ୍ୟାଣ ପ୍ରକାଶି ଆମ ଜେମାର ଉପଳ ଦଶା ବା ଜଡ଼ ଦଶାକୁ (ଯେଉଁ ଦଶା ତାକୁ ପଥର ପରି ମାଡ଼ିବସିଥିଲା) ତା ଦୂର କଲେ । ଅହଲ୍ୟା ଉଦ୍ଧାର ପରେ ସୀତା ବିଭାବିଧିର ସିଦ୍ଧି ଯେପରି ବିଶ୍ୱାମିତ୍ର ପ୍ରକାଶିତ କରିଥିଲେ, ସେପରି ନାରଦ ଆମ ଜେମାର ସୀତା ବା ମଧୁର ବିବାହବିଧିର ସଫଳତା ପ୍ରକାଶ କରିଥିଲେ ।

ଶବ୍ଦାର୍ଥ । ଭୃଙ୍ଗ—ଭ୍ରମର । ପିକ—କୋକିଳ । ବିପିନ—ବନ । ତେଲ୍ଲ—ଜେ ସୁନାମଖ୍ୟାତ ବନ, ଶ୍ରେଷ୍ଠ । ଅଟବୀ—ଅରଣ୍ୟ । ମିତ୍ର—ବିଶ୍ୱାମିତ୍ର । ରାଘବ—ରାମଚନ୍ଦ୍ର । ମୁନି-ରାଘବ—ମୁନିଶ୍ରେଷ୍ଠ ନାରଦ । ପଦ—ପଦରେ, ପଦସ୍ପର୍ଶରେ, ପଦେ—ପଦଟିଏ, କଥାପଦେ । କଲ୍ୟାଣ—ମଙ୍ଗଳ, ଆଶିଷ । ଉପଳ—ପଥର, ଜଡ଼ । ସୀତା—ଜନକଜେମା ସୀତା, ମାଧୁର୍ଯ୍ୟବନ୍ତ ।

ନବତମାଳ-ଦଳ ଉତ୍ତଂସରେ ମରାଳ-
ଗତି ମତକ ସନ୍ତୋଷିଲୁଁ
ନୀଳମଣି-ମନ୍ଦିର- ବେଦରେ ଇନ୍ଦୀବର-
ଦୃଶୀଙ୍କୁ ଅଣି ନବେଶିଲୁ
ହେ ଭାବଗ୍ରାହୀ !
ଦମଘୋଷ ନାମେକ ରାଜା-
ତନୁଜର ବାଜଣା ବାଜା
ଅତନୁ-ଜ୍ୱର ଜାତ କର ସୁତନୁ ବ୍ରାତ-
ରଜାର ହଜାଇଲା ମଜ୍ଜା ହେ । ୨୯ ।

**ଅନ୍ୱୟ ।** (ତେଣୁ) ନବତମାଳ-ଦଳ ଉତ୍ତଂସରେ (ସେ) ମରାଳଗତି ମତକ ସନ୍ତୋଷିଲୁଁ । (ସେ) ଇନ୍ଦୀବର-ଦୃଶୀଙ୍କୁ ଅଣି ନୀଳମଣି-ମନ୍ଦିର-ବେଦୀରେ ନବେଶିଲୁ । ହେ ଭାବଗ୍ରାହୀ ! ଦମଘୋଷ ନାମେକ ରାଜା ତନୁଜର ବାଜଣା ବାଜା (ଯୋଗୁଁ) ଅତନୁ-ଜ୍ୱର ଜାତ କର (ସେ) ସୁତନୁବ୍ରାତ-ରଜାର ମଜ୍ଜା ହଜାଇଲା ।

**ଅର୍ଥ** — ତେଣୁ ତୁମର ରୂପ ମାଧୁର୍ଯ୍ୟ ଲାଗି ନୂଆ ତମାଳପତ୍ରର କର୍ଣ୍ଣାଭରଣ ଦ୍ୱାରା ଗତି ଯେ ହଂସଗମନା ସେମାନଙ୍କୁ ସନ୍ତୋଷ କଲୁଁ । ଏମନ୍ତ କି ଯେ ନୀଳକମଳ-ସଦୃଶ-ନୟନା ସେମାନଙ୍କୁ ନୀଳପାଟପଥର ତିଆରି ମନ୍ଦିରରେ ରଖି ବିହାର କରାଇଲୁଁ । ହେ ଭାବଗ୍ରାହୀ ! କ'ଣ ହେବ, ଏତିକବେଳେ ଦମଘୋଷ ନାମକ ରାଜାର ପୁଅ ଯାହା ବିବାହକୁ ଆସି ବାଜଣା ବାଜା ବଜାଇଦେଲା । ତା ଶୁଣି ତୁମ୍ଭଠାରୁ ଭିନ୍ନ ଭିନ୍ନ ଆମ ସେମାନଙ୍କ କାମଜ୍ୱର ଜନ୍ମିଲା । ସେହି ସୁନ୍ଦରୀସମୂହର ଶିରୋମଣିର ମଜ୍ଜା ହଜିଗଲା ।

ଶବ୍ଦାର୍ଥ । ନ ତମାଳ—ନୂଆ ତମାଳ ପତ୍ର—ଦଳ । ଉତ୍ତଂସ—କର୍ଣ୍ଣାଭରଣ । ମରାଳଗତି ହଂସଗମନା । ଇନ୍ଦୀବରଦୃଶୀ—ନୀଳକମଳ ନୟନା । ମଣି—ପଥର । ସୁତନୁ—ସୁନ୍ଦରୀ । ବ୍ରାତ—ସମୂହ । ସୁତନୁ ବ୍ରାତରଜା—ସୁନ୍ଦରୀସମୂହରେ ଶ୍ରେଷ୍ଠା ।

ସେହିଁଯିବାରୁ ଡର ବୈଦ୍ୟକୁମାରୀ ଧର
ନାଡିକା ବୁଝି ନ ପାରିଲା
ସବାଙ୍କରେ ଦେବତା ବାଙ୍କା ଦୈବଜ୍ଞ-ସୁତା
ଅତ ଅଜ୍ଞତା ପ୍ରକାଶିଲା
ହେ ଭାବଗ୍ରାହୀ
ପଚ୍ଛୁରୁଁ ଯେବେ ମଉନରେ
ରହି କହଇ ଏହି ଗିରେ
କର୍କଟ-କୁହୁରାଏ ଊର୍ଣ୍ଣନାଭିର ସୂତ୍ର
ଛଇ ଠିକ ଦେଖାଇ ପାରେ ହେ । ୩୦ ।

**ଅନ୍ୱୟ** -ଡର ସିହିଁଯିବାରୁ ବୈଦ୍ୟକୁମାରୀ ନାଡିକା ଧରି ବୁଝି ନ ପାରିଲା ! ସବାଙ୍କରେ ଦେବତା ବାଙ୍କା ଦୈବଜ୍ଞ-ସୁତା (ମଧ୍ୟ) ଅତି ଅଜ୍ଞତା ପ୍ରକାଶିଲା । ହେ ଭାବଗ୍ରାହୀ ! ଯେବେ ପଚ୍ଛୁରୁଁ (ତେବେ) ମଉନରେ ରହି ଏହି ଗିରେ କହଇ—କର୍କଟ-କୁହୁରାଏ ଊର୍ଣ୍ଣନାଭିର ସୂତ୍ର ଛଇ ଠିକ୍ ଦେଖାଇ ପାରେ (କି) ?

**କଥା** ଶିଶୁପାଳବାଦ୍ୟ ନାଦରେ ଡର ଯେ ସିହିଁଯିବାରୁ ଆମର ବୈଦ୍ୟକନ୍ୟା ତାଙ୍କର ନାଡ଼ୀ ଧରି ଜାଣିପାରିଲା ନାହିଁ । ସବାଙ୍କପଣିଆରେ ଦେବତାଙ୍କଠାରୁ ବଙ୍କା ଆମର ଜ୍ୟୋତିଷ-କନ୍ୟା ମଧ୍ୟ ଏ ଘଟଣାରେ କିଛି କହିପାରିଲା ନାହିଁ । ହେ ଭାବଗ୍ରାହୀ ! ଯେବେ ତାଙ୍କୁ ଏକଥା କଣ ହେଲା ବୋଲି ପଚାରିଲୁଁ, ତେବେ ସେ ମୌନରେ ରହି ଏତିକି କହନ୍ତି ଯେ—ଭଲା କହିଲ ଶ୍ରାବଣ ମାସର ଅମାବାସ୍ୟା-ରାତିରେ ବୁଢ଼ିଆଣୀ-ସୂତାଜାଲକୁ କିଏ ଦେଖାଇପାରେ ? ସେପରି ଏ ଘଟଣାରେ ନାଡ଼ୀ ଖୋଜୁଛ କଣ ?

ଶବ୍ଦାର୍ଥ । ନାଡିକା—ନାଡ଼ୀ । ଦେବତାବଙ୍କା—ଦେବତା ସମାନ ପଣ୍ଡିତା । ଦୈବଜ୍ଞ—ଜ୍ୟୋତିଷୀ । ଅଜ୍ଞତା—ମୂର୍ଖତା । କର୍କଟ—ମିଥୁନ ମାସର ପର ମାସ, ଶ୍ରାବଣ । କୁହୁ—ଅମାବାସ୍ୟା । ଊର୍ଣ୍ଣନାଭ—ବୁଢ଼ିଆଣୀ । ସୂତ୍ର—ସୂତା । ଛଇ—ଛଟକ, ଗୁଚ୍ଛା, ସାଜସଜ୍ଜା ।

**ହର-ଉଦୟ ବିନା କେବେ ନ ଯାଇ ଶଙ୍କା**
**ଶ୍ରବଣେ ଶବ ପରି ରହି**
**ଛାଡ଼ୁଁ ପିଛୁଡ଼ା ଗତ ନ ଛାଡ଼ୁ ତା ସଙ୍ଗତ**
**ଅମ୍ଳାନ ଉତ୍ତଂସକୁ ଗୃହି**
**ହେ ଭାବଗ୍ରାହୀ**
**ଭୂପତ ଧୃତ କରୁଁ ଚିତ୍ତ**
**ଜଗତ ଅତି ଅଚେତନ**
**ବିପତ୍ତି ଧ୍ୱଜ-ଧ୍ୱାନ୍ତ- ଧ୍ୱଂସନେ ହେଲେ ମିତ୍ର**
**କରସ୍ଥ-ନଳିନ ଦୃଷ୍ଟାନ୍ତ ହେ । ୩୧ ।**

**ଅନ୍ୱୟ**— ହର-ଉଦୟ ବିନା କେବେ ଶଙ୍କା ନ ଯାଇ । (ଏହା) ଶ୍ରବଣେ ଶବ ପରି ରହି (ଗଲୁଁ) ପିଛୁଡ଼ା ଗତ ଛାଡ଼ୁଁ (କିନ୍ତୁ) ତା ସଙ୍ଗତ ନ ଛାଡ଼ୁ । (ତାର) ଜଗତ ଅତି ଅଚେତନ ହେଲେହେଁ ଅମ୍ଳାନ ଉତ୍ତଂସକୁ ଗୃହି ଚିତ୍ତ ଭୂପତେ ଧୃତ କରୁଁ । (ଏ) ବିପତ୍ତି ଧ୍ୱଜ-ଧ୍ୱାନ୍ତ-ଧ୍ୱଂସନେ (ତୁମ୍ଭେ) ମିତ୍ର ହେଲେ (ତୁମ୍ଭ) କରସ୍ଥ ନଳିନ ଦୃଷ୍ଟାନ୍ତ (ଗ୍ରହଣ କରିବେ) ।

**କଥା**—ସୂର୍ଯ୍ୟ ଉଦୟ ନ ହେଲେ ଯେମନ୍ତ ବୁଢ଼ିଅଣ୍ଡୀ-ଜାଲର ଛୁଇ ଶଙ୍କା ପଡ଼ିବ ନାହିଁ ସେପରି କୃଷ୍ଣ ନ ଆସିବା ଯାଏ ଏ ନାଡ଼ୀର ଗତି ଠିକ୍ ବାରି ହେବ ନାହିଁ । ଏକଥା ଶୁଣି ଆମେ ସବୁ ମଡ଼ା ପରି ରହିଗଲୁ । ଆମ ଆଖି ପିଚୁଳାର ଗତି ବରଂ ଛାଡ଼ି ନବରି ଗୃହିଁ ରହୁ, କିନ୍ତୁ ତା ସାଥି ସେ ବେଳୁ ଛାଡ଼ୁନୁଁ । ତାର ଦେହର ଚାଞ୍ଚ ଅତି ଅଚେତା ଆଣି ଦେଇଥିଲେହେଁ ତାର ତମାଳଦଳ-କର୍ଣ୍ଣାଳଙ୍କାର ସତେଜ ଥିବାର ଦେଖି ଆମ ଚିତ୍ତ ତୃପ୍ତିକୁ ଧାରଣ କରଅଛୁଁ । ଆମକୁ ଏହି ଯେଉଁ ବିପତ୍ତି-ଗର୍ବର ଅନ୍ଧକାର ଘୋଟିଯାଇଛି, ତୁମ୍ଭେ ଅନ୍ଧକାରକୁ ସୂର୍ଯ୍ୟ ପରି ତା ଲାଗି ସ୍ୱାମୀ ହେଲେ ତୁମ୍ଭ ହସ୍ତରେ ଥିବା କମଳ ଦୃଷ୍ଟାନ୍ତ ଗ୍ରହଣ କରିବେ । ସେ ନ ଫୁଟୁଣୁ ଯେପରି ଆସି ଉଷା ଦୂରରୁ ପହଞ୍ଚିବେ ! ନ ହେଲେ ସବୁ ସରିଯିବ ।

---

ଶବ୍ଦାର୍ଥ । ହର—ସୂର୍ଯ୍ୟ । ପିଛୁଡ଼ା—ପିଛୁଳା । ଅମ୍ଳାନ—ସତେଜ । ହେଲେ—ଅନାୟାସରେ । ଧ୍ୱଜ—ବଟ । ଧ୍ୱାନ୍ତ—ଅନ୍ଧକାର । ମିତ୍ର—ସୂର୍ଯ୍ୟ । ଧ୍ୱଂସ—ଭଙ୍ଗକାରକ । ଧୃତ—ଧାରଣ । ଅଚେତନ—ଅଚେତା । କରସ୍ଥ-ନଳିନ—ବିଷ୍ଣୁଙ୍କ ହସ୍ତରେ ପଦ୍ମ ଥାଏ, ସେଥିରୁ ଉଦାହରଣ ଅବତାରଣ ହୁଏ ।

ସେ କନକ-କେତକୀ- ଅଙ୍ଗୀ ସଙ୍ଗୀ ଏତିକ
କହୁଛି, ମୁଁ ହେଲି ଅନ୍ତର,
ଶୁଣି ମଧୁନଗର ବଧୂ-ନେତ୍ରଚକୋର-
ବଧୁ-ମଧୁରତର ଗିର
କି, ସଗରେ
କହିଲେ କହିଲୁ ଯେ ଏତେ
ତାହାକୁ କହ ଯାଇଁ ଏତେ
ଯାହାର ଏତେ କ୍ଷୀଣ- ଦଶା ତାହାର ମନ-
ମଜ୍ଜନ କ୍ଷୀଣ ଜନ କେତେ ହେ । ୩୨ ।

**ଅନ୍ୱୟ** ସେ କନକ-କେତକୀ-ଅଙ୍ଗୀ ରାଧାଙ୍କ ସଙ୍ଗୀ ଏତିକ କହୁଛି, ମୁଁ ଅନ୍ତର ହେଲି । ଏକଥା ମଧୁନଗରର ବଧୂ-ନେତ୍ରଚକୋର-ବଧୂ ଶୁଣି ମଧୁରତର ଗିର ସଗରେ କହିଲେ ! ଯେ ଏତେ କହିଲୁ ତାହାକୁ ଯାଇ ଏତେ କହ । 'ଯାହାର ଏତେ କ୍ଷୀଣ ଦଶା, ତାହାର ମନମଜ୍ଜନ-କ୍ଷୀଣଜନ ତା ପାଖରେ, କେତେ ?'

**କଥା**– ବ୍ରାହ୍ମଣ କହିଲେ ସେହି କନକ-କେତକୀ-ଦେହାର ପାଖ ସହଚରୀ ଜଣକ ମତେ ଏତିକ କହୁଛି ମୁଁ ତା ଶୁଣି ଚାଲି ଆସିଲି ।

ଏକଥା ମଥୁରାନଗରର ବଧୂମାନଙ୍କ ନେତ୍ରଚକୋରର ଚନ୍ଦ୍ରମା ସ୍ୱରୂପ ଯେ କୃଷ୍ଣ ସେ ଶୁଣି ଅତି ମଧୁରବାଣୀ ସସ୍ନେହରେ କହିଲେ ! ଯେ ଏତେ କଥା କହିଲୁ ତାଙ୍କୁ ଯାଇ ଏତିକ କହ ଯେ ଯାହାର ଏତେ କ୍ଷୀଣଦଶା ହୋଇଛି, ତା'ର ମନରେ ମଜ୍ଜି ଥିବା ତାର ଦାସ, କ୍ଷୁଦ୍ର ମଣିଷଟି କଣ ସମ୍ଭାଳି ରହିପାରିବ କି ? ସେ କେତେ ମାତ୍ର ?

ଶବ୍ଦାର୍ଥ । କନକ-କେତକୀ-ଅଙ୍ଗୀ—ସ୍ୱର୍ଣ୍ଣ-କେତକୀ ଦେହା । ମଧନଗର—ମଥୁରା । ବଧୂନେତ୍ର-ଚକୋର-ବଧୂ— ବଧୂମାନଙ୍କ ନେତ୍ରଚକୋରର ଚନ୍ଦ୍ରମା ପାଇଁ ଚନ୍ଦ୍ର । ସଗରେ— ସ୍ନେହରେ । ମନମଜ୍ଜନ—ଆତ୍ମାରେ ମଜ୍ଜି ରହିଥିବା । କ୍ଷୀଣଜନ—ଦାସଜନ ।

ଢ଼ଙ୍କେ କଲେ ଭୂଷଣ ସୁଲକ୍ଷଣ ବାରଣ
ମୁକୁତା ସ୍ରକ ଭେକ ଭଜେ
କଦା ନୁହେଁ ଏ ବନ୍ଧ ଗଦାଧର ମୋ ସିଦ୍ଧି
ତୁମ୍ଭ ପଦାରବିନ୍ଦ-ରଜେ
ହେ ବଜ୍ରବର !
ଆପଣ ସ୍ୱପୁର-ବିହାରୀ
ହୋଇବା ହେଉ ବେଗକରି
ଥରେ ତ କହୁଅଛି ତୁମ୍ଭ ପାଦ ଛୁଇଁଛି
ଅଣିବ ଦେବୀକର ଧରି ହେ । ୩।୩ ।

**ଅନ୍ୱୟ**— ଭେକ ଢ଼ଙ୍କେ ଭୂଷଣ କଲେ ସୁଲକ୍ଷଣ ବାରଣ ମୁକୁତାସ୍ରକ ଭଜେ ଏ ବନ୍ଧ କଦା ନୁହେଁ । ହେ ବଜ୍ରବର ! ତୁମ୍ଭ ପଦାରବିନ୍ଦ-ରଜେ ମୋ ଗଦାଧର-ସିଦ୍ଧି ଅଟେ । ଆପଣ ବେଗକରି ସ୍ୱପୁର-ବିହାରୀ ହୋଇବା ହେଉ । ଥରେ ତ କହୁଅଛି ଏବେ ତୁମ୍ଭ ପାଦ ଛୁଇଁଛି ଦେବୀକର ଧରି (ନିଶ୍ଚୟ) ଅଣିବ ।

**କଥା** ଅଉ କଥାଏ ଶୁଣ—ବେଙ୍ଗ ଯେତେ ଉଦ୍ଦରେ ଚେଷ୍ଟାକଲେ ଲକ୍ଷଣ-ସମ୍ପନ୍ନ ଗଜମୁକ୍ତା ହାର ଲଭିକରେ, ଏପରି କଥା କଦାପି ଘଟି ନ ପାରେ । ଶିଶୁପାଳ ଯେତେ ବାଜା ବଜାଇଲେ ସେ କି ମନୋରମା ରୁକ୍ମିଣୀଙ୍କୁ ଲଭିପାରେ କି ? ହେ ବଜ୍ରବର ! ତୁମ୍ଭ ପାଦପଦ୍ମ ଧୂଳି ଯୋଗୁଁ ମୋର ଗଦାଧର ସିଦ୍ଧି ଅଟେ । ମୁଁ ତେଣୁ ବାହୁବଳରେ ଅତି ବଳବନ୍ତ ଅଟେ । ଆପଣ ଅତିଶୀଘ୍ର ନିଜ ରାଜ୍ୟକୁ ବିଜୟମାନ କରିବା ହେଉନ୍ତୁ । ଥରେ ତ କହିଛି, ଏବେ ମଧ୍ୟ ତୁମ୍ଭ ପାଦଛୁଇଁ କହୁଛି—ଦେବୀ ରୁକ୍ମିଣୀର କର ଏ ବଳିଷ୍ଠ-ବାହୁରେ ଧରି ନିଶ୍ଚୟ ନେଇ ଆସିବି ।

---

ଶବ୍ଦାର୍ଥ । ସୁଲକ୍ଷଣ—ଲକ୍ଷଣ-ସମ୍ପନ୍ନ । ବାରଣ—ଗଜ । ମୁକୁତା—ମୁକ୍ତା । ସ୍ରକ—ହାର । ଭଜେ ଲଭେ-ଲଭେ । କଦା—କଦାପି । ବନ୍ଧ—ବନ୍ଧନ । ଗଦାଧର—ଗଦାଧାରଣେ ଦକ୍ଷ, ବାହୁବଳରେ ବଳବନ୍ତ । ପଦାରବିନ୍ଦ-ରଜେ—ପାଦପଦ୍ମ ଧୂଳିରେ ।

ବିପ୍ର ଚରଣ ଧୂଳି ନେଇ ସର୍ବାଙ୍ଗେ ବୋଳି
ବନ୍ଧୁ ବ୍ୟକ୍ତ ହଜନ୍ତେ ପୋଥି
ହୋଇଥିଲି ବାଉଳି କଲି ଯେ କଳଗୋଳ
ଦୋଷକୁ ହେଉଛି ଅର୍ଥୀ
ହେ ଚନ୍ଦ୍ରାମଣି !
ପୁଣି ବଦନ୍ତି ବନମାଳୀ
କହୁଛୁଁ 'ପିତାମହ' ବୋଲି
ଅପବାଦ ଭୂଷଣ ଦୂଷଣ ତ ଭୂଷଣ
ଯାଅଯା ବୋଲି ଦେଲେ ପେଲି ହେ । ୩୪ ।

**ଅନ୍ୱୟ—** ବିପ୍ର-ଚରଣଧୂଳି ନେଇ ସର୍ବାଙ୍ଗେ (ଯେ) ବୋଳି ହୁଅନ୍ତେ) ବନ୍ଧୁ ବ୍ୟକ୍ତ କଲେ ହେ ଚନ୍ଦ୍ରାମଣି ! ପୋଥି ହଜନ୍ତେ ବାଉଳି ହୋଇଥିଲି । ଯେ କଳଗୋଳ କଲି ସେ ଲାଗି) ଦୋଷକୁ ଅର୍ଥୀ ହେଉଛି । ପୁଣି ବନମାଳୀ ବଦନ୍ତି—ପିତାମହ ବୋଲି କହୁଛୁଁ । ଦୂଷଣ ଅପବାଦ ଭୂଷଣ ତ (ମୋର) ଭୂଷଣ (ଅଟେ) । ଯାଅଯା ବୋଲି ପେଲି ଦେଲେ ।

**କଥା—** କୃଷ୍ଣ ଯେ ବିପ୍ରଚରଣ-ଧୂଳି ନେଇ ନିଜ ସର୍ବାଙ୍ଗରେ ବୋଳି ହୁଅନ୍ତେ ବନ୍ଧୁ ବ୍ୟକ୍ତ କଲେ—ହେ ଚନ୍ଦ୍ରାମଣି ! ଦେଖନ୍ତୁ, ପୋଥି ହଜିବାରୁ ମୁଁ ବାଉଳା ପରି ହୋଇଥିଲି । ଯେ କଳିଗୋଳ ଆପଣଙ୍କ ସହିତ କଲି ସେ ଲାଗି ଦୋଷ ମାଗିନେଉଛି । ଏକଥା ଶୁଣି କୃଷ୍ଣ କହିଲେ—ଆପଣଙ୍କୁ ମୁଁ 'ପିତାମହ' ବୋଲି କହୁଛି । ଦେଖନ୍ତୁ, ଏପରି ଦୂଷଣ ଅପବାଦ କଥାମାନ ତାଂ ତ ମୋର ଭୂଷଣ ସଦୃଶ ଅଟେ । ଏହା କହି ସେ 'ଯାଅଯା' (ଅଜା, ଯାଅ) ବୋଲି ବିପ୍ରଙ୍କୁ ପେଲିଦେଲେ ।

---

[illegible]
ପିତାମହଙ୍କୁ ମଧ୍ୟ ଅଜା କୁହାଯାଏ ।

ଧର୍ତ୍ର-ଗୀର୍ବାଣ କୋଟି କଲ୍ୟାଣ ପରିପାଟୀ
ନିର୍ମାଣ କରି ପୁରେ ଗମି
ଦାରୁକେ କରି ଗୃରୁ- ନେତ୍ର ପାରି ଯେଠାରୁ
ଅନ୍ତର ହେଲେ ଅନ୍ତର୍ଯ୍ୟାମୀ
ହେ ବାରୁସାଜି
ଦାରୁକ ବିମାନ ସମର୍ପୁଁ
ବିଜୟ କଲେ ମଧୁରିପୁ
ଛଇଲେନ୍ଦ୍ର ଆଗଛ ସପ୍ତପଦାନ୍ତେ ସ୍ୱଚ୍ଛ
ନିରେଖି ଉତ୍ଫୁଲ୍ଲିତ ବପୁ ହେ । ୩୫ ।

**ଅନ୍ୱୟ**—ଧର୍ତ୍ର-ଗୀର୍ବାଣ କୋଟି କଲ୍ୟାଣ ପରିପାଟୀ ନିର୍ମାଣ କରି (ସ୍ୱ) ପୁରେ ଗମି (ଲେ) । ଦାରୁକେ ଗୃରୁନେତ୍ର ପାରି କରି ଅନ୍ତର୍ଯ୍ୟାମୀ ଯେଠାରୁ ଅନ୍ତର ହେଲେ । (ଅନନ୍ତର) ବାରୁସାଜି ଦାରୁକ ବିମାନ ସମର୍ପୁଁ (ତାହିଁ) ମଧୁରିପୁ ବିଜୟ କଲେ । ଛଇଲେନ୍ଦ୍ର ଆଗଛ ସପ୍ତପଦାନ୍ତେ ସ୍ୱଚ୍ଛ ନିରେଖି ବପୁକୁ ଉତ୍ଫୁଲ୍ଲିତ (କଲେ) ।

**କଥା**—ବଚନ ଅନୁସାରେ କାର୍ଯ୍ୟସିଦ୍ଧିକାରକ ବ୍ରାହ୍ମଣ କୃଷ୍ଣଙ୍କ ବହୁ ଆଶୀର୍ବାଦ ସଜେଇ କରି କହ୍ନ ନିଜ ଗୃହକୁ ଫେରିଆସିଲେ । ଏଣେ ଦାରୁକ ସାରଥିଙ୍କୁ ନିଜର ସୁନ୍ଦର ନେତ୍ରରେ ଠାରିଦେଇ ସେହି ଅନ୍ତର୍ଯ୍ୟାମୀ ପୁରୁଷ ଗ୍ଲଲଗଲେ ।

ଅନନ୍ତର ଘୋଡ଼ା ଯୋଚି ଦାରୁକ ରଥ ସମର୍ପିବାରୁ ତାହିଁରେ କୃଷ୍ଣ ବିଜୟ କଲେ । ସେ ନାଗରବର୍ତ୍ମ୍ୟାଗତ ହେବାରୁ ସାତପାଦ ଶେଷରେ ଶ୍ୱେତ ପଦାର୍ଥ ଏବଂ ଏକ ଶୁକ୍ଳକାଷ୍ଠ ଶତ୍ରୁ-କ୍ଷୟକାରୀ ବଳଦ ବୃଷ ଦେଖି ନିଜ ଅଙ୍ଗକୁ ଉତ୍ଫୁଲ୍ଲିତ କଲେ ।

**ଆଲୋଚନା**—"ବଳଦ କଣ୍ଟାକାଷ୍ଠ ସବଂଶକ୍ଷୟକଂରୀ, ବଳଦ ବନ୍ଦତେ ନିତ୍ୟଂ ଆୟୁଃ ପ୍ରଜ୍ଞା ସଶୋବଳଂ ।" ଯିନେ ବରକୋଳ, ଜାଳେଁ ଛେଳକାଠ, ମୋ ସ୍ୱାମୀ କନ୍ଦସ୍ଥ, ସେତକ୍ଳେ ମୋ ସଳକ୍ଷୁଣୀ ଥାଉ, ଏକ୍ଳେ ମୋ ଧନ ଯାଉ ।

**ଶବ୍ଦାର୍ଥ** । ଗୀର୍ବାଣ—ଦେବତା । ଧର୍ତ୍ର-ଗୀର୍ବାଣ—ବ୍ରାହ୍ମଣ, ଯେ ପୃଥିବୀରେ ବାନଂରେ ଯାହା ହେଲେ ଜାନଂରର ଭାନା ପାଳନ୍ତି । ସ୍ୱଚ୍ଛ—ଧଳା ଜନସ, ବଳଦ ବୃଷ । ପରିପାଟୀ—ସୁନ୍ଦରମାନ, ସୁଶୃଙ୍ଖଳ । କୋଟି—ବହୁ । ପାରି—ଠାରି । ଅନ୍ତର୍ଯ୍ୟାମୀ—ଯେ ପରର ଅନ୍ତର ବୁଝି ପାରନ୍ତି । ବାରୁ—ଘୋଡ଼ା, ଅଶ୍ୱ । ଦାରୁକ—କୃଷ୍ଣଙ୍କର ସାରଥି । ବିମାନ—ରଥ । ମଧୁରିପୁ—ମଧୁହନ୍ତା ବିଷ୍ଣୁରୂପୀ କୃଷ୍ଣ । ଛଇଲେନ୍ଦ୍ର—ରସିକବର । ଆଗଛ—ସ୍ୱାଗତ, ଦମାଗଲ । ସପ୍ତପଦାନ୍ତେ—ସାତପାଦ ଶେଷରେ ।

ହିରଣ୍ୟଗର୍ଭ-ଚୀର    ଗର୍ଭ ପଡ଼ବ ଧର
ହିରଣ୍ୟଗର୍ଭ ହାତେ ନୋହେ
ସୂତ ଜାଣିବ କାହୁଁ    ପ୍ରସନ୍ନ ହୋଇଲହୁଁ
ବିଦର୍ଭେ ଯିବା ଭାଷି ବାହେ
ହେ ସାଧୁଜନେ
ନୀଳାଦ୍ରି-ଶିଖା ରମା ମୁଖ
ପ୍ରସନ୍ନ ମଣ୍ଡି ହେବା ମୁଖ
ମଣ୍ଡପ ଯାହା ସ୍ନେହେ    ତାଙ୍କ ପଦାମ୍ବୁରୁହେ
ଗ୍ରନ୍ଥକାର ତ ଶିଳୀମୁଖ ହେ ।୩୭।

**ଅନ୍ୱୟ**— 'ହିରଣ୍ୟ' ଗର୍ଭ ଚୀର-ଗର୍ଭ ଧର ପଡ଼ବ (ଏହା) ହିରଣ୍ୟଗର୍ଭ ହାତେ ନୋହେ । ସୂତ କାହୁଁ ଜାଣିବ ? (ତେଣୁ) ପ୍ରସନ୍ନ ହୋଇଲହୁଁ 'ବିଦର୍ଭେ-ଯିବା' ଭାଷି (ସେ) ବାହେ । ହେ ସାଧୁଜନେ ! ପ୍ରସନ୍ନ-ରମାମୁଖ ମଣ୍ଡିହେବା ନୀଳାଦ୍ରି-ଶିଖା ମୁଖମଣ୍ଡପ ଯାହା ସ୍ନେହେ ତାଙ୍କ ପଦାମ୍ବୁରୁହେ ଗ୍ରନ୍ଥକାର ଶିଳୀମୁଖ ( ହେବାକୁ କାମନା କରେ) ।

**କଥା** - ପୂର୍ବେ ହିରଣ୍ୟ ରାକ୍ଷସ ଗର୍ଭକୁ ନୃସିଂହ ରୂପରେ ଯେ ବିଦାରଣ କରିଥିଲେ ସେହି କୃଷ୍ଣଙ୍କ ଅନ୍ତର କଥା ଜାଣିବା ବ୍ରହ୍ମାଙ୍କପକ୍ଷେ ମଧ୍ୟ ସମ୍ଭବ ନୁହେଁ । ସାରଥି କ'ଣ ଜାଣିବ ? ତେଣୁ ପ୍ରସନ୍ନ ଭାବରେ ଅପେକ୍ଷା କରନ୍ତେ କୃଷ୍ଣ କହିଲେ— ବିଦର୍ଭକୁ ଯିବା । ଏହା କହନ୍ତେ, ସାରଥି ସେ ଆଡ଼କୁ ରଥ ଚଳାଇଲା ।

ହେ ସାଧୁଜନମାନେ ! ଅତି ପ୍ରସନ୍ନ ରମାଙ୍କ ମୁଖ ଯେଉଁ ନୀଳାଦ୍ରିନାଥଙ୍କ ଜଗନ୍ନାଥଙ୍କ ବକ୍ଷରେ ମଣ୍ଡିତ ଅଛି, ତାଙ୍କର ସ୍ନାନବେଦୀରେ ବିଜେ ହେବା ବେଳର ମୂର୍ତ୍ତିର ପାଦପଦ୍ମରେ ଗ୍ରନ୍ଥକାର ଭ୍ରମର ହେବାକୁ କାମନା କରେ । ସେହି ମୁକ୍ତିଦାୟକ ପାଦପଦ୍ମ ଚୁମ୍ବିବାକୁ ତାକୁ ମିଳୁ ।

---

ଶବ୍ଦାର୍ଥ । ହିରଣ୍ୟ—ଏକ ଅସୁର ବିଶେଷ, ନୃସିଂହ ରୂପରେ ଯାହାକୁ କୃଷ୍ଣ ଭେଦିକରି ମାରିଥିଲେ । ହିରଣ୍ୟଗର୍ଭ—ନୃସିଂହ କୃଷ୍ଣଙ୍କ ପୂର୍ବରୂପ ହିରଣ୍ୟଗର୍ଭ—ବ୍ରହ୍ମା । ସୂତ—ସାରଥି । ନୀଳାଦ୍ରିଶିଖ ।—ନୀଳାଦ୍ରି ଶ୍ରେଷ୍ଠ, ଜଗନ୍ନାଥ । ମୁଖମଣ୍ଡପ—ସମ୍ମୁଖ ମଣ୍ଡପ, ସ୍ନାନବେଦୀ । ଅମ୍ବୁରୁହ—ପଦ୍ମ । ଶିଳୀମୁଖ—ଭ୍ରମର ।

# ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର

## ସପ୍ତମ କଳା

କଳହଂସ-କେଦାର ରାଗରେ ଏକପଞ୍ଚାଶତ୍ ପଦରେ ଏହି କଳା ସଂପୂର୍ଣ୍ଣ ହୋଇଛି ।

ଏକାକୀ କୃଷ୍ଣ ବିଦର୍ଭର କୁଣ୍ଡିନ ନଗରୀକୁ ଚତରତରରେ ଚାଲିଯିବାରୁ ତାହା ତଦନ୍ତରେ ଜାଣିପାରି ବଳରାମ ଚତୁରଙ୍ଗ ସୈନ୍ୟ ସମାବେଶରେ ପ୍ରକାଶ୍ୟରେ କୁଣ୍ଡିନରେ ଆସି ପହଞ୍ଚିଲେ ଏବଂ ଏକ ଉଦ୍ୟାନରେ କୃଷ୍ଣଙ୍କ ସହିତ ବିଶ୍ରାମ କଲେ ।

କବି ଏ କଳାରେ ବଳରାମ ଏବଂ କୃଷ୍ଣଙ୍କର ଅପରୂପ ବର୍ଣ୍ଣନାରେ ଏକାବେଳେ ଉଚ୍ଛନ୍ନ ହୋଇ ଉଠିଛନ୍ତି । ଧବଳମୂର୍ତ୍ତି ବଳଭଦ୍ର ଏବଂ ନୀଳବର୍ଣ୍ଣର କୃଷ୍ଣଙ୍କୁ କବି କପରି ଭାବରେ ଦେଖିଛନ୍ତି ତାହା କବି ଏପରି ଭାବରେ କହିଛନ୍ତି ଯାହା ପୂର୍ବବର୍ତ୍ତୀ ଗଠନ ପ୍ରାକୃତିକତାରେ ସାମାନ୍ୟ ସ୍ପନ୍ଦନ ଆଣିଦେଇଛି । ବଣିକ, ଗୋପାଳ, ବୈଦ୍ୟ, ମାଳୀମାନେ ଯେପରି ତାଙ୍କୁ ଭାବିଲେ, ତଦ୍ଦ୍ୱାରା ନଗରରେ ଏତେ ଲୋକ ରହିଥିବାର ପ୍ରମାଣ ଆସୁଥିଲେହେଁ ବର୍ଣ୍ଣନାରେ ଅପ୍ରାସଙ୍ଗିକତା ଆଣିଛି ।

ଜଗନ୍ନାଥଙ୍କୁ କୃଷ୍ଣ, ବଡ଼ଠାକୁରଙ୍କୁ ବଳଭଦ୍ର ସ୍ୱରୂପ କବି ଏତେ ଭକ୍ତିବିହ୍ୱଳ ଭାବେ ସମଗ୍ର ଜୀବନ ଅନୁଭବ କରିଥିଲେ ଯେ ତାଙ୍କର ପ୍ରକାଶ୍ୟରେ ସୌନ୍ଦର୍ଯ୍ୟବିଭବ ବର୍ଣ୍ଣନା ଲାଗି ସେ ବିଦର୍ଭର ରାଜଧାନୀକୁ କ୍ଷେତ୍ରରେ ପ୍ରଶସ୍ତ ବୋଲି ଧରିନେଇଛନ୍ତି । ବିଶେଷରେ ଏକାନ୍ତ ଅଜ୍ଞାତରେ କୃଷ୍ଣ ରୁକ୍ମିଣୀଙ୍କୁ ହରଣ କରିନେବାକୁ କବି ଗୌରବର ଅବମାନନା ମନେକରି ବୋଧହୁଏ ସମଗ୍ର ରାଜ୍ୟରେ ତାଙ୍କର ଆଗମନବାର୍ତ୍ତା ପ୍ରଚାରିତ କରାଇ ଦେଇଛନ୍ତି ।

ଏଠି ପ୍ରଶ୍ନ ଉଠିପାରେ ରୁକ୍ମୀ ଯେତେବେଳେ କୃଷ୍ଣଙ୍କ ସମସ୍ୟାରେ ବିରୋଧୀ ଥିଲା, ସେତେବେଳେ ସେ ତୁରନ୍ତ ଯୁଦ୍ଧ ଘୋଷଣା ମଧ୍ୟ କରିପାରିଥାନ୍ତା । ଏ ସମ୍ଭାବନା କବିଙ୍କୁ ଛୁଇଁନାହିଁ ଏହି କାରଣରୁ ଯେ ସେ କବି ।

ଏହି ଗ୍ରନ୍ଥରେ ଯେଉଁ ଉପବନରେ କୃଷ୍ଣ, ବଳରାମ, ଉଦ୍ଧବାଦି ରହିଲେ ତାର ପ୍ରତ୍ୟେକ ବୃକ୍ଷ, ପ୍ରତି ପୁଷ୍ପ, ପ୍ରତି ପକ୍ଷୀର ବର୍ଣ୍ଣନା କୃଷ୍ଣଙ୍କ ମନୋହାରୀ ବପୁ ସହିତ ତୁଳନା କରି ଦିଆଯାଇଛି । ହେଲେହେଁ ଏପରି ଉପବନରେ ଗୋପନରେ ସେମାନେ ରହିଥିଲେ କବିଙ୍କର ରଚନା ସଫଳ ହୋଇପାରିଥାନ୍ତା । କିନ୍ତୁ ସେ ଲେଖିଛନ୍ତି— ରୁକ୍ମୀ ଲୋକ ମୁଖରୁ ଶୁଣି—

କରଣମାଳୀ ଚତୁଭୁଜର କରଣ
ଏହା ମରଣ ଲେଖା ପାଞ୍ଚ ଧାରଣ
କାଲି ବଣୁ ଆସିଛି ଅବରଣରେ
ହସି ଭାଷିଲି ରୁକ୍ମୀ ଏହା ସଭରେ ।

ରୁକ୍ମୀ ଏହା କହିସାରିବା ପରେ ଶିଶୁପାଳ କହିଲି—

ଯେବେ ଅଧିକ କଷିହେବ ପ୍ରଚଣ୍ଡ
ଛେଦି ପାରିଇ ଅଷ୍ଟ ଦିଗ୍‌ଦନ୍ତିମୁଣ୍ଡ
ଫେଡି ଦେବ କେ ବିଭାବେଦିରୁ ମୋତେ
କହିଲି ଚେଦି ନୃପନନ୍ଦନ ଏତେ ଯେ ।

ଏଥି ମଧ୍ୟ ସମ୍ଭବ ହୋଇପାରେ, ରୁକ୍ମୀ ଓ ଶିଶୁପାଳ ଭାବିଲେ ଏଟା କ'ଣ କରିବ ? ଅବରଣରେ ଆସିଛି । ଏହାର ବା କି ଶକ୍ତି ଅଛି ? ଆମର ସୈନ୍ୟଦଳ ବେଢ଼ିଗଲେ ବାଟ ପାଇବ ନାହିଁ । ସେମାନେ କେବେ ଜାଣନ୍ତି ନାହିଁ ନିଶ୍ଚୟ ଯେ— ଯାହା ପାଇଁ ଏ ଆଡ଼ମ୍ବର ସେ ଗୋପନ ବାର୍ତ୍ତା ପଠାଇ ସାରିଛନ୍ତି । କେତେବେଳେ କି ଘଟଣା ଘଟିବ ତାହା ଜାଣନ୍ତି ଅତି ବିଶ୍ୱାସୀ ଜେମାର ସଙ୍ଗିମାନେ, ଜେମା, ପୁଣ୍ୟବନ୍ତ ବ୍ରାହ୍ମଣ ଜଣକ ଏବଂ କୃଷ୍ଣ । ତେଣୁ ପ୍ରକାଶ୍ୟରେ କୃଷ୍ଣ, ବଳରାମ ଆଟୋପରେ ରହିବାକୁ ସ୍ୱୀକାର ମଧ୍ୟ କରାଯାଇପାରେ ।

ଏ ଗ୍ରନ୍ଥରେ ଭକ୍ତମାନଙ୍କ ପ୍ରତି ଯଥୋପଯୁକ୍ତ ଉପାଦାନ ରହିଅଛି ରାମ ଏବଂ କୃଷ୍ଣଙ୍କ ବର୍ଣ୍ଣନାବୃତ୍ତୁଗରେ । ଏତେ ପୌରାଣିକ ଏବଂ ଉଚ୍ଚ କଳ୍ପନାସମ୍ଭୂତ କଥାମାନ କବି ତାଙ୍କ କୃତିତ୍ୱରେ ଦେଖାଇ ପାରିଛନ୍ତି ଯେ, ତାହା ପଢ଼ୁ ପଢ଼ୁ ବିସ୍ମୟାଭିଭୂତ ହେବାକୁ ପଡ଼ିଥାଏ ।



# ସପ୍ତମ କଳା

ରାଗ — କଳହଂସ-କେଦାର

ପ୍ରବନ୍ଧକାର-ବାର ବିଚାର ଚିତ୍ତେ
ଏ କଳା କଳ୍ପନାରେ ଚାତୁରୀ ଯେତେ
ମୁରପର ଭୂ-ସୁର ବଚନ ବଶେ
ଯାଉଁ ଯାନେ ଆରୋହି ବିଦର୍ଭ ଦେଶେ ଯେ । ୧ ।

**ଅନ୍ୱୟ** — (ହେ) 'ପ୍ରବନ୍ଧକାର-ବାର' ! ଏ କଳା କଳ୍ପନାରେ ଯେତେ ଚାତୁରୀ (ଅଛି,) (ତାହା) ଚିତ୍ତେ ବିଚାର (କର) । 'ମୁରପର' ଭୂ-ସୁରବଚନବଶେ ଯାନେ ଆରୋହି ଯାଉଁ ବିଦର୍ଭ ଦେଶେ (ପହଞ୍ଚିଲେ) ।

**କଥା** — ହେ କବିମାନେ ! ଏ କଳାର କଳ୍ପନାରେ ଯେତେ କୌଶଳ ଅଛି ତାହା ଚିତ୍ତରେ ବିଚାର କର । ମୁରାରି କୃଷ୍ଣ ସେହି ବ୍ରାହ୍ମଣ କହିବା ଅନୁସାରେ ରଥାରୋହଣ କରି ଯାଇଁ ବିଦର୍ଭ ଦେଶରେ ପହଞ୍ଚିଲେ ।



---

ଶବ୍ଦାର୍ଥ । ପ୍ରବନ୍ଧ—କବିତା । ପ୍ରବନ୍ଧକାର—କବି । ବାର—ସମୂହ । ପ୍ରବନ୍ଧକାର-ବାର—କବିମାନେ । ମୁରପର—ମୁର ଦୈତ୍ୟର ଶତ୍ରୁ, ଶ୍ରୀକୃଷ୍ଣ । ଭୂ-ସୁର—ବ୍ରାହ୍ମଣ । ବଶେ—ଅନୁସାରେ । ଚାତୁରୀ—କୌଶଳ ।

**ଯାଦବ ସଭା ଶୋଭା ବିଗତ ଅତି**
**ତୁହିନାଂଶୁ-ଶର୍ବରୀନେ ଯେସନ ଦ୍ୟୁତି**
**ଉଦ୍ଧବଙ୍କୁ ରେବତୀଧବ ଅନାଇଁ**
**କଥନ କଇଟଭ-ମର୍ଦ୍ଦନ କାହିଁ ହୋ ? । ୨ ।**

**ଅନ୍ୱୟ**—ଯେସନ ଗତ ତୁହିନାଂଶୁ-ଶର୍ବରୀନେ ( ଦେଖାଯାଏ, ତେସନ କୃଷ୍ଣବିହୀନରେ ) ଯାଦବ ସଭା ଅତି ବିଗତ ଶୋଭା ( ଦେଖାଗଲା )। ରେବତୀଧବ ଉଦ୍ଧବଙ୍କୁ ଅନାଇଁ କଥନ ( କଲେ ) କଇଟଭ-ମର୍ଦ୍ଦନ କାହିଁ ?

**କଥା**—ଯେମନ୍ତ ରାତ୍ର ଚନ୍ଦ୍ରମା ବିହୀନରେ ଅଶୋଭନୀୟ ଦେଖାଯାଏ ତେମନ୍ତ କୃଷ୍ଣ ଚାଲିଯିବାରୁ ଯାଦବମାନଙ୍କର ରାଜସଭା ଅତି ଅସୁନ୍ଦର ଦେଖାଗଲା । ରେବତୀଧବ ବଳରାମ ଉଦ୍ଧବଙ୍କୁ ଚାହିଁ କହିଲେ—କୃଷ୍ଣ କେଉଁଠି ?

---

**ଶବ୍ଦାର୍ଥ** । ତୁହିନାଂଶୁ—ଚନ୍ଦ୍ର । ବିଗତ ଶୋଭା—ଅଶୋଭନୀୟ, ଅସୁନ୍ଦର । ବିହୀନେ—ପ୍ରସ୍ଥିତ, ଶୂନ୍ୟ । ରେବତୀଧବ—ବଳରାମ । କଥନ—କହିଲେ । କଇଟଭ-ମର୍ଦ୍ଦନ—କୈଟଭର କଷ୍ଟ, କଷ୍ଟସ୍ୱରୂପୀ କୃଷ୍ଣ ।

**ନତକର ସେ ଉତ୍ତମାଙ୍ଗ ବଚ୍ଚୁରୁ**
**ଦେଶ-ସନ୍ଦେଶ-ବୁହା ଚ୍ଚର କୁହାରୁ**
**ବଣ୍ଡ ବଧ ଚୈଦ୍ୟର ଜଣା ଥିଲା ତ**
**ହେତୁ ହେଉଁ ହୋଇଲା ମୁଖ ଉନ୍ନତ ଯେ । ୭ ।**

ବିଲୋକନ ସଂଗ୍ରେ ଦାରୁକ ରତ
ଚିନ୍ତା ଶଡ଼ ହୋଇଲା ଦାରୁ-କରତ
ବହ୍ନ ସୁକ୍ତେ ଉକ୍ତ ଦେଲେ ଭୀଷ୍ମକ
ଗ୍ରାମଗାମୀ ହୋଇଲେ ହରିତାଂଶୁକ ଯେ । ୮ ।

**ଅନ୍ୱୟ**—ସେ ଉତ୍ତମାଙ୍ଗ ନତକର ବଚ୍ଚୁରୁ, ଦେଶ-ସନ୍ଦେଶ-ବୁହା ଚ୍ଚର କୁହାରୁ ଚୈଦ୍ୟର ବଣ୍ଡ ବଧ ଜଣା ଥିଲା ତ । (ସେ) ହେତୁ ହେଉଁ ମୁଖ ଉନ୍ନତ ହୋଇଲା ।

ବିଲୋକନ (କଲେ) ଦାରୁକ ସଞ୍ଚାରେ ରତ (ହୋଇସାରିଛି, ତେଣୁ ତାଙ୍କ ଶଡ଼ (କୁ) ଚିନ୍ତା ଦାରୁ (କୁ) କରତ ପ୍ରାପ୍ତ ହୋଇଲା । ବହ୍ନ ସୁକ୍ତେ ଉକ୍ତ ଦେଲେ ହରିତାଂଶୁକ ଭୀଷ୍ମକ-ଗ୍ରାମଗାମୀ ହୋଇଲେ ।

**କଥା**—ସେ ଉଦ୍ଧବ ନିଜର ମସ୍ତକ ନୁଆଇଁ କଣ କହିବେ ବଚ୍ଚର କରୁ କରୁ ବିଭିନ୍ନ ରାଜ୍ୟ ବାର୍ତ୍ତାବହନକାରୀ ଦୂତ ସଂବାଦରୁ ଶିଶୁପାଳର ବିବାହ କଥା ତ ଶୁଣିଥିଲେ, ତା ମନରେ ପଡ଼ିଯିବାରୁ ମୁହଁ ଟେକିଲେ ।

ଦେଖିଲେ ଶ୍ରୀକୃଷ୍ଣ ସାରଥି ଦାରୁକ ଯାତ୍ରା କରିସାରିଛି । ତେଣୁ ତାଙ୍କ ଶଡ଼କୁ ଚିନ୍ତା, କାଠକୁ କରତ କାଟିଲା ପ୍ରାୟ କାଟି ପକାଇଲା । ଏକାକୀ ଏକ ବିଷମ ସ୍ଥଳୀକୁ ଯାଦବପତି କୃଷ୍ଣ ଯାଉଥିବାରୁ ଏକାନ୍ତ ବିସ୍ମିତ ହୋଇ ସେ ବଳଦେବଙ୍କୁ କହିଲେ—ପୀତାମ୍ବର ଶ୍ରୀକୃଷ୍ଣ ଭୀଷ୍ମକ ରାଜାଙ୍କ ଗ୍ରାମ ବିଦର୍ଭକୁ ଯାଉଅଛନ୍ତି ।

---

ଶବ୍ଦାର୍ଥ । ଉତ୍ତମାଙ୍ଗ—ମସ୍ତକ । ଦେଶ-ସନ୍ଦେଶ-ବୁହାଚ୍ଚର—ରାଜ୍ୟ ବାର୍ତ୍ତା ବହନକାରୀ ଦୂତ । କୁହା—ବାର୍ତ୍ତା । ଚୈଦ୍ୟ—ଚେଦିରାଜନନ୍ଦନ ଶିଶୁପାଳ ହେତୁ—ଦୋଷ । ମୁଖ ଉନ୍ନତ—ମୁହଁ ଟେକିବା । ବିଲୋକନ—ଦେଖିକ । ଦାରୁକ—କୃଷ୍ଣ ସାରଥି । ସଞ୍ଚରେ—ଗମନରେରତ, ଅନୁରକ୍ତ, ଆସକ୍ତ ଦାରୁ—କାଷ୍ଠ ଭୀଷ୍ମକଗ୍ରାମ—ବିଦର୍ଭଦେଶ । ହରିତାଂଶୁକ—ପୀତାମ୍ବର ଗ୍ରାମ ଗାମୀ—ଗ୍ରାମଯାତ୍ରୀ ।

କୂଟ-ବିରଚନରେ ମୁକୁଟ ଶିରେ
ପରିପତ ହୋଇବ ପଶ୍ଚି ବର୍ଗରେ
ଆଶ୍ରିସୁଛି ଭାସୁଛି ମନକୁ ମୋର
କଳ୍ପନା ଅଲୀକ ଏହା ନ କର ଯେ । ୫ ।
ପ୍ରସ୍ଥାଣ-ମନ୍ତ୍ରଣାରେ ପିତୃଶ୍ରେଣୀରେ
ସୀରପାଣି ମଣ୍ଡିଲେ ଶିର ପାଣିରେ
ଶତାଙ୍ଗ ଅଙ୍ଗୀକାର କରନ୍ତେ ସୈନ୍ୟ
ବିରାଜିଲେ ଯେପରେ ଖ–ରାଜି ଶୂନ୍ୟ ଯେ । ୬ ।

**ଅନ୍ୱୟ**—କୂଟ-ବିରଚନରେ ଶିରେ ମୁକୁଟ ପରିପତ ହୋଇବ ପଶ୍ଚି ବର୍ଗରେ (ଏ) କଳ୍ପନା ମନକୁ ମୋର ଆଶ୍ରିସୁଛି (ପୁଣି) ଭାସୁଛି । (ତେଣୁ) ଏହା ଅଲୀକ ନ କର ।

(ତା ଶୁଣି) ସୀରପାଣି (ବଳଦେବ) ପ୍ରସ୍ଥାଣ-ମନ୍ତ୍ରଣାରେ ପିତୃଶ୍ରେଣୀରେ ଶିର (କୁ) ପାଣିରେ ମଣ୍ଡିଲେ । ସୈନ୍ୟ ଶତାଙ୍ଗ ଅଙ୍ଗୀକାର କରନ୍ତେ । ଯେପରେ ଶୂନ୍ୟ ଖ-ରାଜି ସେପରି ବିରାଜିଲେ ।

**କଥା**—ଉଦ୍ଧବ କହିଲେ—କପଟତା ରଚନାଦ୍ୱାରା ରୁକ୍ମିଣୀଙ୍କ ବିବାହରେ କୃଷ୍ଣଙ୍କ ଶିରରେ ମୁକୁଟ ଖଞ୍ଜା ହେବ ବୋଲି ମୁଁ ଭାବୁଛି । ଏ କଳ୍ପନା ମୋ ମନକୁ ଘୋର ଆଚ୍ଛନ୍ନ କରୁଛି, ଏପରିକି ଯେପରି ସେପରି ମନରେ ଭାସି ଉଠୁଛି । ତେଣୁ ଏ କଥାକୁ ହେ ବଳଦେବ, ତୁମ୍ଭେ ତୁଚ୍ଛ ବୋଲି ନ ଭାବ ।

ଏହା ଶୁଣି ବଳଦେବ ବିଦର୍ଭକୁ ଯିବା ମନ୍ତ୍ରଣା ସ୍ଥିରକରି ଗୁରୁଜନମାନଙ୍କୁ ମସ୍ତକରେ ହସ୍ତଦେଇ ନମସ୍କାର କଲେ । ତହୁଁ ସୈନିକମାନେ ରଥ ସଜାଇ ଆଣନ୍ତେ ଯେପରନ୍ତେ ଶୂନ୍ୟରେ ପକ୍ଷୀମାନେ ଉଡ଼ଥାନ୍ତି ସେହିପରି ରଥ ଉଡ଼ାଇ ଚାଲିଗଲେ ।

---

ଶବ୍ଦାର୍ଥ—କୂଟ—କପଟ, ଛଳନା । ଶିରେ ମୁକୁଟ ପରିପତ ହୋଇବ—ବିବାହ ବେଳେ ମୁକୁଟ ପିନ୍ଧିବେ । ଆଶ୍ରିସୁଛି—ଆଚ୍ଛନ୍ନ କରୁଛି । ଭାସୁଛି—ଭାସିଉଠୁଛି । ଅଲୀକ ନ କର—ମିଛ ବୋଲି ନ ଭେନ । ସୀରପାଣି—ବଳରାମ । ଶିର-ମନ୍ତ୍ରଣା ପ୍ରସ୍ଥାଣ—ଯାତ୍ରା । ପିତୃଶ୍ରେଣୀ ଗୁରୁଜନମାନେ । ପାଣି—ହସ୍ତ । ଶତାଙ୍ଗ—ରଥ । ଅଙ୍ଗୀକାର—ସ୍ୱୀକାର । ରାଜି—ସମୂହ ।

ଚତୁରଙ୍ଗ-ବଳଙ୍କ ଚଳନ ବେଗ
ଆଜ୍ଞା ଦେଲା ମନକୁ ପାଲଟ ଆଗ
ବେନ ବର୍ଣ୍ଣକୁ ଏହ୍ନ ପରଟେର କଲେ
ଯାହା ହୋଇବ ସଦାଗତ ହୋଇଲେ ଯେ । ୭ ।
ଭୀଷ୍ମକ ରଜା ରଜ୍ୟ ନିକଟବର୍ତ୍ତୀ
ହୋଇଥିଲେ ଭେଟିଲେ ଯାଇଁ ଝଟତ
ପ୍ରଲମ୍ବାସୁର-ପରେ ପ୍ରଣାମ ଭାବ
ଭାବଗ୍ରାହୀ ବରଜୁଁ ଭାଷେ ଉଦ୍ଧବ ଯେ । ୮ ।

**ଅନ୍ୱୟ**—ଚତୁରଙ୍ଗ-ବଳଙ୍କ ଚଳନବେଗ ମନକୁ ଆଜ୍ଞା ଦେଲା--ସଦାଗତ ଆଗ ବେନ ବର୍ଣ୍ଣକୁ ଏହ୍ନ ପରରେ ପାଲଟ କଲେ ଯାହା ହୋଇବ (ତାହା) ହୋଇଲେ ।

(କୃଷ୍ଣ) ଭୀଷ୍ମକ ରଜା ରଜ୍ୟ ନିକଟବର୍ତ୍ତୀ ହୋଇଥିଲେ, (ବଳରାମ) ଯାଇ ଝଟତ ଭେଟିଲେ । 'ପ୍ରଲମ୍ବାସୁର-ପରେ' ପ୍ରଣାମ ଭାବ ଭାବଗ୍ରାହୀ ବରଜୁଁ ଉଦ୍ଧବ ଭାଷେ ।

**କଥା**—ବଳରାମଙ୍କ ଚତୁରଙ୍ଗ ସେନାଙ୍କ ଗତିବେଗ ଏପରି ହେଲା ଯେ ତାହା ମନର ଗତିକୁ ଅଜ୍ଞାଧୀନ କରଦେଲା । ଉକ୍ତ ସେନାଙ୍କ ଗତି ଦେଖି ସଦାଗତି ପବନ ତାଙ୍କ ସଦାଗତି ନାମର ପ୍ରଥମ ଦୁଇ ଅକ୍ଷରକୁ ଓଲଟାଇଲେ ଯେଉଁ 'ଦାସ' ହେବ ତାହା ହେଲେ ।

ଏଣେ ଶ୍ରୀକୃଷ୍ଣ ଭୀଷ୍ମକ ରଜାଙ୍କ ରଜ୍ୟ ବଦର୍ଭ ନିକଟବର୍ତ୍ତୀ ହୋଇଥିଲେ । ବଳରାମ ଯାଇ ତାଙ୍କୁ ଝଟତ ଭେଟିଲେ । ତାଙ୍କୁ କୃଷ୍ଣ ପ୍ରଣାମ କରନ୍ତେ, ଉଦ୍ଧବ କହିଲେ—

---

ଶବ୍ଦାର୍ଥ । ଚତୁରଙ୍ଗ—ହସ୍ତୀ, ଅଶ୍ୱ, ରଥ, ପଦାତ, ଏହି ଚାରି ଜାତିର ସେନ । ବଳ—ସୈନ୍ୟ । ଚଳନ—ଗତି । ମନକୁ ଆଜ୍ଞାଦେଲା—ମନର ଗତିକୁ ବଳିଗଲା । ସଦାଗତ—ପବନ । ପ୍ରଲମ୍ବାସୁରପର - ବଳରାମ । ପର—ଶତ୍ରୁ । ପ୍ରଲମ୍ବ ସୁର—ପରେ—ବଳରାମଙ୍କଠାରେ । ପ୍ରଣାମଭାବ-ପ୍ରଣତ । ଭାବଗ୍ରାହୀ—କୃଷ୍ଣ । ବରଜୁ--ବହୁଁ ।

**ଜଣକୁ ଜଣା ନାହିଁ କଲ ପ୍ରୟାଣ**
**ବକୀ ଜୀବନ ଯୋଗର କି ଏ ଗୁଣ**
**ଗୋକୁଳ-ଦାବାନଳ ଜୀର୍ଣ୍ଣ ଉଦରେ**
**ଶୀର୍ଣ୍ଣ ନୋହି ରହିଛି କେଉଁ ବଳରେ ଯେ । ୯ ।**

**ଚୈଦ୍ୟ ଅପୂର୍ବ ମଦ୍ୟ ଆହାର ଘେନ**
**ତା ବଧ କଥା ବୃଥା କଲା ମୋ ଜ୍ଞାନ**
**କାଞ୍ଚିତରେ ଶତ୍ରୁରେ ଦୋଷ ନ ଧର**
**ଶୁଦ୍ଧତର ଉଦ୍ଧବ ମାଧବ ଗିର ଯେ । ୧୦ ।**

**ଅନ୍ୱୟ**—(ହେ କୃଷ୍ଣ !) ଜଣକୁ ଜଣା ନାହିଁ, (ତୁମ୍ଭେ) ପ୍ରୟାଣ କଲ । ବକୀ-ଜୀବନ ଯୋଗର ଏ ଗୁଣ କି ? (ଯେଉଁ) ଉଦରେ ଗୋକୁଳ-ଦାବାନଳ ଜୀର୍ଣ୍ଣ, ତା କେଉଁ ବଳରେ ଶୀର୍ଣ୍ଣ ନୋହି ରହିଛି ?

ମାଧବ ଶୁଦ୍ଧତର ଗିର (ରେ କହିଲେ, ଏ କଥା) ଘେନ । ଅପୂର୍ବ ମଦ୍ୟ ଆହାର ଚୈଦ୍ୟ, ତା ବଧ କଥା ମୋ ଜ୍ଞାନ ବୃଥା କଲା । (ହେ) ଉଦ୍ଧବ ! ଶତ୍ରୁରେ କାଞ୍ଚିତରେ ଦୋଷ ନ ଧର ।

**କଥା**—ହେ କୃଷ୍ଣ, କାହାରିକୁ ନ ହେଲେ ଜଣକୁ ଜଣା ନାହିଁ, ତୁମ୍ଭେ ଚାଲିଆସିଲ ? ତୁମେ ଶିଶୁ ଅବସ୍ଥାରେ ବକ ଦୈତ୍ୟର ଭଗିନୀ ପୂତନାର ଜୀବନ ଗୋପନରେ ଯେପରି ନାଶ କରିଥିଲ, ସେଇ ଗୁଣ ଏହା ନୁହେଁ କି ?

ହଇହେ ! ଗୋପପୁରସ୍ଥ ଭୀଷଣ ଦାବାନଳ ଯାହା ସମଗ୍ର ଦେଶର ଧ୍ୱଂସର କାରଣ ହୋଇଥାନ୍ତା, ତାକୁ ତୁମେ ଯେଉଁ ଗର୍ଭରେ ଜୀର୍ଣ୍ଣ କରି ଦେଇଥିଲ ସେହି ଦୁଃଖ ଦାବାନଳ କେଉଁ ବଳରେ ଶୀର୍ଣ୍ଣ ନ ହୋଇ ରହିଗଲା ଅବା ? ଏ ଧାରଣା ଥିବା ଯାଦବ-ମାନଙ୍କର ଦୁଃଖ ନ ଥିବ । କିନ୍ତୁ ତୁମେ ନ କହି ଆସିବାଦ୍ୱାରା ପ୍ରତି ହୃଦୟରେ ଦାବାନଳ ଯେ ଜଳିଉଠିଲା ।

କୃଷ୍ଣ ପରିଶୁଦ୍ଧ ଭାଷାରେ କହିଲେ—ଏ କଥା ଗ୍ରହଣ କର । ମହାନ୍ ମଦୁଆ ଶିଶୁପାଳ, ପୁଣି ତାହା ବିବାହ ପ୍ରସଙ୍ଗ ମୋ ଜ୍ଞାନ ନଷ୍ଟ କରିଦେଲା । ମୁଁ ମଧ୍ୟ ସେ ନିଶାରେ ପଡ଼ି ହତଚେତନ ହୋଇଗଲି । ତେଣୁ ରେ କାଞ୍ଚିତ୍ ମଧ୍ୟ ମୋ ଦୋଷ ନ ଧର । ନ ହେଲେ କି ମୁଁ ତୁମ୍ଭମାନଙ୍କୁ ଭୁଲିପାରେ ? ଯୌବନରେ ବିବାହ ନିଶା କିପରି ନ ଜାଣ କି ?

---

ଶବ୍ଦାର୍ଥ । ପ୍ରୟାଣ—ଯାତ୍ରା । ବକୀ—ବକ ଦୈତ୍ୟର ଭଗିନୀ ପୂତନା । ଯୋଗ—ଜୀବର ପରମ ମିଳନ, ମୃତ୍ୟୁ । ଗୋକୁଳ—ଯମୁନା ତୀରସ୍ଥ ପ୍ରାଚୀନ ନଗର, ଗୋପ । ଦାବାନଳ—ବନାଗ୍ନି । ଶୁଦ୍ଧତର—ଅତି ପରିଶୁଦ୍ଧ । ଅପୂର୍ବ—ପୂର୍ବରୁ ଦେଖା ନ ଥିବା । ଚୈଦ୍ୟ—ଶିଶୁପାଳ । ଜ୍ଞାନହୀ—ଅଜ୍ଞାନ ।

**କାଳନ୍ଦୀ-ଭେଦନ ଏ କାଳେ କାଳୀୟ-**
**ମର୍ଦ୍ଦନରେ ସଂଲଗ୍ନ କଲେ ହୃଦୟ**
**ବେନ ପ୍ରତୀକ ଏକ ପ୍ରତୀକ ହେଲା**
**ଅଷ୍ଟମୀରାତ-ଭାତ-ବର୍ଣ୍ଣ ବହିଲା ଯେ । ୧୧ ।**

**ବେନିଜନଙ୍କ ଅଙ୍କ ପଲଙ୍କ ଶେଯେ**
**ଭୁଙ୍ଗ ଆଶ୍ଳେଷ ରଙ୍ଗ ଭଙ୍ଗରେ ବଜେ**
**ସରଣୀ ଲଙ୍ଘନରେ ଜଙ୍ଘାଲ ପଣ**
**କରଣୀରେ ସଇନ୍ୟ ହେଲେ ନପୁଣ ଯେ । ୧୨ ।**

**ଅନ୍ୱୟ**—ଏକାଳେ କାଳନ୍ଦୀ-ଭେଦନ କାଳୀୟ ମର୍ଦ୍ଦନରେ ହୃଦୟ ସଂଲଗ୍ନ କଲେ । ବେନ ପ୍ରତୀକ ଏକ ପ୍ରତୀକ ହେଲା । (ତାହା) ଅଷ୍ଟମୀରାତ-ଭାତ-ବର୍ଣ୍ଣ ବହିଲା ।

(ସେ) ବେନିଜନଙ୍କ ଅଙ୍କପଲଙ୍କ ଶେଯେ ଆଶ୍ଳେଷ ଭୁଙ୍ଗ ରଙ୍ଗଭଙ୍ଗରେ ବଜେ (ହୋଇଥିବା ପ୍ରାୟ ହେଲା) । (ତହୁଁ) ସଇନ୍ୟ ଜଙ୍ଘାଲ ପଣ-କରଣୀରେ ସରଣୀ ଲଙ୍ଘନରେ ନପୁଣ ହେଲେ ।

**କଥା**—ଏହି ସମୟରେ ବଳରାମ ଶ୍ରୀକୃଷ୍ଣଙ୍କୁ କୁଣ୍ଢାଇ ପକାଇବାରୁ ଦୁହିଁଙ୍କ ଅଙ୍ଗ ଗୋଟିଏ ଅଙ୍ଗ ବୋଲି ଜଣାଗଲା । ତାହା ଅଷ୍ଟମୀ ରାତର ଚନ୍ଦ୍ରମାର ବର୍ଣ୍ଣ ଧାରଣ କଲା । ଅଷ୍ଟମୀ ଚନ୍ଦ୍ରମାର ଅର୍ଦ୍ଧାଂଶ ଯେପରି କୃଷ୍ଣ ଅପର ଅର୍ଦ୍ଧାଂଶ ଯେପରି ଶୁକ୍ଳ ଦେଖାଯାଏ ସେହିପରି ଦେଖାଗଲା । ସେ ଦୁହିଁଙ୍କ ଦେହ ପଲଙ୍କ ଶଯ୍ୟାରେ ଆଲିଙ୍ଗନରେ ଯେପରି ଏକାନ୍ତ ଅନୁରାଗ ଭଙ୍ଗୀରେ ଅବା ବଜେ ହୋଇଛି ଏପରି ମନେହେଲା । ତାପରେ ସୈନ୍ୟମାନେ ଦ୍ରୁତଗମନ କରିବା ଲାଗି ପଥ ଲଙ୍ଘନ କରିବାକୁ ଲାଗିଲେ ।

---

ଶବ୍ଦାର୍ଥ । କାଳନ୍ଦୀ—ଯମୁନାନଦୀ । ଭେଦନ—ବିଦାରଣ । କାଳନ୍ଦୀଭେଦନ—ବଳରାମ । କାଳୀୟମର୍ଦ୍ଦନ—ଶ୍ରୀକୃଷ୍ଣ । କରଣୀ—ଘଟନ, କୃତିତ୍ୱ । ସଂଲଗ୍ନ—ଯୋଡ଼ିବା । ପ୍ରତୀକ—ଅଙ୍ଗ । ଭାତ—ଦୀପ୍ତି । ରାତଭାତ—ଚନ୍ଦ୍ରମା । ଭଙ୍ଗ—ଭଙ୍ଗୀ । ଭୁଙ୍ଗ ରଙ୍ଗ—ଏକାନ୍ତ ଅନୁରାଗ । ସାରଣୀ—ପଥ । ଜଙ୍ଘାଲ—ଦ୍ରୁତଗମନ । ଜଙ୍ଘାଲପଣ କରଣୀ—ଦ୍ରୁତ ଗମନ କରିବା କୃତ୍ୟରେ ।

ନନ୍ଦୀ ଭୃଙ୍ଗୀ ଦ୍ୱାରୀ ମନ୍ଦିର-ପତି
ବନ୍ଦିତ ବନ୍ଦୀ ପରି ଯାହାଙ୍କ କୀର୍ତ୍ତି
ବନ୍ଦିହୋଇ ଭୀଷ୍ମକ-ନନ୍ଦିନୀ ବୋଲେ
ନନ୍ଦିଘୋଷ ଆରୋହି ପଛେ ରହିଲେ । ୧୩ ।
ଅଗ୍ରବର୍ତ୍ତୀ ରେବତୀ ପତି ବିମାନ
କୁଣ୍ଡିନପୁରଦାଣ୍ଡ କଲା ମଣ୍ଡନ
ଚକ୍ରୀଚକ୍ରଙ୍କ ଡାକ ପରାକ୍ରମତା
ଦହିଦେଲା ଗୃହୀଙ୍କ ବ୍ୟବହାରତା ଯେ । ୧୪ ।

**ଅନ୍ୱୟ**—(ଯେଉଁ) ମନ୍ଦିର-ପତି (ଙ୍କର) ଦ୍ୱାରୀ ନନ୍ଦୀ ଭୃଙ୍ଗୀ, (ତାଙ୍କଦ୍ୱାରା) ଯାହାଙ୍କ କୀର୍ତ୍ତି ବନ୍ଦୀ ପରି ବନ୍ଦିତ, (ସେ) ଭୀଷ୍ମକନନ୍ଦିନୀ ବୋଲେ ବନ୍ଦୀହୋଇ ନନ୍ଦିଘୋଷ ଆରୋହି ପଛେ ରହିଲେ ।

ଅଗ୍ରବର୍ତ୍ତୀ (ହୋଇ) ରେବତୀ ପତି ବିମାନ, କୁଣ୍ଡିନପୁର ଦାଣ୍ଡ ମଣ୍ଡନ କଲା । ଚକ୍ରୀ ଚକ୍ରଙ୍କ ଡାକ ପରାକ୍ରମତା (ଦ୍ୱାରା) ଗୃହୀଙ୍କ ବ୍ୟବହାରତା ଦହିଦେଲା ।

**କଥା**—ଯେଉଁ ମନ୍ଦିର-ପତିଙ୍କର ଦ୍ୱାରୀ ନନ୍ଦୀଭୃଙ୍ଗୀ ଏମନ୍ତ ଯେ ମହାଦେବ ଶିବ ତାଙ୍କଦ୍ୱାରା ଯାହାଙ୍କ କୀର୍ତ୍ତି ଭାଟ ପ୍ରାୟେ ବନ୍ଦିତ ହୁଏ, ସେହି ବିଷ୍ଣୁ ସ୍ୱରୂପୀ କୃଷ୍ଣ ଭୀଷ୍ମକକନ୍ୟା ରୁକ୍ମଣୀଙ୍କ ବୋଲରେ କାରାରୁଦ୍ଧ ହେଲା ପରି ନନ୍ଦିଘୋଷ ରଥରେ ଆରୋହଣ କରି ପଛରେ ରହିଲେ ।

ଆଗୁଆ ହୋଇ ରେବତୀପତି ବଳରାମଙ୍କ ରଥ କୁଣ୍ଡିନପୁର ଦାଣ୍ଡ ମଣ୍ଡି ପକାଇଲା । ରଥମାନଙ୍କର ଚକର ଡାକ ଏତେ ଜୋରରେ ହେଲା ଯେ ସେଠାରେ ଯେଉଁ ଗୃହସ୍ଥମାନେ ନିଜ ନିଜ କାର୍ଯ୍ୟରେ ବ୍ୟସ୍ତ ଥିଲେ ତା ଛାଡ଼ି ସେମାନେ ଦେଖିବାକୁ ଦୌଡ଼ିଲେ ।

---

ଶବ୍ଦାର୍ଥ । ଯେଉଁ ମନ୍ଦିର-ପତିଙ୍କ ଦ୍ୱାରୀ ନନ୍ଦୀ ଭୃଙ୍ଗୀ—ମହାଦେବ ଶିବ । ବନ୍ଦୀପରି—ଭାଟପ୍ରାୟେ । ବନ୍ଦିହୋଇ—କାରାରୁଦ୍ଧ ପ୍ରାୟେ । ଭୀଷ୍ମକନନ୍ଦିନୀ—ରୁକ୍ମଣୀ । ନନ୍ଦିଘୋଷ—କୃଷ୍ଣଙ୍କ ରଥର ନାମ । ରେବତୀପତି—ବଳରାମ । ଚକ୍ରୀ—ରଥ । ବ୍ୟବହାରତା—ନିଜନିଜ କାର୍ଯ୍ୟ ।

ଏକମନେ ଗମନେ ସମସ୍ତେ ରସି
ରଥ ମନ୍ଥନ ପଥେ ମିଳିଲେ ଆସି
କଦମ୍ବ ଫୁଲ ତୁଲ ହୋଇଲା ରୋମ-
କଦମ୍ବ ହୋଇଗଲା କ୍ଷଣି ଉଦ୍‌ଗମ ଯେ ।୧୫।

ମୋଦାଶ୍ରୁ-ଜଳେ ଓଦା କଲେ ହୃଦୟ
ଛଡ଼ାଇଦେଲେ ନେତ୍ରୁ ପିଛଡ଼ାଚୟ
ବଳ ଧବଳ ଅଧବଳ ଦୁକୂଳ
ଦେଖି ନାନା ବିଭ୍ରମେ ହୋଇଲେ ଭୋଳ ଯେ ।୧୬।

**ଅନ୍ୱୟ**—ଏକମନେ ସମସ୍ତେ ଗମନେ ରସି ରଥ ମନ୍ଥନ-ପଥେ ଆସି ମିଳିଲେ । ରୋମ କଦମ୍ବ-ଉଦ୍‌ଗମ ହୋଇଗଲାକ୍ଷଣି କଦମ୍ବ ଫୁଲ ତୁଲ ହୋଇଲା ! ଧବଳ ବଳ (ଏବଂ ତାଙ୍କ) ଅଧବଳ ଦୁକୂଳ ଦେଖି ମୋଦାଶ୍ରୁ ଜଳେ ହୃଦୟ ଓଦା କଲେ (ଏବଂ) ନେତ୍ରୁ ପିଛଡ଼ାଚୟ ଛଡ଼ାଇଦେଲେ । (ଏମନ୍ତ କି) ନାନା ବିଭ୍ରମେ ଭୋଳ ହୋଇଲେ ।

**କଥା**—ଏକମନରେ ସମସ୍ତେ ଆନନ୍ଦମନ କରି ରଥ ମନ୍ଥିତ ଦାଣ୍ଡରେ ଏକତ୍ର ହେଲେ । ଚହଳିବା ମାତ୍ରେ ସେମାନଙ୍କର ରୋମସମୂହ ଉତ୍ଥିତ ହେବାକ୍ଷଣି କଦମ୍ବଫୁଲ ପ୍ରାୟ ଠିଆ ଠିଆ ହୋଇଗଲା । ରୋମୋଦ୍‌ଗମ ହେଲା । ଧବଳବର୍ଣ୍ଣ ବିଶିଷ୍ଟ ବଳଦେବ ଏବଂ ତାଙ୍କର ନୀଳବସ୍ତ୍ର ଦେଖି ସେମାନେ ଆନନ୍ଦାଶ୍ରୁ ଜଳରେ ବକ୍ଷ ଓଦା କଲେ ଏବଂ ନେତ୍ରରୁ ପିଚ୍ଛୁଳାମାନ କାଢ଼ିଦେଲେ । ଅନେକ ନେତ୍ରରେ ଅନାଇଁ ରହିଲେ । ଏମନ୍ତ କି ନାନା ବିଭ୍ରାନ୍ତିରେ ମତ୍ତ ହୋଇ କିଏ, କି ସୁନ୍ଦର, କୁଆଡ଼େ ଆସିଛନ୍ତି, ଏପରି କଳ୍ପନା କରିବାକୁ ଲାଗିଲେ ।

---

ଶବ୍ଦାର୍ଥ । ଗମନେ ରସି—ଆନନ୍ଦରେ ଆସିବା । ରଥ ମନ୍ଥନ ପଥ—ରଥ ମଥିତ ଦାଣ୍ଡ । କଦମ୍ବ—ସମୂହ । ଉଦ୍‌ଗମ—ଉତ୍ଥିତ, ଜାତ । ବଳ—ବଳଦେବ । ଅଧବଳ—ନୀଳ । ଦୁକୂଳ—ବସ୍ତ୍ର । ମୋଦାଶ୍ରୁ—ଆନନ୍ଦାଶ୍ରୁ । ପିଛଡ଼ା—ପିଚ୍ଛୁଳା । ବିଭ୍ରମେ—ବିଭ୍ରାନ୍ତିରେ । ଭୋଳ—ମତ୍ତ ।

ବପ୍ରେ ଭବଲେ ଏ ଜାହ୍ନବୀ ଯମୁନା
ଯା ଲଭିଲେ ବସୋର ହୁଏ ଯମୁନା
ପ୍ରୟାଗ ତୀର୍ଥ ପୁରୁଷାର୍ଥ-ନିକର
ତୁଣ୍ଡେ ଉଚ୍ଚାର ମୁଣ୍ଡେ ମଣ୍ଡିଲେ କର ଯେ । ୧୭ ।

ଶୁଦ୍ଧ ବ୍ରହ୍ମ ଜାତୀୟ ହୀର ବାସବ
ଅସିତ-ରତନର ଆସ୍ୟ ଆସିବ
ଲାଗିଲା ବଣିଜାର ଶ୍ରେଣୀରେ ଯାଇଁ
ଭଣିଦେଲା ହୃଦୟ କଣିବା ପାଇଁ ଯେ । ୧୮ ।

**ଅନ୍ୱୟ**—(ସେଠାରେ) ବପ୍ରେ ଭବଲେ ଏ ଜାହ୍ନବୀ ଯମୁନା (ନିଶ୍ଚୟ ଅଟେ) । ଯା ଲଭିଲେ ଯମ ନା ବସୋର ହୁଏ । ପୁରୁଷାର୍ଥ-ନିକର ପ୍ରୟାଗ ତୀର୍ଥ ତୁଣ୍ଡେ ଉଚ୍ଚାର ମୁଣ୍ଡେ କର ମଣ୍ଡିଲେ ।

ବଣିଜାର ଶ୍ରେଣୀରେ ଯାଇଁ ଲାଗିଲା, ଶୁଦ୍ଧ ବ୍ରହ୍ମ ଜାତୀୟ ହୀର ବାସବ ଅସିତ ରତନର ଆସ୍ୟ (ଏଥି) ଆସିବ । (ସେମାନଙ୍କ) ହୃଦୟ କଣିବା ପାଇଁ ଭଣିଦେଲା ।

**କଥା**—ସେ ନଗରର ବ୍ରାହ୍ମଣମାନେ ବଳଦେବଙ୍କ ସୁନ୍ଦର ପଣ ଦେଖି ଭାବିଲେ, ଏ ନିଶ୍ଚୟ ଶୁକ୍ଳ ନୀର ଜାହ୍ନବୀ ଏବଂ ନୀଳଜଳା ଯମୁନାର ମିଶ୍ରଣ ଅଟେ ଯାହା ଲାଭ କଲେ ଯମ ନାଁ ଭୁଲିଯିବାକୁ ହୁଏ । ଧର୍ମାର୍ଥ-କାମ-ମୋକ୍ଷରେ ସାର ପ୍ରୟାଗ ତୀର୍ଥ ଯାହାକି ଗଙ୍ଗା ଯମୁନାର ସଙ୍ଗମ-ଭୂମି. ତାହା ମଣି ତୁଣ୍ଡରେ ସେହି ପୁଣ୍ୟସ୍ଥଳୀ ଉଚ୍ଚାରଣ କରି ନମସ୍କାର କଲେ ।

ଏ ରୂପର ମହାନତା ବଣିକମାନଙ୍କ ମଧ୍ୟରେ ଆଲୋଚିତ ହେଲା ଯେ ଏଥିରେ ଶୁଦ୍ଧ ବ୍ରହ୍ମଜାତି ହୀରା ହାଙ୍ଗକୁ ଇନ୍ଦ୍ରନୀଳମଣି ଆକୃତି ଆସିଯାଉଛି । ତେଣୁ ସେମାନଙ୍କ ହୃଦୟ କଣିବା ଲାଗି କହିଦେଲା । ଆଗ୍ରହୀ ହେଲା ।

---

ଶବ୍ଦାର୍ଥ । ଯମୁ—ଯମଠାରୁ । ନାଁ ବସୋର ହୁଏ—ନାଁ ଭୁଲ୍ ହୁଏ, ଯମ ନାଁ ମନେ ନ ପଡ଼େ ବା ଯମ ନାଁ ଭୁଲିଯାଏ. ମୃତ୍ୟୁ ନ ହୁଏ । ପୁରୁଷାର୍ଥ—ଧର୍ମାର୍ଥ-କାମ-ମୋକ୍ଷ । ନିକର—ସାର, ସମୂହ । ମୁଣ୍ଡେ କର ମଣ୍ଡିଲେ—ନମସ୍କାର କଲେ । ବଣିଜାର—ବଣିକ । ଶ୍ରେଣୀ—ସମୂହ । ବ୍ରହ୍ମଜାତ ହୀର—ଅତିଶୁଭ୍ର ଉତ୍କୃଷ୍ଟ ହୀରକ । ବାସବ—ଇନ୍ଦ୍ର । ଅସିତ—ନୀଳ । ରତନ—ରତ୍ନ, ମଣି । ଆସ୍ୟ—ଆକୃତି, ବଦନ । ଭଣିଦେଲା—କହିଦେଲା ।

**ମାଳ-ଆଳ ଭ୍ରମିଲେ ଜଳଦକାଳ**
**ମାଳତୀଲତା ଫୁଲ ପତ୍ରେ ବିଶାଳ**
**ଥାଳୀକି ଆଣ ବୋଲି ବାଳୀକି ଡାକି**
**ବାଳିଶ ହେଲେ ତୋଳି ନେବାକୁ ଟାକି ଯେ । ୧୯ ।**

**ଦାଣ୍ଡୁ କି ଘରୁ ଶୁଣା ନାହିଁ ଏମାନ**
**ଭାଣ୍ଡୁ ହୋଇଛି ଦୁଗ୍ଧ ଉଦବର୍ତ୍ତନ**
**ଅଗ୍ନି ସଲଗ୍ନୀକୃତ ନୋହୁଛି ଲବେ**
**ମଗ୍ନ ହେଲେ ଏ ଭାବେ ଗୋପାଳ ସର୍ବେ ଯେ ।୨୦।**

**ଅନ୍ୱୟ**—ମାଳ-ଆଳ ଭ୍ରମିଲେ (ଏହା) ଜଳଦକାଳ (ନିଶ୍ଚୟ) । (ତେଣୁ) ମାଳତୀଲତା ଫୁଲ ପତ୍ରେ ବିଶାଳ (ଆକାର ଧରିଛି) । (ସେମାନେ) ବାଳୀକି ଡାକି ଥାଳୀକି ଆଣ ବୋଲି କହି ଟାକି (ରହି) ତୋଳି ନେବାକୁ ବାଳିଶ ହେଲେ ।

ଦାଣ୍ଡୁ କି ଘରୁ ଏମାନ ଶୁଣା ନାହିଁ, (ଅଥଚ) ଭାଣ୍ଡୁ ଦୁଗ୍ଧ ଉଦ୍‌ବର୍ତ୍ତନ ହୋଇଛି । (କିନ୍ତୁ) ଲବେ ଅଗ୍ନି ସଲଗ୍ନୀକୃତ ନୋହୁଛି । ଏ ଭାବେ ଗୋପାଳ ସର୍ବେ ମଗ୍ନ ହେଲେ ।

**କଥା**—ବଳଦେବଙ୍କୁ ଦୂରରୁ ଦେଖି ମାଳୀମାନେ ଭାବିଲେ, ଏ ଯାହା ଦେଖାଯାଉଛି ଏହା ଜଳଦକାଳ ନିଶ୍ଚୟ ଅଟେ । ତେଣୁ ମାଳତୀଲତା ତଳେ ପତ୍ରାଚ୍ଛାଦିତ ହୋଇ ଉପରେ ଶ୍ୱେତ ପୁଷ୍ପ ମଣ୍ଡିତ ହୋଇ ବିଶାଳ ଏକ ଆକୃତି ଧରିଛି । ସେମାନେ ଏପରି ଭ୍ରମରେ ପଡ଼ି ନିଜ ବନିତାଙ୍କୁ ଡାକିଲେ, ଥାଳି ଧରିକରି ଆସ ! ଏହା କହି ଟାକି ରହି ଫୁଲ ତୋଳି ନେବାକୁ ଅଜ୍ଞାନ ହୋଇଗଲେ ।

ତାଙ୍କୁ ଦେଖି ଗୋପାଳମାନେ ଏହି ଭାବରେ ତନ୍ମୟ ହେଲେ ଯେ ଦାଣ୍ଡରୁ କି ଘରୁ ଏକଥା ତ ଶୁଣାନାହିଁ, ଦୁଧ ଘର ପ୍ରତି ଉତ୍ତୁରି କପରେ ? କିନ୍ତୁ କି ଆଶ୍ଚର୍ଯ୍ୟ, ମୋଟେ ହେଲେ ନିଆଁରେ ବସି ନାହିଁ !

---

ଶବ୍ଦାର୍ଥ । ଆଳ - ସମୂହ । ଜଳଦ—ମେଘ । ବାଳିଶ—ଅଜ୍ଞାନ, ମୂର୍ଖ । ବାଳୀ—ବନିତା, ସ୍ତ୍ରୀ । ମଗ୍ନ—ବିଭୋର, ନିମଗ୍ନ । ଉଦ୍‌ବର୍ତ୍ତନ—ଅଉଟିବା, ଉତୁରିପଡ଼ିବା । ଲବେ—କଣିକାଏ, ମୂଳରୁ । ସଲଗ୍ନୀକୃତ—ମିଳିତ ।

ଅମୃତ ଗରଳରେ ରଜନୀ ଦ୍ୱିବା
ଭଜନୀ ହୋଇଛନ୍ତି କେହି ପାଇବା
ବଲ୍ଲଭ-ବକ୍ଷଭାଗ-ଭୋଗୀ ଅଭୋଗୀ
ସପତ୍ନୀଚୟ ଅତିଶୟରେ ରାଗୀ ଯେ । ୨୧ ।

ଶକ୍ରସ୍ତ୍ରକେ ଇଚ୍ଛିଲେ ଯାହାକୁ କହି
ସଲକ୍ଷଣ କର୍ପୂର କସ୍ତୂରୀ ଏହି
କଳିତ କଲେ ଅଳିଦମ୍ପତୀ ପଙ୍କ-
ଅଙ୍କେ ଅଙ୍କୁରିଅଛି ଏ ପୁଣ୍ଡରୀକ । ୨୨ ।

**ଅନ୍ୱୟ**—(ଏହି ବଳଦେବଙ୍କୁ ଦେଖି) ରଜନୀ ଦ୍ୱିବା (ସଂଯୋଗ) କେହି ପାଇବା ଭଜନୀ ହୋଇଛନ୍ତି । ଅମୃତ ଗରଳରେ (ଧାରଣା କରି) ବଲ୍ଲଭ ବକ୍ଷଭାଗ ଭୋଗୀ (ଏବଂ) ଅଭୋଗୀ ସପତ୍ନୀଚୟ (ଏହାଙ୍କ ଘଟଣାରେ) ଅତିଶୟରେ ରାଗି (ହେବାର ଜଣାଗଲା) ।

ଶକ୍ରସ୍ତ୍ରକେ ଇଚ୍ଛିଲେ ଯାହାକୁ ସଲକ୍ଷଣ କହି ଏହି କର୍ପୂର କସ୍ତୂରୀ (ସେହି ଅଟେ) ଅଳିଦମ୍ପତୀ କଳିତ କଲେ ଏ ପୁଣ୍ଡରୀକ ପଙ୍କଅଙ୍କେ ଅଙ୍କୁରିଅଛି ।

**କଥା**—ଦେଖାଗଲେ, ବଳଦେବଙ୍କୁ ଦେଖି କେହି କେହି ରାତି ଦିବସର ମିଳନ ମନେକରି ତନ୍ମୟ ହୋଇ ଉପାସନା କରୁଅଛନ୍ତି । ଜଣାଗଲା, ଶ୍ୱେତବର୍ଣ୍ଣ ଅମୃତ ଏବଂ ନୀଳବର୍ଣ୍ଣ ଗରଳରେ ଗଠିତ ବୋଲି ତାଙ୍କୁ ଧାରଣା କରି ସ୍ୱାମୀ-ବକ୍ଷୋଦେଶ-ଭୋଗୀ ଏବଂ ଅଭୋଗୀ ସପତ୍ନୀମାନେ ଯେ ସ୍ୱାମୀ ସୁଖ ଭୋଗୁଛନ୍ତି ସେ ସ୍ୱାମୀ ଲାଗି ଅମୃତ ପାଇଁ ଏବଂ ଯେ ସ୍ୱାମୀ ସୁଖରୁ ବଞ୍ଚିତ ସେ ସ୍ୱାମୀ ନାଶ ଲାଗି ଗରଳ ପାଇଁ ଏକାନ୍ତ ଅନୁରାଗୀ ଥିବାର ଜଣାପଡ଼ୁଛି ।

ବୈଦ୍ୟମାନେ ଭାବିଲେ ଏହା ଉତ୍ତମ ଲକ୍ଷଣସମ୍ପନ୍ନ ଶ୍ୱେତବର୍ଣ୍ଣର କର୍ପୂର ଏବଂ ନୀଳବର୍ଣ୍ଣର କସ୍ତୂରୀ ଅଟେ । କିନ୍ତୁ ଭ୍ରମରଦମ୍ପତୀ ଜାଣିପାରିଲେ ଏହା ଅନ୍ୟ କିଛି ନୁହେଁ । ଏହା ନୀଳବର୍ଣ୍ଣର ପଙ୍କ ମଧ୍ୟରୁ ଶ୍ୱେତପଦ୍ମ ଜାତ ହୋଇଅଛି ।

---

ଶବ୍ଦାର୍ଥ । ଭଜନୀ— ଭଜନକାରୀ (ସିଂହଭୂମ ଭାଷା ।) ବଲ୍ଲଭ—ସ୍ୱାମୀ । ବକ୍ଷଭାଗ— ବକ୍ଷାଂଶ । ଭୋଗୀ— ଭୋଗକାରି । ଅଭୋଗୀ— ଅଭୋଗକାରୀ । ସପତ୍ନୀ— ସହରୁଣୀ । ଚୟ— ମାନେ । ରାଗୀ— ଅନୁରାଗୀ । ଇଚ୍ଛିଲେ — ଭାବନା କଲେ । ସଲକ୍ଷଣ— ଉତ୍ତମ ଲକ୍ଷଣଯୁକ୍ତ । ଅଳିଦମ୍ପତୀ— ଭ୍ରମର ସ୍ତ୍ରୀ ପୁରୁଷ ଯୁଗଳ । କଳିତ— ଜାଣିବା, ସ୍ଥିରକରିବା । ପୁଣ୍ଡରୀକ— ଶ୍ୱେତପଦ୍ମ । ଅଙ୍କେ— ଗର୍ଭରେ । ଅଙ୍କୁରିଅଛି— ଜାତ ହୋଇଛି ।

ସେ ରାଜ୍ୟ ପରଂପରା ପୋଷା ଚକୋର
ଚକୋରୀ ଦେଖିକରି କଲେ ବାତୁର
ବିଧୁ ବିଧୁର କରି ଦେଇ ସ୍ୱ-ରଙ୍କୁ
ବାହାରିଅଛି ନୀଳ ଜଳଦ ଅଙ୍କୁ ଯେ । ୨୩ ।

ଯାଦବ ବଳ ବଳରାମ ବାମନ
ଅଭିରାମ ଆରାମେ ରଚଲେ ସ୍ଥାନ
ବାହୁ ଯେ ଥିଲେ ଗୋପେ ବଧ ବକର
ବନେ ଭ୍ରମିଲେ ଧରି ଉଦ୍ଧବ କର ଯେ । ୨୪ ।

**ଅନ୍ୱୟ**—ସେ ରାଜ୍ୟ ପରମ୍ପରା ପୋଷା ଚକୋର ଚକୋରୀ (ଏହି ମୂର୍ତ୍ତି) ଦେଖି କରି ବାତୁର କଲେ ବିଧୁ ସ୍ୱ ରଙ୍କୁ ବିଧୁର କରିଦେଇ ନୀଳ ଜଳଦ ଅଙ୍କୁ ବାହାରିଅଛି ।

ବଳରାମ (ଏବଂ) ବାମନ ସହିତେ ଯାଦବ ବଳ ଅଭିରାମ (ଏବଂ) ଆରାମେ ସ୍ଥାନ ରଚଲେ । ଯେ ଗୋପେ ବକର ବଧ ବାହୁଥିଲେ (ସେ) ଉଦ୍ଧବ କର ଧରି ବନେ ଭ୍ରମିଲେ ।

**କଥା**—ସେ ରାଜ୍ୟରେ ପରମ୍ପରା ଧରି ପୋଷା ହୋଇଥିବା ଚକୋର ଓ ଚକୋରୀ ପକ୍ଷୀମାନେ ଏହି ମୂର୍ତ୍ତି ଦେଖି କରି ବାତୁର କଲେ ଚନ୍ଦ୍ରମା ନିଜ ମୃଗକୁ ବାହାର କରିଦେଇ ଏକାନ୍ତ ନିଷ୍କଳଙ୍କ ସ୍ୱଚ୍ଛ ହୋଇ ନୀଳମେଘ ଦେହରୁ ବାହାରିଛନ୍ତି ।

ଅନନ୍ତର ବଳରାମ ଏବଂ ଶ୍ରୀକୃଷ୍ଣଙ୍କୁ ଘେନି ଯାଦବ ସୈନ୍ୟମାନେ ସୁନ୍ଦର ଏକ ବଗିଚାରେ ବସାକରି ରହିଲେ । ଯେ ଗୋପପୁରରେ ବକପରି ଏକ ଦୁର୍ଦ୍ଦାନ୍ତ ରାକ୍ଷସକୁ ଏକାକୀ ହତ କରିଥିଲେ ସେହି ବିକ୍ରମଶାଳୀ ପୁରୁଷ ରୁକ୍ମିଣୀ ଲାଭ ଘେନି ଚିନ୍ତିତ ଥିବାରୁ ଉଦ୍ଧବ ହାତଧରି ଏହି ଉପବନରେ ଭ୍ରମଣ କଲେ ।

ଶବ୍ଦାର୍ଥ । ପରମ୍ପରା—ବଂଶାନୁକ୍ରମିକ । ରଙ୍କୁ—ମୃଗ । ବିଧୁ ସ୍ୱ ରଙ୍କୁ—ଚନ୍ଦ୍ରମା ଅଙ୍କରେ ଥିବା ମୃଗ ଚିହ୍ନିତ କଳଙ୍କ ରେଖା । ବିଧୁର—ବିଯୁକ୍ତ । ନୀଳ ଜଳଦ—ନୀଳମେଘ । ଅଙ୍କୁ—ଅଙ୍ଗରୁ । ବାମନ—ବିଷ୍ଣୁଙ୍କ ଅବତାର ବିଶେଷ, ଏ କ୍ଷେତ୍ରରେ ବାମନରୂପୀ କୃଷ୍ଣ । ଅଭିରାମ—ଆରାମଦାୟକ, ସୁନ୍ଦର । ଆରାମ—ଉପବନ, ବଗିଚା । ଉଦ୍ଧବ—କୃଷ୍ଣ ସଖାବିଶେଷ । କର—ହସ୍ତ । ବନେ—ଉପବନେ ।

ଉପବଂଶତ ଅଙ୍କେ ଧର୍ ସନ୍ଦର୍ଭ
ଶୂନହୀନ ସଂଖ୍ୟାରେ ମୋଦ ବଦର୍ଭ ।
ଭୂ-ନର ମାନସରେ ହୋଇଲା ଜାତ
ପୁନରାବୃତ୍ତି କାହିଁ ନୋହିଲା ଚିତ୍ତ ଯେ । ୨୫ ।

ଅଙ୍କୁଶ ସଂଯୋଗରୁ ଗଣେଶ ଭ୍ରମ
ଗଣା ନ ଗଲା ଗାଣପତ୍ୟଙ୍କ ପ୍ରେମ
ବିମଳ-କମଳର ସଂଯୋଗୁଁ ହେଲୀ—
ସୁରଙ୍କ ଗଉରବ ନୋହିଲା କଳି ଯେ । ୨୬ ।

**ଅନ୍ୱୟ**—ଉପବଂଶତ ଶୂନହୀନ ସଂଖ୍ୟାରେ ଧର୍ ସନ୍ଦର୍ଭ ଅଙ୍କେ ବଦର୍ଭ ମୋଦ (ବହିଲା) ! ଭୂନର (ରୂପୀ ଅବତାର) ମାନସରେ ଜାତ ହୋଇଲା । କାହିଁ ଚିତ୍ତ ପୁନରାବୃତ୍ତି ନୋହିଲା ।

(ତହିଁ) ଅଙ୍କୁଶ ସଂଯୋଗରୁ ଗଣେଶ ଭ୍ରମ (ଆସିବାରୁ) ଗାଣପତ୍ୟଙ୍କ ପ୍ରେମ ଗଣା ନ ଗଲା । (ତହିଁ) ବିମଳ କମଳର ସଂଯୋଗୁଁ ହେଲୀସୁରଙ୍କ ଗଉରବ କଳି ନୋହିଲା ।

**କଥା**—ଭଗବାନ କୃଷ୍ଣଙ୍କର ଅଷ୍ଟାଦଶ ଚିହ୍ନଶୋଭିତ ପଦଚିହ୍ନରେ ପୃଥିବୀ ମୁକ୍ତ ହେବା ଯୋଗୁଁ ବିଦର୍ଭ ରାଜ୍ୟ ଆନନ୍ଦରେ ମୁଗ୍ଧ ହୋଇଗଲା । ଭୂପୃଷ୍ଠର ନରନାରାୟଣରୂପୀ ଉକ୍ତ ମୂର୍ତ୍ତିର ପଦଚିହ୍ନ ଲୋକମାନସରେ ଜାତ ହେବାରୁ କାହାର ଚିତ୍ତ ଅନ୍ୟ କାହିଁରେ ଆକୃଷ୍ଟ ନ ହେଲା । କେବଳ ସେହି ପଦଚିହ୍ନ ଦେଖିବାକୁ ଇଚ୍ଛା ହେଲା ।

ସେ ପଦରେ ଥିବା ଅଷ୍ଟାଦଶ ଚିହ୍ନ ମଧ୍ୟରୁ ଅଂକୁଶ ଚିହ୍ନ ସେ ପଦଚିହ୍ନ ସଂଯୁକ୍ତ ଥିବା ଦେଖି ଗଣେଶ ଭ୍ରମ ହେଲା । ତେଣୁ ଗଣପତି ଭକ୍ତମାନଙ୍କର ପ୍ରେମ କହିଲେ ସରିଲା ନାହିଁ । ନିର୍ମଳ କମଳ ସେ ପଦରେ ଯୁକ୍ତ ଥିବାରୁ ସୂର୍ଯ୍ୟ ଦେବତା ତା ଦେଖି ଏତେ ଆନନ୍ଦ ହେଲେ ଯେ ସେ ଆନନ୍ଦ ମହିମା କଳନା କରି ନ ହେଲା ।

---

ଶବ୍ଦାର୍ଥ । ଉପ—ନ୍ୟୂନ । ଉପବଂଶତ—କୋଡ଼ିଏରୁ ଊଣା । ଶୂନହୀନ—କୋଡ଼ିଏରୁ ଶୂନ ଗଲେ ଦୁଇସ୍ଥାନ ଅର୍ଥାତ୍ ଅଠର, ଅଷ୍ଟାଦଶ । ଅଙ୍କେ—ଚିହ୍ନରେ । ସନ୍ଦର୍ଭ—ସମ୍ବନ୍ଧ । ଭୂ-ନର—ଭୂପୃଷ୍ଠର ନରରୂପୀ ନାରାୟଣ । ପୁନରାବୃତ୍ତି -ଭିନ୍ନ, ଅନ୍ୟ ପ୍ରକାର । ଅଙ୍କୁଶ—ଅଷ୍ଟାଦଶ ଚିହ୍ନରୁ ଅନ୍ୟତମ । ଗଣା—ସଂଖ୍ୟା । ହେଲୀ—ସୂର୍ଯ୍ୟ । ସୁର—ଦେବତା । ଗୌରବ—ପ୍ରାଧାନ୍ୟ, ମହତ୍ତ୍ୱ । ବିମଳ - ନିର୍ମଳ ।

**ଅର୍ଦ୍ଧେନ୍ଦୁ ଯୋଗୁଁ ଶୈବ ଶିବ-ଶ୍ରଦ୍ଧାକୁ**
**ବଦ୍ଧ ମହୀରୁ ନ କାଢ଼ିଲେ ମୂର୍ଦ୍ଧାକୁ**
**ନିଶ୍ଚୟ ମହିଷାରି ଦରାରି ମେଳ**
**ଶାକ୍ତେ ଭାବିଲେ ଆମ୍ଭ ପ୍ରାକ୍ତନ ଫଳ ଯେ । ୨୭ ।**

**ତ୍ରିକୋଣ, ଅଷ୍ଟକୋଣ ଦେଖି ଆଗାମୀ-**
**କ୍ଷେତ୍ର ମନ୍ତ୍ରଣା କରି ଝଟତ ନମି**
**ଯବରେଖା ଧାରଣୁଁ 'ମାନ୍ତ୍ରିକ' ବୋଲି**
**କେଉଁ ଲୋକ ମସ୍ତକ ନ କଲା ବାଲି ଯେ ? ।୨୮।**

**ଅନ୍ୱୟ**—ଅର୍ଦ୍ଧେନ୍ଦୁ ଯୋଗୁଁ ଶିବ-ଶ୍ରଦ୍ଧାକୁ ବଦ୍ଧ-ଶୈବ (ମାନେ) ମୂର୍ଦ୍ଧାକୁ ମହୀରୁ ନ କାଢ଼ିଲେ ! ଦର, ଅରି (ଏକାଠି) ମେଳ (ଦେଖି) ଶାକ୍ତେ ଭାବିଲେ ନିଶ୍ଚୟ ମହିଷାରି (ଏ) ! ଆମ୍ଭ ପ୍ରାକ୍ତନ ଫଳ (ରୁ) (ଦେଖା ହୋଇଛନ୍ତି) ।

(କେହି କେହି) ତ୍ରିକୋଣ, ଅଷ୍ଟକୋଣ ଦେଖି ଆଗାମୀ 'କ୍ଷେତ୍ର' ମନ୍ତ୍ରଣା କରି ଝଟତି ନମି (ଲେ) । ଯବରେଖା ଧାରଣୁଁ 'ମାନ୍ତ୍ରିକ' ବୋଲି କେଉଁ ଲୋକ ମସ୍ତକ ବାଲି ନକଲା ?

**କଥା**—ଅର୍ଦ୍ଧଚନ୍ଦ୍ର ଚିହ୍ନ ଦେଖି ଶିବ ବୋଲି ଶ୍ରଦ୍ଧାବଦ୍ଧ ଶିବଭକ୍ତମାନେ ଭୂଇଁରେ ମୁଣ୍ଡିଆମାରି ରହିଲେ । ମାଟିରୁ ମୁଣ୍ଡ ନ କାଢ଼ିଲେ ! ଶଙ୍ଖ ଏବଂ ଚକ୍ରଚିହ୍ନ ଉକ୍ତ ପଦରେ ଏକାଠି ମିଳିତ ଥିବାର ଦେଖି ଶାକ୍ତମାନେ ଭାବିଲେ, ନିଶ୍ଚୟ ଏ ମହିଷାରି ଦୁର୍ଗା ଅଟନ୍ତି । ଆମର ପୂର୍ବଜନ୍ମ ଫଳରୁ ଦେଖାମିଳିଲା ।

ଉକ୍ତ ପାଦଚିହ୍ନରେ ତ୍ରିକୋଣ ଏବଂ ଅଷ୍ଟକୋଣ ଚିହ୍ନ ଥିବାର ଦେଖି ଅନେକ ବ୍ୟକ୍ତି ଭବିଷ୍ୟତରେ ଏଠାରେ କ୍ଷେତ୍ର ହେବ ମନ୍ତ୍ରଣା କରି ତୁରନ୍ତ ନମସ୍କାର କଲେ । ଅତି ସୌଭାଗ୍ୟସମ୍ପନ୍ନ ସାମୁଦ୍ରିକ ଯବରେଖା ଉକ୍ତ ପଦଚିହ୍ନ ଧାରଣ କରିବା ଦେଖି ମନ୍ତ୍ରବେତ୍ତା କିଏ ବା ସେ ମୁଣ୍ଡିଆ ମାରି ମୁଣ୍ଡ ବାଲି ନ କଲା ?

ଶବ୍ଦାର୍ଥ । ଅର୍ଦ୍ଧେନ୍ଦୁ—ଅର୍ଦ୍ଧଚନ୍ଦ୍ରମା । ମୂର୍ଦ୍ଧା—ମୁଣ୍ଡ । ଦର—ଶଙ୍ଖ । ଅରି—ଚକ୍ର । ଶାକ୍ତେ—ଶକ୍ତିପୂଜକେ । ମହିଷାରି—ଦୁର୍ଗା । ପ୍ରାକ୍ତନ—ପୂର୍ବଜନ୍ମ । ଆଗାମୀ—ଭବିଷ୍ୟତ । ଝଟତି - ତୁରନ୍ତ । ନମି—ନମସ୍କାର କରି । ଯବ—ଯେଉଁ ରେଖାରୁ ଧନ ସନ୍ତାନ ସୌଭାଗ୍ୟ ସୂଚିତ ହୁଏ । ମାନ୍ତ୍ରିକ—ମନ୍ତ୍ରବିତ୍ । ମସ୍ତକ ବାଲି ନ କଲା—ମୁଣ୍ଡିଆମାରି ମୁଣ୍ଡ ଧୂଳି ନ କଲା ।

ନିରାକାର ଭ୍ରୁକେ ଆକାଶେ ଗୃହିଁ
ଯାହାହେଲେ ତାହା କେ ପାରିବ କହି
କୁଳିଶ-ଆକୃତିକୁ ବାସବ କଳି
ନତିକଲି କୃଷକ ଲୋକ ମଉଳି ଯେ । ୨୯ ।

ଦୀନ ଦେଖି ଗୋଷ୍ପଦ ଏ କାମଧେନୁ
ମନେ ନ କଲେ ଧନ କାମନା ତନୁ
ବନ୍ଧୁ ଲୋକନ କରି ଉଡ଼ିଲେ କୀରେ
ଅଗସ୍ତି ନତାନତ ପକ୍ଷ ବାତରେ ଯେ । ୩୦ ।

**ଅନ୍ୱୟ**—(ତହିଁ) ଆକାଶେ ଗୃହିଁ ନିରାକାର ଭ୍ରୁକେ ଯାହାହେଲେ ତା କେ କହିପାରିବ ? କୁଳିଶ-ଆକୃତିକୁ ବାସବ କଳି କୃଷକ ଲୋକ ମଉଳି ନତିକଲି ।

ଦୀନ (ଲୋକେ) ଗୋଷ୍ପଦ ଦେଖି ଏ କାମଧେନୁ (ବିଗ୍ଭରି) ମନେ ଧନ କାମନା(କୁ) ତନୁ ନ କଲେ । (ତହିଁ) ବନ୍ଧୁ ଲୋକନ୍‌କରି କୀରେ ଉଡ଼ିଲେ । (ତାଙ୍କ) ପକ୍ଷ ବାତରେ (ଉକ୍ତ ଉପବନର) ଅଗସ୍ତି ନତାନତ (ହେଲି) ।

**କଥା**—ସେଥିରେ ଆକାଶ ଚିହ୍ନ ଅମ୍ବରକୁ ଗୃହିଁ ନିରାକାରବାଚୀ ଭ୍ରୁକମାନେ ଯାହା ହେଲେ 'ତାହା କିଏ କହିପାରିବ ? ବଜ୍ରଚିହ୍ନ କୁଳିଶକୁ ଇନ୍ଦ୍ର କଳ୍ପନା କରି କୃଷକ ଲୋକମାନେ ଶିର ନୁଆଇଁଲେ ।

ଦରିଦ୍ର ଲୋକେ ଗୋପଦ ଚିହ୍ନ 'ଗୋଷ୍ପଦ' ଦେଖି ଏହା କାମଧେନୁ ବିଗ୍ଭରି-ମନମଧ୍ୟରେ ଧନ କାମନାକୁ ନ୍ୟୂନ କଲେ ନାହିଁ; ଅଧିକ ବାଞ୍ଛା କଲେ ।

ତହିଁ ବର୍ତ୍ତୁଳାକାର ବନ୍ଧୁଚିହ୍ନ ଦେଖି ତାହା କୋଳି ବୋଲି ଧାରଣା କରି ଶୁଆମାନେ ଉଡ଼ିଲେ । ତାଙ୍କ ପକ୍ଷବାତରେ ଉକ୍ତ ବଗିଗ୍ଭର ଅଗସ୍ତି ପାଖୁଡ଼ାମାନ କମ୍ପି ଉଠିଲା ।

---

**ଶବ୍ଦାର୍ଥ** । ନିରାକାର ଭ୍ରୂକେ—ଶୂନ୍ୟବାଚୀ । କୁଳିଶ—ବଜ୍ର । ବାସବ—ଇନ୍ଦ୍ର । କଳି—ଧାରଣା କରି । ମଉଳି—ଶିର । ଦୀନ—ଦରିଦ୍ର । ଗୋଷ୍ପଦ—ଗୋରୁପାଦ । କାମଧେନୁ—ଇଚ୍ଛାପୂର୍ଣ୍ଣକାରୀ ଗାଈ । ତନୁ—କ୍ଷୀଣ, ଊଣା । ବନ୍ଧୁ—ବୃନ୍ଦା, କୋଳି । କୀରେ—ଶୁକପକ୍ଷୀମାନେ । ନତାନତ—ତଳଉପର । ଅଷ୍ଟାଦଶ ଚିହ୍ନ—ଜମ୍ବୁ, ଚକ୍ର, ପଦ୍ମ, କୁଳିଶ, ଅଷ୍ଟକୋଣ, ଊର୍ଦ୍ଧ୍ୱରେଖା, ତ୍ରିକୋଣ, ଧନୁ, ଧ୍ୱଜ, ସ୍ୱସ୍ତିକ, ମୀନ, କଳସ, ଯବ, ବନ୍ଧୁ, ଅଙ୍କୁଶ, ଅର୍ଦ୍ଧଇନ୍ଦୁ, ଗୋଷ୍ପଦ, ଅମ୍ବର ।

କବ ତର୍କିଲେ କୁମ୍ଭ ଦର୍ଶନ ଦେଲେ
ନନ୍ଦନର ବନ୍ଦନ-ବର୍ଦ୍ଧନ ହେଲେ
ଊର୍ଦ୍ଧ୍ୱ ସ୍ୱସ୍ତିକ ଦେଖି ତୁଲ ତୁଳସୀ
ଦେବୀ ଭାବଲା ମୋଦେ ବଧବା ରାଶି ଯେ ।୩୧।

ମୀନକେତନ ଗୁଣ ବହୀନେ ଧନୁ
ପଦେ ସମର୍ପି ହାରଅଛନ୍ତ ତନୁ
ନଷ୍ଟସ୍ପୃ ସାର୍ବଭୌମ ସୁନ୍ଦର ପୁଂସେ
ଏ ଚନ୍ଦ୍ରା ଜାତ ନବନୀତାଙ୍ଗୀ ବଂଶେ ଯେ ।୩୨।

**ଅନ୍ୱୟ**—କବ ତର୍କିଲେ (ଏଥି) କୁମ୍ଭ ଦର୍ଶନ ଦେଲେ । (ତାଙ୍କ) ନନ୍ଦନର ବନ୍ଦନ-ବର୍ଦ୍ଧନ ହେଲେ । ଊର୍ଦ୍ଧ୍ୱ ସ୍ୱସ୍ତିକ ତୁଳସୀ ତୁଲ ଦେଖି ବଧବା ରାଶି ମୋଦେ ଦେବୀ ଭାବଲା ।

ନବନୀତାଙ୍ଗୀ ବଂଶେ ଏ ଚନ୍ଦ୍ରା ଜାତ (ହେଲା ଯେ) (ଏ) ସୁନ୍ଦର ସାର୍ବଭୌମ ପୁଂସେ (ଦେଖି) ନଷ୍ଟସ୍ପୃ ମୀନକେତନ ଗୁଣବହୀନେ ଧନୁ ସମର୍ପି ତନୁ ହାରଅଛନ୍ତ ।

**କଥା**—କବମାନେ ତର୍କ କଲେ, ଏହା ପଦଚହ୍ନ ମଧ୍ୟରେ ଯେଉଁ କୁମ୍ଭ ଅଛି ତଦ୍ଦ୍ୱାରା କୁମ୍ଭଋଷି ଦର୍ଶନ ଦେଲେ । ତାଙ୍କ ନନ୍ଦନ ପୁଣ୍ୟାତ୍ମା ଅଗସ୍ତିଙ୍କର ପୂଜା ଏତଦ୍ଦ୍ୱାରା ବଢ଼ିଛି ବୋଲ ସୂଚିତ ହେଉଛି । ତେବେ ଋତୁ ଉପସ୍ଥିତ ହେଲା କ ?

ଊର୍ଦ୍ଧ୍ୱରେଖା ସହିତ ସ୍ୱସ୍ତିକ ଚହ୍ନ ମିଶ୍ରିତ ଥିବାର ଦେଖି ତାହାକୁ ତୁଳସୀବୃକ୍ଷ ସହିତ ତୁଳନୀୟ ହେଉଥିବାର ଦେଖି ବଧବାମାନେ ଆନନ୍ଦରେ ତାଙ୍କ ଆରାଧ୍ୟା ବୃନ୍ଦାବତୀ ଦେବୀ ବୋଲ ଭାବଲେ ।

ସୁକୋମଳା ସ୍ତ୍ରୀମାନଙ୍କ ମତରେ ଏ ଚନ୍ଦ୍ରା ଜାତ ହେଲା ଯେ ଏହା ସୌନ୍ଦର୍ଯ୍ୟରେ ସମ୍ରାଟ ପୁରୁଷଙ୍କ ଦେଖି ମୀନ ଓ କେତନ ଚହ୍ନ ସୂଚନାରୁ ମୀନକେତନ କାମଦେବ ପୁଷ୍ପଗୁଣବହୀନ ତାଙ୍କର ଧନୁ ଏଥିରେ ଥିବା ଧନୁ ଚହ୍ନରେ ସମର୍ପି, ନଜର ଅଂଶ ଲୋପ କର ନଷ୍ଟସ୍ପୃ ଅନଙ୍ଗ ହୋଇଅଛନ୍ତ ।

---

ଶବ୍ଦାର୍ଥ । ତର୍କିଲେ—ଯୁକ୍ତ କଲେ । କୁମ୍ଭ—ମାଠିଆ, କୁମ୍ଭଋଷି । କୁମ୍ଭନନ୍ଦନ—ଅଗସ୍ତି ଋଷି । ବନ୍ଦନ—ପୂଜା । ବର୍ଦ୍ଧନ—ବଢ଼ିବା । ଊର୍ଦ୍ଧ୍ୱ—ଊର୍ଦ୍ଧ୍ୱରେଖା, ଉପରକୁ ଠିଆ । ସ୍ୱସ୍ତିକ—ଚହ୍ନବଶେଷ । ତୁଲ—ସମାନ । ରାଶି—ସମୂହ । ମୋଦେ—ଆନନ୍ଦରେ । ଦେବୀ—ବୃନ୍ଦା ଦେବୀ । ନବନୀତ—ଲବଣୀ । ନବନୀତାଙ୍ଗୀ—କୋମଳାଙ୍ଗୀ । ବଂଶେ—ସମୂହରେ । ସାର୍ବଭୌମ—ସମ୍ରାଟ, ସର୍ବଶ୍ରେଷ୍ଠ । ପୁଂସେ—ପୁରୁଷେ । ମୀନକେତନ—କାମଦେବ ।

ବନମାଳୀଙ୍କ ବନମାଲ୍ୟକୁ ଦେଇ
ଶୋଭା କୀର୍ତ୍ତନ କରାଇଲା ବୁଲାଇ
ଦୁଗ୍ଧସିନ୍ଧୁ-ସମ୍ଭବ-ସୁଧା ମଧୁରେ
ଉଦ୍ଧବ ଗିର ବିରଚିଲେ ଉତ୍ତରେ ଯେ ।୩୩।

ସୁରଭି ଗୋଷ୍ଠ ସଙ୍ଗୀ ଧୃତ ପଲାଶ
ସିଂହୀ ଅଗ୍ରତେ କୁମ୍ଭୀ ମହା ଉଲ୍ଲାସ
ହିଂସାଧନେ ଦାରିଦ୍ର୍ୟ ଏ ବନ କେଡ଼େ
ବିଜେ ହରଗଉରୀ ମହିମା ଏଡ଼େ ଯେ ।୩୪।

**ଅନ୍ୱୟ**—(ଏମନ୍ତ) ବନମାଳୀଙ୍କ ଉଦ୍ଧବ ବନମାଲ୍ୟକୁ ଦେଇ ବୁଲାଇ ଶୋଭା କୀର୍ତ୍ତନ କରାଇଲେ । (କୃଷ୍ଣ ପୃଚ୍ଛନ୍ତେ) ଉତ୍ତରେ ଦୁଗ୍ଧସିନ୍ଧୁ-ସମ୍ଭବ-ସୁଧା ମଧୁରେ (ସେ) ଗିର ବିରଚିଲେ ।

(ଏଥି) ସୁରଭି ଗୋଷ୍ଠ ସଙ୍ଗୀ ପଲାଶ ଧୃତ (ଅଛି) ସିଂହୀ ଅଗ୍ରତେ କୁମ୍ଭୀ ମହା ଉଲ୍ଲାସ (ବହିଛି) ହିଂସା ଧନେ ଏ ବନ କେଡ଼େ ଦାରିଦ୍ର୍ୟ ( ଧାରଣ କରିଛି ? ) ହରଗଉରୀ ବିଜେ (ହେତୁ) (ତା) ମହିମା ଏଡ଼େ ( ସିନା ! ) ।

**କଥା**—ପୂର୍ବବର୍ଣ୍ଣିତ ଭଗବାନ କୃଷ୍ଣଙ୍କୁ ଉଦ୍ଧବ ଗୋଟିଏ ବନମାଳାରେ ବିଭୂଷିତ କରି ସେହି ସୁନ୍ଦର ଉପବନରେ ଚତୁର୍ଦ୍ଦିଗରେ ବୁଲାଇ ଉକ୍ତ ବଗିଚ୍ଚାର ଶୋଭା ବଖାଣି ଚାଲିଲେ । କୃଷ୍ଣ ପଚାରିବାରୁ ସେ ଉତ୍ତରରେ କ୍ଷୀରସମୁଦ୍ରଜାତଅମୃତ ପରି ମଧୁର ବଚନରେ ଏହିପରି କଥାମାନ କହି ଚାଲିଲେ ।

ସ୍ଥାବର ଦୃଷ୍ଟିରେ ଏହି ବନରେ ଅତ୍ୟନ୍ତ ସୁଗନ୍ଧସମ୍ପନ୍ନ ଚମ୍ପାବନ ସହିତ ନିର୍ଗନ୍ଧ ପଲାଶ ସାଥି ହୋଇ ରହିଛି । ଏମନ୍ତକି ବାଇଗଣ ବାଡ଼ ଆଗରେ ଋଷିଜନପ୍ରିୟ କୁମ୍ଭୀବୃକ୍ଷ ପତ୍ର ପୁଷ୍ପ ବଲ୍‌କଳରେ ଏକାନ୍ତରେ ଉଲ୍ଲସିତ ରହିଛି ।

ଜଂଗମ ଦୃଷ୍ଟିରେ ଏହି ବନରେ ଉତ୍ତମ ଗାଈ ଗୋଷ୍ଠର ସାଥୀ ରହିଛି ମାଂସାଶୀ ବ୍ୟାଘ୍ର ଏବଂ ସିଂହୀ ସମ୍ମୁଖରେ ହସ୍ତୀ ଏକାନ୍ତ ଉଲ୍ଲସିତ ଅଛି । ଏତଦ୍ଦ୍ୱାରା ପ୍ରତୀତ ହୁଏ ଯେ ହିଂସାରୂପ ସମ୍ପତ୍ତିରେ ଏ ବନ ଅତି ଦରିଦ୍ର, କାରଣ ଏଠାରେ ଅହିଂସା ଭାବ ଥିବାରୁ ସ୍ଥାବର ଜଂଗମ ମଧ୍ୟରେ ଯେଉଁଠି ହିଂସାଭାବ ସମ୍ଭବ ତାହା ଆଦୌ ରହୁ ନାହିଁ । ବିଶେଷରେ ପୁଣ୍ୟ ପାବନ ହରଗୌରୀ ଏହି ବନମଧ୍ୟରେ ବିଜେ କରିଥିବାରୁ ଏ ବନର ଏପରି ମହତ୍ତ୍ୱ ପ୍ରକାଶିତ ହେଉଛି ସିନା !

---

ଶବ୍ଦାର୍ଥ । ବନମାଲ୍ୟ—ପାଦଲମ୍ବୀ ପୁଷ୍ପହାର । ଦୁଗ୍ଧସିନ୍ଧୁ—କ୍ଷୀର—ସମୁଦ୍ର । ଗିର—ବଚନ । ସୁରଭି—ଚମ୍ପା, ଗାଈ । ପଲାଶ—ମାଂସ୍ଭକ୍ଷକ, କିଂଶୁକ ପଲାଶ ଗଛ, ବ୍ୟାଘ୍ର । ସିଂହୀ—ପଶୁଜାତୀୟା ସିଂହୀ, ବାଇଗଣ । କୁମ୍ଭୀ—ହସ୍ତୀ, କୁମ୍ଭୀ ବୃକ୍ଷ, ଯାହାର ବଲ୍‌କଳ ବସ୍ତ୍ରତୁଲ୍ୟ ଅଟେ ।

ବୃଷଭେ ସୁମନେ ସଂସର୍ଗ କରନ୍ତ
ଅତନୁ ଗୁଣବନ୍ତ ଦ୍ୱିଜେ ଗର୍ଜନ୍ତ ।
ଅଷ୍ଟାବକ୍ର ଶାଣ୍ଡିଲ୍ୟ ବ୍ରାହ୍ମୀ କ୍ଷୀରକୁ
ଧରିଅଛନ୍ତ ଅଭିଷେକାର୍ଚ୍ଚନକୁ ଯେ ।୩୫।

ତ୍ରିନେତ୍ର-ଗଣଯାକ ତାଳ ସଂସର୍ଗୀ
ବାଦନ ସମଯୁକୁ ଅଛନ୍ତ ଜଗି
ଭଣ୍ଡାଭୃଙ୍ଗ (ଶୁ)ସୁଆରେ କରନ୍ତ ପାକ
ଗଛିକେ ଗଛୁ ଅଛୁ ପଣ୍ଡାଙ୍କ ଡାକ ଯେ ।୩୬।

**ଅନ୍ୱୟ**—ବୃଷଭେ ସୁମନେ ସଂସର୍ଗ କରନ୍ତ । ବୃଷଭେ ସୁମନେଣ ସଗ କରନ୍ତ । ଅତନୁଗୁଣବନ୍ତ ଦ୍ୱିଜେ ଗର୍ଜନ୍ତ । ଅତନୁ ଗୁଣବନ୍ତ ଦ୍ୱିଜେ ଗର୍ଜନ୍ତ । ଅଷ୍ଟାବକ୍ର—ଶାଣ୍ଡିଲ୍ୟ, ବ୍ରାହ୍ମୀ, କ୍ଷୀରକୁ ଅଭିଷେକାର୍ଚ୍ଚନକୁ ଧରିଅଛନ୍ତ । ବ୍ରାହ୍ମୀ ଅଷ୍ଟାବକ୍ର ଓ ଶାଣ୍ଡିଲ୍ୟ ଅଭିଷେକାର୍ଚ୍ଚନକୁ କ୍ଷୀରକୁ ଧରିଅଛନ୍ତ ।

ତ୍ରିନେତ୍ର-ଗଣଯାକ ତାଳ ସଂସର୍ଗୀ (ହୋଇ) ବାଦନ ସମଯୁକୁ ଜଗିଅଛନ୍ତ । ସୁଆରେ ଭଣ୍ଡାଭୃଙ୍ଗ ପାକ କରନ୍ତ । ଭଣ୍ଡାଭୃଙ୍ଗ ସୁଆରେ ପାକ କରନ୍ତ । ପଣ୍ଡାଙ୍କ ଡାକ ଗଛକେ ଗଛୁ ଅଛୁ ।

**କଥା**— ଏହି ଉପବନରେ ବାସଙ୍ଗ ଗଛରେ ଫୁଲ ଫୁଟି ମହକ ଯାଉଛୁ । ତେଣୁ ଭ୍ରମରମାନେ ମତୁଆଳ ହୋଇ ଗୁଞ୍ଜନ କରୁଛନ୍ତ । ଅତ ଗୋଗମାୟୁ ବଲ୍ୱବୃକ୍ଷ, ସୋମଲତା ଏବଂ ମଧୁକ୍ଷୀରସ୍ରାବୀ କ୍ଷୀର ବୃକ୍ଷମାନ ମହାଦେବଙ୍କର ଅଭିଷେକ ଓ ଅର୍ଚ୍ଚନା ଲାଗି ବହୁ ଶାଖାବିଶିଷ୍ଟ ପବମାନ, ସୋମରସ ଏବଂ ସୁମଧୁର ଦୁଗ୍‌ଧ ଧାରଣ କରିଅଛନ୍ତ ।

**ଅନ୍ୟାର୍ଥ** ଏଥି ବୃଷଭରେ ମହାଦେବ ବିହାର କରନ୍ତ । ବିଶାଳ ଆବମ୍ବବିଶିଷ୍ଟ ଆବୃତ୍ତିବନ୍ତ ଦ୍ୱିଜମାନେ ତାଙ୍କର ସ୍ତବ ଉଦାତ୍ତ କଣ୍ଠରେ ଗାନ କରନ୍ତ । ସ୍ୱୟଂ ବିଧାତାଙ୍କ ଶକ୍ତିବିଶିଷ୍ଟ ଅଷ୍ଟାବକ୍ର, ଶାଣ୍ଡିଲ୍ୟ ଆଦି ଋଷିଗଣ ମହାଦେବଙ୍କର ଅଭିଷେକ ଏବଂ ଅର୍ଚ୍ଚନା ଲାଗି ସୁରଭିକ୍ଷୀର ଧରିଅଛନ୍ତ । ଏଠାରେ ମହାନ୍ ଋଷିଙ୍କର ଗତାଗତ ହେଉଛି ।

ଏହା ବନରେ ନଡ଼ିଆ ଗଛମାନ ତାଳଗଛ ଏହିତ ଲାଗି ଲାଗି ହୋଇ ରହିଛି, ବାତ୍ୟାବାଦନରେ ମୃଦଙ୍ଗ ସମଯୁକ୍ ଏମାନେ ଜାଗ୍ରତ ଅଛନ୍ତ । ଯେପରି ପରସ୍ପର ମିଶି

ଦୃଢ଼ତା ରଖିପାରିବେ । ଶୁଆମାନେ କଦଳୀଭଣ୍ଡାକୁ ଭୋଜନ କରି ହଜମ କରନ୍ତି । ଅଣ୍ଡିରି ଡାଳ ଗଛକେ ଗନ୍ଥି ରହିଛି । ଅଫଳନ୍ତି ଅଣ୍ଡିରି ଡାଳ ଗଛମାନ ବହୁତ ରହିଛି ।

ଶିବଗଣପାଳ ବାଦ୍ୟର ତାଳଧରି ବଜାଇବା ସମୟକୁ ଜଗି ରହିଛନ୍ତି । ଏଠି କୋଠଭୋଗକୁ ସୁଆରେ ଶିବ ମନ୍ଦିରରେ ପାକ କରନ୍ତି । ପଣ୍ଡାଙ୍କ ଡାକ ଲୋକ ସମୂହ ମଧ୍ୟରେ ଦୃଢ଼ଭାବେ ବ୍ୟାପିଅଛି ।

ଶବ୍ଦାର୍ଥ । ଗର୍ଜନ୍ତି—ଗୁଞ୍ଜନ କରନ୍ତି । ଶାଣ୍ଡିଲ୍ୟ—ବେଲଗଛ, ଋଷିବିଶେଷ । ବୃଷଭେ—ବାହଙ୍କଗଛମାନେ । ସୁମନେ—ପୁଷ୍ପରେ । ସର୍ଗ—ବିହାର । ବୃଷଭେ—ଷଣ୍ଢ ସହିତରେ । ସୁମନେଶ—ଦେବତାଙ୍କ ଶ୍ରେଷ୍ଠ, ମହାଦେବ । ଭଣ୍ଡା—କଦଳୀ ପୁଷ୍ପର ମୁକୁଳ, ମଂଜରୀ ଭଣ୍ଡଭୋଗ-କୋଠଭୋଗ । ଗଛ—ଲୋକସମୂହ । ଗୁଣ—ଆବୃତ୍ତି, ଧନୁର ରଜ୍ଜୁ । ଅତନୁଗୁଣ—ପୁଷ୍ପ । ଗନ୍ଥ—ଉପଯୁକ୍ତ, ଶୋଭନୀୟ । ବ୍ରାହ୍ମୀ—ବ୍ରହ୍ମାଙ୍କଶକ୍ତି, ସୋମଲତା । ଉଷ୍ଟାବକ୍ର—ଋଷି, ଅତିଦୁର୍ବୋଧ୍ୟ । ପଣ୍ଡା—ପାତକବ ହୀନ, ଅଣ୍ଡିରିଗଛ । ବାଦନ—ବଜାଇବା ସଂଘର୍ଷ । ଅତନୁ—କାମ, ଅତିମୋଟା । ସୁଆରେ—ପାଚକମାନେ । ଶୁଆରେ—ଶୁଆପକ୍ଷୀମାନଙ୍କରେ । ତ୍ରିନେତ୍ରଗଣ—ନଡ଼ିଆଗଛସମୂହ; ଶିବଙ୍କ ଅନୁଚରଗଣ । ତାଳସଂସର୍ଗୀ—ତାଳଗଛ ପାଖେ ରହି, ବାଦ୍ୟର ତାଳ ଧରିବା ।

ଗୃର କଦମ୍ବ ତରବେତ ବଧାନେ
ବେତକୁ ନ ଛାଡ଼ନ୍ତ ରଜନୀ ଦନେ
କରତାମାନେ ତପ୍ତ ଖଣ୍ଡାକୁ ଧର
ଅଛନ୍ତ ମହୀପାଳ ଛାମୁ ଆଦର ଯେ ।୩୭।

ବଭ୍ର ସଂଭ୍ରରେ ଗୃରପାଖେ ବେଷ୍ଟିତ
ମହାକାଲ-ଉପରେ ଶ୍ୟାମା କ୍ରୀଡ଼ିତ ।
ବଚନ୍ଦ୍ର ଯୋଗୀ କାମନାଶକ ମନ୍ତ୍ର
କଲ କର ମୋ କାମନା ସନମତ ଯେ ।୩୮।

**ଅନ୍ୱୟ**—୧ । (ଏଥି) ଗୃର (ଏବଂ) କଦମ୍ବ (ବୃକ୍ଷ) ତରବେତ ବଧାନେ ବେତକୁ ରଜନୀ ଦନେ ନ ଛାଡ଼ନ୍ତି । କରତାମାନେ ତପ୍ତଖଣ୍ଡାକୁ ଧର (ଏ) ମହୀ (ର) ପାଳ ଛାମୁ ଆଦର ଅଛନ୍ତ ।

୨ । ଏଥି ଗୃର କଦମ୍ବ ତରଟବେତ ବଧାନେ ରଜନୀ ଦନେ ବେତକୁ ନ ଛାଡ଼ନ୍ତ । କର୍ତ୍ତାମାନେ ତପ୍ତ ଖଣ୍ଡାକୁ ଧର ମହୀପାଳ ଛାମୁଁ ଆଦରଅଛନ୍ତ ।

୧ । ମହାକାଳ ଉପରେ ଗୃରପାଶେ ବେଷ୍ଟିତ ବଭ୍ରସମ୍ଭାରେ ଶ୍ୟାମା କ୍ରୀଡ଼ିତ (ଅଛି) ବଚନ୍ଦ୍ର, କାମନାଶକ ମନ୍ତ୍ର (ଅଛି) 'କଲ' 'କରମୋ,' କାମନା ଆସନ 'ମତ' (ରହିଛି) ।

୨—(ଏଥି) ବଭ୍ର ସମ୍ଭାରେ ଗୃରପାଶେ (ନାନା ମୂର୍ତ୍ତି) ବେଷ୍ଟିତ (ଅଛି) (ତନ୍ମଧ୍ୟରେ) ମହାକାଳ ଉପରେ ଶ୍ୟାମା କ୍ରୀଡ଼ିତ (ମୂର୍ତ୍ତି) (ଦେଖାଯାଉଛି) । (ହେ ଦେବୀ !) (ତୁମ୍ଭେ ଯେପରି) କାମନାଶକ ବଚନ୍ଦ୍ର ଯୋଗୀ (ଙ୍କୁ) ମନ୍ତ୍ରକଲ ମୋ କାମନା (ତଥା) ସନମତ କର ।

**କଥା**—ଏହି ଉପବନରେ ଗୃରକୋଳ ଗଛ ଏବଂ କଦମ୍ବ ଗଛ ଯେପରି ବଢ଼ୁଛନ୍ତି ସେହିପରି ବେତଲତାକୁ ନିଜ ଅଙ୍ଗରେ ଗୁଡ଼ାଇ ଦିନରାତି ଛାଡ଼ୁ ନାହାନ୍ତି । ଅଗସ୍ତି ବର୍ଣ୍ଣରେ ବେତ ଖଣ୍ଡା ପୂର ରହିଛି ଏବଂ ତାହା ମଇଗଛ ଏବଂ ଶତାଗଛ ସମ୍ମୁଖକୁ ଆଦର ରହିଛି ।

**ଅନ୍ୟାର୍ଥ**—ଏଥି ଦୂତମାନେ ଧର୍ମ ଲାଗି ଜନଗୋଷ୍ଠୀକୁ ସାବଧାନ କରିବାରେ ଦିବାରାତ୍ର ବେତ ହାତରୁ ଛାଡ଼ନ୍ତି ନାହାନ୍ତି । ରକ୍ଷକମାନେ ତେଜାଳ ଖଣ୍ଡା ଧରି ରାଜାଙ୍କ ଛାମୁଁ ଆଦର ରହିଛନ୍ତି ।

ପୁନଶ୍ଚ ଏଥି ମହାକାଳ ଗଛ ଉପରେ ଚଉପାଖରେ ବେଢ଼ିଥିବା ଘାପ୍ରିମନ୍ତ ସୁନ୍ଦର ସୁଆମଲତା ଆନନ୍ଦରେ ଖେଳୁଛୁ ଅବା ! ନାନା ବର୍ଣ୍ଣର ରଂଜିତ ଭୂର୍ଜଗଛ ଏବଂ କାମନାଶକ ଧୂତୁରାଗଛ ଏଠି ରହିଛି । ଗଜା ଶାଳଗଛ, କରମଙ୍ଗା ଏବଂ କାମନାର ଆସନ-ସ୍ୱରୂପୀ ଅଗୁରୁ ଚନ୍ଦନ ବୃକ୍ଷ ଏଥି ରହିଛି ।

**ଅନ୍ୱୟାର୍ଥ**—ଏଥି ବିବାଦ ଆୟୋଜନରେ ଚତୁଃପାର୍ଶ୍ୱରେ ନାନା ମୂର୍ତ୍ତି ବେଷ୍ଟିତ ଅଛି । ତନ୍ମଧ୍ୟରେ ମହାକାଳ ଶିବଙ୍କ ଉପରେ ଶ୍ୟାମାଙ୍କର କ୍ରୀଡ଼ିତ ମୂର୍ତ୍ତି ଦେଖାଯାଉଛି । ଏହା ଦେଖି ଉଦ୍ଧବ କୃଷ୍ଣଙ୍କୁ ପରିହାସ କରି ଦେଖାଇ କହିଲେ—"ହେ ଦେବୀ ! ତୁମ୍ଭେ ଯେପରି କାମନାଶକ ବିଚକ୍ଷ ଯୋଗୀଙ୍କୁ ପାଗଳ କରି ବଶୀଭୂତ କଲ, ମୋ କାମନା ସେହିପରି ପୂରଣ କର ।"

ଶବ୍ଦାର୍ଥ । ସ୍ୱର—ସ୍ୱରକୋଳି, ଦୃତ । କଦମ୍ବ—ବୃକ୍ଷବିଶେଷ, ସମୂହ । ତରୁ—ବିଟପ, ବୃକ୍ଷ । ତରବେତ—ସାବଧାନ, ଅଗ୍ରଗଣ୍ୟ । ତପ୍ତ—ଉଗ୍ର, ଉଜ୍ଜ୍ୱଳ । ପଲ—ଚଡ଼ାଗଛ । ଚମ୍ପୁଖଣ୍ଡା—ତବତ ଖଣ୍ଡାଗଛ । କରତା—ଅଗସ୍ତି ଗଛ । ମସ୍ତ—ମଇଗଛ । କରତା—ରକ୍ଷକ । ଶ୍ୟାମା—ସୁଆମଲଇ । ବଚଙ୍ଗ—ନାନାବର୍ଣ୍ଣରଂଜିତ ଭୂର୍ଜ, ଅସଂଭବ । କଲ—କଳ, ଶାଳଗଜା ଗଛ । କରମୋ—କରମଙ୍ଗା (କମ୍ରଙ୍ଗ) । କାମନାସନ—କାମନା ଆସନ, କାମନାରୂପୀ ସ୍ୱରୂପୀ । ମତ—ଅଗୁରୁ ଚନ୍ଦନ । ମତ୍ତ—ପାଗଳ । ବନମତ—ସ୍ୱୀକୃତ । ଶ୍ୟାମା—ଅତି ସୁନ୍ଦରୀ ସ୍ତ୍ରୀ ଗୌରୀ ।

ବନ୍ଦନ ତରୁଣ୍ଟ ଯାକରେ ନୋହିବ
ବଡ଼ ଆଶେ ଆସିବା ମଧୁପ ଜୀବ ।
ପଦ୍ମିନୀ କରେ ମଧୁକର କୁଶଳେ
ବନ୍ଦୀହେଲେ ବନ୍ଦିବି ମନ୍ଦାର ମାଳେ ଯେ ।୩୯।

କଉମୋଦକୀ ଧର କେଉଁ ମୋଦକ
ନ ବହିଲେ କହିଲେ ଲାଜେ ଏତକ ।
ଦୃଷ୍ଟିରୁ ଭିନ୍ନ ହେଲେ ମୁଷ୍ଟିକ-ପର
ବୃଷ୍ଟି କରନ୍ତ ସୃଷ୍ଟି ସାରବାଗିର ଯେ ।୪୦।

**ଅନ୍ୱୟ**—ବଡ଼ ଆଶେ ଆସିବା ମଧୁପ ଜୀବ ତରୁଣ୍ଟ ଯାକରେ ବନ୍ଦନ ନୋହିବ । ମଧୁକର କୁଶଳେ ପଦ୍ମିନୀ କରେ ବନ୍ଦୀ ହେଲେ । ବି ମନ୍ଦାର ମାଳେ ବନ୍ଦୀ ହେଲେ ।

ବଡ଼ ଆଶେ ଆସିବା ମଧୁପ ଜୀବ ତ ରୁଣ୍ଟକୀ କରେ ବନ୍ଦନ ନୋହିବ । ମଧୁକର ପଦ୍ମିନୀ କରେ କୁଶଳେ ବନ୍ଦୀ ହେଲେ ( ହେ ଗୌରି ! ) ମନ୍ଦାର ମାଳେ ବନ୍ଦିବି ।

କଉମୋଦକୀ ଧର (ଏକଥା ଶୁଣି) କେଉଁ ମୋଦକ ନ ବହିଲେ ? ଲାଜେ ଏତକ କହିଲେ । ମୁଷ୍ଟିକ-ପର ଦୃଷ୍ଟିରୁ ଭିନ୍ନ ହେଲେ ସୃଷ୍ଟି ସାରବା ଗିର ବୃଷ୍ଟି କରନ୍ତ ।

**କଥା**—ଏହି ଉପବନକୁ ବଡ଼ ଆଶା କରି ଆସିଥିବା ଭ୍ରମର ଜୀବଟି ତରୁଣ୍ଟ ଫୁଲ ବନରେ କେବେ ବନ୍ଦୀଯାଏ ହେବେ ନାହିଁ । ଉକ୍ତ ଭ୍ରମର କୁଶଳରେ ପଦ୍ମିନୀଦ୍ୱାରା ବନ୍ଦୀହେବେ । ତା ଛଡ଼ା ଉକ୍ତ ପକ୍ଷୀ ମନ୍ଦାର ଫୁଲ ସମୂହରେ ବନ୍ଦୀହେବା ସମ୍ଭବ ।

**ଅନ୍ୱୟାର୍ଥ**—ବଡ଼ ଆଶା କରି ଏହି ଉପବନକୁ ସମାଗତ ମଦ୍ୟପ ପ୍ରାଣୀ ଶିଶୁପାଳ କଦାପି ରାଜକୁମାରୀଙ୍କଦ୍ୱାରା ବନ୍ଦନଯୋଗ୍ୟ ହେବ ନାହିଁ । ପ୍ରକୃତ ପ୍ରଣୟକଳପ୍ରସୂ କୃଷ୍ଣ ପଦ୍ମିନୀଜାତୀୟା ଶ୍ରେଷ୍ଠ ରମଣୀ ରୁକ୍ମିଣୀଙ୍କଦ୍ୱାରା କୁଶଳରେ ବନ୍ଦୀ ହେଲେ ହେ ଗୌରି ଶ୍ୟାମା ! ନିଶ୍ଚୟ ତୁମ୍ଭଙ୍କୁ ମନ୍ଦାର ଫୁଲ ମାଳାରେ ପୂଜା କରିବ ।

କୌମୋଦକୀ ଗଦାଧର କୃଷ୍ଣ ଏକଥା ଶୁଣି କେଉଁ ଆନନ୍ଦ ବା ନ ବହିଲେ ? ତା ଶୁଣି ଲଜ୍ଜାରେ ଏତକ କହିଲେ—ବଡ଼ଭାଇ ମୋ ଦୃଷ୍ଟିରୁ ଚାଲିଗଲେ ଏପରି କଥାଟିଏ ତୁମକୁ କହନ୍ତି ହେ ଉଦ୍ଧବ ! ଯହିଁରେ ସୃଷ୍ଟି ସରିଯାନ୍ତା । ବଡ଼ ଚମତ୍କାର କଥା ପଦେ କହନ୍ତି ।

ଶବ୍ଦାର୍ଥ । ମଧୁପ—ଭ୍ରମର । ତରୁଣ୍ଟ—ଫଲବିଶେଷ । ମଧୁକର—ଭ୍ରମର । ବି—ପକ୍ଷୀ । ମଧୁ—ସୁରା । ମଧୁପ—ସୁରାପ ଜନାଃ । ରୁଣ୍ଟକୀ—ରାଜକନ୍ୟା । ତ—କଦାପି । ମଧୁକର—ପ୍ରଣୟକଳପ୍ରସୂ । ଶ୍ୟାମା—ତପ୍ତକାଞ୍ଚନବର୍ଣ୍ଣୀ ଯା ନାରୀ । "କୁଚପଦନ" ବଟଗ୍ରନ୍ଥୀ, ଶ୍ୟାମାସ୍ୱୀଚେଷ୍ଟ-କାଲସ୍ଥଃ, ଶୀତକାଳେ ଭବେଦୁଷ୍ଣଃ ଗ୍ରୀଷ୍ମକାଳେ ଚ ଶୀତଳାଃ" । କଉମୋଦକୀ—କୌମୋଦକୀ ଗଦା । କୌମୋଦକୀଧର—ବିଷ୍ଣୁ, କୃଷ୍ଣ । ମୋଦ—ଆନନ୍ଦ । ଗିର—କଥା ।

**ଆଶ୍ରମେ ଯିବା ଭାଷୁଁ ଗଡରସରେ**
**ମତ୍ତକ ବଶ କଲେ ଅତି ତୋଷରେ**
**ରାମ ଆରାମ ବୃତ୍ତାନ୍ତକୁ ଉଦ୍ଧବେ**
**ପଚ୍ଛରୁଁ ଉଚ୍ଚାରଣ କଲେ ସେ ଜବେ ହେ ।୪୧।**
**ଏ ବନ ମର୍ତ୍ତ୍ୟେ ବଇକୁଣ୍ଠ କୈଳାଶ**
**ଶିରୀଶ ସ୍ଥାଣୁ କରିବାରୁ ନିବାସ**
**ଦାଡ଼ିମ୍ବ କୁନ୍ଦଦନ୍ତୀ କମଳା ଶିବା**
**ମତ୍ତକ ନ କରନ୍ତ କତ ଛାଡ଼ିବା ଯେ ।୪୨।**

**ଅନ୍ୱୟ**—(ଉଦ୍ଧବ) ଗଡରସରେ 'ଆଶ୍ରମେ ଯିବା' ଭାଷୁଁ ଅତି ତୋଷରେ (କୃଷ୍ଣ) ମତ୍ତକ ବଶ କଲେ । (ଏହା ଦେଖି) ରାମ ଆରାମ ବୃତ୍ତାନ୍ତକୁ ଉଦ୍ଧବେ ପଚ୍ଛରୁଁ ସେ ଜବେ ଉଚ୍ଚାରଣ କଲେ ।

(ଏଠି) ଶିରୀଷ (ଏବଂ) ସ୍ଥାଣୁ ନିବାସ କରିବାରୁ ଏ ବନ ମର୍ତ୍ତ୍ୟେ ବୈକୁଣ୍ଠ (ଏବଂ) କୈଳାଶ (ପ୍ରାୟ ଅଛି) ଦାଡ଼ିମ୍ବ କୁନ୍ଦଦନ୍ତୀ କମଳା ଶିବା କତ ଛାଡ଼ିବା ମତ୍ତକ ନ କରନ୍ତ ।

**କଥା**—ଉଦ୍ଧବ ପରିହାସରେ "ଆଶ୍ରମକୁ ଯିବା କି ?" ଏହା କହନ୍ତେ ଅତି ସନ୍ତୋଷରେ କୃଷ୍ଣ ଚିତ୍ତ ଆନନ୍ଦିତ କଲେ । ଏହା ଦେଖି ପୂର୍ବରୁ ଅନ୍ୟମନସ୍କ ଥିବା ବଳରାମ ଉକ୍ତ ଉପବନର ବୃତ୍ତାନ୍ତ ସମ୍ବନ୍ଧରେ ପ୍ରଶ୍ନ କରନ୍ତେ ଉଦ୍ଧବ ଅତି ଶୀଘ୍ର କହି ଗଲେ—

ବୁଝିଲେ ଆଜ୍ଞା ! ଏହି ବଗିଚାରେ ସୁବାସ ସୁକୋମଳ ଶିରୀଷ ପୁଷ୍ପର ଗଛମାନ ଯେପରି ପୂରି ରହିଛି, ସେହିପରି ମଧ୍ୟ ଶାଖାବିହୀନ ଥୁଣ୍ଟା ଗଛମାନ ରହିଥିବାରୁ ଏ ବନ ମର୍ତ୍ତ୍ୟରେ ବୈକୁଣ୍ଠ ଏବଂ କୈଳାଶ ସହିତ ସମାନ ଦେଖାଯାଉଛି । ବୈକୁଣ୍ଠରେ ସୁରଭିତ ପୁଷ୍ପ, ସୁବାସିତ ବୃକ୍ଷ ଏବଂ କୈଳାଶରେ ବରଫାବୃତ ହେତୁ ଥୁଣ୍ଟାଗଛ ପ୍ରାୟ ଦେଖାଯାଏ । ତା ଛଡ଼ା ଡାଳିମ୍ବ, କୁନ୍ଦ, ଭେଷଜ ଦନ୍ତୀବୃକ୍ଷ, କମଳା ଏବଂ ହରିଡ଼ା, ଅଁଳା ଆଦି ବୃକ୍ଷସବୁ ଏକାଠି ଲାଗି ଲାଗି ରହିଅଛନ୍ତି ।

(ବଳଭଦ୍ର ବୁଝିଲେ ଯେ)—ଏହି ବନରେ ବିଷ୍ଣୁ ଏବଂ ଶିବ ନିବାସ କରିବାରୁ ଏ ବନ ମର୍ତ୍ତ୍ୟଧାମରେ ବୈକୁଣ୍ଠ ଏବଂ କୈଳାଶ ପ୍ରାୟ ଅଛି । ଦାଡ଼ିମ୍ବଦନ୍ତୀ ଲକ୍ଷ୍ମୀ ଏବଂ କୁନ୍ଦଦନ୍ତୀ ଗୌରୀ ଏଠାରେ ସାଥି ହୋଇ ପ୍ରାୟ ରହିଥାନ୍ତି ।

---

**ଶବ୍ଦାର୍ଥ । ଗଡରସ—ଅଭିପ୍ରାୟ ଜଡ଼ିତ ରସରେ, ଅତ୍ୟନ୍ତ ପରିହାସରେ । ରାମ—ବଳରାମ । ଆରାମ—ବଗିଚା । ଜବେ—ଶୀଘ୍ର । ଶିବା—ହରିଡ଼ , ଅଁଳା, ଆମ୍ବୁଡ଼ା, ଧବ, ହଳଦୀ, ଚେମେଣ୍ଟିଲତା । ସ୍ଥାଣୁ—ଥୁଣ୍ଟା ଗଛ । ଶିରୀଶ —ବିଷ୍ଣୁ । ସ୍ଥାଣୁ—ଶିବ । ଦାଡ଼ିମ୍ବଦନ୍ତୀ—ଡାଳିମ୍ବ କୋଷା ପରି ସୁଗଠିତ ସୁରମ୍ୟ ଦନ୍ତ ଯାହାର । କୁନ୍ଦଦନ୍ତୀ—କୁନ୍ଦପୁଷ୍ପ ପରି ସୁନ୍ଦର ଶୁଭ୍ର ଦନ୍ତ ଯାହାର । କତ ଛାଡ଼ିବା—ପାଖ ଛାଡ଼ିବା । ମତ୍ତକ—ମନକୁ ।**

**ବରୁଣ ଧନ୍ୱନ୍ତର ସ୍ଥିତ ପାଶରେ**
**ଖଦରେ ସଂଯୋଗ ହୁଅନ୍ତ ସେବାରେ**
**ସୋମାର୍କ ରମ୍ଭା କନଆର ନାଗର**
**ଉଭରେ ହୋଇଛନ୍ତି କ ଶୋଭାକର ଯେ ।୪୩।**

**ନ ଯିବା ଦେଖୁଥିବା ଏ ଅଭିମତ**
**ଯିବା ବଚନେ ଚ୍ୟୁତ କଲେ ଅଚ୍ୟୁତ**
**ବଳ ବଦନ୍ତ କୋକ-ଅରତି ରତି**
**ଲୋକନ କରନ୍ତ କ ନ କଲେ ଗତ ଯେ ।୪୪।**

**ଅନ୍ୱୟ**—୧ । (ଏହି ଉପବନରେ) ବରୁଣ, ଧନ୍ୱନ୍ତର ପାଶରେ ସ୍ଥିତ(ଅଛି) । (ଏଥି ଥିବା) ଖଦରେ ସେବାରେ ସଂଯୋଗ ହୁଅନ୍ତି । ସୋମ, ଅର୍କ, ରମ୍ଭା, କନଆର ଏବଂ ନାଗର ଉଭାରେ କ ଶୋଭାକର ହୋଇଛନ୍ତି ।

୨ । (ବୈକୁଣ୍ଠ ଓ କୈଳାସନାଥଙ୍କ) ପାଶରେ ବରୁଣ(ଓ) ଧନ୍ୱନ୍ତର ଖଦରେ ସେବାରେ ସଂଯୋଗ ହୁଅନ୍ତି । ସୋମ, ଅର୍କ, ରମ୍ଭା, କନଆର, ନାଗର (ଏହାଙ୍କ ସମ୍ମୁଖରେ) ଉଭାରେ କ ଶୋଭାକର ହୋଇଛନ୍ତି ?

(ଉଦ୍ଧବ ଦୁଇ ଭାଇଙ୍କ ଆକର୍ଷଣରୁ କହିଲେ) 'ନ ଯିବା ଦେଖୁଥିବା' (ମୋର) ଏ ଅଭିମତ (ଅଟେ, ତା ଶୁଣି) ଅଚ୍ୟୁତ ଯିବା ବଚନେ ଚ୍ୟୁତ କଲେ । ନ ଦେଖୁଥିବା (କହିଲେ, ତହୁଁ) ବଳ ବଦନ୍ତ କୋକ-ଅରତି ରତି ଲୋକନ ନ କଲେ ଗତ କରନ୍ତି କ ?

**କଥା**—ଏହି ବଗିଚାରେ ବରୁଣ ବୃକ୍ଷ ଧନ୍ୱନ୍ତର ବୃଦା ପାଖରେ ରହିଛି । ଏଥି ଥିବା ଖଇର ଗଛର ସାର ମୁଖବାସ ସେବାରେ ବ୍ୟବହୃତ ହୋଇଥାଏ । ସୋମ, ଅରଖ, କଦଳୀ, କନଅର, ନାଗେଶ୍ୱର ଏବଂ ନାଗେଶ୍ୱର ଉଭାରେ କ ସୁନ୍ଦର ଦେଖାଯାଉ ନାହାନ୍ତି ?

**ଅନ୍ୟାର୍ଥ**—ବୈକୁଣ୍ଠ ଏବଂ କୈଳାସନାଥ ବିଷ୍ଣୁ ଓ ଶିବଙ୍କ ସମ୍ମୁଖରେ ବରୁଣ ଓ ଧନ୍ୱନ୍ତର ଖଦ ସେବାରେ ନିଯୁକ୍ତ ରହିଛନ୍ତି । ସେମାନଙ୍କ ବସ୍ତ୍ର କୁଞ୍ଚୁଛନ୍ତି । ଚନ୍ଦ୍ର, ସୂର୍ଯ୍ୟ ଏବଂ ରମ୍ଭା କନ୍ୟାର ନାଗର ଇନ୍ଦ୍ର ଏହି ଦେବତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ କ ସୁନ୍ଦର ଦିଶୁ ନାହାନ୍ତି ?

ଏହି ଉପବନ ଶୋଭା ବର୍ଣ୍ଣନାରେ ଦୁଇ ଭାଇ ମୋହିତ ଥିବାର ଦେଖି ଉଦ୍ଧବ କହିଲେ—"ନ ଯିବା ଦେଖୁଥିବା" ମୋର ଏହା ହିଁ ମତ ଅଟେ । ତାହା ଶୁଣି କୃଷ୍ଣ କହିଲେ, ଯିବା କଥାଟିକୁ ଉଠାଇ ନିଅ । 'ନ ଦେଖୁଥିବା' ଆଉ ଦେଖିବାକୁ ବେଳ ନାହିଁ । ତହୁଁ ବଳଭଦ୍ର କହିଲେ, 'ଚନ୍ଦ୍ରମା ରାସ୍ତରେ ଏ ବନ କପରି ସୁନ୍ଦର ଦିଶିବ ନ ଦେଖିଲେ କପରି ଯିବା ?

ଶବ୍ଦାର୍ଥ । ବରୁଣ—ବୃକ୍ଷବିଶେଷ, ଦେବତାବିଶେଷ । ଧନ୍ୱନ୍ତରି—ସୁବାସିତ ପତ୍ର-ବିଶିଷ୍ଟ ବୃଦା, ଦେବବୈଦ୍ୟ । ଝଉରେ—ଝଉରରେ । ଖଦି—ବସ୍ତ୍ର । ଖଦିସେବା—ବସ୍ତ୍ର କାଚିବା ଓ ବସ୍ତ୍ର ପିନ୍ଧାଇବା ସେବା । ସୋମ—ସୋମବୃକ୍ଷ । ଅର୍କ—ଅରଖଗଛ, ସୂର୍ଯ୍ୟ । ରମ୍ଭା—କଦଳୀ, ସ୍ୱର୍ଗଅପ୍ସରା । ଜନିଆର—ଜନିଅର ଗଛ, ଜନ୍ୟାର । ନାଗର—ସ୍ୱାମୀ, ନାରଙ୍ଗ, ନାଗେଶ୍ୱର ବୃକ୍ଷ । ଛଟାରେ—ଛୁଞ୍ଚାରେ । ଚ୍ୟୁତ—ରହିତ । ବଳ—ବଳଭଦ୍ର । ବଦନ୍ତି—ଭାଷିଲେ । 'କୋକ-ଅରାତି'-ଚନ୍ଦ୍ରମା ।

ଅଗ୍ନି କୁମାରୀଗଣ ଅଛନ୍ତି ପୂରି
ପରିପନ୍ଥୀର ରତି ହେବ କପରି
ପ୍ରତି ଉତ୍ତର କରୁଁ ହସି ଲଙ୍ଗଲୀ
ସେଠାରୁ ବିଜେ କଲେ ସୈନ୍ୟ ସଂଖୋଳି ଯେ । ୪୫ ।

ଅଇଲେ ହରି ହଳୀ ଖେଳିଲା ଖ୍ୟାତି
କୁଣ୍ଡିନପୁରେ ପୂରିଗଲା ତ୍ରୃପତି
ସେ ଭୂଜମ୍ଭାରି ସମ୍ଭାବିତ-ସମ୍ଭାର-
ସମ୍ଭାବନା-ବିଧାନେ ହେଲେ ତତ୍ପର ଯେ ।୪୬।

**ଅନ୍ୱୟ**— (ଏଥି ତ) ଅଗ୍ନିକୁମାରୀଗଣ ପୂରିଅଛନ୍ତି । (ତା) ପରିପନ୍ଥୀର ରତି କପରି ହେବ ? (ଉଦ୍ଧବ ଏହି) ପ୍ରତି ଉତ୍ତର କରୁଁ ଲଙ୍ଗଲୀ ହସି ସେଠାରୁ ସୈନ୍ୟ ସଂଖୋଳି ବିଜେ କଲେ ।

'ହରି ହଳୀ ଅଇଲେ' (ଏଇ) ଖ୍ୟାତି କୁଣ୍ଡିନପୁରେ ଖେଳିଲା (ଏବଂ) ତ୍ରୃପତି ପୂରିଗଲା । ସେ ଭୂ-ଜମ୍ଭାରି ସମ୍ଭାବିତ-ସମ୍ଭାର-ସମ୍ଭାବନା-ବିଧାନେ ତତ୍ପର ହେଲେ ।

**କଥା**—ଉଦ୍ଧବ ଉତ୍ତର କଲେ, ଏଥି ଅଗ୍ନିକୁମାରୀ ଗଛମାନ ଯେପରି ପୂରି ରହିଛି ସେପରି ମଧ୍ୟ ଏଠାରେ ଅଗ୍ନି ପରି ଜ୍ୱଳନ୍ତ କନ୍ୟାଗଣ ପୂରିଅଛନ୍ତି । ଏପରି କ୍ଷେତ୍ରରେ ରୁକ୍ଷ ଅଗ୍ନି ତେଜର ପ୍ରତିକୂଳ ଯେଉଁ ଶୃଙ୍ଗାର ରସ ଏଠାରେ କପରି ବା ହେବ ? ଉଦ୍ଧବଙ୍କ ଏ ପ୍ରକାର ଉତ୍ତର ଶୁଣି ବଳରାମ ହସି ଦେଇ ସେଠାରୁ ସୈନ୍ୟ-ମାନଙ୍କୁ ସଂଖୋଳିବାକୁ ବିଜେ କରିଗଲେ ।

'କୃଷ୍ଣ ବଳରାମ ଅଇଲେ' ଏହି ପ୍ରଶସ୍ତି କୁଣ୍ଡିନପୁରଯାକ ଖେଳିଗଲା ଏବଂ ଚଉଦିଗରେ ସନ୍ତୋଷ ପୂରିଗଲା । ସେଠାର ରାଜା ଭୀଷ୍ମକ ସମୁପଯୁକ୍ତ ସମ୍ଭାର ସମ୍ଭାବନା ବିଧାନରେ ସେମାନଙ୍କ ପୂଜା ଲାଗି ତତ୍ପର ହେଲେ ।

---

ଶବ୍ଦାର୍ଥ । ଅଗ୍ନିକୁମାରୀ—ବୃକ୍ଷବିଶେଷ, ଯେଉଁ ସ୍ତ୍ରୀର ଦେହ ତମାମ ନିଆଁ ପରି ଜ୍ୱଳନ୍ତ, ଅତ୍ୟନ୍ତ ଯଉବନ ଅବସ୍ଥାରେ ତେଜବତୀ । ଭୂ-ଜମ୍ଭାରି—ପୃଥ୍ୱୀର ଇନ୍ଦ୍ର, ରାଜା । ଜମ୍ଭାରି—ଇନ୍ଦ୍ର ହରି—କୃଷ୍ଣ । ହଳୀ—ବଳରାମ । ପରିପନ୍ଥୀ— ପ୍ରତିକୂଳ, ଶୃଙ୍ଗାର ରସ । ଲଙ୍ଗଳୀ—ବଳରାମ । ଖ୍ୟାତି—ପ୍ରଶସ୍ତି । ତ୍ରୃପତି— ସନ୍ତୋଷ । ସମ୍ଭାବିତ—ସମୁପଯୁକ୍ତ ।

**କରଣମାଳୀ-ତନୁଜର କରଣ**
**ଏହା ମରଣ ଲେଖା ପାଞ୍ଜି ଧାରଣ**
**କଲ ବଶୁ ଆସିଛି ଅବରଣରେ**
**ହସି ଭଷିଲ ରୁକ୍ମୀ ଏହା ସତରେ ଯେ । ୪୭ ।**

**ଯେବେ ଅସି କ କଷି ହେବ ପ୍ରଚଣ୍ଡ**
**ଛେଦ ପାରଇ ଅଷ୍ଟ-ଦଗ୍‌ଦନ୍ତିମୁଣ୍ଡ**
**ଖେଦ ଦେବ କେ ବଶ୍ୱ ବେଦରୁ ମୋତେ**
**କହିଲ ଚେଦ-ନୃପନନ୍ଦନ ଏତେ ଯେ । ୪୮ ।**

**ଅନ୍ୱୟ** (ଏହି ଆଲୋଚନା ଲୋକମୁଖରୁ ଶୁଣି) ରୁକ୍ମୀ ହସି ସତ୍ୟରେ ଏହା ଭଷିଲେ—କରଣମାଳୀ-ତନୁଜର କରଣ ଏହା ମରଣ ଲେଖା ପାଞ୍ଜି ଧାରଣ କଲ ବଶୁଁ ଅବରଣରେ (ସେ) ଆସିଛି । (ପୁନଶ୍ଚ) ଚେଦ-ନୃପନନ୍ଦନ ଏତେ କହିଲ (ମୁଁ) ଯେବେ ଅସି କ କଷି ପ୍ରଚଣ୍ଡ ହେବ (ତେବେ) ଅଷ୍ଟ-ଦଗ୍‌ଦନ୍ତିମୁଣ୍ଡ ଛେଦ ପାରଇ । (ଦେଖି) ମୋତେ କେ ବଶ୍ୱ ବେଦରୁ ଖେଦ ଦେବ ?

**କଥା**— ଲୋକମୁଖରୁ ଏ ଖବର ଶୁଣି ରୁକ୍ମୀ ହସି ତୁରନ୍ତ ଏହା କହିଲ-- ଯମର କରଣ ଚିତ୍ରଗୁପ୍ତ ଏହି କୃଷ୍ଣର ମରଣ ଲେଖା ପାଞ୍ଜି ଧରିବା ଯୋଗୁଁ ଅବରଣରେ ସେ ଏଠାକୁ ଆସିଛି ।

ପୁନଶ୍ଚ ଚେଦିନୃପ-ପୁତ୍ର ଶିଶୁପାଳ ଏପରି କହିଲ—ଯେବେ ଖଣ୍ଡାକୁ ଦୃଢ଼ ଭାବରେ ଧରି ମୁଁ ପ୍ରଚଣ୍ଡ ହେବି, ତେବେ ଅଷ୍ଟଦିଗରେ ଥିବା ଦିଗପାଳ ମହାନ୍ ହସ୍ତୀମାନଙ୍କ ମୁଣ୍ଡ ଛିଣ୍ଡାଇଦେବ । ଆଚ୍ଛା, ଦେଖି ମୋତେ କିଏ ବିଶ୍ୱ ବେଦରୁ ଘଉଡ଼ାଇ ଦେଉଛି ଓ କନ୍ୟା ନେଉଛି ?

---

ଶବ୍ଦାର୍ଥ । ରୁକ୍ମୀ—ରୁକ୍ମିଣୀଙ୍କ ସହୋଦର, ବିଦର୍ଭ ଯୁବରାଜ । କରଣମାଳୀ—ସୂର୍ଯ୍ୟ । କରଣମାଳୀ-ତନୁଜ—ଯମ । ଯମ କରଣ—ଚିତ୍ରଗୁପ୍ତ ଚେଦିନୃପନନ୍ଦନ—ଶିଶୁପାଳ । ଅସି—ଖଣ୍ଡା । କଷି - ଦୃଢ଼ଭାବେ । ପ୍ରଚଣ୍ଡ—ନିଷ୍ଠୁର ଅଷ୍ଟଦଗ୍‌ଦନ୍ତୀ—ଅଷ୍ଟଦିଗରେ ଥିବ ଦିଗହସ୍ତୀମାନେ । ଛେଦ—କାଟି, ଛିଣ୍ଡାଇ । ଖେଦ—ଘଉଡ଼ାଇ ।

**ମନ୍ତ୍ରୀ ବଦନ୍ତି କଦା ନୋହିବ ବଭ୍ର**
**ତଛାଇ ଦେଲା ଦିଗ ଏକାଗ୍ର ପ୍ରଭ୍ର**
**ପତଙ୍ଗ ହୋଇ ଯେବେ ପତଙ୍ଗ ବତ**
**ଜଣା ନ ଯିବ ଦିନ ଦଣ୍ଡ ମୁହୂର୍ତ୍ତ ଯେ । ୪୯ ।**

**ସତ କହିଲ କହି ମୁକୁତା ହାର**
**ମଣ୍ଡିଲା ମଣ୍ଡନରୁ ତାହା ଶରୀର**
**ସେ ଭାଷିଲା ହସିଲା ସଦ୍ୟ ମଙ୍ଗଳ**
**ଶୁଣି ଅଟ୍ଟହାସ୍ୟରେ ହେଲା କୁଶଳ ଯେ । ୫୦ ।**

**ଅନ୍ୱୟ**—(ଏହା ଶୁଣି) ମନ୍ତ୍ରୀ ବଦନ୍ତି (ଏ) ବଭ୍ର କଦା ନୋହିବ । (କାରଣ ଏ ଦୁହିଁଙ୍କ) ଏକାଗ୍ର ପ୍ରଭ୍ର ଦିଗ ତଛାଇ ଦେଲା । (ଫଳରେ) ପତଙ୍ଗ ଯେବେ ପତଙ୍ଗବତ (ହୋଇବ,) ଦିନ ଦଣ୍ଡ ମୁହୂର୍ତ୍ତ (କେତେବେଳେ) ଜଣା ନ ଯିବ ।

(ଶିଶୁପାଳ) 'ସତ କହିଲ କହି' ମଣ୍ଡନରୁ ମୁକୁତା ହାର (କାଢ଼ି) ତାହା ଶରୀର (ରେ) ମଣ୍ଡିଲା । ସେ ହସିଲା (ଏବଂ) ଭାଷିଲା—ସଦ୍ୟ ମଙ୍ଗଳ (ହେବ) । (ଏହା) ଶୁଣି (ଶିଶୁପାଳ) ଅଟ୍ଟହାସ୍ୟରେ କୁଶଳ ହେଲା ।

**କଥା**—ଏହାପରେ ଦୁହିଁଙ୍କର ଉଚ୍ଚବାଚ ଶୁଣି ମନ୍ତ୍ରୀ କହିଲେ, ଏ ବଭ୍ରଘର ଶିଶୁପାଳ ବ୍ୟତୀତ କୃଷ୍ଣ ସହିତ କଦାପି ହୋଇପାରିବ ନାହିଁ । କାରଣ ଏହି ଦୁଇ ମହାନ୍ ବୀରଙ୍କ ସମ୍ମିଳିତ ତେଜସ୍ୱିତାଦ୍ୱାରା ଦିଗ ତାତିଗଲାଣି, ଫଳରେ ସୂର୍ଯ୍ୟ ଯେବେ ପତଙ୍ଗ ପ୍ରାୟ ଦିଶିଲେଣି, ତେବେ କପରି ଦିନ ଦଣ୍ଡ ମୁହୂର୍ତ୍ତ ଲଗ୍ନ ଜଣାଯିବ ଯେ ବଭ୍ରଘର ହେବ ?

ଶିଶୁପାଳ 'ସତ କହିଲ' କହି ମନ୍ତ୍ରୀକୁ ନିଜ ଭୂଷଣରୁ ମୂଲ୍ୟବାନ୍ ମୁକ୍ତାହାର କାଢ଼ି ତାହାଙ୍କ ଶରୀରରେ ମଣ୍ଡିଦେଲା । ସେ ଏହା ଦେଖି ହସିଲେ ଏବଂ ଶ୍ଳେଷାର୍ଥରେ କହିଲେ—ତୁମର 'ସଦ୍ୟ-ମଙ୍ଗଳ' ହେବ । ସଦ୍ୟମଙ୍ଗଳ କହିଲେ ସାତଙ୍କ ସାତଙ୍କ ତତ୍‌କ୍ଷଣାତ୍ ଯେଉଁକି ମଙ୍ଗଳ ହୁଏ ପରକୁ ଶୁଭ ନ ଥାଏ । ଏହି ଶ୍ଳେଷାର୍ଥ ଶିଶୁପାଳ ବୁଝି ନ ପାରି ଅଟ୍ଟହାସ୍ୟରେ କମ୍ପମାନ ହେଲା ।

**ଶବ୍ଦାର୍ଥ** । ସଦା—ତାତ୍‌କ୍ଷଣିକ, ସାଙ୍ଗେ ସାଙ୍ଗେ । କଦ—କଦାପି, କେବେହେଁ । ଏକାଗ୍ର—ମିଳିତ, ଏକମନ । ପ୍ରଭ୍ର—ତେଜ । ପତଙ୍ଗ—ସୂର୍ଯ୍ୟ, ଫଟିଙ୍ଗ । ବତ—ପରି । ମଣ୍ଡନ—ଭୂଷଣ ।

**ହୀରକ ନୀଳମଣି ହେମ ବଦ୍ରୁମ**
**ଯୁକ୍ତଗତି-ମଞ୍ଜୁଷ ମଞ୍ଜ ପ୍ରତିମ**
**ହୁଅନ୍ତେ ତନରଥେ ମିଥୁନ ଯେଣୁ**
**ଗ୍ରନ୍ଥକର୍ତ୍ତା ଦୀନତା ହରଣ ତେଣୁ ଯେ । ୫୧ ।**

**ଅନ୍ୱୟ**—ଗତି-ମଞ୍ଜୁଷ ମଞ୍ଜୁ ପ୍ରତିମ ହୀରକ, ନୀଳମଣି, ହେମ, ବଦ୍ରୁମ ଯେଣୁ ଯୁକ୍ତ (ପୁଣି) ତନରଥେ ମିଥୁନ ହୁଅନ୍ତେ ତେଣୁ ଗ୍ରନ୍ଥକର୍ତ୍ତା ଦୀନତା ହରଣ (ସମ୍ଭବ) ।

**କଥା**—ରଥରେ ବିଜୟ କରିଥିବାରୁ ମନେ କରାଯାଏ ଗତିଶୀଳ ପେଟରା ମଧ୍ୟରେ ଥିବା ସାରଭାଗସ୍ୱରୂପ ହୀରକ ତୁଲ୍ୟ ବଳରାମ,ନୀଳମଣି ତୁଲ୍ୟ ଜଗନ୍ନାଥ, ସୁବର୍ଣ୍ଣ ତୁଲ୍ୟ ସୁଭଦ୍ରା, ପୋହଳା ତୁଲ୍ୟ ସୁଦର୍ଶନ ଅବା ଯୁକ୍ତ ହୋଇଥାନ୍ତି ।ଯେଣୁ ତନରଥରେ ସୌର ଆଷାଢ଼ ମାସରେ ମିଳିତ ହୁଅନ୍ତି, ସେମାନେ ଦରିଦ୍ରର ଦୁଃଖ ହରଣ ଲାଗି ରଥାରୂଢ଼ ହୋଇଥିବାରୁ ତେଣୁ ଗ୍ରନ୍ଥକର୍ତ୍ତାର ଦାରିଦ୍ର୍ୟ ହରଣ ସମ୍ଭବ ହୁଏ ।

**ଆଲୋଚନା**—ହୀରା, ନୀଳ କାନ୍ତ ମଣି, ସୁବର୍ଣ୍ଣ, ବଦ୍ରୁମ ତୁଲ୍ୟ ବହୁମୂଲ୍ୟ ରତ୍ନ ସ୍ୱରୂପ ଦେବତା ଜଗନ୍ନାଥଙ୍କୁ ଚନ୍ଦ୍ରାକର ଦରିଦ୍ରକବି ନିଜର ଦୁଃଖ ଦୂରହେବା ଆଶା କରନ୍ତି ।



ଶବ୍ଦାର୍ଥ । ମଞ୍ଜୁ—ସାରଭାଗ, ମଜ୍ଜା । ମଞ୍ଜୁଷ—ପେଡ଼ି, ପେଟରା, ସିନ୍ଦୂକ । ହୀରକ—ହୀରା ସଦୃଶ । ମିଥୁନ—ସୌର, ଆଷାଢ଼ ମାସ, ମିଳନ, ସଂଯୋଗ ।

**ପାଠାନ୍ତର** । ଯୁକ୍ତଗତି-ମଞ୍ଜୁଷ—ମଞ୍ଜୁଷ-ଯୁକ୍ତଗତି ।

# ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର

## ଅଷ୍ଟମ କଳା

ବସନ୍ତ ରାଗରେ ସପ୍ତପଞ୍ଚାଶତ୍ ଛନ୍ଦରେ ଏହି ଗ୍ରନ୍ଥଟି ସଂପୂର୍ଣ୍ଣ । ଏହା ହିଁ କବିଙ୍କର ଏହି ଗ୍ରନ୍ଥର ଶେଷ ରଚନା । ତେଣୁ ସେ ପ୍ରଧାନ ଗୁଣନିଧାନ ଜନମାନଙ୍କୁ ଆହ୍ୱାନ କରି ଜଣାଇଛନ୍ତି ଯେ କବି ଏହି କଳାରେ ବହୁ କଳ୍ପନାସମ୍ଭାର ଥୋଇଛନ୍ତି । ବାସ୍ତବିକ ଏହା ପାଠକଲେ ତାଙ୍କର ସେ ବିଚିତ୍ର କଳ୍ପନାରେ ମନ ମୁଗ୍ଧ ହୋଇଯାଏ ।

ଯେମିତି ରୁକ୍ମିଣୀଙ୍କୁ ସଖୀ କହିଲା—

'ଗତିରେ ମତିକି ଅତି କ୍ଷିପ୍ରତର ବିପ୍ରକୁ ପେଷିଲା ଭାଷିଲା ।'

ଅର୍ଥାତ୍ ଯାହାର ଗତି ମନଠୁ ଚଞ୍ଚଳ ଏପରି ଜଣେ ବ୍ରାହ୍ମଣଙ୍କୁ ପଠାଇଦେଇ ଆସିଲି ।

ତା' ଶୁଣି ରୁକ୍ମିଣୀ କହିଲେ—ଏକଥା ଶୁଣିଲେ ପ୍ରାୟଶ୍ଚିତ୍ତ କରିବା ସମୀଚୀନ । କାରଣ ଗମନଶୀଳ ଜୀବ ସହିତ ଚଞ୍ଚଳ ମନକୁ ତୁଳନା କରି ତୁ ମହାପାପ କରିଛୁ । ଏପରି ମିଥ୍ୟା କୁହାଯାଇ ପାରେ କି ? ଇଚ୍ଛାଗତି ମନ ସହିତ କୌଣସି ଜୀବର ପାଦଗତି ସମାନ ହୋଇପାରେ କି ?

ସଖୀ କହିଲା—କଣ ମିଛ କହିଲି ମ ? ଆପଣ ତ କୃଷ୍ଣଙ୍କ ନିକଟକୁ ମନ ପଠାଇଛନ୍ତି । ମୁଁ କ୍ଷିପ୍ରଯାନରେ ବ୍ରାହ୍ମଣଙ୍କୁ ପଠାଇଛି । ଆଚ୍ଛା ଦେଖାଯାଉ, କିଏ ଆଗ ଫେରୁଛି ? ତାପରେ ସିନା ସତ ମିଛ ଜାଣିବା !

ଏପରି ଉକ୍ତି ପ୍ରତ୍ୟୁକ୍ତି ଏ ଗ୍ରନ୍ଥର ପ୍ରତି ସ୍ଥଳରେ ବହୁଭାବରେ ଭରିରହିଛି ଯେ ତାହା ଇଚ୍ଛାହୁଏ ସମସ୍ତ ଉଦ୍ଧାର କରିଦେବାକୁ । କିନ୍ତୁ ତାହା ଏ [illegible] ସୂଚନାରେ କିପରି ବା ଦର୍ଶାଇହେବ ?

କଳ୍ପନାର କଳ୍ପଲୋକରେ ଭାସି 'ହେଇ ସେ ଆସିଲେ କି ?' ଏପରି ଚିନ୍ତାରେ ଅଧୀରା ରୁକ୍ମଣୀଙ୍କର ଚେତା ବୁଡ଼ିଗଲା । ଜେମାଙ୍କ ନିକଟରେ ସଖୀମାନଙ୍କ ବ୍ୟତୀତ ବୈଦ୍ୟକନ୍ୟା, ପୁରୋହିତକନ୍ୟା, ଜ୍ୟୋତିଷକନ୍ୟା, କବିକନ୍ୟା, ପଣ୍ଡିତକନ୍ୟା ସର୍ବଦା ଆବଶ୍ୟକ ସେବା ନିଯୁକ୍ତ ଥାନ୍ତି । ଏସବୁ କନ୍ୟା ନିଜ ନିଜ ବିଦ୍ୟାରେ ଏକାନ୍ତ ସୁପଣ୍ଡିତା । ଯେଉଁ ପୂର୍ବପୁରୁଷ ରାଜତନ୍ତ୍ର ଗଢ଼ିଥିଲେ ସେମାନେ ଏପରି ସାଧୁ ବିଧିମାନ ଶିକ୍ଷାର ମହତ୍ତ୍ୱ ମଧ୍ୟରେ ସୃଷ୍ଟି କରିଥିଲେ ଯେ ରାଜା, ରାଣୀ, ଯୁବରାଜ, ଜେମା ଏହି ସମସ୍ତଙ୍କୁ ଅତି ଉଚ୍ଚ ମନୋବୃତ୍ତି ମଧ୍ୟରେ ଚଳିବାକୁ ହେଉଥିଲା । ରାଜା ନଳ, ଯୁଧିଷ୍ଠିର, ହରିଶ୍ଚନ୍ଦ୍ର ଆଦି ବହୁ ରାଜା ଏ ଗଣତନ୍ତ୍ର ରାଜ୍ୟ ମଧ୍ୟରେ ଗଣତନ୍ତ୍ର ଯେତେ ଅଧିକ ସଫଳ ହେଲେ ମଧ୍ୟ କଦାପି ନିନ୍ଦିତ ହେବେ ନାହିଁ । ଆଜି ଯେ ଜେମା କାଲି ସେ ରାଣୀ ହେବେ । କିନ୍ତୁ ପରାଙ୍ମୁଖୀ ବିଶ୍ୱ ସୃଜନ ପ୍ରବୃତ୍ତି ଯୋଗୁଁ ସେ ରାଜତନ୍ତ୍ର ତା ନିଜ ଦୋଷରୁ ଭ୍ରଷ୍ଟ ହୋଇ ଆଜି ଗଣଶାସନ ପୃଥିବୀକୁ ଆସିଛି । ଗଣଶାସନ ସମସ୍ତ ନ୍ୟାୟ ଦେଇପାରନ୍ତି— ରାମରାଜ୍ୟ ପରି, ଏହା କେହି ସାହସ କରି କହିପାରିବେ ନାହିଁ । ଗଣଶାସନରେ ଦୁର୍ବଳ ଅଧିକ ଦୁର୍ବଳ ହୋଇଥାଏ ଏହା ଯେ ନିଃସନ୍ଦେହ ମନେ କରିବା ଠିକ୍ । ସେ ଗୋଟିଏ ପ୍ରକାର, ଏ ଗୋଟିଏ ପ୍ରକାର ।

କବିମଣି ପଦ୍ମମଣିଙ୍କର ଏହି ସୁନ୍ଦର ଦୁଇଟି ପଦ ଉତ୍କଳର ଘରେ ଘରେ ଶୁଣାଯାଏ । ତାହା ମଧ୍ୟରୁ ଗୋଟିଏ ହେଲା ରୁକ୍ମଣୀଙ୍କର ମୂର୍ଚ୍ଛା ହେବାରୁ ବୈଦ୍ୟକନ୍ୟା ଯେଉଁ ଉକ୍ତି କରିଥିଲା ।

ଲକ୍ଷ୍ମୀ ବିଳାସ ବିନ୍ୟାସ ବିନା ଲେଶ
ଲସିବ ନାହିଁ ଏ ମାରକ
କୁସୁମାକର ହିମାଂଶୁ ପୁଷ୍ପାଶୁଗ
ଧାରକ ଏ ରୋଗକାରକ
ଶଶାଙ୍କ
କିରଣ ଉଦୟୁ ଭାସ୍କର
କି କରିବେଟି ଅଛନ୍ତି କଳ୍ପତରୁ
କାମଧେନୁ ଚନ୍ଦ୍ରଶେଖର ।

କବି କି ବୈଦ୍ୟଶାସ୍ତ୍ର, କି ଜ୍ୟୋତିଷ ଶାସ୍ତ୍ର, କି ଅଳଙ୍କାର ଶାସ୍ତ୍ର, କି ଭାଷାତତ୍ତ୍ୱ, କି ଛନ୍ଦତତ୍ତ୍ୱ କାହିଁରେ ଊଣା ଥିବାର ଜଣାଯାଏ ନାହିଁ । ଉପରଲିଖିତ ପଦର ଟୀକା ପଢ଼ି ପାଠକ ଜାଣିବେ କବି ଭେଷଜଶାସ୍ତ୍ର କିପରି ଭାବରେ ଚର୍ଚ୍ଚା କରିଥିଲେ । ପୁନର୍ବାର ଜ୍ୟୋତିଃଶାସ୍ତ୍ର ସେହିପରି ପରବର୍ତ୍ତୀ ପଦମାନଙ୍କରେ ତାହାଁର ପ୍ରମାଣ ପାଇପାରିବେ । କବିକନ୍ୟା, ପଣ୍ଡିତକନ୍ୟା, ସଙ୍ଗୀତନିପୁଣା ଯୁବତୀ, ଗାଳ୍ପିକା

ତରୁଣୀ, ଏମାନଙ୍କର ମନୋରମ ଉକ୍ତିମାନ ଏପରି ଯୁକ୍ତିଯୁକ୍ତ ଭାବରେ କବି ଖଞ୍ଜି ଛନ୍ତି— ଗୋଟିକ ପରେ ଗୋଟିଏ ଯେ, ଏକ ଏକ ଜ୍ଞାନକୋଷ ପରି ପାଠକଙ୍କୁ ତାହା ମୋହିତ ଏବଂ ଆଶ୍ଚର୍ଯ୍ୟ କରିପାରିଛି ।

ରଚନାରେ ଆଧୁନିକତା ଯେତେ ରଖାଯାଇପାରେ ତା' ରଖି ମଧ୍ୟ ଛାନ୍ଦର ଗୌରବ ଏକ ପଦରୁ ଦୁଇ, ତିନି ପ୍ରକାର ଅର୍ଥ ହେବା କଥା ସେ ମଧ୍ୟ ଭୁଲିନାହାନ୍ତି । ଏହି ଛାନ୍ଦର ଊନବିଂଶ ପଦଟିକୁ କବି ତିନୋଟି ଅର୍ଥରେ ରଚନା କରି ଶିବ, ବିଷ୍ଣୁ, ଦୁର୍ଗାଙ୍କର ବନ୍ଦନା ତଦ୍ଦ୍ୱାରା ପ୍ରକାଶିତ କରାଇଛନ୍ତି । ଜେମା ଶୋଇଛନ୍ତି । ବାଃକୋରୁ ସଫଳତା ଘେନି ଯେଉଁ ବ୍ରାହ୍ମଣ ଫେରିଛନ୍ତି ଏବଂ ଯେଉଁ ସଖୀଦ୍ୱାରା ଏ ସୁସମ୍ବାଦ ଅଣିଛି ଏ ଦୁହେଁ ଅତି ସତର୍କରେ ସେ ଖବର ଚାଳିଆ ସଖୀକୁ ହାତମାରି ଘଣ୍ଟଣାର ସୂଚନା ଦେଇଛନ୍ତି । କବି ଜେମାଙ୍କର ଶୁଭପ୍ରଭାତ ଲାଗି ଏକ ବନ୍ଦନାଗୀତି ଗାଇଛନ୍ତି, ଯାହା ଫଳରେ ଜେମା ତାର କୃତକାର୍ଯ୍ୟତାରେ ସନ୍ତୋଷ ଲଭି ପେଇଁଛି ।

ଏହାପରେ ଆସିଛି ବଉଁମଙ୍ଗୁଳା । ଜେମାଦ୍ୱାରା ପାର୍ବତୀ ବନ୍ଦିତା ହେବେ । ସଖୀଦଳରେ ଶୁଭ ଅନୁକୂଳରେ ଶୁଭ କଳସ, ଧୂପ, ମଙ୍ଗଳବାଜା ମଧ୍ୟରେ ଜେମା ପାଦରେ ଚାଲି ବଣିର ଆଦି ଜନନୀ ରମଣୀଲଲାମ ଦେବୀ ପାର୍ବତୀଙ୍କୁ ନିଜ ହାତରେ ବନ୍ଦନା କରିଯିବେ—ଶିବଙ୍କ ପରି ତାଙ୍କର ପତି ଯେପରି ପୁଣ୍ୟବନ୍ତ, ଚରିତ୍ରବନ୍ତ, ଏକପତ୍ନୀବ୍ରତ ହୁଅନ୍ତି ।

କୋମଳାଙ୍ଗୀ ଜେମା ଏତେ ପଥ ପାଦରେ ଚାଲିଯାଇ ପାରିବେ ନାହିଁ । ଦେବୀଙ୍କ ଆସ୍ଥାନ ଥିବା ପର୍ବତ ନିମ୍ନ ଯାଏ ପାଲିଙ୍କିରେ ଯାଇ ସେଇଠୁ ଚାଲି କରି ଯିବେ । ତା ହେଲା । ହୁଳହୁଳି, ଶଙ୍ଖ, ଦମାଲୁ, ବଡ଼କାଠ ଡିଣ୍ଡିମମାନ ବାଜିଉଠିଲା । ହାତୀ, ଦୋଡ଼ା ସଜ୍ଜିତ ରହିଲେ । ସହସ୍ର ପତାକା ଉଡ଼ିଲା । ମର୍ଦ୍ଦଳ, ମନ୍ଦିରା, ସିତାରା, ତୁମ୍ବୁରା, ଅମୃତି, ସାରଦା, ସାରଙ୍ଗି ସଙ୍ଗୀତର ତାଳେ ତାଳେ କୁମାରୀକନ୍ୟାମାନେ ବଜାଇ ଗାଇଉଠିଲେ । ମଙ୍ଗଳ ବୋଲରେ ଚତୁର୍ଦ୍ଦିଗ ପ୍ରଲୋଭିତ ହେଲା । ଜଣାଗଲା ଯେପରି ଜୟଲକ୍ଷ୍ମୀ ଭ୍ରମଣରେ ବାହାରିଛନ୍ତି । ମୟୂର ଝୁଲ, ଆଲଟ, ଫୁଲପଙ୍ଖା, ଚଅଁର, ଅତରଦାନ, ରତ୍ନ ଧୂପଦାନ, ଦଧିଶାକର ହାଣ୍ଡି, ପୂର୍ଣ୍ଣକୁମ୍ଭ-ଧାରଣୀମାନେ ପାଲିଙ୍କି ସହିତ ଚାଲିଲେ ।

ଏହା ଏକମାତ୍ର ରୁକ୍ମଣୀଙ୍କ ପ୍ରତି ସମାଜରେ ଅଭିପ୍ରେତ ନ ଥିଲା । ଏହା କନ୍ୟା-ସମାଜ ପ୍ରତି ଘରେ ଘରେ ଥିଲା ଅଭିପ୍ରେତ । ଏବେ ମଧ୍ୟ ସେ ମନୋହାରୀ ଦୃଶ୍ୟ ସମାଜରୁ ଲୋପ ହୋଇନି । ରାଜଗୃହରେ ଅଧିକ ଥିବା ଥିଲା, ସାଧାରଣରେ ନିଶ୍ଚୟ ଥିଲା ଏବଂ ଅଛି । ଏହି ମନୋହର ସଂସ୍କୃତିକୁ ଲୋପ କରି ଦେଲେ, ଡେକଷ୍ଟାର୍ଡ୍, ସମାଜ-ସଂସ୍କାର ଆଦି କହି ମମତାବିହୀନବିବାହ ଅନ୍ୟ ଏକ ଗୁଣରେ ଚଳାଇଦେଲେ ଜାତି କୁଆଡ଼େ ହିମାଳୟ ପରି ଉଚ୍ଚ ହୋଇଯିବ, ଏପରି କେତେଜଣ ବଙ୍କ ବାଗୀଶ ଭାବୁଛନ୍ତି ।

କିନ୍ତୁ ବସୁଧାକୁ ଏକ କୁଟୁମ୍ବ ବୋଲି ଚିନ୍ତା କରୁଥିବା ମନୋବୃତ୍ତି ଏ ମମତାବିହୀନତା ମଧ୍ୟରୁ କେବେ ସମ୍ଭବ ହେବ ନାହିଁ । ବରଂ ପୃଥିବୀରୁ ସାରସ୍ୱତା ଲୁପ୍ତହେବା ମାତ୍ରେ ତାହା ଧ୍ୱଂସ ପାଇଯିବ ।

କେମାଙ୍କ ଗନ୍ତପଥରେ ଏକ ବିଚକ୍ଷଣା ବୀଣା ବଜାଇ ରାମାୟଣ ଗାଇ ଗ୍ଲଲି— ଅହଲ୍ୟାକୁ ଉଦ୍ଧାର କରି ରାମ କିପରି ଧନୁଭଙ୍ଗ କରି ସୀତାଙ୍କୁ ଲାଭକଲେ । ଏଥର ମନ୍ଦିର ଦେଖାଗଲା । ନିକଟ ହେଲେ କେମା ପାଲିଙ୍କିରୁ ତଳକୁ ବିଜେହେଲେ । ପାଦରେ ଗ୍ଲଲିକରି ଠାକୁରାଣୀଙ୍କୁ ଦର୍ଶନ କରି ରତ୍ନଅଞ୍ଜୁଳି ଦେଇ ମନେ ମନେ କରଯୋଡ଼ି କହିଲେ—

ମୃତ୍ୟୁଶରୁ ଯେ ଅଟନ୍ତି ସେ ଖଟନ୍ତି
କଣା ଦେଇ ତୁମ୍ଭର ଚରଣେ

ସମସ୍ତ ନାରୀ ଏହା ହିଁ ଇଚ୍ଛା କରନ୍ତି । କପଟ ପୁରୁଷ ତାର ଦାସ ହେଉ । ତା ଛଡ଼ା କହିଲେ—କୃଷ୍ଣ ରୂପକ କସ୍ତୂରୀ ଦେଇ ମୋତେ ମରଣରୁ ରକ୍ଷାକର । ସଖୀଏ କହିଲେ—ଧଳା ମେଘରେ ବିଦ୍ୟୁତ୍ ଝଟକ ଯେବେ ଦେଖା ଦେଇଛି ହେ ଜନନୀ ! କଳା ମେଘରେ ବିଦ୍ୟୁତ୍ ଝଟକ ତୁମ୍ଭେ ନ ଦେଖାଇବ କାହିଁକି ? ଶିବ ଧଳାମେଘ, କୃଷ୍ଣ କଳାମେଘ ।

ଏହା ପରେ କ'ଣ ଘଟିଲା, କବିଙ୍କ ନିଜ କଥାରେ—

ପୁରୋଧା ନନ୍ଦନା ସାରି ବନ୍ଦାପନା
ମଣ୍ଡି ଦେଇ ଧଣ୍ଡୀ ପ୍ରସାଦ
ମୁଣ୍ଡି ଆଳୁ ଚଣ୍ଡୀ ପାଦେ ପ୍ରଚରାଇ
ମ୍ଳଣ ପଣ୍ଡି ତାକୁ ପ୍ରାସାଦ—
ଉଦରୁ
ବାହୁଡ଼ା ବିଜୟ କରାନ୍ତେ
ନନ୍ଦଘୋଡକୁ ଇନ୍ଦୀବର ସୁନ୍ଦର
ଛପାଇ ତ ଥିଲେ ଅନନ୍ତେ ।
ଧପଟେ ଲମ୍ପଟ କରାଇ ତାହାକୁ
ପରମ କପଟିଶେଖର
ଝଟ କରି ଉଠି ଧଇଲେ ରତନ-
କଟକ-ଶୋଭିମାର କର
ନିଃଶଙ୍କେ
ନେଲ କରିକ ଅଙ୍କିବରାଗ
ନେଲିଲ ଉଲ୍ଲ ଧାନ୍ ନଳିଣନେତ୍ରୀକୁ
ବିନ୍ଦାଟିଗଲା ଏହି ମୁଁର ।

ଜେମା ଦାଆଁ ମଙ୍ଗୁଳା ଦ୍ୱିପରୁ ନୂତନ ରତ୍ନଚୂଡ଼ ଲାଗି ହୋଇଥିଲେ । ତେଣୁ ରତନ-କଣ୍ଟକ-ଶୋଭନା ବୋଲି ତାଙ୍କୁ ଏଠାରେ ବର୍ଣ୍ଣନା କରିଅଛନ୍ତି ।

ଏହି—'ନେଲେ ହରି ହରି ହରିଣନେତ୍ରୀଙ୍କୁ ବହାରିଗଲା ଏହି ଦ୍ୱାରେ' ଏ ପଦଟି ଅତି ପରିଚିତ ପଦ । ଯଦୁମଣି ଏହି ପଦଟି ଲାଗି କୋଟି ଜନତାରେ ପୂଜ୍ୟ ଏବଂ ପରିଚିତ ଅଟନ୍ତି ।

କୃଷ୍ଣ ରୁକ୍ମଣୀଙ୍କୁ କୋଳରେ ବସାଇ ନେବାବେଳେ ସଖୀମାନେ କାନ୍ଦି ଉଠିଲେ । ଏ କାନ୍ଦ ତାଙ୍କ ପାଇଁ ହେଲା ଆନନ୍ଦାଶ୍ରୁ, କିନ୍ତୁ ସାଧାରଣ ଦୃଷ୍ଟିରେ ହେଲା ଦୁଃଖାଶ୍ରୁ ।

ରୁକ୍ମୀ ଏହା ପରେ ରଥ ନେଇ ଦଉଡ଼ିଲେ । କିନ୍ତୁ କୃଷ୍ଣଙ୍କଦ୍ୱାରା ପରାଜିତ ହୋଇ ଆଉ ଗୃହକୁ ଲେଉଟିଲେ ନାହିଁ ।

ରୁକ୍ମଣୀଙ୍କର ଦ୍ୱାରକାରେ ହାତଗଣ୍ଠି ପଡ଼ିଲା । ଶିବ ପାର୍ବତୀଙ୍କୁ ଯେମନ ଯେପରି ଜୀବନତମାମ ଅର୍ଦ୍ଧନାରୀଶ୍ୱର ଥିଲେ, ତଦ୍ରୂପ କୃଷ୍ଣ ରୁକ୍ମଣୀଙ୍କୁ ଯେମନ ଗୋଟିଏ ହୋଇଗଲେ । କବି ଲେଖିଛନ୍ତି—ସେ ଦୁଇ ହୃଦପଟକୁ ମଧୁରତ୍ୟୋବାସ ଦରଜ ପ୍ରାପ୍ତେ ସିଇଁ ଗୋଟିଏ କରିଦେଲା ।

କବି ଜଗନ୍ନାଥଙ୍କର ଲକ୍ଷ୍ମୀ-ନାରାୟଣ ବେଶକୁ ସ୍ମରଣ କରି ଗ୍ରନ୍ଥ ସମାପ୍ତ କରିଛନ୍ତି । ତାହାହିଁ ତ ଏ ଜାତିର ଚରମ ଆଦର୍ଶ ।

ସେ ଆଉ ଆଠକଳା ଲେଖି ଗ୍ରନ୍ଥର ନାମ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ସାର୍ଥକ କରିଥାନ୍ତେ । କିନ୍ତୁ ତାହା କରିବାକୁ ତାଙ୍କୁ ବିଧାତା ସୁଯୋଗ ଦେଇ ନ ଥିଲା । ଦାରିଦ୍ର୍ୟ, ନିର୍ଯ୍ୟାତନା, ଅପମାନ, କ୍ଳେଶ ମଧ୍ୟରେ ସେ କେବଳ ଆଶାରେ ଦୀର୍ଘ ବର୍ଷ ବଞ୍ଚି ବଞ୍ଚି ଦିନେ ସେହି ଜଗନ୍ନାଥ ସ୍ମରଣ କରି ସରିଗଲେ ।

ବର୍ତ୍ତମାନ ଶୁଣାଯାଉଛି, ଏହି ଆଠକଳାକୁ ଷୋଳକଳାରେ ପରିଣତ କରି କେହି କେହି ଗ୍ରନ୍ଥଟିର ନୂତନତା ଦେଖାଇବା ଇଚ୍ଛାକରନ୍ତି । କିନ୍ତୁ କବିଙ୍କ ନିଜ ହସ୍ତଲିଖିତ ପୋଥିରେ ଯେପରି ଭାବରେ ଲେଖାଅଛି ଏହାହିଁ ତଦନୁରୂପ ।



# ଅଷ୍ଟମ କଳା

ରାଗ—ବସନ୍ତ

ପ୍ରଧାନ ଗୁଣନିଧାନ ଜନମାନେ
ମାନସ କର ସାବଧାନ
ଏ କଳାରେ କବି କଳ୍ପି କଳ୍ପି କରି
ଜଳ୍ପି ଅଛି ଯେତେ ବିଧାନ
ଉଦନ୍ତ
ଗୃହ୍ଲଦେଇ ଆଳି ଆସିଲା
"ଗଡରେ ମଡକ ଅତି କ୍ଷିପ୍ରତର
ବିପ୍ରକୁ ପେଷିଲି" ଭାଷିଲା ।୧।

**ଅନ୍ୱୟ**—(ହେ) ପ୍ରଧାନ ଗୁଣନିଧାନ ଜନମାନେ ! ଏ କଳାରେ କବି କଳ୍ପି କଳ୍ପି କରି ଯେତେ ବିଧାନ ଜଳ୍ପି ଅଛି, ମାନସ ସାବଧାନ କର । ଆଳି ଉଦନ୍ତ ଗୃହ୍ଲ-ଦେଇ ଆସିଲା । (ସେମାନ୍ଙ୍କୁ) ଭାଷିଲା "ଗଡରେ ମଡକ ଅତି କ୍ଷିପ୍ରତର ବିପ୍ରକୁ ପେଷିଲି ।"

**କଥା**—ହେ ଉତ୍କୃଷ୍ଟ ଗୁଣଜ୍ଞ ମାନବଗଣ ! ଏହି ଗ୍ରନ୍ଥକଳାରେ କବି ବନ୍ଧୁ କଳ୍ପନା କରି ଯେତେ ବ୍ୟବସ୍ଥା ବ୍ୟକ୍ତ କରିଅଛି ସେଥିରେ ମନକୁ ସ୍ଥିର କରି ବିଚାର କର ।

ସଖୀ ରୁକ୍ମଣୀଙ୍କଦ୍ୱାରା ଲିଖିତ ଚିଠିକୁ ପଠାଇ ଦେଇ ଆସିଲା । ଆସି ତାଙ୍କୁ କହିଲା—ଯାହାର ଗତି ମନଠୁଁ ଚଞ୍ଚଳ ଏପରି ଜଣେ ବ୍ରାହ୍ମଣଙ୍କୁ ପଠାଇ ଦେଇ ଆସିଲି ।

---

ଶବ୍ଦାର୍ଥ—ଗୁଣନିଧାନ—ସଦ୍‌ଗୁଣସମ୍ପନ୍ନ । କଳ୍ପି କଳ୍ପି—କଳ୍ପନା କରି କରି । ଜଳ୍ପି—ବ୍ୟକ୍ତ କରିବା । ବିଧାନ—ବ୍ୟବସ୍ଥା । ଉଦନ୍ତ—ଖବର । ଆଳି—ସଖୀ । ଗୃହ୍ଲ—ପଠାଇ । ମଡକୁ—ମନକୁ ।

ଶ୍ରବଣେ ରୁକ୍ମଣୀ ଭଣିଲେ ଏ ବାଣୀ
ଶୁଣିଲେ ପ୍ରାଶ୍ଚିତ ଉଚିତ
ଜଙ୍ଗମ ଗମନ ମନକୁ ଜବନ
ବମନ କଲୁ କି ଦୁରିତ
ସେ ଭାଷେ
ଆପଣ ତ ମନ ପେଷିଛ
ସେଠାକୁ ଏଠାକୁ କେ ଆଗ ଆସିବ
ଜାଣିବା ତେବେ ସତ ମିଛ ।୨।

**ଅନ୍ୱୟ**—(ଏହା) ରୁକ୍ମଣୀ ଶ୍ରବଣେ ଭଣିଲେ—ଏ ବାଣୀ ଶୁଣିଲେ ପ୍ରାଶ୍ଚିତ୍ତ ଉଚିତ (ଅଟେ) (କାରଣ) ଜଂଗମ ଗମନ (ସହିତ) ଜବନ ମନକୁ (ତୁଳି) ଦୁରିତ ବମନ କଲୁ କି ? ସେ ଭାଷେ, ଆପଣ ତ ମନ ପେଷିଛ । ସେଠାକୁ (ଯାଇ) ଏଠାକୁ କେ ଆଗ ଆସିବ, ତେବେ ସତ ମିଛ ଜାଣିବା ।

**କଥା**—ଏ କଥା ରୁକ୍ମଣୀ ଶୁଣି କହିଲେ—ଏକଥା ଶୁଣିଲେ ପ୍ରାୟଶ୍ଚିତ୍ତ କରିବା ଉଚିତ ଅଟେ । କାରଣ ଗମନଶୀଳ ଜୀବ ମାନ ସହିତ ଚଞ୍ଚଳ ମନକୁ ତୁଳନା କରି ଦୁଷ୍କୃତ ପାପ ତୁ ବାନ୍ତ କରିଚୁ । ମିଛ କହିଚୁ । ଇଚ୍ଛା-ଗତି ମନ ସହିତ ଜୀବ ପାଦଗତି ସମାନ ହୋଇପାରେ କି ?

ତହୁଁ ସେ ସଖୀ କହିଲା—ଆପଣ ତ କୃଷ୍ଣଙ୍କ ନିକଟକୁ ନିଜ ମନକୁ ପଠାଇଛନ୍ତି; ମିଛ କିଣ କହିଲି ? ମୁଁ ମିନା ବ୍ରାହ୍ମଣକୁ ପଠାଇଛି । ଆଚ୍ଛା ଦେଖାଯାଉ, ମନ ଆଗ ଫେରୁଛି କି ବ୍ରାହ୍ମଣ ଆଗ ଫେରୁଛି । ଏଇଥିରୁ ସତ ମିଛ ଜାଣିବା । ମନଠୁଁ ମୋ ପଠାଇବା ବ୍ରାହ୍ମଣର ଗତି ଅଧିକ କି ନା ଏହା ଜଣା ପଡ଼ିଯିବ ।

ଶବ୍ଦାର୍ଥ—ପ୍ରାୟଶ୍ଚିତ୍ତ—ପାପକ୍ଷୟ ପାଇଁ ଯେଉଁ ସତ୍କର୍ମ କରାଯାଏ । ଜଂଗମ—ଗତିଶୀଳ ଜୀବ । ଜବନ—ଅତିଶୀଘ୍ରଗତି । ଦୁରିତ—ପାପ, ମିଥ୍ୟା । ବମନ—ବାନ୍ତ, ବାହ୍ୟ ପ୍ରକାଶ ।

ଝଟନ୍ତି ଏ ଗିର ଚତୁର୍ଦ୍ଦଶପୁର—
ମୋହିନୀ ମଉନ ହୋଇଲା
ନଭଧରାଦେବ ଲୋଭେ ଧରା ଦେବ
ଯିବାମାର୍ଗ ଜଗି ରହିଲା
ଏକାଳେ
ଉଦିତ ହେଲେ କୁମୁଦିନୀ—
ନିଦ୍ରା-ମୁଦ୍ରାଘାତୀ ଲୋକନେ ଝଟନ୍ତି
ବଦନ୍ତି ପ୍ରମୋଦ-ବାଦିନୀ । ୩ ।

**ଅନ୍ୱୟ**—(ସଖୀଠୁଁ) ଏ ଗିର ଶୁଣି ଚତୁର୍ଦ୍ଦଶପୁର-ମୋହିନୀ ଝଟନ୍ତି ମଉନ ହୋଇଲା । ନଭ ଧରା ଦେବ (ଏହି) ଲୋଭେ ଧରା-ଦେବ ଯିବା ମାର୍ଗେ (ସଖୀ) ଜଗି ରହିଲା । ଏ କାଳେ କୁମୁଦିନୀ-ନିଦ୍ରା-ମୁଦ୍ରା-ଘାତୀ ଉଦିତ ହେଲେ । (ତାହା) ଲୋକନେ ପ୍ରମୋଦ-ବାଦିନୀ ଝଟନ୍ତି ବଦନ୍ତି (କଲା) ।

**କଥା**—ସଖୀଠାରୁ ଏପରି କଥା ଶୁଣି ସେହି ଚତୁର୍ଦ୍ଦଶପୁର ମୋହକାରିଣୀ ତୁରନ୍ତ ମୌନ ହେଲେ । ସେହି ସଖୀ ଆକାଶ କୁସୁମ ଧରା ଦେବ ଏହି ଲୋଭରେ ବ୍ରାହ୍ମଣ ଯାଇଥିବା ବାଟ ପୁଣି ସେ ଯେଉଁ ବାଟରେ ଫେରି ପହଞ୍ଚିବେ ସେଇଠି ଜଗି ରହିଲା । ଏହିପରି ସମୟରେ କଇଁଫୁଲ ନିଦ୍ରାମୁଦ-ଭଙ୍ଗକାରୀ ଚନ୍ଦ୍ରଦେବ ଉଦୟ ହେଲେ । ତାହା ଦେଖି ମଧୁର-ଭାଷିଣୀ ପ୍ରିୟମ୍ବଦା ସଖୀ କହିଲା—

**ଆଲୋଚନା**—ଅତି ଗୋପନରେ ସଖୀ ଯେଉଁ ନିର୍ଦ୍ଦିଷ୍ଟ ଜାଗାରୁ ବ୍ରାହ୍ମଣଙ୍କୁ ଅତିଗୋପନରେ ଭିକ୍ଷା ଦେଇ ପଠାଇଥିଲା, ସେଇଠି ଦିନରାତି ଜଗି ରହିଲା—ସେହି ବ୍ରାହ୍ମଣଙ୍କ ଅପେକ୍ଷାରେ । କିପରି ତାଙ୍କୁ ଅତି ଗୋପନରେ ହସ୍ତଗତ କରିବ ।

ଶବ୍ଦାର୍ଥ— ନଭ—ଆକାଶ, ଆକାଶକୁସୁମ । ଝଟନ୍ତି—ତୁରନ୍ତ । ଚତୁର୍ଦ୍ଦଶପୁର—ବ୍ରହ୍ମାଣ୍ଡ, ଚଉଦଭୁବନ (ଭୂ, ଭୁବ, ସ୍ୱଃ, ମହଃ, ଜନ, ତପଃ, ସତ୍ୟ, ଅତଳ, ସୁତଳ, ବିତଳ, ତଳାତଳ, ମହାତଳ, ରସାତଳ, ପାତାଳ ଆଦି ଚଉଦ ଭୁବନ) । ଧରାଦେବ—ହାତକୁ ଆସିବ । ଧରାଦେବ—ଧରଣୀଦେବତା, ବ୍ରାହ୍ମଣ । କୁମୁଦିନୀ-ନିଦ୍ରା-ମୁଦ୍ରାଘାତୀ—ଚନ୍ଦ୍ରମା । ପ୍ରମୋଦବାଦିନୀ—ପ୍ରିୟମ୍ବଦା, ପ୍ରିୟଭାଷିଣୀ । ବଦନ୍ତି—କହିଲା ।

ହରିତ ଅମ୍ବର — ଭୂଷିତ ବେଭାର
ପ୍ରତୀକରେ କରିଅଛନ୍ତି
ଦିନକର ତାପ— ହାରକ ଗତିକି
ବିଷ୍ଣୁପଦରେ ସଞ୍ଚରନ୍ତି
ବିଶାଖା
ଚିତ୍ରା ତୋଷକୀ କୃଷ୍ଣଚନ୍ଦ୍ର
ଆସି ଉପସ୍ଥିତ — କି ବେଗରେ ଦ୍ରୁତ
ହେଲା ଚିନ୍ତା କରୀ ପାରୀନ୍ଦ୍ର ।୪।

**ଅନ୍ୱୟ**—ହରିତ ଅମ୍ବର ବେଭାର ପ୍ରତୀକରେ ଭୂଷିତ କରିଅଛନ୍ତି ଏବଂ ଦିନକର ତାପହାରକ ହୋଇ ବିଷ୍ଣୁପଦରେ ଗତିକି ସଞ୍ଚରନ୍ତି, ବିଶାଖା ଚିତ୍ରା ତୋଷକୀ ଚିନ୍ତା କରୀ ପାରୀନ୍ଦ୍ର (ଏମନ୍ତ) କୃଷ୍ଣଚନ୍ଦ୍ର ଦ୍ରୁତ କି ବେଗରେ ଆସି ଉପସ୍ଥିତ ହେଲା ।

**କଥା**—ଦିଗ ଏବଂ ଆକାଶକୁ ସ୍ୱ ଆଚରିତ ସୌନ୍ଦର୍ଯ୍ୟରେ ଭୂଷିତ କରିଅଛନ୍ତି ଏବଂ ପ୍ରଖର ସୂର୍ଯ୍ୟତାପ ହରଣ ପାଇଁ ଆକାଶରେ ବିହାର କରୁଛନ୍ତି, ପୁନଶ୍ଚ ବିଶାଖା ଓ ଚିତ୍ରା ଆଦି ତାରକାମାନଙ୍କର ମନ ସନ୍ତୋଷଦାୟକ ଏବଂ ଚିନ୍ତା କରୀ ପାଇଁ ସିଂହ ସଦୃଶ ଏମନ୍ତ କୃଷ୍ଣପକ୍ଷର ଚନ୍ଦ୍ରମା ଦ୍ରୁତ କି ବେଗରେ ଉପସ୍ଥିତ ହେଲେ ।

**ଶ୍ଳେଷାର୍ଥ**—କିନ୍ତୁ ରୁକ୍ମଣୀ ଏହି କଥାକୁ ଏପରି ବୁଝିଲେ ଯେ—ହରିତାମ୍ବର କି ପୀତବର୍ଣ୍ଣର ବସ୍ତ୍ର ବେଭାର କି ମଙ୍ଗଳ ଅନୁଷ୍ଠାନର ପ୍ରତୀକରେ କି ସାଜ ସଜ୍ଜାରେ ଭୂଷିତ ହୋଇଛନ୍ତି, ପୁଣି ଦିନକର କି ଧନଙ୍କର କି ଦରିଦ୍ର ବ୍ୟକ୍ତିଙ୍କର ତାପ କି ଦୁଃଖ ହରିବା କିମ୍ବା ଗତି କି ଆଶ୍ରୟସ୍ଥଳ ବିଷ୍ଣୁଙ୍କ ପଦ କି ଆଧିପତ୍ୟରେ ସଞ୍ଚରିତ ହୁଅନ୍ତି । ପୁନଶ୍ଚ ବିଶାଖା, ଚିତ୍ରା ଆଦି ସଖୀମାନଙ୍କୁ ତୋଷ ଦାନ କରିଛନ୍ତି ଓ ମୋ ଚିନ୍ତାହସ୍ତୀଙ୍କୁ ନାଶ କରିବା ଲାଗି ସିଂହ ପରି ହୋଇ ଶୀଘ୍ର କି ବେଗରେ ଏଠାରେ ପହଞ୍ଚିଲେ ।

---

ଶବ୍ଦାର୍ଥ । ହରିତ—ଦିଗ, ହରିଦ୍ରାରଙ୍ଗ, ପୀତ । ଅମ୍ବର—ଆକାଶ, ବସ୍ତ୍ର । ବେଭାର—ଆଚରଣ, ମଙ୍ଗଳ କାର୍ଯ୍ୟ । ପ୍ରତୀକ—ଅଂଗ, ରୂପ, ସାଜସଜ୍ଜା । ଦିନକର—ସୂର୍ଯ୍ୟ । ଗତି—ଆଶ୍ରୟ । କରୀ—ହସ୍ତୀ । ପାରୀନ୍ଦ୍ର—ସିଂହ । ତୋଷକୀ—ତୋଷଣକାରୀ । ବିଷ୍ଣୁପଦ—ଆକାଶ, ବିଷ୍ଣୁଙ୍କ ଅଭିଧ । ପଦ—ଆଧିପତ୍ୟ, ଇଚ୍ଛା । ତାପ—କାରଣ, ଦୁଃଖ । ଗତି—ଗମନ, ଆଶ୍ରୟ ।

ଦୃଶ୍ୟହେଁ ନବବଧୂ ବିଧୁ ନୁହେଁ ବଧୂ
ବଧୁରେ ଯେ କଲେ ଚେତାକୁ
କଳ ଦକ୍ଷ ଆଳି ବକ୍ଷରେ ସମ୍ଭାଳି
ରଖିଲା ଭୂପ-ତନୟାକୁ
ବୈଦ୍ୟଜା
ସଦ୍ୟ ଦେଖି ଦୁଃଖୀ ହୋଇଲା
ଆପଣା ବୃତ୍ତିରେ ସକଳ ବୃତ୍ତାନ୍ତ
ମୂର୍ତ୍ତିବନ୍ତ କରି କହିଲା । ୫ ।

**ଅନ୍ୱୟ**—ନବବଧୂ ଦୃଶ୍ୟହେଁ (ଦେଖିଲା) ବିଧୁ ନୁହେଁ ବଧୂ (ଅଟେ) । (ତେଣୁ) ଯେ ଚେତାକୁ ବଧୁର କଲେ । ଦକ୍ଷ ଆଳି (ସଖୀ) କଳି ଭୂପ-ତନୟାକୁ ବକ୍ଷରେ ସମ୍ଭାଳି ରଖିଲା । ବୈଦ୍ୟଜା ସଦ୍ୟ (ଏପରି) ଦେଖି ଦୁଃଖୀ ହୋଇଲା । ଆପଣା ବୃତ୍ତିରେ ସକଳ ବୃତ୍ତାନ୍ତ ମୂର୍ତ୍ତିବନ୍ତ କରି କହିଲା—

**କଥା**—କଳ୍ପିତ ନବବଧୂ ରୁକ୍ମିଣୀ କୃଷ୍ଣ ଆଗୁନ୍ତୁକ ଧାରଣା କରି ଆକାଶକୁ ଚାହାଁନ୍ତେ ଦେଖିଲେ ବସ୍ତୁ ତୁମ୍ଭେ କୃଷ୍ଣ ନୁହଁ, କୃଷ୍ଣପକ୍ଷର ଖଣ୍ଡିତ ଚନ୍ଦ୍ରମା ଦେଖାଯାଉଛି । ତେଣୁ ସେ ନିରାଶ ହୋଇ ଚେତା ହରାଇଦେଲେ । ସବୁ ବିଷୟରେ ନିପୁଣା ଦାସୀ ସେ ମନୋଭାବ ବିଚାରି ଜାଣି ରାଜକନ୍ୟାଙ୍କୁ ବକ୍ଷରେ ସମ୍ଭାଳି ରଖିଲା । ନ ହେଲେ ସେ ପଡ଼ି ଯାଇଥାନ୍ତେ । ଏପରି ଅବସ୍ଥା ଦେଖି ନିକଟରେ ଥିବା ବୈଦ୍ୟକନ୍ୟା ସଙ୍ଗେ ସଙ୍ଗେ ଏପରି ଯାହା ହେଲା ତା ଦେଖି ଏକାନ୍ତ ଦୁଃଖ କଲା ଏବଂ ଆପଣାର ବ୍ୟବସାୟରେ ସକଳ ସମସ୍ୟା ସମସ୍ତ ବର୍ଣ୍ଣନା କରି ଜଣାଇଲା—

ଶବ୍ଦାର୍ଥ । କଳ—ବିବେଚନା କରି । ସଦ୍ୟ—ତତ୍‌କ୍ଷଣାତ୍ । ବଧୂ—ବିଷ୍ଣୁ, ଚନ୍ଦ୍ରମା । ବଧିର—ଅସମର୍ଥ, ବିଯୁକ୍ତ । ମୂର୍ତ୍ତିବନ୍ତ—ଖଞ୍ଜାଇକରି । ଦକ୍ଷ—ସମର୍ଥ, ନିପୁଣ । ବୃତ୍ତି—ବ୍ୟବସାୟ । ମୂର୍ତ୍ତିବନ୍ତ—ମୂର୍ତ୍ତି ପରି ପ୍ରତ୍ୟକ୍ଷ ।

**ଲକ୍ଷ୍ମୀ ବିଳାସ.ବି- ନ୍ୟାସ ବିନା ଲେଶ**
**ଲସିବ ନାହିଁ ଏ ମାରକ**
**କୁସୁମାକର ହିମାଂଶୁ ପୁଷ୍ପାଶୁଗ**
**ଧାରକ ଏ ରୋଗକାରକ**
**ଶଶାଙ୍କ**
**କରଣ ଉଦୟ ଭାସ୍କର**
**କ କରିବେକି ଅଛନ୍ତି କଳ୍ପତରୁ**
**କାମଧେନୁ ଚନ୍ଦ୍ରଶେଖର । ୭ ।**

**ଅନ୍ୱୟ**—ଏ ମାରକ ଲକ୍ଷ୍ମୀ ବିଳାସ ବିନ୍ୟାସ ବିନା ଲେଶ ଲସିବ ନାହିଁ । କୁସୁମାକର, ହିମାଂଶୁ, ପୁଷ୍ପାଶୁଗ ଧାରକ ଏ ରୋଗକାରକ (ଅଟେ) । ଶଶାଙ୍କ କରଣ, ଉଦୟ ଭାସ୍କର (ସମ ଅଟେ) । କଳ୍ପତରୁ, କାମଧେନୁ, ଚନ୍ଦ୍ରଶେଖର (ଯେ) ଅଛନ୍ତି (ଏଥିରେ) କ କରିବେକି ?

**କଥା**—ଏ ମାରକ ଲକ୍ଷ୍ମୀ ବିଳାସ ଔଷଧ ଅର୍ପଣ କରିବା ବିନା ଲେଶମାତ୍ର କମିବ ନାହିଁ । କୁସୁମାକର, ହିମାଂଶୁ, ପୁଷ୍ପାଶୁଗ ଆଦି ଧାରକ ଔଷଧ ଏ ରୋଗ-କାରକ ଅଟେ । ଶଶାଙ୍କ କରଣ, ଉଦୟ ଭାସ୍କର, କଳ୍ପତରୁ, କାମଧେନୁ, ଚନ୍ଦ୍ରଶେଖର ପ୍ରଭୃତି ଯେତେ ଔଷଧ ଅଛନ୍ତି ଏ ରୋଗରେ ସେମାନେ କିଛି କରିପାରିବେ ନାହିଁ ।

**ଅନ୍ୟାର୍ଥ**—ଏ ଘାତକ ଦଶା କୃଷ୍ଣଙ୍କୁ ନ ଦେଲେ ଲେଶମାତ୍ର ଊଣା ହେବ ନାହିଁ । ବସନ୍ତକାଳ, ଚନ୍ଦ୍ରମା, ପୁଷ୍ପଧନୁଧାରଣକାରୀ କନ୍ଦର୍ପ ଏ ରୋଗର କର୍ତ୍ତା ଅଟନ୍ତି । ଚନ୍ଦ୍ରକରଣ ଉଦୟ କାଳରେ ମଧ୍ୟ ସୂର୍ଯ୍ୟଙ୍କ ତେଜପ୍ରାୟ ଜଣାଯାଉଛି । କଳ୍ପତରୁ ବୃକ୍ଷ, କାମଧେନୁ ଏବଂ ମହାଦେବ ଏମାନଙ୍କୁ ପୂଜାକଲେ ମଧ୍ୟ କିଛି ଫଳନାହିଁ । ସେମାନେ ଏଥିରେ କିଛି କରିପାରିବେ ନାହିଁ ।

**ଆଲୋଚନା**—ଲକ୍ଷ୍ମୀବିଳାସ, କୁସୁମାକର, ହିମାଂଶୁ, ପୁଷ୍ପାଶୁଗ, ଶଶାଙ୍କ-କରଣ, ଉଦୟ ଭାସ୍କର, କଳ୍ପତରୁ, କାମଧେନୁ, ଚନ୍ଦ୍ରଶେଖର ଏସବୁ ବୈଦ୍ୟଶାସ୍ତ୍ରର କେତୋଟି ସୁପରିଚିତ ଔଷଧ ଅଟେ । ଏସବୁ ଔଷଧ ଉପସ୍ଥିତ କ୍ଷେତ୍ରରେ ପ୍ରୟୋଜନ ହେବା କବି ବ୍ୟବହାର କରିଛନ୍ତି । କେବଳ ନାମହେତୁ ଲେଖି ନାହାନ୍ତି । ତାତ୍ପର୍ଯ୍ୟ ରହିଛି ।

---

ଶବ୍ଦାର୍ଥ । ମାରକ—ଘାତକ । ଧାରକ—ବାନ୍ଧିବା ଶକ୍ତିକାରକ ଔଷଧ । ଲକ୍ଷ୍ମୀବିଳାସ—ଲକ୍ଷ୍ମୀରୂପୀ କୃଷ୍ଣ । କୁସୁମାକର—ବସନ୍ତକାଳ । ହିମାଂଶୁ—ଚନ୍ଦ୍ରମା । ପୁଷ୍ପାଶୁଗ—ପୁଷ୍ପଧନୁ । ଶଶାଙ୍କ—ଚନ୍ଦ୍ର । ଭାସ୍କର—ସୂର୍ଯ୍ୟ । ଚନ୍ଦ୍ରଶେଖର—ମହାଦେବ ।

ସଖୀଏ ଭାଷିଲା କେ୍ୟାତ୍ସ୍ନା ସୁତାକୁ
ଫଳ ଫୁଲ ଆମ୍ଭେ ଉଚ୍ଚାରୁ
ନ ରଖି ସନ୍ଦେହ ଭଲ ମନ୍ଦ କହ
ନାହିଁ କଲା ସେ ଏ ବଚନରୁ
ନଆଳୀ
କଞ୍ଜ ନୀଳକଞ୍ଜ ଅଶୋକ
ରସାଳ କେହି କହି ଦେଲେ ଅତ୍ୟନ୍ତ
କୃଶାଳ ହୋଇଯିବ ଶୋକ । ୭ ।

**ଅନ୍ୱୟ**—ଜ୍ୟୋତ୍ସ୍ନ ସୁତାକୁ ସଖୀଏ ଭାଷିଲା—ଫଳ ଫୁଲ ଆମ୍ଭେ ଉଚ୍ଚାରୁ । ସନ୍ଦେହ ନ ରଖି ଭଲ ମନ୍ଦ କହ । ସେ ଏ ବଚନରୁ (ଶୁଣି) ନାହିଁ କଲା । (କାରଣ) ନଆଳୀ, କଞ୍ଜ, ନୀଳକଞ୍ଜ, ଅଶୋକ, ରସାଳ କେହି କହିଦେଲେ ଶୋକ ଅତ୍ୟନ୍ତ କୃଶାଳ ହୋଇଯିବ ।

**କଥା**—ଜ୍ୟୋତ୍ସ୍ନ କନ୍ୟାକୁ ସଖୀଜଣେ କହିଲା—ଆମ୍ଭେମାନେ ଫଳ ଫୁଲ ନାମ କେତୋଟି ଉଚ୍ଚାରଣ କରବୁ । ତୁମ୍ଭେ ସନ୍ଦେହ ନ ରଖି ଭଲ ମନ୍ଦ କହ । ସେ ଏପରି ବଚନର ଶୁଣି ନାହିଁ କଲା । କାରଣ ନଆଳୀ, ପଦ୍ମ, ନୀଳପଦ୍ମ, ଅଶୋକ, ରସାଳ ଫୁଲ କେହି କହିଦେଲେ ତାହା କାମର ଫୁଲଧନୁର ଗୁଣ ହେବୁ ଜେମାଙ୍କ ଶୋକ ଅତ୍ୟନ୍ତ ବଢ଼ିଯିବ ।

ଶବ୍ଦାର୍ଥ । କଞ୍ଜ—ପଦ୍ମ । ନୀଳକଞ୍ଜ—ନୀଳପଦ୍ମ । ରସାଳ—ଆମ୍ରଫଳ । କୃଶାଳ—ବିଶାଳ, ବୃହତ୍ ।

**କହିଲା ଅତି ସଂଭ୍ରମେ ଧନୁ ମୀନ**
**ମଧ୍ୟେ ସୁଧାଂଶୁ ଯୋଗଠାରେ**
**ଶରଣ ନିଷ୍ଠା ଯେ କରେ ସେ ନ କରେ**
**ଗତି କି ଦକ୍ଷିଣ କାଷ୍ଠାରେ**
**ଏ ବାଜା**
**ବଜାଇ ଅଛନ୍ତି ବାରଣ**
**ସୁକରଜା-ରଜା ହଜାଇ କି ମଜ୍ଜା**
**ସେ ରସେ ଲଭିବ ମରଣ ? ।୮।**

**ଅନ୍ୱୟ**—ଅତି ସମ୍ଭ୍ରମେ (ଜ୍ୟୋତିଷ କନ୍ୟା) କହିଲା ଧନୁ ମୀନ ମଧ୍ୟେ ସୁଧାଂଶୁ ଯୋଗଠାରେ ଯେ ଶରଣ (ହେବା) ନିଷ୍ଠା କରେ ସେ ଦକ୍ଷିଣ କାଷ୍ଠାରେ ଗତି କି ନ କରେ । ବାରଣ ଏ ବାଜା ବଜାଇଅଛନ୍ତି । ସୁକରଜା-ରଜା ସେ ରସେ ମଜ୍ଜା ହଜାଇ ମରଣ ଲଭିବ କି ?

**କଥା**—ତେଣୁ ସ୍ୱତଃ ଅତ୍ୟନ୍ତ ପ୍ରୀତ ହୋଇ ଜ୍ୟୋତିଷ କନ୍ୟା କହିଲା—ଧନୁଠାରୁ ମୀନ ପର୍ଯ୍ୟନ୍ତ ମଧ୍ୟରେ ଥିବା ଚନ୍ଦ୍ର, ଯାହାଦ୍ୱାରା କି—ଶ୍ରବଣା ମକରଠାରୁ ରେବତୀ ମୀନ ପର୍ଯ୍ୟନ୍ତ ଶରଣ ହୋଇଥାଏ ବୋଲି ଯେ ସିଦ୍ଧାନ୍ତ ରହିଛି, ସେ ଶରଣ ନିଷେଧ ମାନ ପାଳନ କରିବାଦ୍ୱାରା ଦକ୍ଷିଣଦିଗସ୍ଥ ମୃତ୍ୟୁପୁରକୁ କେବେ କେହି ଗମନ କରେ ନାହିଁ । ଏହି ଶରଣ ସମସ୍ୟା ବାରଣ ଘଟଣାରେ ନିପୁଣ ଭାବରେ ମନସ୍ୱୀମାନେ ବାଜା ବଜାଇ କହି ଯାଇଅଛନ୍ତି । ସେପରି କୁସମୟ ବର୍ତ୍ତମାନ ନାହିଁ । ଅତଏବ ସୁନଖୀଶ୍ରେଷ୍ଠା ଅମର ଜେମା ଏକାନ୍ତ ଶୁଭସମୟରେ ପ୍ରେମ ରସରେ ମଜ୍ଜା ହଜାଇଥିବାରୁ ତାର ମରଣ ଯୋଗ ନାହିଁ ।

**ଅନ୍ୟାର୍ଥ**—ଧନୁ, ମକର, କୁମ୍ଭ, ମୀନ ସହିତ ଅର୍ଦ୍ଧଚନ୍ଦ୍ର ଆଦି ଚିହ୍ନ ଥିବା ପଦ ଯେଉଁ ଶ୍ରୀକୃଷ୍ଣଙ୍କର ତାଙ୍କଠି ନିଷ୍ଠାର ସହିତ ଯେ ଶରଣ ପଶେ ସେ ଯମାଳୟକୁ କେବେ ଯାଏ ନାହିଁ । ଏ କଥାର ପ୍ରମାଣ ଗଜ ଉଦ୍ଧାରଣ ଘଟଣାରୁ ପ୍ରତିପାଦିତ ହୁଏ । ତାହା ଅମରଗ୍ର ବନ୍ଧରେ ବାଜା ବାଜୁଛି । ସୁନଖୀଶ୍ରେଷ୍ଠା ରୁକ୍ମଣୀ ସେହି କୃଷ୍ଣପ୍ରେମ ରସରେ ନିମଜ୍ଜିତ ହେତୁ ତାଙ୍କର ମରଣ କାହୁଁ ହେବ ?

---

ଶବ୍ଦାର୍ଥ । ସଂଭ୍ରମେ—ଅଧିକ ଶ୍ରଦ୍ଧାରେ । ସୁଧାଂଶୁ—ଚନ୍ଦ୍ରମା । ଶରଣ—ଶ୍ରବଣା ମକରଠାରୁ ରେବତୀ ମୀନ ମଧ୍ୟରେ ଘଟିଥାଏ; ଏହା ଏକାନ୍ତ ନିଷେଧ ସମୟ । ନିଷ୍ଠା—ସିଦ୍ଧାନ୍ତ । ନିଷ୍ଠା—ପବିତ୍ରତା । ଶରଣ—ଆଶ୍ରୟ । କାଷ୍ଠା—ଦିଗ । ବାରଣ—ମନା, ହସ୍ତୀ । ସୁକରଜା—(କରଜ—ନଖ) ଉତ୍ତମ ସୁନ୍ଦର ନଖ ଯାହାର । ସୁକରଜା—ରଜା, ସୁନଖୀଶ୍ରେଷ୍ଠା । ମଜ୍ଜା—ଅନ୍ତଃକରଣ ।

**ଶ୍ରୁତ ଫୁଙ୍କିବାର ବୃତ୍ତି ସଖୀବାର**
**କରିତ ଥିଲା ଏ ଉତ୍ତର**
**ଉଡ଼ ଯାଇଁ ପଡ଼ ଛଡ଼ିଲା ମରମୁଁ**
**ଛଡ଼ିଭାଙ୍ଗୀ ମୋହ ବିକାର**
**ଅସୁର-ସୂଦନ କହିଲେ**
**ଭୂସୁର କହିବା ଭାରତୀ ଭାରକୁ**
**ଜାଣିବ ଜୀବନେ ରହିଲେ । ୯ ।**

**ଅନ୍ୱୟ**—ସଖୀବାର (ମଧ୍ୟରୁ) ଯେ ଶ୍ରୁତ ଫୁଙ୍କିବାର ବୃତ୍ତି କରି ତ ଥିଲା । (ସେ) କହିଲେ ଅସୁର ସୂଦନ ଭୂସୁର କହିବା ଭାରତୀଭାରକୁ କହିଲେ (ଏକଥା) ଜୀବନ ରହିଲେ (ଯାଇ) ଜାଣିବ । ଏ ଉତ୍ତର ଉଡ଼ଯାଇ (ତହିଁ) ପଡ଼ ଛଡ଼ିଭାଙ୍ଗି ମୋହ ବିକାର ମରମୁଁ ଛଡ଼ିଲା ।

**କଥା**—ସଖୀଦଳ ମଧ୍ୟରୁ ଯେଉଁ ସଖୀ କାନ ଫୁଙ୍କି ଚେତା କରିବାକୁ ଗଲା ସେ କାନରେ କହିଥିଲା ଅସୁର ସୂଦନ କୃଷ୍ଣ ବ୍ରାହ୍ମଣ କହିଥିବା ବଚନ ପାଳି ବ୍ରାହ୍ମଣ ବାକ୍ୟଭାର ବହିଛନ୍ତି । ତମେ ଜୀଇ ରହିଲେ ସିନା ଏ ଶୁଭ ଖବର ଶୁଣିବ । ଏହି ଶୁଭ ଉଦନ୍ତ କାନ ମଧ୍ୟକୁ ଉଡ଼ଯାଇ ମର୍ମରେ ପଡିବାରୁ ବିଦ୍ୟୁଦ୍‌ପ୍ରାୟ ଗୋପୀ ଜେମା ନିଜର ମୋହ ବିକାର ଚିତ୍ତରୁ ଦୂର କରି ଦେଲେ ।

ଶବ୍ଦାର୍ଥ । ଶ୍ରୁତ—କାନ । ବୃତ୍ତି—ବ୍ୟବସାୟ, ସେବା । ସଖୀବାର—ସଖୀ ସମୂହ । ଛଡ଼ିଭାଙ୍ଗୀ—ବିଦ୍ୟୁତ୍ ଗୋପୀ । ମୋହବିକାର—ମୂର୍ଚ୍ଛିଯିବା । ଅସୁର-ସୂଦନ—ଦୈତ୍ୟ ନାଶକ । ଭୂସୁର—ବ୍ରାହ୍ମଣ । ଭାରତୀଭାର—ବାକ୍ୟଭାର ।

ଏମନ୍ତ ଶୁଣି କ- ବ ସୁତା ଭଣିଲା
ଫଣୀ ମସ୍ତକେ ମଣିଅଛି
ଏ ଯେବ ମେଦନୀ ଭାର ବହିବାରେ
ଘୋର ଧୁରନ୍ଧର ହୋଇଛି
ହ୍ନାଦାଘ
ଧାମ ନାମରେ ସେ ରହନ୍ତେ
ଭୂ ଭ୍ରମଣ ଭାର ଧାରଣରେ ପାର-
ଙ୍ଗମ ଏଣୁ ହେଲେ ଜଗତେ ।୧୦।

**ଅନ୍ୱୟ**—ଏମନ୍ତ ଶୁଣି କବିସୁତା ଭଣିଲା ଫଣୀ ମସ୍ତକେ ମଣି ଅଛି । ଏ ଯେବ ସେ ମେଦନୀ ଭାର ବହିବାରେ ଘୋର ଧୁରନ୍ଧର ହୋଇଛି । ହ୍ନାଦାଘ-ଧାମ ନାମରେ (ସେ ମଣି ଶବ୍ଦ) ରହନ୍ତେ (ଦିନମଣି-ନାମରେ) ଭୂ-ଭ୍ରମଣଭାର ଧାରଣରେ ଏଣୁ (ସେ) ଜଗତେ ପାରଙ୍ଗମ ହେଲେ ।

**କଥା**—ଏପରି ଶୁଣି କବି କନ୍ୟା କହିଲା—ଜାଣ ଯେ ସର୍ପ ମସ୍ତକରେ ମଣି ରହିଛି । ଏଥିପାଇଁ ସେ ପୃଥ୍ୱୀଭାର ବହନ କରିବାରେ ବିଶେଷ ଧୁରନ୍ଧର ହୋଇଅଛି । ସୂର୍ଯ୍ୟଙ୍କ ନାମରେ ଯେ ମଣି ଶବ୍ଦ ରହନ୍ତେ ଦିନମଣି ନାମରେ ସେ ଭୂଲୋକ ଭ୍ରମଣଭାର ବହନ କରିବାରେ ବିଶ୍ୱଜଗତରେ ପାରଙ୍ଗମ ହୋଇଅଛନ୍ତି ।

---

ଶବ୍ଦାର୍ଥ—ହ୍ନାଦାଘ । ଧାମ—ସୂର୍ଯ୍ୟ । ଫଣୀ—ସର୍ପ ବାସୁକି ।

ନବ ନବନୀତ— କିଶାଙ୍ଗୀ ଅବଳା
ଭୀରୁ ସୁକୁମାରୀ ଆଖ୍ୟାରେ
ଥିବାରୁ ବହିଲେ ବକ୍ଷେ ଯେଉଁ ଭାର
ଲକ୍ଷ୍ୟ ସେ ହିମାଦ୍ରି ପ୍ରକ୍ଷାରେ
ସେ ଯଦୁ
ସଙ୍ଗୀ ବହିଛନ୍ତି ଜଗତେ
ଏଣୁ ସେ ସଗର ଅର୍ବଗ୍ରେର ଗର୍ବ
ଖର୍ବ କଲେ ଧରି ପର୍ବତେ ।୧୧।

**ଅନ୍ୱୟ**—ନବ ନବନୀତ-କିଶାଙ୍ଗୀ ଅବଳା ଭୀରୁ, ସୁକୁମାରୀ ଆଖ୍ୟାରେ ଥିବାରୁ ବକ୍ଷେ ଯେଉଁ ଭାର ବହିଲେ ସେ ହିମାଦ୍ରି ପ୍ରକ୍ଷାରେ ଲକ୍ଷ୍ୟ ହେବ । (ରମଣୀ ନାମରେ ମଣି ବହନ କରି ଥିବାରୁ ସିନା ତା ବହିଲେ) ସେ ଯଦୁସଙ୍ଗୀ (ମଧ୍ୟ) ଜଗତେ ଯଦୁମଣୀ ନାମ ବହି ମଣୀ ଶବ୍ଦ ଧରିଛନ୍ତି) । (ଯେ) ସଗର-ଅର୍ବଗ୍ରେର-ଗର୍ବ-ପର୍ବତେ ଧରି ଖର୍ବ କଲେ, ଏଣୁ ସେ (କେମାଙ୍କର ମର୍ଯ୍ୟାଦା ନିଶ୍ଚୟ ବୁଝିବେ) ।

**କଥା**—ନୂତନ ଲହୁଣୀଠୁଁ କୋମଳତାରେ ଅଧିକ ସୁକୋମଳାଙ୍ଗୀ ଅବଳା ଭୀରୁ, ସୁକୁମାରୀ ଆଖ୍ୟାରେ ପରିଚିତ ହେଲେ ହେଁ ତାଙ୍କ ବକ୍ଷରେ ଯେଉଁ ସ୍ତନ ଭାର ବହିଛନ୍ତି ତା' ତ ହିମବାନ ସଦୃଶ ଲକ୍ଷ୍ୟ ହେବ । ରମଣୀ ନାମରେ ମଣି ବହନ କରିଥିବାରୁ ସିନା ତା ବହି ପାରୁଛନ୍ତି । ସେ ଯଦୁମାନଙ୍କର ସାଥୀ ମଧ୍ୟ ଜଗତରେ ଯଦୁମଣୀ ନାମ ବହନ କରି ମଣୀ ଶବ୍ଦ ଧରିଛନ୍ତି । ମୋର ବିଶ୍ୱାସ ଯେ, ସଗର-ଯଜ୍ଞାଶ୍ୱ-ହର୍ତ୍ତା ଇନ୍ଦ୍ରର ଗର୍ବ ଗୋବର୍ଦ୍ଧନ ପର୍ବତ ଧାରଣ କରି ଖର୍ବ କଲେ, ଏଣୁ ସେ କେମାଙ୍କର ମର୍ଯ୍ୟାଦା ନିଶ୍ଚୟ ବୁଝିବେ ଏବଂ ମାନ ରଖିବେ ।

---

ଶବ୍ଦାର୍ଥ । ନବ-ନବୀନ । ନବନୀତ—ଲହୁଣି । କିଶାଙ୍ଗୀ—କୃଶଦେହା । ପ୍ରକ୍ଷ—ସାଦୃଶ୍ୟ । ଯଦୁସଂଗୀ—ଯାଦବମାନଙ୍କ ସାଥି କୃଷ୍ଣ । ଅର୍ବ—ଘୋଟକ ।

ଏ ସଂକଟ ଘଟା ଯୋଟା ଚଟାଉଟା
ଫିଟାଇ କଟାକ୍ଷ ପକାନ୍ତୁ
ପରିକର ପର ଆଜ୍ଞା ଅବଧାରୀ
ବଗ୍ନୁରୁ ଅଛୁ ନ ଆସନ୍ତୁ
ନୃପଜା
ଦଂଶନ୍ତେ ରସନା ଦଶନେ
ଅଖଣ୍ଡିତ ଜ୍ଞାନ ମଣ୍ଡିତ ପ୍ରଧାନ
ପଣ୍ଡିତଜା ରସେ କ ଥନେ ।୧୨।

**ଅନ୍ୱୟ**—ଏ ସଂକଟ ଘଟା ଯୋଟା ଚଟାଉଟା ଫିଟାଇ (ସେ ସେଥିରେ) କଟାକ୍ଷ ପକାନ୍ତୁ (ଦେଖିବ) କେମାର ପରିକର ପର ଆଜ୍ଞା ଅବଧାରୀ (ହୋଇ ଯିବେ) ବଗ୍ନୁରୁ ଅଛୁ (ଦେଖିଲେ ଦେଖି କପଟ) ନ ଆସନ୍ତୁ । (ଏହାଶୁଣି) ନୃପଜା ଦଶନେ ରସନା ଦଂଶନ୍ତେ, ଅଖଣ୍ଡିତଜ୍ଞାନ-ମଣ୍ଡିତ ପ୍ରଧାନ ପଣ୍ଡିତ-ଜା ରସେ କଥନେ(ଲାଗିଲା) ।

**କଥା**—ଏ ସଙ୍କଟ ସଂଘଟନରେ ବିବାହର ମଧ୍ୟସ୍ଥ ଯୋଟକ ସ୍ୱରୂପୀ ଭାଷା ଖଣ୍ଡିକ ଫିଟାଇ ସେ ସେଥିରେ କେବଳ କୋଣ ଡ଼ାକନ୍ତୁ ଦେଖିବ, କେମାର ଭୃତ୍ୟପର ଆଜ୍ଞାନୁବର୍ତ୍ତୀ ହୋଇଯିବେ । ବସ୍ତୁରୁଚ୍ଛୁ ଦେଖି ଯେ କପଟ ନ ଆସିବେ ? ଏହାଶୁଣି ରୁକ୍ମଣୀ ଦାନ୍ତରେ ଜିଭ କାମୁଡ଼ ପକାଇବାରୁ ଅଦ୍ୱୈତଜ୍ଞାନ-ମଣ୍ଡିତପ୍ରଧାନ ପଣ୍ଡିତଙ୍କ କନ୍ୟା ରସବନ୍ତ କଥା କହିଲା ।

---

ଶବ୍ଦାର୍ଥ । ଘଟା—ସମୂହ, ସଂଘଟନ । ଯୋଟା—ଯୋଟକ, ବିବାହ ମଧ୍ୟସ୍ଥ । ପରିକର—ଭୃତ୍ୟ । ଅବଧାରୀ—ଅନୁବର୍ତ୍ତୀ । ନୃପଜା—ରୁକ୍ମଣୀ ରସନା—ଜିଭ । ଦଶନ—ଦାନ୍ତ । ଅଖଣ୍ଡିତ—ଅଦ୍ୱୈତ । ପଣ୍ଡିତଜା—ପଣ୍ଡିତ କନ୍ୟା । ରସେ—ମଧୁର ଭାବରେ ।

ବଶ୍ୟ ଯୋଗରେ ପ— ଦ୍ମାକର କଞ୍ଜରେ
ବନ୍ଧନକୁ ସେ ଯେ ଲଭଇ
ଶିବ ପରଗୁଣେ ସୁଭଗ ସର୍ବଦା
ସୁରଭୀ କ ଦୂର କରଇ
ହୋଇଲା
ମଧୁକରତ ମଧୁକର
ବଧୂ କରେ ବନ୍ଧା ନୋହିବ ଏ ଲେଖା
ପାଠ ଦେଖା ନାହିଁ ଆମ୍ଭର ।୧୩।

**ଅନ୍ୱୟ**—ବଶ୍ୟ ଯୋଗରେ ପଦ୍ମାକର କଞ୍ଜରେ ସେ ଯେ ବନ୍ଧନକୁ ଲଭଇ । ଶିବ-ପର ଗୁଣେ ସର୍ବଦା ସୁଭଗ (ହୋଇ) ସୁରଭୀ କ ଦୂର କରଇ । ଏଣୁ ମଧୁକର ତ ମଧୁକର ହୋଇଲା । (ତେଣୁ) ବଧୂକରେ ବନ୍ଧା ନୋହିବ ଏ ଲେଖା ପାଠ ଆମ୍ଭର ଦେଖା ନାହିଁ ।

**ଅନ୍ୟାର୍ଥ**—ବଶ୍ୟ ଯୋଗରେ ପଦ୍ମାକର କଞ୍ଜରେ ସେ ଯେ ବନ୍ଧନକୁ ଲଭଇ । ଶିବପରଗୁଣେ ସର୍ବଦା ସୁଭଗ (ହୁଏ) ସୁର-ଭୀ କ ଦୂର କରଇ । ଏଣୁ ମଧୁକର ତ ମଧୁକର ହୋଇଲା । (ତେଣୁ) ବଧୂକରେ ବନ୍ଧା ନୋହିବ ଏ ଲେଖାପାଠ ଆମ୍ଭର ଦେଖା ନାହିଁ ।

**କଥା**—ସୂର୍ଯ୍ୟୋଦୟକରଣ ସମ୍ପାତରେ ପୁଷ୍କରଣୀସ୍ଥ ପଦ୍ମରେ ଭ୍ରମର ବନ୍ଧ ହୋଇଥାଏ । କାମଦେବଙ୍କ ପୁଷ୍ପଧନୁର ଗୁଣରେ ଥିବା ବିଭିନ୍ନ ପୁଷ୍ପରେ ମଧ୍ୟ ସର୍ବଦା ପ୍ରିୟଦର୍ଶନ ହୋଇଥାଏ । ଏମନ୍ତ କି ସବୁ ସ୍ଥାନରୁ ମକରନ୍ଦ ଶୋଷଣ କରେ । ଏଣୁ ଭ୍ରମର ତ ଲମ୍ପଟ କାମୁକ ବୋଲାଇଲା । ସେ ଯେ ବଧୂଲି ଫୁଲରେ ବନ୍ଧା ନ ହେବ ଏ ଲେଖା ପାଠ ଆମକୁ ଦେଖା ନାହିଁ । (ବଧୂଲି ପଦ୍ମିନୀ ନାରୀର ଅଧର ସାମ୍ୟ) ।

**ଅନ୍ୟାର୍ଥ**—ବିବାହ ଯୋଗରେ ଲକ୍ଷ୍ମୀଙ୍କ କରପଦ୍ମରେ ବିଷ୍ଣୁ ବନ୍ଧନକୁ ଲଭିଥାନ୍ତି । ଉକ୍ତ ବିଷ୍ଣୁ କାମଦେବର ସଦ୍‌ଗୁଣ ପ୍ରତି ସର୍ବଦା ପ୍ରିୟଦର୍ଶନ ଅଟନ୍ତି । ଦେବତାମାନଙ୍କର ମହା ଭୟ ମଧ୍ୟ ସେ ଦୂର କରିପାରନ୍ତି । ଏଣୁ ସେହି ପ୍ରଣୟୀ କୃଷ୍ଣ ଏ କ୍ଷେତ୍ରରେ ବଲ୍ଲଭ ହେଲେ । ତେଣୁ ସେ ସର୍ବଭୟ ନିବାରଣ କରି ଏକାନ୍ତ ମୁଗ୍‌ଧ ଭାବରେ ଆମ ଜେମା ପରି ପଦ୍ମିନୀ ବଧୂ-କରରେ ବନ୍ଧା ନ ହେବେ ଏପରି ରଚନା ଦ୍ୱାରା ରଚିତ ପୁସ୍ତକ ମୁଁ ଦେଖି ନାହିଁ ।

---

ଶବ୍ଦାର୍ଥ । **ବଶ୍ୟ**—ବାପ୍ତି, କରଣ, ବଶ୍ୟପର । **ସୁଭଗ**—ପ୍ରିୟଦର୍ଶନ, ଭାଗ୍ୟବାନ୍ । **କାମଧନୁର ଗୁଣ**—ଅରବିନ୍ଦ, ଅଶୋକ, ଚୂତ, ନବମଲ୍ଲିକା, ରକ୍ତୋତ୍ପଳରେ ହୁଏ । **ପଦ୍ମାକର**—ପୁଷ୍କରିଣୀ, ଲକ୍ଷ୍ମୀଙ୍କ ହସ୍ତ । **କଞ୍ଜ**—ପଦ୍ମ । **ଶିବପର**—କାମଦେବ । **ସୁରଭି**—ମକରନ୍ଦ । **ସୁର**—ଦେବତା । **ଭୀ**—ଭୟ । **ମଧୁକର**—ଭ୍ରମର, ପ୍ରଣୟୀ, ବଲ୍ଲଭ, ଲମ୍ପଟ, କାମୁକ । **ବଧୂକ**—ବଧୂଲି । **ବଧୂକରେ**—ନବବଧୂ କରରେ ।

**ମର୍ଦ୍ଦଳ ବଦ୍ୟା ବ— — ନୋଦନୀ ଭୀଷ୍ମକ**
**ନନ୍ଦିନୀ ଙ୍କି ଗୃହଁ ଉଚାରେ**
**ଅଡ଼ରେ ଏକ ତା— ଳ ପର ଘଟିବ**
**ସଙ୍ଗୀତ ନାରାୟଣ କରେ**
**କହିଲା**
**ବାଣୀ ରାଗୀ ରାଗେ ତହିଁ କ**
**ମୁନିବର ବାଣୀ ଦେଶାକ୍ଷ ବୃଥା ତୁ**
**ପ୍ରଥା କଥା କହୁ କାହିଁକ ।୧୪।**

**ଅନ୍ୱୟ**—ତହୁଁ ଜଣେ ମର୍ଦ୍ଦଳ ବଦ୍ୟା ବନୋଦନୀ ଭୀଷ୍ମକ ନନ୍ଦନୀଙ୍କି ଗୃହିଁ ଉଚାରେ (ତୁ) (ଯେତେ) ଅଡ଼ରେ (ଥା)-(କନ୍ତୁ) ନାରାୟଣକରେ (ତୋ) ସଙ୍ଗତି ଏକ ତାଳ ପର ଘଟିବ । ତହିଁକ (ପୁଣି) ରାଗୀ ରାଗେ ବାଣୀ କହିଲା—ମୁନିବର ବାଣୀ (କୁ) ବୃଥା ତୁ ଦେଶାକ୍ଷ ପ୍ରଥା କଥା କହୁ କାହିଁକ ?

**ଅନ୍ୱୟାର୍ଥ**—ସଙ୍ଗୀତ ନାରାୟଣକରେ ଅଡ଼ରେ ଏକତାଳ ପର ଘଟିବ । ରାଗୀ ରାଗେ ବାଣୀ ତହିଁକ କହିଲା । ମୁନିବର ବାଣୀ ଦେଶାକ୍ଷ (ଅଟେ) ବୃଥା ତୁ ପ୍ରଥା କଥା କାହିଁକ କହୁଁ ?

**କଥା**—ମାଦଳ ବଜାଇବାରେ ନିପୁଣା ଜଣେ ସଖୀ ରୁକ୍ମିଣୀଙ୍କୁ ଗୃହିଁ କହିଲା ତୁ ଯେତେ ଅଭିମାନ କରୁଥା, କିନ୍ତୁ ତୋ ସଙ୍ଗତି ନିଶ୍ଚୟ କୃଷ୍ଣଙ୍କ ସହିତ ଅବିଚ୍ଛିନ୍ନ ଭାବରେ ଘଟିବ । ତହିଁକ ପୁଣି ସ୍ନେହ ମମତାପୂର୍ଣ୍ଣ ଅନୁରକ୍ତ ନାରି କହିଲା ମୁନିବର ନାରଦଙ୍କ ବାଣୀ ଅଭଦ୍ର ଲୋକଙ୍କ ପରି ବୃଥା ହେବ ବୋଲି ନଜର ଦେଇ ବା ତୁ କାହିଁକ କହୁବୁ ?

**ଅନ୍ୱୟାର୍ଥ**—ମାଦଳ ନିପୁଣା ସଖୀ ରୁକ୍ମିଣୀଙ୍କ କହିଲା—ସଙ୍ଗୀତ ନାରାୟଣ ଶାସ୍ତ୍ରରେ ଅଡ଼ ଏକତାଳ ଯୋଗ ହୁଏ । ରାଗ ରାଗିଣୀ କଥା ତହିଁକ କହିଲା । କେମା ମନ ଭୁଲାଇବାକୁ ରାଗ ତୁଳନା କରିଦେଲି ଦେଶାକ୍ଷ ସାଦା ମୁନିବର ବାଣୀ ଏକାପରି । ବୃଥା ତୁ ପ୍ରଥା ବନ୍ଧନ କାହିଁକ କହୁ ?

---

**ଶବ୍ଦାର୍ଥ । ଅଡ଼—ଅଭିମାନ, ରୁଷା, ଜାଗର । ଏକତାଳ—ଅବିଚ୍ଛିନ୍ନତା । ସଙ୍ଗୀତ — ସଙ୍ଗତ । ଅକ୍ଷ—ଇନ୍ଦ୍ରିୟ, ସ୍ୱଭ । ରାଗି—ଅନୁରକ୍ତ, ରଞ୍ଜନକାରୀ । ରାଗେ—ସ୍ନେହ, ମମତା । ସଙ୍ଗୀତ ନାରାୟଣ—ସଂସ୍କୃତ ସଙ୍ଗୀତ ଶାସ୍ତ୍ର । ଏକତାଳ—ବାଦ୍ୟବିଶେଷ ରାଗୀ—ରାଗିଣୀ । ରାଗେ—ରାଗରେ**

ଇଙ୍ଗିତ-ରଚନେ ଭଙ୍ଗୀ ଯେ ବଚନେ
ରାଗେ ରାଗିଣୀକୁ ଭାଷିଲା
ଯନ୍ତି ସର ମାନେ ଗୁମାନ ଯାହାର
ଯତି ସରମାନେ ଭାଷିଲା
ଧନାଶ୍ରୀ
କର ଧରଅଛୁ ଆୟୁଧ
ଶତେ ତାଳ ଯେ ପା— ଣିରେ ପକାଇବ
ତାଂ ସଙ୍ଗେ ବରଚ ବରୋଧ ।୧୫।

**ଅନ୍ୱୟ**—ଇଙ୍ଗିତ-ରଚନେ ଭଙ୍ଗୀ ଯେ ବଚନେ ରାଗେ ରାଗିଣୀକୁ ଭାଷିଲା । ଯନ୍ତି ସର ମାନେ ଗୁମାନ ଯାହାର (ତାକୁ) ଯନ୍ତି ସରମାନେ ଭାଷିଲା—(ତୁ) ଧନାଶ୍ରୀ କର ଆୟୁଧ ଧରଅଛୁ । ତେଣୁ ଯେ ଶତେ ତାଳ ପାଣିରେ ପକାଇବ ତା ସଙ୍ଗେ (କିଏ) ବରୋଧ ବରଚ (ବ)-(ଯେ)-(ଗୁମାନ ବହୁଚୁ ?)

**ଅନ୍ୟାର୍ଥ**—ଇଙ୍ଗିତରଚନେ ଭଙ୍ଗୀ ଯେ ବଚନେ ରାଗେ ରାଗିଣୀକୁ ଭାଷିଲା, ଯନ୍ତି ସରମାନେ ଗୁମାନ ଯାହାର ଯନ୍ତି ସରମାନେ ଭାଷିଲା—ଧନାଶ୍ରୀ କର ଆୟୁଧ ଧରଅଛୁଁ । ଶତେ ତାଳ ଯେ ପାଣିରେ ପକାଇବ ତା ସଙ୍ଗେ ବରୋଧ ବରଚ (ବି) (କିଏ ?)

**କଥା**—ସଙ୍କେତ ରଚନା କରି ପରିହାସ ବଚନରେ ସ୍ନେହରେ ତପସ୍ୱୀ ସମାନ ଦୃଢ଼ ଅଭିମାନରେ ଗୁମାନ ଯାହାର ସେହି କୃଷ୍ଣ-ଅନୁରାଗବତୀକୁ କହିଲା, ତୁ ପରମଶୋଭାମୟୀ ହୋଇ ନାଟ୍ୟର ଚେଡ଼ିକେଳିରେ କଳାବତୀ ହୋଇଅଛୁ । ତେଣୁ ତୋର ପରବାୟୁ କିଣ ? ଯେ ଶତ ବାହ୍ୱାସ୍ଫୋଟ ହାତରେ ମାରିପାରେ ଏମନ୍ତ ବୀରେନ୍ଦ୍ର ତା ସାଥିରେ କିଏ ବିରୋଧୀ ହେବ ଯେ ତୁ ଗୁମାନ ଧରିଚୁ ? କଥା କହୁନୁଁ ?

**ଅନ୍ୟାର୍ଥ**—ପରିହାସ ରଚନାରେ ଭଙ୍ଗୀ କରି ସଙ୍ଗୀତ ରାଗରେ ରାଗିଣୀ ଏକ ବଜାଇଲା, ସେଥିରେ ଯନ୍ତି ସରିମାନ ତାଳରେ ଟେକ-ଦେଇ ନାରଦ ଯତି ସମାନ ମାନ ଙ୍କ ବୀଣା ଧ୍ୱନିରେ ଗାନ କଲା । ଧନାଶ୍ରୀ ଗାନ କରିବାକୁ ଯନ୍ତ୍ର ଧରଅଛୁଁ । ଶତ ସଂଖ୍ୟାରେ ତାଳ ଯେ ହାତରେ ପକାଇ ପାରିବ ତାକୁ ପାରିବ କିଏ ? ଦେଖ, ମୁଁ କପଟ ଧନାଶ୍ରୀ ରାଗରେ ଚମତ ଆନନ୍ଦ ଆଣି ପାରୁଛି ।

---

ଶବ୍ଦାର୍ଥ । ସର—ସମାନ । ମ ନ— ତାଳ, ଅଭିମାନ । ମାନେ—ଧ୍ୱନିରେ । ଇଙ୍ଗିତ—ସଙ୍କେତ । ସରମାନ—ସଙ୍ଗୀତ ତାଳ ବିଶେଷ । ରାଗିଣୀ—ଅନୁରାଗିଣୀ, ରାଗର ଭାର୍ଯ୍ୟା । ରାଗେ—ଅନୁରାଗରେ, ରାଗରେ । ଗୁମାନ—ଟେକ, ଅଭିମାନ । ଯତି—ଯତିପାତ, ତପସ୍ୱୀ । ଧନାଶ୍ରୀ—ରାଗିଣୀ ବିଶେଷ । ଧନା—ମହାଧନୀ । ଶ୍ରୀ—ଶୋଭା, ପରମ ଶୋଭାମୟୀ । ତାଳ—ବାହ୍ୱାସ୍ଫୋଟ, ରାଗର ତାଳ । ଅୟୁଧ—ଅସ୍ତ୍ର, ଯନ୍ତ୍ର । ପାଣି—ହସ୍ତ ।

**କାମୁଡ଼ାଳ ଶିଙ୍ଗା ବେଣୁବେତ୍ର ବର୍ଜି**
**ଅର୍ଜୁନ ସଂସର୍ଗୀ ପୁନ୍ନାଗ**
**ପାଶେ ସୁନାରୀ ଗୃ- ର ମିଳୁଁ ଆଗତ**
**ଧୃତ ମଞ୍ଜରୀ ଶିଶୁରଙ୍ଗ**
**ଚୂ୍ୟତକୁ**
**ସେ ପଲ୍ଶ ଘେନ ଆସିବ**
**ଅଶୋକ କ୍ଷୀର କ- ଦମ୍ବ ଅଶନରେ**
**କୁମ୍ଭୀ ଗମନକୁ ତୋଷିବ । ୧୭ ।**

**ଅନ୍ୱୟ**—ଅର୍ଜୁନ ସସର୍ଗୀ ପୁନ୍ନାଗ ପାଶେ ସୁନାରୀ ଗୃର ଆଗତ (ହୋଇ) ମିଳୁଁ (ସେ) କାମୁଡ଼ାଳ, ଶିଙ୍ଗା, ବେଣୁ, ବେତ୍ରବର୍ଜି ମଞ୍ଜରୀ ଶିଶୁରଙ୍ଗ (ଭଜିବେ) (ଚୂ୍ୟତକୁ ସମ୍ପୂର୍ଣ୍ଣ କରି ଅମିଶାଇ) ସେ ପଲ୍ଶ ଘେନ ଆସିବ । ଅଶୋକ-କ୍ଷୀର-କଦମ୍ବ ଅଶନରେ (ତେଣୁ) କୁମ୍ଭୀଗମନକୁ ତୋଷିବ ।

**କଥା**—ଅନ୍ୟଜଣେ ସଖୀ ବର୍ଣ୍ଣନା କରି କହିଲ—ମୟୂରପୁଚ୍ଛ ଭୂଷିତ ପୁରୁଷ-ଶ୍ରେଷ୍ଠ କୃଷ୍ଣଙ୍କ ଦୂତ ଆସି ମିଳନ୍ତେ ସେ କାମୁଁଡାଳ, ଶିଙ୍ଗା, ବେଣୁ ଲଉଡ଼ ଆଦି ବାଳକ ସମୟର ଭୂଷଣ ମାନ ତ୍ୟାଗ କରି ବରଡ଼ ପିଲ ପରି ଆଜ୍ଞାଧୀନତା ଦେଖାଇ ଏଠାକୁ ଚାଲି ଆସିବେ । ଚୂ୍ୟତକୁ ସମ୍ପୂର୍ଣ୍ଣ କଲେ ଅଚ୍ୟୁତ ହେବ, ଉକ୍ତ ଅଚ୍ୟୁତଙ୍କୁ ପର୍ଣ୍ଣଶାଳା ଧର୍ମୀ ବ୍ରାହ୍ମଣ ନିଷ୍ଟୟ ଘେନ ଆସିବେ । ଫଳରେ ଶୋକ ବର୍ଦ୍ଧନତା କ୍ଷୀର ସବୁ ଖାଆଇ ଗଜଗମନା ରୁକ୍ମଣୀକୁ ତୋଷ କରିବେ ।

ବନ ବର୍ଣ୍ଣନାରେ ସେ ଜାମ୍ବୁ, ଗହମ, ବାଉଁଶ, ବେତ, ଅର୍ଜୁନ, ପୁନ୍ନାଗ, ସୁନାରି, ଗୃର, ମଞ୍ଜାରି, ଶିଶୁ, ଚୂତ, ପଳାଶ, ଅଶୋକ, କ୍ଷୀର, କଦମ୍ବ, ଅଶନ, କୁମ୍ଭୀ ବୃକ୍ଷ ନାମ କହିଗଲେ ।

---

ଶବ୍ଦାର୍ଥ । **ଅର୍ଜୁନ—ମୟୂର, ଧବଳ । କଦମ୍ବ—ସମୂହ । କୁମ୍ଭୀ ଗମନ—ଗଜଗମନା । (ପଲ—ପର୍ଣ୍ଣଶାଳା । ଶ—ସୁଙ୍ଗ, ଧର୍ମ) । (ପଲଶ—ବ୍ରାହ୍ମଣ) । ପଲଶ—ଗଛ । ପୁଂନ୍ନାଗ—ପୁରୁଷ ଶ୍ରେଷ୍ଠ । ସୁନାରୀ—ଶ୍ରେଷ୍ଠନାରୀ । ଗୃର—ଗୃରକୋଳ, ଦୂତ । ମଞ୍ଜାରୀ—ଗଛ, ବରଡ଼ । ଶିଶୁ—ପିଲ, ଶିଶୁଗଛ । ଅଶୋକ—ଶୋକବର୍ଦ୍ଧନ, ଗଛ । କ୍ଷୀର—ଦୁଗ୍ଧ, ଗଛ । କଦମ୍ବ—ସମୂହ, ଗଛ । ଅଶନ—ଖାଦ୍ୟ ଗଛ । କୁମ୍ଭୀ—ଗଛ ।**

ଉଚ୍ଛନ ମତ୍ସ୍ୟର                ବଡ଼ଶୀ ମତ୍ସ୍ୟର
କଣ୍ଠେ ଦେଖାଇଲ ଭୁଲାଇ
ଘୋଟିଥିଲା ବ୍ୟଥା                ଦୂରକରି ଦେଲୁ
ଏ ଗଛ ସେ ଗଛ ଦେଖାଇ
ମୋ ଛାର
ସମକକ୍ଷ ନୁହେଁ କଥାରେ
ରାଗ ସେ ରାଗିଣୀ                ଉଚାରି ଏ ବାଣୀ
ପାଣି ନବେଶିଲ ମଥାରେ । ୧୭ ।

**ଅନ୍ୱୟ**—ବଡ଼ଶୀ ମତ୍ସ୍ୟର କଣ୍ଠେ ଦେଖାଇଲ (ତୁରି) ଉଚ୍ଛନ୍ନ ମତ୍ସ୍ୟର ନୟନ (କୁ) ଭୁଲାଇ ଏଗଛ ସେଗଛ ଦେଖାଇ ଘୋଟିଥିଲ ବ୍ୟଥା ଦୂର କରିଦେଲୁଁ । କଥାରେ (ତୋ-ସଙ୍ଗତ) ମୋ ଛାର ସମକକ୍ଷ ନୁହେଁ । ସେ ରାଗରାଗିଣୀ (ନିପୁଣ) ଏ ବାଣୀ ଉଚାରି ପାଣି ମଥାରେ ନବେଶିଲ ।

**କଥା**—ବନଶି ମାଛ ବେକରେ ଦେଖାଇବା ପରି ଚଞ୍ଚଳ ମତ୍ସ୍ୟପ୍ରାୟ ନେତ୍ର ଧାରିଣୀ ଜେମାକୁ ଭୁଲାଇ ଏ ଗଛ ସେ ଗଛ ଦେଖାଇ (କରାଇ)ଯେଉଁ ବ୍ୟଥା ଘୋଟିଥିଲ ତାହା ଦୂର କରିଦେଲୁ । କଥାରେ ତୋ ସାଙ୍ଗରେ ମୋ ଛାର ସମକକ୍ଷ ନୁହେଁ । ସେ ସଙ୍ଗୀତ-ରାଗ-ନିପୁଣା ଏ କଥା କହି ମୁଣ୍ଡରେ ହାତ ଦେଲା ।

**ଆଲୋଚନା**—ସଙ୍ଗୀତ ନିପୁଣା କହିଲ ମୁଁ ଏତେ ଗୀତଗାଇ ତାଳମାନ ଦେଇ ଭୁଲାଇ ପାରିଲି ନାହିଁ । ତୁ ଏଗଛ ସେଗଛ ଦେଖେଇ ଭୁଲେଇ ଚେତା କରିଦେଲୁଁ—ମନ ଖୁସି କରିଦେଲୁ ।

---

ଶବ୍ଦାର୍ଥ । ଉଚ୍ଛନ୍ନ—ବ୍ୟଗ୍ର । ବଡ଼ଶୀ—ବନ୍ଶି କଣ୍ଟା । ପାଣି—ହସ୍ତ ।

ନୃପଜାର ଲେଖେ ଗୋପରଜା ବକ୍ଷେ
ବପ୍ରଉଦ୍‌ବେଗ ଯୋଗକରି
ଲେଉଟି ଭେଟିଲେ ତାଙ୍କଯିବା ବାଟେ
ଥିଲା ଯେ ପିଚ୍ଛୁଡ଼ା ନବାରି
ଶର୍ବରୀ
ଭାବ ସେ ଚତୁର ଚତୁରୀ
ଶିବ, ଅଚ୍ୟୁତ, ଶିବା, ହରି, ଚରିତ
ଭାଷିବାରେ ହେଲେ ବଗ୍ରି । ୧୮ ।

**ଅନ୍ୱୟ**—ବପ୍ର ନୃପଜାର ଲେଖେ ଗୋପରାଜା ବକ୍ଷେ ଉଦ୍‌ବେଗ ଯୋଗକରି ଲେଉଟି (ଲେ)-(ଏବଂ) ଯେ ପିଚ୍ଛୁଡ଼ା ନବାରି ତାଙ୍କ ଯିବା ବାଟେ ଥିଲା (ତାକୁ) ଭେଟିଲେ । ସେ ଚତୁର ଚତୁରୀ ଶର୍ବରୀ ଭାବ ଶିବ ଅଚ୍ୟୁତ ଏବଂ ଶିବା ହରି ଚରିତ ଭାଷିବାରେ ବଗ୍ରର ହେଲେ ।

**କଥା**—ଯେଉଁ ବପ୍ର ଦ୍ୱାରକାକୁ ଚିଠିନେଇ ଯାଇଥିଲେ ସେ ରାଜକୁମାରୀର ଲେଖାଦ୍ୱାରା ଶ୍ରୀକୃଷ୍ଣଙ୍କ ହୃଦୟରେ ଉତ୍ତେଜନା ସୃଷ୍ଟିକରି ଲେଉଟିଲେ, ଏବଂ ଯେଉଁ ସଖୀଟି ଆଖି [illegible] ନ [illegible] ଉକ୍ତ ବ୍ରାହ୍ମଣଙ୍କୁ ବାଟଜଗି ବସିଥିଲା; ତାକୁ ଭେଟିଲେ । ତେଣୁ ଉକ୍ତ ଚତୁର ବ୍ରାହ୍ମଣ ଏବଂ-ଉକ୍ତ ଚତୁରୀ ସଖୀ ଦୁହେଁ ରାଜି ହୋଇଥିବାରୁ ଶୁଭ ସନ୍ଦେଶ ଜେମାଙ୍କ କର୍ଣ୍ଣଗୋଚର ପୂର୍ବରୁ ହରିହର ଏବଂ ଦୁର୍ଗାମାଧବ ସ୍ତବ ପାଠ କରିବାକୁ ସିଦ୍ଧାନ୍ତ କଲେ ।

---

ଶବ୍ଦାର୍ଥ । ନୃପଜା—ରାଜକୁମାରୀ । ଲେଖେ—ଚିଠିରେ । ଗୋପରଜା—ଶ୍ରୀକୃଷ୍ଣ । ଉଦ୍‌ବେଗ—ଚାଞ୍ଚଲ୍ୟ । ପିଚ୍ଛୁଡ଼ା—ପିଚ୍ଛୁଳା । ଶର୍ବରୀ—ରାତି । ଶିବ ଅଚ୍ୟୁତ—ହରିହର (ଆନୟୋର୍ନାସ୍ତି ଭେଦୋବୈ ଭେଦୀ ନରକମାପ୍ନୁୟାତ୍) ଅତି ଶୁଭପ୍ରଦ ଦେବତା ଯୁଗଳ । ଶିବା ହରି—ଦୁର୍ଗା ମାଧବ, ଅନୁକୂଳ କରିବାର ଦେବଦେବୀ ।

**ପରଶୁରାମ କଳାକର ବିଭୂତ**
**ଶ୍ରୀ ତେଜ ପ୍ରକାଶ ଯାହାର**
**ଅତନୁ-ପୀଡ଼ାକୁ ବନାଶେ ଗଉରୀ**
**କଲେକ ତନୁ ଅଙ୍ଗୀକାର**
**ସର୍ବଦା**
**ଅସୁର ଶିଶୁ ପାଳନାରେ ପରମ**
**କୋପ ଆରୋପଣ ତାହାର ।୧୯।**

**ଅନ୍ୱୟ**—୧—ପରଶୁ, ରାମ, କଳାକର, ବିଭୂତ (ଦ୍ୱାରା) ଯାହାର ଶ୍ରୀତେଜ ପ୍ରକାଶ, ଅତନୁ ପୀଡ଼ାକୁ ବନାଶେ ଗଉରୀତନୁ ଅଙ୍ଗୀକାର କଲେ କ (ପୁନଶ୍ଚ) ସର୍ବଦା ନାଗ (ଏବଂ) ଭୂପୁରେ ଯା ବହାର (ହୋଇଯାଏ) ତାହାର ଅସୁର ଶିଶୁ ପାଳନାରେ ପରମ କୋପ ଆରୋପଣ (ହୁଏ) ।

୨-ପରଶୁରାମ କଳାକର, ବିଭୂତ, ଶ୍ରୀ (ରେ) ଯାହାର ତେଜ ପ୍ରକାଶ, ଅତନୁ ପୀଡ଼ାକୁ ବନାଶେ ଗଉରୀତନୁ ଅଙ୍ଗୀକାର କଲେ କ। ସର୍ବଦା ନାଗଭୂପୁରେ ଯା ବହାର (ପୁନଶ୍ଚ) ଅସୁର ଶିଶୁପାଳ ନାଁରେ ତାହାର ପରମ କୋପ ଆରୋପଣ (ହୁଏ)

୩-ପରଶୁ ରାମକଳାକର ଓ ବିଭୂତ (ଦ୍ୱାରା) ଯାହାର ଶ୍ରୀତେଜ ପ୍ରକାଶ, ଗଉରୀ ଅତନୁ ପୀଡ଼ାକୁ ବନାଶେ ତନୁ ଅଙ୍ଗୀକାର କଲେକ, ସର୍ବଦା ନାଗ-ଭୂପୁରେ ଯା ବହାର, ର—ଶିଶୁ ଅସୁ ପାଳନାରେ ତାହାର ପରମ କୋପ ଆରୋପଣ କରନ୍ତି ।

**କଥା— ଶିବ**—ପରଶୁ, ମୃଗ, ଚନ୍ଦ୍ରମା, ପାଉଁଶଦ୍ୱାରା ଯାହାଙ୍କର ଶୋଭାମୟ ତେଜ ପ୍ରକାଶିତ ହୁଏ, ଅନଙ୍ଗଙ୍କୁ ବଂଚାଇବା ଲାଗି ଯେ ପାର୍ବତୀଙ୍କ ଠାରେ ଅର୍ଦ୍ଧାଙ୍ଗ ସ୍ୱୀକାର କଲେ, ପୁନଶ୍ଚ ନାଗସର୍ପ ଏବଂ ଭୂତ ପ୍ରେତାଦରେ ଯେ ବହାର କରିଥାନ୍ତି, ତାଙ୍କର ଅସୁର ସନ୍ତାନମାନଙ୍କୁ ପାଳିବା ଲାଗି ଉଗ୍ର-କ୍ରୋଧରେ ଭ୍ରମ ଆସିଯାଏ । ତେଣୁ ସେ କୋପ ନବାରଣ କରିଥାନ୍ତି ।

**ବିଷ୍ଣୁ**— ଅବତାରୀ ପର୍ଶୁରାମଙ୍କ କଳାସମୂହରେ, ଷଡ଼ୈଶ୍ୱର୍ଯ୍ୟ ବିଭୂତରେ, ଚରମ ଶୋଭାମୟୀ ଲକ୍ଷ୍ମୀଙ୍କ ଦ୍ୱାରା ଯାହାଙ୍କର ତେଜ ବୃଦ୍ଧି ହୋଇଯାଏ, କନ୍ଦର୍ପ ପୀଡ଼ା ନବାରଣ ଲାଗି ଯେ ଗୌରାଙ୍ଗୀ ଗୋପଯୁବତୀମାନଙ୍କ ତନୁପ୍ରତି ଶ୍ରଦ୍ଧା ସ୍ୱୀକାର କରିଥିଲେ, ଯାହାଙ୍କର ବିହାର ଗରୁଡ଼ ପୃଷ୍ଠରେ ସର୍ବଦା ହୋଇଥାଏ, ତାଙ୍କର ଶୂରଙ୍କ ବଂଶୀୟ ଶିଶୁପାଳ ନାମରେ ଅତି କ୍ରୋଧ ପ୍ରକାଶିତ ହୋଇଥାଏ ।

**ଦୁର୍ଗା**—ପରଶୁ, ରମଣୀୟ ଚନ୍ଦ୍ରମା ଏବଂ ନାଗାଭୂର ସମସ୍ତ ଐଶ୍ୱର୍ଯ୍ୟ (ଯା ଦେବୀ ସର୍ବଭୂତେଷୁ ଇତ୍ୟାଦି) ରେ ଯାହାଙ୍କ ତେଜ ବୃଦ୍ଧି ଲଭୁଛି, ଲୋହିତବର୍ଣ୍ଣର ଅସୁର ମହିଷାର କାମପୀଡ଼ା ନିବାରଣଲାଗି ଯେ ପ୍ରଥମେ ମାତ୍ରି କତନୁ ଅଙ୍ଗୀକାର କରିଥିଲେ ଏବଂ ସର୍ବଦା ସିଂହ ପୃଷ୍ଠରେ ବିହାର କରିଥାନ୍ତି, ଅଗ୍ନିରୁ ଜାତ ଶିଶୁ କୁମାରଙ୍କ ପ୍ରାଣ ପାଳନାରେ ତାଙ୍କର ଚଣ୍ଡୀ ପ୍ରକୃତି ଭୁଲିଯାନ୍ତି ।

ଶବ୍ଦାର୍ଥ । ଅର୍ଦ୍ଧେନ୍ଦୁକୃତ ଶେଖରଂ(ଦୁର୍ଗା) । ପରଶୁ—ପର୍ଶୁ ଅସ୍ତ୍ରବିଶେଷ । ରାମ—ମୃଗ । କଳାକର—ଚନ୍ଦ୍ରମା । ବିଭୂତି—ଭସ୍ମ । ଶ୍ରୀ—ଶୋଭନୀୟ । ପୀଡ଼ା—ବିନାଶେ—ବଂଶୁଇବାଲାଗି । ନାଗ—ସର୍ପ । ରିପୁ—ଭୂତପ୍ରେତ । ଶିଶୁ—ସଂତାନ । ଆକ୍ଷେପଣ—ଭ୍ରମ । ପରଶୁରାମ କଳାକର—ପରଶୁରାମଙ୍କ କଳା ସମୂହ । ବିଭୂତି—ଷଡ଼ୈଶ୍ୱର୍ଯ୍ୟ । ଶ୍ରୀ—ଲକ୍ଷ୍ମୀ । ଗୌରୀ—ଗୌରାଙ୍ଗୀ । ନାଗରିପୁ—ଗରୁଡ଼ । ଅସୁର—(ଈଶୂର)—ଅବୀର । ରାମ—ରମଣୀୟ । କଳା—ଚନ୍ଦ୍ରକଳା । ବିଭୂତି—ନାଗାଭୂର ଅସୀମ ଶୌର୍ଯ୍ୟ । ଗୌରୀ—ଲୋହିତ ବର୍ଣ୍ଣ । ଅତନୁ—କାମ । ନାଗ—ହସ୍ତୀ । ନାଗରିପୁ—ସିଂହ । ଅସୁ—ପ୍ରାଣ । ର—ଅଗ୍ନି । ର—ଶିଶୁ—ଅଗ୍ନିରୁ ଉଦ୍‌ଭବ କୁମାର । ପରମ କୋପ—ଚଣ୍ଡି ପ୍ରକୃତି । ଆକ୍ଷେପଣ—ନାଶ ।

ସେ ସୁଭାଷି-ଭାସି ଗଲା ତୋଷ ରାଶି
ସରିତ ହେବାରେ ପ୍ରବୃଦ୍ଧି
ମିଳିଲା ତତ୍‌କାଳ ରସନିଧି କୁଳ
ପୂର୍ଣ୍ଣ ସୁଧାନିଧି ସନ୍ନିଧି
ସଚେତା
ଅଚେତ ନିଦ୍ରା ଯାଇଛନ୍ତି
ନିତ-ଜାଗ୍ରତାକୁ ଭୀତ କର ଭଣ୍ଡି
ଖଣ୍ଡି ଦେଲା ମଣ୍ଡି ଏ ଉକ୍ତି ।୨୦।

**ଅନ୍ୱୟ**—ତୋଷରାଶି ସରିତ ପ୍ରବୃଦ୍ଧି ହେବାରେ ସେ ସୁଭାଷି ଭାସିଗଲା । ତତ୍‌କାଳ ରସନିଧି କୁଳ ପୂର୍ଣ୍ଣସୁଧା ନିଧି ସନ୍ନିଧି ମିଳିଲା । (ଦେଖିଲା) ସଚେତ ଅଚେତ ନିଦ୍ରା ଯାଇଛନ୍ତି । (ସେ) ନିତ ଜାଗ୍ରତାକୁ ଭୀତ (ରେ) କର (ଲଗାଇ) ଭଣ୍ଡି ଏ ଖଣ୍ଡି ଉକ୍ତି ମଣ୍ଡି ଦେଲା ।

**କଥା**—ବ୍ରାହ୍ମଣ ସମ୍ବାଦରୁ ସଂତୋଷ ସମୂହର ନିଧାଂବଢ଼ି ଯିବାକୁ ସେହି ମିଷ୍ଟଭାଷିଣୀ, ସେଥିରେ ଏକାବେଳେ ଭାସିଗଲା । ଆନନ୍ଦରେ ଗଦ୍‌ଗଦ ହୋଇଗଲା । ତତ୍‌କ୍ଷଣାତ୍, ଠିକ୍ ସେହି ସମୟରେ ରସନିଧି-କୁଳର ପୂର୍ଣ୍ଣ ସୁଧାନିଧି ରୁକ୍ମିଣୀଙ୍କ ନିକଟରେ ପହଞ୍ଚି ଦେଖିଲା ସେ ଚେଇଁ ଯେପରି ଅଚେତ ନିଦ୍ରା ଯାଇଛନ୍ତି । ସେଠାରେ ଯେଉଁ ସଖୀ ଜେମା ଚେଇଁଲେ ନିତ କରିବାକୁ ରହିଥିଲା, ଉକ୍ତ ନିତଜାଗ୍ରତାକୁ ଭୟେ ଭୟେ ତା'ଠି ହାତ ପରଶି ରହସ୍ୟକର ଏହି କୋମଳ କଥାରେ ଖୁସି କରିଦେଲା ।

ଶବ୍ଦାର୍ଥ । ତୋଷ—ସଂତୋଷ । ରାଶି—ସମୂହ । ସରିତ—ନଦୀ । ସୁଭାଷୀ—ମଧୁର ଭାଷିଣୀ । ରସ ନିଧି କୁଳ—ସୁରସିକା ସମୂହ । ପୂର୍ଣ୍ଣ ସୁଧାନିଧି—ପୂର୍ଣ୍ଣ ଚନ୍ଦ୍ରମା । ସଚେତ ଅଚେତ—ଚେଇଁ ଗାଢ଼ ନିଦ୍ରାଭିଭୂତ । ନିତଜାଗ୍ରତା—ଜେମା ଜାଗ୍ରତହେଲେ ଯେଉଁ ଦାସୀ ନିତ କରେ । ଭୀତ—ଭୟେ ଭୟେ । କର—ହାତ ପରଶି । ଭଣ୍ଡି—ପରିହାସ । ଖଣ୍ଡି—କୋମଳ । ମଣ୍ଡି ଦେଲା—ମଣ୍ଡନ କରି ଦେଲା ।

**ବଣ୍ଟୁରେ ସଞ୍ଚରି ପରମ ବଇରୀ**
**ଅଭିମାନେ କଉଶିକର**
**କୁବଳୟ ନାଗର କରେ ପ୍ରତାପ**
**ପ୍ରକାଶିବାରେ ଅଗ୍ରସର**
**ଭୁଜଙ୍ଗ-**
**ଭୋଗ ଦଳନରେ କୁଶଳ**
**ଆଶାକୁ ଆଦରିଲେ ଦ୍ୱିଜ ବଦନେ**
**ଜନିତ ହେଲେ କଳକଳ । ୬୧ ।**

**ଅନ୍ୱୟ**—ବଣ୍ଟୁରେ ସଞ୍ଚରି (ଯେ) କଉଶିକର ଅଭିମାନେ ପରମ ବଇରୀ (ଅଟନ୍ତି) କୁବଳୟ-ନାଗର କରେ ପ୍ରତାପ ପ୍ରକାଶିବାରେ ଅଗ୍ରସର (ହୋଇଛନ୍ତି) (ପୁନଶ୍ଚ) ଭୁଜଙ୍ଗ ଭୋଗ ଦଳନରେ କୁଶଳ (ସେ) ଆଶାକୁ ଆଦରିଲେ, ଦ୍ୱିଜ ବଦନେ କଳକଳ ଜନିତ ହେଲେ ।

**ଅନ୍ୟାର୍ଥ**—ବଣ୍ଟୁରେ ସଞ୍ଚରି ଅଭିମାନେ ଯେ କୌଶିକର ପରମ ବୈରୀ (ଅଟନ୍ତି, ଯେ) କୁବଳୟ-ନଗର କରେ ପ୍ରତାପ ପ୍ରକାଶିବାରେ ଅଗ୍ରସର (ଏବଂ) ଭୁଜଙ୍ଗ ଭୋଗ ଦଳନରେ କୁଶଳ (ସେ) ଆଶାକୁ ଆଦରିଲେ । ଦ୍ୱିଜ ବଦନେ କଳକଳ ଜନିତ ହେଲେ ।

**କଥା**—ଏହି ବଣ୍ଟୁରେ ଅବତାର ଗ୍ରହଣ କରି ଯେ ଇନ୍ଦ୍ରର ଅଭିମାନ ଯୋଗୁଁ ପରମ ଶତ୍ରୁତା କରିଛନ୍ତି, ରାବଣ, କଂସ ଆଦି ଦେବଶତ୍ରୁ ନାଶ କରିବାରେ ଯେ କୁବଳୟ-ହସ୍ତୀ ବିନାଶରେ ପ୍ରତାପ ପ୍ରକାଶିବାରେ ଅଗ୍ରସର ହୋଇଥିଲେ, ପୁନଶ୍ଚ କାଳୀୟ ଫଣା-ଦଳନ କରିବାରେ ଯେ ସମର୍ଥ ସେ ରୁକ୍ମଣୀର ଆଶାକୁ ସଫଳ କରିବା କଥା ଗ୍ରହଣ କରିଛନ୍ତି । ସେ ନିଶ୍ଚୟ ଆସିବେ—ଏ କଥା ବ୍ରାହ୍ମଣ ମୁଖରେ କଳକଳ ଧ୍ୱନିରେ ଜାତ ହୋଇଛି ।

**ଅନ୍ୟାର୍ଥ**—ଯେ ଏହି ଭୂଲୋକରେ ନିତ୍ୟ ସଞ୍ଚାରିତ, ଆତ୍ମଗରିମାରେ ସ୍ୱକୀୟ ତେଜରେ ଯେ ପେଚକର ପରମ ଶତ୍ରୁ ଅଟନ୍ତି, ଯେ ନୀଳପଦ୍ମର ସ୍ୱାମୀ ସ୍ୱରୂପ, ଯେ କିରଣଦ୍ୱାରା ସ୍ୱ ପ୍ରତାପ ପ୍ରକାଶିବାରେ ଅଗ୍ରସର ଏବଂ ବିଟପୁରୁଷମାନଙ୍କର ସମ୍ଭୋଗ ନାଶ କରନ୍ତି ସେହି ସୂର୍ଯ୍ୟଦେବ ପୂର୍ବଦିଗକୁ ଆଦରିଲେଣି । ପକ୍ଷୀମାନଙ୍କ କଣ୍ଠରେ କଳକଳ ଧ୍ୱନି ଜାତ ହେଲଣି । ସକାଳ ହେଲଣି ।

---

ଶବ୍ଦାର୍ଥ । ଅଭିମାନ—ଆତ୍ମଗରିମା । କଉଶିକ—ଇନ୍ଦ୍ର, ପେଚକ । କୁବଳୟ—ନୀଳପଦ୍ମ, ହସ୍ତୀବିଶେଷ । ନାଗ—ହସ୍ତୀ । ନାଗର—ସ୍ୱାମୀ । ଭୁଜଙ୍ଗ—ବିଟପୁରୁଷ, ସର୍ପ । ଭୋଗ—ଫଣା, ସଂଭୋଗ । ଆଶା—ପୂର୍ବଦିଗ, ଆକାଂକ୍ଷା । ଦ୍ୱିଜ—ବ୍ରାହ୍ମଣ, ପକ୍ଷୀ । ଜନିତ—ଜାତ ।

ସୁପର୍ବାଣ ଧୁନି ମୂର୍ଦ୍ଧନୀଙ୍କ ପୁରେ
ଦର ଧ୍ୱନି ହେଲା ଉତ୍ପତ୍ତି
ଦିବାକର କର କୁକ୍କୁଟ ସଞ୍ଚରି
ଚରି ଦେଇ ଗଲା ଝଟତି
ରଥାଙ୍ଗ
ବିଯୋଗ ଯୋଗେ ଦ୍ୱିଜରାଜ
ପୁଣ୍ୟାହ ବାଚନେ ବୁଣିଥିଲା ଯେଉଁ
ଅକ୍ଷତ ନକ୍ଷତ୍ର ସମାଜ । ୨୨ ।

**ଅନ୍ୱୟ**—ସୁପର୍ବାଣ-ଧୁନି-ମୂର୍ଦ୍ଧନୀଙ୍କ ପୁରେ ଦରଧ୍ୱନି ଉତ୍ପତ୍ତି ହେଲା(ଣି) ଦ୍ୱିଜରାଜ ରଥାଙ୍ଗ ବିଯୋଗ ଯୋଗେ ପୁଣ୍ୟାହ ବାଚନେ ଯେଉଁ ନକ୍ଷତ୍ର ସମାଜ ଅକ୍ଷତ ବୁଣିଥିଲା, (ତାହା) ଦିବାକର କର-କୁକ୍କୁଟ ଝଟତି ସଞ୍ଚରି ଚରିଦେଇ ଗଲା(ଣି) ।

**କଥା**—ଦେବନଦୀ ଗଙ୍ଗା ଯାହାଙ୍କ ମସ୍ତକରେ ବିରାଜିତ ଏମନ୍ତ ମହାଦେବଙ୍କ ମନ୍ଦିରରେ ଶଙ୍ଖଧ୍ୱନି ଶୁଣାଗଲାଣି । ଚନ୍ଦ୍ରମା ଚକ୍ରବାକ ଦମ୍ପତିଙ୍କ ବିଚ୍ଛେଦ ନିମନ୍ତେ ପୁଣ୍ୟାହ ବାଚନ କାଳରେ ଯେଉଁ ଅରୁଆ ଚାଉଳରୂପୀ ନକ୍ଷତ୍ରମାନଙ୍କୁ ବୁଣିଥିଲା ତାହା ସୂର୍ଯ୍ୟକିରଣ ରୂପ କୁକ୍କୁଟ ସଞ୍ଚରି ତୁରନ୍ତ ଚରିଦେଇ ଗଲାଣି ।

---

ଶବ୍ଦାର୍ଥ । ସୁପର୍ବାଣ—ଦେବତା । ଧୁନି—ନଦୀ । ମୂର୍ଦ୍ଧନୀ—ମସ୍ତକ । ଦର—ଶଂଖ । ରଥାଙ୍ଗ—ଚକ୍ରବାକ ପକ୍ଷୀ । ବିଯୋଗ—ବିଚ୍ଛେଦ । ଯୋଗେ—ନିମନ୍ତେ । ପୁଣ୍ୟାହ ବାଚନ—ସଂକଳ୍ପରେ ପୁଣ୍ୟାହ ବାଚନ କରାଯାଏ । ଅକ୍ଷତ—ଅଭଙ୍ଗା ଉଆରୁଚାଉଳ ।

ବଦର୍ଭ-ପତି ଝଟତି ସାର ନୀତି
ମୃଗପତିଦ୍ୱାର ଜଗତି
ଉତ୍ସଙ୍ଗେ ମଣି- ସିଂହାସନେ ପ୍ରସନ୍ନେ
ବସି ଭାଷିଲେ ଏ ଭାରତୀ
ମନ୍ତ୍ରୀକ
ରୁକ୍ମଣୀ ରୁଦ୍ରାଣୀ ଦର୍ଶନେ
ଚଳିବା ବାଧି ମାନସରେ ମାନସ-
ହଂସ ବିଳସାଅ ଜବନେ । ୨୩ ।

**ଅନ୍ୱୟ**—ବଦର୍ଭ-ପତି ଝଟତି ମାତ ସାର ମୃଗପତିଦ୍ୱାର-ଜଗତି-ଉତ୍ସଙ୍ଗେ ମଣିସିଂହାସନେ ପ୍ରସନ୍ନେ ବସି ମନ୍ତ୍ରୀକ ଏ ଭାରତୀ ଭାଷିଲେ—ରୁକ୍ମଣୀ ରୁଦ୍ରାଣୀ ଦର୍ଶନେ ଚଳିବା ବାଧି ମାନସରେ ଜବନେ ମାନସ-ହଂସ ବିଳସାଅ ।

**କଥା**—ରାଜା ଭୀଷ୍ମକ ତୁରନ୍ତ ପ୍ରାତଃକୃତ୍ୟ ଶେଷକରି ସିଂହଦ୍ୱାର ଦୋମହଲା ଅଟ୍ଟାଳିକା ମଧ୍ୟରେ ଯେଉଁ ମଣିସିଂହାସନ ଥିଲା ସେଥିରେ ପ୍ରସନ୍ନ ଚିତ୍ତରେ ବସି ମନ୍ତ୍ରୀଙ୍କ ଏହି କଥା କହିଲେ—ରୁକ୍ମଣୀ ଚଣ୍ଡୀଙ୍କ ଦର୍ଶନକୁ ଯିବା ବିଷୟର ସଙ୍କଳ୍ପରେ ଶୀଘ୍ର ମନରୂପକ ହଂସକୁ ବିଳସାଅ । ଯେମନ୍ତ ଯେମା ବାଆଁ ମଙ୍ଗଳାକୁ ବିଜେ ହେବେ ତୁରନ୍ତ ତା ସଜାଳ କର ।

ଶବ୍ଦାର୍ଥ । ବଦର୍ଭ-ପତି—ଭୀଷ୍ମକ । ଝଟତି—ଶୀଘ୍ର । ମାତ—ପ୍ରାତଃକୃତ୍ୟ । ମୃଗପତି—ସିଂହ । ଜଗତି—ଉଚ୍ଚ ଅଟ୍ଟାଳିକା, ଦୋମହଲା । ରୁଦ୍ରାଣୀ—ଚଣ୍ଡୀ । ମାନସ—ସଙ୍କଳ୍ପ । ଜବନେ—ଶୀଘ୍ରେ । ମାନସ-ହଂସ- ମନରୂପ ହଂସ । ବିଳସାଅ—କ୍ରୀଡ଼ା କରାଅ ।

**ନୃପତବରର ଏପରି ସଞ୍ଚାର**
**କରନ୍ତେ କର୍ଣ୍ଣେ ସଚବର**
**କୋଟି ଶଚୀବର ସମ୍ପତ୍ତି ସମ୍ଭାର**
**ତ୍ରୁଟିକେ ସର୍ଜ୍ଜିବା କାର୍ଯ୍ୟର**
**ମୁଖକୁ**
**ଅନାଇଁ ଦିଅନ୍ତେ ନେତ୍ରାନ୍ତେ**
**କଳ୍ପଦ୍ରୁମ କାମ— ଧେନୁ ଚନ୍ତାମଣି**
**ଭସାଇ ସେ ଭାଷା ଅମୃତେ । ୨୪ ।**

**ଅନ୍ୱୟ**—ସଚବର କର୍ଣ୍ଣେ ନୃପତବରର ଏପରି ସଞ୍ଚାର କରନ୍ତେ (ସେ) କୋଟି ଶଚୀବର ସମ୍ପତ୍ତି ସମ୍ଭାର ତ୍ରୁଟି କେ ସର୍ଜ୍ଜିବା କାର୍ଯ୍ୟରେ (କପର ପାରଙ୍ଗମ, ସେଥିପାଇଁ ରାଜାଙ୍କ) ମୁଖକୁ ନେତ୍ରାନ୍ତେ ଅନାଇଁ ଦିଅନ୍ତେ ସେ ଭାଷା ଅମୃତେ କଳ୍ପଦ୍ରୁମ, କାମଧେନୁ, ଚନ୍ତାମଣି (ଙ୍କୁ) ଭସାଇ (ଦେଲା) ।

**କଥା**—ମନ୍ତ୍ରୀ କାନରେ ନୃପତଶ୍ରେଷ୍ଠ ଖ୍ରୀଷ୍ଟକଙ୍କର ବାଣୀ ବିସ୍ତାରିତ ହୁଅନ୍ତେ ସେ କୋଟି ଇନ୍ଦ୍ର ସମ୍ପତ୍ତିସମ୍ଭାର କ୍ଷଣକେ ସୃଷ୍ଟି କରିବାରେ କପରି ପାରଙ୍ଗମ, ସେଥିଲାଗି ଆଖି କଣରେ ଅନାଇ ଭାଷା ଅମୃତରେ କଳ୍ପଦ୍ରୁମ, କାମଧେନୁ, ଚନ୍ତାମଣି (ଯେଉଁଠୁ ଇଚ୍ଛାମାନେ ଯାବତୀୟ ଫଳଲାଭ ହୁଏ) ସେଥିରେ ଅବା ତାଙ୍କୁ ଭସାଇଦେଲା ।

---

ଶବ୍ଦାର୍ଥ । ସଞ୍ଚାର—ସ୍ଫୁରିତ, ବିସ୍ତାର । ଶଚୀବର—ଇନ୍ଦ୍ର । ତ୍ରୁଟି—କ୍ଷଣ । ନେତ୍ରାନ୍ତେ—ଚକ୍ଷୁର ସ୍ପନ୍ଦନରେ । କଳ୍ପଦ୍ରୁମ—ଯେଉଁ ସ୍ୱର୍ଗୀୟ ଦ୍ରୁମ ତଳେ ଭାବନା ଅନୁସାରେ ଫଳ ମିଳେ । କାମଧେନୁ—ସ୍ୱର୍ଗୀୟ ଗାଭୀ, ଯେ ମନ ଅନୁସାରେ ଫଳଦାନ କରେ । ଚନ୍ତାମଣି—ଯାହାଙ୍କ କୃପାରେ ଚନ୍ତାମାତ୍ରେ ସମସ୍ତ ମିଳେ ।

**ଦମାମି ଧଂସା ନାଗର୍‌କୁ ମେଳକ**
**ମାତଙ୍ଗ ବାଜୀରେ ବାଜିଲେ**
**ପ୍ରତିପାଦ୍ୟ ଯେତେ ବାଦ୍ୟ ସମୁଦୟ**
**ନାନା ବର୍ଣ୍ଣିକରେ ରାଜିଲେ**
**କମ୍ପନ**
**ଗିରିଏ ହୋଇଲେ ତପନ**
**କଲେ ତପୀ ନାମେ ରହିଛି ଯେ ରୂପୀ**
**ସେ ଭାଗ୍ୟ ନୋହିଲେ ପତନ । ୨୫ ।**

**ଅନ୍ୱୟ**—ମେଳକ ଦମାମି ଧଂସା, ନାଗର୍‌କୁ ମାତଙ୍ଗ ବାଜୀରେ ବାଜିଲେ । ପ୍ରତିପାଦ୍ୟ ଯେତେ ବାଦ୍ୟ ସମୁଦୟ ନାନା ବର୍ଣ୍ଣିକରେ ରାଜିଲେ, ଗିରିଏ କମ୍ପନ ହୋଇଲେ । ତପୀ ନାମେ ଯେ ରୂପୀ ରହିଛି ତପନ (ତା) କଲେ । (ତେଣୁ) ସେ ଭାଗ୍ୟ ପତନ ନୋହିଲେ ।

**କଥା**—ଏକା ସାଙ୍ଗରେ ଦମାଲୁ, ବଡ଼କାଠ, ଡିଣ୍ଡିମମାନ ହାତୀ ଆଉ ଘୋଡ଼ା ପିଠିରେ ରହି ବାଜିଉଠିଲା । ନିର୍ଦ୍ଦିଷ୍ଟ ଯେତେ ବାଦ୍ୟସବୁ ନାନା ଜାତିର ଲୋକେ ବଜାଇଲେ । ଏହି ବାଦ୍ୟର ଉଚ୍ଚଧ୍ୱନିରେ ପର୍ବତମାନେ କମ୍ପିଉଠିଲେ । ଏପରି ହେଲା ଯେ ସୂର୍ଯ୍ୟଙ୍କର ଏକ ନାମ ତପୀ ଥିବାରୁ ସେ ତପଃପରାୟଣ ମୁନିମାନଙ୍କ ପରି ରୂପ ଧାରଣ କରି ଦୃଢ଼ ରହିବାରୁ ସେ ଭାଗ୍ୟରୁ ଖସି ପଡ଼ିଲେ ନାହିଁ । ତାଙ୍କର ତପୀ ନାମ ଅନ୍ୟର ରୂପଧାରୀ ହେତୁ ଏକ୍ଷେତ୍ରରେ ସାର୍ଥକ ହେଲା ।

---

ଶବ୍ଦାର୍ଥ । ମେଳକ—ସଙ୍ଗୀ । ପ୍ରତିପାଦ୍ୟ—ନିର୍ଦ୍ଦିଷ୍ଟ, ଅବଧାରିତ । ରୂପୀ—ଅନ୍ୟର ରୂପଧାରୀ । ଦମାମି—ଦମାଲୁ, ବଡ଼ ନାଗରା ଦମଦମ ଶବ୍ଦର ବାଦ୍ୟ । ଧଂସା—ଧସା, ବଡ଼କାଠ । ନାଗର୍—ଡିଣ୍ଡିମ । ମାତଙ୍ଗ—ହସ୍ତୀ । ବାଜୀ—ଘୋଡ଼ା । ନାନାବର୍ଣ୍ଣି—ନାନାଜାତି । କରେ—ହସ୍ତରେ । ରାଜିଲେ—ଶୋଭା ପାଇଲେ ।

**ସହସ୍ର ସଂଖ୍ୟା ବଇରେଖ ଉଡ଼ିଲେ**
**ପ୍ରଚଳିତ ହେଲା ପବନ**
**ଶ୍ୱେତଦ୍ୱୀପେ ହରି— ତଳ୍ପ ସର୍ପାଧିପ**
**ମୁଖ ବିସ୍ତାରି କଲେ ପାନ**
**ଏ ଭୟେ**
**ବଡ଼ବାଗ୍ନି କି ଏ ବଡ଼ ବା**
**ଗ୍ରସ୍ତି ଯିବ ଯେବେ ଅଗସ୍ତି ପ୍ରଶସ୍ତି**
**ବିସ୍ତାର କରିଥାଇ ଅବା । ୨୭ ।**

**ଅନ୍ୱୟ**—ସହସ୍ର ସଂଖ୍ୟା ବଇରେଖ ଉଡ଼ିଲେ । (ତେଣୁ) ପବନ ପ୍ରଚଳିତ ହେଲା । ଶ୍ୱେତଦ୍ୱୀପେ ହରିତଳ୍ପ ସର୍ପାଧିପ ମୁଖ ବିସ୍ତାରି (ତା) ପାନ କଲେ । ବଡ଼ବାଗ୍ନି କି ଏ ବା ବଡ଼ । ଯେବେ ଅଗସ୍ତି ପ୍ରଶସ୍ତି ଅବା ବିସ୍ତାର କରିଥାଇ ଏ ଭୟେ ଗ୍ରସ୍ତିଯିବ (ବଗୃର ହେଲା) ।

**କଥା**—ହଜାର ସଂଖ୍ୟାରେ ବଡ଼ ବଡ଼ ପତାକା ଉଡ଼ିଲେ । ତେଣୁ ପବନ ବହିଲା । ଫଳରେ ବୈକୁଣ୍ଠରେ ବିଷ୍ଣୁଙ୍କର ଶଯ୍ୟା ଅନନ୍ତ ସହସ୍ର ମୁଖ ବିସ୍ତାରି ଅତ୍ୟଧିକ ପବନ ବହିବାରୁ ପାନ କଲେ । ମନେହେଲା ଏ ବାତ୍ୟା ସାମୁଦ୍ରିକ ଅଗ୍ନିର ପ୍ରତାପରୁ ଅବା ଅଧିକ ପ୍ରତାପୀ । ଯେବେ ଅଗସ୍ତି-ଋଷିଙ୍କ ପ୍ରଶସ୍ତି ଅନୁସାରେ ଶୋଷଣ ବିଧିରେ ଏ ପବନ ବିସ୍ତାରିତ ହୁଏ, ଜଳାୟୁ ଏ ଭୟରେ କବଳିତ ହୋଇଯିବ ବୋଲି ବଗୃର ହେଲା ।

---

ଶବ୍ଦାର୍ଥ । ବଇରେଖ—ବଡ଼ପତାକା । ପ୍ରଚଳିତ—ଚଳମାନ । ଶ୍ୱେତଦ୍ୱୀପ—ବୈକୁଣ୍ଠ । ହରିତଳ୍ପ—ବିଷ୍ଣୁଶଯ୍ୟା । ଗ୍ରସ୍ତି—କବଳିତ । ସର୍ପାଧିପ—ଅନନ୍ତ । ବଡ଼ବାଗ୍ନି—ସମୁଦ୍ରାଗ୍ନି । ବା—ଅବା । ଅଗସ୍ତି ପ୍ରଶସ୍ତି—ଅଗସ୍ତି ସମସ୍ତ ସମୁଦ୍ରକୁ ଶୋଷି ନେଇଥିଲେ ( ସେହି ଏ ପବନ ଶୋଷି ନେବା କଥା) ।

**ମର୍ଦ୍ଦଳ, ମନ୍ଦିର, ସୀତାର, ତମ୍ବୁର**
**ଅମୃତୀ, ସାରଦା, ଶାରଙ୍ଗୀ**
**ସଂଗୀତ କେଳ କଉତୁକେ ନର୍ତ୍ତନେ**
**ରଙ୍ଗୀ ହୋଇଥିଲ ନତାଙ୍ଗୀ**
**ଲୋଚନ**
**ଚଯ୍ଯୁ ଜୟଲକ୍ଷ୍ମୀ ଭ୍ରମଣ**
**ଚାତୁର୍ଯ୍ୟ ରାଜ୍ୟ ଅଇଶ୍ୱର୍ଯ୍ୟ ଚଉର୍ଯ୍ୟେ**
**ଆଚାର୍ଯ୍ୟ ହୋଇଲେ ଆପଣ । ୨୭ ।**

**ଅନ୍ୱୟ**—ମର୍ଦ୍ଦଳ, ମନ୍ଦିର, ସୀତାର, ତମ୍ବୁର, ଅମୃତୀ, ସାରଦା, ଶାରଙ୍ଗୀ (ବାଜନ୍ତି) ସଙ୍ଗୀତ କେଳ କଉତୁକେ ରଙ୍ଗୀ ନତାଙ୍ଗୀ ଲୋଚନଚଯ୍ଯୁ ଜୟଲକ୍ଷ୍ମୀ ଭ୍ରମଣ (ପ୍ରାପ୍ତ) ହୋଇଥିଲ । ଚାତୁର୍ଯ୍ୟ ରାଜ୍ୟ-ଅଇଶ୍ୱର୍ଯ୍ୟ ଚଉର୍ଯ୍ୟ ଆପଣ ଆଚାର୍ଯ୍ୟ ହୋଇଲେ ।

**କଥା**—ମାଦଳ, ମନ୍ଦିର, ସେତାର, ତମ୍ବୁର, ଅମୃତୀ, ସାରଦା, ଶାରଙ୍ଗୀ ଆଦି ବାଦ୍ୟ ବାଜଉଥିଲ । ସଙ୍ଗୀତ କେଳ କୌତୁକରେ ନୃତ୍ୟ ଏବଂ ଅଭିନୟକାରିଣୀ ଯେଉଁ ପୟୋଧରଭାର ନତାଙ୍ଗୀ ଯୁବତୀବୃନ୍ଦ ଲୋଚନମାନ ଡାକୁଥିଲେ, ତାହା ଜୟଲକ୍ଷ୍ମୀଙ୍କ ଭ୍ରମଣ ପ୍ରାପ୍ତ ଚଞ୍ଚଳ ଥିଲ । ଚତୁରତା ରୂପକ ରାଜ୍ୟଐଶ୍ୱର୍ଯ୍ୟ ସମ୍ପତ୍ତି ଚୋର କରିବାରେ ସେମାନେ ଯେମନ୍ତ କର୍ତ୍ତା ହୋଇଥିଲେ ।

**ଆଲୋଚନା**—ଏପରି ଚଞ୍ଚଳ ଆଖି ନଚାଇ ନୃତ୍ୟ ଅଭିନୟ କଲେ ଯେ ଯେତେ ଚତୁରତା ସବୁ ତାଙ୍କଠି ଫୁଟିଥିଲ । ସେ ଦର୍ଶକ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ଭୁଲାଇ ପାରୁଥିଲେ ।

---

ଶବ୍ଦାର୍ଥ । **ମର୍ଦ୍ଦଳ**—ମାଦଳ । **ମନ୍ଦିର**—କାଠନିର୍ମିତ ବାଦ୍ୟବିଶେଷ । **ସୀତାର**—ସେତାର, ଲାଉତୁମ୍ବରେ ପଞ୍ଚତାରବଦ୍ଧ ବାଦ୍ୟ । **ତମ୍ବୁର**—ତୁମ୍ବୁର, ତନ୍ତ୍ରୀତାରବିଶିଷ୍ଟ ବାଦ୍ୟବିଶେଷ । **ଅମୃତୀ**—ସ୍ୱରବାଦ୍ୟବିଶେଷ । **ସାରଦା**—ବେହେଲା ପରି ତନ୍ତ୍ରୀ ଯନ୍ତ୍ରବିଶେଷ । **ଶାରଙ୍ଗୀ**—ବାଦ୍ୟ ଯନ୍ତ୍ରବିଶେଷ । **ରଙ୍ଗୀ**—ଅଭିନୟକାରୀ । **ନତାଙ୍ଗୀ**—ସ୍ତନଭାରନତା ଯୁବତୀ । **ଆପଣେ**—ସ୍ୱୟଂ । **ଆଚାର୍ଯ୍ୟ**—କର୍ତ୍ତା । **ଚଉର୍ଯ୍ୟ**—ଚୌର୍ଯ୍ୟ, ଚୋର ।

**ଥାଳକ ଥାଳ ମାଳୀ ଆଳ କାଳୀଙ୍କ**
**ମାଜଣାକୁ ଯାହା ବହିଲେ**
**ଝଳ ଶିଳୀମୁଖ ଭଳ ଶତମଖ-**
**ମୁଖ ହେବ ତାହା ଗ୍ରହିଁଲେ**
**ଅଛୁ ଏ**
**ଦ୍ରବ୍ୟମାନ ମାନବପୁରେ**
**କ ଛାର ମୋ ଭାଗ୍ୟ ଇଚ୍ଛି ଆଚ୍ଛାଦନେ**
**ଆଚ୍ଛାଦିତ ହେଲେ ବପୁରେ । ୨୮ ।**

**ଅନ୍ୱୟ**—ମାଳୀ-ଆଳ କାଳୀଙ୍କ ମାଜଣାକୁ ଯାହା ଥାଳକ ଥାଳ ବହିଲେ ତାହା ଗ୍ରହିଁଲେ ଶତମଖ-ମୁଖ ଶିଳୀମୁଖ ଝଳ ଭଳ ହେବ । ଏ ଦ୍ରବ୍ୟମାନ ମାନବପୁରେ ଅଛୁ । ମୋ ଭାଗ୍ୟ କ ଛାର ଇଚ୍ଛି ବପୁରେ ଆଚ୍ଛାଦନେ ଆଚ୍ଛାଦିତ ହେଲେ ।

**କଥା**—ମାଳୀମାନେ ଚଣ୍ଡୀଙ୍କ ମାଜଣା ଲାଗି ରଜାଘରୁ ଥାଳକ ଥାଳ ଯେଉଁ ରତ୍ନପୂରିତ ପଦାର୍ଥମାନ ବୋହି ନେଇଗଲେ, ତାହା ଗ୍ରହିଁଲେ ଇନ୍ଦ୍ରଙ୍କ ମୁହଁ ଭଅଁର ରଙ୍ଗ ପରି କଳା ହୋଇଯିବ । ଏ ଦ୍ରବ୍ୟମାନ ମରତ୍ୟଲୋକରେ ଅଛୁ । ହାୟ, ମୋ ଭାଗ୍ୟ କ ଛାର ନୁହେଁ ! ଏହା ଭାବି ସେ ସ୍ୱ ଅଙ୍ଗକୁ ବସ୍ତ୍ରଦ୍ୱାରା ଆଚ୍ଛାଦିତ କରିଦେଲେ ।

**ଆଲୋଚନା**—ବିଦର୍ଭ ରାଜ୍ୟର ସମ୍ପଦ ସେତେବେଳେ ଇନ୍ଦ୍ର ସମ୍ପତ୍ତି ଠାରୁ ମଧ୍ୟ ଅଧିକ ଥିଲା ।

---

ଶବ୍ଦାର୍ଥ । ଆଳ—ସମୂହ । କାଳୀ—ପାର୍ବତୀ, ଚଣ୍ଡୀ । ଶତମଖ—ଇନ୍ଦ୍ର । ମଖ—କ୍ରତୁ, ଯଜ୍ଞ । ଶିଳୀମୁଖ—ଭ୍ରମର । ଝଳ—ବର୍ଣ୍ଣ । ଇଚ୍ଛି—ଭାବି । ବପୁରେ—ଦେହକୁ । ଆଚ୍ଛାଦନେ—ବସ୍ତ୍ରଦ୍ୱାରା । ଆଚ୍ଛାଦିତ ହେଲେ—ଘୋଡ଼ାଇଲେ ।

ଅବରୋଧ-ଦ୍ୱାରେ ମିଳି ଦଇବଜ୍ଞ
ଚାଳି ଦ୍ୱାରୀ ମୁଖେ ଜୁହାର
ଭଣିଲା ବାଣୀକ ଜଣାଅ ରାଣୀକ
ଶୁଭ ଲଗ୍ନ କଲା ବହାର
ନରେନ୍ଦ୍ର-
ନନ୍ଦନାସମାଜ-ଶିଖାକୁ
ବାହାର କରାଅ ନିହାରକରାର୍ଦ୍ଧ-
ମୂର୍ଦ୍ଧାଙ୍କ ଅର୍ଦ୍ଧାଙ୍ଗୀ ଦେଖାକୁ । ୨୯ ।

**ଅନ୍ୱୟ**—ଦଇବଜ୍ଞ ଅବରୋଧ-ଦ୍ୱାରେ ମିଳି ଦ୍ୱାରୀ ମୁଖେ ଜୁହାର ଚାଳି ବାଣୀକ ଭଣିଲା—ରାଣୀଙ୍କି ଜଣାଅ, ଶୁଭ ଲଗ୍ନ ବହାର କଲା । ନରେନ୍ଦ୍ର ନନ୍ଦନା-ସମାଜ-ଶିଖାକୁ ନିହାରକରାର୍ଦ୍ଧ-ମୂର୍ଦ୍ଧାଙ୍କ ଅର୍ଦ୍ଧାଙ୍ଗୀ ଦେଖାକୁ ବାହାର କରାଅ ।

**କଥା**—ରାଜଜ୍ୟୋତିଷ ଅନ୍ତଃପୁର ଦ୍ୱାରଠାରେ ପ୍ରବେଶ କରି ସେଠାରେ ଥିବା ନାରୀ ଦ୍ୱାରୀ ମୁଖରେ ରାଣୀଙ୍କ ନିକଟକୁ ପ୍ରଣତି ପଠାଇ ଏହି କଥା କହିଲା—ରାଣୀଙ୍କୁ ଜଣାଅ, ଶୁଭଲଗ୍ନ ଆସିଗଲା । ରାଜକନ୍ୟାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଜେମା ରୁକ୍ମଣୀଙ୍କୁ ଚନ୍ଦ୍ରଶେଖରଙ୍କ ଜାୟା ଚଣ୍ଡୀ-ପାର୍ବତୀଙ୍କ ଦର୍ଶନ ଲାଗି ବାହାର କରାଅ ।

---

**ଶବ୍ଦାର୍ଥ** । ଦଇବଜ୍ଞ—ଦୈବଜ୍ଞ, ନାହାକ, ଜ୍ୟୋତିଷ । ଅବରୋଧ—ଅନ୍ତଃପୁର । ଜୁହାର—ପ୍ରଣତି । ଚାଳି—ପଠାଇ । ଭଣିଲା—କହିଲା । ବହାର—ଛାଡ଼ା, ଉପସ୍ଥିତ । ନରେନ୍ଦ୍ର-ନନ୍ଦନା-ସମାଜ-ଶିଖା—ରାଜକୁମାରୀମାନଙ୍କ ସମାଜରେ ଶୀର୍ଷୋତ୍ତମା । ନିହାରକର—ହିମକର, ଚନ୍ଦ୍ରମା । ନିହାରକରାର୍ଦ୍ଧ—ଚନ୍ଦ୍ରକଳା । ମୂର୍ଦ୍ଧାଙ୍କ—ଯାହାଙ୍କ ମସ୍ତକରେ । ଅର୍ଦ୍ଧାଙ୍ଗୀ—ଜାୟା । ନିହାରକରାର୍ଦ୍ଧମୂର୍ଦ୍ଧାଙ୍କ ଅର୍ଦ୍ଧାଙ୍ଗୀ—ଚଣ୍ଡୀ, ପାର୍ବତୀ । ଦେଖାକୁ—ଦର୍ଶନକୁ ।

ଶୁଣି ଭୂପତି- ପୁରନ୍ଧ୍ରୀ ସଇନ୍ଧ୍ରୀକି
ପୁଚ୍ଛେ ସାରିଛ କେମାବେଶ
ସେ ଭାଷେ ଅଜ୍ଞାନ ବତ ବାଙ୍କାବ୍ରତି-
ମଣି ଆଜ୍ଞା କଲ କି ଭାଷ
ପଦ୍ମ୍ନୀ
ମଣିର ସୁବାସ କରଣ
ହେବାକୁ ଆକଳ୍ପ କଳ୍ପି ନାହିଁ କଳ୍ପ
ବେଦକଳ୍ପ-ଆୟୁଧାରଣ ।୩୦।

**ଅନ୍ୱୟ**—(ଏ କଥା) ଭୂପତି-ପୁରନ୍ଧ୍ରୀ ଶୁଣି ସଇନ୍ଧ୍ରୀକି ପୁଚ୍ଛେ—କେମାବେଶ ସାରିଛ ? ସେ ଭାଷେ (ହେ) ବାଙ୍କାବ୍ରତମଣି ! ଅଜ୍ଞାନବତ କି ଭାଷ ଆଜ୍ଞା କଲ ? (କାରଣ) ପଦ୍ମ୍ନୀ (ଓ) ମଣିର (ଭୂଷଣ) ସୁବାସ (ଏବଂ) କରଣ (ଅଟେ) । ଆକଳ୍ପ ହେବାକୁ ବେଦକଳ୍ପ-ଅୟୁ ଧାରଣ କଳ୍ପି ନାହିଁ । (ଏ କଥା) କଳ୍ପ ।

**କଥା**—ଏ କଥା ସୌଭାଗ୍ୟବତୀ ରାଣୀ ଶୁଣି ଶିଂଗାରୀକୁ ପଚାରିଲେ—କେମା ବେଶ ସାରିଛ ତ ? ସେ କହିଲା-ହେ ଶ୍ରେଷ୍ଠ ଜ୍ଞାନବତୀ ! ଅଜ୍ଞାନ ନାରୀ ପରି ଏ କି କଥା ଆଜ୍ଞା କରୁଛ ? ପଦ୍ମ୍ନୀ ଓ ମଣିର ସ୍ୱତନ୍ତ୍ର ତ କିଛି ଭୂଷଣ ନାହିଁ । ତାଙ୍କର ଭୂଷଣ ହେଲା ସୁବାସ ଓ କିରଣ । ସେ ଦୁହିଁଙ୍କର ଅଳଙ୍କାର ଲାଗି ଆଉ କିଛି ବିଧାତା ଉଦ୍ଭାବନ କରି ନାହିଁ । ଏହି କଥା ହିଁ କଳ୍ପନା କର ।

ଶବ୍ଦାର୍ଥ । କଳ୍ପ—ବ୍ରହ୍ମାଙ୍କ ଦିବାଭାଗ । ବେଦକଳ୍ପ—ବ୍ରହ୍ମାଙ୍କ ଦିବାଗଣ । ବେଦକଳ୍ପ ଆୟୁଧାରଣ—ବିଧାତା । ପୁରନ୍ଧ୍ରୀ—ପତି ପୁତ୍ର ବତୀ ଥିବା ନାରୀ । ସଇନ୍ଧ୍ରୀ—ଅନ୍ତଃପୁରରେ ବେଶକାରିଣୀ, ଶିଂଗାରୀ । ବାଙ୍କାବ୍ରତ-ମଣି—ଙ୍କେତାବ୍ରତଧାରିଣୀମାନଙ୍କ ମଧ୍ୟରେ ମଣିସ୍ୱରୂପା । ଆକଳ୍ପ—ଅଳଙ୍କାର । କଳ୍ପି—ଉଦ୍ଭାବନ । କଳ୍ପ—କଳ୍ପନା ।

ନମ୍ର କରେ ଛତ୍ର ଛାୟା ଯାର କାୟା
ଦୟା ବର୍ଜ୍ଜି ତାକୁ ଦଣ୍ଡିଲୁ
ଅଳକା-ଭଣ୍ଡାର ଭଣ୍ଡୁରୁ କରିବା
ଅଳଙ୍କାରେ ତାକୁ ମଣ୍ଡିଲୁ
ଗ୍ରାମାନ୍ତ—
ଦେବୀ ପର୍ଯ୍ୟନ୍ତ କେହ୍ନେ ଯିବେ
ନୁହ ଆନ୍ଦୋଳ ଏମାନ ହାନ୍ଦୋଳାଏ
ଭଣ୍ଡାରୁ ବାଛିଆଣ ତେବେ ।୩୧।

**ଅନ୍ୱୟ**—(ସେ ପୁଣି କହିଲ) ରେ ବିଧାତା ! ଛତ୍ର ଛାୟା ଯାର କାୟା ନମ୍ର କରେ ଦୟା, ବର୍ଜି (ଆଜ) ତାକୁ ଦଣ୍ଡିଲୁ । ଅଳକା-ଭଣ୍ଡାର ଭଣ୍ଡୁରୁ କରିବା ଅଳଙ୍କାରେ ତାକୁ ମଣ୍ଡିଲୁ । ଗ୍ରାମାନ୍ତ—ଦେବୀପର୍ଯ୍ୟନ୍ତ କେହ୍ନେ (ସେ) ଯିବେ ? ଏମାନ ଆନ୍ଦୋଳ ନୁହ । ତେବେ ଭଣ୍ଡାରୁ ହାନ୍ଦୋଳାଏ ବାଛିଆଣ ।

**କଥା**—ଶିଂଗାରି ପୁଣି କହିଲା—ରେ ବିଧାତା ! ଛତ୍ର ଛାଇ ଯା ଦେହରେ ପଡ଼ିଲେ ଲାଳିଯାଏ ସେହି ଏକାନ୍ତ କୋମଳାଙ୍ଗୀକୁ ଆଜ ଦୟା ଛାଡ଼ି କ ଦଣ୍ଡରେ ପକାଇ ନାହୁଁ ? ନମିତ୍ତ ଯେତେବେଳେ, ଅଳଙ୍କାର ନଷ୍ଟଯୁ ମଣ୍ଡି ହେବେ । କନ୍ତୁ ଶିରୀଷ ସୁକୋମଳ ତନୁ ତା ବହିବ କପରି ? ପୁଣି କୁବେରଭଣ୍ଡାର ତୁଚ୍ଛ କରିବା ଅଳଙ୍କାର-ରାଶିରେ ସେ ଅଙ୍ଗକୁ ମଣ୍ଡି ଦେଇଛୁ । ହାୟ ! ଗ୍ରାମମୁଣ୍ଡ—ଦେବୀ ମନ୍ଦିର ଯାଏ କପରି ସେ ଚାଲିକରି ଯିବେ ? ଦେବଦର୍ଶନକୁ ତ ଚାଲିକରି ଯିବେ ? ଦେବଦର୍ଶନକୁ ତ ଚାଲିକରି ଯିବା ସାଧାରଣ ବିଧି ।

ରାଣୀ ଏହା ଶୁଣି କହିଲେ—ଏମାନ କହି ତର୍କ ଏତେ କର ନାହିଁ । ଜେମା ମୋର ଚାଲି ଯାଇପାରିବ ନାହିଁ । ତା ଲଗି ଭଣ୍ଡାରଘରୁ ଉତ୍ତମ ସୁଆରିଟିଏ ବାଛି ନେଇ ଆସ ।

ଶବ୍ଦାର୍ଥ । ଛତ୍ର—ଛତ । ନମ୍ର-କରେ—ନୁଆଇଁ ହୁଏ, ଏତେ କୋମଳ ଯେ ଛାଇରେ ତା ନଇଁପଡ଼େ । ଦଣ୍ଡିଲୁ—ଦଣ୍ଡ ଦେଲୁ । ଅଳକା—କୁବେର । ଭଣ୍ଡୁରୁ—ତୁଚ୍ଛ । ଆନ୍ଦୋଳ—ଆନ୍ଦୋଳନ, ତର୍କ, ବାଦାନୁବାଦ । ଗ୍ରାମାନ୍ତ—ଗ୍ରାମମୁଣ୍ଡ । ଗ୍ରାମାନ୍ତ ଦେବୀ—ଗ୍ରାମ ଶେଷସ୍ଥ ମଙ୍ଗଳା (ଚଣ୍ଡୀ) ପୀଠ । ଭଣ୍ଡାରୁ—ଭଣ୍ଡାର ଘରୁ । ହାନ୍ଦୋଳା—ସବାରି ।

ରାଣୀ ଦେଉ ସୂଚ ଶୁଣି କୋଷ କୁଂଚ
ଧାରିଣୀ ଧାଇଁ ଅଣାଇଲେ
ପାଣିକର ହୀର ମାଣିକ୍ୟରେ ତୋର
ଭରଭର ଯେ ହୋଇଥିଲେ
କର୍ପୂର-
ଧୂଳପୂର୍ଣ୍ଣ ଚୂଳୀ ମୁଚୁଳ
ମେଚକ ନଗ୍ରୋଳ ଘୋଡ଼ଣୀକ ମେଳ
କରି ରୁଚିର କଲେ ବାଳୀ । ୩୨ ।

**ଅନ୍ୱୟ**—ରାଣୀ ସୂଚ ଦେଉଁ (ତା) ଶୁଣି କୋଷକୁଞ୍ଚଧାରିଣୀ ତୋର ହୀର ମାଣିକ୍ୟରେ ଭରଭର ହୋଇଥିଲେ ଯେ ପାଳଙ୍କିରେ ଥାଇଁ ଅଣାଇଲେ । କର୍ପୂର ଧୂଳପୂର୍ଣ୍ଣ ଚୂଳୀ (ଓ) ମୁଚୁଳ (ତହିଁ) (ବୋଇଲେ) (ଏବଂ) ମେଚକ ନଗ୍ରୋଳ ଘୋଡ଼ଣୀକ ମେଳକରି ବାଳୀ ରୁଚିର କଲେ ।

**କଥା**--ରାଣୀଙ୍କ ସୂଚନା ପାଇବା ମାତ୍ରେ 'ଗନ୍ଧାଘରଆଣୀ' ଉଜ୍ଜ୍ୱଳ ହୀର ଓ ମାଣିକ୍ୟରେ ସର୍ବାଙ୍ଗ ମଣ୍ଡି ହୋଇଥିଲେ ଯେ ପାଲଙ୍କି ତାହା ଧାଇଁଯାଇ ଅଣାଇଲେ । କର୍ପୂର ଧୂଳରେ ପୂର୍ଣ୍ଣ ଥିବା ଚକ୍‌କଣ ଶେଯ ଓ ମୁଚୁଳା ସେଥିରେ ବିଛାଇଲେ ଏବଂ ସୁନ୍ଦର ନୀଳ ବର୍ଣ୍ଣର 'ଧୂଳଖାଇ' ଘୋଡ଼ଣୀକ ମିଳାଇ କରି ପରଟିଏ ସଜାଇ ସୁନ୍ଦର କରିଦେଲେ ।

ଶବ୍ଦାର୍ଥ । ସୂଚ—ସୂଚନା, ଜ୍ଞାପନ । କୋଷ—ଗନ୍ଧାଘର । କୁଞ୍ଚ—ଗୃହ । କୋଷ କୁଞ୍ଚ ଧାରିଣୀ—ସରଣି, ଗନ୍ଧାଘରଆଣୀ । ତୋର—ଉତ୍କଟ, ଚକଚକ୍ । ଭରଭର—ମଣ୍ଡିତ, ପରିପୂର୍ଣ୍ଣ । ଚୂଳୀ—ଶେଯ । ମୁଚୁଳ—ତକିଆ, ଗୋଲମାଣ୍ଡି । ମେଚକ—ନୀଳବର୍ଣ୍ଣ, ମୟୂର ଚନ୍ଦ୍ରିକା ବର୍ଣ୍ଣ । ନଗ୍ରୋଳ—ପଟାଟପ ବା ଧୂଳଖାଇ, ଏହା ରାଜମାତା, ରାଜକୁମାରୀ, ରାଣୀ, ରାଜା, ଯୁବରାଜ, ଯୁବରାଣୀ, ରାଜଗୁରୁ ଦଂପତି ଏହି ଆଠଜଣ ବ୍ୟତୀତ ଅନ୍ୟ କେହି ବ୍ୟବହାର କରୁ ନ ଥିଲେ । ପୁରୁଷମାନେ ଶୁକ୍ଳ, ନାରୀମାନେ ନୀଳବର୍ଣ୍ଣର ବ୍ୟବହାର କରୁଥିଲେ ।

**ତାନମାନେ ଗାନ କରନ୍ତି ମଙ୍ଗଳ**
**କାନ ପାନ କଲେ ଅମୃତ**
**କାନନପ୍ରିୟ-ଭ୍ର— ଷୀକ ବସାଇଲେ**
**ଆନନ ବାଦ୍ୟ କରି ଜାତ**
**ସେ ଛବି**
**କବି ଚିତ୍ତେ କଲ୍ଲା ଏ ରୂଲି**
**ପତଙ୍ଗଜା ତୁଙ୍ଗ- ତରଙ୍ଗ ଗର୍ଭରେ**
**ଛପିଲ୍ଲା ପରି ପଦ୍ମକଳି । ୩୩ ।**

**ଅନ୍ୱୟ**—ତାନମାନେ ମଙ୍ଗଳଗାନ କରନ୍ତେ ଅମୃତ କାନ ପାନ କଲେ । (ତହୁଁ) କାନନପ୍ରିୟ-ଭ୍ରଷୀକ ଆନନ ବାଦ୍ୟ ଜାତକରି ବସାଇଲେ । ସେ ଛବି (ଦେଖି) କବି ଚିତ୍ତେ ଭାବନା କଲ୍ଲା—ଏ ରୂଲି ପତଙ୍ଗଜା-ତୁଙ୍ଗ ତରଙ୍ଗଗର୍ଭରେ ପଦ୍ମକଳି ପରି ଛପିଲ୍ଲା ।

**କଥା**—ଗାଆଣିଏ ତାନମାନରେ ମଙ୍ଗଳ ଗାନ କରନ୍ତେ, ଶ୍ରୋତାମାନେ ଅମୃତ ପାନକଲେ । ମଙ୍ଗଳ ଗାୟନ ଆରମ୍ଭ ହେବା ପରେ ଅଶ୍ରିରକୋକଳ-ଭାଷିଣୀ ଜେମାମଣି ରୁକ୍ମଣୀଙ୍କୁ ସମସ୍ତ ରମଣୀ ହୁଳହୁଳି ଦେଇ ସୁଶୋଭିତ ସୁଆସରେ ବସାଇଲେ । ସେହି ମନମୋହକର ଛବି ଦେଖି କବି ଚିତ୍ତରେ ଭାବନା କଲ୍ଲା—ଏହି ରୂଳିଦ୍ୱାରା ଜଣାଗଲ୍ଲା ଯେପରି ଯମୁନା ତୁଙ୍ଗ ତରଙ୍ଗ ଗର୍ଭରେ ପଦ୍ମକଳିକା ଅବା ଛପିଗଲ୍ଲା ।

**ଆଲୋଚନା**—କଳ କୋଳାହଳ ରୂପକ ତରଙ୍ଗ ମଧ୍ୟରେ ଧୀରଗମନା ରୁକ୍ମଣୀ ଢଳଢ଼ଳ ପଦ୍ମକଳିକା ପ୍ରାୟ ପାଲଙ୍କିରେ ବସି ଲୁଚିଗଲେ ।

---

ଶବ୍ଦାର୍ଥ । ତାନ—ମଧୁର ଧ୍ୱନି । ମାନ—ସଙ୍ଗୀତ ତାଳର ମୃଦୁ ବିରାମ । ମଙ୍ଗଳ—ଶୁଭ କାର୍ଯ୍ୟରେ ବୋଲାଯିବା ନାରୀ କଣ୍ଠରେ ମଙ୍ଗଳ ଗୀତ । କାନନପ୍ରିୟ—କୋକିଳ । ଆନନ ବାଦ୍ୟ—ହୁଳହୁଳି । ପତଙ୍ଗଜା—ସୂର୍ଯ୍ୟପୁତ୍ରୀ ଯମୁନା ।

**ଝୁଲ ଆଲଟ  ଫୁଲ ପଖା ଗୃମର**
**ଝରୀ ଧରା ହୋଇ ରହିଲେ**
**ରତ୍ନ ଧୂପ କାଠି  ଅନ୍ତସ୍ଥ ଅନଳେ**
**ଯତ୍ନେ ମଳୟଜ ବହିଲେ**
**ସଧବା**
**ଦ୍ୱିଜ-ନାପିତ-ମନୋହାରୀ**
**ଆଗରେ ଦଧି-  ଶାକର ପୂର୍ଣ୍ଣକୁମ୍ଭ**
**କରେ ଶିରେ ଧରି ବାହାରି । ୩୪ ।**

**ଅନ୍ୱୟ**—(ସଖୀଏ) ଝୁଲ, ଆଲଟ, ଫୁଲପଖା, ଗୃମର, ଝରୀ ଧରାହୋଇ (ସୁସଜ୍ଜିତ) ରହିଲେ । ରତ୍ନ ଧୂପ କାଠି ଅନ୍ତସ୍ଥ ଅନଳେ ଯତ୍ନେ ମଳୟଜ ବହିଲେ । ସଧବା ଦ୍ୱିଜ (ଓ) ନାପିତ ମନୋହାରୀ, ଆଗରେ ଦଧିଶାକର (ଏବଂ) ପୂର୍ଣ୍ଣକୁମ୍ଭ କରେ (ଓ) ଶିରେ ଧରି ବାହାରି(ଲେ) ।

**କଥା**—ସଖୀମାନେ ମୟୂର, ଆଲଟ, ଫୁଲପଙ୍ଖା, ଚଅଁର ଏବଂ ଅତରଦାନୀ ଧରିଲେ । ରତ୍ନନିର୍ମିତ ଧୂପଦାନୀ ମଧ୍ୟସ୍ଥ ଅଗ୍ନିରେ ଅତି ଯତ୍ନରେ ଅଗୁରୁ ଚନ୍ଦନ ଗୁଣ୍ଡ ପକାଇଲେ । ସଧବା ଦ୍ୱିଜ ମନୋହାରୀ ବ୍ରାହ୍ମଣୀ ଦଧିଶାକର ହାତରେ ଧରି ଏବଂ ନାପିତ ମନୋହାରିଣୀ ଭଣ୍ଡାରୁଣୀ ପୂର୍ଣ୍ଣକୁମ୍ଭ ମୁଣ୍ଡରେ ମୁଣ୍ଡାଇ ଧରି ବାହାରିଲେ ।

ଶବ୍ଦାର୍ଥ । ଝୁଲ—ମୟୂର ଝୁଲ । ଆଲଟ—ସୁସଜ୍ଜିତ ବଡ଼ପଙ୍ଖା । ଝରୀ—ପାନୀୟ ପାତ୍ର, ଟୋଲପ ଆଦି ସୁବାସ ଜଳ ଛିଞ୍ଚିବା ପାତ୍ର । ଧୂପକାଠି—ଧୂପବତୀ, ଉଦ୍‌ବତୀ, ଧୂପଦାନୀ । ରତ୍ନ ଧୂପକାଠି—ସ୍ୱର୍ଣ୍ଣନିର୍ମିତ ଧୂପଦାନୀ । ଅନ୍ତସ୍ଥ—ଗର୍ଭସ୍ଥ । ମଳୟଜ—ଅଗୁରୁ ଚନ୍ଦନ । ଦ୍ୱିଜ—ବ୍ରାହ୍ମଣ । ନାପିତ—ଭଣ୍ଡାରି । ମନୋହାରୀ—ସୁନ୍ଦରୀ, ରମଣୀ । ଦଧିଶାକର—ଦହି, ଖଣ୍ଡଶାକର ।

**ରାମାଏ ରାମାୟଣ — ଏକ ଲୀଳାଏ**
**ବଜାଇଲା ଧରି ବଲ୍ଲକୀ**
**କଉଶିକେ ମୋକ୍ଷ — ଲକ୍ଷ୍ମୀ ଶିରଶିଖ**
**ଦୂର୍ବାଦଳ ଝରା କେତକୀ-**
**ପ୍ରତିମ**
**ରାମଲକ୍ଷ୍ମଣଙ୍କୁ ଜନକ**
**ସଭାରେ ଉଭା — କରାଇ ଏ ବଚନ**
**ରଚନାରେ ହେଲେ ରସିକ । ୩୬ ।**

**ଅନ୍ୱୟ**—ରାମାଏ ରାମାୟଣ ଏକ ଲୀଳାଏ ବଲ୍ଲକୀ ଧରି ବଜାଇଲା । କଉଶିକେ ମୋକ୍ଷଲକ୍ଷ୍ମୀ-ଶିରଶିଖ-ଦୂର୍ବାଦଳଝରା (ଓ) କେତକୀ ପ୍ରତିମ ରାମଲକ୍ଷ୍ମଣଙ୍କୁ ଜନକ ସଭାରେ ଉଭା କରାଇ ଏ ବଚନ ରଚନାରେ ରସିକ ହେଲେ ।

**କଥା**—ଜଣେ ବିଚକ୍ଷଣା ରମଣୀ ରାମାୟଣରୁ ଗୋଟିଏ ଶୋଭାମୟ ଅଂଶ ଗାଇ ବୀଣା ଧରି ବଜାଇଲା । ସେ ଗାଇଲା—ବିଶ୍ୱାମିତ୍ର ମୁକ୍ତି ଲଭିଥିବା ଲକ୍ଷ୍ମୀ ପ୍ରତିମା ଅହଲ୍ୟାଙ୍କ ଶିରାଗ୍ରରେ ଶୋଭିତ ଦୁର୍ବାଦଳ ଗୁଚ୍ଛ ଏବଂ କେତକୀ ପରି ଶ୍ୟାମଳ ଏବଂ ସ୍ୱର୍ଣ୍ଣାଭ ରାମଲକ୍ଷ୍ମଣଙ୍କୁ ଜନକ ସଭାରେ ଛିଡ଼ା କରାଇ ଏପରି ସୁନ୍ଦର ବଚନ କହିଲେ ।

---

ଶବ୍ଦାର୍ଥ । ରାମାଏ—ଜଣେ ସୁନ୍ଦରୀ ରମଣୀ । ବଲ୍ଲକୀ—ବୀଣା । କଉଶିକେ—ବିଶ୍ୱାମିତ୍ରଙ୍କ ଦ୍ୱାରା । ମୋକ୍ଷଲକ୍ଷ୍ମୀ—ମୋକ୍ଷ ହୋଇଥିବା ଲକ୍ଷ୍ମୀ ରୂପିଣୀ ଅହଲ୍ୟା । ଶିର—ଶିର । ଶିଖ—ଅଗ୍ର । ଝରା—ଗୁଚ୍ଛ । ଲୀଳା—ମୋହକାରୀ ଚରଣ ।

ସୁନ୍ଦ-ସୁନ୍ଦରୀଙ୍କୁ ମାରି ସିଦ୍ଧ ବନେ
ଯୋଗ ସିଦ୍ଧ କରି ଚରଣ
ମୋଚନ ହରଣ- ଲୋଚନା ଶୋଚନା
ଲୋଚନାର୍ଥୀ ହେଲେ କମାଣ
ଉତ୍ସବ
ଉଚ୍ଛନ୍ନ କରିଛନ୍ତି ମତ
ସାକେତ-ନାକେଶ୍ୱର- ଙ୍କର ସୁତ ଏ
ଶୁଣି ସେ ନୃପତି ବଦତି । ୩୭ ।

**ଅନ୍ୱୟ**—ସିଦ୍ଧ ବନେ ସୁନ୍ଦ-ସୁନ୍ଦରୀଙ୍କୁ ମାରି ଯୋଗସିଦ୍ଧ ଚରଣ (ଦ୍ୱାରା) ହରଣ-ଲୋଚନା-ଶୋଚନା ମୋଚନ କରି କମାଣ ଉତ୍ସବ ଲୋଚନାର୍ଥୀ ହେଲେ । ମତି ଉଚ୍ଛନ୍ନ କରିଛନ୍ତି । ଏ ସାକେତ-ନାକେଶ୍ୱରଙ୍କର ସୁତ । ଶୁଣି ସେ ନୃପତି ବଦତି ।

**କଥା**—ସିଦ୍ଧ ବନରେ ତାଡ଼କାକୁ ମାରି, ତାଙ୍କର ଯୋଗସିଦ୍ଧ ପଦଦ୍ୱାରା ହରଣଲୋଚନା ଅହଲ୍ୟାଙ୍କର ଦୁଃଖ ନିବାରଣ କରି ତାଙ୍କୁ ମୁକ୍ତ କରି ବର୍ତ୍ତମାନ ଧନୁ ଉତ୍ସବ ଦେଖିବାକୁ ମାନସ ଏକାନ୍ତ ବ୍ୟଗ୍ର କରିଛନ୍ତି । ଏ ହେଉଛନ୍ତି ଅଯୋଧ୍ୟା-ସ୍ୱର୍ଗାଧିପଙ୍କ ପୁତ୍ର । ତା ଶୁଣି ଜନକ ନୃପତି କହିଲେ—

ଶବ୍ଦାର୍ଥ । ସିଦ୍ଧ ବନ—ବିଶ୍ୱାମିତ୍ରଙ୍କ ତପସ୍ୟାସ୍ଥଳୀ । ସୁନ୍ଦ-ସୁନ୍ଦରୀ—ସୁନ୍ଦପତ୍ନୀ, ତାଡ଼କା । ଯୋଗସିଦ୍ଧ—ଯୋଗସାଧନାରେ ଯାହା ଏକାନ୍ତ ସିଦ୍ଧ ହୋଇଛି, ଯୋଗେଶ୍ୱର । ଯୋଗସିଦ୍ଧ ପଦ—ବିଷ୍ଣୁପଦ । ହରଣଲୋଚନା—ଅତ୍ୟନ୍ତ ସୁନ୍ଦରୀ ଅହଲ୍ୟା । ଶୋଚନା—ଦୁଃଖ । କମାଣ—ଧନୁ । ସାକେତ—ଅଯୋଧ୍ୟା । ନାକ—ସ୍ୱର୍ଗ । ଉଚ୍ଛନ୍ନ-ବ୍ୟଗ୍ର

**ଏ କାର୍ମୁକ ଦେଖି ଭୃଗୁବର ଉପେକ୍ଷି**
**ଗର୍ବେ ରଚିଲେ ବନ୍ଦନ**
**ଦଶ ଶତକର ଯଶ ସୁଧାକର**
**ଗ୍ରାସେ ଏ ସିଂହିକା ନନ୍ଦନ**
**କପୀଶ**
**ବଳ ଛପିଗଲା ଦର୍ଶନେ**
**ବାଳୀ ବାଳୀ ବୋଲି ମାରିବାରେ ତାଳି**
**ବାଳକ ରହିଲେ ଦର୍ଶନେ । ୩୭ ।**

**ଅନ୍ୱୟ**—ଏ କାର୍ମୁକ ଦେଖି ଭୃଗୁବର ଉପେକ୍ଷି ଗର୍ବେ ବନ୍ଦନ ରଚିଲେ । ଦଶ ଶତକର ଯଶ-ସୁଧାକର ଏ (କାର୍ମୁକ) ସିଂହିକା ନନ୍ଦନ (ହୋଇ) ଗ୍ରାସେ । କପୀଶ (ଏ କାର୍ମୁକ) ଦର୍ଶନେ ବଳ ଛପିଗଲା । (ତା) ଦର୍ଶନେ ବାଳକ ବାଳୀ, ବାଳୀ ବୋଲି ତାଳି ମାରିବାରେ ରହିଲେ ।

**କଥା**—ହଁ ଯେ ଏ ଧନୁ ଦେଖି ସ୍ୱୟଂ ତେଜ ଗର୍ବ ଉପେକ୍ଷା କରି ମହାକ୍ଷତ୍ରିୟ ପର୍ଶୁରାମ ଏହାର ବନ୍ଦନା କରିଅଛନ୍ତି । ସହସ୍ରାର୍ଜ୍ଜୁନର କ୍ଷତ୍ରିୟ ଯଶ-ଚନ୍ଦ୍ରମାକୁ ଏ ଧନୁ ରାହୁ ହୋଇ ଗ୍ରାସ କରିଛି । ତେଣୁ ସେ ଏଥିରେ ବଳ ଖଟାଇ ପାରି ନାହିଁ । ଅନ୍ୟ ବଳଶାଳୀ କପୀଶ ବାଳୀ ଏହାକୁ ଦେଖୁ ଦେଖୁ ତା ବଳ ଏକାବେଳେ ଛପିଗଲା । ଏମନ୍ତ କି ଯେଉଁ ବାଳକମାନେ ତା ଦେଖୁଥିଲେ ସେମାନେ ବାଳୀର ଦୁର୍ବଳତା ଦେଖି "ଆରେ ଏଟା ମାଇଚିଆରେ ମାଇଚିଆରେ" ବୋଲି ସେତେବେଳେ ତାଳି ମାରିଥିଲେ ।

ଶବ୍ଦାର୍ଥ । ଭୃଗୁବର—ଭୃଗୁପତି । ଭାର୍ଗବ ନନ୍ଦନ—ପରଶୁରାମ । ଦଶ ଶତକର—ସହସ୍ରବାହୁ । ସୁଧାକର—ଚନ୍ଦ୍ରମା । ସିଂହିକା—ନନ୍ଦନ—ରାହୁ । କପୀଶ—ବାଳୀ । ଛପିଲେ—ଲୁଚିଲେ । ବାଳୀ, ବାଳୀ—ମାଇକିନା, ମାଇଚିଆ ।

ଅଙ୍ଗାର ସଙ୍ଗେ ସଙ୍ଗାତ ହୋଇଲାଣି
ଲଙ୍କେ ଶୂରକୁଳ ତନୁ ଯେ
ବ୍ୟର୍ଥ ମନୋରଥ କରି ଆସିଛନ୍ତି
ଦଶରଥଙ୍କର ତନୁଜେ
ଏ ଜାତ
ହୋଇ ଅଛନ୍ତି ଯେଉଁ ବଂଶେ
ତାଙ୍କ ପ୍ରଭା ନାଶି ପକାଉଛି ରଶ୍ମି
ବୋଲାଉଥିବା ଧନୁମାସେ । ୩୮ ।

**ଅନ୍ୱୟ**—ଶୂରକୁଳ ତନୁ ଲଙ୍କେ ଅଙ୍ଗାର ସଙ୍ଗେ ସଙ୍ଗାତ ହୋଇଲାଣି । ଦଶରଥଙ୍କର ତନୁଜେ ମନୋରଥ ବ୍ୟର୍ଥ କରି ଆସିଛନ୍ତି । କାରଣ ଏ ଯେଉଁ ବଂଶେ ଜାତ ହୋଇଅଛନ୍ତି, ତାଙ୍କ ପ୍ରଭା ରଶ୍ମି ବୋଲାଉଥିବା ଧନୁମାସେ ନାଶି ପକାଉଛି । (ଏ ଧନୁ ତ ଅତି ବୃହତ୍ ଅଟେ) ।

**କଥା**—ଏହି ଧନୁର ମହିମା ଯୋଗୁଁ ଧରଣୀର ଅତି ଶ୍ରେଷ୍ଠ ବୀର କୁଳର ତନୁ ଲଙ୍କାରେ ଅଙ୍ଗାର ସାଥିରେ ମିତ୍ରତା କରି କଳା ପଡ଼ି ଗଲେଣି । ମୁଁ ଭାବୁଛି ଦଶରଥ ମହାରାଜାଙ୍କ ପିଲାଏ ତାଙ୍କର ମନୋରଥ ବ୍ୟର୍ଥ କରି ନିଶ୍ଚୟ ଏଠାକୁ ଆସିଛନ୍ତି । କାରଣ ଏମାନେ ଯେଉଁ ସୂର୍ଯ୍ୟବଂଶରେ ଜନ୍ମଲାଭ କରିଅଛନ୍ତି, ସେହି ସୂର୍ଯ୍ୟ ପ୍ରଭା କ୍ଷୁଦ୍ରାଦପି କ୍ଷୁଦ୍ରା ରଶ୍ମି ବୋଲାଉଥିବା ଧନୁମାସରେ ନଷ୍ଟ ହୋଇଯାଉଛି । କିନ୍ତୁ ଏ ଧନୁଟି ଅତି ବୃହତ୍ ଆକାର ଅଟେ ।

ଶବ୍ଦାର୍ଥ । ଶୂର—ବୀର, ଯୋଦ୍ଧା ; ରଶ୍ମି—ଚଳବାଙ୍କ ।

**ଶ୍ରୋତା ଶୁଣି ବୋଧେ ବ୍ୟସ୍ତକୁ ଦ୍ୱିବିଧେ**
**କରି ମକରକୁ ବିଲୋମ**
**କଲେ ହେଲା ଯାହା ତାହା ସର୍ବଂସହା-**
**ନନ୍ଦନାର ଅଟେ ଶ୍ରୀରାମ**
**କରିସେ**
**ତୋଷକୁ ବହିଣ ଜନକ**
**କହିଲେ ଧନୁ ଦରଶନେ ଉତ୍ସୁକ**
**ହୁଅ ହେ ଦଶରଥ ସୁତ ! । ୩୯ ।**

**ଅନ୍ୱୟ**—ଶ୍ରୋତା (ତା) ଶୁଣି ବୋଧେ ବ୍ୟସ୍ତକୁ (ବହି) ଦ୍ୱିବିଧେ କରି (କହିଲେ) ମକର ଏବଂ ମକରକୁ ବିଲୋମ କଲେ ଯାହା ହେଲା ତାହା ସର୍ବଂସହା-ନନ୍ଦନାର ଶ୍ରୀରାମ ଅଟେ । (ଏବେଶ) କରି ସେ (କହନ୍ତେ) ଜନକ ତୋଷକୁ ବହିଣ କହିଲେ ହେ ଦଶରଥ ସୁତ ! ଧନୁ ଦରଶନେ ଉତ୍ସୁକ ହୁଅ ।

**କଥା**—ଶ୍ରୋତା ବିଶ୍ୱାମିତ୍ର ମହର୍ଷି ପୃଥିବୀ-ପୁତ୍ରୀ ଜାନକୀଙ୍କର ଶ୍ରୀରାମ ତାହା ଶୁଣି ସର୍ବଜ୍ଞତା ହିସାବରେ ଅସ୍ଥିରତାକୁ ଦୁଇପ୍ରକାର କରି କହିଲେ—କନ୍ଦର୍ପର ଧ୍ୱଜ 'ମକର' ଏବଂ ମକରର ବିଲୋମ କରମ (କର୍ମଫଳ) ଅଟନ୍ତି । ଏ କଥା ବୁଝାଇ ସେ କହିଦଅନ୍ତେ ଜନକ ରାଜର୍ଷି ଏକାନ୍ତ ତୁଷ୍ଟ ହୋଇ କହିଲେ, ହେ ଦଶରଥ-ପୁତ୍ର ! ଆପଣ ଧନୁ ଦର୍ଶନ ଲାଗି ବିଜେ କରନ୍ତୁ ।

---

**ଶବ୍ଦାର୍ଥ** । ଶ୍ରୋତା—ଯେଉଁ ବିଶ୍ୱାମିତ୍ର ଶୁଣୁଥିଲେ । ବ୍ୟସ୍ତ—ଅସ୍ଥିରତା । ବୋଧେ—ସର୍ବଜ୍ଞତା । ଦ୍ୱିବିଧେ—ଦୁଇପ୍ରକାର କରି । ବିଲୋମ—ବ୍ୟତିକ୍ରମ, ଓଲଟା । ମକରର ବିଲୋମ—କରମ । ମକର—କନ୍ଦର୍ପର ଧ୍ୱଜ । ସର୍ବଂସହା—ପୃଥିବୀ । ସର୍ବଂସହାନନ୍ଦନା—ସୀତା ।

ଗାଧିଜଙ୍କ ଆଜ୍ଞା ଆରାଘବ କହ
ଥିଲେ ତା ଅଯୋଧ୍ୟା କରତା
ଇକ୍ଷ୍ୱାକୁବଂଶ ଅପେକ୍ଷା କରୁଁ ଋଷି
ଉଭୂକ୍ଷା ଭାଷିଲେ କର ତା
ଗମିଲେ
ନମି ବେନି ମୁନି ରାଜାଙ୍କୁ
ଅମ୍ବିକା କାମୁକ କାର୍ମୁକ ସିନ୍ଧୁକ
ବର୍ଜ୍ଜିଲା ସର୍ଜ୍ଜିବା ତେଜକୁ ।୪୦।

ଅନ୍ୱୟ—'ଗାଧିଜଙ୍କ ଅଜ୍ଞା ଆରାଘବ' ତା ଅଯୋଧ୍ୟା କରତା କହିଥିଲେ । ( ତେଣୁ ) ଇକ୍ଷ୍ୱାକୁବଂଶ ଅପେକ୍ଷା କରୁଁ, ଋଷି ଉଭୂକ୍ଷା ଭାଷିଲେ 'ତା' କର' । (ତହୁଁ) ବେନି ମୁନି ରାଜାଙ୍କୁ ନମି ଗମିଲେ । ଅମ୍ବିକା-କାମୁକ କାର୍ମୁକ ସିନ୍ଧୁକ ସର୍ଜ୍ଜିବା ତେଜକୁ ବର୍ଜ୍ଜିଲା ।

କଥା—ରାଜା ଦଶରଥ ପୁତ୍ରମାନଙ୍କୁ କହିଥିଲେ, ବିଶ୍ୱାମିତ୍ରଙ୍କ ଅଜ୍ଞା ପାଳନ କରିବ । ତେଣୁ ରାମଚନ୍ଦ୍ର ଅପେକ୍ଷା କରନ୍ତେ ଋଷି 'ଯାଅ' ବୋଲି କହି କହିଲେ, 'ତା' କର' । ତହୁଁ ମୁନିଶ୍ରେଷ୍ଠ ବିଶ୍ୱାମିତ୍ର ଏବଂ ଜନକ ରାଜର୍ଷି ଦୁହିଁଙ୍କୁ ପ୍ରଣାମ କରି ଗମନ କଲେ । ଶିବଧନୁ ଯେଉଁ ସିନ୍ଧୁକରେ ଥିଲା ସେ ତାର ସର୍ଜ୍ଜିବା ବେଳର ତେଜ ଏ ଯାଏ ରଖି ରହିଥିଲା । କିନ୍ତୁ ରାମଚନ୍ଦ୍ରଙ୍କୁ ଦେଖି ତାହା ବର୍ଜ୍ଜନ କଲା ।

ଶବ୍ଦାର୍ଥ । ଗାଧିଜ—ବିଶ୍ୱାମିତ୍ର । ଆରାଘବ—ମାନବ । ଅଯୋଧ୍ୟା କରତା—ଦଶରଥ । ଇକ୍ଷ୍ୱାକୁବଂଶ—ଇକ୍ଷ୍ୱାକୁବଂଶଧର ରାମଚନ୍ଦ୍ର । ଉଭୂକ୍ଷା—ଯିବା, ଗମନ କରିବା । ମୁନିରାଜ—ମୁନିଶ୍ରେଷ୍ଠ, ରାଜର୍ଷି । ଅମ୍ବିକା କାମୁକ—ପାର୍ବତୀଙ୍କ ପ୍ରତି ଅତ୍ୟନ୍ତ ଅନୁରାଗୀ ଶିବ । କାର୍ମୁକ—ଧନୁ । ସିନ୍ଧୁକ—ବଡ଼ ବାକ୍ସ । ସର୍ଜ୍ଜିବା—ପ୍ରଥମ ସର୍ଜ୍ଜନା ବେଳର ।

**ପରମ ଚିନ୍ତା ସନ୍ତାନ ବନ୍ତ କରି**
**ମରମ ଜନକ କୁମାରୀ**
**କରି ସଖୀ ସଙ୍ଗ ହୋଇଥିଲେ ଭୃଙ୍ଗ**
**ଅଟ୍ଟାଳୀ ଉତ୍ସଙ୍ଗ ସଞ୍ଚାରୀ**
**ମୋଦାଶ୍ରୁ**
**ଜନନ ହୁଅନ୍ତେ ଲୋଚନେ**
**ମନମାୟାଙ୍କୁ ଅନସୂୟା ଅନାଇଁ**
**ଅଳ୍ପେ ହସି ଜଳ୍ପେ ଏସନେ ।୪୧।**

**ଅନ୍ୱୟ**—ଜନକ-କୁମାରୀ ମରମ ଚିନ୍ତା ପରମ ସନ୍ତାନବନ୍ତ କରି (ଥିଲା) । (ସେ) ସଖୀ ସଙ୍ଗକରି ଭୃଙ୍ଗ ଅଟ୍ଟାଳୀ-ଉତ୍ସଙ୍ଗ-ସଞ୍ଚାରୀ ହୋଇଥିଲେ । ମୋଦାଶ୍ରୁ-ଲୋଚନେ ଜନନ ହୁଅନ୍ତେ ଅନସୂୟା ମନମାୟାଙ୍କୁ ଅନାଇଁ ଅଳ୍ପେ ହସି ଏସନେ ଜଳ୍ପେ ।

**କଥା**—ଜାନକୀଙ୍କ ମର୍ମ ବିଶେଷ ଚିନ୍ତାରେ ବ୍ୟାପି ରହିଥିଲା । ସେ ତେଣୁ ସଖୀ ସହିତରେ ଉଚ୍ଚଅଟ୍ଟାଳିକା ମଧ୍ୟରେ ବୁଲୁଥିଲେ । ଏ ଘଟଣା ଦେଖି ଆନନ୍ଦାଶ୍ରୁ ତାଙ୍କ ଚକ୍ଷୁରେ ଜାତ ହେବାରୁ ତାଙ୍କ ସଖୀ ଅନସୂୟା ଅନ୍ୟ ସଖୀ ମନମାୟାଙ୍କୁ ଅନାଇଁ ଅଳ୍ପ ହସି ଏପରି କହିଲା ।

---

ଶବ୍ଦାର୍ଥ । ମରମ—ମର୍ମ, ହୃଦୟ । ପରମ ଚିନ୍ତା—ବଡ଼ ଚିନ୍ତା, ଯେ ଚିନ୍ତାର ଅନ୍ତ କୂଳ ନ ଥାଏ । ସନ୍ତାନ—ବିସ୍ତାର, ବିସ୍ତୃତ । ସନ୍ତାନବନ୍ତ—ଅତି ବିସ୍ତୃତ । ଉତ୍ସଙ୍ଗ—ଅଙ୍କ, ମଧ୍ୟ । ସଞ୍ଚାରୀ—ଭ୍ରମଣ, ବୁଲିବା । ଜଳ୍ପେ—କହିଲେ ।

**ଏ ସୁନ୍ଦର ସାର- ଲାବଣ୍ୟ କାସାର-**
**ଗର୍ଭ ଗଭୀରେ ଲୋଭ ରଖି**
**କି ବଚନ ସୂତ୍ରେ ମେଳ କଲ ଡୋଳା**
**ନୀଳୋତ୍ପଳ ନୀଳୋତ୍ପଳାକ୍ଷୀ**
**ପକାଇ**
**ଆଣିଛ ସେହି ଦେବଲାଗେ**
**ଭକାଇ ନାହିଁ ମନ୍ଦାକ୍ଷକୁ ମନ୍ଦାକ୍ଷ**
**ହୋଇଗଲ ତ ଅନୁରାଗେ ।୪୬।**

**ଅନ୍ୱୟ**—ନୀଳୋତ୍ପଳାକ୍ଷୀ ଏ ସୁନ୍ଦର ସାର ଲାବଣ୍ୟ କାସାର ଗର୍ଭ-ଗଭୀରେ ଲୋଭ ରଖି କି ବଚନ ସୂତ୍ରେ (ତ) ନୀଳୋତ୍ପଳ ଡୋଳା ମେଳ କରି ପକାଇ ଆଣିଛ । ସେହି ଦେବ ଲାଗେ ମନ୍ଦାକ୍ଷକୁ ଭକାଇ ନାହିଁ । ଅନୁରାଗେ ମନ୍ଦାକ୍ଷ ହୋଇଗଲ ତ ।

**କଥା**—ନୀଳୋତ୍ପଳ-ନୟନା ଜାନକୀ ଏହି ସୁନ୍ଦରଶ୍ରେଷ୍ଠ ପୁରୁଷଙ୍କ ରୂପଲାବଣ୍ୟ-ସରୋବର-ଗଭୀରଗର୍ଭରେ ଲୋଭ ରଖି କି ବଚନ ସୂତ୍ରରେ ତା ମନୋହର ନୀଳୋତ୍ପଳ-ଡୋଳା ମେଳ କରି ପକାଇ ଆଣିଛ । ନୟନରେ ନୟନ ମିଶାଇ ଦେଇଛ । ସେହି ଦେବ-ପୁରୁଷଙ୍କ ଲାଗି ସେ ଲଜ୍ଜାକୁ ମଧ୍ୟ ଡକାଇ ନାହିଁ । ଏବେ ଦେଖେ ଏହି ଅତ୍ୟଧିକ ସ୍ନେହରୁ ଚକ୍ଷୁରୁ ଅଶ୍ରୁ ବହିଯାଉଛି ।

**ଆଲୋଚନା**—ରାମଚନ୍ଦ୍ରଙ୍କ ରୂପଲାବଣ୍ୟ ସରୋବରରେ ନିଜର ଡୋଳା ରୂପକ ନୀଳୋତ୍ପଳକୁ ସଜାଇ ରଖିପାରିଛ । ଅର୍ଥାତ୍ ତାଙ୍କ ହୃଦୟକୁ ବନ୍ଧ କରିଛ ।

ଶବ୍ଦାର୍ଥ । କାସାର—ସରୋବର । ଲାଗେ—ଲାଗି କରି । ମନ୍ଦାକ୍ଷ—ଲଜ୍ଜା । ମନ୍ଦ—ଅସୁଖ । ଅକ୍ଷ—ଇନ୍ଦ୍ରିୟ, ନେତ୍ର । ମନ୍ଦାକ୍ଷ—ଅଶ୍ରୁପୂରିତ ନେତ୍ର ।

ଭ୍ରାତାଙ୍କୁ ହସ୍ତ ଆୟୁଧ ଦେଇ ଦୃଢ଼େ
ବଦଗ୍‌ଧ ଧଇଲେ କାର୍ମୁକ
ଅତ ରକ୍ତବନ୍ତ ହେଲା ମୁଠା କଲା
ମଞ୍ଜିଷ୍ଠା ପ୍ରତିଷ୍ଠାକୁ ଧିକ
ଚତୁରେ
ଏହି ଅନୁମାନେ ରସିଲେ
କୃଶାନୁରେ ତାଙ୍କ ଅନୁରାଗ ତକ
ଧନୁଠାରୁ ଘେନ ଆସିଲେ ।୪୩।

**ଅନ୍ୱୟ**—ବଦଗ୍‌ଧ ଭ୍ରାତାଙ୍କୁ ହସ୍ତ ଆୟୁଧ ଦେଇ କାର୍ମୁକ ଦୃଢ଼େ ଧଇଲେ । (ଧରନ୍ତେ) ମୁଠା ଅତି ରକ୍ତବନ୍ତ ହେଲା । ମଞ୍ଜିଷ୍ଠା ପ୍ରତିଷ୍ଠାକୁ ଧିକ କଲା । ଚତୁରେ ଏହି ଅନୁମାନେ ରସିଲେ—କୃଶାନୁରେ ତାଙ୍କ ଅନୁରାଗ ତକ (ଉକ୍ତ) ଧନୁଠାରୁ (ଅବା) ଘେନ ଆସିଲେ ।

**କଥା**—ରସିକ ରାମଚନ୍ଦ୍ର ଭାଇ ଲକ୍ଷ୍ମଣଙ୍କ ହସ୍ତରେ ନିଜେ ଧରିଥିବା ଆୟୁଧ ଦେଇ ଉକ୍ତ ଧନୁକୁ ଦୃଢ଼ ଭାବରେ ଧରିଲେ । ଧରନ୍ତେ ତାଙ୍କର ମୁଠା ଅତିଶୟ ରକ୍ତବନ୍ତ ହୋଇଗଲା । ଏତେ ନାଲି ଦେଖାଗଲା ଯେ ଲୋହିତ ଲତା ମଞ୍ଜିଷ୍ଠାର ରକ୍ତବର୍ଣ୍ଣ ପ୍ରତିଷ୍ଠାକୁ ସେ ଧିକ୍‌କାର କଲା । ଏହା ଦେଖି ଚତୁର ଲୋକମାନେ ଏପରି ଅନୁମାନ କରି ଖୁସିହେଲେ—ଅଗ୍ନିବୀର୍ଯ୍ୟ ଶିବଙ୍କ ଯେଉଁ ଶ୍ରଦ୍ଧା ଏହି ଧନୁରେ ରହିଥିଲା ତାହା ସେ ଯେପରି ନିଜ ଆଡ଼କୁ ଟାଣି ଆଣିଲେ । ସେ ଶିବଧନୁ ନ ହୋଇ ରାମଧନୁ ହୋଇଗଲା ।

ଶବ୍ଦାର୍ଥ । ବଦଗ୍‌ଧ—ଚତୁର, ରସିକ, ପଣ୍ଡିତ । ରକ୍ତବନ୍ତ—ରକ୍ତପୂର୍ଣ୍ଣ, ନାଲି । କୃଶାନୁ—ଅଗ୍ନି । କୃଶାନୁରେତା—ମହାଦେବ ଶିବ । ମଞ୍ଜିଷ୍ଠା—ଲୋହିତ ଲତା ବିଶେଷ, ହିମାଳୟରେ ଜନ୍ମେ, ଏହାଦ୍ୱାରା ଔଷଧ ରକ୍ତବର୍ଣ୍ଣ ହୁଏ ।

କରେ ଯଥା କରୀ ଅଜଗବ ଦଣ୍ଡ
ତଥା ଅଜଗବ-ଦଣ୍ଡକୁ
ବହ୍ନି ଶୁଖାଇଲେ ବଇଦେହୀଙ୍କର
ଆରତ ସରତ ଗଣ୍ଡକୁ
ସରଣୀ—
ସମାପ୍ତି ମିଳିଲେ ହରଷେ
ରଜତଗିରି— ବିହାରୀ-ମନୋହାରୀ-
ବିଜୟ-ପ୍ରାସାଦ-ପ୍ରଦେଶେ ।୪୪।

**ଅନ୍ୱୟ**—ଯଥା କରୀ ଅଜଗବ ଦଣ୍ଡ (ବହନ) କରେ, ତଥା ଏହି ଅଜଗବ (ର) ଦଣ୍ଡକୁ ବହ୍ନି ବଇଦେହୀଙ୍କର ଆରତ-ସରତ-ଗଣ୍ଡକୁ ଶୁଖାଇଲେ । ସରଣୀ ସମାପ୍ତି (ଦେଖି) ରଜତଗିରିବିହାରୀ-ମନୋହାରୀ-ବିଜୟ-ପ୍ରାସାଦ-ପ୍ରଦେଶେ ହରଷେ ମିଳିଲେ ।

**କଥା**—ଯେମନ୍ତ ହସ୍ତୀ ପଦ୍ମନାଡ଼ ଧରେ, ତଥା ଏହି ଶିବଧନୁର କାଣ୍ଡକୁ ରାମଚନ୍ଦ୍ର ଟେକନ୍ତେ ବୈଦେହୀଙ୍କର ମନୋବ୍ୟଥା ନଦୀର ଗଣ୍ଡକୁ ଶୁଖାଇଦେଲା ।

ଏତକ ଗାୟିକା ଗାନ କରୁ କରୁ ପଥ ସମାପ୍ତି ଦେଖି ସମସ୍ତେ କୈଳାଶ ପର୍ବତବିହାରୀଙ୍କ ମନୋହାରିଣୀ ପାର୍ବତୀଙ୍କ ବିଜୟ-ନିକେତନଭୂମିରେ ଆନନ୍ଦରେ ପହଞ୍ଚିଲେ ।

---

ଶବ୍ଦାର୍ଥ । ଅଜଗବ ଦଣ୍ଡ—ପଦ୍ମନାଡ଼, କାଣ୍ଡ । ଅଜଗବ—ଶିବଧନୁ । ଦଣ୍ଡ—କାଣ୍ଡ । ଆରତ—ପୀଡ଼ା, ମନୋବ୍ୟଥା । ସରତ—ନଦୀ । ସରଣୀ—ପଥ । ରଜତଗିରି—କୈଳାସ ପର୍ବତ । ରଜତଗିରିବିହାରୀ-ମନୋହାରୀ—ପାର୍ବତୀ, ଚଣ୍ଡୀ । ବିଜୟ ପ୍ରାସାଦ—ବିଜେ କରିଥିବା ଅଟ୍ଟାଳୀ । ପ୍ରଦେଶ—ଭୂମି ।

ବର୍ଜି ସୁଖାସନ ସର୍ଜ୍ଜିଲେ ଗମନ
ଅର୍ଜ୍ଜିଲେ ଦେବୀଙ୍କ କଟକ
ପୂର୍ବ ପଶ୍ଚିମ ଉତ୍ତର ଦଶ ଈଶେ
ଅପୂର୍ବ ମଣିବା କୀର୍ତ୍ତିକ
ଭଜନ୍ତା
ରତ୍ନ ଅଞ୍ଜଳିଏ ଭେଟିଲେ
ଗୁପ୍ତ କର ତପ୍ତ— କାଞ୍ଚନଜିତାଙ୍ଗୀ
କର ଯୁଗ ଯୋଡ଼ି ରଚିଲେ । ୪୫ ।

**ଅନ୍ୱୟ**—ସୁଖାସନ ବର୍ଜି ଗମନ ସର୍ଜ୍ଜିଲେ । ଦେବୀଙ୍କ କଟକ ଅର୍ଜିଲେ । ପୂର୍ବ-ପଶ୍ଚିମ-ଉତ୍ତର ଦଶ ଈଶେ ଅପୂର୍ବ ମଣିବା କୀର୍ତ୍ତିକ ଭଜନ୍ତା ରତ୍ନ ଅଞ୍ଜଳିଏ ଭେଟିଲେ (ଏବଂ) ଗୁପ୍ତ କର ତପ୍ତକାଞ୍ଚନଜିତାଙ୍ଗୀ କରଯୁଗ ଯୋଡ଼ି ରଚିଲେ ।

**କଥା**—ପାଲଙ୍କି ତ୍ୟାଗ କରି ଜେମାମଣି ଏଥର ଚାଲିଲେ । ଚଣ୍ଡୀ ଠାକୁରାଣୀଙ୍କ ସାମୀପ୍ୟ ଲାଭ କଲେ । ପୂର୍ବ, ପଶ୍ଚିମ ଆଦି ଦଶଦିଗରେ ଇନ୍ଦ୍ର, ବରୁଣ ଆଦି ଦେବତାମାନଙ୍କୁ ଯାହା ଏକାନ୍ତ ଅପୂର୍ବ, ପୁନଶ୍ଚ ବିଶ୍ୱ ଜଗତରେ ନିଜ ନିଜ ନାମରେ କୀର୍ତ୍ତିବନ୍ତ ଯେଉଁ ରତ୍ନମାନ ସେଥିରୁ ଅଞ୍ଜୁଳାଏ ସେ ଜେମା, ଦେବୀଙ୍କ ନିକଟରେ ଭେଟିଲେ ଏବଂ ସେହି ତପ୍ତ କାଞ୍ଚନରୁ ଅଧିକ ଉତ୍କୃଷ୍ଟ ପ୍ରତିମା ଜେମା ରୁକ୍ମିଣୀ ଅତି ଗୋପନରେ କର ଯୁଗ ଯୋଡ଼ି ମନେ ମନେ କହିଲେ ।

---

ଶବ୍ଦାର୍ଥ । ସୁଖାସନ—ପାଲଙ୍କି । ବର୍ଜି—ତ୍ୟାଗକରି । ସର୍ଜ୍ଜିଲେ—ସୃଷ୍ଟି କଲେ । କଟକ—ନିକଟ । ପୂର୍ବ-ପଶ୍ଚିମ-ଉତ୍ତର ଦଶ ଈଶେ—ଇନ୍ଦ୍ର ବରୁଣାଦି ଦେବବୃନ୍ଦ । ଯଥା—(୧) ପୂର୍ବରେ ଇନ୍ଦ୍ର, (୨) ପଶ୍ଚିମରେ ବରୁଣ, (୩) ଉତ୍ତରରେ କୁବେର, (୪) ଦକ୍ଷିଣରେ ଯମ, (୫) ଅଗ୍ନିକୋଣରେ ଅଗ୍ନି, (୬) ବାୟୁ କୋଣରେ ମରୁତ (ବାୟୁ), (୭) ଈଶାନ କୋଣରେ ଈଶାନ (ଶିବ), (୮) ନୈଋତ କୋଣରେ ନୈଋତ, (୯) ଅଧୋ ଦିଗରେ ଅନନ୍ତ, (୧୦) ଊର୍ଦ୍ଧ୍ୱ ଦିଗରେ ବ୍ରହ୍ମା । କୀର୍ତ୍ତିକ ଭଜନ୍ତା—ସ୍ୱ ସ୍ୱ ନାମରେ ବିଶ୍ୱରେ ଯଶସ୍ୱୀ । ରତ୍ନ—ହୀରକାଦି ମଣି, ମୁକ୍ତାଦି । ତପ୍ତକାଞ୍ଚନଜିତାଙ୍ଗୀ—ତରଳ ସୁନାଠୁଁ ସୁନ୍ଦର ରଙ୍ଗବିଶିଷ୍ଟ ଦେହ ଯାହାର । ରଚିଲେ—ଜପିଲେ ।

**ମୃତ୍ୟୁ ଶତ୍ରୁ ଯେ ଅଟନ୍ତି ସେ ଖଟନ୍ତି**
**କଣା ପର ତୁମ୍ଭ ଚରଣେ**
**କହ୍ନ ଯାହାକୁ ଓଷଧୀଶ ତାହାକୁ**
**ବହ୍ନ ରହୁଛ ଅନୁକ୍ଷଣେ**
**ମରଣୁ**
**ରଖ ଦେଇ ଏହ୍ନ କସ୍ତୂରୀ**
**ପ୍ରଥମୁଁ ଠକାରକୃତଟି ସଂଯୋଗ**
**ହୋଇ ନ ଥିବ ସଂକଟାର । ୪୭ ।**

**ଅନ୍ୱୟ**—(ହେ ଦେବ !) ଯେ ମୃତ୍ୟୁ ଶତ୍ରୁ ଅଟନ୍ତି ସେ କଣା ପର ତୁମ୍ଭ ଚରଣେ ଖଟନ୍ତି । ଯାହାକୁ ଓଷଧୀଶ କହ୍ନ ତାହାକୁ ଅନୁକ୍ଷଣେ ବହ୍ନ ରହୁଛ । (ହେ ମା') ସଙ୍କଟାର ! ଯାହା କ ପ୍ରଥମୁଁ ଠକାରକୃତଟି ସଂଯୋଗ ହୋଇ ନ ଥିବ, ଏହ୍ନ କସ୍ତୂରୀ ଦେଇ (ମତେ) ମରଣୁଁ ରଖ ।

**କଥା**—ହେ ଚଣ୍ଡି ! ଯେ ମୃତ୍ୟୁଞ୍ଜୟ ଅଟନ୍ତି ସେ ଶିବ କଣା ଗୁକର ପର ତୁମ୍ଭ ଚରଣରେ ଖଟିଥାନ୍ତି । ଯାହାଙ୍କୁ ଓଷଧୀଶ କୁହାଯାଏ ସେହ୍ନ ଚନ୍ଦ୍ରମା ଅନୁକ୍ଷଣ ମସ୍ତକରେ ଧାରଣ କରିଅଛ । ଅତଏବ ତୁମ୍ଭେ ମୃତ୍ୟୁରୁ ବଞ୍ଚାଇବା ଲାଗି ଏବଂ ଜୀବନ ରକ୍ଷାର ଶ୍ରେଷ୍ଠ ମହୌଷଧି ଦେବାରେ ଏକାନ୍ତ କ୍ଷମ ଅଟ ।

ମାଆ ସଙ୍କଟାର ! ତୁମର ଏହ୍ନ ସଂକଟାର ନାମର ପ୍ରଥମ ଅକ୍ଷରରେ 'ଠ'କାରକୃତଟି ସଂଯୋଗ ହୋଇ ନ ଥିଲେ, 'ଠ'କାରାକୃତ ଅନୁସ୍ୱାରଟି କାଢ଼ିନେଲେ ଯେଉଁ ଶବ୍ଦଟି ହେବ ସେହ୍ନ ଶକଟାରରୂପକ-କସ୍ତୂରୀ ଦେଇ ମତେ ମରଣରୁ ରକ୍ଷାକର ।

**ଆଲୋଚନା**—କସ୍ତୂରୀ କୃଷ୍ଣସାର ମୃଗଠାରୁ ଉତ୍ପନ୍ନ ହୁଏ । ବିଶେଷରେ କସ୍ତୂରୀ ମଧ୍ୟ କୃଷ୍ଣବର୍ଣ୍ଣ ଅଟେ । ତେଣୁ କସ୍ତୂରୀରେ କୃଷ୍ଣ ଶବ୍ଦଟିରେ ଲକ୍ଷଣା ଅଣାଯାଇଛି । ପାର୍ବତୀ ମସ୍ତକରେ ଓଷଧୀଶ ବହନ କରି ମରଣରୁ ରକ୍ଷା କରିବାକୁ ଓଷଧ ଦେବା ସମ୍ଭବ ।

ଶବ୍ଦାର୍ଥ । ମୃତ୍ୟୁଶତ୍ରୁ—ମୃତ୍ୟୁଞ୍ଜୟ । କଣା ପର—କଣା ଗୁକର ପର, କ୍ରୀତଦାସ ପର । ଓଷଧୀଶ—ଚନ୍ଦ୍ରମା । କସ୍ତୂରୀ—କୃଷ୍ଣସାର ମୃଗସାର । ସଙ୍କଟାରରୁ ଠକାରକୃତ ଅନୁସ୍ୱାର ଗଲେ ଶକଟାର କୃଷ୍ଣ ହେବ ।

ଶିବାଳୟେ ଚକ୍ଷେ　　　ଦେଖିଅଛୁଁ ଯେବେ
ପୁରାଣେ କରୁଛୁଁ ଶ୍ରବଣ
ଶୁଭ୍ର ଅଭ୍ରୁ ଅର୍ଦ୍ଧେ　　　ଅତ୍ୟନ୍ତ ସଂଶ୍ରଦ୍ଧେ
ବଦ୍ୟୁ କରୁଛି ଆକର୍ଷଣ
ସେପରି
ଅଶୁଭ୍-ଅଭ୍ରରେ ତଡ଼ିତ
ଜଡ଼ିବ ଦେଖାଇ　　　ତଡ଼ି ଦିଅ ଚିନ୍ତା
ସଖୀଙ୍କ ଜଣାଣ ଜନିତ ।୪୭।

**ଅନ୍ୱୟ**—( ସଖୀ ଜଣାଣ କଲେ—ଗୋ ଅମ୍ବିକେ ! ) ଶିବାଳୟେ ଚକ୍ଷେ ଯେବେ ଦେଖିଅଛୁଁ (ଏବଂ) ପୁରାଣେ ଶ୍ରବଣ କରୁଛୁଁ ଅଭ୍ରୁ ଶୁଭ୍ର ଅର୍ଦ୍ଧେ ଅତ୍ୟନ୍ତ ସଂଶ୍ରଦ୍ଧେ ବଦ୍ୟୁ ଆକର୍ଷଣ କରୁଛି, ସେପରି ଅଶୁଭ୍-ଅଭ୍ରରେ ତଡ଼ିତ (ଯେପରି) ଜଡ଼ିବ (ତାହା) ଦେଖାଇ ସଖୀଙ୍କ ଜଣାଣ ଜନିତ ଚିନ୍ତା ତଡ଼ି ଦିଅ ।

**କଥା**—ଏହା ପରେ ସଖୀମାନେ ଜଣାଣ କଲେ—ଗୋ ଅମ୍ବିକେ ! ଶିବମନ୍ଦିରମାନଙ୍କରେ ଥିବା ଚିତ୍ରରୁ ସ୍ୱ ଆଖିରେ ଦେଖିଚୁ ଏବଂ ପୁରାଣରେ ଶୁଣିଅଛୁଁ ଧଳା ମେଘରେ ଅଧା ଅଂଶ ଅତ୍ୟନ୍ତ ଶ୍ରଦ୍ଧାରେ ବିଜୁଳି ଆକର୍ଷଣ କରୁଛି । ଶିବରୂପୀ ଶ୍ୱେତ ମେଘରେ ଅର୍ଦ୍ଧାଂଶ ବିଦ୍ୟୁତ୍ ପରି ତୁମ୍ଭେ ତାଙ୍କର ଅର୍ଦ୍ଧ ଅଙ୍ଗରେ ମିଶି ରହିଅଛ । ସେହିପରି ନୀଳ ମେଘରୂପୀ କୃଷ୍ଣଙ୍କ ଅଙ୍ଗରେ ବିଦ୍ୟୁତ୍ ରୂପିଣୀ ରୁକ୍ମଣୀ ଯେପରି ମିଶିଯିବେ ତାହା ଦେଖାଇ ଆମ ସଖୀଙ୍କ ଜଣାଣରେ ଥିବା ଚିନ୍ତା ଦୂର କରିଦିଅ ।

**ଆଲୋଚନା**—ଆମେ ଶିବାଳୟ ଚିତ୍ରରେ ଦେଖିଚୁ, ପୁରାଣରେ ଶୁଣିଛୁଁ ଶୁଭ୍ର ମେଘରେ ବିଜୁଳି ପରି ତୁମେ ମହାଦେବଙ୍କ ଦେହରେ ମିଶି ରହିଛ । ସେହିପରି କୃଷ୍ଣମେଘରେ ବିଜୁଳି ଖେଳ ଦେଖାଇ ଆମ ସଖୀର ଦୁଃଖ ଦୂର କରିଦିଅ । କୃଷ୍ଣରୂପୀ ନୀଳମେଘରେ ବିଦ୍ୟୁତ୍ ରୂପିଣୀ ରୁକ୍ମଣୀଙ୍କି ମିଶାଇ ଦିଅ ।

ଶବ୍ଦାର୍ଥ । ଜନିତ—ଜନ୍ମିତ । ଅଭ୍—ମେଘ । ଅଭ୍ରୁ—ମେଘରେ । ସଂଶ୍ରଦ୍ଧେ—ଅଧିକ ଶ୍ରଦ୍ଧାରେ । ବଦ୍ୟୁ—ବିଜୁଳି । ଅଶୁଭ୍ର—କୃଷ୍ଣ, ନୀଳ । ଜଡ଼ିବ—ମିଶିଯିବ ।

ପୁରୋଧାନନ୍ଦନା ସାର ବନ୍ଦାପନା
ମଣ୍ଡିଦେଇ ଧଣ୍ଡୀ ପ୍ରସାଦ
ମୁଣ୍ଡିଆକୁ ଚଣ୍ଡୀ ପାଦେ ପ୍ରଚରାଇ
ଗୁଣ-ପଣ୍ଡିତାକୁ ପ୍ରାସାଦ—
ଉଦରୁ
ବାହୁଡ଼ା ବଜସ୍ଥ କରାନ୍ତେ
ନନ୍ଦିଘୋଷକୁ ଇନ୍ଦୀବର-ସୁନ୍ଦର
ଛପାଇ ତ ଥିଲେ ଅନନ୍ତେ ।୪୮।

**ଅନ୍ୱୟ**—ଗୁଣ-ପଣ୍ଡିତାକୁ ପୁରୋଧାନନ୍ଦନା ବନ୍ଦାପନା ସାର ଧଣ୍ଡୀପ୍ରାସାଦ ମଣ୍ଡିଦେଇ, ମୁଣ୍ଡିଆକୁ ଚଣ୍ଡୀପାଦେ ପ୍ରଚରାଇ ପ୍ରାସାଦ ଉଦରୁ ବାହୁଡ଼ା ବଜସ୍ଥ କରାନ୍ତେ, ଇନ୍ଦୀବର-ସୁନ୍ଦର ନନ୍ଦିଘୋଷକୁ ଅନନ୍ତେ ଛପାଇ ତ ଥିଲେ ।

**କଥା**—ପୁରୋହିତକନ୍ୟା ବନ୍ଦାପନା ଶେଷ କରି ଅଶେଷକଳା-ବିଧାୟିନୀ ରୁକ୍ମଣୀଙ୍କୁ ପ୍ରସାଦମାଳା ମଣ୍ଡିଦେଇ ଏବଂ ଚଣ୍ଡୀଙ୍କ ପାଦମୂଳରେ ମୁଣ୍ଡିଆ ମରାଇ ଦେଉଳ ଭିତରୁ ବାହୁଡ଼ା ବଜସ୍ଥ କଲାବେଳକୁ ଇନ୍ଦୀବର ପରି ମନୋହର କୃଷ୍ଣ ନନ୍ଦିଘୋଷ ରଥକୁ ଆକାଶରେ ଛପାଇ ରଖିଥିଲେ । ( ଗୋପନରେ ଲୁଚାଇ ରଖିଥିଲେ ) ।

ଶବ୍ଦାର୍ଥ । ପୁରୋଧାନନ୍ଦନା—ପୁରୋହିତଜେମା । ମଣ୍ଡି—ସଜ୍ଜିତ କରି । ଧଣ୍ଡୀପ୍ରାସାଦ—ପ୍ରସାଦୀମାଳା, ଦେବତାଙ୍କ ବେକରୁ ଯେଉଁ ମାଳା କାଢ଼ି ଭକ୍ତକୁ ଦିଆଯାଏ । ଗୁଣପଣ୍ଡିତା—ଚଉଷଠି କଳାରେ ନିପୁଣା । କରାନ୍ତେ—କଲାବେଳକୁ । ପ୍ରଚରାଇ—ବ୍ୟବହୃତ କରାଇ । ପ୍ରାସାଦ—ଦେଉଳ । ଇନ୍ଦୀବର—ନୀଳକଇଁ । ଇନ୍ଦୀବର-ସୁନ୍ଦର—ନୀଳକଇଁ ପରି ସୁନ୍ଦର ନୀଳକାନ୍ତି ଯାହାର, କୃଷ୍ଣ । ଅନନ୍ତେ—ଆକାଶରେ, ଗୋପନରେ ।

**ଧପଟେ ଲମ୍ପଟ କରାଇ ତାହାକୁ**
**ପରମ, କପଟି-ଶେଖର**
**ଝଟ କରି ଉଠି ଧଇଲେ ରତନ-**
**କଟକ-ଶୋଭିନୀର କର**
**ନିଃଶଙ୍କେ**
**ନେଇ କଲେ ଅଙ୍କବିହାରୀ**
**ନେଲେ ହରି ହରି ହରଣ-ନେତ୍ରୀକୁ**
**ବହରି ଗଲା ଏହି ହୁରି ।୪୯।**

**ଅନ୍ୱୟ**—ତାହାକୁ (ରଥକୁ) ଧପଟେ ଲମ୍ପଟ କରାଇ ପରମକପଟିଶେଖର ରତନ କଟକ-ଶୋଭିନୀର କର ଧଇଲେ । (ଏବଂ) ଝଟ କରି ଉଠି ନିଃଶଙ୍କେ ନେଇ ଅଙ୍କବିହାରୀ କଲେ । ହରି ହରଣ-ନେତ୍ରୀକୁ ହରି ନେଲେ ଏହି ହୁରି ବହରିଗଲା ।

**କଥା**—ରଥକୁ ହଠାତ୍ ଗତିରେ ଅତ୍ୟଧିକ ବ୍ୟଗ୍ର କରାଇ, ପରମ-ମାୟାଧର ବିବାହ ପରି ମାଙ୍ଗଳିକ ରତ୍ନଚୂଡ଼ୀ-ଧାରିଣୀ ଶୋଭମୟୀ ରୁକ୍ମିଣୀଙ୍କ ପାଣିଗ୍ରହଣ କଲେ, ଏବଂ ଝଟ କରି ସେହି ବିଶ୍ୱସୁନ୍ଦରୀକୁ ଟେକି ନେଇ ନିର୍ଭୟରେ ନିଜ କୋଳରେ ବସାଇଲେ । ହରି ହରିଣନେତ୍ରା ଶୋଭାରାଣୀ ରୁକ୍ମିଣୀଙ୍କୁ ହରଣ କରି ନେଇଗଲେ । ଏହି ହୁରି ଗୃହେଁ ଗୃହେଁ ଚଉଦିଗରେ ବହରିଗଲା ।

**ଆଲୋଚନା**—ବିଆଁ ମଙ୍ଗୁଳା ପୂର୍ବଦିନ ଶୁଭ ଅନୁକୂଳରେ କେମିତି ରତ୍ନଚୂଡ଼ୀ ଲାଗି ହୁଅନ୍ତି । ଏହା ହିଁ ସମାଚାର ପୂର୍ବଲକ୍ଷଣ । ରତ୍ନ କଟକ-ଶୋଭିନୀ ତେଣୁ ବର୍ଣ୍ଣିତ ଅଛି ।

---

**ଶବ୍ଦାର୍ଥ** । ଧପଟେ—ଝଟିତି, ଦଉଡ଼ି । ଲମ୍ପଟ—ଅତି ଉତ୍ସୁକ, ବ୍ୟଗ୍ର । **କଟକ—ବଳୟ,** ଚୂଡ଼ୀ । ପରମକପଟିଶେଖର—ଶ୍ରେଷ୍ଠ ମାୟାଧର । ଅଙ୍କ—କୋଳ । ହରି—କୃଷ୍ଣ । ହରିଣନେତ୍ରା—ଚଞ୍ଚଳନୟନା । ହୁରି —କୋଳାହଳ, ଅପବାଦ । ବହରିଗଲା—ପ୍ରଚାର ହେଲା ।

ମୋଦାଶ୍ରୁ ବରଷା କରି ପଙ୍କ ରସା
କଲେ ସଙ୍ଗୀ ଯୋଷା-ନିକର
କି ବିକଳ ଶୋକ କରେ ଏ ସକଳ
ଲୋକ ହୃଦେ କଲା ସଞ୍ଚାର
କୁଣ୍ଡିନ
ଈନ ଭଜିଲେ ତୃପତି କି
ଚେଦୀଶଜ ଲଜ୍ଜା ଭେଦ କରି ମଜ୍ଜା
ଖେଦ ଘେନଗଲା କ୍ଷିତିକି ।୫୦।

**ଅନ୍ୱୟ**—ସଙ୍ଗୀ ଯୋଷା-ନିକର ମୋଦାଶ୍ରୁ ବରଷା କରି ରସା ପଙ୍କ କଲେ । (ଏହା ଦେଖି) ଲୋକ ହୃଦେ ସଞ୍ଚର କଲା, ଏ ସକଳ କି ବିକଳ ଶୋକ କରେ ? କୁଣ୍ଡିନ-ଈନ ତୃପତିକି ଭଜିଲେ ! ଚେଦୀଶଜ ଲଜ୍ଜା ମଜ୍ଜା ଭେଦ କରି (ତାକୁ) କ୍ଷିତିକି ଖେଦ ଘେନିଗଲା ।

**କଥା**—ରୁକ୍ମିଣୀଙ୍କ ପ୍ରିୟତମା ସଖୀମାନେ ଆନନ୍ଦାଶ୍ରୁ ବର୍ଷା କରି ଦାଣ୍ଡମାଟି କାଦୁଅ କରିଦେଲେ । ଏହା ଦେଖି ଲୋକମାନଙ୍କ ହୃଦୟରେ ଏ ଭାବନା ଜାତହେଲା, ସତରେ ଏସବୁ କି ବିକଳରେ ଶୋକ କରୁ ନାହାନ୍ତି ! କୁଣ୍ଡିନ-ରାଜା ଶ୍ରୀକୃଷ୍ଣଙ୍କ ସନ୍ତୋଷ ଲାଭ କଲେ । ଶିଶୁପାଳର ଅନ୍ତଃକରଣରେ ଲଜ୍ଜା ଭେଦ କରି ତା ରାଜ୍ୟକୁ ଘଉଡ଼ାଇ ନେଇଗଲା ।

---

ଶବ୍ଦାର୍ଥ । ସଙ୍ଗୀ ଯୋଷା—ସାଥି ସଖୀମାନେ । ନିକର—ସମୂହ । ମୋଦାଶ୍ରୁ—ଆନନ୍ଦାଶ୍ରୁ । ରସା—ପୃଥିବୀ । ସଞ୍ଚର—ଜାତ । ଈନ—ପତି, ପ୍ରଭୁ । କୁଣ୍ଡିନ-ଈନ—ଶ୍ରୀକୃଷ୍ଣ । ଚେଦୀଶଜ—ଚେଦୀରାଜତନୟ ଶିଶୁପାଳ । ଖେଦ—ଘଉଡ଼ାଇ । ମଜ୍ଜା—ଅନ୍ତଃକରଣ ।

**ରୁକ୍ମୀ ଶରଘଟ୍ଟା ଜ୍ୟୈଷ୍ଠାତପ ଚେଷ୍ଟା**
**ଚହଟ୍ଟାଇଲା ଅତିଶୟ୍ୟ**
**ବରଷା ରଙ୍ଗରେ ଶର ଶାରଙ୍ଗରେ**
**ସର୍ଜି ଶାରଙ୍ଗୀ କଲେ କ୍ଷୟ୍ୟ**
**ଉଦ୍ଧ୍ୱର୍ଗ**
**ହୋଇ ବସିଲା ହରି ଯାନେ**
**ଷଡ଼ ଋତୁକୁ ବାଇ ପରି ଗାଇଲା**
**ସେ ଅସଡ଼ ଅତି ଅଜ୍ଞାନେ ।୫୧।**

**ଅନ୍ୱୟ**—ରୁକ୍ମୀ ଜ୍ୟୈଷ୍ଠାତପ ଚେଷ୍ଟା ଶରଘଟ୍ଟା ଅତିଶୟ୍ୟ ଚହଟ୍ଟାଇଲା । ଶାରଙ୍ଗୀ ଶାରଙ୍ଗରେ ଶର ସର୍ଜି ବରଷା ରଙ୍ଗରେ (ତାହା) କ୍ଷୟ୍ୟକଲେ । (ସେ) ହରି ଯାନେ ଉଦ୍ଧ୍ୱର୍ଗ ହୋଇ ବସିଲା । ସେ ଅସଡ଼ ଅତି ଅଜ୍ଞାନେ ବାଇ ପରି ଷଡ଼ ଋତୁକୁ ଗାଇଲା ।

**କଥା**—ରୁକ୍ମିଣୀଙ୍କ ସୋଦର ରୁକ୍ମୀର ଜ୍ୟେଷ୍ଠ ମାସର ଉଗ୍ର କିରଣ ସମାନେ ତୀକ୍ଷ୍ଣଶରସମୂହ ଅତିଶୟ୍ୟ ଚହଟି ଆସିଲା । କୃଷ୍ଣ ନିଜର ଶାରଙ୍ଗ ଧନୁରେ ଶର ଯୋଖି ବର୍ଷାକାଳୀନ ବାରିଧାରା ସଦୃଶ ତାହା କ୍ଷୟ୍ୟ କଲେ । ସେ (ଶେଷକୁ ବାଧ ହୋଇ) ନନ୍ଦିଘୋଷ ରଥରେ ଉର୍ଦ୍ଧ୍ୱଙ୍କ ଉଠି ବସିଲା । ସେ ମୂର୍ଖ ଅତି ଅଜ୍ଞାନ ହୋଇ ବାୟା ପରି ଷଡ଼ଋତୁମାନଙ୍କ ନାମ ଘେନି କହି ବସିଲା ।

---

ଶବ୍ଦାର୍ଥ । ରୁକ୍ମୀ—ରୁକ୍ମିଣୀଙ୍କ ସୋଦର । ରଙ୍ଗରେ—ନୃତ୍ୟରେ । ଉଦ୍ଧ୍ୱର୍ଗ—ଊର୍ଦ୍ଧ୍ୱଙ୍କି ଉଠି । ଚେଷ୍ଟା—ପ୍ରକୃତ । ସର୍ଜି—ଯୋଖି । ଘଟ୍ଟା—ସମୂହ । ଶାରଙ୍ଗୀ—ଶାରଙ୍ଗ ଧନୁର୍ଧାରୀ କୃଷ୍ଣ । ଶାରଙ୍ଗ—କୃଷ୍ଣଙ୍କ ଧନୁ । ହରିଯାନ—ନନ୍ଦିଘୋଷ ରଥ । ଅସଡ଼—ଅଶିଷ୍ଟ, ଅଭଦ୍ର, ଅଶିକ୍ଷିତ । ବାଇ—ବାତୁଳ ।

ହିମ ଲୋମ ପତି, ପୁତ୍ର ନୋହି କ୍ଷିତୀ-
ଶ୍ୱର ପୁତ୍ରୀ-କର ଧଇଲୁ
ମୋ ଗର୍ବ ଯଶ ଶର୍ବରୀଶ ଦୀପ୍ତିକି
ଶରଦ ଲେଉଟାଇ ହେଲୁ
ଆଜନ୍ମୁ
ବହୁଛୁ ଧନୁ ଭାରତୀକି
ଏ ବାର ବର୍ଣ୍ଣେ ଏକାର ଧରେ ଧର
ଯେ ସେ ତୁ ନ କଲୁ ଭୀତକି । ୫୨ ।

**ଅନ୍ୱୟ**—(ରେ କୃଷ୍ଣ!) (ତୁ) ହିମ ଲୋମ (ମନ୍ତ୍ରୀ) ପତି ପୁତ୍ର ନୋହି କ୍ଷିତୀଶ୍ୱର ପୁତ୍ରୀ କର ଧଇଲୁ । ମୋ ଗର୍ବ ଯଶ ଶର୍ବରୀଶ ଦୀପ୍ତିକି ଶରଦ ଲେଉଟାଇ (ଦରଶ) ହେଲୁ । (ମୁଁ) ଆଜନ୍ମୁ ଧନୁ ଭାରତୀକି ବହୁଛୁ । (ତୁ) "ଆଜନ୍ମୁ ବହୁଛୁ ଧନୁ ଭାରତୀ କି" ଏ ବାର ବର୍ଣ୍ଣେ 'ଧ'ରେ ଏକାର (ଦେଲେ ଯାହା ହେବ) ଆଜନ୍ମୁ ଧେନୁ ଭାରତୀ ଧର ଯେ ସେ ତୁ (ମୋତେ) ଭୀତକି ନ କଲୁ ।

(ହିମ, ଶରଦ ଏଥିରେ ପ୍ରକାଶିତ ହେଲା)

**କଥା**—ରୁକ୍ମୀ କହିଲା—ରେ କୃଷ୍ଣ ! ତୁ ରାଜପୁତ୍ର ନୋହି ରାଜକୁମାରୀର ପାଣି ଗ୍ରହଣ କଲୁ । ଏତଦ୍ଦ୍ୱାରା ମୋର 'ଗର୍ବଯଶ-ଚନ୍ଦ୍ର-ଜ୍ୟୋତ୍ସ୍ନାକୁ 'ଅମାବାସ୍ୟା ପରି ନାଶକଲୁ । ମୁଁ "ଆଜନ୍ମୁଁ ଧନୁ ଭାରତୀ (ତୂଣୀର)କୁ ବହୁଛୁ ।" ଏହି ବାରଟି ବର୍ଣ୍ଣ ମଧ୍ୟରୁ 'ଧ'ରେ ଏକାର ଦେଲେ ଯାହା ହେବ ତୁ ଆଜନ୍ମୁ ଧେନୁ ଶବ୍ଦମାନଙ୍କରେ ଅଭ୍ୟସ୍ତ ଅଛୁ । ଗାଈଚରା ଗଉଡ଼ ହୋଇଛୁ । ତେଣୁ ଆଜନ୍ମୁଁ ଧେନୁ 'ଭାରତୀ' (ଶବ୍ଦ) ଧର ଯେ ସେ ତୁ ମୋତେ ଟିକିଏ ଭୟ ନ କଲୁ ?

ଶବ୍ଦାର୍ଥ । ଲୋମ-ବିପରୀତ । ହିମ—ଋତୁ ବିଶେଷ । ହିମ-ଲୋମ—ମନ୍ତ୍ରୀ । କ୍ଷିତୀଶ୍ୱରପୁତ୍ରୀ-ରାଜକୁମାରୀ । ଶର୍ବରୀଶ—ଚନ୍ଦ୍ର । ଶରଦ—ଋତୁ ବିଶେଷ । ଶରଦ ଲେଉଟାଇଲେ—'ଦରଶ'—ଅମାବାସ୍ୟା । ଭାରତୀ—ଶରତୂଣା । ଭାରତୀ—ବଚନ, କଥା ।

**ଶିଶିର, ବସନ୍ତ, ଗ୍ରୀଷମ, ବରଷା,**
**ଆଦ୍ୟ ବର୍ଣ୍ଣ ମୋଡ଼ି ପାରଇ**
**ଯାଗ-ଛାଗ ପର କରନ୍ତି ନିଷେଧ**
**ଅଛୁ ଷଣ୍ଢାରକ ନ ଛୁଇଁ**
**ପବିତ୍ର**
**ହେବା ଛୁଇଁବା ଯେବେ ଆମ୍ଭେ**
**ହସି ହୃଷିକେଶ କାଟି ଚୁଟି କଣ**
**ବନ୍ଧନ କଲେ ରଥ ସ୍ତମ୍ଭେ । ୫୩ ।**

**ଅନ୍ୱୟ**—(ମୁଁ) ଶିଶିର, ବସନ୍ତ, ଗ୍ରୀଷମ, ବରଷା (ଏମାନଙ୍କର) ଆଦ୍ୟ-ବର୍ଣ୍ଣ (ଶିବଗ୍ରୀବ) ମୋଡ଼ିପାରଇ । ଯାଗ-ଛାଗ ପର ନିଷେଧ କରନ୍ତି । (କିନ୍ତୁ) ଅଛୁ, ଷଣ୍ଢାରକ ନ ଛୁଇଁ ।

ହସି ହୃଷିକେଶ (କହିଲେ) ଯେବେ ଆମ୍ଭେ (ତୋତେ) ଛୁଇଁବା, ପବିତ୍ର ହେବା । (ଏହା କହି) (ତା) ଚୁଟି କଣ କାଟି ରଥସ୍ତମ୍ଭେ ବନ୍ଧନ କଲେ ।

**କଥା**—(ରେ କୃଷ୍ଣ) ! **ଶି**ଶିର, **ବ**ସନ୍ତ, **ଗ୍ରୀ**ଷମ, **ବ**ରଷା ଏମାନଙ୍କର ଆଦ୍ୟବର୍ଣ୍ଣ ଯେ ଶିବଗ୍ରୀବ—ଅର୍ଥାତ୍ ଶିବଙ୍କ ପରି ମହା ତେଜସ୍ୱୀଙ୍କ ବେକ ମୁଁ ମୋଡ଼ିପାରେ । ଯାଗର ଛେଳି ପରି ତୋତେ ସମୂଳେ ନାଶ କରନ୍ତି । କିନ୍ତୁ ରେ ଷଣ୍ଢାର ! କଥା ଅଛୁ ଗୋରୁମରାକୁ ଛୁଇଁବା ଉଚିତ ନୁହେଁ । ଏହା ଶୁଣି ଶ୍ରୀକୃଷ୍ଣ କହିଲେ, ଯେବେ ଆମ୍ଭେ ତତେ ଛୁଇଁବା, ତେବେ ପବିତ୍ର ହୋଇଯିବା, ଏହା କହି ତାର ଚୁଟି, କଣ କାଟି ତାକୁ ରଥଖୁମ୍ବରେ ବାନ୍ଧିଦେଲେ ।

---

**ଶବ୍ଦାର୍ଥ** । ଶିବଗ୍ରୀବ—ଶିବଙ୍କ ତୋଳି । ନିଷେଧ—ସମୂଳେ ନାଶ, ହତ୍ୟା । ଷଣ୍ଢାର—ଷଣ୍ଢ ନାମକ ଦୈତ୍ୟର ଅରି ଶ୍ରୀକୃଷ୍ଣ । ଷଣ୍ଢ—ଟୋ କାଠିଆ ପୁରୁଷ । ଷଣ୍ଢାର—ଗୋରୁମରା । ସ୍ତମ୍ଭ—ଖୁଣ୍ଟି ।

ଏକାଳେ ସବଳ ହୋଇକରି ବଳ
ସେଠାରେ ହୋଇଲେ ପ୍ରବେଶ
ଚିତ୍ରଭାନୁ ପରି ନେତ୍ରଯୁଗ କରି
ହରିଠାରେ ହେଲେ ଆବେଶ
ବନ୍ଧୁରେ
ବନ୍ଧ୍ୟ ଏ କରିଛ ବନ୍ଧିତ
ଅଚ୍ୟୁତଙ୍କୁ ନିନ୍ଦି ଚ୍ୟୁତ କଲେ ବନ୍ଦି
ତାହାର କାଳନ୍ଦୀ-ଅହିତ । ୫୪ ।

**ଅନ୍ୱୟ**—ଏକାଳେ ସବଳ ହୋଇକରି 'ବଳ' ସେଠାରେ ପ୍ରବେଶ ହୋଇଲେ । ନେତ୍ରଯୁଗ ଚିତ୍ରଭାନୁ ପରି କରି ହରିଠାରେ ଆବେଶ ହେଲେ । ବନ୍ଧ୍ୟ ଏ ବନ୍ଧୁରେ ବନ୍ଧିତ କରିଛ ? ଅଚ୍ୟୁତଙ୍କୁ ନିନ୍ଦ କାଳନ୍ଦୀ-ଅହିତ ତାହାର ବନ୍ଧ (ରୁ) ଚ୍ୟୁତ କଲେ ।

**କଥା**—ଏହି ସମୟରେ ସସୈନ୍ୟରେ ବଳଦେବ ସେଠାରେ ପ୍ରବେଶ ହେଲେ । ରୁକ୍ମୀ ବନ୍ଦୀ ଥିବାର ଦେଖି ନେତ୍ର-ଯୁଗଳ ଅଗ୍ନି ପରି କ୍ରୋଧବର୍ଣ୍ଣ କରି କୃଷ୍ଣଙ୍କ ଉପରେ କ୍ରୋଧ ପ୍ରକାଶ କଲେ । କହିଲେ—ଆମର ବନ୍ଧମାନ୍ୟ ଏ ବନ୍ଧୁଙ୍କୁ ବନ୍ଦୀ କରିଛ ? ଏହା କହି ଅଚ୍ୟୁତଙ୍କୁ ନିନ୍ଦାକରି ବଳରାମ ତାଙ୍କର ବନ୍ଧରୁ ମୋଚନ କଲେ ।

---

ଶବ୍ଦାର୍ଥ । ଆବେଶ—ଆବେଶନ, କୋପ । ସବଳ—ସୈନ୍ୟ ସହିତ । ବଳ—ସୈନ୍ୟ, ବଳରାମ । କାଳନ୍ଦୀ-ଅହିତ—ବଳରାମ (ସେ ଲଙ୍ଗଳରେ ଯମୁନାକୁ ଛିନ୍ନ ବିଚ୍ଛିନ୍ନ କରିଥିଲେ) । **ଚିତ୍ରଭାନୁ**—ଅଗ୍ନି । ଚ୍ୟୁତ—ମୋଚନ, ମୁକ୍ତ ।

**ଜୟ ଶଙ୍ଖ ଦେଇ ଦୁର୍ଜ୍ଜୟ ଦ୍ୱିଜଭାଇ**
**ଉଡ଼ାଇ ବଡ଼ାଇ-ପତାକା**
**ବ୍ୟଗ୍ର ଗତ୍ୟାରେ ଅଗ୍ରସର କରାଇ**
**ଗତିକ ମିଳିଲେ ଦ୍ୱାରକା**
**ଦର୍ଭରେ**
**ବିଦର୍ଭଜା-କର ମାଧବ**
**ବନ୍ଧନ-ମହ ମହିମା ବହିବାରେ**
**ସେ ମହୀ ହୋଇଲା ସାଧବ । ୫୫ ।**

**ଅନ୍ୱୟ**—ଦୁର୍ଜ୍ଜୟ ଦ୍ୱିଜଭାଇ ଜୟ ଶଙ୍ଖ ଦେଇ ବଡ଼ାଇ ପତାକା ଉଡ଼ାଇ ଗତିକ ବ୍ୟଗ୍ର ଗତ୍ୟାରେ ଅଗ୍ରସର କରାଇ ଦ୍ୱାରକା ମିଳିଲେ । (ତହିଁ) ଦର୍ଭରେ ବିଦର୍ଭଜା-କର ମାଧବ ବନ୍ଧନ-ମହ ମହିମା ବହିବାରେ ସେ ମହୀ ସାଧବ ହୋଇଲା ।

**କଥା**—ଦୁର୍ଜ୍ଜୟ କୃଷ୍ଣ ବଳରାମ ଦୁହେଁ ଜୟ ଶଙ୍ଖ ବଜାଇ ଗୌରବାନ୍ୱିତ ପତାକା ଉଡ଼ାଇ ଅତ୍ୟନ୍ତ ବ୍ୟଗ୍ର ଗତିରେ ଅଗ୍ରସର ହୋଇ ଦ୍ୱାରକାରେ ଉପସ୍ଥିତ ହେଲେ । ସେଠାରେ କୁଶ ଗଣ୍ଠିରେ ବିଦର୍ଭଜା ରୁକ୍ମଣୀଙ୍କ ପାଣି ସହିତ ମାଧବଙ୍କ ପାଣି ବନ୍ଧନ ଉତ୍ସବ ହେବା ଯୋଗୁଁ ସେ ପୃଥ୍ୱୀ ଧନ୍ୟ ହୋଇଗଲା ।

---

ଶବ୍ଦାର୍ଥ । ମହ—ଉତ୍ସବ । ବହିବାରେ—ବହନ କରିବାରେ । ମହୀ—ପୃଥ୍ୱୀ । ସାଧବ—ଧନ୍ୟ, ମହାନ୍ । ଦୁର୍ଜ୍ଜୟ—ଯାହାକୁ ଜୟ କରିବା ଅତି କଷ୍ଟପ୍ରଦ । ଦର୍ଭ—କୁଶ ।

**ମଧୁଶଯ୍ୟା ବାସ ସୌଚିକ-ସଦୃଶ**
**ନବବଧୂ ମଧୁସୂଦନେ**
**ହୃଦପଟ୍ଟ ଥିଲା ଏକ କରିଦେଲା**
**ଶୁଚିରସ ସୂଚୀ ଭେଦନେ**
**ପୂର୍ବକୁ**
**ଖର୍ବ କରିଦେଲା ଶର୍ବର**
**ସର୍ବ ପର୍ବତ- ସାର୍ବଭୌମ-ତନୁଜା**
**ତନୁ ଯାବ ହେବା ପ୍ରକାର ।୫୭।**

**ଅନ୍ୱୟ**—ମଧୁଶଯ୍ୟା ବାସ ସୌଚିକ-ସଦୃଶ (ହୋଇ) ଶୁଚିରସ ସୂଚୀ ଭେଦନେ ନବବଧୂ, ମଧୁସୂଦନେ (ଯେଉଁ) ହୃଦପଟ୍ଟ ଥିଲ (ତାହା) ଏକ କରିଦେଲା । (ଯଦ୍ୱାରା) ସର୍ବ (ମହାଦେବ) ପର୍ବତ-ସାର୍ବଭୌମ-ତନୁଜା-ତନୁ ଯାବ ହେବା ପ୍ରକାର ପୂର୍ବ ବର୍ତ୍ତରକୁ ଖର୍ବ କରିଦେଲା ।

**କଥା**—ମଧୁଶଯ୍ୟା ବାସ ଦରଜୀ ପ୍ରାୟ ହୋଇ ବିଶୁଦ୍ଧ ପ୍ରୀତିରସ ରୂପକ ସୂଚୀ ଭେଦନଦ୍ୱାରା ନବବଧୂ ରୁକ୍ମିଣୀ ଓ ମଧୁସୂଦନ କୃଷ୍ଣଙ୍କର ଯେଉଁ ଦୁଇଟି ହୃଦପଟ୍ଟ ଥିଲା, ତାହା ସିଇଁ ଗୋଟିଏ କରିଦେଲା । ଏ ଦୁହେଁ ଏତେ ଜଡ଼ିଗଲେ ଯେ ଶିବଙ୍କ ସହିତ ପର୍ବତଶ୍ରେଷ୍ଠ ହିମବାନ୍-ତନୁଜା ଗୌରୀଙ୍କର ଅଙ୍ଗ ଅର୍ଦ୍ଧନାରୀଶ୍ୱର ଭାବରେ ଯେତେ ଯାବଦେଇ ମିଳିଯାଇଥିଲା ସେ ପ୍ରକାର ପୁରାତନ ବର୍ତ୍ତରକୁ ଖର୍ବ କରିଦେଲା ।

---

**ଶବ୍ଦାର୍ଥ । ମଧୁଶଯ୍ୟା ବାସ—ବରକନ୍ୟାଙ୍କର ପ୍ରଥମ ମିଳନ ସ୍ଥାନ । ସୌଚିକ—ଦରଜୀ । ନବବଧୂ—ନୂଆବୋହୂ, ରୁକ୍ମିଣୀ । ପଟ୍ଟ—ବସ୍ତ୍ର । ଶୁଚିରସ—ବିଶୁଦ୍ଧ ପ୍ରୀତିରସ । ସର୍ବ—ଶିବ । ପର୍ବତ ସାର୍ବଭୌମ—ଗିରିସମ୍ରାଟ୍ ହିମବାନ୍ । ହିମବାନ-ତନୁଜା—ପାର୍ବତୀ । ଯାବ—ମିଳିଯିବା । ପୂର୍ବ ବର୍ତ୍ତର—ପୁରାତନ ଆଲୋଚନା । ଖର୍ବ—ନ୍ୟୂନ ।**

**ଯେଉଁ ଉତ୍ସବେ ହରମୁଖ ସୁଷମା**
**ରମା ପଞ୍ଝାଙ୍ଗୁଳ ଦେଖାଇ**
**ଫୁଲଝରି ଛଳେ ଡାକନ୍ତି ପାପୀଙ୍କି**
**ଉଦ୍ଧାରଧନ ଦେବା ପାଇଁ**
**ସୁମରି**
**ମନେ ତା ଗ୍ରନ୍ଥକାର ସଦା**
**ପୁରଷ୍ଟାଚଳକୁ ଜିଣି କୋଟି ଗୁଣେ**
**ପ୍ରମୋଦ କରିଅଛୁ ଗଦା ।୫୭।**

**ଅନ୍ୱୟ**—ଯେଉଁ ଉତ୍ସବେ ହରମୁଖ-ସୁଷମା-ରମା ପଞ୍ଝାଙ୍ଗୁଳ ଦେଖାଇ ଫୁଲଝରି ଛଳେ ପାପୀଙ୍କି ଉଦ୍ଧାର-ଧନ ଦେବା ପାଇଁ ଡାକନ୍ତି, (ଏବଂ) ପୁରଷ୍ଟା-ଚଳକୁ କୋଟିଗୁଣେ ଜିଣି ପ୍ରମୋଦ ଗଦା କରିଅଛି, ତା ଗ୍ରନ୍ଥକାର ସଦା ମନେ ସୁମରି ( ଏ ଗ୍ରନ୍ଥ ରଚନା କଲି ) ।

**କଥା**—ଯେଉଁ ଉତ୍ସବରେ ହରିଙ୍କ ମୁଖ ସୁଷମା-ଲକ୍ଷ୍ମୀଠାକୁରାଣୀ, ନିଜର ପଞ୍ଝାଙ୍ଗୁଳି ଦେଖାଇ ଫୁଲଝରି ବ୍ୟାଜରେ ପାପୀମାନଙ୍କୁ ମୁକ୍ତି ଧନ ଦେବା ଲାଗି ଡାକନ୍ତି ଏବଂ ମେରୁ ପର୍ବତକୁ କୋଟି ଗୁଣରେ ଜିଣି ଯେଉଁ ଉତ୍ସବରେ ସୁଖମାନ ଗଦାହୋଇ ଥାଏ ସେହି ଲକ୍ଷ୍ମୀନାରାୟଣ ଭେଟକୁ ଗ୍ରନ୍ଥକାର ସଦା ମନରେ ସ୍ମରଣ କରି ଏ ଗ୍ରନ୍ଥ ରଚନା କଲି ।

---

ଶବ୍ଦାର୍ଥ । ହରମୁଖ—ଜଗନ୍ନାଥଙ୍କ ବିଶାଳ ମୁଖ । ହରମୁଖ ସୁଷମା—ଜଗନ୍ନାଥଙ୍କ ବିଶାଳ ମୁଖ ଯେଉଁ ରୂପସୀଙ୍କ ଯୋଗୁଁ ସୁଷମିତ ହୁଏ, ଲକ୍ଷ୍ମୀ ଠାକୁରାଣୀ । ଫୁଲଝରି—ଲକ୍ଷ୍ମୀ-ନାରାୟଣ ଭେଟରେ ଫୁଲଝରି ଲକ୍ଷ୍ମୀଠାକୁରାଣୀଙ୍କ ହସ୍ତରେ ଥାଏ । ସେ ଉତ୍ସବରେ ସେହି ଫୁଲ ପାଇବାକୁ ପାପୀମାନେ ବ୍ୟାକୁଳ ହୋଇଥାନ୍ତି । ଉଦ୍ଧାର—ମୁକ୍ତ । ପୁରଷ୍ଟାଚଳ—ମେରୁଗିରି । ପ୍ରମୋଦ—ସୁଖ ।

# ରାଘବ ବିଳାସ

## ପ୍ରଥମ ଛାନ୍ଦ

**ରାମକେଶରୀ ବୃତ୍ତରେ** ଦ୍ୱାଦଶ ପଦରେ ଏହି ଛନ୍ଦ ସଂପୂର୍ଣ୍ଣ ହୋଇଛି । ରାମଚରିତର ଚୁମ୍ବକ ବିବରଣ ଯଦୁମଣି ଅତି ରମଣୀୟ ଭାବରେ ଏବଂ କବିତ୍ୱ ସଂପନ୍ନ ଭାଷାରେ ରଚନା କରି ଅନନ୍ୟ କରିପାରିଛନ୍ତି ।

ବ୍ରାହ୍ମଣମାନଙ୍କର ପ୍ରସନ୍ନତା ଲାଗି ସେ ରାଘବ ବିଳାସ ରଚନା କରିବା କଥା କହିଛ ଅଛି । କିନ୍ତୁ କେହି କେହି ରାଜା ବିନାୟକଙ୍କ ମୃତ୍ୟୁ ପରେ ସେ ଏହା ରଚନା କରିଥିଲେ ବୋଲି ଆଶଂକା କରିଥାନ୍ତି । କିନ୍ତୁ ଯେପରି ମନେ ହୁଏ ପ୍ରଥମ ସିଦ୍ଧାନ୍ତଟି ସତ୍ୟ ଅଟେ ।

'କଲ୍ପେ କଳ୍ପତରୁ ଭଜିଲି' ଏହି ପ୍ରୟୋଗରୁ ସେ ବହୁକାଳ କଳ୍ପତରୁଙ୍କୁ ଭଜିବା କଥା ଯେ ଲେଖିଛନ୍ତି—

ରଚନାଟି ୧୮୧୭ ରେ ଲେଖାଗଲେ ତାଙ୍କୁ ସେତେବେଳକୁ ବୟସ ୩୬ ବର୍ଷ ହୋଇଥିବା ସତ୍ୟ ହେତୁ ପୁଣି ସେ ପୁତ୍ର ନଷ୍ଟହେବାରେ ଅଧୀର ହେତୁ ଏପରି ନିଜକୁ ବହୁକାଳର ବୋଲି ଚିତ୍ରଣ କରିବା ଅଯୁକ୍ତିଜନକ ହେଉନ ।

ସେ କାଳରେ ମଧ୍ୟ ଆୟୁ ୪୦ ପାର ହୋଇଗଲେ ବୃଦ୍ଧ ବୋଲି ଧରାଯାଉଥିଲା । କାରଣ ଲୋକେ ବିବାହ କରୁଥିଲେ ୧୪।୧୫ ବର୍ଷ ବେଳେ । ଯଦୁମଣି ମଧ୍ୟ ୨୦ ବର୍ଷରେ ବିବାହ କରି ସେତେବେଳକୁ ଅର୍ଥାତ୍ ୩୬ ବର୍ଷ ବେଳକୁ ଦୀର୍ଘ ୧୪ ବର୍ଷ ଘର କରିଥିଲେ ।

ତେଣୁ ରାଘବ ବିଳାସ ତାଙ୍କର ପ୍ରଥମ ରଚନା ବୋଲି ସ୍ୱୀକାର କରିବାକୁ ହେବ । ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରରେ ସେ ନିଜର ଯେତେ ପରିମାଣରେ ଦେଖାଇ ପାରିଛନ୍ତି ଏହି ରାଘବ ବିଳାସରେ ତାଙ୍କର ପୂର୍ବଜ ଭଞ୍ଜ, ତ୍ରିବିକ୍ରମ, ମାନଧାତା ଆଦିଙ୍କର ପଥରେ ସେ ଧୀର ପଦକ୍ଷେପ କରିଛନ୍ତି ମାତ୍ର ।



# ରାଘବ ବିଳାସ

## ପ୍ରଥମ ଛାନ୍ଦ

ରାଗ—ରାମକେରୀ

**ପ୍ରଥମୁଁ ବନ୍ଦଇ ଭୂଦେବ—**
**ଅଂଘ୍ରି ଅଘାରି ବକ୍ଷେ**
**ସପତ ସାଗର ଶୋଷକ**
**ବଂଶ, ଧ୍ୱଂସି ଅଲକ୍ଷେ୍ୟ । ୧ ।**
**ବନ୍ଦେ ରସାସୁତା-ପତିର**
**ଧରାଧର-ଶୟନ**
**ନିର୍ଜରୀ-ପରବିନାଶନ**
**ସଜ୍ଜନ ପାଳନ । ୨ ।**

**ଅନ୍ୱୟ**—ପ୍ରଥମୁଁ ସପତ ସାଗର ଶୋଷକ, ଅଲକ୍ଷେ ଯଦୁବଂଶ ଧ୍ୱଂସି, (ଯେଉଁ) ଭୂଦେବ (ମାନଙ୍କର)ଅଂଘ୍ରି ଅଘାରି ବକ୍ଷେ (ଶୋଭାପାଏ),(ତାହା)ବନ୍ଦଇ ।୧। ରସା-ସୁତା-ପତିର ନିର୍ଜରୀ-ପର-ବିନାଶନ, ସଜ୍ଜନ ପାଳନ, ଧରାଧର-ଶୟନ ବନ୍ଦେ ।୨।

**କଥା**—ପ୍ରଥମରୁ ସପ୍ତ ସମୁଦ୍ର ଶୋଷଣକାରୀ ଅଗସ୍ତିଙ୍କ ବଂଶଧର, ଅଜସ୍ରାତ୍ ଯଦୁବଂଶର ଧ୍ୱଂସକାରୀ ଯେଉଁ ବ୍ରାହ୍ମଣମାନଙ୍କର ପାଦ ବିଷ୍ଣୁଙ୍କ ବକ୍ଷରେ ଶୋଭାପାଏ, ତାହା ବନ୍ଦନା କରେ ।

ସୀତାପତି ରାମଚନ୍ଦ୍ରଙ୍କର ଅସୁର ବିନାଶକାରୀ ଓ ସଜ୍ଜନ ପାଳକ ଅନନ୍ତ ଶୟନ ମୂର୍ତ୍ତିଙ୍କୁ ବନ୍ଦନା କରୁଅଛି ।

**ଆଲୋଚନା**—ବ୍ରାହ୍ମଣମାନଙ୍କୁ ଲାଞ୍ଛିତ କରିବାରୁ କବି ପୁତ୍ରଶୋକରେ ଅଧୀର ଥାଇ ଏ କାବ୍ୟ ଆରମ୍ଭ କରିଥିଲେ । ତେଣୁ ସେହିମାନଙ୍କର ନିପୁଣ ପ୍ରଶଂସା କରିଥିଲେ । ତୁଳସୀ ରାମଚରିତ ମାନସରେ ମଧ୍ୟ ଅଛି 'ପ୍ରଥମ ବନ୍ଦହୁଁ ଭୂଦେବ ଚରଣା' । ବ୍ରାହ୍ମଣ ଜାତିର ଯେଉଁ ତିନୋଟି ବିଶେଷତ୍ୱ, ବିଶ୍ୱପ୍ରସିଦ୍ଧ କବି ତାହା ଗୋଟିଏ କ୍ଷୁଦ୍ର ପଦରେ ଦେଇ ତାଙ୍କ କୃତିତ୍ୱର ନିପୁଣ ନିଷ୍ଠା ଦେଖାଇଛନ୍ତି ।

ପୁରାଣରେ ରାବଣ ଅତ୍ୟାଚାରରେ ବ୍ୟଥିତ ଦେବତାମାନେ ଅନନ୍ତ ଶୟନରେ ଥିବା ବିଷ୍ଣୁଙ୍କ ଶରଣ ପଶିବା ବର୍ଣ୍ଣିତ ଅଛି । ତେଣୁ ରାମଚନ୍ଦ୍ରଙ୍କୁ ତାଙ୍କର ଜନ୍ମଗୁଣ, ସଜ୍ଜନ ପାଳକଗୁଣ ଏବଂ ଅସୁର ବିନାଶକଗୁଣ ଏହି ତ୍ରିଗୁଣରେ ବନ୍ଦନା କରିଅଛନ୍ତି ।

---

ଶବ୍ଦାର୍ଥ । ଭୂଦେବ—ବ୍ରାହ୍ମଣ । ଅଂଘ୍ରି—ପାଦ । ଅଘାରି—ବିଷ୍ଣୁ । ଅଘ—ଅସୁର ବା ପାପର ଶତ୍ରୁ । ସପତ ସାଗର ଶୋଷକ—ଅଗସ୍ତି ଋଷି । ଅଲକ୍ଷେ୍ୟ—ଅଜସ୍ରାତ । ରସା—ଧରା । ରସାସୁତା—ସୀତା । ଧରାଧର—ଅନନ୍ତ । ନିର୍ଜରୀ—ଦେବତା । ପର—ଶତ୍ରୁ । ସନ୍ଥ—ସାଧୁ, ସଜ୍ଜନ ।

ଗରିଷ୍ଠ ଦଶା ଏ ରାଷ୍ଟ୍ରର
କଷ୍ଟ ଫେଡ଼ ଦୁସ୍ତର
ଚକ୍ର ପେଷି ଶକ୍ର ବାହନ—
ଭ୍ରାନ୍ତ-ଅରି ସଂହାର । ୩ ।
ଅର୍କବଂଶୁ ହୋଇ ଉଦ୍‌ଭବ
ଛଳେ ଶକ୍ର-କୁମର
ବାଳାର୍କ-ନନ୍ଦନ ଆର୍ତ୍ତିକୁ
ନାଶ କରି ସତ୍ୱର । ୪ ।

**ଅନ୍ୱୟ**—ଏ ରାଷ୍ଟ୍ରର ଗରିଷ୍ଠ ଦଶା (ଉପସ୍ଥିତ) । ଯେପରି ଚକ୍ର ପେଷି ଶକ୍ର-ବାହନ-ଭ୍ରାନ୍ତ-ଅରି ସଂହାର (କରିଥିଲ, ସେପରି ଏ) ଦୁସ୍ତର କଷ୍ଟ ଫେଡ଼ । (ତୁମ୍ଭେ) ଅର୍କବଂଶୁ ଉଦ୍ଭବ ହୋଇ ଛଳେ ଶକ୍ର-କୁମର ନାଶ କରି ବାଳାର୍କ-ନନ୍ଦନ ଆର୍ତ୍ତିକୁ ସତ୍ୱର (ଦୂର କରିଅଛ) ।

**କଥା**—ଏହି ମହାନ୍ ଉତ୍କଳ ରାଷ୍ଟ୍ରର ଗରିଷ୍ଠ ଦଶା ଉପସ୍ଥିତ ହୋଇଅଛି । ହେ ବିଷ୍ଣୁ ! ଆପଣ ଯେପରି ଚକ୍ର ପ୍ରେରଣ କରି ହସ୍ତୀର ଶତ୍ରୁ ଗ୍ରାହକୁ ସଂହାର କରିଥିଲ ଅର୍ଥାତ୍ ଚକ୍ର ମାରି କୁମ୍ଭୀରଠାରୁ ହସ୍ତୀକୁ ରକ୍ଷିଥିଲ, ସେହିପରି ଏ ରାଜ୍ୟର ଦୁସ୍ତର କଷ୍ଟ ନିବାରଣ କର ।

ସୂର୍ଯ୍ୟବଂଶରୁ ରାମଚନ୍ଦ୍ର ସ୍ୱରୂପ ଜନ୍ମ ହୋଇ ତୁମ୍ଭେ ତ ପୁଣି ଛଳ ଏବଂ କପଟତା ଆଚରଣ କରି ବାଳୀକୁ ନାଶ କରି ସୁଗ୍ରୀବ ଆର୍ତ୍ତିକୁ ଶୀଘ୍ର ଦୂର କରିଅଛ ?

**ଆଲୋଚନା**—ଏପରି ଜଟିଳ ଅବସ୍ଥା ୧୮୧୭ ରେ ଉତ୍କଳ ପ୍ରତି ଆସିଥିଲା ଯେ ତାର ନିବାରଣ ଉପାୟ କେହିହେଲେ ସ୍ଥିର ଠିକ୍ କରିପାରୁ ନ ଥିଲେ । ତେଣୁ କବି କପରି ଛଳ ଓ କପଟଦ୍ୱାରା ରାଷ୍ଟ୍ର ରକ୍ଷା କରାଯିବ ତାହାର ପରାମର୍ଶ ଅଦୃଶ୍ୟ ଦେବତାଙ୍କୁ ମାଗୁଥିଲେ ।

---

ଶବ୍ଦାର୍ଥ । ଶକ୍ର—ଇନ୍ଦ୍ର । ଶକ୍ରବାହନ—ଐରାବତ ହସ୍ତୀ । ଶକ୍ରବାହନ-ଭ୍ରାନ୍ତ—କୁମ୍ଭୀରଦ୍ୱାରା ଆକ୍ରାନ୍ତ ହସ୍ତୀ (ପୁରାଣ ଦ୍ରଷ୍ଟବ୍ୟ) । ଶକ୍ରବାହନ-ଭ୍ରାନ୍ତ-ଅରି—କୁମ୍ଭୀର । ଛଳେ—ଛଳରେ । ଶକ୍ର-କୁମର—ବାଳୀ । ବାଳାର୍କ-ନନ୍ଦନ—ସୁଗ୍ରୀବ ।

ହରୀନ୍ଦ୍ର ନାଶିଣ·ହରକ
ହର ହର ଆସନେ
ହର-ବ-ଭୂଷଣ ମଇନ୍ଦ
ଯେନ ବସି ସଘନେ । ୫ ।
ଅଷ୍ଟନେନ୍ଦ ପାଣି-ଆୟୁଧ
ଦୁହିତାର ବଚ୍ଛେଦେ
ହର ହର ନଗୁଁ ଅଣାଇ
ମେଲ ଅର୍ଣ୍ଣବ ମଧ୍ୟେ । ୬ ।

**ଅନ୍ୱୟ**—(ହେ) ହର ! (ତୁମେ ଭକ୍ତ) ହରୀନ୍ଦ୍ର ନାଶିଣ ହରକ ହର ଆସନେ (ବସାଇଥିଲ) । (ହେ) ହର-ବ-ଭୂଷଣ ! ସଘନେ (ଚେଣ୍ଢୁ) ମଇନ୍ଦ ଯେନ (ସ୍ପିବଥିଲ) ।

ଅଷ୍ଟ ନେନ୍ଦ ପାଣି ଆୟୁଧ-ଦୁହିତାର ବଚ୍ଛେଦେ (ତୁମ୍ଭେ) ହର (ସମୂହ) ନଗୁଁ ହର ଅଣାଇ ଅର୍ଣ୍ଣବ ମଧ୍ୟେ ମେଲ (ଥିଲ) ।

**କଥା**—ହେ ହରଙ୍କ ଅବତାର ରାମ ! ତୁମେ ଭକ୍ତ ବାଳୀକୁ ନାଶ କରି ସୁଗ୍ରୀବକୁ ସିଂହାସନରେ ବସାଇଥିଲ । ହେ ରାମଚନ୍ଦ୍ର ! ନିରନ୍ତର ଚେଣ୍ଢୁ ମଇନ୍ଦ ଯେନ ବସିଥିଲ ।

ବେଦବତୀର ପରବର୍ତ୍ତୀ ରୂପ ସୀତାର ବଚ୍ଛେଦରେ ତୁମ୍ଭେ ବାନରସମୂହ ପର୍ବତ ଉପରୁ ମନେଇଁ କରି ଆଣି ସମୁଦ୍ର ମଧ୍ୟରେ ମେଲଥିଲ ।

**ଆଲୋଚନା**—ପ୍ରସଙ୍ଗକ୍ରମେ କବି ରାମାୟଣ ଲେଖିଥିବାରୁ ସେହି ବର୍ଣ୍ଣନା ଏଥିରେ ଗ୍ରନ୍ଥାରମ୍ଭରେ ଆଂଶିକ ଦେଇଅଛନ୍ତି ।

---

ଶବ୍ଦାର୍ଥ । ହରୀନ୍ଦ୍ର—ବାଳୀ । ହର—ବାନର ଜାତୀୟ ସୁଗ୍ରୀବ । ହର—ବିଷ୍ଣୁରୂପୀ ରାମ । ହର—ସିଂହ । 'ବ-ଭୂଷଣ'—ଚନ୍ଦ୍ରମା । ସଘନେ—ନିରନ୍ତର । ଅଷ୍ଟନେନ୍ଦ—ବିଧାତା, ବ୍ରହ୍ମା । 'ଅଷ୍ଟନେନ୍ଦ-ପାଣି-ଆୟୁଧ'—ବେଦ । ବେଦ-ଦୁହିତା—ବେଦ ସଂପୃକ୍ତ କନ୍ୟା ବା ବେଦବତୀ । ନଗୁଁ—ପର୍ବତଶିଖରୁ । ହର—ହରଣ କରି, ମନାଇଁ ।

**କନ୍ଦର୍ପ ଦର୍ପାରି ତନୁଜ—**
**କନ୍ଧେ ବଜୟ୍ନ କରି**
**ମୟ୍ନ ଦୈତ୍ୟ ସୁତା ପତିକି**
**ବ୍ରହ୍ମଶରେ ସଂହାରି । ୭ ।**
**ପୟଃପୂର୍ଣ୍ଣ ସ୍ଥିତ ଭୂଖଣ୍ଡ**
**ଅନୁଜରେ ପ୍ରଦତ୍ତ**
**ବମାନେ ଖମାର୍ଗେ ଚଳିଲେ**
**ସରଯୂ ପରିଯନ୍ତ । ୮ ।**

**ଅନ୍ୱୟ**—କନ୍ଦର୍ପ-ଦର୍ପାରି-ତନୁଜ କନ୍ଧେ ବଜୟ୍ନ କରି ମୟ୍ନଦୈତ୍ୟ ସୁତା ପତିକ ବ୍ରହ୍ମଶରେ ସଂହାରି (ଥିଲ) ।

ପୟଃ ପୂର୍ଣ୍ଣ ସ୍ଥିତ ଭୂଖଣ୍ଡ (କୁ, ତା) ଅନୁଜରେ ପ୍ରଦତ୍ତ (କରି) ଖ ମାର୍ଗେ ବମାନେ ସରଯୂ ପରିଯନ୍ତ ଚଳିଲ ।

**କଥା**—ହନୁମାନ କନ୍ଧରେ ବଜୟ୍ନ କରି ମନ୍ଦୋଦରୀର ସ୍ୱାମୀଙ୍କୁ ବ୍ରହ୍ମଶରରେ ନାଶ କରିଥିଲ ।

ଜଳପୂର୍ଣ୍ଣ ସମୁଦ୍ର ମଧ୍ୟସ୍ଥ ଭୂଖଣ୍ଡ ଲଙ୍କାକୁ ଜ୍ୟେଷ୍ଠ ରାବଣ ସାନଭାଇ ବିଭୀଷଣଙ୍କୁ ଦାନ କରି ଆକାଶ-ପଥରେ ବମାନରେ ବସି ସରଯୂ ତୀରବର୍ତ୍ତୀ ଅଯୋଧ୍ୟାଯାଏ ଯାଇଥିଲ ।

---

ଶବ୍ଦାର୍ଥ । କନ୍ଦର୍ପ ଦର୍ପାରି—ଶିବ । 'ଶିବ-ତନୁଜ'—ହନୁମାନ; ମତ ଭେଦରେ ପବନପୁତ୍ର ହନୁମାନଙ୍କୁ ଶିବପୁତ୍ର ମଧ୍ୟ କୁହାଯାଏ । 'ମୟ୍ନଦୈତ୍ୟ-ସୁତା'—ମନ୍ଦୋଦରୀ । ପୟଃପୂର୍ଣ୍ଣ-ସ୍ଥିତ ଭୂଖଣ୍ଡ—ଲଙ୍କା । ବମାନେ—ପୁଷ୍ପକରେ । 'ଖ-ମାର୍ଗେ'—ଆକାଶ ପଥରେ ।

**ରମ୍ୟ ନଗ୍ରେ ବାମ ପାର୍ଶ୍ୱରେ**
**ବାମାଶ୍ରେଷ୍ଠ ଘେନଣ**
**ଅଭିଷିକ୍ତ ହୋଇ ରାଜ୍ୟରେ**
**ପ୍ରଜାଚୟ ପାଳଣ । ୯ ।**

**କଳ୍ପି କଳ୍ପି କେତେ କଳ୍ପିଲା**
**ଶିଳ୍ପିକାର କୁମର**
**କଳ୍ପେ କଳ୍ପତରୁ ଭଜିଲି**
**ଦୁଃଖ ନ ଗଲା ମୋର । ୧୦ ।**

**ଅନ୍ୱୟ**—(ଜଣେ) ରମ୍ୟ ନଗ୍ରେ ବାମ ପାର୍ଶ୍ୱରେ ବାମାଶ୍ରେଷ୍ଠ ଘେନଣ ଅଭିଷିକ୍ତ ହୋଇ ରାଜ୍ୟରେ ପ୍ରଜାଚୟ ପାଳଣ (ଥିଲ) ।

(ତୁମ ଘେନ) ଶିଳ୍ପିକାର କୁମର କଳ୍ପି କଳ୍ପି କେତେ କଳ୍ପିଲା । କଳ୍ପେ (ତୁମ ପର) କଳ୍ପତରୁ ଭଜିଲି, (କିନ୍ତୁ) ମୋର ଦୁଃଖ ନ ଗଲା ।

**କଥା**—ଜଣେ ରମଣୀୟ ନଗରରେ ବାମପାର୍ଶ୍ୱରେ ରମଣୀଲଲାମ ଜନକକନ୍ୟାଙ୍କୁ ଧାରଣ କରି ତୁମେ ଅଭିଷିକ୍ତ ହୋଇ ରାଷ୍ଟ୍ରରେ ଥିବା ପ୍ରଜାବୃନ୍ଦଙ୍କୁ ପାଳନ କରିଥିଲ ।

ତୁମର ଏହି ପ୍ରକାର କୀର୍ତ୍ତି ଓ ସଦ୍‌ଗୁଣ ଘେନି ଏହି ଲେଖକ ଶିଳ୍ପିକାର କୁମର ବହୁ କଳ୍ପନା କରି କେତେ ବହୁଭାଷିତା ଦେଖାଇଛି । କଳ୍ପେକାଳ ତୁମ ପରି ଇଚ୍ଛାମାନେ ଅଭୀଷ୍ଟ ଫଳପ୍ରଦ କଳ୍ପତରୁ ଭଜିଲି । କିନ୍ତୁ ମୋର ଦୁଃଖ ଦୂର ହେଲା ନାହିଁ ।

ଶବ୍ଦାର୍ଥ । ରମ୍ୟନଗ୍ରେ—ଅଯୋଧ୍ୟାରେ । ବାମାଶ୍ରେଷ୍ଠ—ଜାନକୀ । କଳ୍ପି—କଳ୍ପନା-କରିବା । କଳ୍ପିଲା-ବହୁ ବ୍ରତିଲା । ଶିଳ୍ପିକାର—ବଢ଼େଇ । କଳ୍ପେ—ବହୁ ସମୟ ।

ସୀତାରାମ ଅଂଘ୍ରି ଅବ୍‌ଜକୁ
ହୃଦୟରେ ଧାୟି ଣ
ରାଘବ-ବିଳାସ ପ୍ରବନ୍ଧ
ରଚନାକୁ କରିଣ । ୧୧ ।
ନବୀନ ଦୁର୍ଗେଶ ପ୍ରତାପୀ
ବିରାଧିବୀରବର
ବିନାୟକ ସିଂହ ଶ୍ରୀମାନ-
ଧାତା ଗ୍ରନ୍ଥେ ପ୍ରଚାର । ୧୨ ।

**ଅନ୍ୱୟ**—ସୀତାରାମ ଅଂଘ୍ରି ଅବ୍ଜକୁ ହୃଦୟରେ ଧାୟି ଣ, (ଏହି) ରାଘବ-ବିଳାସ ପ୍ରବନ୍ଧକୁ ରଚନା କରିଣ,

ନବୀନ ଦୁର୍ଗେଶ ପ୍ରତାପୀ ବିରାଧିବୀରବର ଶ୍ରୀ ବିନାୟକ ସିଂହ ମାନଧାତା (ଙ୍କ ନାମ, ଏ) ଗ୍ରନ୍ଥେ ପ୍ରଚାର (କରୁଅଛୁ) ।

**କଥା**—ସୀତାରାମଙ୍କର ପାଦପଦ୍ମକୁ ହୃଦୟରେ ଧାୟି ଏହି ରାଘବ-ବିଳାସ ନାମକ କାବ୍ୟକୁ ରଚନା କରି "ନୂଆଗଡ଼" ଦୁର୍ଗର ନରପତି ପ୍ରତାପୀ ବିରାଧିବୀରବର ଶ୍ରୀ ବିନାୟକ ସିଂହ ମାନଧାତାଙ୍କ ନାମକୁ ଏ ଗ୍ରନ୍ଥ ଜରିଆରେ ପ୍ରଚାର କରୁଅଛୁ ।

**ଆଲୋଚନା**—କବି ନିଜଠାରୁ ବିନାୟକ ସିଂହ ମାନଧାତାଙ୍କୁ ଅଧିକ ଭାବରେ ବିଶ୍ୱଜଗତରେ ପ୍ରଚାର କରିବାକୁ ଏହି କାରଣରୁ ବ୍ୟାକୁଳ ଥିଲେ ଯେ—ତାଙ୍କର ଲାଗି ସେ ମଣିଷ ହୋଇ ପାରିଥିଲେ । ଅନେକେ ମନେକରନ୍ତି ଯେ ରାଘବ ବିଳାସ ,ବିନାୟକଙ୍କ ମୃତ୍ୟୁ ପରେ ନୂଆଗଡ଼ ମେଳି ସମୟରେ କବିଙ୍କ ବାର୍ଦ୍ଧକ୍ୟ ସମୟରେ ରଚିତ ହୋଇଥିଲା । ତାହାର ସତ୍ୟାସତ୍ୟ ପରୀକ୍ଷା ହୋଇ ନାହିଁ ।



ଶବ୍ଦାର୍ଥ । ଅଂଘ୍ରି ଅବ୍ଜ—ପାଦପଦ୍ମ । ବିନାୟକ ସିଂହ ମାନଧାତା—ସେ କପର ଜଣେ ମହାନ୍ ବୀରପୁରୁଷ ଏବଂ ସଦ୍‌ଗୁଣର ଗ୍ରାହକ ଥିଲେ ତାହା ଅନ୍ୟତ୍ର ଦ୍ରଷ୍ଟବ୍ୟ ।

# ରାଘବ ବିଳାସ

## ଦ୍ୱିତୀୟ ଛାନ୍ଦ

**ଶଙ୍କରାଭରଣ ବୃତ୍ତିରେ**—ଷୋଡ଼ଶ ପଦରେ ଏହି ଛାନ୍ଦଟି ସମ୍ପୂର୍ଣ୍ଣ । ରାବଣ ସହିତ ତାର ଦୁଇ ଭାଇ ଏବଂ ଭଗିନୀଙ୍କ ଜନ୍ମ ବିବରଣ ଏଥିରେ ବର୍ଣ୍ଣନା କରାଯାଇଛି । ତତ୍‌ବ୍ୟତୀତ ସେ କିପରି କୁବେରକୁ ହଟାଇ ଲଙ୍କା ଅଧିକାର କରିଛି, ଶିବଙ୍କୁ ସନ୍ତୋଷ କରି ରାବଣ ନାମ ଧାରଣ କରିଛି, ଏତଦ୍‌ବ୍ୟତୀତ ସମଗ୍ର ବିଶ୍ୱକୁ ଜୟକରି ତ୍ରିପୁରେଶ୍ୱର ହୋଇପାରିଛି—ତାହା ଅତ୍ୟନ୍ତ ନିପୁଣତାର ସହିତ କବି ଚିତ୍ରଣ କରିଛନ୍ତି ।

କବି ଏହି ଛାନ୍ଦରେ 'ଅପାଦ ଗମନ' ବୋଲି ଯେଉଁ ଶବ୍ଦ ଦୁଇଟି ପ୍ରୟୋଗ କରିଛନ୍ତି, ତାର ଅର୍ଥ ହେଲା—ଶୂନ୍ୟଭ୍ରମଣ । ଶୂନ୍ୟମଣ୍ଡଳରେ ଭ୍ରମଣ କରିବାକଥା ଏବେ ମନୁଷ୍ୟ ସମାଜ କାନକୁ ଆସିଛି । ଅଥଚ ଯଦୁମଣି ଏକା ନୁହନ୍ତି ତାଙ୍କର ପୂର୍ବବର୍ତ୍ତୀ ସୂରିମାନେ ସେହି ଶୂନ୍ୟଭ୍ରମଣର ସନ୍ଧାନ ପାଇଥିଲେ ।

ମନେହୁଏ ଏହି ଶୂନ୍ୟଭ୍ରମଣ ଯୁଗ ଯୁଗ ଧରି ପୃଥିବୀର ଜନସମାଜ ମଧ୍ୟରେ ରହି ଆସି ହୁଏତ ଦିନେ ଲୁଚି ଯାଇଥିଲା । କିନ୍ତୁ ସେ ସ୍ମୃତିର ବର୍ଣ୍ଣନା କେବେ ଲୁଚି ନ ଥିଲା ।

ପୁରାଣର ଗଳ୍ପମାନ କପୋଳକଳ୍ପିତ ଯେ କୁହାଯାଉଥିଲା, ତାହା କ୍ରମେ କ୍ରମେ ସତ୍ୟ ହୋଇ ଚାଲିଛି । ବୋଧହୁଏ ଏପରି ଦିନ ଆସିବ ପୁରାଣ ଏକାନ୍ତ ସତ୍ୟଭାବରେ ଆମକୁ ପ୍ରତୀତ ହେବ ।



# ରାଘବ ବିଳାସ

## ଦ୍ୱିତୀୟ ଛାନ୍ଦ

( ରାଗ—ଶଂକରାଭରଣ )

**ଭୁବନ ଭୁବନ ଭେଜି ମାଳୀ ଯେ ସୁମାଳୀ**
**ଦୁହିତା ଦୋହିତା ସଙ୍ଗେ ଘେନି ଆସି ମିଳି**
**ଯତି ମସ୍ତକ ତୋଷିଣ**
**ବେଦମତେ ଶୁଦ୍ଧଚିତ୍ତେ ପରିଣୟ ପୁଣ । ୧ ।**

**ଅନ୍ୱୟ**—ଯେ ସୁମାଳୀ ମାଳୀ (ର ଭ୍ରାତା ଅଟେ, ସେ) ଭୁବନ ଭୁବନ ଭେଜି ଦୁହିତା ଦୋହିତା ସଙ୍ଗେ ଘେନି ଆସି ମିଳି (ଲେ) ଯତି ମସ୍ତକ ତୋଷିଣ ବେଦମତେ ଶୁଦ୍ଧଚିତ୍ତେ ପୁଣି ପରିଣୟ (ଦେଲେ) ।

**କଥା**—ବିଷ୍ଣୁଙ୍କ ଚକ୍ରରେ ମୃତ ମାଳୀଦୈତ୍ୟର ଯେଉଁ ସୁମାଳୀ ଦୈତ୍ୟ ଭାଇ ଅଟେ (ସୁମାଳୀ ନାମକ କପି ନୁହେଁ) ସେ ପାତାଳ ଭୁବନ ଭେଜି ଦିନେ ତାର ଦୁଃଖରେ ବା ଦୁଇ କୁଳର ହିତକାରିଣୀ ଏକମାତ୍ର କନ୍ୟାକୁ ସଙ୍ଗରେ ଘେନି ଆସି ଗୋଟିଏ ଆଶ୍ରମରେ ପହଞ୍ଚିଲା । ଉକ୍ତ ଆଶ୍ରମର ଯତି ଋଷିବାଙ୍କ ମସ୍ତକୁ ତୋଷକରି ବେଦ ବିଧାନରେ ଶୁଦ୍ଧ ଚିତ୍ତରେ ପୁନଶ୍ଚ ଉକ୍ତ କନ୍ୟାକୁ ପରିଣୟ ଦେଲା ।

**ଆଲୋଚନା**—ରାମାୟଣର ମୂଳ ରଚନାରେ ସୁମାଳୀ ଉପାଖ୍ୟାନ ଅଛି ।

---

ଶବ୍ଦାର୍ଥ । ଭୁବନ—ପାତାଳ । ଭୁବନ—ଲୋକ । ମାଳୀ—ବିଷ୍ଣୁ ଚକ୍ରରେ ନିହତ ମାଳୀଦୈତ୍ୟ । ସୁମାଳୀ—ମାଳୀଦୈତ୍ୟର ଭାଇ । ଦୁ-ହିତା—ଦୁଃଖରେ ବା ଦୁଇ କୁଳର ହିତ କାରିଣୀ । ଦୋହିତା—କନ୍ୟା । ଯତି—ନିର୍ଦ୍ଦିଷ୍ଟ ଋଷିବା ଋଷି ।

**ଚପଳାଙ୍ଗୀ ଦତ୍ତ କରି ଚପଳ ବଂଶେଶ
ଗତେ ମୁନି ସଙ୍ଗେ ରଙ୍ଗେ ପ୍ରମତ୍ତ ବିଳାସ
ନିଧନଜ ବଂଶୋଦ୍‌ଭବ
ଜ୍ୟେଷ୍ଠ ଶ୍ରେଷ୍ଠ ହରିତାନନ ରେ ଘୋର ରବ । ୨ ।**

**ଅନ୍ୱୟ**—(ସେ) ଚପଳ ବଂଶେଶ ଚପଳାଙ୍ଗୀ ଦତ୍ତ କରି ଗତେ, ମୁନି ସଙ୍ଗେ ସଙ୍ଗେ ବିଳାସ ପ୍ରମତ୍ତ (ହେଲେ, ତେଣୁ) ନିଧନଜ ହୋଇ ବଂଶ ଜ୍ୟେଷ୍ଠ ଶ୍ରେଷ୍ଠ ହରିତାନନ ଘୋର ରବରେ ଉଦ୍ଭବ (ହେଲେ) ।

**କଥା**—ସେହି ଚପଳ ନାମକ ରାକ୍ଷସବଂଶ ଶ୍ରେଷ୍ଠ ସୁମାଳୀ ଚପଳା ସମାନ ଦେହଧାରିଣୀ ସୁନ୍ଦରୀ କନ୍ୟାକୁ ଦତ୍ତ କରିଦିବା ପରେ ଉକ୍ତ ବାଳା ମୁନିଙ୍କ ସହିତ କାମରଙ୍ଗରେ ବିଳାସରେ ପ୍ରମତ୍ତ ହେଲା । ତେଣୁ ଲୋପ ହୋଇଥିବା ଅସୁର କୁଳଜ ଭାବରେ ଉକ୍ତ ବଂଶର ଜ୍ୟେଷ୍ଠ ଏବଂ ଶ୍ରେଷ୍ଠ ସ୍ୱରୂପ ଦଶାନନ ନାମରେ ଏକ ପୁତ୍ର ଘୋର ରବ କରି ଜାତ ହେଲା ।

**ଆଲୋଚନା**—ନିକଷା ଆତ୍ମଜ ନୈକେଷୟ ଭାବରେ ରାବଣ ବିଶ୍ୱରେ ପରିଚିତ ଅଟେ । ସେ ଶିବପୁରୀ କୈଳାସ ଉତ୍ପାଟନ କରନ୍ତେ ଯୋଗୀଶ୍ୱର ଶିବ ଏତେ ଗୁରୁ ହୋଇଥିଲେ ଯେ ସେ ଚାପି ରହିଥିବା ହସ୍ତାଙ୍ଗୁଳି ସହିତ ପାପୁଲି ବାହାର କରି ନପାରି ଭୀଷଣ ଭାବେ ବ୍ୟାକୁଳ ହୋଇ ରବ କରିବାରୁ ତାର ଉଦ୍ଧାର ପରେ ସେ ରାବଣ ନାମରେ ବିଖ୍ୟାତ ହୋଇଥିବା କଥା ବାଲ୍ମୀକି ଲେଖିଛନ୍ତି । କିନ୍ତୁ କବି ଯଦୁମଣି ଜନ୍ମରୁ ଭୀଷଣ ରବ କରିବାରୁ ରାବଣ ଭାବେ ପରିଚିତ ହେବା କଥାର ଲକ୍ଷଣା ଏଠାରେ ଦେଇଛନ୍ତି ।

---

ଶବ୍ଦାର୍ଥ । ଚପଳ—ବେଗ ଉତ୍ପାଦକ ରାକ୍ଷସ ବିଶେଷ । ତସ୍ୟଃ ସୁକେଶସ୍ୟ ସୁତାସ୍ତେ-ସୃଷ୍ଟି—ସମତେଜସଃ,ବିବୃଦ୍ଧି ମଗମଂ ସ୍ତ୍ରତ ବ୍ୟାଧସ୍ୱୋପେକ୍ଷିତା ଇବ । (ରାମାୟଣ ଉତ୍ତର) ବଂଶେଶ—ବଂଶଶ୍ରେଷ୍ଠ । ନିଧନଜ—ଲୁପ୍ତ ବଂଶଜାତ । ହରିତ—ଦିଗ । ଦିଗ—ଦଶ ।

**ଊଦନ୍ତଜ ରକ୍ତଗାତ୍ର ଅନ୍ତକ ସଦୃଶ**
**କନିଷ୍ଠଜ ଅନ୍ତେ ଏକ ଦୁହିତା ପ୍ରକାଶ**
**ନାମ ଊଦନ୍ତେ ଊଦନ୍ତେ**
**ରାବଣ ଯେ କୁମ୍ଭକର୍ଣ୍ଣ ବିଭୀଷଣ ଦ୍ୟନ୍ତେ । ୩ ।**
**ପୂର୍ଣ୍ଣୀର କରଜ ସୂର୍ପ ସମ ସୂର୍ପଣଖା**
**ବେଳକୁବେଳ ଅପଘନ ବର୍ଦ୍ଧମାନ ଦେଖା**
**ଗମ୍ଭୁଁ ରସାଯାଏ ଲସି**
**ସସ୍ରାନନ ଭ୍ରାତଶିର ନତ ହୋଇ ଆସି । ୪ ।**

**ଅନ୍ୱୟ**—ଊଦନ୍ତଜ ରକ୍ତଗାତ୍ର ଅନ୍ତକ ସଦୃଶ (ଅଟେ) । କନିଷ୍ଠଜ ଅନ୍ତେ ଏକ ଦୁହିତା ପ୍ରକାଶ (ହେଲା) । ଊଦନ୍ତେ ଊଦନ୍ତେ ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣ ପୂର୍ଣ୍ଣୀର କରଜ ସୂର୍ପସମ (ହେତୁ) ସୂର୍ପଣଖା ନାମ ଦ୍ୟନ୍ତେ ବେଳକୁବେଳ (ସେମାନଙ୍କ) ଅପଘନ ବର୍ଦ୍ଧମାନ ଯେ ଦେଖା (ଗଲା) । (ସେମାନେ) ଗମ୍ଭୁଁ ସସ୍ରାନନ ଭ୍ରାତଶିର ନତ ହୋଇ ଆସି ରସା ଲସିଯାଏ ।

**କଥା**—ତାପରେ ଯେଉଁ ଶିଶୁଟି ଜନ୍ମହେଲା ସେ ରକ୍ତବର୍ଣ୍ଣ ଦେହ-ବିଶିଷ୍ଟ ଏବଂ ଯମ ସଦୃଶ ଅଟେ । ସାନ ପୁଅଟିର ଜନ୍ମ ଶେଷରେ ପୁଣି ଗୋଟିଏ ଦୁହିତା ମଧ୍ୟ ପ୍ରକାଶିତ ହେଲା । ତାପରେ ତାପରେ ଯଥାକ୍ରମେ ଯେଣୁ ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣ ଏବଂ କନ୍ୟାର ନଖମାନ କୁଲାର ଆକୃତି ପରି ହୋଇଥିବାରୁ ତାକୁ ସୂର୍ପଣଖା ନାମ ଦେବା ପରେ ବେଳକୁବେଳ ସେମାନଙ୍କର ଶରୀର ଯେମନ୍ତ ଏକାନ୍ତ ବଢ଼ିଗଲା । ସେମାନେ ଭୂମିରେ ଯିବା ଆସିବା କରିବା ଦ୍ୱାରା ସହସ୍ରମୁଖ ଅନନ୍ତଙ୍କ ଭାଇ ବାସୁକିଙ୍କ ମସ୍ତକ ନଇଁଯିବାରୁ ଧରଣୀ ବେଳକୁବେଳ ସେମାନଙ୍କ ପାଦଘାତରେ ଲସିଗଲା ।

---

ଶବ୍ଦାର୍ଥ—ଊଦନ୍ତଜ—ତୃତୀୟରେ ଜନ୍ମ । (ସଂସ୍କୃତ ଜନ୍ ଧାତୁ କର୍ମଜ ପରି ଊଦନ୍ତଜ, କନିଷ୍ଠଜ) । କନିଷ୍ଠଜ—କନିଷ୍ଠ ଜନ୍ମକ । କରଜ—ନଖ । ଦ୍ୟନ୍ତେ—ଦିଅନ୍ତେ । ସୂର୍ପ—କୁଲା । ଅପଘନ—ଶରୀର । ବର୍ଦ୍ଧମାନ—ବୃଦ୍ଧିଯୁକ୍ତ, ବଢ଼ିଯିବା । ଗମ୍ଭୁଁ—ଗମନ କରିବା ହେତୁ । ସସ୍ରାନନ—ସହସ୍ରମୁଖ ଅନନ୍ତ । ସସ୍ରାନନ ଭ୍ରାତ—ବାସୁକି, ଯେ ପୃଥ୍ୱୀ ଧାରଣ କରିଛନ୍ତି । ଲସିବା—ଦବିବା ।

**ଚରାଚର ଭ୍ରମୁଁ ପ୍ରାଣୀ ପ୍ରାଣ ବିସର୍ଜିଲେ**
**ଅବ୍ୟୟେ ପଶିଣ ସର୍ବ ଭୟ ଦତ୍ତ କଲେ**
**ଅଭ୍ରରଦନୀ ସୁନ୍ଦର**
**ଲେଖ ଲେଖ ସମିତିରେ ଘେନି ବେଦବର । ୫ ।**
**ବିରଞ୍ଚି ରଚିଲେ ତୂର୍ଣ୍ଣେ ହୋଇଣ ସୁମନା**
**ବରୁଣାଳୟ ବିହାରି ଶେଷାଙ୍କ ବର୍ଦ୍ଧନା**
**ନାହିଁ ପ୍ରତୀକାର କରି**
**ଦରେ ଦର କୂଳେ ମିଳି ଚିନ୍ତା ଦରକରି । ୬ ।**

**ଅନ୍ୱୟ**—(ସେମାନେ) ଚରାଚର ଭ୍ରମୁଁ ପ୍ରାଣୀ (ମାନେ) ପ୍ରାଣ ବିସର୍ଜିଲେ । (ଏବଂ) ଅବ୍ୟୟେ ପଶିଣ (ସେମାନେ) ଭୟ ଦତ୍ତ କଲେ । ( ତେଣୁ ) ଅଭ୍ର-ରଦନୀ-ସୁନ୍ଦର ଲେଖ ଲେଖ ସମିତିରେ ବେଦବର ଘେନି ବରୁଣାଳୟ (କୁ ଗଲେ) ।

(ତହିଁ) ବିରଞ୍ଚି ତୂର୍ଣ୍ଣେ ସୁମନା (ସଙ୍ଗୀ) ହୋଇଣ (ଆଜ) ପ୍ରତିକାର ନାହିଁ ଜାଣି ଦରେ ଦରକୂଳେ ମିଳି ଦରକରି ଚିନ୍ତି ବରୁଣାଳୟ ବିହାରୀ ଶେଷାଙ୍କ ବର୍ଦ୍ଧନା ରଚିଲେ ।

**କଥା**—ସେମାନେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଭ୍ରମିବାରୁ ସେମାନଙ୍କ ଆକ୍ରମଣରେ ପ୍ରାଣୀମାନେ ପ୍ରାଣତ୍ୟାଗ କଲେ ଏବଂ ସେମାନେ ସ୍ୱର୍ଗରେ ପଶି ଦେବତାମାନଙ୍କୁ ଭୀତତ୍ରସ୍ତ କରିଦେଲେ । ତେଣୁ ଐରାବତ ଆରୋହୀ ଇନ୍ଦ୍ର ଶ୍ରେଷ୍ଠ ଦେବସମାଜରେ ବିଧାତାଙ୍କୁ ଅଗ୍ରଣୀ କରି କ୍ଷୀର ସମୁଦ୍ର ଅଭିମୁଖେ ଗଲେ ।

ତହିଁ ସ୍ରଷ୍ଟା ବିରଞ୍ଚି ଶୀଘ୍ର ଦେବତାମାନଙ୍କୁ ସାଥିରେ ଧରି ଆଜ ଆଜ କାହାଦ୍ୱାରା ପ୍ରତିକାର ନାହିଁ ଜାଣି ଏ ଉପସ୍ଥିତ ଭୟ ହେତୁ ଶଙ୍ଖ ଶାମୁକା ପୂର୍ଣ୍ଣ ସମୁଦ୍ରକୂଳରେ ମିଳି ଶଙ୍ଖଧାରୀଙ୍କୁ ଚିନ୍ତାକରି ବରୁଣାଳୟବିହାରୀ ଅନନ୍ତଙ୍କ ଅଙ୍କଶାୟୀ ବିଷ୍ଣୁଙ୍କର ଅଭ୍ୟର୍ଥନା ରଚନା କଲେ ।

---

ଶବ୍ଦାର୍ଥ । ଅବ୍ୟୟ—ସ୍ୱର୍ଗ । ଅଭ୍ର—ଆକାଶ । ରଦନୀ—ହସ୍ତୀ । ଅଭ୍ରରଦନୀ ସୁନ୍ଦର—ଯେ ଐରାବତରେ ଆରୋହଣ କରି ସୁନ୍ଦର ଦେଖାଯାନ୍ତି—ଦେବରାଜ ଇନ୍ଦ୍ର । ଲେଖ—ଦେବତା । ଲେଖ—ଉଲ୍ଲେଖଯୋଗ୍ୟ, ଶ୍ରେଷ୍ଠ । ଦରେ—ଭୟରେ । ଦର—ଶଙ୍ଖସମ୍ପନ୍ନ ସ୍ଥାନରେ । ଦର କୂଳେ—ଶଙ୍ଖପୂର୍ଣ୍ଣ ସାଗରତୀରରେ । ଦର—ଶଙ୍ଖ । ତୂର୍ଣ୍ଣେ—ଶୀଘ୍ର । ସୁମନା—ଦେବତା । ଶେଷାଙ୍କ—ଅନନ୍ତଙ୍କ ଅଙ୍କଶାୟୀ । ଶେଷ—ଅନନ୍ତ । ବର୍ଦ୍ଧନା—ଅଭ୍ୟର୍ଥନା ।

ଧାତୃ ଭଣୁଁ 'ସର୍ବେ'କଲେ ଶ୍ରୀଈଶଙ୍କୁ ଧ୍ୟାନ
ଦନୁଜା କନକେତନ ବାରେ ହୋଇଲେ ପ୍ରସନ୍ନ
ଦୃଶେଶ୍ୟ ଦୃଶ୍ୟ ହେଲେ ଆସି
ବିନତ ନତମସ୍ତକେ ପାଣି ମଣ୍ଡି ଭାଷି । ୭ ।
'ବିଶ୍ରବାଜ ବଂଶବାହା ଆମ୍ଭରେ କଣ୍ଟକ
ଅରିକର ! ଅରିଙ୍କର ଶୀଘ୍ର ବିନାଶନ'
ଭଣୁ ଭଣିଲେ କୌସ୍ତୁଭୀ
ମିହିରବଂଶେ ନୃପକୁଳେ ଯାଇ ଜାତ ହେବି । ୮ ।

**ଅନ୍ୱୟ**—ଧାତୃ (ବନ୍ଦନା) ଭଣୁଁ ସର୍ବେ ଶ୍ରୀଈଶଙ୍କୁ ଧ୍ୟାନ କଲେ । (ତେଣୁ) ଦନୁଜାନକେତନ ବାରେ ପ୍ରସନ୍ନ ହୋଇଲେ । (ଏବଂ) ଦୃଶେଶ୍ୟ ଆସି ଦୃଶ୍ୟ ହେଲେ । ବିନତ ନତମସ୍ତକ(ରେ) ପାଣି ମଣ୍ଡି (ସର୍ବେ) ଭାଷି(ଲେ) ।

ବିଶ୍ରବାଜ ବଂଶବାହା ଆମ୍ଭରେ କଣ୍ଟକ (ହୋଇଅଛି ।) (ହେ) ଅରିକର ! (ତୁମ୍ଭେ) ଅରିଙ୍କର ଶୀଘ୍ର ବିନାଶକ (ହୁଅ) ଭଣୁଁ କୌସ୍ତୁଭୀ ଭଣିଲେ—ମିହିରବଂଶେ ନୃପକୁଳେ ଯାଇ (ମୁଁ) ଜାତ ହେବି ।

**କଥା**—ବିଧାତା ବନ୍ଦନା କରନ୍ତେ ସର୍ବେ ଲକ୍ଷ୍ମୀ-ପତି ନାରାୟଣଙ୍କୁ ଧ୍ୟାନକଲେ । ତେଣୁ ଦନୁଜାନକେତନ ପ୍ରଭୁ ଥରେ ପ୍ରସନ୍ନ ହୋଇ ରମଣୀୟ ମୂର୍ତ୍ତିରେ ଦେଖାଦେଲେ । ବିନୟରେ ଏକାନ୍ତ ନମ୍ର ଭକ୍ତ ଦେବତାମାନେ ମସ୍ତକରେ ହାତଦେଇ କହିଲେ—

ବିଶ୍ରବାଙ୍କ ବଂଶଧର ବଂଶବାହୁ ରାବଣ ଆମର ଶତ୍ରୁ ହୋଇଅଛି । ହେ ଚକ୍ରଧାରୀ ! ଉକ୍ତ ବୈରୀକୁ ତୁମ୍ଭେ ଶୀଘ୍ର ବିନାଶ କର । ଏକଥା କହନ୍ତେ କୌସ୍ତୁଭଧାରୀ ନାରାୟଣ କହିଲେ, "ସୂର୍ଯ୍ୟବଂଶୀୟ ନୃପକୁଳରେ ଆମ୍ଭେ ଯାଇ ଜନ୍ମ ହେବୁଁ ।

**ଆଲୋଚନା**—ପୁରାଣରେ ଅସୁର ଦେବତାଙ୍କ ମଧ୍ୟରେ ଯେ ବିବାଦ ଦେଖାଦେଇଛି, ତାହା ସାଧାରଣ କଥାରେ ସଦ୍‌ଗୁଣ ଏବଂ ବୈଜ୍ଞାନିକ ସମୃଦ୍ଧି ମଧ୍ୟରେ ହିଁ ଭେଦକୁ ବୁଝାଏ । ସୃଷ୍ଟି ପରିରକ୍ଷଣରେ ମାନବିକ ସଦ୍‌ଗୁଣ ଯେମିତି ଦେବତା ଏବଂ ବିଜ୍ଞାନର ପରାକାଷ୍ଠା ଯେମିତି ଅସୁର ଅଭିହିତ ଅଟନ୍ତି ।

---

ଶବ୍ଦାର୍ଥ । ଦୃଶେଶ୍ୟ—ଦର୍ଶନୀୟ ରୂପରେ । ଅରି—ଚକ୍ର । କୌସ୍ତୁଭୀ—କୌସ୍ତୁଭ ଧାରଣକାରୀ, ବିଷ୍ଣୁ । ମିହିର—ସୂର୍ଯ୍ୟ । ଅରି—ଶତ୍ରୁ ।

ଅଳ୍ପଦିନେ କଳ୍ପକଷ୍ଟ ବିକଳ୍ପ କରିବ
ସୁମନେ ସୁମନେ ଗତ ଆଗତକୁ ଭାବି
ସର୍ବେ ରହିଲେ ନି-ଦରେ
ଗର୍ବେ କର୍ବୁରେ କ୍ଷେପନ୍ତି ଅତି ସମାଜରେ । ୯ ।
ଦଶାନନ ଆନନ ଛିଣ୍ଡାଇ ଧାତୃତପେ
ପ୍ରଜ୍ଜ୍ୱଳ-ଜ୍ୱଳନେ ନେଇ ଏକେ ଏକେ କ୍ଷେପେ
ଉତ୍ତମାଙ୍ଗ ଲାଗି ସ୍କନ୍ଧେ
ବିଧିରେ ବିଧିରେ ବରଦତ୍ତ ଦଶସ୍କନ୍ଧେ । ୧୦ ।

**ଅନ୍ୱୟ**—ଅଳ୍ପ ଦିନେ କଳ୍ପ କଷ୍ଟ(କୁ) ବିକଳ୍ପ କରିବ ।" । (ଏହା ଶୁଣି) ସୁମନେ ସୁମନେ ଗତ ଆଗତ (କଥା)କୁ ଭାବି ସର୍ବେ ନି-ଦରେ ରହିଲେ । (ଫଳରେ) କର୍ବୁରେ ଅତି ସମାଜରେ ଗର୍ବେ କ୍ଷେପନ୍ତି । ଦଶାନନ ଧାତୃ ତପେ ଆନନ ଛିଣ୍ଡାଇ ପ୍ରଜ୍ଜ୍ୱଳ ଜ୍ୱଳନେ ଏକେ ଏକେ ନେଇ କ୍ଷେପେ । (ପୁଣି) ଉତ୍ତମାଙ୍ଗ ସ୍କନ୍ଧେ ଲାଗି (ଯାଏ) । (ଏମନ୍ତ) ବିଧିରେ ବିଧିରେ ବର ଦଶସ୍କନ୍ଧେ ଦତ୍ତ (ହୋଇଥାଏ) ।

**କଥା**—ଅଳ୍ପଦିନରେ ଅତି ଦୀର୍ଘକାଳର କଷ୍ଟକୁ ନିରାକରଣ କରିବ ।" ଏହା ଶୁଣି ଦେବତାମାନେ ପ୍ରସନ୍ନ ମନରେ ଆଗତ ଭବିଷ୍ୟ କଥା ଚିନ୍ତାକରି ନିଶ୍ଚିନ୍ତ ହୋଇ ଶୋଇଲେ । ଫଳରେ ଅସୁରମାନେ ଅତି ସମାଦରରେ ଓ ଗର୍ବରେ ଡେଇଁ ବୁଲିଲେ ।

ଦଶାନନ ରାବଣ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ତପସ୍ୟାରେ ଭେଟିବା ଲାଗି ନିଜର ମୁଣ୍ଡମାନ ଛିଣ୍ଡାଇ ଜ୍ୱଳନ୍ତା ଅଗ୍ନିକୁଣ୍ଡରେ ଗୋଟି ଗୋଟି କରି ନେଇ ଫିଙ୍ଗିଥିଲା । ପୁନଶ୍ଚ ତାର ମସ୍ତକ ତପଃ ପ୍ରଭାବରେ କାନ୍ଧରେ ଲାଗିଥିଲା । ଏହି ନିଷ୍ଠାପୂର୍ଣ୍ଣ ବିଧିରେ ବିଧାତାଙ୍କର ବର ଦଶସ୍କନ୍ଧ ରାବଣକୁ ମିଳିଥିଲା ।

---

ଶବ୍ଦାର୍ଥ । କଳ୍ପ—କାଳର ସଂଜ୍ଞା । ବିକଳ୍ପ—ଭ୍ରମ, ନିରାକରଣ । ସୁମନେ—ଦେବତାମାନେ । ସୁମନେ—ଉତ୍ତମ ମନରେ । ନି-ଦରେ—(ଦର-ଭୟ) ନିର୍ଭୟରେ । ନିଦରେ—ଶୟନରେ । କର୍ବୁରେ—ଅସୁରେ । କ୍ଷେପନ୍ତି—ଡିଅଁନ୍ତି । ଦଗ—ଦଶ । ଆନନ—ମୁଖ । ଉତ୍ତମାଙ୍ଗ—ମସ୍ତକ । ବିଧିରେ—ବିଧାତାଙ୍କର ।

**ବୈଶ୍ରବଣେ ବୈଶ୍ରବଣ ସମରେ ଅସମ**
**ଭୀତ ଉଦ ସ୍ୱର୍ଣ୍ଣକ୍ଷିତ ତେଜନ୍ତେ ସମ୍ଭ୍ରମ**
**ତହିଁ ଦେବାର ସ୍ୱସ୍ଥିତ**
**ଶୁଭେ ଲଭି ମୟପୁତ୍ରୀ କଇକଷୀ ସୁତ । ୧୧ ।**
**ଅପାଦ ଗମନ ଧ୍ୱନ ରକ୍ଷପତ-ଧ୍ୱନ**
**ତେଣୁ ତା ନାମ ପ୍ରଦତ୍ତ ସର୍ବେ ଭୀତ ଯେନ**
**ନାକେଶରେ ରଜ୍ଜୁଯୁକ୍ତ**
**ଦର୍ପେ ଦର୍ପବଳ ବେଳୁଁ ବେଳ ସେ ଅତ୍ୟନ୍ତ । ୧୨ ।**

**ଅନ୍ୱୟ**—ବୈଶ୍ରବଣେ ବୈଶ୍ରବଣ ସମରେ ଅସମ (ହେତୁ) ଭୀତ (ଲଭି) ଉଦ (ମଧ୍ୟସ୍ଥ) ସ୍ୱର୍ଣ୍ଣକ୍ଷିତ ସମ୍ଭ୍ରମ ତେଜନ୍ତେ ତହିଁ ଦେବାର (ଗଣ) ସ୍ୱସ୍ଥିତ (ହେଲେ) । ଫଳରେ କଇକଷୀ ସୁତ ମୟପୁତ୍ରୀ (କୁ) ଶୁଭେ ଲଭି (ଥିଲା) ।

ଅପାଦ ଗମନ ଧ୍ୱନ ଓ ରକ୍ଷପତ (ର ନିଜ ମୁଖ) ଧ୍ୱନ (ଯୋଗୁଁ) ତେଣୁ ସର୍ବେ ଭୀତ ଯେନ ତା ନାମ (ରାବଣ) ପ୍ରଦତ୍ତ କଲେ । ସେ ଦର୍ପେ ଦର୍ପବଳ ବେଳୁଁ ବେଳ ଅତ୍ୟନ୍ତ ହୋଇ ନାକେଶରେ ରଜ୍ଜୁଯୁକ୍ତ (କଲା) ।

**କଥା**—ସେହି ହେତୁ ରାବଣ ସହିତ କୁବେରର ଯୁଦ୍ଧକର ସମକକ୍ଷ ନ ହେବାରୁ ଭୟ ପାଇ ଜଳରାଶି-ସମୁଦ୍ର ମଧ୍ୟସ୍ଥ ସ୍ୱର୍ଣ୍ଣନଗରୀର ଆସ୍ଥା ତ୍ୟାଗ କରିବାରୁ ଅସୁରମାନେ ତହିଁ ସ୍ୱଜନ ଧରି ରହିଲେ । ଫଳରେ କୈକଷୀପୁତ୍ର ରାବଣ ତହିଁ ମୟଦାନବପୁତ୍ରୀ ମନ୍ଦୋଦରୀକୁ ମଙ୍ଗଳଜନକ ଭାବରେ ଲାଭ କରିଥିଲା ।

କୁବେରଠାରୁ ଲବ୍ଧଥିବା ପୁଷ୍ପକଯାନ ଆରୋହଣ ହେତୁ ଶୂନ୍ୟଭ୍ରମଣର ଗମ୍ଭୀରଧ୍ୱନ ଓ ରକ୍ଷପତି ରାବଣର ନିଜ ମୁଖରୁ ନିଃସୃତ ଧ୍ୱନ ଯୋଗୁଁ ସମସ୍ତ ଜଗତ ଭୀତ ହୋଇ ତାକୁ ରାବଣ ନାମରେ ଅଭିହିତ କରିଥିଲେ । ଉକ୍ତ ରାବଣ ଅହଂକାରରେ ଏବଂ କ୍ଷମତା ବଳରେ ବେଳୁଁ ବେଳ ଅତି ପ୍ରବଳ ହୋଇ ଇନ୍ଦ୍ରଙ୍କୁ ଦିନେ ବାନ୍ଧି ପକାଇଲା ।

ଶବ୍ଦାର୍ଥ । ବୈଶ୍ରବଣେ—ରାବଣେ । ବୈଶ୍ରବଣ—କୁବେର । ଉଦ—ବାରି । ସମ୍ଭ୍ରମ—ଆସ୍ଥା । ଦେବାର—ଅସୁର । ସ୍ଥିତ—ରହିବା । ଅପାଦଗମନ – ଶୂନ୍ୟଭ୍ରମଣ । ଦର୍ପ—ଅହଂକାର । ଦର୍ପ—କ୍ଷମତା । ନାକେଶ—ଇନ୍ଦ୍ର । ରଜ୍ଜୁଯୁକ୍ତ—ବନ୍ଧନ ।

**ସର୍ବଜ୍ଞ ସ୍ଥିତି-ଧଗ୍ୱଜ ଉତ୍ପାଟନ କରେ**
**ଶର୍ବ ସର୍ବ ସୁଫଳେ ତ ବର ପ୍ରଦତ୍ତରେ**
**ଭ୍ରମେ ନନ୍ଦରେ ଆଦରେ**
**କି ଦର ତା କାହାଠାରେ ସୁ-ଦର ତା-ହାରେ ।୧୩।**
**ତ୍ରିପୁରେ ତ୍ରିପୁରେଶ୍ୱର ହୋଇଲା ରାବଣ**
**ଜୟ କରେ ଭୟ ଦେଇ ସ୍ୱୟଂ ଦଗ୍‌ବଜେଣ**
**ନିଜାନୁଜାତ୍ମଜ ଘେନ**
**ବଭୀତକ ହେଲେ ସର୍ବେ ନାମ ତାର ଶୁଣି ।୧୪।**

**ଅନ୍ୱୟ**—(ସେ) ସର୍ବଜ୍ଞ (ଙ୍କର) ସ୍ଥିତି ଧଗ୍ୱଜ ଉତ୍ପାଟନ କରେ । (ଫଳରେ) ଶର୍ବ ବର ପ୍ରଦତ୍ତରେ ସର୍ବ ସୁଫଳେ ତ (ବଅନ୍ତି) । (ତେଣୁ ସେ) ନି-ଦରେ ଆଦରେ ଭ୍ରମେ । କାହାଠାରେ ତା କି ଦର (ଯେଣୁ) ତା-ହାରେ ସୁ-ଦର (ରହିଥିଲା) ।

(ଫଳରେ) ରାବଣ ତ୍ରିପୁରେ ତ୍ରିପୁରେଶ୍ୱର ହୋଇଲା । ସ୍ୱୟଂ ଦଗ୍‌ବଜେଣ ନିଜ ଅନୁଜ (ଓ) ଆତ୍ମଜ ଘେନ (ସର୍ବେ) ଭୟ ଦେଇ ଜୟ କରେ । (ତେଣୁ) ସର୍ବେ (ଅସୁରମାନେ) ତାର ନାମ ଶୁଣି ବଗ୍ଭୀତକ ହେଲେ ।

**କଥା**—ସେ ଶିବଙ୍କର ଆସ୍ଥାନ ପର୍ବତ କୈଳାଶକୁ ଦନେ ଉତ୍ପାଟନ କରେ । ଫଳରେ ମହେଶ୍ୱର ଶିବ ବର ଦେଇ ସବୁ ସୁଫଳ ତାଙ୍କୁ ଦଅନ୍ତି । ତେଣୁ ସେ ନିର୍ଭୟରେ ଆନନ୍ଦରେ ଭ୍ରମଣ କରିଥାଏ । କାହାଠି ବା ସେ ବିଶେଷ ଭୟ ଆଉ କରିବ ? ଯେହେତୁ ତା ବକ୍ଷସ୍ଥିତ ହାରରେ ଶ୍ରେଷ୍ଠ ଶଙ୍ଖଭୂଷଣ ବିରାଜିତ ହୋଇଥିଲା ।

ଏଣୁ ରାବଣ ତ୍ରିପୁରରେ ତ୍ରିପୁରେଶ୍ୱର ନାମରେ ବିଖ୍ୟାତ ହୋଇଗଲା । ସେ ନିଜେ ଦଗ୍‌ବିଜୟରେ ବାହାରିଲେ ତା ନିଜର ଅନୁଜ ଓ ଆତ୍ମଜମାନଙ୍କୁ ସଙ୍ଗରେ ଘେନ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ଭୀତତ୍ରସ୍ତ କରି ଜୟ କଲା । ଏପରି ସୁଫବାଦରେ ବିଶ୍ୱର ଦୁଷ୍ଟ ଅସୁରକୁଳ ତାର ନାମ ଶୁଣି ଏକାବେଳେ ନିଃଶଙ୍କ ହୋଇଗଲେ ।

ଶବ୍ଦାର୍ଥ । ସର୍ବଜ୍ଞ—ଶିବ । ସ୍ଥିତି—ଆସ୍ଥାନ । ଧଗ୍ୱଜ—ଗିରି । ଶର୍ବ—ଶିବ । ସର୍ବ—ସମସ୍ତ । ସୁଫଳେ—ଉତ୍ତମ ଲଭ । ନି-ଦରେ—ନିର୍ଭୟରେ । ଆଦରେ—ଆନନ୍ଦରେ । ସୁ-ଦର—ଉତ୍ତମ ଶଙ୍ଖ । ତ୍ରିପୁରେ—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ । ତା'ହାରେ—ତା ବକ୍ଷସ୍ଥିତ ହାରରେ । ଦର—ଶଙ୍ଖ, ସେ ଶଙ୍ଖନିଧି ବକ୍ଷରେ ଧାରଣ କରିଥିଲା । ବଗ୍ଭୀତକ—ବୀରଗଭୟଯୁକ୍ତ, ନିଃଶଙ୍କ । ନିଜାନୁଜାତ୍ମଜ—ନିଜର ଅନୁଜ, ଆତ୍ମଜ । ନୁଜା—ପାଠାନ୍ତର ।

ନଷ୍ଟ ଉତ୍କୃଷ୍ଟ କଷ୍ଟକୁ ଜାଣିଣ ବୈକୁଣ୍ଠ
ଦର୍ପିଷ୍ଟ ପାପିଷ୍ଟ ନଷ୍ଟ ବିନାଶନ୍ତେ ହୃଷ୍ଟ
ତେବେ ଅକଣ୍ଟକ ହେବେ
ଭୁବନ ଯିବଇ କେବେ ସୁଦିନ ହୋଇବେ । ୧୫ ।
ସେ ପ୍ରଭୁ କୋମଳ ପାଦପଦ୍ମ ହୃଦେ ଧ୍ୟାୟି ।
ନୃପ ବିନାୟକ ସିଂହ ମାନଧାତା କହି
ଅବସ୍ଥାରେ ଛାନ୍ଦପୂର୍ଣ୍ଣ
କରନ୍ତୁ ଶ୍ରବଣ ସର୍ବେ ଦେଇ ମନକର୍ଣ୍ଣ । ୧୬ ।

**ଅନ୍ୱୟ**—(ଦେବତାମାନଙ୍କର) ଉତ୍କୃଷ୍ଟ କଷ୍ଟକୁ ନଷ୍ଟ (କରିବା) ଜାଣିଣ ଦର୍ପିଷ୍ଟ ପାପିଷ୍ଟ, ନଷ୍ଟ (ରାବଣ) ବୈକୁଣ୍ଠ ବିନାଶନ୍ତେ ହେବେ ତେବେ ହୃଷ୍ଟ (ଓ) ଅକଣ୍ଟକ (ହେବେ) ଭୁବନ କେବେ ଯିବଇ । ସୁଦିନ ହୋଇବେ (ଚିନ୍ତା କଲେ) ।

ସେ ପ୍ରଭୁ କୋମଳ ପାଦପଦ୍ମ ହୃଦେ ଧ୍ୟାୟି ନୃପ ବିନାୟକ ସିଂହ ମାନଧାତା (ଏହି କବିତା) କହି (କହେ) ଅବସ୍ଥାରେ ଛାନ୍ଦ (ମାନ) ପୂର୍ଣ୍ଣ ହେଉ । ସର୍ବେ ମନକର୍ଣ୍ଣ ଦେଇ ଶ୍ରବଣ କରନ୍ତୁ ।

**କଥା**—ଦେବତାମାନଙ୍କର ଅତି ସାଙ୍ଘାତିକ କଷ୍ଟକୁ ଦୂର କରିବା କଥା ଅନୁଭବ କରି ଦର୍ପିଷ୍ଟ, ପାପିଷ୍ଟ, ନଷ୍ଟଚରିତ୍ର ରାବଣକୁ ଭଗବାନ ବିଷ୍ଣୁ ବିନାଶ କଲେ ତେବେ ଯାଇ ସେମାନେ ହୃଷ୍ଟ ଓ ଅକଣ୍ଟକ ହେବେ । କେଉଁଦିନ ଦୁଃଖ ଦୂର ହେବ, ସୁଦିନ ହେବ ଏ କଥା ମଧ୍ୟ ସେମାନେ ଚିନ୍ତା କଲେ ।

ସେହି ବିଷ୍ଣୁଙ୍କର କୋମଳ ପାଦପଦ୍ମ ହୃଦୟରେ ଧ୍ୟାନକରି ରାଜା ବିନାୟକ ସିଂହ ମାନଧାତା ଏହି କବିତା ରଚିଲେ । ଅବସ୍ଥାରେ ଛାନ୍ଦମାନ ପୂର୍ଣ୍ଣ ହେଉ ଏବଂ ସର୍ବେ ତାହା ମନକର୍ଣ୍ଣ ଦେଇ ଶ୍ରବଣ କରନ୍ତୁ ।



ଶବ୍ଦାର୍ଥ । ନଷ୍ଟ—ଦୂର କରିବା, ଉପେକ୍ଷିତ । ନଷ୍ଟ—ଭ୍ରଷ୍ଟଚରିତ । ବୈକୁଣ୍ଠ—ବିଷ୍ଣୁ । ହୃଷ୍ଟ—ଆନନ୍ଦିତ ।

# ରାଘବ ବିଳାସ

## ତୃତୀୟ ଛାନ୍ଦ

**କଳସାବୃତ୍ତିରେ** ସପ୍ତବିଂଶତି ପଦରେ ଏହି ଛାନ୍ଦଟି ସମ୍ପୂର୍ଣ୍ଣ ହୋଇଛି ।

ଚମ୍ପାବତୀ ରାଜ୍ୟରେ ଦ୍ୱାଦଶବର୍ଷ ବର୍ଷା ନ ହେବାରୁ ରାଜା ବ୍ୟସ୍ତ ହୋଇ ବ୍ରାହ୍ମଣମାନଙ୍କୁ କଣ କରାଯିବ ପଚାରିଲେ । ସେମାନେ ମନ୍ତ୍ରଣା ଦେଲେ ଯେ ଋଷ୍ୟଶୃଙ୍ଗ ଆସିଲେ ବର୍ଷା ହେବ ।

ତେଣୁ ଋଷ୍ୟଶୃଙ୍ଗ କେଉଁଠି ଥାନ୍ତି ତା'ର ସନ୍ଧାନ ବାବଦ ବହୁ ଧନ ପୁରସ୍କାର ସ୍ୱରୂପ ଘୋଷଣା କରନ୍ତେ ଏକ ନୌକାରେ କେତେକ ରୂପବତୀ ତରୁଣୀ ଘେନି ଜରତା ନାମକ ବେଶ୍ୟା ଘୋର ଅରଣ୍ୟରେ ଋଷ୍ୟଶୃଙ୍ଗ ଋଷିଙ୍କ ସହିତ ଭେଟିଲେ ।



# ରାଘବ ବିଳାସ

## ତୃତୀୟ ଛାନ୍ଦ

(ରାଗ—କଳସା)

ସୁମନେ ସୁମନେ ଶୁଣ
ଦେଇଣ ମାନସ
କନକ-ପୁଷ୍ପ-ବତୀଶ
ବିଶେଷ ବିରସ । ୧ ।
ଜୀବନ-ହୀନ ଦ୍ୱାଦଶ
ସମ୍ବତ୍ସର ହେଲା
ଜୀବନ ଯିବ ଏଣିକି
କି କରିବ ଭଲା । ୨ ।
ଦ୍ୱିଜ କୁଳରେ ପୁଚ୍ଛନ୍ତି
କରକ ସଂଯୁକ୍ତେ
ଦ୍ୱିଜୋକ୍ତି ବିଭାଣ୍ଡକକୁ
ଅଣାଅ ତ୍ୱରିତେ । ୩ ।

**କଥା**—ପଣ୍ଡିତମାନେ ପ୍ରସନ୍ନତା ସହିତ ମନଦେଇ ଶୁଣ । ଚମ୍ପାବତୀ ରାଜ୍ୟର ରାଜା ବିଶେଷ ବିରସ ଅଛନ୍ତି । ୧ ।

ବାର ବର୍ଷ ହେଲା ଦେଶ ଜଳହୀନ ହେଲା । ଏଣିକି ଜୀବନ ଚାଲିଯିବ । ଭଲା ଆଉ କ'ଣ କରାଯିବ ? । ୨ ।

ତେଣୁ ବ୍ରାହ୍ମଣମାନଙ୍କୁ ଡକାଇ କରପଦ୍ମ ଯୋଡ଼ି ପଚାରନ୍ତି । ତାହା ଶୁଣି ଦ୍ୱିଜମାନେ କହନ୍ତି ଶୀଘ୍ର ଋଷ୍ୟଶୃଙ୍ଗଙ୍କୁ ଏଠାକୁ ଅଣାଅ । ସେ ବନରେ ତାଙ୍କ ପିତାଙ୍କ ଆଜ୍ଞା ପାଳନ କରି ତପସ୍ୟାରେ ରହିଅଛନ୍ତି । ତାଙ୍କ ଆଜ୍ଞା ଯୋଗୁଁ ଜଳ ଲାଭ ହେବ ।

**ଆଲୋଚନା**—ଯଦୁମଣି ମନ୍ତ୍ରୀଙ୍କ ମନ୍ତ୍ରଣାରୁ ଋଷ୍ୟଶୃଙ୍ଗଙ୍କୁ ଅଣାଇବା ସିଦ୍ଧାନ୍ତ ନ କରି ବ୍ରାହ୍ମଣମାନଙ୍କ ପ୍ରତି ଅଧିକ ଶ୍ରଦ୍ଧା ତାଙ୍କ ପୁତ୍ରଶୋକ ସ୍ମୃତିରୁ ପ୍ରକାଶିତ କରିବା ପ୍ରତି ଆଶଙ୍କା ଆସେ ।

---

ଶବ୍ଦାର୍ଥ । (୧) ସୁମନ—ପଣ୍ଡିତ, ପ୍ରସନ୍ନଚିତ୍ତ, ରସିକ । ସୁମନେ—ସୁମନମାନେ । କନକପୁଷ୍ପ—କନକଚମ୍ପା । କନକ-ପୁଷ୍ପ-ବତୀଶ— ଚମ୍ପାବତୀ ରାଜ୍ୟର ରାଜା ।
(୨) ଜୀବନ—ଜଳ । ଜୀବନ—ପ୍ରାଣ ।
(୩) ଦ୍ୱିଜ କୁଳରେ—ବ୍ରାହ୍ମଣମାନଙ୍କୁ । କରକ—କରଯୁଗ୍ମ । କରକ ସଂଯୁକ୍ତେ—କରଯୋଡ଼ି । ଦ୍ୱିଜୋକ୍ତି—ବ୍ରାହ୍ମଣମାନେ କହିଲେ । ବିଭାଣ୍ଡକ—ଋଷ୍ୟଶୃଙ୍ଗ ।

ବନରେ ପିତାଙ୍କା ପାଳି
ତପେ ଛନ୍ତି ରହି
ବନରେ ପ୍ରଦତ୍ତ ହେବ
ତାଙ୍କ ଆଜ୍ଞା ପାଇ । ୪ ।
ଭଣିଣ ଏହା ଶ୍ରୋତ୍ରିୟେ
ବିଗତ ତୁରିତେ
ଭଣିଲେ ନୃପ ସଚିବେ
କହ ଏ ବୃତ୍ତାନ୍ତେ । ୫ ।
ମୁନିବର କେଉଁ ଠାରେ
କହ କେ ଆଣିବ
ମୁନିଙ୍କି କେହ୍ନେ ଜାଣିବ
କହ ହେ ସଚିବ ! । ୬ ।

**କଥା**—ସେ ବନରେ ତାଙ୍କ ପିତାଙ୍କ ଆଜ୍ଞା ପାଳନ କରି ତପସ୍ୟାରେ ରହିଛନ୍ତି । ଉକ୍ତ ଋଷ୍ୟଶୃଙ୍ଗ ଋଷିଙ୍କ ଆଜ୍ଞା ପାଇ ଜଳ ଲଭ ହେବ । ୪ ।

ଏହା ବେଦଜ୍ଞ ବ୍ରାହ୍ମଣମାନେ ପ୍ରକାଶ କରି ଶୀଘ୍ର ଚାଲିଯାନ୍ତେ ରାଜା ଲୋମପାଦ ନୃପ 'ଏ ବୃତ୍ତାନ୍ତ କ'ଣ' କହିବାକୁ ତାଙ୍କର ମନ୍ତ୍ରୀଙ୍କୁ କହିଲେ । ୫ ।

ରାଜା ସଚିବଙ୍କୁ କହିଲେ, ହେ ସଚିବ ! ସେ ମୁନିବର କେଉଁଠି ଅଛନ୍ତି, କହନ୍ତୁ କିଏ ତାଙ୍କୁ ଆଣିବ ? ସେ ମୁନିଙ୍କି ମୁଁ କପରି ଜାଣିବି ? ।୬।

---

ଶବ୍ଦାର୍ଥ । (୪) ବନରେ—ଅରଣ୍ୟରେ । ବନରେ—ଜଳକୁ । ପ୍ରଦତ୍ତ ହେବ—ପ୍ରାପ୍ତ ହେବ ।

(୫) ଶ୍ରୋତ୍ରିୟ—ବେଦଜ୍ଞ ବ୍ରାହ୍ମଣ । "ଜନ୍ମନା ବ୍ରାହ୍ମଣୋଜ୍ଞେୟଃ ସଂସ୍କାରୈର୍ଦ୍ୱିଜ ଉଚ୍ୟତେ । ବେଦାଭ୍ୟାସୀ ଭବେଦ୍ ବିପ୍ରଃ ଶ୍ରୋତ୍ରିୟସ୍ତ୍ରିଭିରେବହି" । ଯେ ବ୍ରାହ୍ମଣକୁଳରେ ଜନ୍ମ, ଉପନୀତ, ପୁଣି ବେଦାଭ୍ୟାସୀ ସେହି ଶ୍ରୋତ୍ରିୟ ଅଟନ୍ତି ।

ଶ୍ରୋତ୍ରିୟେ—ଶ୍ରୋତ୍ରିୟମାନେ, ବିଗତ—ଅବର୍ତ୍ତମାନ, ଅଗତ । ସଚିବେ—ମନ୍ତ୍ରୀଙ୍କୁ ।

ନଗରରେ ଅଷ୍ଟରତ୍ନ
ସ୍ଥାଳୀ ବୁଲାଇବା
ନଗର ଜିଣି ଯେ ନେବ
ତାହାକୁ ଜାଣିବା । ୭ ।

ଶଚୀବର-ପ୍ରାପ୍ତ ରାଜା
ମନକୁ ଅଇଲା
ସଚବରେ ଆଜ୍ଞା ଦତ୍ତ
ଏହା କର ଭଲା । ୮ ।

ଏସନ ଶୁଣି ରତନ
ସ୍ଥାଳୀ ବୁଲାଇଲେ
ଏସନ କାଳେ ଜରତା
ଯୋନଗଲା ଭଲେ । ୯ ।

**କଥା**—ମନ୍ତ୍ରୀ କହିଲେ—ନଗରରେ ଅଷ୍ଟରତ୍ନର ଥାଳୀ ବୁଲାଇବା । ଯେ ସମଗ୍ର ନଗରବାସୀଙ୍କୁ ଜିଣି ନେବ ତା'ଦ୍ୱାରା ଏ ସମସ୍ୟା ଜାଣିପାରିବା । ୭ ।

ଏ କଥା ଇନ୍ଦ୍ରଙ୍କ ପ୍ରାପ୍ତ ରାଜାଙ୍କ ମନକୁ ଅଇଲା । 'ଏହା ଭଲ କର' ବୋଲି ସେ ମନ୍ତ୍ରୀଙ୍କୁ ଆଜ୍ଞା ଦେଲେ । ୮ ।

ରାଜାଙ୍କଠାରୁ ଏ ପ୍ରକାର ଆଦେଶ ଶୁଣି ରତ୍ନ ଥାଳୀ (ସମଗ୍ର ନଗରରେ) ବୁଲାଇଲେ । ଉକ୍ତ ରତ୍ନ ଥାଳୀକୁ ଏପରି ସମୟରେ ଜରତା ନାମକ ବେଶ୍ୟା ଆନନ୍ଦରେ ଯୋନଗଲା । ୯ ।

**ଆଲୋଚନା**—ଲୋମପାଦ ଏତେ ବ୍ୟସ୍ତ ହୋଇ ପଡ଼ିଥିଲେ ଯେ 'ଏହା ଭଲ କର' କହି ରତ୍ନଥାଳୀ ବୁଲାଇବା ସମର୍ଥନ କରିଥିଲେ । ସେ ବହୁକଥା ଏହା ପୂର୍ବରୁ ବର୍ଷା ହେବା ଲକ୍ଷ୍ୟରେ ନିଷ୍ପତ୍ତି କରିଥିଲେ ।

---

ଶବ୍ଦାର୍ଥ । (୭) ସ୍ଥାଳୀ—ଥାଳ । ଅଷ୍ଟରତ୍ନ—ହୀରା, ନୀଳା, ମୋତି, ମାଣିକ୍ୟ, ପ୍ରବାଳ ବୈଦୂର୍ଯ୍ୟ, ମର୍କତ, ପଦ୍ମରାଗ । ନଗର ଜିଣି—ସମଗ୍ର ନଗରବାସୀଙ୍କୁ ପ୍ରତିଯୋଗିତାରେ ଯେ ଜିଣିନେବ ।

(୮) ଶଚୀବର—ଇନ୍ଦ୍ର । ସଚବରେ—ମନ୍ତ୍ରୀରେ ।

(୯) ସ୍ଥାଳୀ—ଥାଳୀ । ଜରତା—ଏକ ବେଶ୍ୟା । ଭଲେ— ଆନନ୍ଦରେ ।

ମୁନିଙ୍କି ମୁଁ ନିକ ଯାଇ
ଅଣିବ ବୋଇଲ୍
ମୁନିଙ୍କି ମୁଁ ନିକ ନିଶ୍ଚେ
ତୋଷିବଇଁ ଭଲ୍ । ୧୦ ।
ତକ୍ଷାକୁ ଡକାଇ ତରୀ
ବେଗେ ନିର୍ଭାକର
ତକ୍ଷଣରେ ହେବାକୁ ତ
ବିଲମ୍ବ ନ କର । ୧୧ ।
ଶିଳ୍ପକାର ନାବ ନିର୍ଭା
କଲେ ଯତନରେ
ଶିଳ୍ପକାର ବିମଣ୍ଡିତ
ସୁଧର୍ମ୍ମା ସଭାରେ । ୧୨ ।

**କଥା**—ଋଷ୍ୟଶୃଙ୍ଗ ମୁନିଙ୍କି ମୁଁ ନିଶ୍ଚୟ ଯାଇ ଆଣିବ ବୋଲି ସେ ପ୍ରକାଶ କଲା । ମୁଁ ସତେ ନିଶ୍ଚୟ ସେହି ମୁନିଙ୍କି ଭଲେ ଭଲେ ତୁଷ୍ଟ କରିପାରିବ । ୧୦ ।

ତେଣୁ ସେ କହିଲା—ବିଶ୍ୱକର୍ମ୍ମାକୁ ଡକାଇ ନୌକା ବେଗେ ନିର୍ମ୍ମାଣ କର । ଚଞ୍ଚାଚଞ୍ଚି ଓ ରନ୍ଦାମାରିବା ଇତ୍ୟାଦି ବଢ଼େଇର କାର୍ଯ୍ୟ କାଠକାମ ହେବାକୁ ବିଳମ୍ବ କର ନାହିଁ । ୧୧ ।

ଶିଳ୍ପୀ ନାବକୁ ଯତ୍ନରେ ନିର୍ମ୍ମାଣ ଶେଷ କଲେ । ଯେମନ୍ତ ସ୍ୱର୍ଗର ବିଶ୍ୱକର୍ମ୍ମା ଇନ୍ଦ୍ରଙ୍କ ସୁଧର୍ମ୍ମା ସଭାକୁ ବିମଣ୍ଡିତ କରିଥାନ୍ତି । ୧୨ ।

---

ଶବ୍ଦାର୍ଥ । (୧୦) ମୁନିଙ୍କି—ଋଷ୍ୟଶୃଙ୍ଗଙ୍କୁ । ନିକ—ନିଶ୍ଚୟ । ନିକ—ସତେ ।
(୧୧) ତକ୍ଷା—ବିଶ୍ୱକର୍ମ୍ମା, ବଢ଼େଇ । ତରୀ—ନୌକା । ନିର୍ଭା—ନିର୍ମ୍ମାଣ ।
ତକ୍ଷଣ—ବଢ଼େଇ କାମ, ରନ୍ଦା ମାରିବା ।
(୧୨) ଶିଳ୍ପକାର—ଶିଳ୍ପୀ, ବିଶ୍ୱକର୍ମ୍ମା ।

କବି ନିଜେ ଶିଳ୍ପୀ ଜଣେ ଥିବାରୁ ଶିଳ୍ପ କଥାକୁ ସେ କୌଣସି ସ୍ଥଳରେ ମଧ୍ୟ ରୂପ ଦେଇଥାନ୍ତି । କାରଣ ସେ ଶିଳ୍ପବୃତ୍ତିକୁ ସବୁଠୁ ଅଧିକ କରି ଦେଖୁଥିଲେ—ପାରମ୍ପରିକ ତାଙ୍କର ବୃତ୍ତି ଯେଣୁ ।

ରମ୍ଭା ଉରୁବଶୀ ତହିଁ
　　　　କରନ୍ତି ଏ ନୃତ୍ୟ
ରମ୍ଭା ଉରୁ ବସି ତହିଁ
　　　　ତରୀରେ ବଦୀପ୍ତ । ୧୩ ।
ଚୁ୍ୟତ ନଟୀକାଳ ତହିଁ
　　　　କେ କରୁ ଗଣନ
ଚୂତ, ନଟିକାଲ ତହିଁ
　　　　କେ କରୁ ଗଣନ । ୧୪ ।
ଦିବ୍ୟସ୍ତିରୀ ଏ ଯେ ବିହରନ୍ତି
　　　　ଆନନ୍ଦରେ
ଦିବ୍ୟସ୍ତିରୀ ଏ, ଯେ ବିହରନ୍ତି
　　　　ଆନନ୍ଦରେ । ୧୫ ।

**କଥା**—ତୁଳନା କରି ଦେଖିଲେ ଜଣାଯାଏ ତହିଁ (ସୁଧର୍ମା ସଭାରେ) ରମ୍ଭା, ଉର୍ବଶୀ ଆଦି ଅପ୍ସରାମାନେ ନୃତ୍ୟ କରନ୍ତି । ଏଣୁ ତରୀରେ କଦଳୀବୃକ୍ଷ ପରି ଜାନୁବିଶିଷ୍ଟା ବେଶ୍ୟାମାନେ ବିବ୍ରତ ହୋଇ ବସିଛନ୍ତି କପରି ଋଷ୍ୟଶୃଙ୍ଗଙ୍କୁ ଭୁଲାଇ ଆଣିବେ । ୧୩ ।

ତହିଁ (ସ୍ୱର୍ଗରେ) ନୃତ୍ୟଶୀଳା ଅପ୍ସରାମାନଙ୍କର ସଙ୍ଗୀତ ଗାନର ସମୟ ଗଣନା କରିହେବ ନାହିଁ । ନିୟତ ନୃତ୍ୟ ସଙ୍ଗୀତ ଚାଲିଥାଏ । ଏଠାରେ ଆମ୍ବ, ନଡ଼ିଆ ଏତେ ରଖାଯାଇଛି ଯେ ଗଣି ହେବ ନାହିଁ । ୧୦ ।

ସ୍ୱର୍ଗରେ ସ୍ୱର୍ଗବେଶ୍ୟା ଆନନ୍ଦରେ ବିହାର କରନ୍ତି ଏବଂ ଏଠାରେ ଉତ୍କୃଷ୍ଟ ସୁନ୍ଦରୀ ନୌକାରେ ବିହାର କରନ୍ତି । ୧୫ ।

**ଆଲୋଚନା**—କବି ଯଦୁମଣି ଏଠାରୁ ସର୍ବଯମକରେ ରଚନା କରିଚାଲିଛନ୍ତି । ଏସବୁର ଅର୍ଥ ଅନେକ ସମୟରେ ଦୁର୍ବୋଧ ମଧ୍ୟ ହୋଇଉଠିଛି ।

---

ଶବ୍ଦାର୍ଥ । (୧୩) ରମ୍ଭା ଉରୁବଶୀ (ଉର୍ବଶୀ)—ଦେବ ଅପ୍ସରା । ରମ୍ଭାଉରୁ—କଦଳୀ ବୃକ୍ଷ ପରି ଜାନୁସଂପନ୍ନା । ବିଦୀପ୍ତ—ସନ୍ତପ୍ତ,ବିବ୍ରତ ।
(୧୪) ଚ୍ୟୁତ—ଚଞ୍ଚଳ । ନଟି—ବେଶ୍ୟା । କାଳ—ସଙ୍ଗୀତ ଗାଇବାର ସମୟ । ଚୂତ—ଆମ୍ବ । ନଟିକାଳ—ନଡ଼ିଆ ।
(୧୫) ଦିବ୍ୟସ୍ତିରୀ—ସ୍ୱର୍ଗସ୍ତ୍ରୀ । ଦିବ୍ୟସ୍ତିରୀ—ଉତ୍କୃଷ୍ଟ ସୁନ୍ଦରୀ ।

**ଲୋକନେ ଦିବ୍ୟସୁନ୍ଦରୀ**
**ଜନମନ ହରେ**
**ଲୋକନେ ଦିବ୍ୟସୁନ୍ଦରୀ**
**ଜନମନ ହରେ । ୧୬ ।**
**ସୁମନାରେ ମଣ୍ଡିତ ହିଁ**
**ବୀଣାଗୀତ ସ୍ୱର**
**ସୁମନାରେ ମଣ୍ଡିତହିଁ**
**ବୀଣାଗୀତ ସ୍ୱର । ୧୭ ।**
**ମୁନି ମୋହିତ ଦ୍ରବ୍ୟକୁ**
**ଘେନିଛନ୍ତି ସଙ୍ଗେ**
**ମୁନିଙ୍କି ମୋହିବା ପାଇଁ**
**ଯାନ୍ତି ନବରଙ୍ଗେ । ୧୮ ।**

**କଥା**—ସ୍ୱର୍ଗ ଅପ୍ସରଙ୍କୁ ଦେଖିଲେ ଜନମନ ମୁଗ୍ଧ ହୋଇଥାଏ । ଏହି ନୂତନ ବେଶ୍ୟାମାନଙ୍କୁ ଦେଖିଲେ ମଧ୍ୟ ଜନମନ ହରଣ ହୋଇଥାଏ । ୧୬ ।

ସ୍ୱର୍ଗ ଅପ୍ସରାମାନେ ବୀଣାଗୀତ ସ୍ୱରରେ ଯେପରି ମଣ୍ଡିତ ଏହି ବେଶ୍ୟାମାନେ ମଧ୍ୟ ତଦ୍ରୂପ ମଣ୍ଡିତ । ୧୭ ।

ମୁନିଙ୍କୁ ମୁଗ୍ଧ କରିବା ଦ୍ରବ୍ୟମାନ ସଙ୍ଗରେ ଯେପରି ଘେନିଛନ୍ତି ସେପରି ମୁନିଙ୍କୁ ମୋହିତ କରିବାକୁ ନାନା ବେଶରେ ସୁସଜ୍ଜିତ ହୋଇ ଯାଉଛନ୍ତି । ୧୮ ।

ଶବ୍ଦାର୍ଥ । ଲୋକନ—ଦେଖି । ଦିବ୍ୟ—ସ୍ୱର୍ଗୀୟ ।

ତରଣୀ ତରଣି ପ୍ରାୟେ
ସ୍ରୋତେ ଯାଏ ଭାସି
ତରଙ୍ଗ ତରଙ୍ଗ ଉଠେ
କୂଳକୁ ବଶେଷି । ୧୯ ।
ଜଳଚରମାନେ ତହିଁ
ଖେଳନ୍ତି ଚରନ୍ତି
ଜଳର ନିର୍ମ୍ମଳ ଶୋଭା
କାଚ ପ୍ରାୟେ ଦୀପ୍ତି । ୨୦ ।
ସାରସ କହ୍ଲାର ଫୁଟି
ଦିଶନ୍ତି ସୁନ୍ଦର
ସାରସ ଯେ ଚକ୍ରବାକ
ଡାହୁକ ଆବର । ୨୧ ।

**କଥା**—ସୂର୍ଯ୍ୟ ଆକାଶରେ ଗତିକଲା ପ୍ରାୟେ ନୌକା ସ୍ରୋତରେ ଭାସିଯାଏ । ନାଗ୍ନ ଶୋଭାର ତରଙ୍ଗ ଯେପରି ନୌକାରେ ଉଠେ ସେପରି ନଦୀ ଜଳରେ ତରଙ୍ଗ କୂଳଯାଏ ଉଠେ । ୧୯ ।

ସେ ଜଳ ଏତେ ନିର୍ମ୍ମଳ ଶୋଭାମୟ ଯେ ତାହା କାଚ ପ୍ରାୟ ଦେଖାଯାଏ, ସେଥିରେ ଜଳଚରମାନେ ଖେଳନ୍ତି ଏବଂ ଖାଦ୍ୟ ଖାଉଥାନ୍ତି । ୨୦ ।

ସ୍ଥାନେ ସ୍ଥାନେ ଗଣ୍ଡମାନଙ୍କରେ ପଦ୍ମ, କଇଁଫୁଲ ଫୁଟି ସୁନ୍ଦର ଦେଖାଯାଏ । ତା ଛଡ଼ା ହଂସ, ଚକ୍ରବାକ, ଡାହୁକମାନେ ମଧ୍ଯ ସୁନ୍ଦର ଦେଖାଯାନ୍ତି । ୨୧ ।

---

ଶବ୍ଦାର୍ଥ । ତରଣୀ—ନୌକା । ତରଣି—ସୂର୍ଯ୍ୟ । ସାରସ—ପଦ୍ମ । କହ୍ଲାର—କଇଁ । ସାରସ—ହଂସ ।

ରଙ୍ଗରେ ଡାକନ୍ତି ଯେଝା
ଶାବକ ଖୋଜିଣ
ରଙ୍ଗରେ ଖେଳନ୍ତି ଶିଖୀ
ପକ୍ଷୀଏ ଭ୍ରମିଣ । ୨୨ ।
କେତେ ଦିନ ରହି ବାଟେ
ବିଭାଣ୍ଡକାଶ୍ରମେ
କେତେବେଳେ ଯିବା ବୋଲି
ଉଦ୍‌ବେଗ ସେ ମର୍ମେ । ୨୩ ।
ଶୁଭ ବେଳେ ବିଭାଣ୍ଡକ
ତପସ୍ଥାନେ ଗଲେ
ଶୁଭ ଯେନ ବାରାଙ୍ଗନା
ନାବୁଁ ବାହାରିଲେ । ୨୪ ।

**କଥା**—ନିକଟବର୍ତ୍ତୀ ଅରଣ୍ୟରେ ଯେଝା ଶିଶୁମାନଙ୍କୁ ଖୋଜୁ ଖୋଜୁ ପକ୍ଷୀମାନେ ନାନା ଧ୍ୱନି କରିଥା'ନ୍ତି । ମୟୂରମାନେ ବିଚିତ୍ର ଭଙ୍ଗୀରେ ଖେଳନ୍ତି । ୨୨ ।

କେତେଦିନ ଏପରି ନାନା ମାଧ୍ୟମ ଉପଭୋଗ କରି ବାଟରେ ରହି ରହି ସେନେ ବିଭାଣ୍ଡକ ଋଷିଙ୍କ ଆଶ୍ରମ ନିକଟରେ ପହଞ୍ଚିଲେ । କେତେବେଳେ ଯିବା ବୋଲି ମନରେ ଉଚ୍ଛନ୍ନ ହୋଇଉଠିଲେ । ୨୩ ।

ଶୁଭ ସମୟରେ ଶୁଭ ଅନୁକୂଳ ଯେନ ବେଶ୍ୟାମାନେ ନାବରୁ ବାହାରି ସେନେ ବିଭାଣ୍ଡକଙ୍କ ତପସ୍ୟା ସ୍ଥାନକୁ ଗଲେ । ୨୪ ।

ଶବ୍ଦାର୍ଥ । ଶାବକ – ଛୁଆ । ଶିଖୀ—ମୟୂର । ଉଦ୍‌ବେଗ—ଚଞ୍ଚଳ । ବାରାଙ୍ଗନା—ବେଶ୍ୟା । ମର୍ମେ—ଚିତ୍ତରେ ।

ଅମ୍ବର ନୀଳ ରଙ୍ଗରେ
ହୋଇ ସୁମଣ୍ଡିତ
ଅମ୍ବର ନୀଳ ରଙ୍ଗରେ
ହୋଇ ସୁମଣ୍ଡିତ । ୨୫ ।
ପାଦପ'ରେ ପାଦପରେ
ଦେଇ ଅପସର
ବାରାଙ୍ଗନା ବାରାଙ୍ଗନା
ମିଳିଲେ ପାଶର । ୨୬ ।
ଦେଖି ସୁଖୀ ମୁନୀଶ ଯେ
ଦେଖି ସୁଖୀ ହେଲେ
ସମାଦର କରନ୍ତେ ସେ
ସମାଦର କଲେ । ୨୭ ।

**କଥା**— ସେତେବେଳେ ଆକାଶ ନୀଳ ରଙ୍ଗରେ ମଣ୍ଡିତ ଥାଇ ପରିଷ୍କାର ଥିଲା ଏବଂ ଏହି ଯୁବତୀମାନଙ୍କର ସ୍ୱର୍ଣ୍ଣକାନ୍ତି ଦେହରେ ନୀଳମେଘି ଶାଢ଼ୀମାନ ଅତିରମଣୀୟ ଦେଖାଯାଉଥିଲା । ୨୫ ।

ବୃକ୍ଷମୂଳରେ ପାଦତଳରେ କୋମଳ ମଖମଲ ତକିଆ ରଖି ବାର ଜଣ ବେଶ୍ୟା ଋଷିକୁମାରଙ୍କ ପାଖରେ ପହଞ୍ଚିଲେ । ୨୬ ।

ଋଷିକୁମାର ଏମାନଙ୍କୁ ଦେଖି ଯେପରି ସୁଖୀ ହେଲେ ସେମାନେ ମଧ୍ୟ ସେପରି ହେଲେ । ଏମାନେ ଋଷିକୁମାରଙ୍କର ଯେପରି ସମାଦର ପାଇଲେ ତାଙ୍କୁ ମଧ୍ୟ ସେପରି ସମାଦର କଲେ । ୨୭ ।

---

ଶବ୍ଦାର୍ଥ । ଅମ୍ବର—ଆକାଶ, ବସ୍ତ୍ର, ଶାଢ଼ୀ । ପାଦପ—ବୃକ୍ଷ । ପାଦପରେ—ପାଦ ଶେଷରେ । ବାରାଙ୍ଗନା—ବାରଜଣ ଅଙ୍ଗନା, ବେଶ୍ୟା ।

ପୟୁ ଦେଉଁ ପୟୁ ଦେଲେ
 ଭାଙ୍ଗି ନାରୀକେଳ
ପୟୁଃ ପାନେ ତୋଷ ହେଲେ
 ବିଭାଣ୍ଡକ ବାଳ । ୨୮ ।
କର୍ପୂର ଅଙ୍ଗରେ ବୋଳ
 ସ୍ୱାଦ ଫଳ ଦେଲେ
କର୍ପୂର କରଣ ମୁନି
 ତାହାକୁ ଭୁଞ୍ଜିଲେ । ୨୯ ।
ପଟ୍ଟବସ୍ତ୍ର ଫେଇ ପଟ୍ଟ
 ବସ୍ତ୍ର ପିନ୍ଧାଇଣ
ପଟ୍ଟରୂପ ଦର୍ଶନାର୍ଥ
 ଆଦର୍ଶ ଦେଇଣ । ୩୦ ।

**କଥା**—ଜଳ ମାଗନ୍ତେ ଏକ୍ଷ ରୂପବତୀ ତରୁଣୀଏ ତାଙ୍କୁ ପଇଡ଼ ନଡ଼ିଆ ଭାଙ୍ଗି ତାର ଜଳ ପିଆନ୍ତେ ଋଷିକୁମାର ତା ପିଇ ଏକାନ୍ତ ସନ୍ତୋଷ ପ୍ରାପ୍ତ ହେଲେ ।୨୮।

ତାଙ୍କ ଅଙ୍ଗରେ କର୍ପୂର ବୋଳ ଦିଅନ୍ତେ ତାଙ୍କର ଅଙ୍ଗ ମହକ ଉଠିଲା ଏବଂ ସ୍ୱାଦୁ ଫଳ ଦିଅନ୍ତେ ସେ ତାହା କରପୂର୍ଣ୍ଣ କରି ଭୋଜନ କଲେ । ୨୯ ।

ବୃକ୍ଷ ବକଳକୁ ଅଣ୍ଟାରୁ ଫିଟାଇ ନାରୀଏ ତାଙ୍କୁ ବହୁମୂଲ୍ୟ ପାଟ ପିନ୍ଧାଇ ଦେଲେ ଏବଂ ଦର୍ପଣରେ କପରି ସେ ଦେଖାଗଲେ ତା ମଧ୍ୟ ଦେଖାଇଦେଲେ । ୩୦ ।

ଶବ୍ଦାର୍ଥ । ପୟୁ—ଜଳ । କର୍ପୂର—(କରପୁର) କରପୂର୍ଣ୍ଣ । ଆଦର୍ଶ—ଦର୍ପଣ ।

ସୁମନା ମଣ୍ଡିଲେ ଶିରେ
ଯତନେ ଗୁନ୍ଥି ଣ
ସୁମନା ମଣ୍ଡଣି ଦେଖି
ତୋଷ ମୁନିବ୍ରାଣ । ୩୧ ।
ମଠ କାହିଁ ପୁଚ୍ଛୁ ମଠ
ନ କରି କହିଲେ
ମଠ ତୁମ୍ଭ ଆମ୍ଭର ଯେ
ଆଶ୍ରମ ବୋଇଲେ । ୩୨ ।
ଦେବାର୍ଚ୍ଚନ କର କେଉଁ
ମନ୍ତ୍ର ପାଠ କରି
ଦେବାର୍ଚ୍ଚନ ଦେହେ ଆମ୍ଭ
କାମ ମନ୍ତ୍ର ପୂରି । ୩୩ ।

**କଥା**—ଫୁଲମାଳମାନ ଅତି ଯତ୍ନରେ ତାଙ୍କ ମୁଣ୍ଡରେ ସଜାଇ ପିନ୍ଧାଇ ଦେଲେ । ନାରୀମାନଙ୍କର କୋମଳ କରରେ ମଣ୍ଡିବା ଦେଖି ଋଷି ଏକାନ୍ତ ସନ୍ତୋଷ ହୋଇଗଲେ । ୩୧ ।

'ତୁମ୍ଭର ମଠ କେଉଁଠି' ବୋଲି ମୁନି ପ୍ରଶ୍ନ କରନ୍ତେ ବିଳମ୍ବ ନକରି କହିଲେ, ମଠ ତୁମର ଆଉ ଆମର ଏକ ଆଶ୍ରମ ରହିଛି । ୩୨ ।

'ଦେବତା ଅର୍ଚ୍ଚନା କେଉଁ ମନ୍ତ୍ର ପାଠ କରି କର' ବୋଲି ପଚାରନ୍ତେ କହିଲେ, ଆମ୍ଭ ଅଙ୍ଗରେ କାମ ମନ୍ତ୍ର ପୂରି ରହିଛି ତଦ୍ୱାରା ଆମେ ଅନଙ୍ଗ ଦେବତାର ଅର୍ଚ୍ଚନା କରିଥାଉଁ ।

---

ଶବ୍ଦାର୍ଥ । ସୁମନା—ନାରୀ, ପୁଷ୍ପ ।

ପାଣି ଅଭିଷେକେ ତୁଷ୍ଟ
ସେ ଶମ୍ଭୁ ଦେବତା ,
ପାଣି ମୁନି କର ଦେଇ
ଦେଖାଇ ବନିତା । ୩୪ ।

ଗୁରୁ ଆମ୍ଭର ମଠରେ
ଅଛନ୍ତି ବୋଇଲେ
ଗୁରୁ ସ୍ନେହେ ମୁନି କହି
ଆଣିବଟି ଭଲେ । ୩୫ ।

ବେଲାବସାନେ ଆସନ୍ତେ
ମୁନିଜ ପାଛୋଟି '
ବେଲାରେ ଭେଲାରେ ମିଳୁ
ଜରତା ପଚ୍ଛେଟି । ୩୬ ।

**କଥା**—ସେ ଶମ୍ଭୁ ଦେବତା ପାଣି ଅଭିଷେକରେ ତୋଷ ହୋଇଥାନ୍ତି । (ଶ୍ଳେଷାର୍ଥରେ) ସେ ନାରୀର ସ୍ତନରୂପୀ ଶମ୍ଭୁ, ହସ୍ତଦ୍ୱାରା ଅଧିକ ମର୍ଦ୍ଦନ କରିବାରେ କାମ ଉଦ୍ଦୀପନାରେ ଉତ୍ତପ୍ତ ହେତୁ ତୋଷ ହୋଇଥାନ୍ତି । ଏହା କହି ସେ ନାରୀମାନେ ସେ ମୁନିଙ୍କ ହାତକୁ ପାଣି ଛଳରେ ନେଇ ତାହା ସବୁ ସ୍ପର୍ଶ କରାଇଲେ । ୩୪ ।

ଆମର ଗୁରୁ (ଜରତା ବେଶ୍ୟା) ମଠରେ (ନାବରେ) ଅଛନ୍ତି ବୋଲି କହନ୍ତେ ବିଶେଷ ସ୍ନେହରେ ତାଙ୍କୁ ଏଠାକୁ ଆଣିବାକୁ ମୁନି କହିଲେ । ୩୫ ।

ଅପରାହ୍ଣରେ ମୁନିକୁମାର ସ୍ୱୟଂ ପ୍ରଲୁବ୍ଧ ହୋଇ ଏହି ନବୀନ ଋଷିମାନଙ୍କୁ ପାଛୋଟି ଆସନ୍ତେ, ନଦୀତୀରରେ ତାଙ୍କୁ ଭେଳାରେ ଦେଖି ମାୟାବିନୀ ଜରତା ନାନା ପ୍ରଶ୍ନ କରିଥିଲା । ୩୬ ।

---

ଶବ୍ଦାର୍ଥ । (୩୪) ଅଭି—ଉତ୍କୃଷ୍ଟ । ସେକ—ଉତ୍ତପ୍ତ କରିବାରେ । ପାଣି—ହସ୍ତ,ଜଳ ।
(୩୫) ଗୁରୁ—ଶିକ୍ଷକ, ଅଧିକ, ବିଶେଷ । କହି—କହିଲେ । ଭଲେ—ସହଜରେ, ନିଶ୍ଚୟ ।
(୩୬) ବେଲାବସାନେ—ଦିନର ଶେଷାଂଶରେ । ମୁନିଜ—ମୁନିପୁତ୍ର । ବେଲା—ତୀରଭୂମି । ଭେଲା—ନୌକା ।

**ବିନାୟକ ସିଂହ ବିନାୟକ**
**ହୃଦେ ଧ୍ୟାୟି**
**ବିନାୟକ ରାଘବ ବିଳାସ**
**ଛାନ୍ଦେ କହି । ୩୭ ।**

**କଥା**—ବିଘ୍ନନାଶକ ବିନାୟକଙ୍କୁ ହୃଦୟରେ ଧ୍ୟାନ କରି ବିନାୟକ ସିଂହ ମାନଧାତା ତାଙ୍କର ଦୀକ୍ଷାଗୁରୁ ବା ଦୀକ୍ଷାମନ୍ତ୍ରୀ ରାଘବଙ୍କ ବିଳାସ ଏହି ଗ୍ରନ୍ଥକୁ ଛନ୍ଦେ ଲେଖି କହନ୍ତି । ୩୭ ।



ଶବ୍ଦାର୍ଥ । (୩୭) ବିନାୟକ—ଗଣନାଥ । ବିନାୟକ—ଦୀକ୍ଷାଗୁରୁ , ଦୀକ୍ଷାମନ୍ତ୍ରୀ ।

# ରାଘବ ବିଳାସ

## ଚତୁର୍ଥ ଛାନ୍ଦ

**ଆଷାଢ଼ ଶୁକ୍ଳ ବୃତ୍ତରେ** ଊନବିଂଶତି ପଦରେ ଏହି ଛାନ୍ଦଟି ସଂପୂର୍ଣ୍ଣ ହୋଇଛି ।

ଜରତା ବେଶ୍ୟା ଋଷିକୁମାର ଋଷ୍ୟଶୃଙ୍ଗଙ୍କୁ ଭୁଲାଇ ନାନା ସୁଖରେ ମୁଗ୍ଧ କରିଥିଲେ । ତାହା ତପସ୍ୟାରୁ ଫେରି ବିଭାଣ୍ଡକ ମୁନି ଦେଖିପାରିଲେ ଏବଂ ପୁତ୍ରକୁ କହିଗଲେ ଯେ ଏସବୁ ଅସୁରମାନଙ୍କର କୃତ୍ୟ । ସେମାନଙ୍କଠାରୁ ଦୂରରେ ନ ରହିଲେ ମୃତ୍ୟୁ ସୁନିଶ୍ଚିତ ।

ବିଭାଣ୍ଡକ ପୁନର୍ବାର ତପସ୍ୟାକୁ ଚାଲିଗଲେ । ଜରତା ଋଷ୍ୟଶୃଙ୍ଗଙ୍କୁ ଆଶ୍ରମ ଦେଖାଇବା ବାହାନାରେ ନୌକାକୁ ନେଇ କାମନାରେ ଅନ୍ଧ କରିଦେଲା । ଏଣେ ନୌକା ଗତି କଲା ।

ଫଳରେ ଋଷିକୁମାର ଚମ୍ପାବତୀ ନଗରରେ ଉପସ୍ଥିତ ହେବା ମାତ୍ରେ ପ୍ରବଳ ବୃଷ୍ଟିପାତ ହେଲା । ରାଜା ମହାସମାରୋହରେ ପାଛୋଟି ନେଇ ନିଜର ପାଳିତାକନ୍ୟାଙ୍କୁ ଦାନ କଲେ ଏବଂ ତାଙ୍କର ମିତ୍ର 'ଶାନ୍ତା'ର ପିତା ରାଜା ଦଶରଥ ନିଜରାଜ୍ୟକୁ ଋଷ୍ୟଶୃଙ୍ଗଙ୍କୁ ଆମନ୍ତ୍ରଣ କରି ନେଲେ ।



# ରାଘବ ବିଳାସ

## ଚତୁର୍ଥ ଛାନ୍ଦ

(ରାଗ—ଆଷାଢ଼ ଶୁକ୍ଳ)

ମୁନିରତିରେ ଜରତି ନିରତ
କାମ ମୋହମାଙ୍କୁ ପୁଚ୍ଛେ ଗିର ତ
ହେଲାଟି ସଫଳ କହ ଭରତ
ମୁନିଜ ଦେଖିବା ଅର୍ଥେ ଆରତ
ବନସ୍ଥ ଗିର ତ
ଶୁଭ ବେଳାରେ ଗମନ କର ତ । ୧ ।

ଶୁଣି ଜପତ ଜରତି ରମଣୀ
ମୁଖାବ୍ଜ ଆଶା ଜଦେ ବନମଣି
ମୁନିଜ ବଚନକୁ କର ମଣି
ହୃଦ କାସାର ସମ୍ପୁଟକୁ ମଣି
ପାଶକୁ ଭ୍ରମଣି
କରବାରେ ନଣି ମୁହୂର୍ତ୍ତି ମଣି । ୨ ।

ବଭାକର ଅସ୍ତାଚଳ ଭଜୁ ତ
ବଭାବଣୀ ପ୍ରବେଶନ୍ତେ ଭୁଶତ
ବଭାଣ୍ଡକ ତପସ୍ଥାନୁଁ ଆଗତ
ବଭାବମଣି ପୁତ୍ରାଙ୍ଗ ସ୍ପର୍ଶେ ତ
ବଭାତ କେମନ୍ତ
ବଭାଗ କଲେ କୋଳରେ ଘେନି ତ । ୩ ।

ଅଶୁଭସୂଚକ ଏ କି କାରଣ
ଅସୁରସୁଖୀ ଏ ବନେ ଭ୍ରମଣ
ଅଶୁଭ ଅଙ୍ଗ ଦେଖାଇ ହରଣ
ଅସୁକର ଭ୍ରଷ୍ଟକାରେ ହୋଇଣ
ଅସୁମାର ଗୁଣ,
ଅସୁବେ ଭୁଲାଇ ନେବେଟି ଜାଣ । ୪ ।

---

ଶବ୍ଦାର୍ଥ । ରତା—ଆସକ୍ତ, ଅନୁରାଗ । ଅସୁକର—ଦୁଷ୍କର ।

ନଃ ଯିବୁ ରେ ଧନ ତାଙ୍କ ପାଶରେ
ନଜନକକୁ ଗଲେ ନେବେ ଅସୁରେ
ନ ଯିବୁ ମନା ଘେନଥିବୁ ମୋର
ନଜଗ୍ରକେ ମାରିବେ ସେ ପାମର
ନ ଯିବୁ ପରତେ,
ନଜବନ୍ଧ କରିଥିବୁ ନରତେ । ୫ ।

ଗଣିତର ଭୟ୍ଯ ପୂଜେ ବୁଝାଇ
ଗଣି ଅନ୍ତେ ମୁନ ଚପଳୁ ଯାଇ
ଗଣୀ ଶାନମାଙ୍କି ମୁନଜ ଧ୍ୟାୟି
ଗଣୀଶ ଜାଗ୍ରତୁଁ ବିଭ୍ରମ ହୋଇ
ଗଣି ଘନ୍ତ ବଗ
ଗଣିଆ ପୂର୍ବେ ବର୍ଜିବ ବଲଗ । ୬ ।

ବଟପ୍ରାଗ ଆରୋହଣ ଶୀଘ୍ରରେ
ବଟପୀକି ଦୃଷ୍ଟି ଦେଇ ସତ୍ୱରେ
ବଟମନ୍ତ ଜରନ୍ତ ମୁନଜରେ
ବଟଘରେ ପ୍ରବେଶିଲେ ସତ୍ୱରେ
ବଟପୁଁ ଉତ୍ତର,
ବଟପେଶ ସମାଧାନ ପ୍ରତ୍ତର । ୭ ।

ମୃଗାଙ୍କ-ଲପମା ସମାଦରରେ
ମୃଗାଙ୍କଜ ତୋଷ ସମାଦରରେ
ମୃଗାଙ୍କ ଶାସ୍ତ୍ର ଭାବୁ ସେ ହୃଦରେ
ମୃଗାଙ୍କ ବିଭ୍ରମ କୁଛ ମୁଦରେ
ମୃଗାଙ୍କ ଧିତାର,
ମୃଗାଙ୍କ ହେଲେ ସେ ଯେ ବନଗ୍ରର । ୮ ।

ଜରତା ରତାରେ ରତ ମୁନଜ
ଜର ଜର ଭାବେ ହର୍ଷ ହୃଦାବ୍ଜ
ଜରଣି କୋଳରେ ନ ଘେନ ଲଜ
ଜର ଜନ ତର୍ଣ୍ଣି ହୋଇ ଔଦାର୍ଯ୍ୟ
ଜରଜ ସବେଜ,
ଜରତା ଦେଇ ମୁନରେ ଉରଜ । ୯ ।

ମଠ ନ କର କହେ ମୃଦୁ ବାଣୀ
ମଠ ଦେଖିବ ଆସ ମୁନିମଣି
ମଠାଶ୍ରମ ଭେକ ହେଲେ ଅଗ୍ରଣୀ
ମଠଗମନା ବାରଙ୍ଗନା ଶ୍ରେଣୀ
ମଠଚା ନାବରେ,
ମଠଧରେ କହ୍ନ ନାବ ବାହାରେ । ୧୦ ।

ବନାଶ୍ରମିରେ ଚଷ୍ପରେ ବସାଇ
ବନରେ ବାସ ସଧୀରେ ବୁହାଇ
ବନସ୍ଥାନ ରଙ୍ଗ୍ରେ ଗମନ୍ତି ଚହ୍ନି
ବନଜ କଳ ଜରଜେ ରସାଇ
ବନଜ ନୟନା,
ବନଜ ଗୁଳକ ହୃଦରେ ଗୁଣି । ୧୧ ।

ମୁନିଜ ସେ ରସେ ରସାଇ ରସି
ମୁନିବର ସୁର ରସେ ଝଳସି
ମୁନିମନ ଗୁପ୍ତ ସ୍ଥାନେ ପ୍ରକାଶି
ମୁନିଙ୍କି ଜରଚା ମୃଦୁରେ ଘଷି
ମୁନିଙ୍କି ଭୁଲାଇ,
ମୁନି ଧର୍ମକୁ କ୍ଷଣକେ ଛଡ଼ାଇ । ୧୨ ।

କନକ କୁସୁମ ନଗ୍ରେ ପ୍ରବେଶ
କନକାଙ୍ଗୀ ଏ କରନ୍ତି ପ୍ରକାଶ
କର୍ଣ୍ଣରେ ଶୁଣି ଆମ୍ଭ ଭୂଷ ଆସ
କନକରେ ହୋଇ ମୁନିଜ ତୋଷ
କନକ ଝରରେ,
କର୍ଣ୍ଣବରେ ଜଳ ଆଣି ସତ୍ତ୍ୱରେ । ୧୩ ।

ବାରାଙ୍ଗନାଏ ଭାଷନ୍ତି କାରଣ
ବାରବର୍ଷ ରାଜ୍ୟେ ଜଳ ବନ୍ଧନ
ବାରମ୍ବାର ନାଥେ ଚନ୍ଦ୍ର ବଦନ
ବାରଣ ବର ଭେଜଣ ସେବନ
ବାରଣେ ବସିଣ,
ବାରବାର ଉଦୁରର ଗର୍ଜନ । ୧୪ ।

ଶବ୍ଦାର୍ଥ । କନକ କୁସୁମ—ଚମ୍ପା ।

କର ଧଣ୍ଟ ଜଗତା ମୁନିବର
କରନ୍ତେ ଗତି ଦେଖି ନୃପବର
କରଇ ଭକ୍ତି ହୋଇ ତୋଷଭର
କର ମଣ୍ଡିତ ସେ ଯେ ନିଜ ଶିର
କରମ ସୁଫଳ,
କଣ୍ଟକ ଦଣ୍ଡ ସ୍ୱଚ୍ଛଧାର ବର । ୧୫ ।

ସୁମନେ ଖଣ୍ଡିକ ପୁରେ ନେଲେ
ସୁମନାଗଣ ଅର୍ଘ୍ୟ ଦେଇଗଲେ
ସୁମନ ମାଳ କଣ୍ଠେ ଲମ୍ବାଇଲେ
ସୁମନାଏ ତୋଷ ଲଭିଲେ ଭଲେ
ସୁମନ ପଦାର୍ଥ,
ସୁମାନସରେ ଦଣ୍ଡ ନୃନୋଥ । ୧୬ ।

ଛମସ୍ଵିନୀରେ ଧରେନ୍ଦ୍ର ବାସରେ
ଛମ ନ:ନେ ଚନ୍ଦ୍ର ହୃଦୟରେ
ଛମରେ ମୁନିଜ ହୋଇ ଉତ୍କୃଷ୍ଟ
ଛମ ଅଣ୍ଟ ଦିନାଶନରେ ହୃଷ୍ଟ
ଛମଧରେ ସ୍ନାନ,
ଛମ ଅନଳେ ହୋମ ଆ:ପ୍ୟାୟନ । ୧୭ ।

ମିହିବଂଶୀ ଶୁଣି ଗମି ହରଷେ,
ମିହରେ ମିଳ ସସ୍ନେହେ ପ୍ରକାଶେ
ମିହଚା-ଗିର କୁହା କୋହ୍ଳି ହୋଇ
ମିହଜ ଜେମା ମୁନି-ହସ୍ତ ଦେଇ
ମିହଚା ସ୍ୱଚରେ,
ମିହବରେ ମୁନି ନେବା ସ୍ୱଜ୍ୟରେ । ୧୮ ।

ହନସ୍ୱ ପ୍ରକାଶ କଲେ ନରେଶ
ହନସ୍ୱରେ ହ୍ନିଁ ଧାନିଜ ଉଦ୍ଦେଶ୍ୟ
ହନସ୍ୱେ ହନାସ୍ୱକ ପଦ ଧାସ୍ମି
ହନାସ୍ୱକ ସିଂହ ଗ୍ରୁନ୍ଦରେ କହ୍ନି
ହନାସ୍ୱକ ହନା,
ହନାଶ ଦୁଶ୍ଚ କରେ ସ୍ୱବନା । ୧୯ ।



# ରାଘବ ବିଳାସ

## ପ୍ରଥମ ଛାନ୍ଦ

**କଳହଂସ କେଦାର** ବୃତ୍ତରେ ସପ୍ତବିଂଶତି ପଦରେ ଏହି ଛାନ୍ଦଟି ସମ୍ପୂର୍ଣ୍ଣ ହୋଇଛି ।

ଋଷ୍ୟଶୃଙ୍ଗଙ୍କୁ ଆମନ୍ତ୍ରନେଇ ଅଯୋଧ୍ୟାଧିପ ଦଶରଥ ଏକ ପୁତ୍ରେଷ୍ଟି ଯଜ୍ଞ କରାଇଲେ । ତାହା ମହାବଧିରେ କରାହେଲା ! ଯାଗର ଚରୁ ଖାଇ କୌଶଲ୍ୟା, କୈକେୟୀ ଏବଂ ସୁମିତ୍ରା ତିନ ରାଣୀ ଗର୍ଭବତୀ ହେଲେ ।

ଏହି ଅବସରରେ ବିଭାଣ୍ଡକ ଅଯୋଧ୍ୟାକୁ ଆସନ୍ତେ ଦଶରଥ ବହୁ ଧନ ସମ୍ପଦ ଦେଇ ତାଙ୍କୁ ତାଙ୍କର ପୁଅ ଓ ବୋହୂଙ୍କ ସହିତ ବିଦାୟ କରିଦେଲେ ।

ଦଶ ମାସ ଅନ୍ତରରେ ରାମ, ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ ଜନ୍ମ ହେଲେ ।



# ରାଘବ ବିଳାସ

## ପଞ୍ଚମ ଛାନ୍ଦ

( ରାଗ—କଳହଂସ କେଦାର )

ସୁଗ୍ରୀବ-ସ୍ନେହ ଅଜଜ ନୃପବରେ
ମୁନିଜ ଜାମାତାଙ୍କୁ ନେବା ରାଜ୍ୟରେ ଯେ,
ସୁବମାନରେ ସୁବମାନେ ବସାଇ
ଅନ୍ତରେ ଅନନ୍ତରେ ଗମିଣ ଯାଇ ଯେ । ୧ ।

ସରଯୂର ତଟାଙ୍କ ନଗ୍ରେ ପ୍ରବେଶ
ନ୍ଲେଭ ବନ୍ତରେ ଶୋଭା ପ୍ରଭା ବିଶେଷ ଯେ,
ଧରଣୀ ରାଣୀ ଶିର ଭୂଷା କଳିକା
ଧ୍ୟାନିଜ ଦୃଷ୍ଟିମାନେ ସ୍ନେହ ଅଧିକା ଯେ । ୨ ।

ଦୁର୍ଗେଶ ନିକେତନ ଉଡ଼େ କେତନେ
ପୀତ ସିତ ରଙ୍ଗିମାନ୍ଧବ କେସନ ଯେ,
ଅନନ୍ତାଙ୍କେ ବିହାର କପାର ବଂଶେ
ଉପବାସେ ନିମ୍ନାଦୌ ଅଗସ୍ତି ଶିଷ୍ୟେ ଯେ । ୩ ।

ବାସରେ ବାସରେଶ ସୁଟସ୍ନେହେ ଇହ
ମିଷ୍ଟଦ୍ରବ୍ୟ ଭୁଞ୍ଜିଣ ସନ୍ତୋଷ ବହ ଯେ,
ଯାଗରେ ଉଜାଗରେ ଫଳବେ ନିର୍ଭା
ଧନାର୍ଥେ ଧନଞ୍ଜୟେ ଦତ୍ତ ହବିର୍ଭା ଯେ । ୪ ।

ମନ୍ଦାଧାନେ କୃଶାଣ୍ଡି ସମିଧ ଦତ୍ତ
ସର୍ପି କ୍ଷେପୁ ପ୍ରଜ୍ୱଳେ ଜ୍ୱଳେ ଜ୍ୱଳତ ଯେ,
ନଗ୍ର ଜନଙ୍କ ଜନ ମନ ଉଲ୍ଲାସ
ସ୍ୱରେ ସୁରେଶ ସୁର ସେନ ହରଷ ଯେ । ୫ ।

ନର୍ତ୍ତକୀ ଛନ୍ଦି ଏଥି ବିପ୍ର ମାନେ
ବେଦ ବେଦୋକ୍ତ ଗାନ କରନ୍ତେ ସ୍ୱନେ ଯେ,
ଦ୍ୱିଜେନ୍ଦ୍ର ଧନଜରେ କି ଲକ୍ଷଦେବା
ଗଣିକା-ଗଣ ଗଣି ପାରିବ କେବା ଯେ । ୬ ।

ମୁନ କରାବ୍‌ଜେ ଚରୁ ଗୃହ ବହରେ
ଗ୍ରହୁ ବୈକୁଣ୍ଠ ଦୃଶ୍ୟ ହେଲେ ସଭରେ ଯେ,
ଏହାନ୍ତେ ଅଜଜରେ କରୁ ପ୍ରଦତ୍ତ
କର ସମ୍ପୁଟେ ଧରୁ ହୋଇ ହର୍ଷିତ ଯେ । ୭ ।

ସୂତ ମାଗଧ କୀର୍ତ୍ତି କଲେ ପ୍ରକଟ
ପଞ୍ଚ ଝର୍ଝର ଢକ୍‌କା ଧ୍ୱନ ଧପଟ ଯେ,
ଚମକ ଧମକରେ ଧରା କମ୍ପିତ
କ୍ଷ୍ମାଭୂ ଭାବଇ ମୋର କ୍ଷୋଭ ବର୍ଜିତ ଯେ । ୮ ।

ଅଜ ରାଜେନ୍ଦ୍ର ସୁତ ଯଜ୍ଞାନ୍ନ ନେଇ
ବେନ ମହିଷୀ କରାର୍ପିତ କରାଇ ଯେ,
କନିଷ୍ଠା କହନ୍ତେ ଭାଷେ ମୋ କର୍ମ ମନ୍ଦ
ବେଧା ବଧାନ ମମ ଭାଲରେ ଛନ୍ଦ ଯେ । ୯ ।

ଭଣୁଁ ଭଣିଲେ ବେନ ଯେନ ଆନନ୍ଦ
ହୃଦ ଗହନୁ ତାପ ପାଦପ ଛେଦ ଗୋ,
ରାକାନନଙ୍କୁ କୁହୂ ନଶା କପାଇଁ
ଅଂଶ ଲଭିବୁ ଆମ୍ଭ ସଙ୍ଗତେ ଭୁଞ୍ଜି ଗୋ ! ୧୦ ।

ଚତୁର୍ଥ ଗ୍ରହୁ ଚରୁ ଗୃହ ବଭକ୍ତ
କରିଲେ ସୁମିତ୍ରାଙ୍କ ହସ୍ତେ ପ୍ରଦତ୍ତ ଯେ,
ଯଜ୍ଞଜ ଅଂଶ ବେନ ପାଇ ସୁମୁଖ
ସୁଧାଶନ ତଦ୍‌ବତ ଭୁକ୍ତ ହସୂକ ସେ । ୧୧ ।

ଉଦରାର୍ଣ୍ଣବେ ବୈକୁଣ୍ଠ ଶେଷାସନ
ତେସନେ ରାଣ ବହି ସୁବର୍ଦ୍ଧମାନ ସେ,
ପୟସଜ କ କଳା ବୃଦ୍ଧି ପ୍ରକାଶ
ସୁଲଗ୍ନେ ସ୍ଥିତ ଅଜ-ରାଜଜଈଶ ଯେ । ୧୨ ।

---

ଶବ୍ଦାର୍ଥ । (୭) କରାବ୍‌ଜେ—କରପଦ୍ମରେ । ଅଜଜ—ଅଜପୁତ୍ର ଦଶରଥ ।
(୮) କ୍ଷ୍ମାଭୂ—ରାଜା, ପୃଥିବୀ ।
(୯) ବେଧା—ବିଧାତା ।
(୧୦) ରାକାନନ—ପୂର୍ଣ୍ଣିମାଚନ୍ଦ୍ର । କୁହୂନଶା—ଅମାବସ୍ୟା ।
(୧୧) ଯଜ୍ଞଜ—ଯଜ୍ଞଜାତ । ଅଜ—ଯେ ଜନ୍ମେ । ସୁଧାଶନ—ସୁଧା ଭୋଜନ ।
ଅଶନ—ଭୋଜନ । ହସୂକ—ଚନ୍ଦନ ।
(୧୨) ବହି—ବ୍ୟୂହ, ସୈନ୍ୟସଜ୍ଜା । ପୟସଜ—ଦୁଗ୍‌ଧ, ସମୁଦ୍ରଜାତ ଇନ୍ଦୁ ।
ପୟସ—ଦୁଗ୍‌ଧ ।

ଅନ୍ତରେ ନୃପଚନ୍ଦ୍ର ପେଷି ବାର୍ତ୍ତେୟ
ଶୃଙ୍ଗିଜ ମୁନି ପିତା ପାଶେ ନର୍ଣ୍ଣିୟ ଯେ,
ସୁମନ୍ତ୍ର ମନ୍ତ୍ରଣାରେ ଲେଖି ସୁଲେଖ
ଦତ୍ତେ ପାଇଣ ମୁନି ଆଗତ ସୁଖ ଯେ । ୧୩ ।

ଅଯୋଧ୍ୟା ମିଳୁଁ ଷଡ୍ଖଣ୍ଡକ ମୁମାଶ
ଷନ୍ତ ନତ ଶିରେ ହର୍ଷ ନରେଶ ଯେ,
ତଦ୍ୱାର୍ଥ ସମର୍ପନ୍ତେ ତନୁଜ ବଧୂ
ଗମୁଁ କୁଟୀରେ ମିଳିଲେକ ସୁସାଧୁ ଯେ । ୧୪ ।

ଦିନ ଦିନାନ୍ତେ ମାସାନ୍ତରେ ମାସାନ୍ତେ
ଯୁଗରେ ଯୁକ୍ତ ଋତୁ ଶେଷ ଶେଷାନ୍ତେ ଯେ,
ସପ୍ତଦ୍ୱି ଦିନ ମଧୁ ଋତୁ ମାସରେ
ତାର ଅବ୍ଧିଜ ଗ୍ରହ ଲଗ୍ନ ଯୋଗରେ ଯେ । ୧୫ ।

କୌଶଲ୍ୟା ଉଦରାବ୍ଧି ମନ୍ଥନ କଲା
ମାଳମଣି ସ୍ୱଶ୍ରୀ ସେ ଉଦ୍ଭବ ହେଲା ଯେ,
ଦ୍ୱାତ୍ରିଂଶ ମହାପୁଂସ ଲକ୍ଷଣ ଗାଢ଼େ
କୈକେୟୀ ଗର୍ଭ ମୁକ୍ତ ଲକ୍ଷଣ ତଢ଼େ ଯେ । ୧୬ ।

ମାଳାବ୍ଜ ଲକ୍ଷ୍ୟହୀନ ବନେ ନିବାସ
ସୁମିତ୍ରା ବେନ୍ୟାମ୍ବୁଜେ ଅନ୍ତେ ପ୍ରକାଶ ଯେ,
ପ୍ରଭବନ୍ତରେ କ୍ଷଣ ଦାହ୍ୟ ବିନ୍ୟାସ
ତ୍ରିମୂର୍ତ୍ତି କମ୍ପା ଗୃହ ଅଂଶେ ସୁଦୃଶ୍ୟ ଯେ । ୧୭ ।

ଧାତ୍ରୀ ଜଣାଇଁ ଧାତ୍ରୀ ମଣ୍ଡନ ଗୃହ
ତ୍ରିସଙ୍ଖ୍ୟ ଗର୍ଭେ ଭବୁଁ ଶ୍ରୀ ଦଣ୍ଡଧାରୀ ହେ,
ଆଜନ୍ମ ଦୃଶ୍ୟହୀନ ପାଇଲା ଦୃଶ୍ୟ
କୋଟି ପ୍ରାଣିଜ ପ୍ରାପ୍ତ ପ୍ରାପ୍ୟ ନକ୍ଷେଣ ଯେ । ୧୮ ।

ସ୍ତ୍ରିତ ବତ୍ତଲୁ ବିତରଣ କରିଲେ
ଦେବୀ ଦେବାର୍ଚ୍ଚନରେ ଦ୍ୱିଜେ ବରିଲେ ଯେ,
ସୂତ ମାଗଧ କୀର୍ତ୍ତି ଉଚ୍ଚେ ଉଚ୍ଚାର
ଗଣିକା-ଗଣ ମିଳ ନୃତ୍ୟ ଆଚରି ଯେ । ୧୯ ।

ଶବ୍ଦାର୍ଥ । ବାର୍ତ୍ତେୟ—ଚଟ୍ଟୋଢ଼ । ଶୃଙ୍ଗିଜ—ଋଷ୍ୟଶୃଙ୍ଗ ।

ଅମର ଅମରେଶ ହିଦେବେ କରେ·
ଦୁନ୍ଦୁଭି ଭେଷା ତୂରୀ ଡକ୍କା ନାଦରେ ଯେ
ସୁମନେ ସୁମନେଶ ସୁମନ ବୃଷ୍ଟି
ତାର ବାର ନକ୍ଷତ୍ର ନୃତ୍ୟ ପ୍ରକଟି ଯେ । ୨୦ ।

ମଙ୍ଗଳଧ୍ୱନି ତଥି ଏଥି ହୋଇଲା
ଶଚୀବରେ ସଚବରେ ହିଁ ମୋହିଲା ଯେ,
ବାରଣାର-ମାର୍ଗରେ ସର୍ବେ ମିଳଲେ
ଇଭାଶ୍ୱ ବେରବକୁ ସାଜ ତଞ୍ଚଳେ ଯେ । ୨୧ ।

ବାସରେ ବାସ ପାଇବା ଯେ ବଗଡ
ସୁମନେଶ ମନରେ ଲଭ ସୁବ୍ରତ ଯେ,
ଅନ୍ତରେ ଧାତ୍ରୀଚୟ ସୂତିକା ବାସେ
ହେମ ଦୂକ୍ତିରେ ନାଭି ଛେଦ ହରଷେ ଯେ । ୨୨ ।

ଇନ୍ଧନେ ଧନଞ୍ଜୟ କର ସଂଯୋଗ
ସୂତିକା ବଧୂଚୟେ ହୋଇ ଉଦ୍‌ବେଗ ଯେ,
ଦିନୁ ଦିନାନ୍ତେ ପଞ୍ଚ ଦିନ ପ୍ରବେଶ·
ଷଷ୍ଠୀରେ ଷଷ୍ଠୀ ଦେବୀ ପୂଜ ହରଷ ଯେ । ୨୩ ।

ଦ୍ୱାଂଶୈକ ଦିନ ନାଶ ତଭୁରେ ରୁଣ୍ଡ
ଶୁଦ୍ଧ ସଲଳେ ଶୁଦ୍ଧ କରାଇ ପିଣ୍ଡ ଯେ,
ଅଙ୍ଗରେ ଚତୁଃସମ କଲେ ଲେପନ
ବଶିଷ୍ଠ ବର୍ଣ୍ଣୀଷ୍ଟାଦ ନାମକରଣ ଯେ । ୨୪ ।

ଶବ୍ଦାର୍ଥ । (୨୧) ଶଚୀବରେ—ଇନ୍ଦ୍ରରେ । ସଚବରେ—ମନ୍ତ୍ରୀରେ । ବାରଣାର ମାର୍ଗରେ—ସିଂହଦ୍ୱାର ବାଟେ । ଇଭ—ହାତୀ । ଅଶ୍ୱ—ଘୋଡ଼ା । ବେର—ଶରୀର । ବ—ବସନ । ବେରବ—ହାତୀ ଘୋଡ଼ାଙ୍କ ଉପରେ ପଡ଼ୁଥିବା ମୂଲ୍ୟବାନ ବସ୍ତ୍ର ।

(୨୨) ସୁବ୍ରତ—ପଣ୍ଡିତ, କଶ୍ୟପ (ସ୍ତବନ) ।

ଜାତକ ଜାତକରେ ଜାତକ ଦେଲେ
ନୀଳକମଳ କାନ୍ତ ଶ୍ରୀରାମ ହେଲେ ଯେ,
ଗାତେ ଅଷ୍ଟାବକ୍ର ଶୋଭା ଲୋଭା ଶୋଭା ସେ
ଭ୍ରମେ ଭ୍ରମର ଭ୍ରମୁଛନ୍ତି ଉଲ୍ଲାସେ । ୨୫ ।

କୈକେୟୀଜରେ ଭ୍ରଥ ନାମ ପ୍ରଚାର
ଛଦନୁକ୍ରମେ ସର୍ବଗୁଣ ସୁନର୍ଭା ଯେ,
ସୁମିତ୍ରାତ୍ମଜ ଲକ୍ଷଣରେ ବ୍ୟାପ୍ତ
ଏଣୁ ଲକ୍ଷ୍ମଣ ନାମ କଲେ ସଯୁକ୍ତ ଯେ । ୨୬ ।

ଛଦନୁଜରେ ଶତ୍ରୁଘ୍ନ ସଘନେ
ପୁରସ୍କାରନ୍ତେ ବଦା ଯେଝା ସଦନେ ଯେ
ଦ୍ୱନକୁ ଦ୍ୱନ ସଙ୍ଗ ଜବବର୍ଦ୍ଧନ
ଶ୍ରୀ ମାନଧାତା ବନାୟକ ରଚନ ଯେ । ୨୭ ।



ଶବ୍ଦାର୍ଥ । (୨୭) ଜବ—ବେଗ, ଚଞ୍ଚଳତା ।

# ରାଘବ ବିଳାସ

## ଷଷ୍ଠ ଛାନ୍ଦ

**ଆହାରୀବୃତ୍ତରେ ତେଇଶିଟି ପଦରେ ଏ ଛାନ୍ଦ ସଂପୂର୍ଣ୍ଣ ହୋଇଅଛି ।**

ଜନକ ଦିନେ ଆକାଶକୁ ଅନାନ୍ତେ ଦେଖିଲେ ଏକ ଅପ୍‌ସରା ଇନ୍ଦ୍ର ଶାପରେ ଚାଲିଯାଉଛି । ସେ ତାକୁ ଦେଖି ମୁଗ୍‌ଧ ହୋଇ କହିଲେ—ଏଇଟି ମୋର କନ୍ୟା ହୁଅନ୍ତା କି ? ତା ଶୁଣି ସ୍ୱର୍ଗ ଅପ୍‌ସରା କହିଲା—ତୁମେ ମୋଠାରୁ ଏକାନ୍ତ ରୂପବତୀ କନ୍ୟା ଲଭିବ ।

ସେ ଯଜ୍ଞାର୍ଥେ ଚାଷ କରୁ କରୁ ଏକ କାଠର ପେଡ଼ି ପାଇଲେ । ସେଥିରୁ ଏକ କନ୍ୟା ତାଙ୍କର ଲାଭ ହେଲା । ସେହି ହେଉଛନ୍ତି ବିଶ୍ୱ-ଶୋଭାରାଣୀ ସର୍ବ ସଦ୍‌ଗୁଣବତୀ ସୀତା ।

ସେ ଯତ୍ନରେ ବଢ଼ିବା ପରେ ଏକ ଧନୁ ତାଙ୍କର ବିବାହ ଲାଗି ପଣସ୍ୱରୂପ ରଖାଗଲା ।

ଏଣେ ଅଯୋଧ୍ୟାରେ ବିଶ୍ୱାମିତ୍ର ଋଷି ପହଞ୍ଚି ଦଶରଥଙ୍କୁ କହିଲେ ଯେ ଅସୁର ଅତ୍ୟାଚାରରେ ଆମେ ଯାଗ କରିପାରୁନୁ, ତୁମ ପୁଅଙ୍କୁ ମୋ ସାଥିରେ ପଠାଅ । ଦଶରଥ ପ୍ରଥମେ ଅମଙ୍ଗ ଥିଲେ; କିନ୍ତୁ ପରେ ବାଧ୍ୟ ହୋଇ ରାମ, ଲକ୍ଷ୍ମଣଙ୍କୁ ତାଙ୍କ ସହିତ ଛାଡ଼ିଦେଲେ ।



# ରାଘବ ବିଳାସ

## ଷଷ୍ଠ ଛାନ୍ଦ

(ରାଗ—ଆହାରୀ)

ଶୁଣ ସୁବଦୁଷ
ସକଳ କଳ୍‌ବୃଷ
ଅଙ୍କୁରୁ ହୋଇବ ଚନ୍ଦନ
ଜନକ ନୃମଣି
କାଶ୍ୟପୀକ ଭୂଷ
କରନ୍ତେ କର୍ଷଣ ବନ୍ଦନ
ସେ କାଳେ
ସଭ ଶାପେ ଖରେ ଅପ୍‌ସର
ଖରେ ଯାଉଁ ଯତି
ଦେଖି ଦିବ୍ୟରନ୍ତି
ଦୁହିତା ହୋନ୍ତା ଏ ମୋ ପରି । ୧ ।

ନଗରୀ ନର୍ତ୍ତକୀ
ବ୍ରହ୍ମଣ୍ୟ ଭକ୍ତିକ
ଜାଣି ପ୍ରକାଶଇ ରଭସେ
ଧରଣୀ ସମ୍ଭୂତା
ହେବ ଭୂମି ସୁତା ;
ପଦ୍ମିନୀ ପାର୍ଥିବୀ ପ୍ରକାଶେ
ଗଢାନ୍ତେ
ବେଧା ବିଧାନରେ ଉତ୍ପତ୍ତି
ସୁଫେଡ଼ା ଫଳାଗ୍ରେ ;
ଦେଖି ଯତି ବ୍ୟଗ୍ରେ
ବହ୍ନେ ଦୃଷ୍ଟିପାତ ଝଟିତି । ୨ ।

ଶବ୍ଦାର୍ଥ । କାଶ୍ୟପୀ—ପୃଥିବୀ । ସଭ—ଇନ୍ଦ୍ର । ଖରେ—ଶୀଘ୍ରେ । ରଭସେ—ହର୍ଷରେ ଶୀଘ୍ର । ବେଧା—ବ୍ରହ୍ମା । ସୁଫେଡ଼ା—କାଠପେଡ଼ି ।

କାନ୍ତକ ଲକ୍ଷିତ
ଲକ୍ଷଣେ ସଂଯୁକ୍ତ
        ଈକ୍ଷଣେ ସୁକ୍ଷଣେ ସୁଗତ
ଧ୍ୟାନ ଜନ ନିଧି
ପାଇଲ୍ଲ ଅବଧି
        ସୁଧାପତ ସିଦ୍ଧି ପ୍ରାପତ
        ତତ୍କାଳେ,
        ପଦ୍ମସାଙ୍ଗୀ ଯେନ ସଜନେ
ସୀମନ୍ତମା ସୀମ-
ନ୍ତମା ଭୂଷା ମର୍ମେ
        ହୃଦୟା-ନନ୍ଦ ସେ ତେସନେ । ୩ ।
ବନଜ ସମ୍ଭୂତା
ପରସ୍ପେ ବର୍ଦ୍ଧିତା
        ପଦ ନଉନ୍ନଇ ହୋଇଂ କ
ନୟନ ଚକୋର
ସୁଧା ପାନ କରି
        କେଉଁବେ ସର୍ବେ ଅଲକ୍ଷ କ
        କାଟରେ,
        ଲତାଗ୍ର ଟଳ ଟଳ ମତ
ସୁମନା ଅଙ୍ଗରେ
ସୁଶୋଭ୍ର ରଙ୍ଗରେ
        ବେଳକୁ ବେଳ ସେ ବ୍ୟାପ୍ତ । ୪ ।
ଧାତ୍ରୀ ଶିଶ୍ର ଧାତ୍ରୀ
କୋଳେ ସୁଶୋଭନ୍ତ
        ଯଣ୍ଡ ଯଣ୍ଡ ନାସ୍ର ଆନନ୍ଦ
କୁଳ ପଦ୍ମସାଣୀ
ସମ୍ଭୂତା ଏ ପୁଣି
        ସୁମନା ଦର୍ଶନେ ପ୍ରମୋଦ
        ଅଦେହ,
        ଅଦେହ ନଗ୍ରେ ଯା'ଙ୍କ ବାସ
ବାସରେ ବାସରେ
ମଣ୍ଡିତ ହେବାରେ
        ସୁବାସ ବାସରେ ପ୍ରକାଶ । ୫ ।

ମିଳ ଯନ୍ତ୍ରବାଳୀ
ଆନନ୍ଦରେ ଖେଳ
ରଜନୀ କରରେ ତୋଷରେ
ଖରେ ଖରେ ରବି
ଦର୍ଶନ ବଗ୍ରହୀ
ପୂର୍ବ ଦେବାନୁଜ ନିତ୍ୟରେ
ଛନ୍ଦନ୍ତେ,
ବୁଧ ଶୁଦ୍ଧ ଭାବେ ଏ ରସ
ଚଉଦ ଶ୍ରୁତିରେ
ଶୁଣାଇ ସଭିରେ
ହୃଦେ ଦେଉ ଆମ୍ଭ ଆଦେଶ । ୬ ।
ମଞ୍ଜୁଷ ଭୋଗୀନ୍ଦ୍ର
ମଞ୍ଜୁଷ ଭୋଗୀନ୍ଦ୍ର
ଯେ ଭଗ୍ନ ଏଦଣ୍ଡ ତାହାରେ
ବଧୂର ବିନାଶ
ଆହେ ଚଉଦ୍ଦଶ
ବଧୂ ପାଇ ବଧୂ ନିକରେ
ବସ୍ତୁର,
ସୁରଆନନ ଶ୍ରୀ ବରଦେ
ବଧୂ ପାଇଁ ବଧୂ-
ଶେଖର ପ୍ରସିଦ୍ଧ
ଶୁଣି ଅଦେଦେଶ ସୁସ୍ନେହେ । ୭ ।
ଅନ୍ତେ କୋଶଳେଶ
ନଗ୍ରେ ସୁର ଶିଷ୍ୟ
ଖେଳନ୍ତି ବୁଲନ୍ତି ରଙ୍ଗରେ
ବନୁ ବନୁ ବୃଦ୍ଧି
ହୁଏ ଆନନ୍ଦାବ୍ଧି
ଅଯୋଧ୍ୟେଶଜ ସେ ଯୋଦ୍ଧାରେ
ବର୍ଦ୍ଧନ୍ତି,
କୋଳବାତାସ୍ଥ ଖଡ୍‌ଗୀଧର
ନଗ୍ରଜନ ମନ
ହୁଅଇ ରଞ୍ଜନ
ମୁଖଶ୍ରୀ ଉଦସ୍ଥ ପ୍ରସ୍ଥର । ୮ ।

ଅଙ୍ଗ ଘାତ୍ରି ମନ୍ତ
ନୁହଇ ଲକ୍ଷିତ
ଶ୍ରୀଧର ଯେ ପୂରେ ଉତ୍ପୃତ୍ତି
ଅନ୍ୟ ଘଟାନ୍ତର
ହୁଅଇ ଅନ୍ତର
କଟକ ଝଟକ ମୁଁ ଅତ
ଦର୍ଶନେ,
ଦର୍ଶନେ କୁ ଗତ କ ଚେଜ
ମନୋରଥ ସାର୍ଥ
କରଇ ଯଥାର୍ଥ
ନରଚେ ସୁଖାବ୍ଧିରେ ମଜ୍ଜି । ୯ ।
ଦୁର୍ଗେଶ ଆତ୍ମଜ
ଛପୀ ମଧ୍ୟେ ଆର୍ଯ୍ୟ
ଯଜ୍ଞାରମ୍ଭ ଶୀଘ୍ରେ କରନ୍ତେ
ବେଦଜ ପଠନେ
ସର୍ପି ବର୍ଷେଚନେ
ଦେଇ ଅଗ୍ନିପଦ୍ମେ ଧାମନ୍ତେ
ଚେତଣ,
ଜୀବନ ରକ୍ଷାର୍ଥେ ପଳାନ୍ତି
ଅପାଦ ଯେମନ୍ତେ
ତାର୍କ୍ଷ୍ୟ ବଲୋକନ୍ତେ
ସ୍ଥାନହୀନ ବଳ ଖୋଜନ୍ତ । ୧୦ ।
ହବର୍ପାନାନ୍ତରେ
ଚଳନ୍ତ କବୁରେ
ଚଦନ୍ତେ ଧାନଏ ଲୁଣ୍ଠ ଚ
ବସ୍ତୁଟେ କଥନ
ହୋନ୍ତି ସର୍ବେ ପୁଣ
ଭସ୍ମେ ନ ଫିଟାଇ ଭୁଣ୍ଡ ଚ
ଏମନ୍ତେ,
ବାରମ୍ବାର ଯଜ୍ଞାରମ୍ଭାନ୍ତେ
ପୁଣ୍ୟଜନ ପୁଣ୍ୟ-
ଜନ ବାମି ଭଗ୍ନ
କରୁଁ ଧାନେ ଧାମୀ ବସନ୍ତେ । ୧୧ ।

ଅନ୍ତରୀକ୍ଷ ବାଣୀ
କହିଣିକ ଶୁଣି
କୁଶଳେ କୁଶଳେ ସେ ଗମ୍ୟ
ନନ୍ଦନାଭିରାମ
ସେ ଜ୍ୟେଷ୍ଠ ଶ୍ରୀରାମ
କେ ଯୋଦ୍ଧା ନିପୁରେ ସୁସମ
ନୈର୍‌ଋତ-
ଗଣ ସେ କରିବେ ସଂହାର
ବ୍ୟଗ୍ରଚିତ୍ତେ ତପୋ-
ବନୁ ସେ ଆଗତେ
ମିଳ କଟକ ଦ୍ୱରଦ୍ୱାର । ୧୨ ।
ନୃପାଗ୍ରେ ମୁନୀଶ
ପ୍ରବେଶୁଁ ନରେଶ
ଦେଖି ପଦ୍ମେ ପଦ୍ମ ମାର୍ଜନ
ଛନ୍ଦନ୍ତେ ଆସନେ
ବସାଇ ସମ୍ମାନେ
ପୁଚ୍ଛନ୍ତି ହୋଇଣ କାର୍ପଣ୍ୟ
ଆଗତ,
ବୃତ୍ତାନ୍ତ ମୁନୀଶ କହିଲେ
ଦେଲେ ତବ ସୁତ
ମୋ ମଖ ରକ୍ଷାତ
ପୁଣ୍ୟ ପୁଣ୍ୟ ଜନ ନାଶିଲେ । ୧୩ ।
ସୁବଞ୍ଚାମୀ ଜ୍ଞାନ
ଶୂନ୍ୟ ଆଜ ସୁନ
କ୍ଷଣକେ ସଚେତ ଭଜଣ
ବୃତ୍ତାନ୍ତ ପ୍ରକାଶ
ବାଳକ ମୋ ଶିଷ୍ୟ
ସେ କ ସଂଗ୍ରାମରେ କପୁଣ
ତବାର,
ନାଶି, ଦର ବନାଶିବେ କ ?
ସେଣ ସୈନ୍ୟଚମୂ
ମୁଁ ନଜେ ବଜପୁ
ଦୈତ୍ୟ ନାଶେ ଭୟ କାହିଁକ ? । ୧୪ ।

ମୁନି ଶ୍ରେଷ୍ଠ ଶ୍ରେଷ୍ଠ
ଅଯୋଧ୍ୟାଇ କ୍ଷଣ
ପ୍ରାକର୍ମ ଶୁଣୁଥାଉ ବଳ
କମଳ ବଧିବା
ଲକ୍ଷଣ ସମ୍ଭବା
କେ ଅବା, ସମର୍ଥ କୁଞ୍ଜର
ଦର୍ପକୁ,
ଭଗ୍ନାର୍ଥେ ଉଦ୍ଭବ ତୁମ୍ଭେ ତ
ନିଦରର ହେବ
ନିସର କରିବ
ସ୍ୱସର ପଣ ଦେଖାଇ ତ । ୧୫ ।
ରଣରେ ପ୍ରବୀଣ
ନୃପନ୍ତ ନନ୍ଦନ
ଶେଷ କାଳେ ପାଇଅଛୁ ତ
ଆଶା ତରୁବର
ଛେଦ ମୁନିବର
ବଚନ କୁଠାର ଧରି ତ
ଝହ୍ବତ,
ନୃହରି ଏ ମନ୍ତ୍ର ତୁମ୍ଭର
କେଉଁ ଅପରାଧ
କଲି ମୁଁ ଅବୋଧ
ହେଉଛୁ ହେ ମୁନି ହୃଦର । ୧୬ ।
ନ ଦେଲେ ତନୁଜ
ବିନାଶିବ ଆଜ
ଶିଷ୍ୟହୀନ କରି ଏ ପୁର
ସାରିବ ସକଳ
ହେବଟି ଅକଳ
ନକଲି ଗିରି ହେବ ଦୂର
ଭୂପାଳ,
କପାଳ ହେଲା ତୋ ବିଫାଳ
ସୁଫଳ ତେଜକୁ
ବିଫଳ ଭଜକୁ
ଆଜ ତୁ ଲଭୁ କି ଫଳ ! ୧୭ ।

ଜାଣୁନା ଯେମନ୍ତ
ମୋହର ବୃତ୍ତାନ୍ତ
ବିପୁରକୁ ତପ ବଳରେ
କ୍ଷଣକେ ବନାଣି
ନୂତନ ପ୍ରକାଶି
ଦଶ ଦିଗପାଳ ଆବରେ
ଏମନ୍ତ,
ଲୋକରେ ତୋର ପରିହାସ
ବାସବରେ ବାସ,
ମୁଁ ନ ଗଣେ ଦଶ
ବରେ ସମ୍ରାଟେ ଯା ପ୍ରକାଶ । ୧୮ ।
ଗାଧିଜ କୋପାଗ୍ନି
ବଶିଷ୍ଠ ଯେ ଜାଣି
ଶାନ୍ତ ଉକ୍ତି ପୟୁ ଦେଇଣ
କଲେ ପ୍ରବୋଧିତ
ବିଶ୍ୱାସ ବର୍ଦ୍ଧିତ
ଅବଧି ନ କର ଆପଣ
ବସିଲେ,
ବିଶ୍ୱାମିତ୍ର ମିତ୍ର ଗିରରେ
ସୁମନ୍ତ୍ର ବଶିଷ୍ଠ
ନପେ କରି ମିଷ୍ଟ
ମଧୁରେ ଗିର ସୁ ସ୍ନେହରେ । ୧୯ ।
ଜ୍ୟେଷ୍ଠସୁତେ ଦେଇ
ମୁନିରେ ବିନୟୀ
ହେବାର ଆମ୍ଭର ଉଚିତ
ବ୍ରାହ୍ମଣଙ୍କ ବାକ୍ୟ
ନୃପତି-ତିଳକ
ହିତ ମଣି ଦେଲେ ଉଦନ୍ତ
ଶ୍ରୀରାମ,
ସଦନୁ ଅଣାଅ ତୁରିତ
ବାର୍ତ୍ତାବହ ବାର୍ତ୍ତା
ଦେଇ ସେ ତୁରିତ
ପିତାଙ୍କ ପାଳ ପାଶେ ସ୍ଥିତ । ୨୦ ।

ନପଜ ମୂନଙ୍କ
ବକ୍ତା ପ୍ରକାଶକ
ବନାଶ୍ରମ ଗତ ରଙ୍ଗରେ
ଆଦେଶାନୁମତେ
ରାମ ବାହାରନ୍ତେ
ଲକ୍ଷ୍ମଣ ଆଗତ ସଙ୍ଗରେ
ସୁରମ୍ୟେ,
ସୁରମ୍ୟେ ବେନ ଭ୍ରାତ ମୁନ
କର ଅରଦର
ବେନ ସହୋଦର
ଧର ଚନ୍ଦୁ ଶୋଭ ମେଦନୀ । ୨୧ ।
ଭବେ କ୍ଷୁଧାଭୂ କ୍ଷୋଭ
ଆଜୁଁ ଦୂର ହେବ
ବୈକୁଣ୍ଠନାଥ ଭଜେ କଲେ
ଦୁଷ୍କୃତ ନପାତ
ସୁକୃତ ଉତ୍ପତ୍ତି
ହୋଇବ ମୋ ଭାଗ୍ୟ ବଳରେ
ଭୂପତି,
ଚିନ୍ତା ରତ୍ନାକରେ ବୁଡ଼ିଲେ
ଭଶାଖା ପାଦପ
ପ୍ରାପ୍ତ ହୋଇ ଆପ
ବେନ ନୟନୁ ଗଡ଼ାଇଲେ । ୨୨ ।
ଜଠର ଆଧାଶ୍ରି
ହୋଇ କାଷ୍ଠ ପର
ଦୁଃଖାଗ୍ନିରେ ଦହ୍ୟ ହୁଅନ୍ତ
ମନ୍ତ୍ରୀ ଧାତ୍ରୀ ମିଳ
ପ୍ରବୋଧନ କର
ସାନ୍ତ୍ୱନା ସୁଶିକ୍ଷା ଦିଅନ୍ତ
ଭବନ୍ତ,
ନଶାନ ଦୁର୍ଗ ନର-ଗଣ
ଭନାପ୍ତକ ଧାର୍ଯ୍ୟ
ଭନାପ୍ତକ କହ୍ୟ
ଶ୍ରୀରାମ ଶ୍ରୀପଦେ ଶରଣ । ୨୩ ।

# ରାଘବ ବିଳାସ

## ସପ୍ତମ ଛାନ୍ଦ

**ରସକୁଲ୍ୟା ରାଗରେ ଚବିଶିଟି ପଦରେ ଏହି ଛାନ୍ଦଟି ରଚିତ ହୋଇଛି ।**

ରାମ ଅରଣ୍ୟରେ ବିଶ୍ୱାମିତ୍ର ଏବଂ ଲକ୍ଷ୍ମଣଙ୍କ ସହିତ ଯାଉ ଯାଉ ତାଡ଼କା ତାଙ୍କୁ ଆକ୍ରମଣ କରନ୍ତେ ତାକୁ ଶରାଘାତରେ ମାରିଦେଲେ । ଫଳରେ ଯଜ୍ଞ ସୁରକ୍ଷାନ୍ତେ ବିଶ୍ୱାମିତ୍ର ଉକ୍ତ ଦୁଇ ଭାଇଙ୍କୁ ଜନକଙ୍କ ଯଜ୍ଞ ଦେଖାଇନେବାକୁ ଇଚ୍ଛାକଲେ ।

ଜନକ ଯଜ୍ଞଶାଳା ଅତି ଆଡ଼ମ୍ବର ସହକାରେ କରିଥିଲେ ଏବଂ ନିଜର କନ୍ୟା ସୀତାଙ୍କ ସ୍ୱୟମ୍ବରବିଧି ମଧ୍ୟ ସେଠାରେ କରାଯିବା ସିଦ୍ଧାନ୍ତ ହୋଇଥିଲା ।

ରାମ, ଲକ୍ଷ୍ମଣ ସେଠାକୁ ଯାଉ ଯାଉ ପଥରେ ଅହଲ୍ୟାଙ୍କୁ ମୁକ୍ତି ଦେଲେ । ଅହଲ୍ୟା ଶାପରୁ ମୁକ୍ତ ହୋଇ ତାଙ୍କର ସ୍ୱାମୀ ସନ୍ନିଧିକୁ ଗମନ କଲେ ।



# ରାଘବ ବିଳାସ

## ସପ୍ତମ ଛାନ୍ଦ

( ରାଗ—ରସକୁଲ୍ୟା )

ରାମ ରାମାନୁଜ ଘେନିଣ ମୁନି
ବିପିନେ ରାମ ନ କରୁ ତକ୍ଷଣି
ମାର୍ଗରେ ମାର୍ଗଣ ଧରି ଚଳନ୍ତି
ଅଗ୍ରେ ଗାଧିଜ ସରଣୀ ଦେଖାନ୍ତି ଯେ
ନିଦାଘ ତରୁ ଲତିକା ଯେ,
ସରଣୀ ତରଣି          ବିଗତେ ଅଦୃଶ୍ୟ
ଦିବସ ଦର୍ଶ ରଜନିକା ଯେ । ୧ ।

କଦ୍ରୁସ୍ତ୍ରୀଏ ଆତଯାତ ତହିଁରେ
ଜାଣି ତପୀ ଭୟ ଗ୍ରସ୍ତ ହୃଦରେ
ଦଶରଥଜରେ ଭାଷନ୍ତି ଗିର
ବିପଥେ ଯିବା ଏ ଭୟ ପଥର ହେ
ହସି ଭାଷିଲେ ନୃପଜ ଯେ,
ତାଙ୍କୁ ଯେବେ ଡରି          ଯାଗ ମୁଁ ନ କରି
ରକ୍ଷିବ କହ ତ ଆଜ ହେ । ୨ ।

ଗମନ୍ତୁ ଏ ପଥ ବିପଥ ନୋହି
ଆସିଲେ ନାଶିବି ସନ୍ଦେହ ନାହିଁ
କୋଦଣ୍ଡରେ ଦଣ୍ଡ ପାଇ କ୍ଷଣକେ
ଜୀବ ଯିବ ତା କୃତାନ୍ତ ନଜକେ ହେ
ଚିତ୍ତନନ୍ଦେ ଧାମୀ ଚଳି ଯେ,
ବୃନ୍ଦାର୍କାରି ସୁନ୍ଦ—          ନାରୀ ଦେଖି କଣ୍ଟି
ଗର୍ଜି ଆସି ପାଶେ ମିଳି ଯେ । ୩ ।

---

ଶବ୍ଦାର୍ଥ । ରାମାନୁଜ—ଲକ୍ଷ୍ମଣ । ଗାଧିଜ—ବିଶ୍ୱାମିତ୍ର । ତରଣି—ସୂର୍ଯ୍ୟ । କଦ୍ରୁସ୍ତ୍ରୀ—ଅପ୍ସରା । ବୃନ୍ଦାର୍କାରି—ଦେବତାଙ୍କ ଶତ୍ରୁ । ସୁନ୍ଦନାରୀ—ତାଡ଼କା ।

ଗୁ ଛୁଟର ଚରୁବର କରରେ
ପ୍ରଚଣ୍ଡ ଭୁଣ୍ଡକର ଉଚ୍ଚ ସ୍ୱରେ
ରସନା ଅଳସାଳରେ ସ୍ଖଳଇ
ରଦନ ଘର୍ଷ ପବ ନର୍ଘୋଷ ହିଁ
ବକଟାଳ ମୁଖ ଶୋଭୁ ଯେ,
ପ୍ରଖର ବତାସ ପ୍ରାୟେଣ ନଶ୍ୱାସ
ନେତ୍ର କ୍ରୋଧାଗ୍ନି ଜଳଇ ଯେ । ୪ ।

ବଧୂ ବଧୂନ୍ତୁଦ ଗ୍ରାସିଲା ପ୍ରାୟେ
ବଦନ ବସ୍ତାର କୋପରେ ଧାଏଁ
ପଦ୍ଭରେ କମ୍ପିତ କାଶ୍ୟପୀ ଭଜ
ଭୁବନେ ଲଭିବ କ ଅବା ଆଜ ଯେ
ଯିବ ଜୀବଧନ ବାସେ ଯେ,
ଗମନ ଭମନ ଲଭିଲେ କ ପୂଣ୍ୟ
ଜନ ପୁଣ୍ୟଜନ ଛଣେ ଯେ । ୫ ।

କଟକ ସାନୁଜ ଶ୍ୟାମ ସୁନ୍ଦର
ଅଶ୍ରଜରେ ଗୁଣ ଦେଇ ସତ୍ୱର
ବାଜ ସାଜ ବାଜ ବାଜନ୍ତେ ଗାଣ୍ଡେ
ଅପାର ନର୍ଘୋଷ ସବେ ଶୁଣିଲେ
ଜୀବରସ୍ତୁ ଦ୍ରୁତ ଗତି ଯେ,
କବ୍ରୁଶ୍ରୀ ପତନେ ବିଟପ ସୁମନେ
ଆପ୍ଲୁ ତେଜଣ ଝଟିତି ଯେ । ୬ ।

ଶବ୍ଦାର୍ଥ । ରସନା—ଜିହ୍ୱା । ପବ ନର୍ଘୋଷ—ବଜ୍ରନାଦ । ବଧୂନ୍ତୁଦ—ରାହୁ । କାଶ୍ୟପୀ—ପୃଥିବୀ ।

ମୁନୀଶ ନୃପେଶାତ୍ମଜେ ପ୍ରଶଂସି
ଆଶୀର୍ବାଦେ ତୂର୍ଣ୍ଣ ମନାନ୍ଦେ ଭାଷି
ଖରେ ଭୂରେ ଅଧ ସୁଯଶ ଖ୍ୟାତ
ଦୀର୍ଘାୟୁ ବୈରବ ହେଉ ସୁପ୍ରାପ୍ତି
ଏତେ ଭାଷି କଉଣିକ ଯେ,
ମଦନ ସୁନ୍ଦର ନେଲେକ କୁଟୀର
ସୁଫଳାସନ ଦେଲେକ ଯେ । ୭ ।

ଜାତବେଦାହୁତେ ଦେଇ ମନ୍ତ୍ରାଦ୍ଧ
ବନୌକାଏ ବୃନ୍ଦି ଆନନ୍ଦ ଅବ୍ଧି
ସୁର-ଦ୍ୱିଷଚୟ ରାମ ସହାର
ମଖ ପକ୍ଷ ହୋଇ କୋଦଣ୍ଡଧାରୀ ସେ
ଯଜ୍ଞାରମ୍ଭେ ସମାପନେ ଯେ,
ବାରେନ୍ଦ୍ର ମଙ୍ଗଳ ଅକ୍ଷତ ପ୍ରଦତ୍ତ
ଚର୍ଚ୍ଚି କରିଲେକ ତୂର୍ଣ୍ଣେ ଯେ । ୮ ।

ରାମ ରାମାନୁଜେ ମୁନି ସନ୍ତୁଷ୍ଟ
ଶରାସନ ବିଦ୍ୟା ପ୍ରଦତ୍ତ ହୃଷ୍ଟ
ଦଇବକ୍ଷୟ କାରକ ବୋଲାଅ
ତ୍ରିପୁର ପୁରାଗ୍ରେ ଧ୍ୱଜା ଉଡ଼ାଅ ଯେ
ବିଜୟ ଜୟ ତାରକ ଯେ
ଫଳାଶନ କରି ଯଜ୍ଞ ରକ୍ଷାକାରୀ
ମାନସେ ଲଭି ପୁଲକ ଯେ । ୯ ।

ଶବ୍ଦାର୍ଥ । ତୂର୍ଣ୍ଣ—ଶୀଘ୍ର । ଜାତବେଦ—ଅଗ୍ନି । ବନୌକାଏ—ବନବାସୀ ମୁନିଗଣ । ସୁରଦ୍ୱିଷ—ଅସୁର ।

ଅନ୍ତେ ଅବୋଦ୍ଧଜ ପ୍ରଜା ନାୟକ
ଦୁହିତାର୍ଥେ ବଡ଼ ହୋଇ ଉତ୍ସୁକ
ଦ୍ରୁତେ ଦୂତ ଦୁର୍ଗ ମାର୍ଗେ ଚଳିଲେ
ଶ୍ରେଷ୍ଠ ମରଦ୍ଧଜ ବାହ୍ନିକେ ଗଲେ
ଶୁଭ ବାତକେ ପ୍ରକାଶି ଯେ
ରହିଲେ ବାସରେ ବାସରେ ପ୍ରବେଶି
ସମସ୍ୟା ଜନକେ ଭଷି ଯେ । ୧୦ ।

ଧାମାଣ ପ୍ରେମାନନ୍ଦ ମାନସରେ
ସମାରମ୍ଭ କଲେ ବଧି ମତରେ
ଦ୍ୱି ର-ଦାବଣ୍ଟଣ ସଚବ ସୌଧ
ଭୋଜ୍ୟ, ପେୟ, ଲେହ୍ୟ, ଚୋଷ୍ୟ ପ୍ରସିଦ୍ଧ
ବଳ ପ୍ରବଳ ସାଜଣ ଯେ
ସୂତ ମାଗଧ ଜନକ ରାଜପୁରେ
ସାଜଣ ଦ୍ରବ୍ୟଭୂଷଣ ଯେ ।୧୧।

ବଗରକ୍ଷ ଲୋକେ ଯାନ ଆରୋହି
ସମ୍ଭାର ଆରମ୍ଭେ ବନସ୍ଥ ହୋଇ
ନଶାଣ-ଚୟ ଘୋଷଣା ଦଆଇ
ବନ୍ଧୁକର୍ତ୍ତା ବନ୍ଧୁାର୍ଥକେ ମଣାଇଁ
କେ ରମା ଉମେଶ ଚନ୍ଦ୍ର ଯେ,
ମଙ୍ଗଳେ ମଙ୍ଗଳା- ଅଂଘ୍ରି କର ଭେଳା
ସୁଲଗ୍ନ ବେଳେ ଗମନ୍ତ ଯେ ।୧୨।

ମୃଗାଶାଶ୍ରମ ଆଶ୍ରମେ ମିଳିଲେ
ବାଦ୍ୟକାର ବାଦ୍ୟଧ୍ୱନି କରିଲେ
ଢକ୍କଢୋଲ ଭେରି ଦମାଲୁ ତୁରି
ଘଣ୍ଟା, ଡିଣ୍ଡିମ, ମଙ୍ଗଳ, ମହୁରି
ଦୁଲୁଦୁଲୁ ସେ ଧପଟ ଯେ
ମାର୍ଗେ ବର୍ଗେ ବର୍ଗେ    ଜନକ ସଂସର୍ଗେ
ବାସ ରମି ଗମି ଥାଟ ଯେ ।୧୩।

ନର୍ତ୍ତକୀ ମଙ୍ଗଳାରମ୍ଭ କରନ୍ତି
ସ୍ଥାନାନ୍ତେ କେ ବଟପାତ୍ରେ ଦେଖନ୍ତି
ଖର୍ବ ଖର୍ବ ଅର୍ବ-ବୃନ୍ଦ ଦ୍ୱିଦନ୍ତୀ
ଅଗଣା ପୂରିତ ଦୁର୍ଗାଧିପତି ସେ
ଧରଜା ଅର୍ଥେ ଉତ୍ସବ ଯେ
ଛନ୍ଦ ଭ୍ରମର    ଚପଳ ବଚାନରେ
ମିତ୍ରାତପହାନି ଭାବ ଯେ ।୧୪।

ଜନକ ଜନଙ୍କ-ନାସ୍ତୁକେ ଚର୍ଚ୍ଚି
ସମ୍ଭବେ ସଖରମ୍ଭକୁ ବିରଚି
ଲେଖ ବନ୍ତରେ ନଗ୍ରାଧିପ-ତସ୍ତୁ
ସର୍ବ ଧୃତ ଭ୍ରାନ୍ତି ଦର୍ଶନେ ଲସ୍ତୁ ଯେ
ରଦନ୍ତେ ବୁର୍ଦ୍ଧ ବନ୍ଦୁଷ ହେ
ସମାଭିସମରେ    ବ୍ରହ୍ମଣ୍ୟ ବଦନ୍ତେ
ଯେନ ଆମ୍ଭର ଆଦେଶ ଯେ ।୧୫।

ଶବ୍ଦାର୍ଥ । ଅର୍ବ—ଘୋଟକ । ଧନ୍ବଜା- ସୀତା । ମିତ୍ର—ସୂର୍ଯ୍ୟ । ଆତପ—କିରଣ ।

ବିଦେହ ନଗ୍ରେ ଜନକ ସମ୍ଭାର
ନମନ୍ତି କୁ-କ୍ଷଣଗଣ ସଭିଷ୍ଠ
ଭୁଜେଶଧର ଯେ ଭଗ୍ନେ ସମର୍ଥ
ପୃଥ୍ୱୀ ପ୍ରଦତ୍ତ ହିଁ ତାରେ ଯଥାର୍ଥ
ମାର୍ଗଣଧ ମାର୍ଗଣଧ ଯେ,
ମାର୍ଗରେ ମୁମାଣ ଧରି ସାନୁଜକୁ
ଗମୁ ବୁଝି ଲଗ୍ନସିଦ୍ଧ ଯେ ।୧୬।

ବିପିନ ବୀଥିରେ ପ୍ରସ୍ଥାଣ କଲେ
ତରୁ ଗୁଲ୍ମ ବ ନଘଞ୍ଚ ଶିଖରେ
ମିହିରାତପଶ୍ମାନ ନିର୍ଝରୁ ଝର
ଝର ଝର ହୋଇ ବହେ ପ୍ରଖର ସେ
ଶୀତଳା-ମୋଦ୍ଧ ଆଶୁଗ ଯେ
ବହନ୍ତେ ଗାତ୍ରରେ ବାଜନ୍ତେ ସଭିତ୍ରେ
ହରନ୍ତେ କାଧା ବିଶ୍ରାଗ ଯେ ।୧୭।

ସୁବିପୁଳ ବନାନ୍ତରେ ଚଳନ୍ତେ
ସିଦ୍ଧ ସିଦ୍ଧାଶ୍ରମେ ପ୍ରବେଶ ହୋନ୍ତେ
ପତି ଶାପେ ଶିଖିଷାଙ୍ଗୀ ଉପଳ
ହୋଇ ଶାସ୍ତି ଭୋଗେ ସେ ଅସ୍ଥକାଳ
ପୂଛୁ ମୁନି ଧନୁର୍ଦ୍ଧର ଯେ,
ଅଷ୍ଟାଦଶ-ଚିହ୍ନ ପ୍ରଦତ୍ତ କରନ୍ତେ
ହେଲା ସୀମନ୍ତିନୀ ସାର ଯେ ।୧୮।

ଶବ୍ଦାର୍ଥ । କୁ—ପୃଥିବୀ । ଇଶ—ପଦ୍ମ । କ୍ଷିଣ— ରଜା । ଆଶୁଗ—ପବନ ।
ମିହାତପ—ସୂର୍ଯ୍ୟକିରଣ । ଅଷ୍ଟାଦଶ ଚିହ୍ନ—ପାଦ । ଉପଳ— ପ୍ରସ୍ତର ।

ଦେଖି ମଦନ ସୁନ୍ଦର ସୁନ୍ଦରୀ
ଚରେ'କର ଅବ୍ଜ ସଂଯୁକ୍ତ କରି
ବିନତି ନତ ମସ୍ତକେ ବ୍ୟକ୍ତାନ୍ତେ
ଇକ୍ଷଣୁ ସୁକ୍ଷଣେ ଅଶ୍ରୁ ବହନ୍ତେ
ହୃଦାବେଗେ ଶୋଭା କଞ୍ଜ ଯେ,
ମିତ୍ର ବଂଶୋଦ୍ଭବ ଜଦେ ପ୍ରବେଶନ୍ତେ
ଆଶା ପ୍ରଫୁଲ୍ଲିତ ପୁଞ୍ଜ ଯେ ।୧୯।

ସାଦରେ ବାରେ ହରି, ହର ଦର
ମୋହ ମୋହଦ ମୋର ଦୂର କର
କଷ୍ଟ ନଷ୍ଟକ ଲୋକର ଭରସା
ଏଣୁ ଆଶା କରିଛୁ ସାରଦଶା ହେ
ଏ ଧନୁବନ୍ଧ ଘୁସ୍ଥାରେ ଯେ,
ଅହଲ୍ୟା ରକ୍ଷଣ ଶ୍ରୀରାମ ଚରଣ
ସ୍ତବ କରନ୍ତି ଆଦରେ ଯେ ।୨୦।

ବନ ରୁହାଂଘ୍ରିରେ ଚିତ୍ତ ମୋ ଦତ୍ତ
ସମାଜରେ ବିଦ୍ୟା ଦିଅ ଭୁରିତ
ମାଳାମ୍ବୁଧର ବାଚକ ପ୍ରକାଶି
ଚପଳେ ଚପଳାଙ୍ଗୀ କାଶହାସି ଗୋ
ସ୍ଥିତ ପତି ସୁସେବାରେ ଗୋ
ମୁକ୍ତି ମାଗି ଭକ୍ତି ଶିବେ ପ୍ରଣମିତେ
ସୁନ୍ଦରୀ ଗମେ ପ୍ରଖରେ ଯେ ।୨୧।

---

ଶବ୍ଦାର୍ଥ । ବନରୁହାଙ୍ଘ୍ରି—ପଦ୍ମପାଦ ।

୨୦—ଧନୁବନ୍ଧରେ ଲଖିତ

ଜଟ ପଟଧାରୀ ନାଗ୍ର ଗମନେ
ବୀରେନ୍ଦ୍ର ମୌଳି ମୁକୁଟ ଭୂଷଣେ
କହନ୍ତୁ ଗୁରୁ ସିଦ୍ଧାନ୍ତ କେମନ୍ତେ
କମାଣ୍ଡର୍ଯ୍ୟମତଃ ପରମଣନ୍ତେ
କମ୍ବା ନାଗ୍ର ଶିଗ୍ର ଶିଳା ହେ,
ଭଣୁ ଭଣିଲେ ବଭୂତିଭୂତି ଗାତ୍ର
କଣ୍ଠରେ ଦେଇଣ ମାଳା ହେ ।୨୨।

ନମୂଚ-ସୂଦନ ମିତ୍ର ମାୟାରେ
ସଖିଭି ଧ୍ୱଂସନେ କ୍ଷାନ୍ତ କ୍ଷାତରେ
ତମ କବଳରେ ଅର୍କାଶ ଗ୍ରସ୍ତ
ଗୃହୁଧାରା ଛଣ ଥାନ୍ତେ ବଦାପ୍ତ ହେ
ସହସ୍ର ଯୋନ ଧାରଣ ଯେ,
ଗ୍ରାବ ହୋଇ ଭୂହ୍ଵ ବନେ ଥାଅ ରହ୍ଵ
ଗତେ ହି ଶାପ ଅନ୍ତେଣ ଯେ ।୨୩।

ତବ ପାଦ ନ୍ୟାସେ ସୁଗତି ଲଭି
ଗମନ କଲା ଗୌତମ ବଲ୍ଲଭି
ଶୁଣିଣ ତୋଷ ବୀର ରାମଚନ୍ଦ୍ର
ଭୂଷନ୍ତ ବନାପ୍ସକ ନରଇନ୍ଦ୍ର ଯେ
ମାନଧାତା ବୀରବର ଯେ
ନବୀନ ଦୁର୍ଗେଶ ହୋଇ ମହାତୋଷ
ଛନ୍ଦେ କରଇ ପ୍ରଚୁର ଯେ ।୨୪।



ଟୀକାର୍ଥ । ଗ୍ରାବ—ପଥର । ନମୁଚସୂଦନ—ଇନ୍ଦ୍ର ।

# ରାଘବ ବିଳାସ

## ଅଷ୍ଟମ ଛାନ୍ଦ

**ଧନାଶ୍ରୀ ରାଗରେ ପଚିଶି ପଦରେ ଏ ଛାନ୍ଦଟି ସମ୍ପୂର୍ଣ୍ଣ ହୋଇଅଛି ।**

ରାମଚନ୍ଦ୍ର ଗଙ୍ଗା ପାରହେବାବେଳେ ଧୀବର ନିଷେଧ କରୁଛି ନୌକା ନାରୀକା ହୋଇଯିବ ବୋଲି । ତାପରେ ପାର କରୁଛି ଏବଂ ରାମ ମିଥିଳା ଦାଣ୍ଡରେ ଯିବାବେଳେ ସେଠାର ନରନାରୀ ଏପରି ଉଚ୍ଛନ୍ନ ହୋଇଛନ୍ତି ଯେ ଯେଝା କର୍ତ୍ତବ୍ୟ ଭୁଲି ରାମ ଲକ୍ଷ୍ମଣଙ୍କୁ ଦେଖିବାକୁ ବ୍ୟାକୁଳ ହୋଇଛନ୍ତି ।

ଏହି ରଚନା କେବଳ ଭଞ୍ଜଙ୍କ ରଚନାର ପ୍ରତିଧ୍ୱନି କରୁଛି ମାତ୍ର ।

ଧୀବର କହୁଛି—

ପଦତଳେ ଶିଳା-ବଳା ହୋଇ ଖେଳା
ଭେଳା ଅବଳା ଉପୁରେ
ନ ଶୁଣି ବାଚକ ସ୍ତୁତିକ ରଚକ
ନନ୍ଦଏ ବୃତ୍ତି ହାତରେ ସେ
ତଣ୍ଟି ମୋ ପରିତ୍ରାଣ
ଯେବେ ବନେ ସେ ହେବ ମଜ୍ଜନ ଯେ
ସର୍ବେ ଭଜବାନ୍ତକ ସଦନ ଯେ ।

ଏ ଗୋଟିକ ପଦ ନୁହେଁ, ଅନ୍ୟାନ୍ୟ ପଦମାନ ଭଞ୍ଜଙ୍କର ସମସ୍ତ ଭାବ-ସମ୍ପଦକୁ ପ୍ରତିଧ୍ୱନିତ କରୁଛି ମାତ୍ର । ଭଞ୍ଜଙ୍କର ମାଧୁର୍ଯ୍ୟ ମଧ୍ୟ ଏଥିରେ ସୁରକ୍ଷିତ ହୋଇପାରିନି । କେହି କହିପାରନ୍ତି ଯେ ଭଞ୍ଜଙ୍କ ଲେଖାନୁକରଣରେ କେବଳ କବି ଏପରି ଚର୍ବଣ ନ କରି, ସେ ମୂଳ 'ଅଧ୍ୟାତ୍ମ ରାମାୟଣ' ସହିତରେ ଅହଲ୍ୟାଙ୍କୁ ପଥର ସ୍ୱରୂପ ବର୍ଣ୍ଣନା କରାଯାଇଛି ଏବଂ ଗଙ୍ଗା ପାରି କରିବାରେ କୈବର୍ତ୍ତର ବସ୍ତୁପ୍ରଦ

ଧୌତ କରିବା ଯୋଗୁଁ ସାଯୁଜ୍ୟ ମୁକ୍ତି ଲାଭର ବର୍ଣ୍ଣନା ରହିଛି, ସେଥିରୁ ସେ କ ଆଣିଛନ୍ତି ବା କାହିଁକି ?

ତାହା ମଧ୍ୟ ସ୍ୱୀକାର କରାଯିବ । କାରଣ ଓଡ଼ିଆରେ ଯେତେଗୁଡ଼ିଏ ରାମାୟଣ ବିଭିନ୍ନ କବି ଲେଖିଯାଇଛନ୍ତି, ସେମାନେ ଏହିପରି କିଛି କିଛି ଲେଖିଛନ୍ତି । ଆଶ୍ଚର୍ଯ୍ୟ ଯେ ବିଶ୍ୱନାଥ ଖୁଣ୍ଟିଆଙ୍କ ପରି ସିନେମାର ଚିଜ ବାସ୍ତବିକ୍ କେହି ଦେଇନାହାନ୍ତି ରାମାୟଣ ସେବକ ।

ସେ ଯାହାହେଉ ରାମକୃଷ୍ଣଙ୍କୁ ମଥୁରା ଦାଣ୍ଡରେ ଦେଖି ଯେପରି ମଥୁରାର ନାରୀମାନେ ଉଚ୍ଛନ୍ନ ହୋଇଥିଲେ ତାହା ରାମ ଲକ୍ଷ୍ମଣଙ୍କଠାରେ ଏକା ଯଦୁମଣି ନୁହନ୍ତି, ଆଉମାନେ ମଧ୍ୟ ଆରୋପ କରିଛନ୍ତି ।

ବଡ଼ ଦୁଃଖ ଲାଗେ ଯେ ପ୍ରହରାଜେ ତାଙ୍କ ଭାଷାକୋଷରେ ରାମାୟଣ ତାଲିକାରେ ବଳରାମ, ସୁଚରିତ, କୃଷ୍ଣ, କେଶବଠାରୁ ଆରମ୍ଭ କରି ରାମଚନ୍ଦ୍ର-ବିହାର, ରଘୁନାଥ-ବିଳାସ, ବୈଦେହୀଶ-ବିଳାସ ଯାଙ୍କରୁ ଏଇ ଏବର ଲେଖକ ନୀଳକଣ୍ଠ, ଭିଖାରୀ, ରାମଶଙ୍କରଙ୍କର ରାମାୟଣ ଲେଖାର ବର୍ଣ୍ଣନା ଦେଇଛନ୍ତି । କିନ୍ତୁ ଯଦୁମଣିଙ୍କର ଗନ୍ଧ ମଧ୍ୟ ସେଥିରେ ରହି ନାହିଁ ।

ପଚିଶି ବର୍ଷ ତଳେ କ'ଣ ଆଜ କ'ଣ, ଏପରି ଅନେକ ମହାନ୍ ବ୍ୟକ୍ତିଙ୍କୁ ଆମେ ଚହ୍ନିବାକୁ ମଧ୍ୟ ଇଚ୍ଛା କରୁ ନାହୁଁ ।



# ରାଘବ ବିଳାସ

## ଅଷ୍ଟମ ଛାନ୍ଦ

(ରାଗ—ଧନାଶ୍ରୀ)

ଶୁଣ ବୁଧ ଶୁଦ୍ଧ ଚରିତ ପ୍ରସିଦ୍ଧ, ଛମଦୁଃଖ ଧ୍ୱସ୍ତେ ରାଜୀଶ
କୌଶିକ ବଦନ୍ତେ ସିଦ୍ଧାଶ୍ରମ ଅନ୍ତେ, ସ୍ୱର୍ଣ୍ଣଧାତଟେ ପ୍ରବେଶ ସେ
ରାମାଭିରାମା ମୁନି
ଚାତ୍ରନନ୍ଦେ ପ୍ରଫୁଲ୍ଲିତ ଯେଣି ଯେ, ରାମା······
ରସ ଉଚ୍ଛୁଳେ ହି ପଥଗାମୀ ଯେ, ରାମା······(୧)

ଅନନ୍ତ ବିହାରୀ ଅନନ୍ତ ବିହାରୀ, ଗର୍ଭ କେ କରିବ ଅନ୍ତ
ସ୍ୱଚ୍ଛଧାରା ସ୍ୱଚ୍ଛ ସୀତ ଛୁଟ ହେତୁ, ନନ୍ଦାର ରାଘବ ଗତ ଯେ
ଆପାବୃତ ସୁନ୍ଦର
ତଟ ପାଦପ କି ମନୋହର ଯେ, ଆପାବୃତ······
ସୁମନସ୍ତ ସୁମନ ପ୍ରକାର ସେ, ଆପାବୃତ······(୨)

ସାରସ ଚନ୍ଦରେ ସାରସ ଚନ୍ଦରେ, ଶାବକାର୍ଥେ ସାମାଡ଼ରେ
ଆକୁଳେ କୂଳେ କେ ଧ୍ୱନିକେ ଉଚ୍ଚୁକେ, ଦ୍ରୁମ ବିକଶିକ ଶିରେ ଯେ
ବିଷକଣ୍ଠ ଭକ୍ତରେ
ବିଷକଣ୍ଠ ବିଷକଣ୍ଠ ଭୃରେ ସେ, ବିଷକଣ୍ଠ······
କ୍ଷୁଧା ପିପାସା ବିନାଶନରେ ସେ, ବିଷକଣ୍ଠ······(୩)

ସୁନ୍ଦର ଉତ୍ତର କଲେକ ପ୍ରଶ୍ନର, କହ ଗୁରୁ କାମର୍ଥରେ
ଲଙ୍ଘି କି ସରିତ ନାହିଁ ତ ଚରିତ, ପୂରିତ ବନ ତେଜରେ ଯେ
ଦୃଷ୍ଟି ଗୋଚରେ ମୁନି
ବକ୍ରା ଆସେ ତରଣୀ ବାନ୍ଧିମା ଯେ, ଦୃଷ୍ଟି······
ଅଣ୍ଡ-ଜାସ୍ତ ଲୋକ ନରେ ଭୁନି ଯେ, ଦୃଷ୍ଟି······(୪)

---

ଶବ୍ଦାର୍ଥ । ସରିତ—ନଦୀ । ବନ—ଜଳ ।

ନଗ୍ରେ ବ୍ୟଗ୍ରେ ଖ୍ୟାତ ଅଂଘ୍ରି ଦତ୍ତେ ମୁକ୍ତି ଭୁବରଜ ରଜ ସ୍ନାବେ ଯେ
ଧବଗିରେ ଶାସ୍ତ୍ରି ଅରଣ୍ୟାନେ ସେ ସ୍ତ୍ରୀ ମୋକ୍ଷ ପାଇଲ୍ଲକ ଜବେ
ସେ କ ବର୍ତ୍ତର ମନ
ଦେଲ୍ଲ କଷ୍ଟ ତ ଅଷ୍ଟ ନୟନ ସେ, ସେ କ······
ଥିବ ଭୁବନେ ବୃତ୍ତି ଦେନଂଣ ଯେ, ସେ କ······(୫)

ମାଳାମ୍ବୁଜ ଗାଜ ଖଚିତ ଉଚିତ, ଦାସ ଆଗତ ବିଳମ୍ବ
ଅନନ୍ତ ଅନନ୍ତ ଶକ୍ତିରେ ବଚନ-କର୍ମୀ ଜଗେ ଗିରିରମ୍ଭ ଯେ
ସ୍ୱିତ ଭଜ ଧୀବର
ଭେଳା ବୁହାଇ ସ୍ରୋତ ମଧ୍ୟର ସେ, ସ୍ୱିତ······
ଭକ୍ତି ନ କର ବନ୍ଧେ ପ୍ରସ୍ତର ସେ, ସ୍ୱିତ······(୬)

ତର୍କୀପ୍ରାପ୍ୟେ ବଲ୍ମାଲୋକନ କ୍ଷଣେ, କମ୍ପାଇ ନ ଭୃଷ୍ଟ ଗିର
ଜଡ଼ କ ସ୍ୱଭାବ ଭାଦ୍ଭୁକ୍ତେ ନାବ, ମଧ୍ୟେ ଜିହ୍ୱା ଯୋଡ଼ି କର ସେ
ଦାସ ଦାସ ଭାବରେ
ପୂର୍ବଁ ପ୍ରକାଶ ଜନରବରେ ସେ, ଦାସ······
କୀର୍ତ୍ତି ପ୍ରସ୍ତୃତ କାଶ୍ୟପୀରେ ଯେ, ଦାସ······(୭)

ପଦତଳେ ଶିଳା-ବଳା ହୋଇ ଝେଳା, ଭେଳା ଅବଳା ଉପରେ
ନ ଶୁଣି ବାଚକ ସ୍ତୂଠକ ଉଚକ, ନ ଭଏ ବୃତ୍ତି ହତରେ ସେ
ତସି ମୋ ପଣହାଣ
ଯେବେ ବନେ ସେ ହେବ ମଜ୍ଜନ ଯେ, ତସି······
ସର୍ବେ ଭଗବାନ୍ତକ ସଦନ ଯେ, ତସି······(୮)

ପଥରେ ପଥରେ କ୍ଷାଳନେ ତ୍ରସ୍ତ, ବିଶ୍ରାମ ନ ଚେତ ତସି
ବିଭୁ ଗୁଣାଳୟ ବଡ଼ାବନ୍ତେ ପଥ, ପଥରେ କ୍ଷାଳନ୍ତ କର ସେ
ରେଣୁକାର୍ଥେ ବାସରେ
ସମ୍ମାର୍ଜନ କରଇ ତପୂରେ ସେ, ରେଣୁ······
ନାବେ ପର୍ଣ୍ଣ ବାଞ୍ଛାଏ ସଭ୍ୟରେ ଯେ, ରେଣୁ······(୯)

---

ଶବ୍ଦାର୍ଥ । ଶିଳାବଳା—ପଥରମୂର୍ତ୍ତି ନାରୀ, ଅହଲ୍ୟା । କାଶ୍ୟପୀ—ପୃଥିବୀ । ପସ୍ତରେ—ଜଳରେ ।

ଶେଷ ଶେଷ କ୍ଳେଶ ନ ପାଇ ବିରସ, ବର୍ଜନ ନର୍ଧନ ପ୍ରାୟେ
ପାପାରି ଅଂଘ୍ରି ଚିହ୍ନିତ ଚିତ୍ତ ଆଶା, ନାଶ ନୁହେ ଆଜ ଯାଏ ଯେ
ଭାଗ୍ୟ ବଳେ ତାରକ
ପ୍ରାପ୍ତ ହୋଇଲା କୋଟି ଶିକ୍ଷକ ଯେ, ଭାଗ୍ୟ······
କୈବର୍ତ୍ତରେ ଉଦେ ସେ ଉଦେକ ଯେ, ଭାଗ୍ୟ······। ୧୦ ।

ବିଶ୍ୱ ନିକେତନେ ଶାର୍ଙ୍ଗୀ କୃଶ ଧ୍ୱଜା, ଉଡ଼ାଇଲା ଏ ଧୀବର
ଧନ୍ୟ ଜନ୍ମ ପୁଣ୍ୟ ପୁଣ୍ୟ ଜନଶୂନ୍ୟ ବୈକୁଣ୍ଠ ବୈକୁଣ୍ଠାଦର ସେ
ଭବୁ ମୁନିଙ୍କ ଶତେ
ନତାନନେ କର କରି ଯୁକ୍ତେ ସେ, ଭବୁ······
ଧୀରେ ମଣାଇ ନେଇ ଭୁରତେ ସେ, ଭବୁ······ । ୧୧ ।

ତାସ୍ତ ପଲ୍ଲବରେ ବସାଇ ସଭ୍ରେ, ବାନ୍ଧମା ବାହେ ଦଣ୍ଡରେ
ନର ବରଜ ସୁନ୍ଦର ସେ ପ୍ରକାଶୁ ସଶିତ ନାଁ କ ପ୍ରସ୍ତଛେ ସେ
ବକ୍ତା ବଭୂତ ଭୂତ
ଶୁଣ ଜନେଶ ନନ୍ଦନ ଭକ୍ତ ଯେ, ବକ୍ତା······
ଗଙ୍ଗା ଭାଗୀରଥୀ ଏ ପ୍ରବର୍ତ୍ତି ଯେ, ବକ୍ତା······ । ୧୨ ।

ସ୍ୱନାମ କାରଣ ଭାଷନ୍ତୁ ହେ ମୁନି, ଶୁଣ ଅର୍କାରି ବଂଶଜ
ତପୀ କୋପାନଳେ ବଂଶ ଦଗ୍ଧ କାଳେ ଜାଣି ଦ୍ୱିମାତା ତନୁଜ ସେ
ବନ୍ଦେ ଗତ ଭୂପରେ
ବର୍ଣ୍ଣ ବନ୍ଧ ଦେଖିଣ ନେତ୍ରରେ ଯେ, ବନ୍ଦେ······
ଛଳେ ଶାପ ଦେଇ ସେ ସୁଦରେ ଯେ, ବନ୍ଦେ······ । ୧୩ ।

ବଂଶାର୍ଥରେ ତପ କରି ବହୁ କଳ୍ପ ତୋଷ କରି ସୁରେଶ୍ୱରୀ
ବୈଲୋଚନଜ ବଦାନ୍ୟରେ ଶ୍ରୀଧବ, ଲାବଣ୍ୟ ରୂପକୁ ଧରି ସେ
ଛଳେ ଭୃଙ୍ଗାସ୍ତ ଦୃଶ୍ୟ
ଅଧୋମୁଖରେ ସେ ଯେ ପ୍ରକାଶ୍ୟ ଯେ, ଛଳେ······
ଧୌତ ଏ ମତେ ସାବଶୀ କ୍ଷଣ ଯେ, ଛଳେ······ । ୧୪ ।

ପଦାଙ୍ଗୁଳଜ କୋଣରେ ହୋଇ ଗୋପ୍ୟ ସ୍ଥିତ ସୁର ତରଙ୍ଗିଣୀ
ତପାନ୍ତେ ପଶ୍ଚାତେ ଗମିଏ ଦୁଃଖିତେ ଦଗ୍ଧାନଳେ ପ୍ରବାହିଣୀ ଯେ
ଏଣୁ ନାମ ବିଦିତ
ଭଗୀରଥୀ ଗଙ୍ଗା ସମାଶ୍ରିତ ଯେ,ଏଣୁ······
ହର୍ଷବଂଶଜ କୀର୍ତ୍ତି ଶୁଣି ତ ଯେ, ଏଣୁ······ । ୧୫ ।

ଶବ୍ଦାର୍ଥ । ପଦାଙ୍ଗୁଳଜ—ପାଦନଖ ।

ବନାଶ୍ରମେ ଗତ ଭୂଭୃତ ସୀମାନ୍ତ ବନାଶ୍ରମୀ ଉଭା ହୋଇ
ଚଦନ୍ତେ ଭ୍ରାତୃଦ୍ୱୌ ପ୍ରଦ୍ୟୁମ୍ନ ସ୍କନ୍ଦ ଦ୍ୱୌ ଧନୁର୍ବାଣ କରେ ଶୋହ୍ନି ଯେ
ମିଳି ମିଥିଳା ଦୁର୍ଗ
ଶୋଭା ଖଚିତ କି ଅବା ସ୍ୱର୍ଗ ସେ, ମିଳି······
ବସ୍ତ୍ରାଞ୍ଚଳେ ଉଡ଼େ ବାଂଶ ଅଗ୍ର ସେ, ମିଳି······ । ୧୬ ।

ପୁଣ୍ୟଜନାଲୋକ ନରେ ତ ବଲୋକ, ତାର୍କ୍ଷ୍ୟ-ଗୋ-ହଂସ-ପହେଶ
ସ୍ୱପ୍ନ ଅବତୀର୍ଣ୍ଣ ସୁଗନ୍ଧନସ୍ନାନ, ସୁଫଳ ହେଲା ପ୍ରକାଶ ଯେ
ଧନ୍ୟ ଆଜ ଆମ୍ଭର
ମୁନି କରି ଅଛନ୍ତି ସମ୍ଭାର ଯେ, ଧନ୍ୟ······
ଭାଗ୍ୟ ଉଦେ ହେଲା ଦର୍ଶନର ଯେ, ଧନ୍ୟ······ । ୧୭ ।

ଭର୍ଗଧୃତ ଭଗ୍ନ ସମର୍ଥେ ଏ ଜାଣ ତା ବଳାଶ୍ୱ ବପୁଧାତ୍ର
ଦୁର୍ଗେଶ ତପୂର୍ଣ୍ଣେ ମଣ୍ଡନାଭରାମ ବାଗ୍ମିଣୀକା ଏଥି ସ୍ଥିତ ଯେ
ଏଣୁ ସଂଯୁକ୍ତ ଜାଣି
ପୂର୍ବ ବିଧାନେ ଘଣ୍ଟାଏ ଆଣି ଯେ, ଏଣୁ······
ଶେଷଶାୟୀଏ ଦରବ୍ଜ ପାଣି ଯେ, ଏଣୁ······ । ୧୮ ।

ନଗ୍ରେ ବ୍ୟଗ୍ରେ ସ୍ୱନ ଜନରବମାନ ବଜାସ୍ତେ ଶ୍ରୀରାମ ମୂର୍ତ୍ତି
ହି ବର୍ଣ୍ଣେ ମାକାର ଯୁକ୍ତେ ସ୍ତେ ଉଚ୍ଚାର ବଳୋମାର୍ଥେ ହେଲେ ଘାନ୍ତି
ମେଢ଼ ମଣ୍ଡପାରୋହି
କେବା ପ୍ରାସାଦ ପ୍ରାକାରେ ରହି ସେ, ମେଢ଼······
କେବା ପ୍ରସାଦ ପ୍ରକାରେ ବୃହିଁ ସେ, ମେଢ଼······ । ୧୯ ।

କେ ପଣ୍ଡ ଚରଣ କରେ ସଂଗୃଳନ, ପୁରାନ୍ତର ହୋଇ ଧାଇଁ
ରଞ୍ଜନ ଲେପନ ହେଉ ଶୁଣି କର୍ଣ୍ଣ ତୃଣ୍ଣେ ଅର୍ଦ୍ଧବାସ ହୋଇ ଯେ
କେହୁ ଲଙ୍କାଗ୍ରେ ରହି
ଦିବ୍ୟ ସୁନ୍ଦର ରୂପ ଦେଖଇ ସେ, କେହୁ······
ବେଶେ ବିହ୍ୱଳ କେ ବେଶ ନାଇ ଯେ, କେହୁ······ । ୨୦ ।

ପଦ ଭୂଷାଗଳା ଗଳାଭୂଷା ବଳା କଟତ୍ରଗେ କେ ଭ୍ରମର
ବୃକେ କଙ୍କଣିକା କେବଣ ନାସ୍ତିକା, ଶୀଘ୍ରାଗତ ଧରି କର ହେ
ପଣ୍ଡାଗ୍ରଜେ କେ ଭଷେ
ରାମ କାହିଁ ମୋରେ ବ୍ୟଗ୍ରେ ଭଷେ ସେ, ପଣ୍ଡାଗ୍ରଜେ······
କର ଦେଇ ତାର ସ୍କନ୍ଧ ଦେଶେ ସେ, ପଣ୍ଡାଗ୍ରଜେ······ । ୨୧ ।

ଶବ୍ଦାର୍ଥ । ଭର୍ଗଧୃତ—ଶିବଧନୁ । ବାଗ୍ମିଣୀକା—ଲକ୍ଷ୍ମୀ । (୧୯) ରହି—ବୃହିଁ, ପାଠାନ୍ତର ।

ବିଦେହ ନଗରୀ ବିହ୍ୱଳିତ ମତି, ଦେଖି ଶ୍ରୀରାମାଭିରାମ
ଅଦେହ ଦେହ କି ପାଇଣ ବିଜେ କି, କେଳନ୍ତି ଖୋଜେ ଆଶ୍ରମ ଯେ
ସୀତା କି ରତି ମୂର୍ତ୍ତି
ଦେଖି ନେତ୍ର ପାଉଥିଲୁ ଗତି ଯେ, ସୀତା······
ଏହା ସମସ୍ତଙ୍କର ପ୍ରଶ୍ନତି ଯେ, ସୀତା······ । ୨୨ ।

ସର୍ବେ ଦର୍ଶନାର୍ଥେ ଏମନ୍ତ ଭାବନ୍ତେ ରାମ ରାମାନୁଜ ମୁନି
ସମିତ ନରେଶ ସ୍ଥାନରେ ପ୍ରବେଶ, ଦେଖି ଭାବନ୍ତି ନୃମଣି ଯେ
କେଉଁ ରାଜ ତନୁଜ
ହେଲେ ଆଗତ କିବା ମନୁଜ ଯେ, କେଉଁ······
ଦିବ୍ୟ ଶରାସନ କରେ ତେଜ ସେ, କେଉଁ······ । ୨୩ ।

ଜନକ ଅନେକ ସମାଦର ଭାବେ ବସାଇଲେ ସଭାସ୍ଥଳ
କୌଶିକ ପାଶରେ ସେ ବେନି ସୋଦରେ ଯଥା ସୋମ ଆଖଣ୍ଡଳ
ତେତେକ୍ଷେ ପ୍ରତିଜ୍ଞା ଲୋଭୀ
କେତେ କାଳେ ସାକ୍ଷୀଶ ନର୍ଭା ଯେ, ତେତେକ୍ଷେ······
ପାଶେ ସର୍ବ ନୃପତି ଅଶୋଭା ଯେ, ତେତେକ୍ଷେ······ । ୨୪ ।

ଭୂପାଳ ସକଳ ହୋଇ ଏକମେଳ, ସଚିବଗଣଙ୍କୁ ଘେନି
ସମ୍ଭବାରମ୍ଭରେ ସୁଷମା ଗାହରେ, ବିଜେ ଆନନ୍ଦିତ ମଣି ଯେ
ନବ ଦୁର୍ଗ ମଣ୍ଡନ
ଶ୍ରୀ ବିନାୟକ ସିଂହ ରଚନ ଯେ, ନବ······
ମାନଧାତା ବିନାୟକ ଧ୍ୟାନ ଯେ, ନବ······ । ୨୫ ।



# ରାଘବ ବିଳାସ

## ନବମ ଛାନ୍ଦ

**କୁମ୍ଭ କାମୋଦୀ ବୃତ୍ତରେ** ଏକବିଂଶ ପଦରେ ଏହି ଛାନ୍ଦଟି ଲେଖାଯାଇଛି ।

ଜନକ ସ୍ଵୟଂବର ସଭାକୁ ଜାନକୀଙ୍କୁ ନେବା ଲାଗି ବରାଦ କଲେଯେ ବେଶ କରିଦିଅ । ସୀତାଙ୍କୁ ବେଶକାରିଣୀମାନେ ନାନା ଅଳଙ୍କାରରେ ମଣ୍ଡିତ କରିଛନ୍ତି । ତାଙ୍କର ବିମୋହନ ସୌନ୍ଦର୍ଯ୍ୟ ସେକାଳର ରୁଚିରେ ଫୁଟିଉଠିଛି କବିଙ୍କ କବିତାରେ ।

ଜନକ ସୀତାଙ୍କୁ ରାଜସଭାରେ ଦେଖାଇ ନିଜର ପ୍ରତିଜ୍ଞା ପ୍ରକାଶ କରନ୍ତେ ଉପସ୍ଥିତ ରାଜାମାନେ ଧନୁ ଦେଖିବାକୁ ବ୍ୟସ୍ତ ହୋଇଛନ୍ତି । ଧନୁକୁ ଶତାଧିକ ମଲ୍ଲ ତାର ମଞ୍ଜୁଷା ସହିତ ଆଣି ଯେତେବେଳେ ସଭାସ୍ଥ କରାଇଛନ୍ତି ସମବେତ ନୃପତିଗଣ ନିଜ ନିଜକୁ ଅସହାୟ ମନେ କରିଛନ୍ତି ।



# ରାଘବ ବିଳାସ

## ନବମ ଛାନ୍ଦ

(ରାଗ—କୁମ୍ଭକାମୋଦୀ)

ଜନକ ତପୀଶ
ହୋଇ ମହାତୋଷ
          ବାର୍ତ୍ତ ବହେ ଋଷି
ଅନ୍ତଃପୁରେ ବଧୂ
ସୁ ସିଂହାସୀ ତସୁ
          ସର୍ବ ମୃଦୁହାସି । ୧ ।

ଦୁହିତା ସୁବେଶ
କରନ୍ତୁ ପ୍ରକାଶ
          ଋଷୁ ତାତ, ସେ ଯେ
ଆଜ୍ଞାଦତ୍ତ କରୁ
ଅନ୍ତଃପୁରେ ଯାନ୍ତୁ
          ଶୁଣି ତୋଷ ଭଜେ । ୨ ।

ସର୍ବେ ହୋଇ ତୁଷ୍ଟ
ଜେମାଙ୍କୁ ପହଣ୍ଡ
          ମଣାଇ ସେ ନେଲେ
ମାଳମଣି ପୀଠେ
ହାଟକାଙ୍ଗୀ ହୃଷ୍ଟେ
          ସ୍ଥିତିଁ ଶୋଭା ହେଲେ । ୩ ।

ଜଳଦାଙ୍ଗେ ବନ୍ଦ୍ୟ
ଚର ପ୍ରଭା ଖେଳ୍ନ
          ପ୍ରଭାବନ୍ତ ହୋଇ
ଦାସୀ ରସି ତହିଁ
ଝୁନ୍ତୁ କଚ ଫେଇ
          ସୁତୈଳ ଲେପାଇ । ୪ ।

ବନଜାଙ୍କ ରଦ
କଙ୍କତିକା ଭେଦ
ଶଳାକା କରଣ
କେଶ କୁନ୍ତଳାନ୍ତେ
ଉପମା ଶୋଭନ୍ତେ
କରନ୍ତୁ ଶ୍ରବଣ । ୫ ।

ମିଥ ସେ କୈରବ
କ ଅବା ଜଳଦ
ଛାଣି ବମଣ୍ଡିତ
ଏକା ପ୍ରଭଞ୍ଜନେ
ଖେଳାଇ ସଙ୍ଗନେ
ଗନ୍ଧ ବଣ୍ଟିଛନ୍ତି । ୬ ।

ସୀମନ୍ତିମା ସୀମ-
ନ୍ତିମା ସୀମନ୍ତରେ
ସୀମନ୍ତ ଦେଖାନ୍ତେ
ଜାହ୍ନବୀ ଅର୍କଜା
ଏକ ସ୍ଥାନେ ଦୁଜା
ଗୋଚର କେମନ୍ତେ । ୭ ।

ଯତ୍ନେ ବାନ୍ଧ ବେଣୀ
କ ଅବା ସାରେଣୀ
ମନମୀନ ହୋଇ
କୁବେଣୀରେ ବଦ୍ଧ
ହେବାର ପ୍ରସିଦ୍ଧି
ଉଡ଼ୁପୁଞ୍ଜ ଦେଇ । ୮ ।

କଆଉଜ ମୋତି
ଜାଲ ଯାପ୍ତି ଅତି
ଘାଲେ ମଥାମଣି
ବକ୍ର ଚନ୍ଦ୍ର ଭାଗ
ମାଳ ଖ-ଆନେକ
ବରଜନ୍ତୁ ପୁଣି । ୯ ।

ଶବ୍ଦାର୍ଥ । ବନଜାଙ୍ଗ—ହସ୍ତୀ । ରଦ—ଦନ୍ତ ।

ମଲ୍ଲି କଢ଼ି ଫବ
ଗନ୍ଧ ଯାଏ ଦ୍ରବ
ଅବତଂଶ ଦେଇ
ବରକଣ୍ଠେ ମାଳ
ଦେଇ ମାଳ ମାଳ
ପଦକ ଲମ୍ବାଇ । ୧୦ ।

ସୁମାଳ କାଞ୍ଚଲ
ଢରେ ପଦ୍ମରାଇ
ମାଳାମ୍ବଷ୍ଣ କୁଞ୍ଚ
ସନ୍ନେ ରହ୍ନାଙ୍ଗୀରେ
ପିନ୍ଧାଇ ସତ୍ୱରେ
ମଧ୍ୟେ ସୁଚାଉଞ୍ଚ । ୧୧ ।

କଟକେ କଙ୍କିଣି
କଟକେ ଖଞ୍ଜଣୀ
ପ୍ରପଦରେ ବଳା
ପାହୁଡ଼ ପାହୁଡ଼
ପାଉଞ୍ଜି ସାଜଲେ
ସକଳ ଅବଳା । ୧୨ ।

ବାଦେ ଚାଡ଼ି ଚୁଡ଼
ଅଙ୍ଗୁଷ୍ଠ ଧାଡ଼
ବଚପନ ଛନ୍ଦି,
ଖଞ୍ଜନ ନେତ୍ରରେ
ଅଞ୍ଜନ ରଞ୍ଜିଲେ
ସେ କ କାଳ ଅନ୍ଧ । ୧୩ ।

ପକ୍ଷ୍ମ ପେଣ୍ଡା ଉପ୍ରେ
ଶ୍ରୋତ୍ର ଗର୍ତ୍ତାଳପ୍ରେ
ଉପ୍ରେ କ ପଳାଇ,
ଗ୍ରୀବା ନାଗବଲ୍ଲୀ
ଭୁଞ୍ଜାଇଲେ ଆଳୀ
ଓଢ଼ଣୀ ଘୋଡ଼ାଇ । ୧୪ ।

ନେଲେ ସର୍ବ ସଭ୍ୟ
ଅଟ୍ଟାଳିକାଶ୍ରେଣୀ
ନଯୁକ୍ତେ ରହିଲେ,
ପିତା ବଳେ୍ ନେବେ
ବରଣାର୍ଥେ କେବେ
ଦେଇ ବରମାଲ୍ୟ । ୧୫ ।

ନୟନ ଗୋଚର
ସଭା ନରବର
ହେବାରୁ ସୁମୁଖୀ
ଆଳୀ ଅଙ୍କ ପ୍ରାନ୍ତେ
ସୁମନା ପାର୍ଶ୍ୱେ ଏ
ବେଷ୍ଟି ଛନ୍ତି ସଖୀ । ୧୬ ।

ହୃଦୟାବ୍ଧି ମଧ୍ୟେ
ଆଶାଚନ୍ଦ୍ର ଉଦେ
ମାନସ କୈରବ,
ପ୍ରଫୁଲ୍ଲିତ ହୋଇ
ଭାବ ବିକାଶଇ
ଭାଗ୍ୟ ଯୋଗ୍ୟ ହେବ । ୧୭ ।

ଏକାଳେ ଜନକ
ସମିତ ନୃପଙ୍କ
ସମୀପେ ପ୍ରବେଶି
ଅତି ସମାଦରେ
ବିନୟେ ଭାଷିଲେ
ଶ୍ରବଣ ହୁଅସି । ୧୮ ।

ସୋମଧର ଧୃତ
ଧନ୍ୱେ ଯେ ସମର୍ଥ
ଗୁଣ ଛାରେ ଦସ୍ତ,
ଏ ମୋର ଯଥାର୍ଥ
ବୁଝ ମହୀନାଥ
ଏ ଅର୍ଥେ ନମନ୍ତ । ୧୯ ।

ନୃପ ପ୍ରକାଶକ
ଅଣାଖ ଢଣିଖ
ଢଳେକବା ଭ୍ରାନ୍ତ,
ଛପୃରେ ବଳ ଚ
ଆକର୍ଷଣେ ଧୃତ
ଭଗ୍ନାର୍ଥେ ଯେ ରଥୀ । ୨୦ ।

ସ୍ୱଜନ୍ୟଙ୍କ ଉକ୍ତି
ଶ୍ରବଣାନ୍ତେ ଯତ
ମଲ୍ଲରେ ସ୍ୱଷିତା,
ଯେନ ଆସ ଜବ
ଭର୍ଗ ଅଜଗବ
ଦୁର୍ଗେଣ ଲେକନ୍ତା । ୨୧ ।

ଶୀଘ୍ରେ ଛତ ମଲ୍ଲ
ହୋଇ କଲବଲ
ମଞ୍ଜୁଷ ଟାଣନ୍ତେ,
ଚଣ୍ଡ କଟ କଟ
ଧ୍ୱନ ଯେ ପ୍ରକଟ
ଶବଦ ନର୍ଘାଟେ । ୨୨ ।

ବାଣ୍ଡକ ଗର୍ଜନ
ଶିଖୀଏ ନର୍ତ୍ତନ
ଭୁଗଛ ସେନାମା
ହିପୁର କମ୍ପିତ
ସର୍ବେ ଚମକିତ
ଗିରି ପାଟାଣମା । ୨୩ ।

ଅନ୍ତରେ ଅନନ୍ତେ
ସର୍ବେ ଦୃଷ୍ଟି ଦ୍ୟନ୍ତେ
ନୁହେଁ ଏ ବାଣଜ,
କବା ଏ ଅଦ୍ଭୁତ
ଗର୍ଜନ ସହିତ
ଭଜନ-ବିଷାଦ ।·୨୪ ।

ମାଳାନନ ଚର୍ଣ୍ଣ
କଟକାଇ ହୋଇ
ଛଟକେ ପ୍ରବେଶ
ଦେଖେ ଜନପାଳ
ବଳପ୍ରେ ସକଳ
ମୂମାଣ ନବାସ । ୨୫ ।

ସର୍ବ ଦଣ୍ଡଧର
ଶ୍ରବନ୍ତ ହୃଦର
ସୁଘର ଆଗତ
ସମସ୍ତ ବଇଘ
ସ୍ୱର୍ଣ୍ଣ କ୍ଷିତ ଶିଘ
ପାପିଷ୍ଠ ଦୂଘମ୍ବ । ୨୬ ।

ବଳେ ବଳଚମ୍ପୂ
ହୋଇ ଏକସମ୍ପୂ
ମଞ୍ଜୁ ଟାଣି ଆଣି
ସମସ୍ତ ପୁରତେ
ରଖିଲେ ତୁରିତେ
ଦେଖନ୍ତ ନମଣି । ୨୭ ।

ଘଲ୍ଣ ଯନ୍ତ୍ରାରେ
ଘଚନ ପ୍ରକାରେ
ସର୍ବ ଜନେ ଦେଖି
ତେସନେ ଭୂପତି
ଧନୁ ବଲୋକନ୍ତ
ପାଶେ ହୋଇ ସୁଖୀ । ୨୮ ।

ଛତ୍ରତ ହାଟକ
ପ୍ରକଟ ଝଟକ
କରନ୍ତେ ଲୋକନେ
ମୁଦ୍ରିତ ଭାବରେ
ଅସ୍ଥିର ଭଜଲେ
ଶାନ୍ତ ଲଭ ମନେ । ୨୯ ।

ବାଣୀ ମ ଉଛାର
ସଙ୍କ ଦଣ୍ଡଧାସ୍ତ
ଢମର୍ଷେ ଉନ୍ମଣ
ଦମ୍ଭ ଗୋଢ ଦ୍ୱଚ
ଢଶିଖ ପବଚ
କରଦେଲ୍ ଚୂର୍ଣ୍ଣି । ୩୦ ।

ନବ ଦୂର୍ବାଦଳ
ଗାତ୍ର ଆଢମୂଳ
ଛଦ୍ୱକଞ୍ଜି ଧ୍ୟାପ୍ସି
ନବଦୂର୍ଗ ସପ୍ତ
ଢନାପୂକ ସିଂହ
ପ୍ରବନ୍ଧରେ କହ୍ନି । ୩୧ ।



# ରାଘବ ବିଳାସ

## ଦଶମ ଛାନ୍ଦ

**ଆଶାବରୀ ବୃତ୍ତରେ** ବତିଶ ପଦରେ ଏହି ଛାନ୍ଦ ସଂପୂର୍ଣ୍ଣ ହୋଇଛି ।

ରାମଙ୍କୁ ଦେଖି ଜନକ ରାଜର୍ଷି ପରିହାସ କରି ବିଶ୍ୱାମିତ୍ରଙ୍କୁ କହୁଛନ୍ତି—ସେ ବା ଶିବଧନୁକୁ ଦେଖି କ'ଣ କରିବେ ? କିନ୍ତୁ ସବୁଙ୍କ ସମକ୍ଷରେ ରାମ ତାହା ଶୀଘ୍ର ଆଖୁଦଣ୍ଡା ଭାଙ୍ଗି ହେବା ପରି ଭାଙ୍ଗି ଦେଇଛନ୍ତି ।

ସୀତା ତାହା ଦେଖି ଆନନ୍ଦରେ ଅଧୀର ହୋଇଛନ୍ତି ।



# ରାଘବ ବିଳାସ

## ଦଶମ ଛାନ୍ଦ

( ରାଗ—ଆଶାବରୀ )

ଭୂମଣିସ୍ଥିତ ମଧ୍ୟରେ
        ତପୀଶ ତପନେ
ବଦନ୍ତି ବଦାନ୍ୟ ଧନୁ
        ସ୍ୱପ୍ନେ ମୋ ଦୁଲ୍ଲାଳେ । ୧ ।

ଧନୁର୍ଦ୍ଧର ପଣେ ଧନୁ
        ବଳାକର୍ଷ କର
ନୃରାଟ ସ୍ୱରାଟ ଗୁଣ
        ଅବ୍ୱୀର୍ଯ୍ୟ କ କର । ୨ ।

ବକ୍ତାନ୍ତେ ବକ୍ତା ଲୋକନେ
        ହୋଇ ଭୂପତସ୍ଥ
ନଗଜେଶ ପ୍ରଜ୍ଞା ଶୋଭ୍ର
        ଲୋଭ୍ରବନ୍ତେ ଉସ୍ଥ । ୩ ।

ମୁଖାବ୍ଧିଜ ତମାଧାତେ
        ଯଥା ତଥା ହୋଇ
ତପନେ ସ୍ୱଗତ ହେବା
        ମାନସେ ବଳାଇ । ୪ ।

ରାଜର୍ଷି କୌଶିକେ ଉକ୍ତ
        ସେ ବେଳ ସୋଦରେ
କୋଶଳେଶାତ୍ମଜ ସେ ଯେ
        ଲଘବ ଶରୀରେ । ୫ ।

ଯଥାର୍ଥେ ସମର୍ଥ ଏକ
        ମୋ ଉଦନ୍ତ କାର୍ଯ୍ୟେ
ଆଶାଗ୍ନି ପଯ୍ନ ପ୍ରଦତ୍ତ
        ଜୀମୂତ ମାଧୁର୍ଯ୍ୟେ । ୬ ।

ମାନସ ସଙ୍ଗତ ପୂର୍ଣ୍ଣ
        ସିନ୍ଧୁ ଉଗ୍ର ତଟରେ
ଯୋଗ୍ୟ କର୍ଣ୍ଣଧାର ବିନା
        କି ମୋର ଉଦ୍ଧାରେ । ୭ ।

ମାଧବ ମୃଦଙ୍ଗ·ବେଣୁ
        ସାଧକ ତଦର୍ଥେ
ଶିଳେପଥୁ ଦକ୍ଷେ ବାଳା
        ଉତ୍ପତ୍ତି ଏ ପଥେ । ୮ ।

ତବ କୃଷ୍ଣୋଷ୍ଠିକ ଉଷାନ୍ତ—
        ଶାର୍ଥେ ଏ କୁମ୍ଭକ
ଷ୍ଟୂର୍ତ୍ତ ବ୍ୟାପେ ହଳାହଳ
        ସ୍ଥାନ କି ହେ ହେଜ । ୯ ।

ବାମନାଙ୍ଗୁଷ୍ଠ ରୂପରେ
        ତ୍ରିପୁର ବ୍ୟାପିଲେ
କାମନା ପୂର୍ଣ୍ଣାର୍ଥେ ଜାତ
        ମହାକେଶ ହେଲେ । ୧୦ ।

ଅଫଳ ନୋହିଁ ସଫଳ
        କାମାଖ୍ୟାସ୍ଥ ହେବ
ସାଙ୍ଖେନ୍ଦ୍ର ମୌଳି ମୁକୁଟ
        ଧୃତ ଅଜଗବ । ୧୧ ।

ବୋଲ୍ ସାଧବ ସାଧବା—
        ନୂଜ ସଗଡରେ
ପାସାଙ୍କୁ ଠାଣିରେ ଜଟା
        ମଞ୍ଜୁଷ ପାଶରେ । ୧୨ ।

ଅନନ୍ତ-ଶକ୍ତି-ଧାରଣ
        ପ୍ରକାଶ ଭାରତୀ
'ଶିବନରେ କାର୍ମୁକ
        ନ ଧର ରଘୁପତି' । ୧୩ ।

ଚଦନୁସାରେ କୋଦଣ୍ଡ
କରୁ ଆକ୍ରମଣ
ବ୍ୟପତି-ବ୍ୟପତ୍ତି ମଣି
ଭୋଗୀନ୍ଦ୍ର ମଦେଣ । ୧୪ ।

ତ୍ରିଦୋଷେ ଯଥା ଲକ୍ଷଣ
ଅନ୍ତର ଶଗ୍ନରୁ
ତେସନେକ ଅଜଗବ
ବଗ୍ଯେନ୍ଦ୍ର ଧନୁ । ୧୫ ।

ବର୍ଣ୍ଣୋଚଚାର୍ଚନା କର
ପ୍ରଦତ୍ତ ଗୁଣକୁ
କୁପଚ୍ଚ କୁପଚ୍ଚ ହେଲେ
ଦେଖି ଏ ଭାବକୁ । ୧୬ ।

ବନା ତୃଷାରେ ନଳୀନ
ମଳନ ହୋଇଲେ
ବନା ଚାପେ ହୃଦ କ୍ଷେତ୍ର
ଆଶା କୃଷି ଜଳେ । ୧୭ ।

ଜଗନ୍ତମୋହ୍ବ ଜଗନ୍ତ
ଆଗ୍ରେହଣେ ଗ୍ରହ୍ମି
ନେନ୍ଦ୍ର ପ୍ରାନ୍ତେ ବନ୍ଧମ ସେ
ଗଚ୍ଚ ଦୃଶ୍ୟ ହୋଇ । ୧୮ ।

ଧାତ୍ରୀ ମୋହ୍ମ ଧାତ୍ରୀ-
ମୋହ୍ମାରେ ପ୍ରକାଶିତ
ଧନୁର୍ଦ୍ଧରେ ଧନୁର୍ଦ୍ଧରେ
ନୃପଜ କାରଚ । ୧୯ ।

କେଶର କେସର ନୋହେ
ମଣାର ଶରଣ
କେଶର କେଶର ହେବ
ଆଜ କେ ଭାଜନ । ୨୦ ।

ବାମ ନେତ୍ରାବ୍ଜୁ କମ୍ପିତ
ହୋଇ ପୁନଃ ପୁନଃ
ବାମଦେବଙ୍କର ଧୃତି
ହେବ ବିଭଞ୍ଜନ । ୨୧ ।

ଦକ୍ଷିଣଭ୍ରୂ କର ଗତିକ
ନଧି ବିଚଳନ
କୋଟି ଜନ୍ମାର୍ଜିତ ପାପ
ହେବ କି ମୋଚନ । ୨୨ ।

ବଇକୁଣ୍ଠ ପତି ଏ କି
ବଇକୁଣ୍ଠ ପତି
ଶଚୀଶ ମଣି ସ୍ୱପ୍ରାପ୍ତ
ବପୁଏ ଶୋଭନ୍ତ । ୨୩ ।

ଦ୍ୱାତ୍ରିଂଶ ଲକ୍ଷଣ ସ୍ଥାନେ
ସ୍ଥାନେ ବିରାଜିତ
ବିରାଜ ବିରାଜ ମାନ
ମୋ ହୃଦ କର୍ଷିତ । ୨୪ ।-

ଅଯୋଧ୍ୟା ନରେନ୍ଦ୍ରସୁତ
ନାମ ରାମଚନ୍ଦ୍ର
ବୃନ୍ଦାବନ ଶ୍ୟାମଘନ
ବୀର ଏ ବୀରେନ୍ଦ୍ର । ୨୫ ।

ଅନ୍ତେ ଅଜଗବ ଗୁଣ
ସୁଯୋଗେ ଆମଞ୍ଚି
ଇକ୍ଷୁଦଣ୍ଡେ ବାଲ୍ୟେ ଯଥା
ବିଖଣ୍ଡି ବିରଞ୍ଚି । ୨୬ ।

ଖଣ୍ଡ ବିସର୍ଜ୍ଜନ କୁ ଖ
ଭୁବନ ଘୁଷିତ
ଅଦ୍ଭୁତେ ଶିଖରସ୍ଥରେ
ଉଦ୍ଧୁର କି ପାତ । ୨୭ ।

ଶୂଳୀ ପର୍ବତ ଜା ଅଭି-
ମାନେ ଥିଲି ଘୋଟି
ଭୟେ କୋଳାଗ୍ରତ କଲେ
ରୁଦ୍ରାଣୀ ଧୂର୍ଜଟି । ୨୮ ।

ତଥାପି କ ପ୍ରାପ୍ତ ନେହ
କ୍ଷୁଧା ସୁଧା ଭୋଗ
ବରଞ୍ଚ ଉଚଲ ଏବେ
ଭବେ ସୁଖ ଯୋଗ । ୨୯ ।

ଉପଚ ଦର୍ଶନରେ
ଉଗଚ ବଳେ ଶମ୍ଭୁ
ଯଥା ତଥା ମହୀଶଙ୍କ
ବ୍ୟାକୁଳ ହୃଦୟ । ୩୦ ।

ଜରଣ ଉଦ୍‌ଗାର ପାକ
ଉଭ୍ରମ ମତରେ
ଭୂଷଣ ହୃଦାଙ୍କ ମନେ
ଅପମାନାନ୍ତରେ । ୩୧ ।

ନଉଭଗ୍ନ ଦ୍ୱିଜ ଯଥା
ନୃପତି ସମଗ୍ର
ନକ୍ଷଣେ ଆବାସେ ଗମି
ସୈନ୍ୟବର୍ଗ ବ୍ୟଗ୍ର । ୩୨ ।

ନବୀନ ଜଳଦ ଅଙ୍ଗ
କୋମଳ ଚରଣ
ଉନାସ୍ତକ ନୃପ ଭାବେ
ହୃଦରେ ଭାବଣ । ୩୩ ।

# ରାଘବ ବିଳାସ

## ଏକାଦଶ ଛାନ୍ଦ

ବିଭାସ ଗୁଜ୍ଜରୀ ବୃତ୍ତରେ ଅଠର ପଦରେ ଏ ଛାନ୍ଦଟି ସଂପୂର୍ଣ୍ଣ ହୋଇଅଛି ।

ଶିବଧନୁ ଭଙ୍ଗ ପରେ ଜାନକୀ ରାମଙ୍କୁ ବରଣମାଳା ଦିଅନ୍ତେ ଜନକ ବିବାହ ପାଇଁ ଅନୁରୋଧ କଲେ । କିନ୍ତୁ ରାମ କହିଲେ, ପିତା ମାତାଙ୍କ ବିନାନୁମତିରେ ଏହା କ'ଣ ସମ୍ଭବ ହୋଇପାରେ ? ଜନକ ରାମଙ୍କ ସଦ୍‌ଗୁଣରେ ମୋହିତ ହୋଇ ଦଶରଥଙ୍କୁ ଚିଠି ଲେଖି ଅହଲ୍ୟାଙ୍କ ପୁତ୍ର ତାଙ୍କର ପୁରୋଧା ଶତାନନ୍ଦଙ୍କୁ ପଠାଇଲେ ।

ଦଶରଥ ଚିଠି ପାଇ ଏକାନ୍ତ ଆନନ୍ଦିତ ହୋଇ ସଦଳବଳରେ କିପରି ମିଥିଳାରେ ଉପସ୍ଥିତ ହେବେ ତହିଁର ପ୍ରସ୍ତୁତି ଏ ଛାନ୍ଦରେ ଅତି ନିପୁଣ ଭାବରେ ବର୍ଣ୍ଣିତ ହୋଇଅଛି ।



# ରାଘବ ବିଳାସ

## ଏକାଦଶ ଛାନ୍ଦ

(ରାଗ—ବିଭାସ ଗୁଜ୍ଜରୀ)

ବିଦୁଷ ଦୂଷଣ ନାଶ
ଶ୍ରବଣ କର ହରଷ
ଲଭିବ ମାନସୁ ଦୂର କ୍ଳେଶ
ତପୋତମ ହରଷିତେ
ଭଗ୍ନ କାର୍ମୁକ ଲୋକିତେ
ଧାତ୍ରୀରେ ଭାଷିତ ବିନ୍ଦୁ ରସ ହେ
ବିଭୂଷିତେ
ହାଟକାଙ୍ଗୀ ଝଟିତିରେ ଆଣ
ଶୁଭ ଲଗ୍ନ ଓଧନଣ ବରଣ ହେ
ପଙ୍କଜାର ଶିରୀଷତେ
ଦୃଷ୍ଟି ପାତ ବ୍ୟତିହାରେ
ବିଶ୍ୱକର ସୁଲଗ୍ନେ ଗମନ ହେ । ୧ ।

ନବ ବାରିଦାଙ୍ଗ ହୃଦ
ନନ୍ଦନ ବନ ପ୍ରସିଦ୍ଧ
ଆଶା ଦେବ ପାଦପ ପ୍ରଫୁଲ୍ଲ
ସୁମନ ସୁମନ ଫୁଟି
ଆନନ୍ଦ ବାସ ପ୍ରକଟି
ସୀତାରସ ବିଶେଷ ଉଚ୍ଛୁଳ ସେ
ପ୍ରମୋଦରେ
ଅସୀମରେ ନୁହଇ ତୁଳନା
ବିମାର୍ଗରେ ଲୋକନ ସୁମନା ସେ,
ସୀତା ବର୍ଣ୍ଣେ ବିଶେଷତା
ବିଧି ବିଧାନରେ ଯୁକ୍ତା
ମାନସରେ ଘେନ ତ ସୁମନା ହେ । ୨ ।

ଜନକା ବେଶେ ସିଂହାଶ
ଜଣାଇଁ ମଣାଇଁ କଶ
ନେଲେ ଧାଈ ଧାଈ ମୋହ୍ନମାକ
ଦ୍ୱର କଶବାରେ ବର
ମାଲ୍ୟ ଧଶ ଉପହାର
ବନ୍ଧୁଗଜେ ନର୍ବିଘ୍ନେ ପଡ଼ାଙ୍କି ସେ
ନଚାନନେ
ଶ୍ରୀରଜର ଧଶଯୁକ୍ତେ ଧାପ୍ପି
ଅନ୍ତେ ଆତ୍ମାଦରେ ମାଲ୍ୟ ଦେଇ
ସୁଆଶେ ଆସେ ଆବାସେ
ଅନ୍ତେ ଅନନ୍ତେ ଦେବେ ସେ
ସୁମଙ୍ଗଳରେ ସୁମନ ବର୍ଷାଇ ସେ । ୩ ।
ବଦେହ କଣ୍ଟକ ହ୍ରଣ
ପରଣପୂର୍ଣ ଆଦେଶ
ଶ୍ରୀଷ୍ଣୁ ହର୍ଷେ କୋଶଳେଶାତ୍ମଜ
ଜନଙ୍କ ଦେବୀ ସମ୍ମତ
ନ ହେଉ କେହ୍ନୁ ସମର୍ଥ
ଅବନ୍ଧତ ଯଥାର୍ଥ ଏ ହେଜ ହେ
ଗୁରୁଦେବ
ଉକ୍ତି ଅନ୍ତେ ପ୍ରତ୍ୟୁକ୍ତି ସେ ଜବ
ଧନ୍ୟ କୁଳ ପ୍ରଦୀପ ରାଘବ
ଆହେ ରଘୀବର ବର
ବରଗ ଅଯୋଧ୍ୟାପୁର
କର୍ମ ଦକ୍ଷେ ନୃପସି ଲାଘବ ହେ । ୪ ।
ଜଟତମଣି ଜନକ
ଜନଙ୍କ ଯୋଦ୍ଧା ନାୟକ
ପାଶେ ଲେଖ ଲେଖିଲେ ତ୍ୱରିତ
ଶ୍ରୀ କୋଶଳ ନରଇନ୍ଦ୍ର
ସର୍ବ ଗୁଣାଳୟ ସାନ୍ଦ୍ର
ଅରାତିକୁଳ ମର୍ଦ୍ଦନ ରାଜତ ହେ
ରାଜେଶ୍ୱର
ଧନୁର୍ଦ୍ଧର ପଣେ ତବ ସୁତ
ନପତପ୍ୟେ ସର୍ବେ ଅଲକ୍ଷିତ

ଆମ୍ଭ ସଙ୍କଳ୍ପାଶ୍ରିଷ୍ଟ ଫଳ
ପ୍ରଦାନେ ସେ ଯେ ତତ୍କାଳ
ବଦ୍ଧଙ୍କର ଶ୍ରେଷ୍ଠ ଏକଚିତ ଓସ । ୫ ।

ଭଟ୍ଟେ ଶିବ ଅନ୍ନଗବ
ସମର୍ଥ ଫଣେ ଶ୍ଳଷବ
ଧନ୍ୟ ପୁଣ୍ୟ ତବ କୁଳେ ଜାତ
ଯଶ ପତାକା ହିସ୍ପୁଟରେ
ଉଡ଼ାଇଛନ୍ତି ଏ କୁମରେ
କୁ ପତଏ କୁହ୍ନିତ ଭକତ ସେ
ବପତ୍ତିକ
ଲୁବ୍ଧ ଶୁକ ଯଥା ବଂଲକତ
ତେବେହେଁ ଅପମାନେ ପଳାସ୍ଥିତ
ଛନ୍ଦଦରେ ପାଉଜର
ଶୁଭ୍ରାଗମନ ଙ୍କଶ୍ରୁଣ
ଅସ୍ତ୍ରଂ ବଟଜ କରନ୍ତୁ ଭୂରତ ହେ । ୬ ।

ଶ୍ରୀଦତ୍ତ ପୁତ୍ରୀ ଆମ୍ଭର
ଶୁଦ୍ଧ ବାଞ୍ଛା ସିଦ୍ଧକର
ଏନ୍ତ ଘୋର ପ୍ରକାଶ କାରଣ
ପଦ ସ୍ପନ୍ଦଣ ସତ୍ତ୍ୱରେ
ଦତ୍ତ ଯୌତୁକ କରେ
ଶୁଭ ଲଗ୍ନେ କରନ୍ତୁ ପ୍ରୟାଣ ସେ
ଶବ୍ଦନନ୍ଦେ
ଚରଣୀ ଆନନ୍ଦ ସରସୀରେ
ଚମିରେ ବିଶ୍ରାମ କରିବାରେ
ଗମ୍ୟ ନଗ୍ରାନ୍ତେ ମିଳତ
ନୃପାଗ୍ରତେ ତହ ଦତ୍ତ
ଶୁଦ୍ଧାସନେ ବଟଜ ସମାଦରେ ସେ । ୭ ।

ନରେଶ୍ୱର ସମ୍ମାନରେ
ବକ୍ତା ଜବନ୍ତ ଶୀଘ୍ରରେ
ପ୍ରକାଶିଲେ ଅହଲ୍ୟା ସନ୍ତତ
ଶ୍ରୀରାମ ଲକ୍ଷ୍ମଣ ରଷି
ଯଜ୍ଞଭୂମି ଧରି ନାଶି

ପିତା ବାକ୍ୟେ ଜନନୀ ପ୍ରେମ ଛାଡ଼ି ସେ
ବନେଗ୍ରାବ
ପାଦପଦ୍ମେ ମୋକ୍ଷ କଲେ ଜଡ଼
ମନ୍ଦାକିନୀ ପାରିବଶ୍ଚି ନାବ
ସ୍ଥାଣୁଦତ୍ତ ଅଜଗର
ବିନାଶ କଲେ ରାଘବ
ସ୍ନାନେ ନନ୍ଦଘାଟ ଗତ ସଙ୍ଗ ସେ । ୮ ।

ଜନଙ୍କ ମୁନି ଭାଷିତା
ତବାଶ୍ରମେ ଦତ୍ତ ସୀତା
ଶୁଭେ ଗୁଣ କରନ୍ତୁ ବ୍ରହ୍ମାଣ
ବଶିଷ୍ଠ ହସ୍ତେ ପଠନ
ସମସ୍ୟା କଲେ ବସ୍ଥାନ
ବକ୍ରାଲେଖ ଲକ୍ଷ୍ମୀ କଲେ ସମ ହେ
ତଦନ୍ତରେ
ବାର୍ତ୍ତାବହେ ବାର୍ତ୍ତାସୂତ୍ରେ ଜଣେଲେ
ଶୁଣି ସର୍ବେ ପ୍ରମୋଦ ଭଜିଲେ
କୁମୁଦ ରାକା ମୃଗାଙ୍କ
ଦର୍ଶନେ ଯଥା ପୁଲକ
ତେସନେକ ଆନନ୍ଦେ ମଜ୍ଜିଲେ ସେ । ୯ ।

ନୃପଙ୍କ ହୃଦୟ ସିନ୍ଧୁ
ହୃଦେ ମୁଖ ପୂର୍ଣ୍ଣଇନ୍ଦୁ
ଆଶାରସ ଉଚ୍ଛୁଳିଲା ଖଣ୍ଡେ
ଆନନ୍ଦ ତେଜ ବର୍ଦ୍ଧନ
ଖେଳି ରାଘବ ନନ୍ଦନ
ସନ୍ତରଣ ଉଦ୍‌ବେଳ ଇଚ୍ଛାରେ ସେ
ଆଜ୍ଞାଦତ୍ତ
ଫାନମନ୍ତ୍ରୀ ଅମନାକ୍ଷ୍ୟ ଖଣେ
ବାଜି ସାଜ କର ତତକ୍ଷଣେ
ଘୋଷଣା ନଗ୍ର ବ୍ୟଗ୍ରରେ
ସୈନ୍ୟ ସାଜିବା ଅର୍ଥରେ
କର ଅବଳମ୍ବେ ସୁଯତନେ ହେ । ୧୦ ।

ସୁଅଶନେ ଉପୋଷନେ
ଦଣ୍ଡେ ତୋଷିଲେ ସଘନେ
ଦ୍ରବ୍ୟାସନେ ଶାନ୍ତ୍ୟର୍ଥେ ପଦ୍ମହ୍ମ
ସଗ୍ରଭଙ୍ଗ ବର୍ଣ୍ୟବନ୍ତେ
ଦନ୍ତେ ଭୂପାଳ ବ୍ୟଗ୍ରରେ
ଭୋଜ୍ୟ ପେୟପାତ୍ରରେ ସୁଖ ଶ୍ଳୋକ ସେ
ଗତାଗତ
ପଥ ଦ ପଥକୁ ଭଜଲେ
ଦଗତକୁ କ୍ଷଣକା ଲଭିଲେ
ଜଷାକାଳେ ଘସାତ୍ତକ୍କା
ଦମାଲୁ ଚମକ ଢକା
ଭୁଷିଭେଷି ଦଜନଘୋଷ ସେ । ୧୧ ।
ବାଦ୍ୟକାର ପଏକାର
ନଖୀଦାର ଛତ୍ରଦାର
ବାଜପାଳ ବାଙ୍ଗା ସାଜ ସଜ
ହସ୍ତୀ ରଥୀ କରଅଶ
ହସ୍ତୀ ଦେଶେ ମିଳକର
ବାସର ନୋହୁ ବାସବ ଭଜ ସେ
ଛନ୍ଦାଳଠ
ଗ୍ରମର ଉଲ୍ଲେଖ ଲେଖ ନୋହ୍ନ
କେହୁ ଯାନ ଦମାନ ଅବସ୍ତେହ୍ନ
ସଚକ ଚାବ ପୁରୋଧା
ଦ୍ଦ ଯୋଗିତା ଚସ୍ତୃ ଶ୍ରଦ୍ଧା
ନଗ୍ରେଣ ଆଗମ ସବେ ଗ୍ଲହ୍ନିଁ ସେ । ୧୨ ।
ଗ୍ରହଜ ଗ୍ରହ ଲଗ୍ନକୁ
ଘଭ ଚନ୍ଦ୍ର ସୁବେଳାକୁ
ଜଣାଇଲେ ଭୂପାଳ ଅଗ୍ରତେ
ବାଜଲକ ଦଳୀଘୋଷା
ଢକ, ଦମାଲୁ ଯେ ଧଂସା
ଭେଷି ଭୁଷି କାହାଳୀ ସହ୍ରତେ ସେ
ମାନବେଶ
ସର୍ବାଙ୍ଗରେ ଭୂଷଣ ଭୂଷିତ
ଅମରେନ୍ଦ୍ର ପର୍ବସ୍ତ ଚପାପ୍ତ

ତଣ୍ଡିକାଗଣ ନର୍ତ୍ତନ
ଉଚ୍ଚଳଇ ଗାନ ତାନ
ବିଜୟନ୍ତି ପାଠଙ୍କ ବେଦୋକ୍ତ ସେ । ୧୩ ।
ଘନ ଡମ୍ଫଳ ପ୍ରବଳ
ରସନା ବାଦ୍ୟ କଲ୍ଲୋଳ
ଭାଟ କୀର୍ତ୍ତି କରନ୍ତି ପ୍ରକଟ
ସମସ୍ତ ରାଜ୍ୟ ମଙ୍ଗଳ
ଜଣାଇଁ ଗ୍ରାମ ଦୁଲ୍ଲାଳ
ନରେଶ ବିଜୟ ହୋଇ ହୃଷ୍ଟ ସେ
ସୁଖାସନେ
ଶ୍ରୀହସ୍ତ ହସ୍ତକେ ହସ୍ତ ଦତ୍ତ
ମହିମା ଖୁଣ୍ଟିଆ ପ୍ରସ୍ତୁତ
ମଙ୍ଗଳ ଧ୍ୱନି ଉତ୍ସବ
ସେହୋତେ ସ୍ୱାନସମ୍ଭବ
ଆବେଦନ କଲେ ତୁରିତ ସେ । ୧୪ ।

ଏକେ ଗଜ ବାଜୀ ପୃଷ୍ଠରେ
ଏକେ ବସି ଗତେ ଓଷ୍ଟ୍ରରେ
ବୀର ବାଦ୍ୟ ଚମକ ଉଚ୍ଛ୍ୱଳ
ବାଦ୍ୟକାର ସ୍ୱଏକାର
ନକ୍ଷ୍ୟୋଗ ଗଣନା କର
ପାତ୍ରମନ୍ତ୍ରୀ ଅମାତ୍ୟ ଚଳି ସେ
ସ୍ୟନ୍ଦନରେ
ସ୍ୱଜନ ଭ୍ରାତ ଶତ୍ରୁଘ୍ନ ବେଲ
ପୁରୋଧା ବଶିଷ୍ଠ ମହାମୁନି
ଏଣୋ ରଥେ ସମ୍ଭ୍ରାନ୍ତ ମାନ
ଭୋଜନ ଦ୍ରବ୍ୟ ବିଧାନ
ଘେନାଇ ଚଳନ୍ତି ସର୍ବେ ପୁଣି ସେ । ୧୫ ।

ମାତୃ ଧାତ୍ରୀଗଣ ସଙ୍ଗେ
ବିଜୟାନନ୍ଦ ସବାଗେ
ସର୍ବାଙ୍ଗରେ ସୁଭୂଷଣ ହୋଇ
ହାନ୍ଦୋଳେ ବସେ କରଣ
ଆବାସାନ୍ତର ହୋଇଣ

ପଶ୍ଚାତ୍‌ପଦେ ରାଜମାର୍ଗେ ରହି ସେ
ସେ କାଳରେ
ନଗ୍ର ଶୋଭା ବଇକୁଣ୍ଠ ଜିଣି
ବାଦ୍ୟ ନାଦେ କମ୍ପଇ ଧରଣୀ
ଯେଝା ବାସ ଉପବାସେ
ଉଭା ହୋଇଣ ହରଷେ
ଲୋଭବନ୍ତ ବଲୋକ ରମଣୀ ସେ । ୧୬ ।
କ ଅବା ସ୍ୱର୍ଗ ପ୍ରତିଭା
ବିଜୟ କଲେ ମଘବା
ଅମର କ ଉଚ ସଭ୍ୟଶ୍ରେଣୀ
ଚଦନ୍ତକ ଯେତୁ ଲକ୍ଷ
ଗନ୍ଧର୍ବ ପିଶାଚ ଯକ୍ଷ
ବାରାଙ୍ଗନା ବାରାଙ୍ଗନା ମଣି ସେ
ନାଭିଜନ୍ମା
ତୁଲ୍ୟମୁନି ବଶିଷ୍ଠ ପୁରୋଧା
ନମ୍ର ଯଥା ଚଥାହିଁ ପ୍ରସିଦ୍ଧା
ବୃଦ୍ଧ ବିଧାନେ ନରେଶ
ଚଳନ୍ତି ହୋଇ ହରଷ
ବିଦଶ ଅଜସ୍ୱ କ ଅଯୋଧ୍ୟା ସେ । ୧୭ ।
ଜନଶ୍ରମେ ନରଗଣ
ଗମିଲେ ହୋଇ ହରଷ
ସଚ୍ଚାନନ୍ଦ ସରଣୀ ଅଗ୍ରଣୀ
ଚତୁପଚ୍ଛେ ବଳଗମନ
ଅଶ୍ୱ ହସ୍ତୀ ରଥୀ ଯାନ
ଅପ୍ରମିତ ପଦାତିକ ଶ୍ରେଣୀ ସେ
ନବଦୁର୍ଗ
ମଣ୍ଡନ ବିରାଧି ୱାରବର
ଅଳଂକୃତ ସର୍ବ ସୁଗୁଣର
ଭୂପ ବିନାୟକ ସିଂହ
ମାନଧାତା କରିରମ୍ଭ
ଧାର୍ମ୍ମି ବିନାୟକ ଶ୍ରୀ ପୟର ସେ । ୧୮ ।

# ରାଘବ ବିଳାସ

## ଦ୍ୱାଦଶ ଛାନ୍ଦ

**ମାଳବ ରାଗରେ ଷୋଡ଼ଶଟି ପଦରେ ଏ ଛାନ୍ଦଟି ସମ୍ପୂର୍ଣ୍ଣ ।**

ଭରତ ଏବଂ ଶତ୍ରୁଘ୍ନଙ୍କ ସହିତ ମହାରାଜା ଦଶରଥ ନିଜ ପ୍ରିୟତମା ରାଣୀ କୌଶଲ୍ୟା, କୈକେୟୀ, ସୁମିତ୍ରାଙ୍କୁ ସଙ୍ଗରେ ଧରି ଏମନ୍ତ କି ନିଜର ପୁରୋଧା ବଶିଷ୍ଠଙ୍କ ସମଭିବ୍ୟାହାରରେ ମିଥିଳାରେ ପହଞ୍ଚି ରାମ ଲକ୍ଷ୍ମଣଙ୍କ ସହିତ ପ୍ରଥମେ ଭେଟ ହେଲେ । ତାପରେ ମହାନ୍ ଅତିଥିଭାବରେ ଅର୍ଚ୍ଚିତ ହେଲେ—ଜନକଙ୍କଦ୍ୱାରା ।

ସେହି ଆତିଥ୍ୟର ବର୍ଣ୍ଣନା ଯଦୁମଣି ନିପୁଣ ଭାବେ ବର୍ଣ୍ଣନା କରିଛନ୍ତି । ବରଯାତ୍ରୀମାନଙ୍କୁ ଏବେ ମଧ୍ୟ ପୂର୍ବଦିବସରେ ମହାନ୍ ସମାରୋହରେ ସାଧାରଣ ପରିବାରରେ ମଧ୍ୟ ଚର୍ଚ୍ଚା କରାଯାଏ । ରାତ୍ର ପାହିଲେ ବିବାହ ମହୋତ୍ସବ ହୋଇଥାଏ ।



# ରାଘବ ବିଳାସ

## ଦ୍ୱାଦଶ ଛାନ୍ଦ

( ରାଗ—ମାଳବ )

ବୁଧ ଶୁଦ୍ଧ ଚିତ୍ତେ ଦେଇ ମାନସ
ଶ୍ରବଣ କର ଏ ଯେ ସୁଧାରସ,
ଅଯୋଧ୍ୟା ନରବର ଦଶରଥ
ସହିତ ପ୍ରବୋଧା ଘେନଣ ସାଥ । ୧ ।

ବେନି ତନୁଜ ମନ୍ତ୍ରୀ ଚଳନ୍ତି
ବାଦ୍ୟକାର ଓ ଏକାର ଅଛନ୍ତି,
ମାର୍ଗ ଦେଖାନ୍ତି ଗୌତମ ତନୁଜ
ସୈନ୍ୟବର୍ଗ ଗମନ୍ତି ହୋଇ ସଜ । ୨ ।

ଅସ୍ତାଚଳ ଭଜନ୍ତେ ଦିନକର
ଉଦେ ହୋଇଲେ ରେବତୀଙ୍କ ବର,
ବନେ ବସ୍ତ୍ରବାସ ବିଚିତ୍ରୀ ତଳେ
ପଥଶ୍ରମେ ଶ୍ରମ ନେଲେ ସକଳେ । ୩ ।

କ୍ଷୁଧା ପିପାସା କରି ନିବାରଣ
ନିଦ୍ରାବଶେ ସର୍ବେ କଲେ ଶୟନ,
ନିଶା ଉଷାରୁ ଶଯ୍ୟା ବିବର୍ଜିତ
ପ୍ରାତଃ କର୍ମରେ ହୋଇ ନିଯୋଜିତ । ୪ ।

ପୁଣ ଶୁଭ କାର୍ଯ୍ୟରେ ଚିତ୍ତ ବଳ
ହୃଦୟ-ଅବ୍ଧି ଉଠଇ ଉଚ୍ଛୁଳ,
ତହିଁ ଆଶା ଉସଜ ପ୍ରଫୁଲ୍ଲିତ
ମନର ସଜ ଧର୍ମ ଶ୍ରେଷ୍ଠ ଉଦିତ । ୫ ।

ଦଶରଥ ଆନନ୍ଦ ସରିତେଶ
ଉଦ୍‌ବେଗ ଉଚ୍ଛୁଳ ତହିଁ ବିଶେଷ
ଆଜ୍ଞା ଦଉକରୁ ସର୍ବେ ତୁରିତେ
ଯେଝା ପ୍ରତ୍ୟାଶନ କଲେ ହର୍ଷିତେ । ୬ ।

ଚଳଲେ ବଳସକଳ ସାଥିରେ
ଯାଇ ପ୍ରବେଶ ମିଥିଳା ସୀମାରେ
ସତ ଆନନ୍ଦ ଶତ ଆନନ୍ଦରେ
ଅଗ୍ରେ ବ୍ୟଗ୍ରେ ମିଳ ଯଜ୍ଞଶାଗ୍ରରେ । ୭ ।

ବକ୍ତା ଉଦ୍ଦେଶ କଲେକ ପ୍ରଗ୍ଭର
ଶୁଭେ ବଜେ ଅଯୋଧ୍ୟା ନୃପବର
ରାଜମନ୍ତ୍ରୀ ଅମନାତ୍ୟ ତନୁଜ
ସୁଖେ ସୁଖାସନେ ଗମନ ଆଜ । ୮ ।

ତପୀଶାନନ୍ଦ ନୃତ୍ୱଇ କଳତ
ତତକାଳେ ପାର୍ଶ୍ୱେ ଆସି ମିଳତ
କଣ୍ଟୁ ପଥ ଚଳଲେ ପାଗ୍ଭେଟିଣ
ବେଦ ମୁଖାବ୍ଜ ହୁଏ ସମ୍ମିଳନ । ୯ ।

ଆଶାତରୁ ନବପର୍ଣ୍ଣ ପଲ୍ଲବ
ଘନ କୋଟି ଅଧିକ ପ୍ରାପ୍ତ ଭବ
ସମାଦରେ କର କର ସଯୁକ୍ତ
ଜନାଶ୍ରମେ ଅଣାଇ ତପୋବନ୍ତ । ୧୦ ।

ପୁରୋଧା ବଶିଷ୍ଟଙ୍କୁ ସମାଦରେ
ଯଜ୍ଞଶ୍ୱର ଖୁଆଇଲେ ତୋଷରେ
ପିତା ପାଶେ ଗ୍ରମ ଲକ୍ଷ୍ମଣ ମିଳ
ପାଦେ ପ୍ରଣମିତ ନତ ମଉଳ । ୧୧ ।

ଗ୍ରମଚନ୍ଦ୍ର ସଲକ୍ଷ୍ମଣ ବଦନ
ନୃପାଶା ଚକୋର ସୁଧା ଅଶନ
ଶୁଦ୍ଧ ସଉଧେ ସୈନ୍ୟ ସାମନ୍ତାଦ
ଯଥା ସ୍ଥାନେ ଯେ ଯାହାରେ ସପାଦ । ୧୨ ।

ନାନା ଦ୍ରବ୍ୟ ସଯତ୍ନରେ ପ୍ରେରଣ
କଲେ ଯଜ୍ଞେନ୍ଦ୍ର ପୁଲକ ଲଭଣ
ସୁମିଷ୍ଟାଦ ଷଡ଼ରସ ବ୍ୟଞ୍ଜନ
କ୍ଷୀର ସର ପୁର ଦ୍ରବ୍ୟ ଭୋଜନ । ୧୩ ।

ସିଦ୍ଧା ସମ୍ବାଦ ପାଇ କେ ହର୍ଷିତ
ହସ୍ତୀ, ଗଜ, ଉଷ୍ଟ୍ର ଖାଦ୍ୟ ତୋଷିତ
ଖାଣ୍ଡୋଳ ଜ୍ୱଳନରେ ଆଲୋକ
ଜନ ଆଚସାଚ ବାଦ୍ୟ ଚମକ । ୧୪ ।

ବାର୍ତ୍ତା ପ୍ରସଙ୍ଗେ ଯାମିନୀ ବିନାଶ
ପ୍ରାଚୀ ଉଦୟାଦ୍ରି ଶିଖେ ଦିନେଶ
ଲୋହିତ ପ୍ରଭାବନ୍ତରେ ପ୍ରକାଶ
ଚରାଚର ଜନ ହୋଇଲେ ଦୃଶ୍ୟ । ୧୫ ।

ଶଯ୍ୟା ବିସର୍ଜନ କଲେ ସମସ୍ତ
ବିଧ୍ୱନି ପ୍ରକଟ ହୁଏ ଭୂରିତ
ନବ ଦୁର୍ଗାଧିପ ଶ୍ରୀ ବିନାୟକ
ଶ୍ରୀ ରାଘବ ବିଳାସରେ ରଚକ । ୧୬ ।



# ରାଘବ ବିଳାସ

## ତ୍ରୟୋଦଶ ଛାନ୍ଦ

**କାଳୀ** ବୃତ୍ତରେ ବିଂଶ ପଦରେ ଏହି ଛାନ୍ଦ ସମାପ୍ତ ହୋ'ଇଛି ।

ଏଥିରେ ବିବାହ ବେଦୀ ଏବଂ ବିବାହ ସମ୍ବନ୍ଧୀୟ ସାଜସଜ୍ଜା ବର୍ଣ୍ଣିତ ହୋଇଛି ।

ଏଥିରେ ଆଦ୍ୟ ଯମକ ବିଶେଷ ଭାବରେ ଦେଖାଯାଏ ।

ବୈକୁଣ୍ଠ ଶିଖ  ବୈକୁଣ୍ଠ ଶିଖ
କିଏ ଶୋଭିତ ଏଥି
କୁମୁଦବନ୍ତି  କୁମୁଦବନ୍ତି
ସୁଷମା ସମ ତଥି ।

ଏ ବର୍ଣ୍ଣନାରେ ଶବ୍ଦପ୍ରାଧାନ୍ୟ ଅଛି, ତଦ୍ରୂପ ଭାବପ୍ରାଧାନ୍ୟ ରହି ପାରିନାହିଁ; କିନ୍ତୁ ବର୍ଣ୍ଣନା ପ୍ରାଧାନ୍ୟ ରହିଛି ।



# ରାଘବ ବିଳାସ

## ତ୍ରୟୋଦଶ ଛାନ୍ଦ

( ରାଗ—କାଳୀ )

ରସ ବିଦଗ୍ଧ          ଏ ରସ ସିନ୍ଧୁ
ଶ୍ରବଣେ ତାପ ଦୂର
ସୁଗତି ପଥ          ହେବ ପ୍ରାପତ
ମିହଜ ଦଣ୍ଡ ଦୂର । ୧ ।

ପୂର୍ବ ଦେବେଶ          ହେଉ ପ୍ରକାଶ
ସର୍ବେ ଚଳନ୍ତୁ ତେଜ
ଅଜଜ ଇଷ୍ଟ          ଦେବେ ଅଧିଷ୍ଟ
ଜଣାଇ ଚିତ୍ତେ ହେଜ । ୨ ।

ବିଦେହ ଈଶ          ଲଭି ହରଷ
ନିତ୍ୟକର୍ମାନ୍ତେ ଚଳି
ବେହରଣରେ          ବିଜେ କରିଲେ
ଆଗତ ବାର୍ତ୍ତା ଭାଳି । ୩ ।

ଏ କାଳେ ଭାଟ          କୀର୍ତ୍ତି ପ୍ରକଟ
କରନ୍ତେ ଲଭି ତୋଷ
ଖୁଣ୍ଟିଆ ଡାକ          ପଡ଼େ ଚମକ
ମହିମା ଉଠେ ଘୋଷ । ୪ ।

ସରଯୂ ତୀରେ          ନଗ୍ର ସୁନ୍ଦର
ଈଶ ପୁରୋଧା ଘେନ
ସଚିବ ପାତ୍ର          ସଙ୍ଗେ ଅମାତ୍ୟ
ରମିଲେ ତତକ୍ଷଣି । ୫ ।

ହୋଇ ହରଷ          ଚର୍ହି ପ୍ରବେଶ
ବସନ୍ତେ ଯୋଗ୍ୟାସନେ
ଜନ ସକଳ          ହୁଅନ୍ତ ମେଳ
ଦଣ୍ଡାଜ୍ଞା ତତକ୍ଷଣେ । ୬ ।

---

ମିହଜ—ଯମ ।

ସର୍ବ କାରଣ ବୃଷ୍ଟି ତକ୍ଷଣ
ବରଗି ସେ ଯାହାରେ
କଣିଲେ ଭଗ୍ନ ସେ ବେହରଣ
ହରଷ ସୁମନରେ । ୭ ।

ରଥ କାରକେ ଆଜ୍ଞା ଦଉକେ
ସ୍ଥାପୀ ମଣ୍ଡପ ରଚ
ଦର୍ଶନେ ଲୋକେ ଅତି ଉତ୍ସୁକେ
ଲୋଭବନ୍ତେ ସୁସଞ୍ଜ । ୮ ।

ପାଳିଲେ ଆଜ୍ଞା ନୋହୁ ଅବଜ୍ଞା
ଗତ ସେ ତତକ୍ଷଣ
ଘଙ୍ଗି ସେ ବେଦ— ରଣ ସୁସ୍ନେହ
ଲଭିଣ ବେଦ ଜଣ । ୯ ।

ତ୍ରହଜ ମଗ୍ନ ହୋଇଣ ଲଗ୍ନ
ଭସଜ ଶୁଦ୍ଧି କଲେ
ଜାତ ଜାତକ ସର୍ବ ସୂଚକ
ବଞ୍ଚ ବାସର ଘଲେ । ୧୦ ।

ଶ୍ରବଣେ ବେଦ ପୁଲକ ଘେନ
ଲଭିଲେ ମହାନନ୍ଦ
ବିଧି ବିଧାନ କଲେ ଘଟଣ
ଘଜ ନିଯୋଗ ବୃନ୍ଦ । ୧୧ ।

ମଣ୍ଡପ ନିର୍ଭା କରୁ ପ୍ରତିଭା
ଲୋଭା ଦର୍ଶକ ଯୁକ୍ତ
ସୁମନ କ୍ଲିଶ ସଜ୍ଜ ପ୍ରକାଶ
ସୁମନା ପଂକ୍ତି ସ୍ଥିତ । ୧୨ ।

ସୁମନା ଶ୍ରେଣୀ ବ୍ୟକ୍ତିଙ୍କ ଜାଣି
ଦୋଳରେ ସୁବାସିତ
ପାଣିଜ ମାନ କ ବିତପନ
ଏହା ଦେଖିଲି ନେତ୍ର । ୧୩ ।

ରମ୍ଭା ନର୍ତ୍ତନ ରମ୍ଭା ନର୍ତ୍ତନ
ସମ୍ଭାବନାକୁ ଆଣ,
ଢଗ ବାସରେ ଢଗବାସରେ
ପରିଶୋଭିତ ଜାଣ । ୧୪ ।

ପୁଷ୍ପ ଦଣ୍ଡରେ ପୁଷ୍ପ ଦଣ୍ଡରେ
ଆମୋଦ ବର୍ଦ୍ଧମାନ,
ଗୁମ୍ଫା ଉପରେ ଗୁମ୍ଫା ଉପରେ
ନଗ ସର୍ବାଙ୍ଗ ଘର୍ମ । ୧୫ ।
ବିଂଶତି ପଞ୍ଚ ବିଂଶତି ପଞ୍ଚ
ବିମାନ ମାନେ ସେକ,
ବିତ ପଣ୍ଡରେ ବିତ ପଣ୍ଡରେ
ଭକ୍ତିରେ ତମଧିକ । ୧୬ ।
ଅମ୍ବର ଶ୍ରେଣୀ ଅମ୍ବର ଶ୍ରେଣୀ
ସ୍ତମ୍ଭ ବେଷ୍ଟନେ ରାଜେ,
ନୀଳ ଲୋହିତ ନୀଳ ଲୋହିତ
ପତାକା ପଂକ୍ତି ସାଜେ । ୧୭ ।
ବିଚପ ନକ୍ସା ବିଚପ ନକ୍ସା
ନାହିଁ ନ ଥିଲା ମର୍ତ୍ତ୍ୟେ,
କି ଶୋଭାକର କି ଶୋଭାକର
ଅଦେହ ନଗ୍ରେ ସ୍ଥିତେ । ୧୮ ।
ବୈକୁଣ୍ଠ ଶିଖା ବୈକୁଣ୍ଠ ଶିଖା
କିଏ ଶୋଭିତ ଏଥି
କୁମୁଦବର୍ଣ୍ଣ କୁମୁଦବର୍ଣ୍ଣ
ସୁଷମା ଭ୍ରମ ତଥି । ୧୯ ।
ବିଚିହ୍ନ ପନ୍ତ ବିଚିହ୍ନ ପନ୍ତ
ଯହୁଁ ଅର୍କଜା ତହିଁ,
ମକର ଚିହ୍ନ ମକର ଚିହ୍ନ
ଉଚ୍ଚ ପଣରେ ଶୋଭା । ୨୦ ।
ବେଦ ଚତୁର ମନ୍ତ୍ରି ଚତୁର
ରଥ କାରକ ତୋଷେ,
ଦ୍ରବ୍ୟ ଭୂଷଣ ଗାତ୍ରେ ମଣ୍ଡିଣ
ପୁରସ୍କାର ପାଇ ସେ । ୨୧ ।
ନିଜ ଆବାସେ ଶୀଘ୍ର ଗତ ସେ
ଏ ଅନ୍ତେ ତପେଶ୍ବର,
ନଗର ପୁର ମଣ୍ଡିଣି କର
ଧାର୍ମିକ ରତ୍ନାକର । ୨୨ ।

ବଲ୍ଲାଙ୍କ ମାନେ ସର୍ବେ ଉତ୍ସବେ
ବିଚିତ୍ର ଚିତ୍ର ଆଙ୍କି,
ତୋରଣ ମାଳ ମାଳ ମଞ୍ଜୁଳ
ସୁମନ ମଣ୍ଡିଲେ କି । ୨୩ ।
ଦ୍ୱାର ଦେଶରେ ବଂଶ ଅଗ୍ରରେ
ପତାକା ଶ୍ରେଣୀ ରଙ୍ଗେ,
ବାଟାଘାଟରେ ଚଳେ ଅନ୍ତରେ
ମାନସ ହରେ ବ୍ୟଗ୍ରେ । ୨୪ ।
ଶିଳୀନ୍ଦ୍ର ବୃକ୍ଷ ଦ୍ୱାରସ୍ଥ ଲକ୍ଷ
ଲମ୍ବିତ ହୋଣ ମାଳ,
ଲାଙ୍ଗଳୀ ଚୂତ ପଲ୍ଲବ ସ୍ଥିତ
କୁମ୍ଭ ପୂରିତ ଜଳ । ୨୫ ।
ବିବିଧ ଗାନ ତୂଏ ନର୍ତ୍ତନ
ଅବ୍ୟସ୍ତ ବିଲକ୍ଷିତ
ଦୃଷ୍ଟି ପତନ ବୈକୁଣ୍ଠ ଯେନ
ମାନସ ବିମୋହିତ । ୨୬ ।
ପାର୍ଥିବ ଧୀର ଦେଖି ନଗର
ଅସୀମ ପ୍ରେମେ ତନ୍ତ୍ର,
ଜନେ ପ୍ରଶଂସି ମୁହୁର୍ମୁ ଭାଷି
ଧନ୍ୟ ଏ ସୁମଣ୍ଡିତ । ୨୭ ।
ସ୍ୱଦେଶାନ୍ତର ଜନାଲୋକର
ଶତ୍ରୁକର୍ଷିକୁ କରେ,
ନ ଚଳେ ପାଦ ତେଜି ବିଷାଦ
ଖେଦ ବର୍ଜିତ ଦୂରେ । ୨୮ ।
ଯହିଁ ପାର୍ଥିବୀ ଅଛୁ ଜଉବ
ସେ ଧରା ଧନ୍ୟ ଧନ୍ୟ,
ଦେଶ ଚତୁର ଭୁବନ ସାର
କୁଚ୍ଛା ଭଜତ ଅନ୍ୟ । ୨୯ ।
ବାସର ପକ୍ଷ ସୁକ୍ତ ଯେ ଲକ୍ଷ
ଦୁର୍ଗ ଉଚ୍ଚାଣ ଘର,
ଧରାଜ ସୁତା ସୁତ ବନ୍ଦିତା
ନିଦଶ ସ୍ଥନ୍ଦେ କର । ୩୦ ।



# ରାଘବ ବିଳାସ

## ଚତୁର୍ଦ୍ଦଶ ଛାନ୍ଦ

**ମଙ୍ଗଳ ଗୁଜ୍ଜରୀ** ବୃତ୍ତରେ ପଚ୍ଚିଶ ପଦରେ ଏହି ଛାନ୍ଦଟି ସମ୍ପୂର୍ଣ୍ଣ ହୋଇଅଛି ।

ଏଥିରେ ରାମ ସୀତାଙ୍କର ବିବାହ ବର୍ଣ୍ଣିତ ହୋଇଛି । ବିବାହରେ ହଳଦି ମଙ୍ଗୁଳାଠାରୁ କଉଡ଼ି ଖେଳ ଯାଏ ଯେପରି ବିଧିମାନ ହୋଇଥାଏ, ତାହା କବି ଏକାନ୍ତ ସୁନ୍ଦର ଭାବରେ ବର୍ଣ୍ଣନ କରିଅଛନ୍ତି ।

ଅନେକ ଭାବବୈଚିତ୍ର୍ୟ ଏପରି କିଛି ଏହି ବର୍ଣ୍ଣନରେ ଋହିପାରି ନାହିଁ । ସାଧାରଣ ବର୍ଣ୍ଣନାକୁ କେତେକ କ୍ଳିଷ୍ଟ ଶବ୍ଦମର୍ଯ୍ୟାଦା ମଧ୍ୟରେ କେବଳ ରଖାଯାଇଛି ମାତ୍ର ।



# ରାଘବ ବିଳାସ

## ଚତୁର୍ଦ୍ଦଶ ଛାନ୍ଦ

(ରାଗ—ମଙ୍ଗଳ ଗୁର୍ଜ୍ଜରୀ)

ସୁଗୁଣ ପ୍ରବୀଣ ଗୁଣବନ୍ତ ଶୁଣ ରସ
ଭୁଜ ଭୂପଜଙ୍ଘେ ପରିଣୟେ ଭାବ ଭାଷ ।୧।

ନଗ୍ରବତ ପର୍ଯ୍ୟନ୍ତେ ନରେଶ ବେଦଚୋଷ
ମହା ମହୋତ୍ସବେ ଗନ୍ଧଷଣ ଅଧିବାସ ।୨।

ଦ୍ୱିଜ ଚମ୍ପୂପୁର ଶୋଭା ଗଣ ଅଣାଇଲେ
ସୁବିଧିରେ ସୁଶୋଭାଙ୍ଗ ଭ୍ରଦଣ୍ଡ କରିଲେ ।୩।

ସିନ୍ଧୁଜ ନିର୍ମ୍ମିତ ଖଟ ପ୍ରଦତ୍ତ ଆନନ୍ଦେ
ଅନୁରକ୍ତ ଉଡୁଭାଗ୍ୟ ବିଲୋକୁଁ ପ୍ରମୋଦେ ।୪।

ଅବଧି ସୂର୍ପ ଦ୍ୱୀପଧୀପ ବିଧାନ୍ତ ମାନରେ
ଅମ୍ବର ତହିଁ ବିଧାନ୍ତ ଅତି ମନୋହରେ ।୫।

ବାଜରେ ସାଜତ ସେତ କରୀନ୍ଦ୍ର ଗତରେ
କେଶରୀ ନାରୀ ସାରିତ ସୁମନ ଇଚ୍ଛାରେ ।୬।

ପ୍ରଜ୍ୱଳିତ ତେଜବନ୍ତ ଆନନ୍ଦ ହିଲ୍ଲୋଳ
ରସନା ବାଦ୍ୟ ଚମକ ଅତହିଁ ପ୍ରବଳ ।୭।

ନଗ୍ରାଗ୍ରାଣି-ବନ୍ଦ୍ୟାର୍ଥରେ ଆଗତ ତତ୍ପରେ
କରଦନ୍ତୀ ସୁମନା ସୁମନା ଉପହାରେ ।୮।

ଶକ୍ତିରୂପା ପୂରତେ ପୁରତେ ମିଳବାଳୀ
ରଜମାଣ ଗନ୍ଧବପୁ ବନ୍ଦେ ଦେଲେ ବୋଲି ।୯।

ମନ୍ଦାକନୀ ରାଜମାର୍ଗ ଶୋଭା ପ୍ରକାଶିତ
ସଦନ ବିଟପ ଛଟ ପରି ବିହାଜିତ ।୧୦।

ଜନ ସୁମନ ସ୍ୱଜତ ସୁବାସିତ ହାସ
ବାଚକ ଗୋଳ ଉଲ୍ଲୋଳ ରସରେ ସରସ ।୧୧।

ବାସଚଳ ତପଳ ହ୍ୱିଣ୍ଡୀର ଗତାଗତ
ମକର ଶଫ କୁମ୍ଭକ ଗ୍ରାହବତ ସ୍ଥିତ ।୧୨।

ନଗ୍ର ନଦାମ୍ବୁଜ ସ୍ୱଚ୍ଛ ରସରେ ପୂରିଛି
ନାନା ବର୍ଣ୍ଣାମ୍ବରମ୍ବୃତ ଇନ୍ଦ୍ର ଧ୍ୱଜା ଜୁଟିଛି ।୧୩।

ବାଦ୍ୟଭଦୁର ଚମକ ଇଭସ୍ତେ ସବଣା
ରଙ୍ଗଣ ବର୍ତ୍ତି ଜାଡାଡ ଧନଞ୍ଜୟ କଣା ।୧୪।

ନୃତ୍ୟକାସ୍ତି ଚପଳା ଚପଳେ ବିଦ୍ୟମାନ
ହଂସକଣ୍ଠ ଶ୍ୱେତ କେତନରେ ବିତପନ ।୧୫।

ଚନ୍ଦ୍ର ଧୀପାଲେକ ଗୁଳା ହାବେଳ ନିଷାଣ
ବାଣ୍ଡେ ହେ୍ରାଣା ଚଳାଶ୍ରେଣୀ ଭୂକ୍ତିକ ନର୍ତ୍ତନ ।୧୬।

ଶଙ୍ଖ ମହୁରୀ ବାଦ୍ୟକ ଗାନ ଭେକସ୍ୱନ
ଘଣ୍ଟ କାର୍ତ୍ତି ଶାମୁକ ସ୍ୱନରେ ବିତଧନ ।୧୭।

ରାମସୀତା ହିଜରସେ ସ୍ୱବପୂର୍ଣ୍ଣ ଦାନେ
ନୃପ ବେଜ ଆଶାସ୍ତି ବୃତକ ବିଦ୍ୟମାନେ ।୧୮।

ସୈନ୍ୟ ଚମ୍ପୁଙ୍କ ଉଷ୍ଣୀଷ ଗୋପକାଣ୍ଠ ବଡ
ହୃଦକାସାର ସମ୍ପୂର୍ଣ୍ଣ ସୁମନ ରଞ୍ଜିତ ।୧୯।

ଛନ୍ଦବୃମର ଉଲ୍ଲେଖ କରକା ବିତାନ
ଆଡ଼ମ୍ବର ଚତ୍ତାନନ୍ଦ ଯେନ ହେ ସୁମନ ।୨୦।

ଦେବୀଙ୍କି ନମନ୍ତି ଦାସୀଚୟ୍ୟ ବଗତ୍ତିତ
ଅନ୍ନ ନଜଗୁଇ ପୁରେ ଶାଳକ ବଶିତ ।୨୧।

ବରଷିଲେ ବର ସୁବେଶାର୍ଥେ ଚଦନ୍ତରେ
ଦିବ୍ୟାଙ୍ଗେ ଦିବ୍ୟ ଭୂଷଣ ଲାଇଲେ ସତ୍ୱରେ ।୨୨।

ବିପ୍ରସ୍ଥାନେ ଗୃହଭ୍ରାତେ ନେଇ ବିଜେ କଲେ
ବେଦ ବେଦ ବ୍ରହ୍ମାବୃର୍ଯ୍ୟ ବରଣ ହୋଇଲେ ।୨୩।

ବଶିଷ୍ଠ ଚୈତମଜ କାଶ୍ୟପ ଗାଧିଜ
ଶିବ ଗୌତମ ଜାବାଳ ଅଂବର ଉବଜ ।୨୪।

ବେଦୋକ୍ତ ଋଷି ହରଦ୍ରା ଦେଲେ ପସୁରରେ
ପସୁର କ୍ଷାଳିତ କଲେ କନ୍ୟାନୁଜ କରେ ।୨୫।

ଚଦନ୍ତରେ ଅନ୍ତରେ ଫଟକ ବସ୍ତ୍ର ଦେଲେ
ବାଡାସ୍ଥୁ ବିନୋଦ ଅନ୍ୟ ନାମ ପ୍ରବୃତ୍ତିଲେ ।୨୬।

ପୂର୍ବ ମଥୁରା ଈଶ୍ୱର ପଞ୍ଚବର୍ଣ୍ଣେ ନାମ
ବେଦ ବର୍ଣ୍ଣେ ଲେପେ ଦତ୍ତ ମୃଗ ନାଭି ଭଲ୍ଲ ।୨୭।

ବସ୍ତ୍ରାନ୍ତରେ ଶୁଭଚକ୍ଷୁ ହୁଅନ୍ତେ ମିଳନ
ରସଜା ରସଜାନନ୍ଦ ହଚନ୍ତ ଏ ଯେନ ।୨୮।

ସୀତା ଦୁଃଖକୁ ଝଟନ୍ତି ରାମ ହସ୍ତକରେ
ସଖୀଏ ନେଲେ ସତ୍ୱରେ ଆପଣା ବାସରେ ।୨୯।

ଦ୍ୱିଜ ବାମ ସ୍କନ୍ଧଶୋଭା ପ୍ରେରିତ କରନ୍ତେ
ଚରକଷ୍ଟୀ ଅଷ୍ଟରତ୍ନ ଗ୍ରନ୍ଥିତ କରଗତେ ।୩୦।

ଧାତ୍ରୀ ପୂର୍ବୀକ ଆନନ୍ଦେ ନତକର ନେଲେ
ଦକ୍ଷ କରାଇ ବସାନ୍ତେ ଶୋଭା ପ୍ରକାଶିଲେ ।୩୧।

ସଜ୍ଜକେଶଜା କ ଚତୁଷ୍କର ପ୍ରାପ୍ତହୋଇ
କହ୍ଲାର ରକା ନଶୀଶ ଚକୋର ମୃତ ହୋଁ ।୩୨।

ତଦୁପାନକ ମୂର୍ଖଣ ପାଳତା ଦୁହିତା
କନ୍ଦବାଞ୍ଛିତ ଉତ୍ପ୍ରେକ୍ଷା ଅଳଙ୍କାରସ୍ଥିତା ।୩୩।

ଶ୍ୱଶୁରବେଦିକାରେ ଶ୍ୱଶୁରକନ୍ୟା ବର ଶୋଭା
ବେଦୋକ୍ତରେ ଦ୍ୱିଜମାନେ ହୋଇ ଅତିଲୋଭା ।୩୪।

ବସୁନ୍ଧରା ବସୁଧାରା ଧରାରେ ରଞ୍ଜିତ
ସପ୍ତାବ୍ଧିକ ଏକତ୍ରିତ ହୋଇ ସମ୍ଭାବିତ ।୩୫।

ଶିର ଶୋଭା ଦତ୍ତକଲେ ବରକନ୍ୟା ଶିରେ
ପୁଲୋମଜା ବଲ୍ଲଭ କ ଉପମା ବିସ୍ତାରେ ।୩୬।

ଶିବା ଗୌରୀ ଦମୟନ୍ତୀ ନଳ ଉଚ୍ଚାରିଲେ
ଝିଙ୍ଖା ଗୋହାନ୍ତେ କରର ହଟପ ବେପିଲେ ।୩୭।

ହୋମାରମ୍ଭେ ଲଜ୍ଜାକ୍ରୀଡ଼ା ପାଇ ଦୁରାଭୂତ
ଇତସ୍ତତ ହୋଇ ସେତ ହଗତେ ହଗତ ।୩୮।

ଦର୍ଭିକରେ ଦର୍ଭିକରେ ଦମ୍ପତି ଭାବରେ
ବନ୍ଧନ କୃତ ବନ୍ଧିଲେ ସଚ୍ଚିଦାନନ୍ଦରେ ।୩୯।

ଭୂଶୁରଜା ଭୂସୁରଜା ପାଶେ ଉପଗତ
ଛନ୍ଦନକୁ ହଚ୍ଛେଦନ କଲେକ ଭୁଶତ ।୪୦।

ଗନ୍ତି ଅଳଙ୍କୃତା ବସ୍ତ୍ରେ ହୋଇଣ ଶୋଭିତା
ସ୍ୱମରେ ମାଇଙ୍କ ଜୟ କେତନ ସଜତା ।୪୧।

ତ୍ରିପୁର ଅନ୍ତ ତ୍ରିପୁରାନ୍ତକ ସମରରେ
ଜୟ ଦର ଧ୍ୱଜ ବଜେ ଉତ୍ତାଦ ସୌଧରେ ।୪୨।

ସାନୁଜ ଦେନଣ କଣ୍ଠକାଗ୍ରେ ଅଭିଷେକ
ତେସ୍ୱନେକ ଶୋଭବନ୍ତ ଯୁଗଳ ପ୍ରଷ୍ଟକ ।୪୩।

ଦଶ୍ୱନ୍ଦ୍ୱ କଟକ କ୍ଷୀର ସାଗର କନ୍ୟକା
ବର୍ତ୍ତ ପଣ୍ଡାଳସ୍ଥେ ଗଣ୍ଡା କ ଅବା ନଶଙ୍କା ।୪୪।

ହର୍ଷିତ ବାସରେ ଶ୍ୱଶ୍ରଣ୍ଠକ ଖେଳକଲେ
ବଳାକର୍ଷେ ବାଧକାର୍ଥେ ବିଭିନ୍ନ ନ କଲେ ।୪୫।

ତଦନ୍ତେ ଉତ୍ତନ ସ୍ଥାଲେ ରୁଦ୍ରାନନ ଗ୍ରାସ
ସମର୍ପନ୍ତେ ରତ୍ନାଙ୍କିତେ ଶ୍ରୀଭୁଜେ ବିନ୍ୟାସ ।୪୬।

ପଞ୍ଚ ପ୍ରସ୍ତବିମ୍ବ ପ୍ରାର୍ଥୀ ନତାନନେ ଲୋକ
ନତାଲକ୍ତେ କରବର୍ଣ୍ଣକୁ ସମସ୍ତେ ତରକ ।୪୭।

ଗୁରୁ ଗୁରୁଜନ ଲକ୍ଷାର୍ଥରେ ଏହି ଭାବ
ଏ ବିଧାନ୍ତେ ବନ୍ଦାଇଲେ ଶାଶୁ ଆସି ସର୍ବ ।୪୮।

ଅମୂଲ୍ୟ ଦ୍ରବ୍ୟ ପ୍ରଦତ୍ତ ଗତ ତୂରିତରେ
ମହାନନ୍ଦ ସୀତାରାମ ବିଭା ଉତ୍ସବରେ ।୪୯।

ବିନାୟକ ସିଂହ ମାନଧାତା ନୃପବର
ଚତୁଃର୍ଦ୍ଦଶ ଛନ୍ଦେ ରଚ ଚତୁର୍ଦ୍ଦଶାକ୍ଷର ।୫୦।

# ରାଘବ ବିଳାସ

## ପଞ୍ଚଦଶ ଛାନ୍ଦ

**ଲଳିତ କାମୋଦ ବୃତ୍ତରେ ଚଉତିଶ ପଦରେ ଏହି ରମଣୀୟ ଛାନ୍ଦଟି ସଂପୂର୍ଣ୍ଣ ହୋଇଛି ।**

ରାମ ପ୍ରଭୃତି ଚାରି ଭାଇ ଚାରିଟି ରମଣୀରତ୍ନ ବିବାହ କରିସାରି କିପରି ରାତି ହେବ—ପ୍ରିୟାମାନଙ୍କ ସହିତ ଭେଟ ହେବ, ଏଥିପାଇଁ ବ୍ୟାକୁଳ ହୋଇଉଠିଲେ ।

ସଖୀମାନେ ନାନା ସୁଷମାପୂର୍ଣ୍ଣ ଭାବରେ ଶଯ୍ୟା ରଚନା କରି ସୀତାଙ୍କୁ ନାନା ସୁରମ୍ୟ ଅଳଙ୍କାରରେ ସଜ୍ଜିତ କଲେ । କବି ଅଷ୍ଟ ଅଳଙ୍କାରରେ କିପରି ସଜାଇଲେ ତାହା ଏକାନ୍ତ ନିରୁପମ ଭାବେ ବର୍ଣ୍ଣନା କରିଅଛନ୍ତି ।

ମଧୁଶଯ୍ୟା ଗୃହରେ ରାମ ଅନ୍ତର୍ଲିପିରେ ଅଗ୍ନିସ୍ପର୍ଶ କରି ସୀତାଙ୍କୁ କହୁଛନ୍ତି—'ଜୀବନ ଧନ ଆଜ ନ କର ମାନ' ସୀତା ମଧ୍ୟ ତଦ୍ରୂପ ସ୍ୱ ବର୍ଣ୍ଣ ଲିପିରେ କହିଛନ୍ତି—'ତବ ବିନା ଆନେ ନାହିଁ ମୋର ଚିତ୍ତ ।'

ଅନନ୍ତର ରତିଗୃହର ନିବିଡ଼ ପ୍ରୀତିଦାନର ବର୍ଣ୍ଣନା କରାଯାଇଛି । ରାତି ଶେଷରେ ସୀତାଦି କନ୍ୟାଗଣ ଗୁରୁଜନଙ୍କୁ ଲୁଚାଇ ମାତି ସାରି ସୁବେଶିତ ହୋଇଛନ୍ତି ।



# ରାଘବ ବିଳାସ

## ପଞ୍ଚଦଶ ଛାନ୍ଦ

( ରାଗ—ଲଳିତ କାମୋଦ )

ଚତୁର ବୃନ୍ଦ ଚରିତ ଚତ୍ତ୍ୱେ
ରମାନ୍ଦ ଚତୁର ଢଣ୍ଡ ଅନ୍ତେ
ନୃପତି ସଚୀବ ପୁରୋଧାନ୍ଦ ସର୍ବ
ପାଦ ଅମନାତ୍ୟ ଯୋଦ୍ଧା ଯେତେ ସେ
ଭ୍ରଟ ସୂତ
ହାଣ୍ଡି ରଥୀ ଆଦି ଅପ୍ରମିତ
ବାଦ୍ୟ ପଞ୍ଚକାର ଶତ ଶତ ସେ । ୧ ।

ଜନକ ପୁରେ ଜନଙ୍କ ବେଶ
ଷଡ଼ରସ ଭୋଜ୍ୟ ପାଇ ତୋଷ
ସମ୍ଭବ ସମ୍ଭାବନାରେ ସର୍ବେ ଲୋକ
ନିଦ୍ରାକ୍ଷଣଦାରେ କ୍ଷଣ ନାଶ ସେ
ବାସେ ବାସେ
ବାସରେ ଶୁଣିଲେ ସେ ଆଳସେ
ଗ୍ରାସେ ଆଶାକାର ନୋହି ଲେଶେ ସେ । ୨ ।

ନାଗର ନାଗରୀ ଗୁଣ ଗୁଣି
ଢନ ଢନକୁ ସେ ଭ୍ରବ ମଣି
ତମ ତନ୍ଦ ହତ ତମ ତନ୍ଦ ହତ
ଗତାଗତ କେବେ ପୁଣି ହେବେ ସେ
ପ୍ରମଦାରେ
ପ୍ରମୋଦାମୃତ ପ୍ରାପତ ମୋରେ
ତସ୍ୟୁ ସୁକୃତ ହେବ କାରେ ଗୋ । ୩ ।

ଏମନ୍ତ ଭାବନା କରନ୍ତି ମନେ
ରବି ଅସ୍ତ ଭଜ ସାନୁମାନେ
ଦ୍ୱିଜବୃନ୍ଦ ନାଦ କରଣ ପ୍ରମୋଦ
ଆଶ୍ରମେ ଚଳନ୍ତି ସେ ସଘନେ ଗୋ
ହରିତରେ
ହରିତ ଲୋହିତ ମାଳମାରେ
ପ୍ରକାଶ ରଜନୀ ରାଣୀ ତୋରେ ଗୋ । ୪ ।

କି ଲଲିତ ଉଦେ ପ୍ରାଚୀ ନଭେ
ମଧୁରିମ ପ୍ରଭା ଅର୍ଜୁନ ଶୋଭେ
ତମ ବିଧ୍ୱଂସନ ତମ ବିଧ୍ୱଂସନ
ରମା ଶ୍ରେଣୀ ଭବନ୍ତି ଦୁର୍ଲ୍ଲଭେ ଗୋ
ବିଧି ନର୍ଭା
ଦୂର ହେବ ଆଜ ତୋର ପ୍ରଭା
ଏ ବିଧିରେ ସର୍ବେ ହୋଇ ଲୋଭା ଗୋ । ୫ ।

କେଳଣିପୁରେ ପ୍ରବେଶ ହୋଇ
ଚନ୍ଦ୍ରାଲୋକ ବିତାନ ଟଣାଇଁ
ନର୍ଭାନ୍ତି ଭିତ୍ତିରେ ବଚନ ଚନ୍ଦରେ
ଆଦରେ ଆଦରଣକୁ ଥୋଇ ଗୋ
ପାଣିଜରେ
ଗୁଣ୍ଡେ ଗୁଣ୍ଡେ ପେଣ୍ଡି ମଣ୍ଡି ଦେଲେ
ହାଟ କାରି ଲୋକଚ ଖଟରେ ଗୋ । ୬ ।

କୁମ୍ଭୀର ପର୍ଣ୍ଣଙ୍କ ବିପଟନ
ଆଳୀ ଭଲ କରି ସପଟନ
ସାର ସାରସ ତୁଳକା ତଳ୍ପକୁ
କଳ୍ପିଲେ କଳ୍ପନା କରି ମନ ସେ
ସୁମନାରେ
ସୁମନା ସୁମନ ବାଞ୍ଛା କଲେ
ଚନ୍ଦ୍ରରଜ ଦେଇ ତଥିପରେ ଗୋ । ୭ ।

ଶିର କର ପଦ ଅପସର
ପ୍ରଦୀପ ପଲଙ୍କ ଚୌପାଶର
ଜ୍ୱଳନେ ସୁନ୍ଦର କେଳଣି ମନ୍ଦିର
ବନଖଣ୍ଡ ପୁର ସୁଷମାର ଗୋ
ସୁସିଂହାସ
ଆଚ୍ଛାଦନ କଲେକ ମଶାରି
ରଖି ଯତ୍ନେ ବାସଜଳ ଝରି ଗୋ । ୮ ।

ଫଳସ୍ଥାନ ପକ୍ୱ ପଲ୍ଲବରେ
ସ୍ୱଚ୍ଛ ମୋଣ୍ଡ ଭସ୍ମ ତର୍ନ୍ଦି ପରେ
ଯଜ୍ଞ ଦେବ ସ୍ଥିତି ଫଳ ଖର୍ଜି ଦଣ୍ଡ

ସୁବାସ ସ୍ୱଚ୍ଛପା ରସ ଦେଲେ ଗୋ
ଯତ୍ନେ ରଖି
ନାହିଁ ପୂରେ ପୂର ଉପଲକ୍ଷି
ନଳନା କଳନା ଧୂଷମା କ ଗୋ ।୯।

ଏ ବଧି ବଧାନେ କର ଶେଷ
ସ୍ୱର୍ଣ୍ଣ ପୀଠପରେ ନାଗ୍ଯକେଶ
ଯେନ ସହଚରୀ କରେ ତୈଳ ବେଳ
ମାତଭଙ୍ଗେ ସଜାଇଲେ କେଶ ଗୋ
ସୁବେଣୀକ
ବାନ୍ଧ ଦେଇ ଲକ୍ଷ ବଢ଼ଶୀକ
ମନଝସ ଟାଣିନେବ ସେ କ ଗୋ ।୧୦।

ଭଡ଼ା ଭଡ଼ କେତନକୁ ଖୋସି
ଚତ୍ର ଦେଶେ ଚତ୍ର ଦେଇ ରସି
ଅଷ୍ଟ ଅଳଙ୍କାରେ ଅଷ୍ଟଧା ବଳପ୍ତେ
ଅଷ୍ଟାପଦେ ଘଞ୍ଚ ବକ୍ରେ ରସି ସେ
କର୍ଣ୍ଣ ଦେଶେ
ସୁଭୂଷଣ ପରେ ଅବତଂସେ
ମକର ଲେଖିଲେ ଗଣ୍ଡଦେଶେ ଗୋ ।୧୧।

କଞ୍ଜ ନେତ୍ରାଞ୍ଜନ ଧାର ନାଳ
କର୍ଣ୍ଣଦେଶେ ନାନା ଭଳ ମାଳ
ଉରଜେ କାଞ୍ଚଲ କୁଞ୍ଚ ମାଳାମ୍ବର
ସଜାଇ ରଞ୍ଜାଇ ତତକାଳ ଗୋ
କରଭୂଷା
ରତ୍ନ ବଚପନ କଲେ ଯୋଷା
ମୁଦ୍ର ପିନ୍ଧି ବଧି ସୁମାନସା ଗୋ ।୧୨।

କଣ୍ଠୀରବ ମଧ୍ୟେ ହେମ ଘଣ୍ଟି
ଘଣ୍ଟି ଦେଲେ ଗଣ୍ଡ କେନେ ରଣ୍ଟି
ଭ୍ରପଦରେ ବାଳା ଦେଲେକ ଅବଳା
କଣିକଣି କଙ୍କିଣି ପ୍ରକଟି ଗୋ
ନାଗବଲ୍ଲୀ
ଭୁଞ୍ଜାଲେ ଉପମା ନଳଗ୍ଲାନ
ଓଷ୍ଠ ବଳଦକ ପ୍ରାପ୍ତେ ଝଳ ଗୋ ।୧୩।

ସୁରେନ୍ଦ୍ର-ଅଗ୍ରଣୀ ଶ୍ୟାମ ଗାତ୍ର
ବନଜାନନ ବନଜ ନେତ୍ର
ତାଳ-ଫଣୀଧ୍ୱଜ ଙ୍କୁ ପଥା ଶୁଣି
କେଳଛ୍ୟାଳଦ୍ୱରେ ଛଥା ଗ୍ରାସ ଗୋ
ରଦାସନେ
ବ୍ରଜପୁ ସୁନ୍ଦର ହର୍ଷ ମନେ
ବୃତକାଶା ଯେସ୍ନେ ଘନ ବନେ । ୧୪ ।

ଆଗାରରେ ବୃଣ ସହୋଦର
ଅନମିଷେ ନଣି ଆଶାକର
ଏ କାଳେ ସଜମ ରଜମାଟାନମ
ଦେନ ପଦ୍ମଣ୍ଡ୍ରରେ ଛଚପର ଗୋ
ଗୃହାନନେ
ନାଗ୍ରି ଅନ୍ତର କରିଲେ ଦନେ
ଦେହଳୀ ବଳାଇ ସଯଛନେ ଗୋ । ୧୫ ।

ନାଚେର କେଶଗ୍ରି କେବା ସର
କେଶଗ୍ରି ମଧ୍ୟାକୁ ଧୀରେ ଧର
ଅଚନ୍ତୁ ସଂରେ ସୁଚନ୍ତୁ ଭ୍ରମରେ
କେବେ ନ ପୀଡ଼ିବ ବଳକର ଗୋ
ହୃମନାକୁ
ଚୁମ୍ବେ ଭୃଙ୍ଗ ମଧୁ ବୃଷିବାକୁ
ସେ ସୁବାସେ ମନ ମୋହିବାକୁ ଗୋ । ୧୬ ।

ଅଭିନବ ବପୁ ସୁବେଶୀକ
ଶ୍ୟାମଳ ସୁନ୍ଦର ସେ ବାଳକ
ଦ୍ୱିପୀରଦନ୍-ସୁପାତି ଡେଜଛନ୍ତି
ହୋଇ ବଳାହ୍ରାରେ ନେଲେ ସେ କ ଗୋ
ରଙ୍କ ହୋଇ
ଅଙ୍ଗରେ ମଣ୍ଡନ କରୁ ନେଇ
ପଙ୍କେରୁହନେତ୍ରୀ ସପା ବନ୍ଧୁ ଗୋ । ୧୭ ।

ଅଶ୍ୱର କ ନାମ ଅଛୁ ସନ୍ଧ ? (ବାଜୀ)
ନୂତନା ବୟସୀ କ ବୋଲାଇ ? (ନବ)
ସିଂହ କାହିଁ ବାସ ବୁଝ ନାଗାଙ୍କଣ (ବନ)
ଛେକ ଚନ୍ଦ୍ରାନନ ତୋଷ ବନ୍ଧୁ ଗୋ
ଯନ୍ତ୍ର ନାମ (ସିଦ୍ଧ)
ପିକଧ୍ୱନ କ କ ବୋଲି ଜନ (ସ୍ୱନ)
ଜାଗ୍ରତ ଲୋକେ ଶୁଣି କା ଗାନ ଗୋ । ୧୮ । (କୁଆ)

ଉଦ୍‌ବଚାପ ନାମ ହୁଏ କସ ? (ରେଜ)
କୁଷକାନନ୍ଦ ଫାଇ କା ରସ (ଘନ)
ମନେ କେ ଖାଳିତ ଛନ୍ଦ ନ ଘେନ ତ (ପିକ)
ହୃଦାନନ୍ଦେ ଘେନ ହୋଇ ତୋଷ ଗୋ
କାମଧର (ଶର)
କ ନାମ ବୋଲନ୍ତି ନ ଶ୍ୱବର (ଗ୍ରମା)
ତପୀ କ କରନ୍ତି ହୋଇ ସ୍ଥିର ଗୋ । ୧୯ । (ଧ୍ୟାନ)

ଅନ୍ତର୍ଲିପି ଏହା ବୁଝି ସଖି
ବେନ ବେନ ବର୍ଣ୍ଣ ଲେଖିରଖି
ପ୍ରାନ୍ତ ବର୍ଣ୍ଣ ଘେନ ମୋ "ଜୀବନ ଧନ
ଅଜ ନ କର ମାନ" ଉପେକ୍ଷି ଗୋ
ପ୍ରିୟସନ୍ଧ
କାହାଠାରେ ଦୋଷ ମୋର ନାହିଁ
ଏତେ କହ ପ୍ରୀତପକୁ ଛୁଇଁ ଗୋ । ୨୦ ।

ବୁଝି ମନେଥିଲୀ ପାଠ କର
ହେଠ ମୁଖ ବସିଣ ବଗୁର
ଲେଖନ୍ତି ଯେ ବର୍ଣ୍ଣ ମଧ୍ୟାକ୍ଷରେ ଘେନ
ଆଦ୍ୟ ପ୍ରାନ୍ତ ଲୋପ ହୃଦେ ସ୍ମର ହେ
ଭୂଷଜନ
ଏ ବଧ ବ୍ୟାନ ମନ ଦେନ
ଗୁପ୍ତୋକ୍ତି ନର୍ଜନେ ହାଚାଗ୍ରମ ହେ । ୨୧ ।

ବାର୍ତ୍ତା ଶ୍ରବଣାନ୍ତେ କ ବୋଲନ୍ତ (ଉତ୍ତର)
ଅନଳର ନାମ କ ପ୍ରବର୍ତ୍ତୀ (ପବନ)
ଦୁର ଖେଳ ନାମ କସ ବୋଲ ଜନ (ଅମ୍ବର)
ବର୍ଣ୍ଣନ୍ୟାସେ ଦେଇଥିବ ମନ୍ତ ହେ
ଙ୍କବଦ୍ଧତେ (ବନାଶ)
ଆବ ଚକ୍ରଶାଳୀ କେହୁ ମର୍ତ୍ତ୍ୟେ (ବଆଳ)
ମୃଗେନ୍ଦ୍ରକୁ ଜନେ କ ଭାଷନ୍ତେ ହେ ।୨୨। (ବନେଶ)

ଅମାନତା ନରେ କସ ଭାଷି ? (ଘେନାଇ)
ବଦାନ୍ୟରେ କେଉଁ କଥା ଘୋଷି ? (ଅନ୍ବଂସା)
ସୁବାସରେ କସ ହୁଅଇ ପ୍ରକାଶ (ଆମୋଦ)
ବରସ ନ ହୋଇ ଏଥି ରସ ହେ
ଜାଣାଧାସ୍ପ (ନାରଦ)
ଅଭ୍ରତର ନାମ କ ପ୍ରଗୃଭ (ବତହ)
ବପଦାର୍ଥେ କେଉଁ ନାମ ସର ହେ ।୨୩। (କାତର)

ସୁମନ କଳୀ ଗୁଚ୍ଛକୁ ବେଗେ
କେତକୀ ଦଳେ ସେ ଅନୁରାଗେ
ନେହାଞ୍ଜନ ନଖେ ଲେଖିଲେକ ସୁଖେ
ଚପଳରେ ଦତ୍ତ କାନ୍ତ ଆଗେ ଗୋ
ନରେଶଜ
ପଠନେ ଆନନ୍ଦ ହୃଦମ୍ବୁଜ
ବୋଇଲେ ଗୋ ସଖୀ ହପା ତେଜ ଗୋ । ୨୪ ।

ଜାତ ବେଦ ବେଦ ମତେ ସାକ୍ଷୀ
କାନ୍ତା କାନ୍ତ ହୋଇ ମହାସୁଖୀ
ସ୍ମର ଶାସ୍ତ୍ରୋକ୍ତେ ରତି କାମ ଯୁକ୍ତେ
ମଦନ ସାଗରେ ଉପଲକ୍ଷି
ଚତୁଃଷଷ୍ଟୀ
ବନ୍ଧ-ବଚ୍ଛେଦନ ଯାଏ ଘଟି
ସମ୍ମିଳନ ଶାସ୍ତ୍ରକୁ ପ୍ରକଟି ଗୋ । ୨୫ ।

ବପଦାର୍ଥେ—ବପଦ ଅର୍ଥରେ । ୨୨-୨୩—ମଧ୍ୟାକ୍ଷର – "ତବ ବନା ଆନେ ନାହିଁ ମୋର ଗତି ।"

ତୃଷାରେ ଶାନନ ଜଡ଼ମତ
ଓଷ୍ଠ ବମ୍ବପୁର ମଧୁ ଖ୍ୟାତ
ଉରଜାବ୍ଜ ଗିରି ସମ ସାମ୍ୟକର
ହେମ ଶିଶିର ବସନ୍ତ ଯୁକ୍ତ ସେ
ମାର ଶର
ଦ୍ରୁତବନ୍ତ ବେତ୍ରବେଣ୍ଣ ଜୂର
ବଇଜୟନ୍ତୀରେ ରମ୍ୟ କର ଗୋ । ୨୬ ।

ଘନ ଜଦନାର ରସେ ରସି
ଶତ୍ରୁ ବ୍ଯତକ ପିପାସା ତୋଷି
ଶିଳୀନ୍ଦ୍ର ତରଣୀ ରସାବ୍ଧି ସରଣୀ
ବତର ମାରଇ ଇଷି ଇଷି ଗୋ
ଲକ୍ଷ୍ୟହୀନ
ଭସାନ୍ତେ ପ୍ରବଳେ ଲଭି ଛନ୍ନ
ପକ୍ଷ ନଷ୍ଟେ ଯଥା ଦ୍ୱିଜଗଣ ଗୋ । ୨୭ ।

ଅନ୍ୟାନଂଜ ପୀଡ଼ା ଜ୍ୱରଘାତେ
ନାଗରେନ୍ଦ୍ର ତାପ ଲଭି ଗାତେ
ଦର ଦଂଶାଧରୁ ଅମୃତ ପାନରୁ
ଟାଙ୍କଣାଢ଼ ବ୍ୟକ୍ତ ସମଯୁକ୍ତେ ଗୋ
ମନସ୍ୱୀଳ
ଅଭ୍ରକରସାକୁ କଣ ମେଳ
ମଧୁହାସ୍ୟ ପାଇ ଶାନ୍ତ ଭୋଳ ଗୋ । ୨୮ ।

ହାଟକ ପ୍ରାପତ ବଣିକରେ
ତତ୍ପ୍ରତାନଳେ ସେ ରସ ଭରେ
ନାନାବିଧ ଭାବେ ନିର୍ମିତ ସମ୍ଭବ
ବିନ୍ୟାସ ନାଣିସେ ଅଳଙ୍କାରେ ଗୋ
ଅଷ୍ଟାଙ୍ଗେ
ମଣ୍ଡିତ ଖଣ୍ଡିତ କସ ଯନ୍ତ୍ରେ
ବିତପନ ତୃଷ୍ଣୀଜାର ଗାତେ ଗୋ । ୨୯ ।

ସଲୀଳକ—କୌତୁକରୁ ଜାତ (ଲୀଳ—କୌତୁକ)

କଷି କଷଟି ସେ ଲସ୍ତୁ କରେ
ଏ ଖଣ୍ଡ ଚୁମ୍ବନ ମୂଲ୍ୟାର୍ଥରେ
ହୃଦମଣି ମଣି ଯେନଣ ରମଣୀ
ସୁରସ ସଦନେ ନିଯାମାରେ ଗୋ
ପ୍ରେମାନନ୍ଦେ
ନବଘନ ବିଦ୍ୟୁ ଯଥା ସ୍ୱାନ୍ଦ୍ର
କନକାଙ୍କେ ନୀଳମଣି ମୋଦ ଗୋ । ୩୦ ।

ଷପାଗତାନ୍ତରେ ନଭ ଶୋଭା
ଅଳ୍ପ ମକର ଉଦୟେ ଲୋଭା
କୋକନଦ ଛବି ହରିତାଶ୍ୱ ରବି
ଶ୍ରୀପୁର ପ୍ରଦୀପ ମଳନାଭା ଗୋ
ସୁରମଣି
କରଟ ରଟ ପ୍ରକଟ ଶୁଣି
ସଦନାନ୍ତର ସେ ଚଟକଣୀ ଓଶା । ୩୧ ।

ନଳିନାନନ ମଳିନ ଦଶେ
ଦଳିତାଞ୍ଜନ ବିଭିନ୍ନ କି ସେ
ସୁବାସାଙ୍ଗୀ ବାସ ନୀବିବନ୍ଧନ୍ୟାସ
ବିନ୍ୟାସ ହେବାରୁ କି ବିକାଶେ ସେ
ଗତମନ୍ଦ
ବେଣୀ ବ୍ୟାଳ ମନ୍ତ୍ରୀ ଉଜଭେଦ
କାମ ନାଗେଶ୍ୱର ପଦ ଗଦ ସେ । ୩୨ ।

ବିକେଶ ଦେଖି ସେ ବେଶକାକ୍ଷୀ
ବୃ ରୁଚନେ ଲଜ୍ଜା ହେବା ସ୍ପଷ୍ଟ
ଶୀଘ୍ରେ ନଖ ମାର୍ଜ କଲେକ ଝଟିତ
ଅଙ୍ଗ ଚିହ୍ନମାନ ଲୁପ୍ତ କରି ସେ
ପ୍ରିୟଦାସୀ
ଯୂଥେ ସ୍ୱର କନ୍ୟା ନେଲେ ରସି
ମାନସରେ ସଙ୍ଗେ ହୋଇ ଚୋଷି ସେ । ୩୩ ।

ବନାପୃକାଂଘ୍ରି ନଳିନ ଧ୍ୟାୟି
ବନାପୃକ ମାନଧାତା କନ୍ତୁ
ବନାପୃକ ବନା କେ ମୋର ନାହିଁ ନା
ବପତ୍ତି ନାଶ ବପନ୍ତ ସେନ୍ତୁ ସେ
ନିର୍ବିଘ୍ନରେ
ସମ୍ପୂର୍ଣ୍ଣ ସ୍ୱଧବ ବଳାସରେ
ଆଶା ପୂର୍ଣ୍ଣ କେବେ ହେବ ମୋରେ ସେ । ୩୪ ।



# ରାଘବ ବିଳାସ

## ଷୋଡ଼ଶ ଛାନ୍ଦ

**ଚିନ୍ତା ଭୈରବ ରାଗରେ** ସତାବନ ପଦରେ ଏହି ଛାନ୍ଦଟି ରଚିତ ହୋଇଅଛି ।

ଦଶରଥଙ୍କର ରାମାଦି ପୁତ୍ରମାନେ ବଧୂମାନଙ୍କୁ ଜନକଙ୍କ ଗୃହରୁ ନେଇ-ଆସି ପିତାଙ୍କ ଆଦେଶରେ ଶୁଭଯାତ୍ରା ଆରମ୍ଭ କଲେ ।

ରାଜର୍ଷି ଜନକ ବହୁ ଭାର ସମ୍ଭାର ଦେଲେ । କିନ୍ତୁ ପଥରେ ପର୍ଶୁରାମ ବାଦ୍ୟଧ୍ୱନିରେ କ୍ରୁଦ୍ଧ ହୋଇ ପଥ ଓଗାଳିଲେ । ଫଳରେ ରାମ ତାଙ୍କର ଗର୍ବ ଧ୍ୱଂସ କରି ପୁଣି ଯାତ୍ରା କଲେ ।

ଏହି ଛାନ୍ଦରେ ତୁଳସୀ ଦାସଙ୍କ ରାମ ଚରିତ ମାନସରେ ଲକ୍ଷ୍ମଣଙ୍କ କ୍ରୋଧ ଯେନ ଯେଉଁ ବର୍ଣ୍ଣନା ରହିଛି, ସେପରି ଯଦୁମଣି ପର୍ଶୁରାମଙ୍କ ସହିତ ଲକ୍ଷ୍ମଣଙ୍କର ଉକ୍ତି-ପ୍ରତ୍ୟୁକ୍ତି ଅତି ହେଁତ ଭାବରେ ଖଂଜିଛନ୍ତି ।

ଏମନ୍ତ କି ପର୍ଶୁରାମ ଧନୁରେ ଶର ସଂଯୋଜନା କରିବାକୁ ଢଅନ୍ତେ ସୀତା ପୁଣି ଏକ ସପତ୍ନୀ ହେବ କିଏ, ଆଶଙ୍କାରେ ତ୍ରସ୍ତ ହୋଇଛନ୍ତି ।



# ରାଘବ ବିଳାସ

## ଷୋଡ଼ଶ ଛାନ୍ଦ

କବି କବିଙ୍କ କଳ୍ପନା କରି
କଷ୍ଟ ରସ କ୍ଳେଶ କ ବିସ୍ତର
ନିଶାନ୍ତେ କେଳତି                ଅନ୍ଧାରୁ ଝଟତି
ବାହାରନ୍ତେ ବୀର ଧନୁର୍ଦ୍ଧର ସେ
ସୁରତେ । ୧ ।

ମହା ନଟ ଦେବ ସ୍ୟନ୍ଦନରେ
ଆମୃଭୂକୁ ଜପୁ କରି ଫେରେ
ଉପୁ ନିବାରଣ                ଜପୁକୁ କରଣ
ତଥା ସୁଷମା ଗାନ୍ଧେ ପ୍ରସ୍ଥରେ ସେ
ରାଘବ । ୨ ।

ଅଙ୍ଗ ବଳ ସାଜ ପୂରିତ୍ତ
ବିଜେ ନମୂଚିକି କରି ହତ
ତଥାନୁଜ ବୀର                ସନ୍ଧ୍ୟା ବାହାର
ବିଧାନକ ଏମନ୍ତ ସହିତ ସେ
ବୀରେନ୍ଦ୍ର । ୩ ।

ମେଘ ଧ୍ୱନି ପ୍ରିୟ ପ୍ରସ୍ଥାନେ ବାଘ୍ମୀ
ସେନାମ୍ବି କ ତାରକା ବିଜୟୀ
ତଦାନୁ ଭବରେ                ଭ୍ରାତ ଭ୍ରତଠାରେ
ସୁଷମାରେ ସମ୍ଭାବିତ ହୋଇ ସେ
ଆଗତେ । ୪ ।

ମାରି ସମ୍ବର ଧ୍ୱଂସି କ ଆଶେ
ତେଜେ ବାସୁଁ ଆବାସେ ପ୍ରକାଶେ
ଶତ୍ରୁଘ୍ନ ଶତ୍ରୁଘ୍ନ                ହିଦ୍ରୁତେ ସୁଷମ
ପ୍ରସନ୍ନ ତ ଆନଣନ ବିଶେଷେ ସେ
ଭୋଷଣ । ୫ ।

ମଧ ଦାଳାତ ଲଙ୍କା ବିଜୟୀ
ଜମ୍ବୁ କ ଦ୍ୱାଲ ସ୍ୱନ କରଇ
ସୁମନେ ଦ୍ୱିରେଫ        ଦରନାଦ ଲକ୍ଷ
ଦ୍ୱିଜଚମ୍ପୂ ଚନ୍ଦ୍ରାପନା ମୋହ୍ୱ ସେ
ପ୍ରଚାରେ । ୬ ।

ବିଧି ବିଧାନେ ନିତ୍ୟ କର୍ମରେ
ଶୁଣ ସନ୍ଧ ଦର ଶେଷାନ୍ତରେ
ଯଜ୍ଞାନ୍ତ ାଳୟରେ        ଭୁଞ୍ଜି ସନ୍ତୋଦରେ
ଭକ୍ତି ଦତ୍ତ କରନ୍ତେ ସର୍ବରେ ସେ
ମନାନ୍ଦେ । ୭ ।

ଯତ୍ନ ମନ୍ତରେ ହର୍ଷିତା ଭରେ
କଣ୍ଠକେଶ ବନ୍ଧ ଚମ୍ପୁ ଭରେ
ବିବିଧ ବିଧାନ        ନିଧାନ ପ୍ରଧାନ
ଦ୍ରବ୍ୟେ ଚରେଣ ଚର୍ଚ୍ଚାଇ ବାରେ ସେ
ମୁନୀନ୍ଦ୍ର । ୮ ।

ଚେଳ ଚଞ୍ଚଳେ ଚଳାଇ ଦେଇ
ପ୍ରୀତି ବାକ୍ୟ ନାପିତେ ବୁଝାଇ
ପାଇ ପ୍ରଫୁଲ୍ଲିତ        ଲଭିଲେ ସମସ୍ତ
ବୃନ୍ଦ ଦେବନ୍ତେ ଯାହା ତୁଷଇ ସେ
ସେ କାଳେ । ୯ ।

ନିବାସରେ ବୀର ସୁର ମାନେ
ବାଣୀ ପ୍ରେରଣ କଲେ ବଦନେ
ପୁତ୍ରବଧୂ ନେଲେ        ଅତି ହମାଦରେ
ନୈକଟରେ ଆନନ୍ଦିତ ମନେ ସେ
ଘୋଷନ୍ତି । ୧୦ ।

ଧନ୍ୟ ନାସ୍ତି କନ୍ୟା ନିର୍ଭାବନ୍ତ
ସୁତ୍ମୋକେ ନିଲୋକେ·ସମ୍ଭବ
ବକ୍ତ୍ର ଶର୍ବେନ୍ଦୁ        ହାସ ସୁଧା ବିନ୍ଦୁ
ଚଞ୍ଚଳ ନୟନ ଉଦ୍ଭବ ସେ
ଉପମା । ୧୧ ।

ଗୃଣ ବଧୂ ବେଦବେ ଲକ୍ଷ
ଲକ୍ଷି ତା କେ ଭୁବନେ ବଳକ୍ଷ
ଗୃର ଭଗ ଧର ଭର୍ଗଙ୍କ ପ୍ରଗୃର
ବଲ୍ଲେକନେ ଆତ୍ମ ନେହ ମୋକ୍ଷ ସେ
ବଧିତ । ୧୨ ।

ଗୃର ଆନନ ବଗୃର ଗୃର
ଯୋଷା ଭସାରେ ସୁଷମା କର
ନିର୍ଭାବନ୍ତେ ଲେଖ୍ରା କଣ୍ଠକେ ପ୍ରତିଗ୍ରା
କେଉଁ କଣ୍ଠକେ ନାହିଁ କୁମାଗ୍ର ସେ
ସୁଲକ୍ଷୀ । ୧୩ ।

ଅଙ୍ଗ ଭୂଟଙ୍ଗା ଦେଶ ଏ କାଳେ
ମୁଖଁ ଦହ୍ଲଙ୍ଗା ହେଲ୍ଲ ୧କାଳେ
ନିଜ ଦେଶ ଜୟେ ଯିବା ଉଦ୍ଦେଶ୍ୟେ
ଭକ୍ତି ବନ୍ଧ ମୁନ ପାଶେ ମିଳେ ସେ
ପ୍ରକାଶେ । ୧୪ ।

ଶୁଣି ଜନକ ଅନେକ ବାଜୀ
ସିନ୍ଧୁ ଜାତି ଲକ୍ଷ ଦେଲେ ସଂଜ
ସ୍ତବଣା ହମାନ ହମର୍ପି ବାରଣ
ସର୍ବେ ଗଲେ ମନ୍ଦୁରା ବରଜି ସେ
ବଚେଶ । ୧୫ ।

ଆଣି ପ୍ରଦତ୍ତ ସେ ଲକ୍ଷ ଲକ୍ଷ
କ୍ଷୀର ଶାରଦତ୍ରା ଶୁଣି ମୋକ୍ଷ
ହର କରଶିର ବଦର୍ତ୍ତି ଦାହାର
ଦତ୍ତ ମୁମାଶ ଲଭଣ ସୁଖ ସେ
ସ୍ୟନ୍ଦନ । ୧୬ ।

ଋଶୀ ଅଶୀ·ଋଷି ଧୃତ ଦତ୍ତ
ଖେଳା ପାତ୍ର ଦେଲେକ ହେତ୍ର
ପାଳନ୍ତ ନେପାଳ ଚୃମ ଭଳ ଭଳ
ସମର୍ପିଲେ ·ଚନ୍ଦ୍ରକ ଧାନ୍ତ ସେ
ରୁରୁକ । ୧୭ ।

ଶାଠ କୋଷଜ ବସ୍ତ୍ର ଯଜଣ
ଋଙ୍କୁ ବାଜ ବସନ ଦେଇଣ
ସ୍ୱର୍ଣ୍ଣ ମୁଖ ଅଶ୍ୱ        ଦୁଧାଳୀ ପ୍ରଦତ୍ତ
ଋଷନାଗ୍ର ଲକ୍ଷ ଦାସୀ ପଣ ସେ
ସ୍ୱମର । ୧୮ ।

ଛତ୍ରାଳିଷ୍ଟ ଶତାନ ଆତପେ
ସୁରଚିତ ଶନାଶ ସଷପେ
ମୁମାଶ ଦାତବ୍ୟ        ଦେ ଅର୍ଥକୁ ଜବ
ରାଜ୍ୟ ପ୍ରେରକ କହିଲେ ଭୂପେ ସେ
ଆନନ୍ଦେ । ୧୯ ।

ଅମୃତ ଚଳୁ ସୁଖାସନରେ
ସେନ ବିଜୟ ସେ ନରବରେ
ଗଜେନ୍ଦ୍ର ରଦନ        ହୁଦୋଳେ ଗମନ
ବସି ସ୍ୱର ବଧୂଏ ହସ୍ତରେ ସେ
କଣ୍ଠକେ । ୨୦ ।

ବଳ ପ୍ରବଳ ଚଳଚଳରେ
ବାଦ୍ୟ ଧ୍ୱନ ଘୋଷ ଚହଳରେ
ଡିଣ୍ଡିମ ମଦ୍ଦଗ        ଢକା ତୁରୀ ଭେରୀ
ଝଞ୍ଜଘୋଷ ଦମାଲୁ ନାଦରେ ସେ
କମ୍ପିତ । ୨୧ ।

ବାଜ ସଂଜକେ ଚଳିତା ପରେ
ଇଭେ ଶୋଭେକେ ବୈଜନ୍ତୀ ଧରେ
ବଳ ବଳାବନ୍ତ        ଅନନ୍ତେ ଦେହିନ୍ତି
ସୁମନେ ସୁମନ ହଙ୍ଗରେ ସେ
ହରଷେ । ୨୨ ।

ରସା ଜଳସେକ ଧଂସା ନାଦେ
ଅମ୍ବୁ ଅରି ଦଳନ ଅନନ୍ଦେ
ଚତୁର ବନ୍ଦୀରେ        ବିଜୟ ସଙ୍ଗରେ
ଦୁଃଖାର୍ଣ୍ଣବେ କଣ୍ଟକାରେ ରଦେ ସେ
ମନ୍ଦିରେ । ୨୩ ।

ମାର୍ଗେ ମାର୍ଗଣ ଧରି ଚଳନ୍ତେ
ମାନ ବେଶ ହମ୍ମାନେ ଭେଟନ୍ତେ
ମିତ୍ର ବଂଶେ ମିତ୍ର ହେ ଇନ ଈଶ୍ୱର
ଷଣ୍ଢ ହୃଦତ୍ତ କରି ହର୍ଷିଲେ ସେ
ଭୂପାଳେ । ୨୪ ।

ବାଦ୍ୟ ନିର୍ଘୋଷ ଶ୍ରୁତି ପ୍ରବେଶୁଁ
ବଗଟେନ୍ଦ୍ର କ୍ରୋଧଭରେ ଆସୁଁ
ପଲଶ ପଲଶ ଫେରିଏ ହଦୃଶ
ଉଜାବଳ ଯଥା ଅଜାନେଷ୍ଟୁ ସେ
ଇତସ୍ତେ । ୨୫ ।

ଅଯୋଧ୍ୟେଶ ଅଯୋଧ୍ୟାର ମତ
ବାଟେ ଚଳ ଦଳ ଦଳ ଗଂସ
ପଲକ ପତନ ନ ହେଇ ମଜ୍ଜନ
ବାଟ ବଂକ୍ତ ସ୍ଥାନେ ବୀଟଚୀତ ସେ
ଭୂପାଳ । ୨୬ ।

କ୍ଷିତି ବର କାତର ଲୋକନେ
ବାଣୀ ଦତ୍ତ କୌଶିକ ବହନେ
ବାଣ ଧୃତ ବୀର ବରେନ୍ଦ୍ର ଶ୍ରୀଧର
ବିନାଶନେ ଉତ୍ପୃତ୍ତି ସଦନେ ସେ
ଖ୍ରିନାଶ । ୨୭ ।

ବାମଦେବ ବାମଦେବ ସମ
ଶାନ୍ତ ବନ୍ତ ହୋଇଣ ସେ କ୍ଷମ
ବସ ପ୍ରସୂନଙ୍କୁ ତା ଦନ୍ତୀ ନାଶଙ୍କୁ
ନାଶନେ ପଞ୍ଚାସ୍ୟ କ୍ଷମ ହେ
କ୍ଷ୍ମାପତି । ୨୮ ।

ତହୁଁ ଇଷ୍ଟ ଦତ୍ତରେ ବଟିଷ୍ଟ
ଉକ୍ତ ହୃଦ୍‌ଗୁର ହୋଇ ହଳୁଷ୍ଟ
ଉଷାରେ କୁଜ୍‌ଝଟୀ ଦିବ ଥାଇ ଘୋଟି
ବ୍ରଧ୍ନ ଉଦୟେ ହୁଏ ସେ ନଷ୍ଟ ହେ
ହେମନ୍ତ । ୨୯ ।

ରାମମିତ୍ର ବଂଶୋଦ୍ଭବ ଖ୍ୟାତ
କମ୍ପା ଅଜଜ ହେଉଛ ବ୍ୟସ୍ତ
ଚମ ଚନ୍ତ ହତ ହେବ ହେ ନୃପତ୍ୟ
ଅଶ୍ୱକର ନଷ୍ଟେ ତୁମ୍ଭ ସୁତ ହେ
ନ ଭ୍ରାନ । ୩୦ ।

ଜମ୍ବୁ ଅନ୍ତରକ୍ତ ହେବା କାଳେ
ପୂତ ଦନ୍ତ ସ୍ୱଭ୍ରାତ୍ରକ ବାଳେ
ତୁମ୍ଭେ ଖାଗ୍ରଣୀ ପମ୍ପୁରଜ ଆଣି
ଦଅ ଆମ୍ଭଜ ଶିରରେ ବୋଳ ହେ
କ୍ଷିତୀଶ । ୩୧ ।

ଯମ-ଦଗ୍ନିଜ କ୍ରୋଧାନଳରେ
ବାଣୀ ଖଣ୍ଡଦ୍ରୋହ ପ୍ରଖରରେ
ଦହନ ବହନ କରିବ ତୋ ସୁନ
ନାଶ ଆଜ ମୋର କବଳରେ ସେ
ଏକ୍ଷଣି । ୩୨ ।

ପିତୃବୈରୀ ବାହୁଜ ସୈନ୍ୟରେ
ଜପଗତ ଏ ବୃଦ୍ଧ ଆମ୍ଭରେ
ମିତ୍ର ସୁଚରଣ ପୁରେ ଜୀବ ପିବ
ପିଣ୍ଡ ଭସ୍ମ ପ୍ରାନ୍ତ ହବିଷାର୍ଣ୍ଣିରେ ହେ
ଚପଳେ । ୩୩ ।

ଶାନ୍ତ ଔଷଧି ଏଦ୍ୱାର ଏକ୍ଷ
ମଥା ଭ୍ରମ ଏ ବିନାଶ ହୋଇ
ପାମର ବିବୋଧି ପଥ ଅବରୋଧି
ସ୍ୱଧି ସିଦ୍ଧିରେ ପ୍ରାପ୍ତ ହେବଇଁ ହେ
ତତ୍‌କାଳେ । ୩୪ ।

ବାଣୀ ସୌମିତ୍ରିରେ ଅସିଧାର
ପର୍ଶୁଧର ଗାତ୍ରରେ ପ୍ରହାର
କୋପାବ୍ଧି ପ୍ରବୃଦ୍ଧି ସୈନ୍ୟକୁଳାରଜ (ଅନ୍ଧ)
ଯୋଦ୍ଧୁ ଭସ୍ମ ଭଜଲେ ସତ୍ତ୍ୱର ସେ
ବିଶେଷ । ୩୫ ।

ଏକବିଂଶ ବାର ଭ୍ରମି ମହୀ
କ୍ଷତ୍ରି ବଳବନ୍ତ ନାମ ବହି
ଚର୍ବ ବାଳ ବ୍ୟାଳ          ମୁଁ ଜାଙ୍ଗଲେ ଗ୍ରାଳ
ରଜ ରଜ ଗଜ ପଦ କହି ସେ
ସୁଦନ୍ତେ । ୩୬ ।

ଆରେ ମାତୃ ଗର୍ଭରେ ଦୋରେହା
ଆଜ ଏଥେ ଛୋର କେବା ସାହା
ଗଚ୍ଛୁଡ଼ କ ଅଛି          ପ୍ରାକର୍ମ ଦେଖାଇ
ମର୍ମେ ହେଜବୁ ଭୋଗିବୁ ଯାହା ରେ
ପାମର । ୩୭ ।

ରେଣୁକେୟ ଋଷି ସହର୍ଷରେ
ତୁ ଲଘବ ଅଟୁ ସହଜରେ
ଯେ ରାଘବ ତାର          ଆଗେ ଗର୍ବ ଚୂର
ମୁଁ କରିବାରେ ସମର୍ଥରେ
ଛଦନ୍ତେ । ୩୮ ।

କାଠ ଭେଦ ଧନୁର୍ଦ୍ଧର ରଥୀ
ଯେ ସେ ବୋଲାଇ ନାହିଁ ସେ ଏଥି
ରାକା କୁହୁବତ          ମଣେ ହୀନ ନେତ୍ର
ତୁ ତ ସେହି ପ୍ରାୟେ ମଣେ ଚିତ୍ତରେ
ନିର୍ଲଜ୍ଜ । ୩୯ ।

ରାମାଗ୍ରେ ମିଳୁ ପର୍ଶୁରାମ
ଦେଖି ପୃଚ୍ଛୁ ମଦନାଭିରାମ
କୁଠାର ବହନ୍ତ          କୁ ବଦ୍ୟା କରନ୍ତ
ଛେଦ ବଟପ ବଧାର୍ଥେ ଭ୍ରମ ହେ
ପାମର । ୪୦ ।

ପୁଣି ମାର୍ଗଣ ଧୃତ କରନ୍ତ
ପର୍ଶୁ ବଧେ କି ଇଚ୍ଛା ରଚନ୍ତ
ବଟେ ଯତ ବୃତ୍ତି          କି କାର୍ଯ୍ୟେ ଅଶାନ୍ତ
ଏ କି ଭୂମର ପୂର୍ବ-କଥିତ ରେ
ଲଣ୍ଡିକ । ୪୧ ।

ଭଣ୍ଡ ନକୁଳ ଦଣ୍ଡଜଗବ
ବତ୍ସ ବିନୁ ସ୍ଥିତ କାଟୋଦ୍ଭବ
ଅଯୋଧେଶ ସୁତ ନବଘନେ ବନେ ତ
ଏ ତ ଯଥାର୍ଥ ନୁହଇ ଜବ ହେ
ପାଷାଣ୍ଡ । ୪୨ ।

ବିନାଶରେ ବିନାଶରେ ଆଜ
କନାଶର ଶିଳ ଗତ ହେଜ
ବାଦ୍ୟୋଦ୍ଭବ କର ଗତବଳ ଧର
ଧନୁ ଧୃତ ନ କର ପଙ୍କଜ ରେ
ନିର୍ଲ୍ଲଜ୍ଜ । ୪୩ ।

ଦେଖି ପାର୍ଥିବୀ ବିସ୍ମୟ ଚିତ୍ତ
ପିତା ଯଷ୍ଟିଏ ଏକ ତା ମତ
ସେ ଧନୁ ଭଗ୍ନେ ଏ ଭଗ୍ନେ ସମର୍ଥ ଏ
ଏଣୁ ଆତ୍ମଜା ପ୍ରଦତ୍ତ ସତ ସେ
ଶ୍ରୀବନ୍ତ । ୪୪ ।

ବଧି ଅବଧି ସିନ୍ଧି ନିବନ୍ଧେ
ଘଟାଇଲ୍କ ଆଣିଣ ଛନ୍ଦେ
ହଟାଇଲ ଐକ୍ୟ କାମପୁର ବାକ୍ୟ
ସାକ୍ଷୀ ପ୍ରତାପକ ଭିନ୍ନ ପଦ ହେ
କାନ୍ତରେ । ୪୫ ।

ପୁଣ୍ଡ୍ରଶାକ ଅରଏ ପ୍ରଦତ୍ତ
ଏ ତ ଅବିହିତ ପରମତ
ଶ୍ରୀବନ୍ତେ ସପତ୍ନୀ ଜାଣି ଗୃପପାଣି
ଭଣି ବିଶ୍ୱଷ୍ଟ ବଳକର୍ଷିତ ହେ
ସୁମୁଖି । ୪୬ ।

କମ୍ପା ମଳନାନନ କରତ
ଚମ୍ପାଗାତ୍ରୀ ଅନୁକମ୍ପା ଶାନ୍ତ
ଇଶବାଣୀଜାକ୍ଷ ଉଦୟେ ଅହ୍ଲାଦ
ମନକୈରବରେ ଉଲ୍ଲାସିତ ହେ
ସୁଶାନ୍ତ । ୪୭ ।

---

ଶବ୍ଦାର୍ଥ । କନାଶର—ଯମ । ଅବ୍ଜ—ଚନ୍ଦ୍ର । କୈରବ— କଇଁଫୁଲ ।

ଋଷି କୁମଦ କୁମଦ ହେବ
ପୂଜମାସ୍ୱେ ସନ୍ତୋଷ ଲଭିବ
ଆଶା କୃଷି ତପ— ମାସ୍ୱ ତୃପ୍ରା ଆତ
ଉତ୍ସବଣି ପ୍ରାପ୍ତ ଜୀବ ହେବ ହେ
ନଷ୍ଟସ୍ୱ । ୪୮ ।

ଋସୁ ଋଷୁ ମୁନ ରେଣୁକେସ୍ୱ
ତପ ନାଶିତର ବୃଦ୍ଧା କ୍ଷସ୍ୱ
ବକଷଣ୍ଡ ଦତ୍ତ ହୋଇ କୀର୍ତ୍ତି ଖ୍ୟାତ
ହତେ ପ୍ରସିଦ୍ଧ ବୋଲାଅ ରେ
କମର୍ଥେ । ୪୯ ।

ଯେବେ ପ୍ରାକର୍ମ କର୍ମ୍ମ ଦେଖାଅ
କରି ଶୋଭରେ ଶିଞ୍ଜିମା ଦଅ
ସୁକାର୍ଯ୍ୟ ନ କର କୁକାର୍ଯ୍ୟ ପ୍ରବୃତ୍ତ
ଏଡ଼େ ବଡ଼ିମା ଦେଖାଇ ଯାଅ ରେ
ପାଗଳ । ୫୦ ।

ଦାଶରଥି ତୁ ବୋଲାଉ ରଥୀ
ଜାଣୁନାହୁଁ ପଣ୍ଡୁରାମ ଏଥି
କାକୋଦରେ ହେଳ ଦର୍ଦ୍ଦୁର ପନ୍ଥକ
ବାଦ୍ୟ ନାଦରେ କମ୍ପାଇ ସାଥି ରେ
ବୃଥାରେ । ୫୧ ।

ମୁଁ ତ ବିରାଟ ବିରାଟ ମତ
ଆଜ ଗାରିମା ହେବ ତୋ ହତ
ତୁ କର୍ତ୍ତୃତ୍ୱ ପଣ ଦେଖାଉଛୁ ପୁଣ
ଧିକ ପରାକ୍ରମ ତୋହରିତ ରେ
ନକୁଷ୍ଟ । ୫୨ ।

ବପୁ ଶୁଭ୍ର ମୋରେ ଜସ ହେବ
କର ଧୃତ ଯେବେ ଗୁଣ ଦେବ
ନରେତ ବହ୍ନିତ ଶାସ୍ତି କ ପ୍ରାପତ
ଏହ୍ନ ବାଚକ ମୋହର ଧ୍ରୁବ ରେ
ଅଧମ । ୫୩ ।

---

ଶବ୍ଦାର୍ଥ । କୁମଦ—ପ୍ରସନ୍ନ, ସୁଗନ୍ଧ । ତୃପ୍ରା—ଦୁଃଖ, ଘିଅ, ତୃପ୍ତ ଜଣବା ବ୍ୟକ୍ତି । କାକୋଦର—ସର୍ପ । ଦର୍ଦ୍ଦୁର—ବେଙ୍ଗ ।

ବୋଲ ସମର୍ପନ୍ତେ ଧନୁ ଶୀଘ୍ରେ
ରାମ ବାମ କରେ ଧରୁ ବ୍ୟଗ୍ରେ
ବସ୍ତ୍ର ତେଜ ହର                    ବୈକୁଣ୍ଠ ସହାସ
ରେଣୁକେୟ ତେଜଲେ ସେଁଭରେ ସେ
ସେକାଳେ । ୫୪ ।

ଋଷି ସ୍ତୁତିରେ କାର୍ଣ୍ଣି ସନ୍ଧୁ ବାଣ
ବୋଲୁଁ ବୋଲେ ମୋ ଦୁଷ୍କୃତ ହାଣ
ଅନଳେ ସଚ୍ଛେଧ                    ରାମ ଦୟାନିଧି
ଯମାଗ୍ନେୟସ୍ତୁରେ ପ୍ରଦକ୍ଷିଣ ସେ
ଗଚ୍ଛାନ୍ତେ । ୫୫ ।

ରସା କଂପିଲା ବାଦ୍ୟ ନାଦରେ
ସ୍ୱନେ ନୃପତି ହରଷ ଭରେ
ଭୁଜ ପରାହମେ                    ଯଶ ତ୍ରିଭୁବନେ
ଦେବତସ୍ୱ ସ୍ୱଲୋକ ଅନ୍ତରେ ସେ
ସୁମନେ । ୫୬ ।

ନପସ୍ୱନାପୂକ ସେ ନାଦରେ
ଅତି ପ୍ରମୋଦେ ବଦେ ମୁଦରେ
ସେ ପୁଣ୍ୟ ମିଥୁନ                    ଭୁଜିଷ୍ୟା ଦାସେଣ
ନଯୋଜିତ ହେଉ ସୁସାଦରେ ହେ
ଯେମନ୍ତେ । ୫୭ ।

ଶବ୍ଦାର୍ଥ । ଭୁଜିଷ୍ୟା—ଦାସୀ, ଗଣିକା ।

# ରାଘବ ବିଳାସ

## ଊନତ୍ରିଂଶ ଛାନ୍ଦ

ଏହି ଗ୍ରନ୍ଥ **କାମୋଦୀ** ବୃତ୍ତରେ ରଚିତ ଏବଂ ଏହା ଏକତ୍ରିଂଶତି ପଦରେ ସମ୍ପୂର୍ଣ୍ଣ ।

ଲକ୍ଷ୍ମଣଙ୍କ ସହିତ ବୈଦେହୀହର ରାମ ପଥେପଥେ ସୀତାଙ୍କୁ ଖୋଜି ଖୋଜି ଯାଉ ଯାଉ କାନ୍ଦୁଥିଲେ । ବାଳୀ ଅତ୍ୟାଚାରରେ ସୁଗ୍ରୀବ ଋଷ୍ୟମୂକ ପର୍ବତରେ ଥାଇ ଏପରି ଅପୂର୍ବ ମୂର୍ତ୍ତି ଦୁଇଜଣଙ୍କୁ ଦେଖି ହନୁମାନ ଦ୍ୱାରା ତାଙ୍କ ସହିତ ଭେଟ ହୋଇ ମିତ୍ର ହେଲେ ଏବଂ ସୀତାଙ୍କ ଅଳଙ୍କାରମାନ ଦେଇଦେଲେ ।

ସୁଗ୍ରୀବ ବାଳୀର ଅତ୍ୟାଚାରମାନ ବର୍ଣ୍ଣନା କରନ୍ତେ ରାମ ବାଳୀକୁ ଶର ମାରି ଗୋପନରେ ହତ୍ୟା କରି ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାର ରାଜା କଲେ । ରାଣୀ ହେଲେ ବାଳୀପତ୍ନୀ ତାରା ଏବଂ ଯୁବରାଜ ହେଲେ ବାଳୀପୁତ୍ର ଅଙ୍ଗଦ ।

ଏହି ଚରିତକୁ କବି ଯଥାଯଥ ସଂକ୍ଷିପ୍ତ ଭାବରେ ଏକାନ୍ତ ସୁନ୍ଦରତମ କରି ବର୍ଣ୍ଣନା କରିଅଛନ୍ତି ।

ଏଥି ପୂର୍ବ ଗ୍ରନ୍ଥଗୁଡ଼ିକ ଆମ ଅନୁସନ୍ଧାନକୁ ଆସି ପାରିନାହିଁ । ତେଣୁ ଦିଆଯାଇ ପାରିନାହିଁ ।



# ରାଘବ ବିଳାସ

## ଊନତ୍ରିଂଶ ଛାନ୍ଦ

ରାଗ—କାମୋଦୀ

**ସଲକ୍ଷଣ ଲକ୍ଷ୍ମଣ ସଙ୍ଗେ ଘେନି ସୁକ୍ଷଣ**
**ଗମୁଁ ଈକ୍ଷଣୁ ଲୁହମାନ**
**ହାହା ସୀତା ଅମିତା— ଧରି ଦେଲୁ କି ଚିନ୍ତା**
**ଧାତା ଲିଖନ ହେଲା ଆନ ଗୋ**
**ସୁଶୋଭାଙ୍ଗି**
**ତୋ ବିନା ବିନାରେ ନବୀନା**
**ଆଉ ମୋ ଶରଣ ନାହିଁ ନା**
**ଭାବିନୀ ଭାବ ଯେତେ ଭାବ ଭାବ ନିରତେ**
**ତେଜିଲୁ କାହା ଘେନି ମନା ଗୋ । ୧ ।**

**କଥା**—ସର୍ବ-ଲକ୍ଷଣ-ସମ୍ପନ୍ନ ରାମ ଲକ୍ଷ୍ମଣଙ୍କୁ ସର୍ବଦା ସାଥିରେ ଘେନି ଯାଉ ଯାଉ ନେତ୍ରରୁ ଅତ୍ୟଧିକ ଲୁହ ବହିଯାଏ । ସେ କହୁଥାନ୍ତି—'ହାୟ ହାୟ ! ରେ ଅମୃତାଧରୀ ଜାନକୀ ! ମୋତେ କି ଚିନ୍ତା ତୁ ଦେଲୁ ନାହିଁ ? ଭାବୁଛି ତୋତେ ମୋତେ ଯେ ବିଧାତା ଯୋଡ଼ି ଦେଇଥିଲା ତାର ନିଷ୍ପତ୍ତି ବୋଧହୁଏ ଭିନ୍ନ ହେଲା । ରେ ଉତ୍ତମ ଶୋଭନୀୟଦେହା ! ରେ ଚିର ତରୁଣୀ ! ତୋ ବ୍ୟତିରେକେ ତୋ ଅଭାବରେ ନାଃ ଆଉ ମୋର ଶରଣ କେହିହେଲେ ନାହିଁ, କାରଣ ତୁ ମୋର ଏକମାତ୍ର ଶରଣ ଥିଲୁ । ରେ ଭାବିନୀ ! ତୋର ଯେତେ ବିଳାସ ଓ ଅନୁରାଗ ଆଦିକୁ ନିରନ୍ତର ଭାବି ଭାବୁଛି ତୁ କାହା ଲାଗି ନିଷେଧ ଥିବା ବିଷୟ ତ୍ୟାଗ କଲୁ । ଅର୍ଥାତ୍ ମୋ ଅନୁପସ୍ଥିତିରେ କୁଟୀର ବାହାରକୁ ଆସିଲୁ ବା ମତେ ତ୍ୟାଗ କରି ଚାଲିଗଲୁ ।

---

ଶବ୍ଦାର୍ଥ । ସଲକ୍ଷଣ—ସମସ୍ତ ସୁଲକ୍ଷଣ ସମ୍ପନ୍ନ ଅର୍ଥାତ୍ ରାମ । ସୁକ୍ଷଣ—ଉତ୍କୃଷ୍ଟ ବା ସୁଦୀର୍ଘ ସମୟମାନ । ଗମୁଁ—ଯାଉ ଯାଉ । ଈକ୍ଷଣୁ—ନେତ୍ରରୁ । ମାନ—ସମୂହ, ଯେପରି କଥାମାନ, ଲୁଗାମାନ, ଘରମାନ ଇତ୍ୟାଦି । ଅମୃତାଧରୀ—ଯାହା ଅଧରରୁ ଅମୃତ ଝରେ, ଅତ୍ୟନ୍ତ ସୁନ୍ଦରୀ ସୁକୋମଳ ବଦନୀ ସୁଭାଷିଣୀ ନାରୀ । ଲିଖନ—ଭାଗ୍ୟଲେଖା । ଆନ—ଅନ୍ୟଥା । ତୋ ବିନା—ତୋ ବ୍ୟତିରେକେ । ବିନା—ଅଭାବ । ନା—ନାହିଁ । ସୁଶୋଭାଙ୍ଗି—ପରମ ରୂପବତୀ । ନବୀନା—ଚିର ନୂତନା । ଭାବିନୀ—ଚିନ୍ତାଶୀଳା, ସୁଲକ୍ଷଣା । ପ୍ରିୟତମା, ସ୍ୱାମୀପ୍ରତି କାମୁକୀ । ଭାବ—ବିଳାସ, ଅନୁରାଗ । କାହା ଘେନି—ଅନ୍ୟ କାହା ସକାଶେ । ମନା—ନିଷେଧ ।

ପାଠାନ୍ତର । ସଲକ୍ଷଣ ସଙ୍ଗେଣ ଘେନଣ ସୁଲକ୍ଷଣ । ଈକ୍ଷଣ ଗମେ ଲୁହମାନ । ହାହା ମୋ ସୀତାମୃତାଧରୀ । ଧାତା ଲେଖନ । ଶୋଭାଅଙ୍ଗି । ତୋ ବିନା ନାହିଁନା ନବୀନା । ନବୀନା ନାହିଁ ମୋ କାମନା ।

ରୁଷି-ଋଷି-ମୋହିନୀ ଗୁଣକୁ ଗୁଣି ଗୁଣି
ଋଷ୍ୟମୂକାଦ୍ରି ତଳେ ମିଳି
ବାଳୀ ବଳେ ବଳିଷ୍ଠ କଶ୍ୟପ ଗୃଷ୍ଟ-ଗୃଷ୍ଟ
କନିଷ୍ଠ କୁଟେ କୂଟେ ବଳ ସେ
ଚାରିମନ୍ତ୍ରୀ
ସଙ୍ଗତେ ନଭଗ-ତନୟ
ଗହ୍ୱରେ ରବିର ଆତ୍ମଜ
ମାର୍ଗେ କେ ଆସୁଛନ୍ତି ମାଗଣ ଧରିଛନ୍ତି
ଯାଅ ତୁ ବଟୁ ରୂପେ ହେଳ । ୨ ।

**କଥା**—ରୁଷି ହୋଇ ଥିବା ଋଷିମାନଙ୍କ ମୁଗ୍ଧକାରିଣୀ ଜନକନନ୍ଦିନୀଙ୍କର ଗୁଣକୁ ସ୍ମରି ସ୍ମରି ରାମ ଋଷ୍ୟମୂକ ନାମକ ପର୍ବତ ତଳେରେ ପହଞ୍ଚିଲେ, ଯେଉଁଠି କି ଦର୍ପୀ ବାଳୀ ବଳରେ ଏବଂ କୂଟତା ଯୋଗୁଁ ତାର କନିଷ୍ଠ ଭାଇ ସୁଗ୍ରୀବ ଉକ୍ତ ପର୍ବତ ଖୋଲରେ ଚାରି ମନ୍ତ୍ରୀ, ଯଥା—ସୁଷେଣ, ଜାମ୍ବବାନ୍, ନଳ ଏବଂ ହନୁଙ୍କ ସହିତ ଥିଲେ । ସୁଗ୍ରୀବ ଗହ୍ୱରରୁ ହନୁଙ୍କୁ କହିଲେ—ଦେଖ ଏହି ପଥରେ ଧନୁଶର ଧରି କିଏ ସେ ଆସୁଛନ୍ତି । ନିଜ ଅଙ୍ଗକୁ ବ୍ରାହ୍ମଣରୂପରେ ସଜ୍ଜିତ କରି ତାଙ୍କ ପାଖକୁ ଯାଅ ।

---

**ଶବ୍ଦାର୍ଥ** । ରୁଷି—ଅଭିମାନ କରିଥିବା ଅର୍ଥାତ୍ ରୁଷିକରି ପଳାଇଥିବା । ଋଷିମୋହିନୀ—ଯାହାଙ୍କର ସୌନ୍ଦର୍ଯ୍ୟ ଋଷିମାନଙ୍କୁ ମଧ୍ୟ ମୁଗ୍ଧ କରିଥାଏ । ଗୁଣ—ସଦ୍‌ଗୁଣମାନ । ଗୁଣି ଗୁଣି—ସ୍ମରି ସ୍ମରି । ଋଷ୍ୟମୂକ—ଏକ ସୁନାମ ପ୍ରସିଦ୍ଧ ପର୍ବତ । ଅଦ୍ରି—ପର୍ବତ । କଶ୍ୟପଗୃଷ୍ଟ—ସୂର୍ଯ୍ୟ । କଶ୍ୟପଗୃଷ୍ଟ ଗୃଷ୍ଟ—ସୂର୍ଯ୍ୟପୁତ୍ର ସୁଗ୍ରୀବ । କନିଷ୍ଠ—ବାଳୀର କନିଷ୍ଠ ସୁଗ୍ରୀବ । କୁଟେ—କପଟରେ । କୂଟେ—ପର୍ବତରେ । ଗହ୍ୱରୁ—ଗୁହାରୁ । ନଭଗ—ପବନ । ନଭଗତନୁଜ—ହନୁମାନ । ରବିର ଆତ୍ମଜ—ସୁଗ୍ରୀବ । ମାର୍ଗେ—ପଥରେ । ମାର୍ଗଣ—ଧନୁଶର । ବଟୁ—ବ୍ରାହ୍ମଣ । ହେଳ—ପାର୍ଥକ୍ୟ କଷ୍ଟର ।

**ପାଠାନ୍ତର** । ଋଷି ଯୋଗି ମୋହିନୀ । ଋଷ୍ୟମୂକ ପର୍ବତେ ମିଳି । ପାଶରେ ନଭସ୍ୱ ଅନୁଜ । କହଇ ରବିର ଆତ୍ମଜ । କେ ମାର୍ଗେ ଆସୁଛନ୍ତି ମାର୍ଗଣ ଧରିଛନ୍ତି । ଯାଅ ତୁ ବଟୁରୂପେ ଦ୍ୱିଜ ।

ଅର୍କପୁତ୍ର ବଦନ୍ତ ଉକ୍ତ ସୂକ୍ତ ମାରୁତ
ବେଦ ଅଧ୍ୟାସ୍ମି ରୂପ ଧରି
ରାମେ ରାମ ପାଶରେ ପ୍ରବେଶିଣ ସ୍ୱତ୍ତ୍ୱରେ
ପଣ୍ଟରେ ତଥ୍ୟ ତଥ୍ୟକରି ସେ
ତପଃଶୀଳ
କାହାର ଅଟ ତୁମ୍ଭେ ବାଳ
କିବା ନିମନ୍ତେ ଏଥି ଚଳ
ଜଟା ମୁକୁଟ ପଠ ଧରି ହୋଇ ଉଚ୍ଛାଟ
ଭେଟିବି କାହାକୁ ତତକାଳ ସେ । ୩ ।

ପିନାକ-ଅରି ଭଣି କୋଶଳ ନୃପମଣି
ଦଶରଥଜ ଅଟ ଆମ୍ଭେ
ବୈମାତ୍ରଙ୍କ ସତ୍ୟରେ ଅରଣ୍ୟାନୀ ମଧ୍ୟରେ
ଗମନ୍ତେ ଭେଟ ହେଲ ତୁମ୍ଭେ ହେ
ଋତ୍ୱିକେଶ
ପିଣ୍ଡ ରଖାଇ ମୋ ଜୀବନ
ନେଲା କେ ଦୁର୍ଦ୍ଧର୍ଣ୍ଣ ଭଞ୍ଜନ
ଉଷର୍ବୁଧ ଦହନ କଲା କି ଦଭଵନ
ବାମାଙ୍ଗୀ ହୀନେ ମୁଁ ତେଜନ ହେ । ୪ ।

---

(୩) ଶବ୍ଦାର୍ଥ । ଅର୍କପୁତ୍ର—ସୁଗ୍ରୀବ । ବଦନ୍ତ ଉକ୍ତ—କହିବା କଥାରେ । ସୂକ୍ତ—ଉତ୍ତମ ଭାଷଣ, ସଦ୍‌ବଚନ । ତଥ୍ୟ ତଥ୍ୟ—ଗୋଟି ଗୋଟି ।

ପାଠାନ୍ତର—ପଣ୍ଟରେ ତଥ୍ୟ ତଥ୍ୟ କରି—ଦେଖିଣ ପଣ୍ଟର ଉଚ୍ଛାର । କିବା ନିମନ୍ତେ ଏଥି ଚଳ—କି ନିମିତ୍ତରେ ବନେ ଚଳ । ଜଟା ମୁକୁଟ ପଠ, ଧରି ହୋଇ ଲମ୍ପଟ ।

(୪) ଶବ୍ଦାର୍ଥ । ପିନାକ ଅରି—ହରଧନୁ ଭଙ୍ଗକାରୀ, ରାମ । ଋତ୍ୱିକେଶ—ବ୍ରାହ୍ମଣଶ୍ରେଷ୍ଠ । ଦର୍ଭ—ପବିତ୍ର କୁଶ, ତୃଣ, ଦୂବା । ଉଷର୍ବୁଧ—ଅଗ୍ନି । ( ସୂର୍ଯ୍ୟସ୍ୟ ସ୍ୱୋଚନାଦଙ୍ଗ୍ନାନ୍ ଦେବାନୁଷର୍ବୁଧଃ ।)

ପାଠାନ୍ତର—ବୈମାତୃଙ୍କ ଛଳରେ । ଶତ୍ରୁ ମାତୃ ସତ୍ୟରେ । ଋତ୍ୱିକେଶ—ଭୂସୁରେଶ ପିଣ୍ଡେ ରଖିଣ ମୋ ଜୀବନ । ଉଷର୍ବୁଧ ଦାହନ, କଲା କାନ୍ଦଭଞ୍ଜନ ।

କପୀଶ ବାଣୀ ଶୁଣି ମସ୍ତକେ ନ୍ୟସ୍ତ ପାଣି
ପ୍ରଶସ୍ତେ ସୁ ସ୍ପ କର ଭଣି
ଝଣ୍ଟକ ବରାଟକ ଦ୍ୱୀପେଶ ସେ ହାଟକ—
ଦେହୀ ଝପଟେ ନଏ ପୁଣି ସେ
ତରଣୀରେ
ତରସ୍ତେ ତ୍ରସ୍ତ ପାଇ ବ୍ୟସ୍ତେ
ରାମ ରାମ କହି କାକୁସ୍ତେ
ମଞ୍ଚତଳେ ଚଞ୍ଚଳେ ଫିଙ୍ଗିଣ ସବକଳେ
ବାର୍ତ୍ତା ଦେବାକୁ କହି ସୁସ୍ପେ ସେ । ୫ ।

**କଥା**—ହନୁ (କପୀଶ) ସେ ବାଣୀ ଶୁଣି ମୁଣ୍ଡରେ ହାତ ଯୋଡ଼ (ନ୍ୟସ୍ତପାଣି) ଉଦାରତା ପ୍ରଯୁକ୍ତ (ପ୍ରଶସ୍ତେ) ଶୋଭମାନ ଭାବରେ (ସୁସ୍ପେ) ଭଣିଲେ କନକ ଲଙ୍କାର ରାଜା (ଝଣ୍ଟକ ବରାଟକ ଦ୍ୱୀପେଶ) ସେହି କନକଦେହୀକୁ ତରତରରେ (ଝପଟେ) ରଥରେ (ତରଣୀରେ) ନେଇଗଲା । ହାୟ ହାୟ ସେ ବନ୍ଦମାନ୍ୟା ଜଣକ ଭୟ ପାଇ ବ୍ୟସ୍ତରେ ରାମ ରାମ ଏପରି ଅତି କାତର ଭାବରେ (କାକୁସ୍ତେ) କହି ମଞ୍ଚ ତଳକୁ ଶୀଘ୍ର ଫିଙ୍ଗି ଦେଇ ବକଳ ବନ୍ଧନରେ ବାର୍ତ୍ତା ଦେବାକୁ କହି ଯାଇଛନ୍ତି ।

---

ଶବ୍ଦାର୍ଥ । କାକୁସ୍ଥ—ସୂର୍ଯ୍ୟବଂଶୀୟ ରାଜା ।

ପାଠାନ୍ତର—ପ୍ରସ୍ତୁତ ସ୍ପ ସ୍ପ କର ଭଣି । ଝଣ୍ଟକ ବରାଟକ, ଲଙ୍କେଶେ ସେ ହାଟକ, ଦେହ ଝଟକି ନଏ ପୁଣି । ତରସ୍ତେ—ପତ୍ନେ ! ରାମର୍ଣ୍ଣ ସେ ଚଞ୍ଚଳେ ପାଇଣ ସବକଳେ ।

ହରି ଭୟେ ବାରଣ ଯଥା କରି ବା ରଣ
ହରି ଭୟରେ ତଥା ହରି
କ୍ଷିତ ଜା ଜାତ ବଳେ ଲୁଚିଅଛୁ ସେ ବଳେ
ଅଙ୍ଗାଭରଣ ପାଇ କରି ସେ
ରଖେ ଯତ୍ନେ
ଯଥା ନିର୍ଦ୍ଧନ ଧନ ରତ୍ନେ
ଚଳନ୍ତ ଋଷ୍ୟମୂକେ ରତ୍ନେ
ମର୍କଟେଶ କପଟେ କୂଟେ ପେଷେ ନିକଟେ
ହରିରାଟ ଭୟରେ ପୁଣ ସେ । ୬ ।

ସଦାଗତ-ସନ୍ତତ ସଙ୍ଗେ କରିଣ ଗତ
ଅହ୍ନମକର ସୁତେ ଭେଟି
ଦେଖି ସୁଖୀ ସେକ୍ଷଣି ସ୍ତୁତିଲା ସେ ସେକ୍ଷଣି
ମସ୍ତକେ ନ୍ୟସ୍ତି ପାଣି ଉଠି ସେ
ଶଂଖ ଗଦ—
ଭୂଷଣ ସୁଷେଣ ତକ୍ଷଣ
ସନ୍ତାପ ତାପ ଉତ୍ତାପନ
ସୁଶାନ୍ତ ଶାନ୍ତ କରି ସୁବୋଧେ ବୋଧ କରି
ସଚେତ କଲେ ସେ ଲକ୍ଷ୍ମଣ ସେ । ୭ ।

(୬) ଶବ୍ଦାର୍ଥ । ହରି—ସିଂହ । ବାରଣ—ହସ୍ତୀ । ହରି—ମର୍କଟ । ଅଙ୍ଗାଭରଣ—ଅଙ୍ଗର ଅଳଙ୍କାର । ହରିରାଟ—ବାଳୀ । କୂଟେ—କପଟରେ ।

ପାଠାନ୍ତର । ହରି ଭୟ । କ୍ଷିତଜା ଜାତ ବଳେ । ଯେତେ ଯତ୍ନ । ରଖେ ନିର୍ଦ୍ଧନ ଧନରତ୍ନ । ଚଳନ୍ତେ ଋଷ୍ୟମୂକ ରତ୍ନ । ମର୍କଟେଶ ନିକଟେ ।

(୭) ଶବ୍ଦାର୍ଥ । ସଦାଗତ—ପବନ । ଅହ୍ନମକର—ସୂର୍ଯ୍ୟ । ଶଂଖ, ଗଦ, ସୁଷେଣ—ଏମାନେ ସୁଗ୍ରୀବର ସହାୟ ।

ପାଠାନ୍ତର । ଦେଖି ସୁଖୀ ସେକ୍ଷଣି । ଦେଖି ଶୁଣି ସେକ୍ଷଣି । ନ୍ୟସ୍ତ—ନ୍ୟସ୍ତି । ସୁଶାନ୍ତ ଶାନ୍ତ କର । ସୁବୋଧ ବୋଧ କର ।

ବାନରେ ବନବାସୀ ବନବାସରେ କ୍ଲେଶି
ଧାତା ଲେଖିଛୁ ବେନି ଏକ
ରାଷ୍ଟ୍ର ତନଜାନୁକ ପତ୍ନୀକଷ୍ଟ ସହକ
ହରିଙ୍କି ହରିକ ଏ ଏକ ସେ
ବ ନାୟକ
ବନାୟକରେ କେ ନାୟକ
ଏକ ବଂଶେ ଉଦ୍ଭବ ମିତ୍ର ହେବା ସମ୍ଭବ
ବୋଲ୍‌ଅ ପାଣିକ ସାୟକ ସେ । ୮ ।

**କଥା**—ଆପଣ ବନବାସରେ କ୍ଲେଶ ଲଭୁଛନ୍ତି । ମୁଁ ବାନର ହୋଇ ମଧ୍ୟ ବନବାସରେ କଷ୍ଟରେ ଅଛି । ଧାତା ଏକା ଦୁଃଖ ଦୁହିଁଙ୍କୁ ଦେଇଛି । ତୁମ୍ଭେ ରାଷ୍ଟ୍ର ହରାଇଛ, ପତ୍ନୀ ହରାଇଛ ଏବଂ ନିଜର ଅନୁଜଙ୍କ ସହିତ କଷ୍ଟ ଭୋଗୁଛ । ମୁଁ ମଧ୍ୟ ରାଷ୍ଟ୍ର ହରାଇଛି, ପତ୍ନୀ ହରାଇଛି, ଏମନ୍ତ କି ଅନୁଜ ସ୍ୱରୂପୀ ମୋର ସଖାଗଣ ମୋ ସହିତ କଷ୍ଟ ଭୋଗୁଛନ୍ତି । ତୁମ୍ଭେ ହରି ସ୍ୱରୂପୀ ନାରାୟଣ ମନୁଷ୍ୟ, ମୁଁ ହରି ସ୍ୱରୂପୀ ବାନର ଅଟେ । ତୁମ୍ଭେ ନାରାୟଣ ସ୍ୱରୂପୀ ହେତୁ ଗରୁଡ଼ର ପ୍ରଭୁ ଅଟ । ମୁଁ କିନ୍ତୁ ବନାୟକ ଙ୍କ ମଧ୍ୟରେ ଏକ ଅଗ୍ରଣୀ ମହାନ୍ ଅଟେ । ଏକ ସୂର୍ଯ୍ୟବଂଶରେ ଜନ୍ମ ହୋଇଥାଏଁ; ତେଣୁ ମିତ୍ର ହେବା ସମ୍ଭବ । ଆପଣ ଧନୁର୍ଦ୍ଧାରୀ ଅଟନ୍ତି ମୁଁ ଖଡ଼୍‌ଗଧାରୀ ଅଟେ ।

---

ଶବ୍ଦାର୍ଥ । ପାଣିକ—ସନ୍ଦୋହିତ ଧାରଣକର୍ତ୍ତା । ସାୟକ—ଧନୁଶର, ଖଡ଼୍‌ଗ । ବି—ପକ୍ଷୀ ।
ପାଠାନ୍ତର । ହରି ହରିକି କର ଏକ ସେ । ଏକ ବଂଶ ଉଦ୍ଭବ ।

ତୁମ୍ଭ ଆର୍ତ୍ତ କର୍ତ୍ତନ     କରିବ ବର୍ତ୍ତମାନ
ନିବର୍ତ୍ତ ହୋଇବ ମଇନ୍ଦ
ବୋଲନ୍ତୁ ସୁଗ୍ରୀବ ଗ୍ରୀବ     ଫୁଲାଇଣ ଉଦ୍‌ବେଗ
ବୋଲଇ ଏକଇ ବୃତ୍ତାନ୍ତ ହେ
କର୍କଶରେ
ଶକ୍ରନନ୍ଦନ ବଳାଶରେ
ବେଧା ବିଧାନ ଧ୍ୟାନ     ପଳାଶ ଅଛି କାଣ
ପ୍ରାକର୍ମ୍ମେ ପିଙ୍ଗ ହେ ସତ୍ତ୍ୱରେ ହେ । ୯ ।
କୋଳ ରୂପେ ଭୂଧର     ଯବମାନେ ବଳୀର
ସର୍ବ ଗର୍ବକୁ ଖର୍ବ କଲେ
ଅଙ୍ଗୁଷ୍ଠି ଅଗ୍ରେ ବ୍ୟଗ୍ରେ     ସ୍ଥିତ ଅସ୍ଥିକ ଶୀଘ୍ରେ
ଅନ୍ତରୀକ୍ଷରେ ଛାଡ଼ିଦେଲେ ସେ
ମାର୍ତ୍ତଣ୍ଡଜା
ତକେ ବିଗ୍ରହ କରେ ମଜ୍ଜା
କରମାଳୀର କର ତେଜା
ମେଦାଦ୍ଧ ସୂକ୍ଷ୍ମ ନଷ୍ଟ     ଗହ୍ୱରେ ଯଥାକାଷ୍ଠ
ଏଣୁ ଏ ବୋଲାଇ ଦୂତକା ସେ । ୧୦ ।

(୯) ଶବ୍ଦାର୍ଥ । ଆର୍ତ୍ତି କର୍ତ୍ତନ—ଦୁଃଖ ନିବାରଣ । ଗ୍ରୀବ—ବେକ । ଶକ୍ରନନ୍ଦନ—ବାଳୀ । ଉଦ୍‌ବେଗ—ଉତ୍କଣ୍ଠାରେ । ବଳା—ଚନ୍ଦ୍ରବଦ୍ୟା । ବେଧା—ବିଧାତା । ପ୍ରାକର୍ମ୍ମେ—ଯେତେ ଶକ୍ତି ଅଛି ।

ପାଠାନ୍ତର—ବୋଲଇ ଏକର ବୃତ୍ତାନ୍ତ ।

(୧୦) ଶବ୍ଦାର୍ଥ । କୋଳ—ଶୂକର । ଯବ—ଅଳ୍ପ ପରିମାଣ । ମାର୍ତ୍ତଣ୍ଡଜା—ସୂର୍ଯ୍ୟଠାରୁ ଜନ୍ମ, ସୁଗ୍ରୀବ । କରମାଳୀ—ସୂର୍ଯ୍ୟ, ଅଗ୍ନି ।

ପାଠାନ୍ତର—କରିମଜ୍ଜା । ସୂକ୍ଷ୍ମ—ଶୁଷ୍କ । ଦୂତକା—ଦୂତପା ।

ଜଳଦ-ପତି ସୁତ କହେ ଏକ ବୃତ୍ତାନ୍ତ
ସିନ୍ଧ ଗଛକୁ ଛେଦିବାରେ
ପବନାର୍ ଛନ୍ଦରେ ବେଷ୍ଟିତ ଅଛିବାରେ
ବିଚ୍ଛେଦ ଚ୍ଛେଦ ଛନ୍ଦିବାରେ ହେ
ରଘୁତ୍ତମ
ବୀର ପ୍ରାକମ୍ଯରେ ପ୍ରାକର୍ମ
କେଶରୀ କେ ଏ ସରସମ
ଭୁଜଙ୍ଗପତି ଭୂଷା ବନ୍ଧ ତେଜି ମନୀଷା
ତୀର ପ୍ରହାରୁଁ ଶବ୍ଦଭୀମ ସେ । ୧୧ ।

ସନ୍ତୋଷ ରବିସୁତ ହିତମତ ଭ୍ରବତ
ମିତ୍ର ଗୁଣ ତ ଶତ ଶତ
ଲକ୍ଷ୍ମିତ୍ର ସହିତ ଏମନ୍ତ ସେହି ମତ
ଉଷତ ଚତ୍ତରେ ସନ୍ତତ ସେ
ବୀରଭଦ୍ର
ଅଗ୍ରଜ ଶତ୍ରୁ ଦେଖା ବ୍ୟଗ୍ର
ଶେଷ ଦଶାରେ କର ତୀବ୍ର
ବାଲୀ ବଳ ଦଳଣ ବାଲୀ ହେଲେ ଦେଇଣ
ଚଳବ ଈଶ କର ଶୀଘ୍ର ସେ । ୧୨ ।

(୧୧) ଶବ୍ଦାର୍ଥ । ଜଳଦପତିସୁତ—ଇନ୍ଦ୍ରସୁନୁ ବାଳୀ । କହେ—କହିଥାଏ । ପାଠାନ୍ତର । ଛେଦ—ବେଦ । ଅଛିବାରେ—ଅଚ୍ଛୁବାରେ । ଶବ୍ଦ—ଅନ୍ତ ।

(୧୨) ପାଠାନ୍ତର । ମିତ୍ର ଗୁଣତ ଶତଶତ—ବନ୍ଧାମିତ୍ର । ହିଷତ—ଭକତ । ଦଳଣ—ଚଳଣ । ଚଳବ—ଚଳାବ ।

ନୀରଦ୍ ବିନ୍ଦୁ ଗାତ୍ର ବେଣି ଫେଣି ସଙ୍ଗତ
ଅବ୍ଜ ବାନ୍ଧବ ସୁତ ଗତ
ସର ସରଣୀ ମଧ୍ୟ ତାଳ ତାଳ ଶବଦ
ଜାଣି ପୁଚ୍ଛନ୍ତି ରଘୁ ସୁତ ହେ
ନିଶାଈଶ
ମନ୍ଦ ମନ୍ଦ କର୍ଣ୍ଣିକ ବାସ
ଦ୍ୱନ୍ଦ ଇନ୍ଦ୍ର କଲ୍ଲି ବିଶେଷ
ବାରମ୍ବାର ବାର ସ୍ତ୍ରୀ ବାରମ୍ବାର ଝଟତି
ପେଷନ୍ତି ନୃପତି ତପେଶ ହେ । ୧୩ ।

ହର ହର ଦ୍ୱାରରେ ହରି ସେ ହରଷରେ
ହରି ଅନୁଜ ଧରି ମିଳି
ଘଡ଼ ଘଡ଼ ରଡ଼ ଛାଡ଼ି ଶୁଣି ଦନ୍ତ ରଗଡ଼ି
ଝଟତି ଧପଟି ସେ ବାଳୀ ସେ
ପାଶେ ମିଳି
ମାଇଲା ବଜ୍ର ମୁଥ ଡୋଳ
ବହଇ ରକତ ନିକଳ
ଗର୍ଜି ତର୍ଜି ବିଭ୍ରାଜି ପଳାଏ ମୃତ୍ୟୁ ହେଜି
ଋଷ୍ୟମୂକରେ ଯାଇ ମିଳି ସେ । ୧୪ ।

---

(୧୩) ଶବ୍ଦାର୍ଥ । କର୍ଣ୍ଣିକ—ନିସ୍ତନ୍ତ୍ରା, କର୍ଣ୍ଣିଧାଚ, ଦୀର୍ଘବାହୁ ।
ପାଠାନ୍ତର । ଅବ୍ଜ—ଅହ୍ନ । ନିଶାଈଶ—କହଈଶ । ବାରସ୍ତ୍ରୀ—ଅରସ୍ତ୍ରୀ ।

(୧୪) ପାଠାନ୍ତର । ଦନ୍ତରଗଡ଼ି—ଦାନ୍ତବାମୋଡ଼ି । ଝଟତି-ଧପଟି—ଧପଟି ଧଇଲା । ବିଭ୍ରାଜି—ବିଭ୍ରତ । ମୃତ୍ୟୁ—ମୃତ ।

ବଣାଠଣା ନ ପାଇ          ଅନ୍ୟ ବଳରେ ଯାଇ
କାକୁସ୍ଥେ ମହାଏସ୍ତ ପାଇ
ଦମ୍ଭ କୁମ୍ଭ ଭଂଜନ          ମୃତ ଶବକୁ ଘେନ
ହୋଇଛି ଅତି ଦୁଃଖୀ ସେହି ସେ
ବୀର ସିଂହ
ସୁମନେ ଗମନେ ତତ୍‌କ୍ଷଣେ
ଖୋଜି ଭେଟିଲେ କିଛିକ୍ଷଣେ
କଞ୍ଚୁକି ମିତ୍ର ଗାତ୍ରେ          ବଳ ନାହିଁ ଯେ ମାତ୍ରେ
ଚଞ୍ଚଳେ ଚଳ ଆଉ କ୍ଷଣେ ସେ । ୧୫ ।

ସ୍ୱାର୍ଥେ ବ୍ୟର୍ଥେ ଅନର୍ଥେ          ନିର୍ବଣେ ସେ କଦର୍ଥେ
ନୂତନାଥରେ ନାହିଁ ଆଶ
ବୋଲୁଁ ରାଘବ ବେଗ          ହାଷନ୍ତି ସେ ଉଦ୍‌ବେଗ
ବଚନ ଲାଘବେ କି ଯଶ ସେ
ଚନ୍ଦ୍ରହୀନ
ଏକାନ୍ତ ଗାତ୍ର ହେ ମଇନ୍ଦ
ଏଣୁ ନ ମାରି କଙ୍କପତ୍ର
ସୁଧୀର ଶତ୍ରୁ ଧୀରେ          ପ୍ରବୋଧି ଏ ବଧିରେ
ବୋଲିଣ କଲେ କୋଳାଗ୍ରତ ସେ । ୧୬ ।

(୧୫) ପାଠାନ୍ତର । ଦମ୍ଭ—ଭସ୍ମ । ଭଂଜନ—ଭଞ୍ଜନ । ଶବକୁ—ସମ୍ଭବ । କଞ୍ଚୁକି ମିତ୍ର ଗାତ୍ରେ—କଞ୍ଚୁକି ମାତ୍ର ଗାତ୍ରେ । ଚଞ୍ଚଳେ ଚଳ—ଚଞ୍ଚଳ ଚଳ ।

(୧୬) ଶବ୍ଦାର୍ଥ । କଙ୍କପତ୍ର—ଶର । କଦ—ଜଳ, ଦୁଃଖ ।

ପାଠାନ୍ତର । ସ୍ୱାର୍ଥେ—ସ୍ୱାର୍ଥ । ନିର୍ବଣେ ସେ କଦର୍ଥେ—ମୋହରେ ତେଜିବା ସେ । ବଚନ—କାହଣ, ପ୍ଲବଗ ଲାଘବେ କି ଭାଷ । ସୁଧୀର—ସୁଧୀରେ । ପ୍ରବୋଧି—ଯାଅ ବଧିରେ ଧୀରେ । ବୋଲିଣ ମଇନ୍ଦେ କଲେ କୋଳାଗ୍ରତ ସେ ।

ବାଳୀ ପ୍ରବଳ ବଳ          ହେଳାପ୍ଲ ବଗ-କୁଳ-
ଶାର୍ଦ୍ଦୂଳ କୋଟି କିବା ମେଳ
ସଦାଗତି ଗତିରେ          ଧାଇଁଯାଇ ଧାତିରେ
ଭୀ ଭେଜି ନଭୀକେ ପ୍ରବଳ ସେ
ବାରଣାର-
ଦ୍ୱାରେ ଗର୍ଜ୍ଜିତ ଅଜସ୍ରରେ
ସର୍ଜ୍ଜିଲ୍ ବଜ୍ର ପତନରେ
ତାର୍ପତି-ଶ୍ରୁତିରେ          ମାଏ ଅନ୍ତରୀକ୍ଷରେ
ରୋଷେ ତୋଷେ ମିଳି ସେ ଖରେ ସେ । ୧୭ ।

ଦନ୍ତୀକି ଦନ୍ତୀ ମାତି          ବେନବଳ ଯୁଝନ୍ତି
କ୍ଷିତି ପତନ ଧାତିକାରେ
କ୍ଷିତି-ଦୁହିତା-ପତି          ତୀବ୍ର ବେଗରେ ଶ୍ର ତି
ପର୍ଯ୍ୟନ୍ତ ଟାଣି ବାନ୍ଧି ଶରେ ସେ
ବକ୍ଷପୃଷ୍ଠେ
ବାଜି ବାଜିଲ୍ ଯାଇ ହୃଷ୍ଟେ
ବାଳୀ ବଳିଷ୍ଠ କହେ କଷ୍ଟେ
ଦଶରଥ-ନନ୍ଦନ          ସୁଲକ୍ଷଣ ଯେକଣ
ବାହାର ମନ ଯାଇ ଗୃହେ ସେ । ୧୮ ।

(୧୭) ଶବ୍ଦାର୍ଥ । ପ୍ଲବଗ– ବାନର । ପ୍ଲବଗକୁଳ-ଶାର୍ଦ୍ଦୂଳ—ବାନର କୁଳର ବ୍ୟାଘ୍ର । ସଦାଗତି—ପବନ । ବାରଣଦ୍ୱାରେ —ସିଂହଦ୍ୱାରରେ ।

ପାଠାନ୍ତର—ଦ୍ୱାରେ ତର୍ଜି ଗର୍ଜି ଶେଷରେ ।

(୧୮) ଶବ୍ଦାର୍ଥ । ଦନ୍ତୀ—ଦନ୍ତାଳ ହସ୍ତୀ । କ୍ଷିତିଦୁହିତାପତି—ରାମ ।

ପାଠାନ୍ତର—କ୍ଷିତି ପତନ ।

ନାକଶ୍ରେଷ୍ଠ-ନନ୍ଦନ କହେ କମ୍ପାଇ ପୁଣ
ହରି ହରିରେ ନେଲ ପ୍ରାଣ
କି ଯଶ ପଉରଷ ହେଲା ତୋର ପ୍ରକାଶ
ମିଛାରେ ବୋଲି ମାରି ବାଣ ସେ
ବଧିଲଇଁ
ଘରଣୀ ହରଣ ରାବଣ
ନେଇଛୁ ସେ ଆଣି ଦେବେଣ
କପ୍କି ଛେଶ ପ୍ରକାଶ- ସେ କାର୍ଯ୍ୟେ ହେବ ଟକ୍ଲେଶ
କହନ୍ତୁ ତହୁଁ -ରଘୁରାଣ ! । ୧୯ ।

ଶଲ୍ୟ କାଢ଼ି ବଶଲ୍ୟ କର ମୋତେ କୌଶଲ୍ୟ
ବୈକୁଣ୍ଠ ବୈକୁଣ୍ଠ ମୁଁ ଯିବ
ଏସନକ ସେ ମହୀ ମହୀଶ ଉଚେ କହୁ
ମହୀରେ ଶୋଇଲ୍।କ ଭାବ ସେ
ହରଷରେ
ହରି ସେ ହରି ସିଂହାସନେ
ରାକାଧି ବଧି ସିଧିପଣେ
ଉଚାଟେ ଯୁବରାଟେ କରାଇ ବାଳୀଗୃଟେ
ତାରା କୋଳରେ ରାଙ୍କିପଣେ ସେ । ୨୦ ।

(୧୯) ଶବ୍ଦାର୍ଥ । ନାକଶ୍ରେଷ୍ଠ—ସ୍ୱର୍ଗାଧିପ ଇନ୍ଦ୍ର । ନାକଶ୍ରେଷ୍ଠ ନନ୍ଦନ—ବାଳୀ । ହରି—ବିଷ୍ଣୁ, ରୂପୀ ରାମ । ହରି—ମାଙ୍କଡ ।

ପାଠାନ୍ତର । ବଧିଲଇଁ—ବନ୍ଧିଲଇଁ । ଦେବେଣ—ଦେବଣ ।

(୨୦) ଶବ୍ଦାର୍ଥ । ଶଲ୍ୟ—ଶର । ବଶଲ୍ୟ—ଦୁଷ୍ଟାସ୍ଥ, ଶଙ୍କାସ୍ଥାନ । କୌଶଲ୍ୟ—ରାମ । ବୈକୁଣ୍ଠ—ବିଷ୍ଣୁ ।

ପାଠାନ୍ତର—ଶଲ୍ୟ ଦେହରେ ଶଲ୍ୟ । ବୈକୁଣ୍ଠ—ବଇକୁଣ୍ଠ। ଶୋଇଲ ସେ । ସିଧି—ସିଂହ । ଯୁବରାଟେ—ଯୁନରାଟେ । ରାଙ୍କିପଣେ—ରାଧିପଣେ ।

ବିବାସିତ ବିବେକ    ବିବ୍ରତ ବିମନସ୍କ
ବଲୀରେ ଦେଇ ବିମୋକ୍ଷଣ
ବିଶ୍ୱରେ ହେଲେ ଧନ୍ୟ    ତାଙ୍କ ପଦାବ୍ଜେ ଧ୍ୟାନ
ବିନାୟକର ନିତଦ୍ୱନ ସେ
ରାମ ରାମ
ମୃଗାକ୍ଷୀ ମୈଥିଳୀ ରମଣ
ଛେଦନ୍ତୁ ଅଖିଳ ଅଜ୍ଞାନ
ଦିଗ୍‌ବିଜୟେ ଯା ନାମ    ଅଗ୍ରେ ଦିନ୍ଦୁଡ଼ ସମ
ଯୁଗ ଦେବତା ନମୋନମ । ୨୧ ।



ଶବ୍ଦାର୍ଥ । ବିବାସିତ—ବନବାସୀ । ବିବେକ—ଈଶ୍ୱର । ବିବ୍ରତ—ଅସ୍ଥିର । ବିମନସ୍କ—ଅନ୍ୟମନସ୍କ । ବିମୋକ୍ଷଣ—ମୁକ୍ତ ।

# ରାଘବ ବିଳାସ

## ତ୍ରିଂଶ ଛାନ୍ଦ

ଏହି ଛାନ୍ଦଟି **ତ୍ରୈଖି ବୃତ୍ତରେ** ଷୋହଳ ପଦରେ ସମ୍ପୂର୍ଣ୍ଣ ।

ବାଳୀବଧ ପରେ ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାର ରାଜପଦବୀ ଦାନ କରି ରାମ ଲକ୍ଷ୍ମଣଙ୍କ ସହିତ ପର୍ବତଶିଖରରେ ରହି ବର୍ଷା ସମୟ ଅତିବାହିତ କଲେ । ସେତେବେଳେ ସେ ତାଙ୍କ ପ୍ରିୟା ସୀତା ଘେନ ଯେ ବ୍ୟାକୁଳ ଥିଲେ ତାହା କବି ତାଙ୍କ ପୂର୍ବଜ ସୂରିମାନଙ୍କ ସହିତ ତାଳ ପକାଇ ଗାଇଛନ୍ତି ଏକାନ୍ତ ମର୍ମସ୍ପର୍ଶୀ ଭାଷାରେ ।

ରାମ ପ୍ରିୟା ଦୁଃଖରେ ମ୍ରିୟମାଣ ହୋଇ କହୁଛନ୍ତି—ଏ ବର୍ଷାକାଳ ମୋର ମୃତ୍ୟୁର କାରଣ ହେବ ।

ଏକାଳ ସଘଟ ଘଟ　　　ଘଟ ନେବାକୁ ମୋ ଘଟ
ଘଟପକ୍ଷୀଏ ବିଘଟ ହେବଟି ପୁଣି
ହଂସ ବଶେ ହଂସ ଛୁଟିବ
ଆଗତ ବିଗତ ସତପଥ ହେଜିବ ।

ଏ କାଳାନ୍ତକ ଘଟଣାର ଆଡମ୍ବର ମୁହୂର୍ତ୍ତି ମାତ୍ର ମୋ ଦେହର ପ୍ରାଣପକ୍ଷୀ ବିନଷ୍ଟ କରିବାକୁ ଉଦ୍ୟତ । ଏପରି ମାହାର୍ଯ୍ୟ ମଧ୍ୟରେ ମୋର ପ୍ରାଣବାୟୁ ଛୁଟିଯିବ । କେବଳ ଅଗତ ଏବଂ ଭବିଷ୍ୟତ ସତ୍ୟପଥ ହିଁ ହେଜୁଥିବ ।

ଏ ବର୍ଣ୍ଣନା ଯେତେ ପ୍ରାଣସ୍ପର୍ଶୀ ଭାବରେ ଯେଉଁ କବି ଯେତେ କରିଥିଲେହେଁ ତାହା ତଥାପି ଚିରନୂତନ ସବୁବେଳେ । ଏ ବିଳାପ କେବଳ ଏ ଦେଶରେ ନୁହେଁ, ଏ କାଳରେ ନୁହେଁ, ଏହା ସବୁ ଦେଶର, ସବୁ କାଳର ଏକ ଅନବଦ୍ୟ ସାମଗ୍ରୀ । ରାମ ବର୍ଷାର ପ୍ରଚଣ୍ଡ ମୂର୍ତ୍ତି ମଧ୍ୟରେ ଏପରି ବିହ୍ୱଳ ହୋଇ ପଡ଼ିଛନ୍ତି ତାଙ୍କର ପ୍ରିୟତମା ପ୍ରତି ଏପରି ବ୍ୟାକୁଳତା ଆଣିଛନ୍ତି, ଯାହା ତାଙ୍କ ଛଡ଼ା ଆଉ କେଉଁ ମନୁଷ୍ୟଠାରେ ଘଟିଛି ମନେକରି ହୁଏ ନାହିଁ । ତାଙ୍କର ଲବ୍ଧ କ୍ଳେଶ ଖଣ୍ଡିବାଲାଗି ବିଶେଷକରି ପାଠରେ ବସାଇ ସେ କପରି ପ୍ରଣୟିନୀର ଆଲିଙ୍ଗନ ଲଭିବେ ଏବଂ ତାଙ୍କର ବୀଣାଝଣା କଣାବାଣୀ ଶୁଣିବେ ଏଥିପାଇଁ ଉଚ୍ଛନ୍ନ ହୋଇ ଉଠିଛନ୍ତି । ମାନବ ଜଗତରେ ନରନାରୀର ଏହି ପ୍ରୀତି ମଧୁରତାଠାରୁ ଆଉ ଅଧିକ ସତ୍ୟ ଅଧିକ ଉତ୍କର୍ଷ ସୁଖ କେବେ ନ ଥାଏ ।

ଏକମାତ୍ର ଭୂଷଣ ମୁଦ୍ରିକୁ ସେ କପର ଦୂତଦ୍ୱାରା ଜାନକୀଙ୍କ ନିକଟକୁ ପଠାଇବେ ଏଥିପାଇଁ ଅତି ବ୍ୟାକୁଳ ହେବା ପରେ ଶରତ୍ଋତୁ ଆରମ୍ଭରେ ଲକ୍ଷ୍ମଣ ସୁଗ୍ରୀବଙ୍କ ପ୍ରାସାଦ ନିକଟରେ ପହଞ୍ଚି ଦୂତଦ୍ୱାରା ସମ୍ବାଦ ପ୍ରେରଣ କରିଛନ୍ତି ।

ରୂପସୀ ତାରା ଏବଂ ରୋମାଙ୍କୁ କୋଳରେ ଘେନି କାମ ସୁଖରେ ଅନ୍ଧ, ପୁଣି ଭୋଳରେ ଝୁଲୁଥିବା ସୁଗ୍ରୀବ ନିଜର ପୂର୍ବ ଦୁର୍ଦ୍ଦଶା ଭୁଲି ଦୂତକୁ କହିଛି, ସେ କେଉଁ ଲକ୍ଷ୍ମଣ ଯା ପଚାରି ଆ । ଲକ୍ଷ୍ମଣ କହୁଛନ୍ତି—

ଯେ ରାମ ଏ ବିଭୂତିଦାତା
ତାଙ୍କ ଅନୁଜ ଲକ୍ଷ୍ମଣ ନାମ ବିଦିତ ।

ଏହି ରାଜ ବିଭୂତି ତୁମକୁ ଯେଉଁ ରାମ ଦେଇଛନ୍ତି, ତାଙ୍କର ଅନୁଜ ଲକ୍ଷ୍ମଣ ଆସିଛନ୍ତି ।

ତଥାପି ସୁଗ୍ରୀବର ଚୈତନ୍ୟ ଫେରିନି । ସେ ପରିହାସରେ ବିଭୂତିକୁ ପାଉଁଶ, ରାମକୁ ହରିଣ, ଅଶୋକ ବୃକ୍ଷ ବୋଲି କହି ସେ ରାମ କିଏ ବୋଲି ପ୍ରଶ୍ନ ପଚାରିଛି । ଏହାପରେ କବି ଲେଖିଛନ୍ତି—

ତର୍କ ଶୁଣି ଅର୍କବଂଶ ଅବତଂଶ ମହାରୋଷ
କର୍କଶେ କାମ୍ମୁ'କେ ବାଣ ବସାଇ ଟାଣି
ଉଡ଼ି ଗୁଡ଼ି ଦ୍ୟନ୍ତେ ରଡ଼ି ଯଥା ମେଘ ଘଡ଼ଘଡ଼ି
ଶଇଳ୍ପ ଉପଳ ଝଡ଼ି ପଡ଼ିଲା ଜାଣି
ବାଜ ବାଜ ହୋଲ ସ୍ତମ୍ଭରେ
ହୋଇ ପରେ ଉଳପଡ଼ୁଁ ତୋଳ ତାରାରେ ।

ଏଠି ବାଜ ଅର୍ଥ ବାଣ । ବାଜ ଅର୍ଥ ବାଜବାରୁ । ବାଣକୁ ଏପରି ମାରିଦେଲେ ଯେ ହୋଳ ଏକାବେଳେ ଛୁଟିପଡ଼ିଲା । ତାରା ଅର୍ଘ୍ୟଥାଳ ଧରି ଆସି ମଣାଇ ଜଣାଇ ଭଣାଇଲା—"ଯୋଷାଜନ ନାଶିବାର ଶାସ୍ତ୍ରରେ ନାହିଁ ।"

ଲକ୍ଷ୍ମଣ ସନ୍ତୋଷ ହେବାରୁ ସୁଗ୍ରୀବ ତାଙ୍କୁ ଦେଖାକରି ନିଜର ସୈନ୍ୟ ବଳ ଘେନି ରାମଙ୍କୁ ଦେଖାକଲା ଏବଂ ନିଜର ଭ୍ରମ ଜଣାଇ ଶରଣ ପଶିଲା ।

ଏହି ଛାନ୍ଦଟି ଲୀଳାରେ ଯନ୍ତ୍ର ସାହାଯ୍ୟରେ ଗାନ କଲେ ଏପରି ମଧୁର ଓ ଆହ୍ଲାଦଦାୟକ ହୋଇଥାଏ ଯେ ବାରଂବାର ଶୁଣିବାକୁ ଇଚ୍ଛା ହୋଇଥାଏ ।



# ରାଘବ ବିଳାସ

## ତ୍ରିଂଶ ଛାନ୍ଦ

( ରାଗ ଶ୍ରେଣୀ )

ବନଜ ଜିତ ବରନ    ସଙ୍ଗେ ଅନୁଜ ଘେନିଣ
ଗ୍ରୀଷ୍ମାନ୍ତରେ ଶିଖର ଶିଖରେ ରହିଣ
ବନ ଘନ ଘନ ଘନ    ବିଶେଷେ ରଡ଼ି ଗର୍ଜନ
ବର୍ଷୋତ୍ପଳକୁ ସର୍ଜନ କରଇ ପୁଣ
ଶାମ୍ବୁକ ଚମକ ଅନେକ
ଅମ୍ବର ଆଚ୍ଛନ୍ନ ବିଷକଣ୍ଠ ନର୍ତ୍ତକ ।୧।

ଚଞ୍ଚଳେ ଚପଳା ଖେଳା    ଦେଖା ନୀଳା କଳା ଧଳା
ଶକ୍ର ବକ୍ର କୋଦଣ୍ଡ ଦଣ୍ଡକୁ କାଢ଼ିଲା
ହରିତ ତ୍ୱରିତ ଘୋଟି    ହରି ବିଗତ ଜ୍ୟୋତି
ହଟି କୁଜ୍‌ଝଟି ପ୍ରକଟି ଘୋଟି ଅଇଲା
ଶୁଷ୍କ ପୁଷ୍କରରେ ପୁଷ୍କର
ସ୍ଥଳ ଅସ୍ଥଳ କେଦାର ପୂର୍ଣ୍ଣ ସ୍ରୋତର ।୨।

---

ଶବ୍ଦାର୍ଥ । ବନଜ—ମେଘ । ଜିତ—ଉତ୍କୃଷ୍ଟ । ବରନ—ବର୍ଣ୍ଣ । ବନଜଜିତ ବରନ—ଶ୍ରୀରାମ । ଗ୍ରୀଷ୍ମାନ୍ତରେ—ଗ୍ରୀଷ୍ମଶେଷରେ । ଶିଖରଶିଖରେ—ପର୍ବତଶୃଙ୍ଗରେ । ଘନ—ସାନ୍ଦ୍ର,ଗାଢ଼; ଅବିରତ । ଘନଘନ—ମୁହୁର୍ମୁହୁ । ବନ—ଜଳ । ବର୍ଷୋତ୍ପଳ—ବର୍ଷା ସମୟର ଜଳବୃଷ୍ଟି; ପଦ୍ମ ନୁହେଁ । ଶାମ୍ବୁକ—ଶେଣ୍ଡା । ଚମକ—ଝେଁଚ୍ କେ କେ । ଅମ୍ବର ଆଚ୍ଛନ୍ନ—ମେଘ ଘୋଟି ରହିବାରୁ । ବିଷକଣ୍ଠ—ମୟୂର । ନର୍ତ୍ତକ—ନୃତ୍ୟକାରୀ । ଶକ୍ର ବକ୍ର କୋଦଣ୍ଡ ଦଣ୍ଡ—ଇନ୍ଦ୍ରଧନୁ । ନୀଳାକଳାଧଳା—ବିଭିନ୍ନ ରଙ୍ଗବିଶିଷ୍ଟ । ହରିତ—ଶ୍ୟାମପୀତ ମିଶ୍ରିତ ବର୍ଣ୍ଣବିଶିଷ୍ଟ । ତ୍ୱରିତ—ଶୀଘ୍ର । ହରି—ସୂର୍ଯ୍ୟ । ହରିବିଗତ—ପ୍ରଭାବିଗତ । ହଟି—ହଠାତ୍ । କୁଜ୍‌ଝଟି—କୁହୁଡ଼ି । ପୁଷ୍କର—ଜଳାଶୟ । ପୁଷ୍କର—ପଦ୍ମ । ଶୁଷ୍କ—ଶୁଖିଗଲା । ସ୍ଥଳ—ଶୁଖିଲା ଭୂଇଁ । ଅସ୍ଥଳ—ଜଳଭୂମି । କେଦାର—ବିଲ ।

ପାଠାନ୍ତର—୧—ବିସର୍ଜେ ଘନ ଗର୍ଜନ (ବିଶେଷେ—) ବର୍ଷୋପଳ ।
୨—ଚଞ୍ଚଳା ଚଞ୍ଚଳେ ଖେଳା । ଦିଶେ କଳା ନୀଳ ଧଳା । କୋଦଣ୍ଡ ପ୍ରଚଣ୍ଡ ପଡ଼ିଲା । ହରିବିଗତ ଜ୍ୟୋତି । ହାଟକ ଝଟି ପ୍ରକଟି । ଶୁଷ୍କ ପୁଷ୍କରିଣୀ ପୁଷ୍କର । ସ୍ଥଳ ଅସ୍ଥଳ କେଦାର ପୂର୍ଣ୍ଣ ସ୍ରୋତର ।

କାମିନୀ ହୃଦ ପଦକ  କାମିଜନଙ୍କ ନାୟକ
ଢକ ଢକ ସଂପୁଟକ କଲ୍ପ ଉସ୍ର କ
ଅଦ୍ଭୁତ ଅହ୍ନ ଧ୍ୱଂସକ  ପ୍ରାୟ ଅହ୍ନତ ହତକ
କାମ କମାଣ ପଞ୍ଚକ ମାର ଶାୟକ
ବରହ୍ମଣୀ ବରହ୍ମଣଏ
ଅଶନ ବସନ ବାସ ବିଷ ପରାୟେ । ୩ ।

କାଳୀନାଶ କାଳୀହୀନ  ହେବାରୁ ଅତି ଉଛନ୍ନ
ଛନ୍ନ ହୋଇ ବୀରବର ଏସନ ଭଣି.
ଏକାଳ ସଂଘଟ ଘଟ  ଘଟ ନେବାକୁ ମୋ ଘଟ
ଘଟପକ୍ଷିଏ ବିଘଟ ହେବଟି ପୁଣି
ହଂସ ବଶେ ହଂସ ତୁଟିବ
ଆଗତ ବିଗତ ସତପଥ ହେଜିବ । ୪ ।

---

ଶବ୍ଦାର୍ଥ—(୩)ଯେ କାମିନୀ ହୃଦୟର ପଦକ ସ୍ୱରୂପୀ ପୁଣି କାମୀଜନଙ୍କ ନାୟକ ଅଟନ୍ତି ଏପରି ଯେ ସୀତାଙ୍କର ରାମ । ଢକଢକ—ଭୟଯୁକ୍ତ । ସଂପୁଟକ—(ହୃଦୟ) ପେଟରା । ଉସ୍ତୁକ—ଉତ୍କଣ୍ଠିତ । ଅହ୍ନ—ପଥିକ, ସର୍ପ । ଅଦ୍ଭୁତ—ଚଞ୍ଚଳ । ହତକ—ହତକାରୀ । କମଣ—ଚୋପ, ଧନୁ । ଶାୟକ—ଶର । ପଞ୍ଚକ—ପାଞ୍ଚ (କାମର ପଞ୍ଚଶର) । ଅଶନ—ଖାଦ୍ୟ । ବସନ—ଦେହବସ୍ତ୍ର । ବାସ—ଗୃହ ।

କାଳୀ—(୪) ନଷ୍ଟ । କାଳୀ—ମର୍କଟ ଯୂଥପତି କପିନ୍ଦ୍ରବାଳୀ । ବୀରବର—ରାମ । ଘଟ—ଅଡ଼ମ୍ବର । ସଂଘଟ—ଘଟନା । କାଳ—ସମୟ । ଘଟ—କୁମ୍ଭମୂର୍ତ୍ତି । ଘଟ—ଦେହ । ଘଟପକ୍ଷୀ—ପ୍ରାଣପକ୍ଷୀ । ବିଘଟ—ବିନଷ୍ଟ । ହଂସବଶେ—ସୂର୍ଯ୍ୟ ମଧ୍ୟରେ । ହଂସ—ପ୍ରାଣବାୟୁ । ଆଗତ—ଭବିଷ୍ୟତ । ବିଗତ—ଅତୀତ । କେବଳ ସତ୍ୟ (ସତ) ପଥ ହେଜୁଥିବ ।

ପାଠାନ୍ତର—(୩) କାମିନୀ ଜନନାୟକ, କାମିନୀ ଜନନାୟକ । ଅଦ୍ଭୁତ ଅହ୍ନ ବଶକ, ଅଦ୍ଭୁତ ହତ ନାଶକ । ବରହ୍ମଣ ବରହ୍ମଣୀଏ ।

(୪) କାଳୀସ୍ଥାନେ । ଅତି ଉଚ୍ଛନ୍ନେ । ବୃନ୍ଦ ଅନୁଜ ବଦନେ । ନେବାକୁ ମୋ ଘଟଘଟ । ଘନ ପରାଏ ବିଘଟ ହେବଟି ପୁଣି । ହଂସବଶୁ ହଂସ ତୁଟିବ ।

ପଲ୍ଲବ ଶାଲ୍‌ରେ ଶ୍ୱପ- ପାଣି ଅନେକ ବଳାପ
କର ବରହଣୀ ଭାପ ହୋଇ ବଶେଷ
ସବେ କଲ୍ଲଭୀ ଲଭିବ ଲବ୍‌ଧ କ୍ଳେଶକୁ ଖଣ୍ଡିବ
ବଶେଷକର ଆଶ୍ଳେଷ ବସାଇ ପାଶ
ସୀତା ସୀତା ବଶେଷିତାରେ
ବୀଣାକିଣା କଣାବାଣୀ ଶୁଣିବ ତାରେ । ୫ ।

ମୁଦରେ ଧୀରେ ଅଧୀରେ କହନ୍ତୁ ଯା ଯା ସଧୀରେ
ସୁନାରୀ ପାଶେ ସଧୀରେ କହ ବେଗିରେ
କହ ମୋ ଉଦ୍ଦେଶୋଦ୍ଦେଶ୍ୟ କ୍ଳେଶ ନ ସହଣ କ୍ଳେଶ
କି କରୁଥିବ ନାରୀଶ ହୋଇ କାତର
ତରତରେ ଯାଅ ହେ ଧୀର
ନିଗମଧର ବହ୍ନିଲ୍ ହୋଇ ନିଶ୍ଚୁ ର । ୬ ।

---

ଶବ୍ଦାର୍ଥ । ସୀତା—ପରମ ରୂପବତୀ । ବଶେଷିଣ—ଅତ୍ୟୁତ୍‌କୃଷ୍ଟ । ମୁଦ—ଅଙ୍ଗୁଳୀୟକ, ମୁଦକୁ କହନ୍ତୁ । ସୁନାରୀ—ସର୍ବଶ୍ରେଷ୍ଠ ରମଣୀ ସୀତା । ଉଦ୍ଦେଶ—ସମ୍ବାଦ, ଖବର । ଉଦ୍ଦେଶ୍ୟ—ଅଭିପ୍ରାୟ । କ୍ଳେଶ—ଯନ୍ତ୍ରଣା, ଦୁଃଖ । କ୍ଳେଶ—କୋପ । ନିଗମଧର—ବ୍ରହ୍ମ । (ନିଗମ-ବେଦ)

ପାଠାନ୍ତର—(୫) ଶାଲ୍‌ରେ—ଶାଳାରେ । ବରହଣୀ ପ୍ରାପ୍ତ । ସୀତା ଦଣଇ କ ସୀତାରେ ।
(୬) ମୂର୍ଦ୍ଧରେ ଧୀରେ ଅଧୀରେ । ମୋ ନାରୀ ପାଶେ ବଧିରେ କହ ବ୍ୟଗ୍ରରେ । କହ ମୋ ଭାବ ଉଦ୍ଦେଶ୍ୟ କ୍ଳେଶ ନ ରହିବ କ୍ଳେଶ ।

ବର୍ଷାନ୍ତ ଅନ୍ତ ଅନ୍ତରେ ଉର୍ମ୍ମିଳା ସଖେ ସତ୍ତ୍ୱରେ
କର୍ସ୍କିନ୍ଧେୟଶ୍ୱର ପାଶରେ ମିଳି ଝଟତ
କରେ ଅର ଗର୍ବ ନାଶ ସୀମନ୍ତେ ଫଣା ବଶେଷ
ପଙ୍କକାର୍ ଜିତ ପାଶେ ମିଳି ତଡ଼ତ
ଗୁରୁ ଗୁରୁ ତରୁ ତଳରେ
ଉଭ୍ ଶୋଭ୍ ଲୋଭ୍ ହୋଇ ବୀର୍ ସେ କାଳେ । ୭ ।

ଦୂତେ ପଚ୍ଚର ଉଚ୍ଚର କହ ଯାଇ ଦଣ୍ଡଧାରୀ
ପାରୁଶରେ ଶୀଘ୍ରକର୍ ଚପଳେ ମିଳି
ଲକ୍ଷ୍ମଣେ ଲକ୍ଷ୍ମଣ ପୂର୍ଣ୍ଣ କର୍ଣ୍ଣିକାର ଦୀପ୍ତିମାନ
ପଞ୍ଚାନନ ଦ୍ୱାରେ ଉଭ୍ ଅଛନ୍ତି ବଳି
ବାର୍ତ୍ତାବହ ଜବନ ଗଲ୍
ଲକ୍ଷ୍ମଣ ଦ୍ୱାରେ ପ୍ରବେଶ ବୋଲି କୋଇଲ୍ । ୮ ।

---

ଶବ୍ଦାର୍ଥ । ବର୍ଷାନ୍ତ—ବର୍ଷାକାଳ । ଅନ୍ତ—ଶେଷ । ଅନ୍ତରେ—ଅବସର ସମସ୍ତରେ । ଉର୍ମ୍ମିଳାସଖେ—ଲକ୍ଷ୍ମଣ । ଫଣା—ହିନ୍ଦୁ ପୁରାଣରେ ଲକ୍ଷ୍ମଣ ଶେଷଦେବଙ୍କ ଅବତାର ହେତୁ ଫଣା ବଶିଷ୍ଟ; ତେଣୁ ଅଚ ଵକ୍ର-ଯାହା ଅର-ଶତ୍ରୁ ଗର୍ବ ନାଶକରେ । ସୀମନ୍ତେ—ମସ୍ତକରେ । ପଙ୍କକାର—ବର୍ଷା । ବର୍ଷାଜିତ—ଶରତ୍‌ଋତୁ । ଗୁରୁ—ମହାନ୍ । ଗୁରୁତରୁ—ମୂଲ୍ୟତରୁ,ଅଶ୍ୱତ୍ଥାଦ । ଚପଳେ—ଶୀଘ୍ରେ । ଲକ୍ଷ୍ମଣ ପୂର୍ଣ୍ଣ—ସୌଭାଗ୍ୟଶାଳୀ, ଶ୍ରୀମାନ୍ ! କର୍ଣ୍ଣିକାର—କଳାଅର ଫୁଲପର ତପ୍ତ କାଞ୍ଚନବର୍ଣ୍ଣ । ପଞ୍ଚାନନ—ସିଂହ । ବାର୍ତ୍ତାବହ—ଦୂତ, ଦ୍ୱାସ୍ଥ । ଜବନ—ଶୀଘ୍ରେ । ଅନ୍ତରେ—ଉତ୍କଣ୍ଠାରେ । ସତ୍ତ୍ୱରେ—ଉତ୍କଣ୍ଠା ସହିତରେ ।

ପାଠାନ୍ତର—(୭) ଉର୍ମ୍ମିଳେଶ ସେ ସତ୍ତ୍ୱରେ । ସୀମନ୍ତେ ଫଣା ବକାଶ ! ପଙ୍କକାର ଜାତ ପାଶେ ମିଳି ତଡ଼ତ ।
(୮) ବାର୍ତ୍ତାବହ ବହନ ଗଲ୍ ।

କେଉଁ ଲକ୍ଷ୍ମଣ ସେକ୍ଷଣ ଏକ୍ଷଣ ବୁଝିଣ ଆଣ
ସୁକ୍ଷଣ ଈକ୍ଷଣ ମାଜେ ପର୍ତ୍ତର ଦ୍ୱାରୀ
ଆଜ୍ଞା ବ୍ୟାପ୍ତ ପ୍ରତ୍ୟୁତ୍ତର କେଉଁ ଲକ୍ଷ୍ମଣ ସତ୍ୱର
ତ୍ୱରିତ ହୃତ ବର୍ତ୍ତର କହ ବର୍ତ୍ତର
ଯେ ରାମ ଏ ବିଭୂତି ଦତ୍ତ
ତାଙ୍କ ଅନୁଜ ଲକ୍ଷ୍ମଣ ନାମ ବିଦିତ । ୯ ।

ଦ୍ୱାସ୍ଥ ପର୍ତ୍ତର ଉଦନ୍ତ ଆଗତ ଗତ ତ୍ୱରିତ
ବୃତ୍ତାନ୍ତ ନୃପତି ପାଶେ ତ୍ୱରିତ ଭାଷ
ବିଭୂତି ଭୂତି କେ ରାମ ରାମ ଆରାମ କେ ରାମ
ବିଭ୍ରମେ କେ ରାମ ରାମ ଏହା ପ୍ରକାଶ
ବାଣୀ ଶୁଣି ଭଣିଲା ଦ୍ୱାରୀ
ଜାଣି ପୁଣି ନୃପ ପାଣି ମନେ ବର୍ତ୍ତର । ୧୦ ।

---

ଶବ୍ଦାର୍ଥ । (୯)ସୁକ୍ଷଣେ—ସୁବିଧା ସମୟ ଦେଖି । ଈକ୍ଷଣ ମାଜେ—ଆଖିଠାର ପର୍ତ୍ତରନ୍ତେ । ଦ୍ୱାସ୍ଥ—ଦ୍ୱାରୀକୁ । ସେକ୍ଷଣ—ସେ ସମୟରେ । ଏକ୍ଷଣେ—ବର୍ତ୍ତମାନ । ବ୍ୟାପ୍ତ—ବିସ୍ତାରିତ, ଆଚ୍ଛନ୍ନ । ହୃତ ବର୍ତ୍ତର—ଯେବେ ମଙ୍ଗଳ ଖବର, ତ୍ୱରିତ ବର୍ତ୍ତର କହ, ସତ୍ୱର କେଉଁ ଲକ୍ଷ୍ମଣ ପ୍ରତ୍ୟୁତ୍ତର ଦିଅ । ଯେ ରାମ ଏ ବିଭୂତି (ଐଶ୍ୱର୍ଯ୍ୟ) ଦେଇଛନ୍ତି— ।

(୧୦) ଦ୍ୱାସ୍ଥ—ଦ୍ୱାରୀ । ଉଦନ୍ତ—ବାର୍ତ୍ତା । ଗତ ଆଗତ ବୃତ୍ତାନ୍ତ ତ୍ୱରିତ (ଶୀଘ୍ର) ନୃପତି ପାଖରେ କହିଲା । ବିଭୂତି—ଐଶ୍ୱର୍ଯ୍ୟ, ପାଉଁଶ । ଭୂତି—ମହିମା, ସମ୍ପତ୍ତି । ରାମ—ରମଣୀୟ । ଆରାମ—ସୁଖ, ବଗିଚା । ବିଭ୍ରମେ—ଭ୍ରମଣ କରେ, ! ଭ୍ରମରେ ବିଭୂତି ଭୂଷିତ କେଉଁ ରାମ, ରମଣୀୟ ବଗିଚାରେ ସେ କେଉଁ ରାମ ? (ଅଶୋକ) ଭୁଲରେ (ବିଭ୍ରମେ) କେଉଁ ରାମ ରାମ ବୋଲି ପ୍ରକାଶ କରୁଛ । ରାମ—ହରିଣ । ରାମ—ଡୋଟକ । ରାମ—ଅଶୋକ ବୃକ୍ଷ ।

ପାଠାନ୍ତର—(୯) ଏକ୍ଷଣେ—ଏକ୍ଷଣି । ଆଜ୍ଞା ପ୍ରାବୃତମାତର । ତୁରନ୍ତ ହୃତ ଭରେଣ କହ ବର୍ତ୍ତର ।

(୧୦) ଦ୍ୟସ୍ତେ ପର୍ତ୍ତର ଉଦନ୍ତ । ଭୂତି—ଖ୍ୟାତି । ବିଭ୍ରମ କେ ହୁଏ ରାମ ।

ତର୍କ ଶୁଣି ଅର୍କ ବଂଶ    ଅବତଂଶ ମହା ରୋଷ
କର୍କଶେ କାର୍ମୁକେ ବାଣ ବସାଇ ଟାଣି
ଭିଡ଼ ଛାଡ଼ ଦ୍ୟନ୍ତେ ରଡ଼ି    ଯଥା ମେଘ ଘଡ଼ଘଡ଼ି
ଶଇଳ ଉପଲ ଝଡ଼ି ପଡ଼ିଲା ଜାଣି
ବାଜି ବାଜି ଦୋଳ ସ୍ତମ୍ଭରେ
ଦୋଳ ପରେ ଛଳ ପଡ଼ୁଁ ତୋଳ ତାରରେ ।୧୧।
ଉଚିତ ଚଣ୍ଡେ ସଚେତେ    ସୁ ସ୍ଥ କରାଇ ମସ୍ତକେ
ବସାଇ ରସାଇ ତହିଁ ମିଶାଇ କହି
ତାର ବାଳୀ ଅର୍ଘ୍ୟସ୍ଥାଳୀ    କରେ ଧରି ଯାଇ ମିଳି
ନଉଛାଳ କଲେ ଶୀଘ୍ରେ ଲକ୍ଷ୍ମଣ ଯାଇ
ମଣାଇ ଜଣାଇ ଭଣାଇ
ପୋଷାଜନ ନାଶିବାର ଶାସ୍ତ୍ରରେ ନାହିଁ ।୧୨।

---

ଶବ୍ଦାର୍ଥ । (୧୧) ଅର୍କ ବଂଶ ଅବତଂଶ—ସୂର୍ଯ୍ୟବଂଶୀୟ ଲକ୍ଷ୍ମଣ । ତର୍କଶୁଣି—ଯୁକ୍ତି ଶୁଣି । ମହାରୋଷ—ଭୟାନକ କ୍ରୋଧ କଲେ । କାର୍ମୁକେ—ଧନୁରେ । ଉପଲ—ପଥର । ବାଜି—ବାଣ । ବାଜି—ବାଜି କରି । ଦୋଳ ସ୍ତମ୍ଭରେ—ଯେଉଁ ଦୋଳରେ ସୁଗ୍ରୀବ ଦୁଇ ରାଣୀଙ୍କୁ ଧରି ମଜା କରୁଥିଲା ତାହାର ଖୁମ୍ବରେ । ତୋଳ—ଚୋଳ ଧଇଲା ।

(୧୧) ଉଚିତ ଚଣ୍ଡେ—ପ୍ରକୃତ କଥା ସମଝାଇ । ତାର-ବାଳୀ—ତାରା ନାମ୍ନୀ । ନଉଛାଳ—ବନ୍ଦାପନା । ଭଣାଇ—କହିବା । ପୋଷାଜନ—ରଖା କରିଥିବା ବ୍ୟକ୍ତିକୁ ।

ପାଠାନ୍ତର—(୧୧) ଶୈଳୁଁ କି ଉପଲ । ଦୋଳପରୁ ।

(୧୨) ଉଚିତେ ସତେ ସଚେତେ ସୁସ୍ଥ କରାଇ ସମସ୍ତେ । ନଉଛାଳି କଲେ ଶୀଘ୍ରେ । ମଣାଇ ଜଣାଇ ଭଣାଇ ।

ଶୁଣନ୍ତେ ଶାନ୍ତ ସନ୍ତୋଷ        ବାଳୀ ବାଣୀ ଉର୍ମ୍ମିଲେଶ
ସୁଧୀର ଧୀର ହୋଇଲେ ଅଧୀର ତେଜି
ଅଙ୍ଗଦ ଭୁଜରେ ଅଙ୍ଗଦ        ଅଙ୍ଗ ବଶରେ ପ୍ରମୋଦ
ସଙ୍ଗେ ସଙ୍ଗେ ଅଙ୍ଗ ବଳ ରଙ୍ଗେ ବରଜି
ଦେଖି ସୁଖୀ ତତକ୍ଷଣରେ
ସୁଗ୍ରୀବ ଉଦ୍‌ଗ୍ରୀବ ଚଳି ଯିବା ଇଚ୍ଛାରେ । ୧୩ ।

ମୁଖ ରବ ଶବଦରେ        ଦଗ ବିଦଗ ଉଗ୍ରରେ
ପ୍ରଚରେ ଘୋଟିଲେ ଅସ୍ତ ଶାଖାମୃଗରେ
ଚଳି ପ୍ରଚଳି ଚଞ୍ଚଳେ        ଧୂଳି ଉଡ଼େ ଖମଣ୍ଡଳେ
କେହୁ ବଳା ବଳି ଚଳେ ଆଗ ପାଖରେ
ରବିସୁତ ମିତ ହିତରେ
ସୁଗ୍ରୀବ ଉଦ୍‌ବେଗ ମତେ ଗମେ ସତ୍ୱରେ । ୧୪ ।

---

ଶବ୍ଦାର୍ଥ । (୧୩) ବାଳୀ—ନାରୀ । ବାଣୀ—କଥା । ବାଳୀ ବାଣୀ—ମଧୁର ବଚନ । ଅଧୀର—ଅଧୈର୍ଯ୍ୟ । ସୁଧୀର—ବିଜ୍ଞ । ଧୀର—ଶାନ୍ତ । ଅଙ୍ଗଦ—ବାଳୀ ପୁତ୍ର । ଭୁଜରେ—ବାହୁ । ଅଙ୍ଗଦ—ସ୍ୱର୍ଣ୍ଣାଳଙ୍କାର ବିଶେଷ । ଅଙ୍ଗବଳ—ସ୍ୱସୈନ୍ୟଗଣ ।

(୧୪) ଶାଖାମୃଗ—ବାନର । ଖମଣ୍ଡଳ—ଆକାଶ । ରବିସୁତ-ମିତ—ଶ୍ରୀମ ।

ପାଠାନ୍ତର । (୧୪) ବିଦଗ ଦଗ ଭୁଜରେ । ଶାଖା ମୃଗର । ଆଗ ପାଶର । ଉଦ୍‌ବେଗେ ମତେ, (ମେତେ), (ମନେ) ।

ସୁମାଲ୍ୟ ମାଲ୍ୟବନ୍ତରେ ବିପିନଚର ସକଳେ
ସୁବେଳେ ଦଶରଥଜ ପାଶେ ମିଳିଲେ
ଲକ୍ଷ୍ମଣେ ଲକ୍ଷ ପ୍ରମାଣ ସୁଗ୍ରୀ ଗଢ଼ କାଣି ରାମ
ପଡ଼ି ରକ୍ତାବ୍‌ଜ ଚରଣ ଶରଣ ଗଲେ
ତୋଳି କୋଳେ କୌଶଲ୍ୟାବାଳ
ତାର ପରେ କ୍ଷିତ ସ୍ଥିତ ସକଳ ବଳ । ୧୫ ।

ଅଷ୍ଟ ଦୁର୍ଗ ଏକ ଶ୍ରେଷ୍ଠ ମୁକୁଟ ମଣି ସମ୍ରାଟ
ଶ୍ରେଷ୍ଠ ଗିରିସୁତା ଗୃଟ କେଶରୀ ଭଣି
ରାଘବେ ରାଘବ ତୋଷ ନାମ ରାଘବ ବିଳାସ
ଦ୍ୱିଜ ଲଭିବୁ ପ୍ରକାଶ ବିଦୁଷ ଶ୍ରେଣୀ
ଧ୍ୟାଇ ସାର ନଗ୍ର ଅଗ୍ରଣି
ତରଣି ବଂଶ ଉଦ୍ଭବ ଏ ରସେ ଭଣି । ୧୬ ।



ଶବ୍ଦାର୍ଥ । (୧୫) କ୍ଷିତସ୍ଥିତ—ଭୂମିରେ ସମ୍ପୃକ୍ତ ହେଲେ । ସୁବେଳେ—ସୁସମୟରେ ।

(୧୬) ଅଷ୍ଟ ଦୁର୍ଗ ଏକ ଶ୍ରେଷ୍ଠ—ନବ ଦୁର୍ଗର ଶ୍ରେଷ୍ଠ । ଶ୍ରେଷ୍ଠ ଗିରି—ହିମାଳୟ । ଶ୍ରେଷ୍ଠ ଗିରିସୁତା ଗୃଟ—ବିନାୟକ । କେଶରୀ—ସିଂହ । ତରଣୀ—ସୂର୍ଯ୍ୟ । ସାର ନଗ୍ର ଅଗ୍ରଣି ତରଣି ବଂଶ ଉଦ୍ଭବ—ରାମ ଓ ଲକ୍ଷ୍ମଣ ।

ପାଠାନ୍ତର । (୧୫) ସୁବଳେ ସୁବେଳେ ଦଶରଥଜ । ଚରଣ—ଚରଣେ ।
ତୋଳି କୋଳ କୌଶଲ୍ୟା ବାଳ ।
(୧୬) ଦୁର୍ଗ ଏକ ରଚ ଶ୍ରେଷ୍ଠ । ଧ୍ୟାଇ କ୍ଷିର ନଗ୍ର ଅଗ୍ରଣି ।

# ରାଘବ ବିଳାସ

## ଏକତ୍ରିଂଶ ଛାନ୍ଦ

**ରଣ ବଜେ ହର ଚଉତିଶା ବୃତ୍ତରେ ଷଡ଼୍‌ବିଂଶତି ପଦରେ ଏ ଛାନ୍ଦଟି ସଂପୂର୍ଣ୍ଣ ହୋଇଛି ।**

ରାମ ସୁଗ୍ରୀବଙ୍କୁ ସୀତା ବିରହରେ କାତର ହୋଇ ସୀତାଙ୍କ ଅନନ୍ୟ ସୁନ୍ଦର ରୂପଶ୍ରୀ ବର୍ଣ୍ଣନା କରି ନାନା ପୁରାତନ ଅନୁଭୂତି କହନ୍ତେ ସେ ବ୍ୟଥିତ ହୋଇ ଦୂତମାନଙ୍କୁ ପଠାଇବା ସିଦ୍ଧାନ୍ତ ଜଣାଇଲେ ।

ତେଣୁ ରାମ ଦୂତମାନଙ୍କୁ କେତେକ ଗୁପ୍ତ ଅନୁଭୂତି ଜଣାଇଲେ ଯାହାଦ୍ୱାରା ସେମାନେ ସୀତାଙ୍କର ବିଶ୍ୱାସୀ ହୋଇପାରିବେ ଏବଂ ଶେଷରେ ହନୁଙ୍କୁ ମୁଦ୍ରକାଟିକୁ ଦେଲେ ।

ଦୂତମାନେ ନାନା ସ୍ଥାନ ଅନ୍ୱେଷଣ କରି କରି କ୍ଳାନ୍ତ ହୋଇ ଶେଷରେ ସମୁଦ୍ରକୂଳରେ ଉପସ୍ଥିତ ହୋଇ ଗୃଧ୍ର ସମ୍ପାତିଠାରୁ ଲଙ୍କାର ରାଜା ରାବଣ ସୀତାଙ୍କୁ ହରିନେଇଥିବା ସମ୍ବାଦ ପାଇଲେ ।

ହନୁ ସମୁଦ୍ର ଲଙ୍ଘନ କରି ଲଙ୍କାରେ ଉପସ୍ଥିତ ହେଲେ ।

( ଏ ଛାନ୍ଦରେ ବହୁ ପ୍ରମାଦ ଶବ୍ଦମାନଙ୍କ ପେନ ରହିଥିଲା । ତାହା ଯଥାସାଧ୍ୟ ସଂଶୋଧନ କରାଯାଇଛି ଏବଂ କେତୋଟିର ଅର୍ଥ ଜଣାପଡ଼ୁ ନାହିଁ ।)



# ରାଘବ ବିଳାସ

(ରାଗ—ରଣ ରଙ୍ଗେ ହର ଚଣ୍ଡିକା)

ମିତ୍ରକୁ ଏକାନ୍ତେ ତୁରିତେ ପ୍ରାସନ୍ତେ
ଡକାଇ ଭାଷନ୍ତେ ବାଣୀ
ଦୂତ ଚଳିଯାନ୍ତେ ଘେନଣ ଉଦନ୍ତେ
ବଦନ୍ତେ ବୀର ଅଗ୍ରଣୀ
ସେ ଉକ୍ତ
ଶୁଣି ପୂର୍ବଦେବର ସନ୍ତତ
ସୁସ୍ଥେ ମସ୍ତକେ ପାଣିକ ନ୍ୟସ୍ତି ସେ । ୧ ।

ଯହିଁ ତହିଁ ରହି ବହୁ କଷ୍ଟ ସହି
ବଞ୍ଚୁ ଅହ୍ୱ ଅହ୍ୱ ତାପ
ଦହିଲି କନକ ବନକ ଅନେକ
ଧିକ ଉପମା ବିଲୋପ
ତା ହାସ
କାଶ ପୀୟୂଷ ହିମ ପ୍ରକାଶ
ବାସ ସୁବାସ ଅଙ୍ଗ ପୀୟୂଷ, ତା । ୨ ।

---

ଶବ୍ଦାର୍ଥ । (୧) ପ୍ରାସନ୍ତେ—ଅତ୍ୟନ୍ତ ଦୁଃଖ ହେତୁ । ଏକାନ୍ତେ—ନିର୍ଜନରେ । ଉଦନ୍ତେ—ବାର୍ତ୍ତା । ଘେନଣ—ସକାଶେ । ବୀର ଅଗ୍ରଣୀ—ବୀରଶ୍ରେଷ୍ଠ ରାମଚନ୍ଦ୍ର । ଉକ୍ତ—ବଚନ, କଥା । ପୂର୍ବଦେବ—ସୂର୍ଯ୍ୟ । ସୂର୍ଯ୍ୟସୁତ—ସୁଗ୍ରୀବ । ସୁସ୍ଥେ—ଅସ୍ଥରେ । ମସ୍ତକେ ପାଣିକ ନ୍ୟସ୍ତି—ହାତଯୋଡ଼ି ବିନମ୍ରର ସହିତ । ଦୂତ ବାର୍ତ୍ତା ପାଇଁ ଚଳିଯିବାରୁ ରାମ ସୁଗ୍ରୀବଙ୍କୁ ଏକାନ୍ତକୁ ଡାକି ଯାହା କହିଲେ ତାହା ସେ ହାତଯୋଡ଼ି ଶୁଣିଲେ ।

(୨) ଅହ୍ୱ—ସୂର୍ଯ୍ୟ । ଅହ୍ୱ—ପଥିକ । ବନକ—ବର୍ଣ୍ଣ । ଦହିଲି—ଦଗ୍ଧ । କନକ—ସ୍ୱର୍ଣ୍ଣ । ଅନେକ—ଅଧିକ । ଧିକ ଉପମା ବିଲୋପ—ଯେଉଁଠି ଉପମା ଦିଆଯିବାର କିଛି ନାହିଁ । କାଶ—କାଶତଣ୍ଡି ଫୁଲ, ଅତିଶୁଭ୍ର ପୁଷ୍ପ । ପୀୟୂଷ—ଗୋଦୁଗ୍ଧ, ଯାହା ଅତିଶୁଭ୍ର । ହିମ—ତୁଷାର, ଯାହା ଅତିଶୁଭ୍ର । ବାସ—ସୁଗନ୍ଧ । ସୁବାସ—ସୌରଭ । ରାମ କହିଲେ—ପଥିକ ଭାବରେ ଆମେ ଯେଉଁଠି ମନ ସେହିଠି ରହି ଖରା ସହୁଥାଉଁ । ଆଉ ତା ସୁନାର ବର୍ଣ୍ଣଠୁ ଅଧିକ ଯାହା ପାଇଁ ଉପମା ସବୁ ଧିକ୍କୃତ ହୋଇ ଶୂନ୍ୟ, ଏପରି ଯେ ମୋର ପ୍ରିୟା ଜଣ କହିବ ତାର ହାସ୍ୟ କାଶପୁଷ୍ପ, ଦୁଗ୍ଧ, ତୁଷାର ପ୍ରାୟ ଶୁଭ୍ର, ଅଟେ ପୁଣି ଯାହାର ଦେହ ସୁଗନ୍ଧିତ ସୌରଭରେ ଅମୃତ ପ୍ରାୟ ଅଟେ ।

ପର୍ବ ଶର୍ବରୀ ପୂର୍ବଦେବ ଗର୍ବକୁ
ଖର୍ବ କରଇ ସେ ଆସ୍ୟ
ଗଜଦନ୍ତୀ ମତ କରତ ଝଟତ
ହତ ରତ ଏ ପ୍ରକାଶ
ସେ । କାହିଁ
ରହି ରୋଷ ବନ୍ଧି ବଇଦେହୀ
ତାହା ବିହୀନେ ମୋ ସୁଖ ନାହିଁ ସେ । ୩ ।

ନୃପପାଣି ବାଣୀ ଶୁଣି ସୁଗ୍ରୀ ଭଣି
ସେନ୍ୟ ଡାକଆଣି ପୁଣି
ସେଚନ ଶୋଚନ ମୋଚନ ରଚନ
ବଚନ ଦିଅ ତ ଭଣି
ହେ । ବିଭୁ
ଯବେ ବଳ ଚଳିଯିବେ ସବୁ
ଦାରାହରଣ ହୃଦରେ ଭାବୁ ହେ । ୪

---

ଶବ୍ଦାର୍ଥ । (୩) ପର୍ବ ଶର୍ବରୀ—ପୂର୍ଣ୍ଣିମା ରାତି । ପୂର୍ବଦେବ—ପୂର୍ବରୁ ଉଦିତ ଚନ୍ଦ୍ରମା ଅର୍ଥାତ୍ ପୂର୍ଣ୍ଣ ଚନ୍ଦ୍ରମା । ଆସ୍ୟ—ମୁଖ । ଗଜଦନ୍ତୀ—ଯେ ଗଜ ପରି ଧୀରେ ଗମନ କରେ । ହତରତ—ଅନୁରାଗବିହୀନତା । ରୋଷ ବନ୍ଧି—ଅଭିମାନ କରି । ସେହି ମୋର ବୈଦେହୀର ମୁଖ ପୂର୍ଣ୍ଣିମା ଚନ୍ଦ୍ରର ଗର୍ବକୁ ଖର୍ବ କରିଥାଏ । ତାର ଧୀର ଗଜ ଗମନ ଏବେ ମନେ ପଡ଼ିଲେ ମୋ ହତ ରତ ହୋଇ ତା ସହିତ ମୋର ପ୍ରୀତି କପଟ ମନେ ହେଉ ଥିବୁଛୁ । ତାହା ଛଡ଼ା ମୋର ସୁଖ ଏବଂ ଆନନ୍ଦ ବା କାହିଁ ?

(୪) ସେଚନ—ଅଭିଷେକ (କରି) । ଶୋଚନ—ଶୋକ କରିବା । ମୋଚନ—ମୁକ୍ତ ଲାଗି । ରଚନ—ରଚନା, ବାକ୍ୟବିନ୍ୟାସ । ଯବେ—ତୁରନ୍ତ । ବଳ—ସୈନ୍ୟଦଳ ।

ତୁମେ ତୁମ ଦାରାହରଣ କଥା ଭାବୁ ଭାବୁ ଦୂତମାନେ ଚାଲିଯାଇ ଠାବ ଖବର ନେଇ ଚାଲିଆସିବେ ।

ସୁଧୀରେ ମଧୁରେ ମଧୁପର ଉକ୍ତି
ଯୁକ୍ତି ନୃପପାଣି ଭାଷି
ପ୍ରଦୀପ ବଲ୍ଲୋକ ସତୀ ସତ୍ୟ ସତ୍ୟ
ଅନ୍ୟେ ମତ ନ ପ୍ରକାଶି
ସେ । ଏ ତ
ବହୁତରେ ବହୁତ ଉଦନ୍ତ
ଉକ୍ତ ବ୍ୟକ୍ତ ଯୁକ୍ତ ଯୁକ୍ତ ଦତ୍ତ ସେ । ୫ ।

---

ଶବ୍ଦାର୍ଥ (୫) ସୁଧୀରେ—ଆସ୍ତେ ଆସ୍ତେ । ମଧୁପ—ଭ୍ରମର, ନାଗର । ଉକ୍ତି—ବିରହୀ ନାଗରର କଥା । ଯୁକ୍ତି—ପ୍ରମାଣ ସହିତ, ଉଦାହରଣ ଦେଇ । ନୃପପାଣି—ଧନୁର୍ଦ୍ଧାରୀ ରାମ । ବହୁତ—କଥିତ, ଉଚିତ । ଉଦନ୍ତ—ବୃତ୍ତାନ୍ତ, ଖବର । ବ୍ୟକ୍ତ—ପ୍ରକାଶିତ । ଯୁକ୍ତ—ମିଳିତ । ଯୁକ୍ତ—ଖଚିତ । ରାମ ଆସ୍ତେ ଆସ୍ତେ ମଧୁର ସ୍ୱରରେ ବିରହୀ ନାଗର ଭାବେ କେତେକ ବ୍ୟବହାର ରୀତି ଯାହା ତାଙ୍କ ପ୍ରେୟସୀ ସୀତାଙ୍କ ସହିତ ଗୋପନରେ ଅନୁଭବରେ ଘଟିଥିଲା ତା କହିଲେ । ସେ ସତୀ ଦୀପ ଛୁଇଁ ସତ୍ୟ ସତ୍ୟ କହି ପ୍ରତିଜ୍ଞା କରିଥିଲେ ଯେ—ଅନ୍ୟଠାରେ କେବେ ଚିତ୍ତ ଢାଳିବ ନାହିଁ । ଏହାହିଁ ଉଚିତ୍ କଥା ତା ମୋ ସମ୍ବନ୍ଧରେ । ତାଙ୍କ ଉଭୟଙ୍କ ମିଳିତ ଜୀବନର ଏହି ଯୁକ୍ତିଯୁକ୍ତ କଥାଟି ଦୂତଙ୍କୁ ଦେଇ କହିଦେଲେ ।

ଗୁପତ ଉଦନ୍ତ ପ୍ରଦନ୍ତ କରନ୍ତେ
ଚିତ୍ରକୂଟ କୂଟେ ପଲ
ଭାସ୍କର କରେଣ ଶୁଷ୍କ କରନ୍ତେଣ
ମନ୍ଦ ମନ୍ଦ ଦ୍ୱନ୍ଦ ବଲ
ସେ । ବଳେ
ଲଖ ଲିଖିତ ଉରଜ ସ୍ଥଳେ
ବଳି ପୁଷ୍ଟ ଓଷ୍ଟେ ଚଞ୍ଚୁ ଗ୍ରଳେ । ସେ । ୬ ।

ମୂର୍ଖ ବଳିମୁଖ ଉତ୍କଟ ବିମୁଖ
ଦେଖାଉଁ ଦେଖ ଥିକଲେ
ଆକୁଳେ କୋଳ କରନ୍ତେ ତତକାଳ
ବଳ ଚିତ୍ର ବକ୍ଷସ୍ଥଳେ
ସେ । ଭାଷି
ଦୁଃଖ ପ୍ରଜ୍ଞାରେ ଗଲେକ ଭାସି
ଅନାମିକା ବିଭୂ ସାଭିଳଷି । ସେ । ୭ ।

ଶବ୍ଦାର୍ଥ । (୬) ଗୁପତ ଉଦନ୍ତ—ଗୋପନୀୟ କଥା । ପ୍ରଦନ୍ତ କରନ୍ତେ—କହନ୍ତେ । ଚିତ୍ରକୂଟ—ସ୍ୱନାମଧନ୍ୟ ପର୍ବତ ବିଶେଷ । କୂଟେ—ଗୁହାରେ । ପଲ—ମାଂସ । ଭାସ୍କର କରେଣ—ସୂର୍ଯ୍ୟ ଉତ୍ତାପରେ । ମନ୍ଦ—ଝାଳ । ମନ୍ଦ—ଖଳ, ଦୁଷ୍ଟ, ବାରମ୍ବାର । ଦ୍ୱନ୍ଦ—କଳହ । ବଳ—ବକ୍ର । ବଳେ—ଜୋରରେ । ଲଖ—ଚିହ୍ନ । ଲିଖିତ—ଅଙ୍କିତ । ଉରଜ—କୁଚ । ବଳିପୁଷ୍ଟ—ଋଷିଙ୍କ ବୈଶ୍ୱଦେବ ବଳୀଅନ୍ନ ଖାଇ ପୁଷ୍ଟ ବା ଅଇଣ୍ଠାଖିଆ କୁଆ । ଓଷ୍ଟେ—ଉପର ଅଧରରେ । ଚଞ୍ଚୁ—ଥଣ୍ଟ ।

(୭) ବଳିମୁଖ—ମର୍କଟ, ଶିବାନୁଚର । ବିମୁଖ—ବିକୃତ ମୁଖ । ଦେଖ—ଦେଖ କହି ସେ ଥିକଲେ ତତକାଳେ ଆକୁଳେ କୋଳ କରନ୍ତେ । ଦୁଃଖପ୍ରଜ୍ଞା—ଦୁଃଖ ଜ୍ଞାନ, ଦୁଃଖ ବୁଦ୍ଧି, ଏକଥା କହି ଦୁଃଖ ଜ୍ଞାନରେ ବୁଡ଼ିଗଲେ । ଅନାମିକା—ମଧ୍ୟମା-କନିଷ୍ଠା ଅଙ୍ଗୁଳିର ମଧ୍ୟବର୍ତ୍ତୀ ଅଙ୍ଗୁଳି । ସାଭିଳଷି—ଅନାମିକା ଅଙ୍ଗୁଷ୍ଠିରୁ ମୁଦ୍ରିକାଟି ବାହାର କରିବାକୁ ଇଚ୍ଛା କଲେ ।

ପାଠାନ୍ତର—(୬) ଗୁପତେ ଉଦନ୍ତ ପ୍ରଦନ୍ତ କରନ୍ତେ ଚିତ୍ରକୂଟ କୂଟେ ପଲ । ଭାସ୍କର କରରେ । ଆଳ ଭଲ ମିଳ କେଳିପୂରବ । ଚଣ୍ଡି ପରପର ଖଣ୍ଡିବାରେ । ଚଞ୍ଚୁ ସ୍ଥଳେ ।

(୭) ଆକୁଳରେ କୋଳ କରନ୍ତେ ତତ୍କାଳ ।

ଦଶ ଭୂଅ ବାଳ ଅଞ୍ଚଳେ ଚଞ୍ଚଳ
ଗ୍ରସ୍ତି ତୋଷାର୍ଣ୍ଣବେ ଗ୍ରସି
ବିନମ୍ର ବିନୀତ ନତ ମସ୍ତକ ତ
ଅଙ୍କ ଦଶା ଅବଶେଷି
ସେ । ବେଳେ,
ସୁଚିତରେ ଉଚିତରେ ଗ୍ଲାନେ
ସୁଧା ବିଲୋକେ ଲୋକନୁ ଚଳେ । ସେ । ୮ ।

ଚତୁରେ ଚତୁର ଦଗରେ ଚତୁର
ଗ୍ୱର ଚତୁରରେ ଗ୍ୱହିଁ
ବିଚନ୍ଦ୍ର ଚନ୍ଦ୍ର ଉପମା ଭ୍ରମା ସୀତା
ବିଶେଷିତା ସୀତା କହି
ସେ । ଯାଇ
ବଦ୍ଧ ସିଦ୍ଧ ନାଗପତ୍ନୀ ଦେହୀ
ଭେଟି ଝଟିତ ଲେଉଟ କହି । ସେ । ୯ ।

---

ଶବ୍ଦାର୍ଥ (୮) ଦଶଭୂଅ—ଦଶବ୍ୟୂହ ଭେଦ ପବନ । ବାଳ—ତନୟ । ଅଞ୍ଚଳେ—କାନନରେ । ଗ୍ରସ୍ତି—ବାନ୍ଧିଲେ । ତୋଷାର୍ଣ୍ଣବେ—ସନ୍ତୋଷ ସମୁଦ୍ରରେ । ଅଙ୍କ—ଚିହ୍ନ, ସଙ୍କେତ । ଅବଶେଷି—ଅତ୍ୟନ୍ତ ଭାବେ ଅପୃଥକ । ସୁଚିତରେ—ଉତ୍ତମ ମନରେ । ଉଚିତ—ଯଥାର୍ଥ । ମୁଦ୍ରିକା ରାମଙ୍କ ଆଙ୍ଗୁଠିରୁ ସ୍ୱତନ୍ତ୍ର ହେବା ଯୋଗୁ ହନୁ ଭାବିଲେ ଆଜି ମୁଦ୍ର ପକ୍ଷରେ କି ଦୁର୍ଦ୍ଦଶା ନ ଆସିଲା । ସେ ଅପୃଥକ୍ ଭାବରେ କେଉଁଠାନୁ ରହି ଆସିଥିଲା । ସୁଧା—ଅମୃତ, ଅମୃତମୟୀ ସୀତା । ବିଲୋକେ—ଦର୍ଶନ ପାଇଁ । ଲୋକନୁ—ଦୃଷ୍ଟିପଥରୁ । ହେଲେ କଣ ହେବ ସେ ପୃଥକ୍ ହେଲେ ମଧ୍ୟ ଅମୃତମୟୀ ସୀତାଙ୍କ ଦର୍ଶନ ପାଇଁ ଯାଉଛି ରାମଙ୍କ ଦୃଷ୍ଟିପଥରୁ ।

(୯) ଚତୁରେ—ଚତୁରତା ସହିତ । ଚତୁର—ଗ୍ୱର । ଚତୁର—ଦକ୍ଷ । ଭ୍ରମା—ଭୁଲ କରିଦେବ । ବିଶେଷିତା—ଅଧିକନ୍ତୁ । ସୀତା—ପରମଶୋଭନୀୟା, କନକ । ବଦ୍ଧ—ଆବଦ୍ଧ । ସିଦ୍ଧ—ଦେବଯୋନି ବିଶେଷ । ନାଗପତ୍ନୀ—ରୂପସୀ ନାଗନାରୀ ।

ପାଠାନ୍ତର—ଦଶିଭୂଆ ବାଳ । ଗ୍ୱର ଚତୁରେସେ । ବିଶେଷିଣ ସୀତା କହି । ନାଗପତ୍ନୀ ଦେହି । ଲେଉଟ ତହିଁ ।

ଦିଗବଳି ଦିଗବଳି ଦିଗବଳି
ଚଳି ପ୍ରଚଳି ଚଳିଲେ
ନାଗ ନଗର ପୂରପରା ଭୂଚର
ସଚରାଚର ବୁଲିଲେ
ସେ । ଅନ୍ତେ
ମାରୁତରେ ମାରୁତି ଭାସନ୍ତେ
କରେ କର ଅଙ୍ଗୁରୀ ଦିଅନ୍ତେ । ସେ । ୧୦ ।

---

ଶବ୍ଦାର୍ଥ । ଦିଗ—ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଦିଗ । ଦିଗ—ସୀମା । ଦିଗ—ଦେଶ, ଅଞ୍ଚଳ; କଷ୍ଟ । ବଳି—ଅଧିକ ଦୂର ଯିବା, ଅଧିକ ଯିବା, ଅଧିକ । ନାଗ—ସର୍ପ. ହସ୍ତୀ, ମେଘ । ପରା—ପ୍ରାଧାନ୍ୟ, ପ୍ରାପ୍ତ । ଭୂଚର—ଭୂପୃଷ୍ଠବାସୀ । ନାଗନଗର—ପାତାଳ । ପୁରପରା—ସ୍ୱର୍ଗ । ମାରୁତ—ପବନ । ମାରୁତି—ହନୁ । କରଅଙ୍ଗୁରୀ—ହସ୍ତମୁଦି ।

ପାଠାନ୍ତର—ନାଗ ନାଗର ନାଗପୁର ଭୂଚର । ମାରୁତିରେ ମାରୁତି ଭାସନ୍ତେ । ମାର ନରେ ମାରନ୍ତେ ଭାସନ୍ତେ । କର ଅଙ୍ଗୁଳୀ କ ସେ ଦିଅନ୍ତେ ।

ପୂର୍ବାପର-ପ୍ରତୀଚୀରେ ଗୃହ ଗତ
କରି ବ୍ୟଗ୍ର ବନ୍ତେ ଗତେ
ଛଦନ୍ତେ ଅନଳ ଅନଳଜ ମେଳ
କଶ୍ୟପଜ ନପ୍ତା ଭୃତ୍ୟେ
ସେ । ସତୀ
ଅବାଚୀରେ କି ସେ ଅବା ସ୍ଥିତ
ସଙ୍ଗେ ସପ୍ତାଙ୍ଗ ପ୍ରସିଦ୍ଧ ଯାନ୍ତି । ସେ । ୧୧ ।

ଶିଖୀ ଶିଖା ଦେଖାଇଣ ସୁକୃତରେ
ସୁକୃତ କୃତ କୃତରେ
ଜୀବନ୍ତ ସନ୍ତତ କରିବୁ ଏମନ୍ତ
ଯେ ସୀତା ସୀତା ସୀତାରେ
ସେ । ବ୍ୟଗ୍ରେ
ପ୍ରାଚୀ ଅବାଚୀ ପ୍ରତୀଚୀ ଦିଗେ
ସ୍ୱାତିଜ ଚଳେ ଉଦୀଚୀ ଶୀଘ୍ରେ । ସେ । ୧୨ ।

---

ଶବ୍ଦାର୍ଥ (୧୧) ପୂର୍ବାପର—ପୂର୍ବ ଭିନ୍ନ । ପ୍ରତୀଚୀ—ପଶ୍ଚିମ । ଅନଳ—ବାୟୁ । ଅନଳଜ—ହନୁ । କଶ୍ୟପଜ—ସୂର୍ଯ୍ୟ । ନପ୍ତା—ନାତି । ଅବାଚୀ—ଦକ୍ଷିଣ ଦିଗ । ସପ୍ତାଙ୍ଗ—ସପ୍ତରଥୀ ।

(୧୨) ଶିଖୀ—ଅଗ୍ନି । ପ୍ରାଚୀ—ପୂର୍ବ । ଉଦୀଚୀ—ଉତ୍ତର । ସ୍ୱାତି—ସୂର୍ଯ୍ୟପତ୍ନୀ, ତୋଫାନ । ସ୍ୱାତିଜ—ହନୁ । ସୀତା—ସ୍ୱର୍ଣ୍ଣ ପ୍ରତିମା । ସୀତା—ପରମ ରୂପବତୀ ।

ଦୃଷ୍ଟେ ଶ୍ରେଷ୍ଠ ଅଷ୍ଟ ବୀର ଯେ ଗରିଷ୍ଠ
ପଣ୍ଡିଶ୍ରେଷ୍ଠେ ଚଳିଗଲେ
ଭୁଜ ଅନନ୍ତରେ ଅନ୍ତରେ ସତ୍ତ୍ୱରେ
ଭୁବନରେ ବିଖ୍ୟାତିଲେ
ସେ । ଭୂମି
କାହିଁ ଛନ୍ତି ବୀରେନ୍ଦ୍ରରମଣୀ
ଜମ୍ବୁ ଦ୍ୱୀପର ଦୂତର ଅଗ୍ରଣୀ । ସେ । ୧୩ ।

ବନ୍ଧୁ ବନ୍ଧୁବାରେ ନିପୁର ମଧ୍ୟରେ
ମନ୍ଦିରେ ନ ରହ ସ୍ଥାନ
ସୁଗତ ବିଗତ ବାଚନେ ବାଚନେ
ଭୂମି ବ୍ୟଥା ଲଭି ପୁଣ
ସେ । ବୁଲି
ଇନ୍ଦ୍ର ବହ୍ନି ପିତୃପତି ମିଳି
ନୈଋତରେ ମରୁ ତହୁଁ ଚଳି । ସେ । ୧୪ ।

---

ଶବ୍ଦାର୍ଥ । (୧୩) ଦୃଷ୍ଟେ—ଦେଖିଗୁହିଁ । ପଣ୍ଡିଶ୍ରେଷ୍ଠେ— ଶେଷ:ଶ୍ରେଷ୍ଠତମ ସ୍ଥାନମାନଙ୍କୁ । ଭୁଜ—ବାହୁ । ଅନନ୍ତ—ଶେଷଦେବ । ଅନ୍ତରେ—ମଧ୍ୟରେ । ବିଖ୍ୟାତିଲେ—ପ୍ରକାଶିତ ହେଲେ । ବୀରେନ୍ଦ୍ର ରମଣୀ—ଜାନକୀ । ଜମ୍ବୁଦ୍ୱୀପ—ଭାରତବର୍ଷ । ଦୂର—ଦୂତ ।

(୧୪) ବନ୍ଧୁ ବନ୍ଧୁବାରେ—ବିଧାତା ସୃଷ୍ଟିରେ । ସୁଗତ—ସୁନ୍ଦର । ବିଗତ—ପ୍ରସ୍ଥାନୋଦ୍ୟତ । ଇନ୍ଦ୍ର—ପୂର୍ବ । ବହ୍ନି—ଅଗ୍ନି । ପିତୃପତି—ଯମ, ଦକ୍ଷିଣ । ମରୁ—ବୃକ୍ଷଲତାଶୂନ୍ୟ ଜଳଶୂନ୍ୟ ଭୂମି ।

ପାଠାନ୍ତର । ପୁଷ୍ଟେ ଶ୍ରେଷ୍ଠେ । ପଣ୍ଡିଶ୍ରେଷ୍ଠେ ଚଳିଗଲେ । ବୀରେ ଅନନ୍ତରେ ଅନ୍ତରେ ସତ୍ତ୍ୱରେ ଶୁଚି ସଞ୍ଚନ୍ଦପ୍ରରେ । ସେ । ବୁଲି । ଇନ୍ଦ୍ର ବହ୍ନି ପିତୃପତି ମିଳି ।

ସ୍ରବଣ ପୁଣ୍ଡରୀକ ଶିବ କଳଙ୍କ
ବେଳନ୍ୟୁକ୍ତ ଇନ୍ଦୁପତ୍ନୀ
ଅଞ୍ଜନ ବଳୀଶ କୁମୁଦରଦନ
ଛଦନେ ଗଲେକ ଜିଣି
ସେ । ସୀତା
ନ ଦେଖିଣ ବସ୍ମିତେ ବିସ୍ମିତା
ସର୍ବ ବୀରେ ଶତ୍ରରେ ଚକ୍ରନ୍ତା । ସେ । ୧୫ ।

ସନ୍ଦେଶ ଉଦ୍ଦେଶ୍ୟ ବହୀନେ ବୀରସ
ବରସେ ବରସେ ଗତ
ମହୀଜା କଷ୍ଟରେ ମାନସ ଭ୍ରଷ୍ଟରେ
ବୀରଣ ପୁରତେ ସ୍ଥିତ
ସେ । ବୀରେ
ନତ ମସ୍ତକେ ହସ୍ତ ନ୍ୟସ୍ତରେ
ବାର୍ତ୍ତା ବ୍ୟକ୍ତ କରଣ ବ୍ୟସ୍ତରେ । ସେ । ୧୬ ।

---

ଶବ୍ଦାର୍ଥ । (୧୫) ସ୍ରବଣ—ସାର୍ବଭୌମ । (ଉତ୍ତର ଦଗ ଦଗ୍‌ଗଜ) । ପୁଣ୍ଡରୀକ—ପୂର୍ବ-ଦକ୍ଷିଣ ଦଗ୍‌ଗଜ । ଶିବ କଳଙ୍କ ବେଳନ୍ୟୁକ୍ତ—ବାମ, ସୁପ୍ରତୀକ (ଉତ୍ତର-ପୂର୍ବ ଦଗ୍‌ଗଜ) ଇନ୍ଦୁପତ୍ନୀ—କୁମୁଦ (ଦକ୍ଷିଣ-ପଶ୍ଚିମ ଦଗ୍‌ଗଜ) ଅଞ୍ଜନ—ପଶ୍ଚିମ ଦଗ୍‌ଗଜ । ବଳୀଶ—ବାମନ (ଦକ୍ଷିଣ ଦଗ୍‌ଗଜ) । କୁମୁଦରଦନ—ଐରାବତ (ପୂର୍ବ ଦଗ୍‌ଗଜ) । ଛଦନ—ପୁଷ୍ପଦନ୍ତ (ପଶ୍ଚିମୋତ୍ତର ଦଗ୍‌ଗଜ) (ଶିବ ଏବଂ ପାର୍ବତୀ ବେଳକୁ ଯୋଗ କରାଛୁ, ସେ) ।

(୧୬) ମହୀଜା—ସୀତା । ବୀରଣ—ଗମ୍ଭୀର ଭୂମି (ସ୍ଥଳ)

ପାଠାନ୍ତର । ଅଞ୍ଜିଳ ବଳଏ କୁସୁମର ବନ ଛେଦନେ ଗଲେକ ଜଣି । ସୈନ୍ୟ ଚକ୍ରାରେ ଅତ ଚକ୍ରତା । ଖୋଜ ଖୋଜଣ ଝସିତା ।

ନାରୀ ଶିରୀ ବଳେ — କନହୀନ ଗୀର
ଶ୍ରବଣେ ଶ୍ରବଣ କର
କୃତକ ଅଶନ ପତନରେ ବହ୍ନି
କଲଉଠେ ଶିଖାପୂର
ସେ । କାଳେ
ବଧି ଅବଧି ଭ୍ରବ ବକଳେ
ତମ ନାଶ ବଂଶକ ଆକୁଳେ । ସେ । ୧୭ ।

ସୁଷେଣ ସଚକ ସଚକ ଜମ୍ବେବ
ମାରୁତକ ହର୍ଷେ ଗତ
ବୃନ୍ଦାର ନପ୍ତା ନଳ ନୀଳ ରବକ
ଭେଦ ଗନ୍ଧମାର୍ଦ୍ଧନତ
ସେ । ଯାଇ
ଅବଟରେ ପ୍ରବେଶିତ ହୋଇ
ଫେର ବନ୍ଧ୍ୟାଚଳ କୂଟେ ରହ୍ବ । ସେ । ୧୮ ।

---

ଶବ୍ଦାର୍ଥ । ଅବଟ—ଅକୃତ୍ରିମ ଗର୍ତ୍ତ । ବୃନ୍ଦାର—ଇନ୍ଦ୍ର । ଇନ୍ଦ୍ରନପ୍ତା—ଅଙ୍ଗଦ । କୂଟେ—ଶିଖରେ ।

ପାଠାନ୍ତର । ସୁଷେଣ ସୁଷେଣ ଜମ୍ବେବ ଜମ୍ବେବ ମାରୁତେ ମାରୁତେ ଗତେ । ବୃନ୍ଦାର ନପାନ୍ତ୍ର ନଳ ନୀଳ ରୁଷ । ବୈଦେଶ୍ୱୀ ବୈଦେଶ୍ୱୀ ଗତେ । ସିଦ୍ଧ ବନ୍ଧ୍ୟାଞ୍ଚଳ କୂଟେ ତହିଁ । ଦୁଷ୍ଟେ ଅଷ୍ଟ ସୈନ୍ୟ କଷ୍ଟେ ରହ୍ବ ।

ବିଷାଦେ ବିତଥ          ବିତର୍କ ଦୂରିତ
ଗୃଧ୍ର ପୃଚ୍ଛା ସଂପାତରେ
କଣ୍ଟକେ ଝଣ୍ଟକ          ଦେଖିଲେ କଣ୍ଟକ
ଅଟ୍ଟକ ଲଙ୍କା ନଗରେ
ସେ । ତୋଷେ
ଦେଖି ଅର୍ଣ୍ଣବେ ଆସି ତା ପାଶେ
ଉଚ ଶ୍ୱାସ ଛେଜି ଅବଶେଷେ । ସେ । ୧୯ ।

ଲୋକନେ ଅର୍ଣ୍ଣବ          ଘୋଟଣ ଦୁଃଖାର୍ଣ୍ଣବ
ଆଶ ନାଶ ଶ୍ୱାସ ଖରେ
ନୋହୁତ ତରିତ          କେମନ୍ତ ତରିତ
ସରିବା ସହିତେ ଶରେ
ସେ । ଭ୍ରଳି
ଦୁଃଖ ବ୍ୟାଧି ବୃଦ୍ଧି ବଳାବଳି
ବାହୁ ସନ୍ତରଣେ ସିନ୍ଧୁ କଳି । ସେ । ୨୦ ।

---

ଶବ୍ଦାର୍ଥ । (୧୯) ବିତଥ—ବିଫଳ । କଟକ—ରାଜଧାନୀ, ସାମୁଦ୍ରିକ ଲବଣ । କଣ୍ଟ—ତୃଣାସନ ।

(୨୦) ଆଶ—ଭରସା । ଖରେ—ଚଞ୍ଚଳ ଭାବରେ । ତରିତ—ନୌକା । ତରିତ—ପାର ହେବା ।

ପାଠାନ୍ତର । (୨୦)—ଆଶ ଘଣ ।

ଏ ଅଟେ ଅଗତ  କେମନ୍ତେଟି ଗତ
ନାହିଁ ଗତ ଅଗତହିଁ
କେ ଗିର ବତର  ଅର୍ଦ୍ଧେ ଯିବା ଭର
କେ ବିଶେଷ ଭର କହି
ସେ । ଶୁଣି
ରୁକ୍ଷ ପତ୍ତ ଶୀର୍ଣ୍ଣ କ୍ଷିନ୍ନ ଭଣି
ମୌନ ଶିଳା ବାଳା ନମ୍ରା ପୁଣି । ସେ । ୨୧ ।

ମରୁତ ସୁତେ ମାରୁତେ  ବାର୍ତ୍ତା ଦ୍ୟନ୍ତେ
ତ୍ୱରିତ ଆଗତେ ଗତ
ଅଙ୍ଗଦେ ଅଙ୍ଗଦ  ଜାମ୍ବବେ ଜାମ୍ବବ
ସୁଷେଣ ଅଷ୍ଟ ବୀର ତ
ସେ । ଗ୍ରହିଁ
ଖରେ ଖଗେନ୍ଦ୍ର ଖ'ଜିତ କହି
ମୁଖ ଲକ୍ଷ ପକ୍ଷ ବର୍ଦ୍ଧି ନୋହିଁ । ସେ । ୨୨ ।

ବଧୂରେ ବଧୂରେ  ପ୍ରବୋଧି ବଧୂରେ
ବଧି ମଙ୍ଗଳ କରନ୍ତି
ଜମ୍ବେବ ସମ୍ଭବେ  ଆରମ୍ଭ ସମ୍ଭାରେ
ଭାସନ୍ତେ ଶୀଘ୍ର ଗମନ୍ତି
ସେ । ହନୁ
ବିଗତରେ ଗତ କ୍ଷୀଣ ତନୁ
ବିଭୁ ନାମାନ୍ତର ନୋହି ମନୁ । ସେ । ୨୩ ।

---

ଶବ୍ଦାର୍ଥ । (୨୧) ରୁକ୍ଷପତି—ଜାମ୍ବବ ।

(୨୨) ଆଗତେ—ଉପସ୍ଥିତ ବା ଭବିଷ୍ୟତରେ । ଗତ—ଯାଇ । ଅଙ୍ଗଦେ—ବାହୁ ଭୂଷଣରେ । ଜାମ୍ବବେ—ସ୍ୱର୍ଣ୍ଣ ଭୂଷଣରେ । ଖରେ—ତୀବ୍ରଗତିରେ । ଖଗେନ୍ଦ୍ର—ଗରୁଡ଼ । ଖ'—ଆକାଶ । ଜିତ—ଜୟକାରୀ । ମୁଖ—ମୁହଁ । ଲକ୍ଷ—ଚକ୍ଷୁ । ପକ୍ଷ—ବାହୁ । ବର୍ଦ୍ଧ—ବୃଦ୍ଧି ।

ପାଠାନ୍ତର । (୨୩) ବଧୂରେ ବଧୂରେ ଗତରେ ବଧୂରେ ବଧି ମଙ୍ଗଳ କରନ୍ତି । ଭାସନ୍ତେ ଶୀଘ୍ର ଗମନ୍ତି । ସେ, ଗଲି । ମଇନାକେ ମୈନାକେ ମିଳଲି । ସିଂହିକାରେ ସିଂହିକା ଚଳଲି ।

ସଗରଜ କୀର୍ତ୍ତି ପଯ୍ସ ବନ୍ଦୁ ସ୍ଥିତ
ମାର୍ଗାନନ୍ତ ଭ୍ରଳି ଭ୍ରଳି
ଶ୍ରମ ସ୍ୱାର୍ଥାର୍ଥରେ ମେନାମ୍ବଜାଗ୍ରରେ
ବିଶ୍ରାମିଣ ଗଲେ ଚଳି
ସେ । ଭ୍ରଳି
ତମ ପ୍ରାପ୍ୟେ ତମ ମାତୃ ମିଳି
ଦେବ ମାତା ଗର୍ଭେ ଗଲେ ଚଳି । ସେ । ୨୪ ।

ଶୀଘ୍ରେ କଦ୍ରୁଗୃହି ମନନ୍ତେ ଧପଟି
ମିଳି ସୁବେଳେ ସୁବେଳେ
ହରି ହରଷରେ ଲଙ୍କା ହରିହାରେ
ହରି ବିରହିତ ବେଳେ
ସେ । ବୀର
ସ୍ୱଚ୍ଛେ ଗୋବତ୍ସା ପଶ୍ଚାତ୍‌ପଦର
ଦୃଷ୍ଟ ହାଟକେଶ୍ୱର ଆଳର । ସେ । ୨୫ ।

ଗୁପତେ ବିଟପେ ଲଙ୍କାରେ ଶଙ୍କାରେ
ବିଶ୍ରାମନ୍ତେ କୀଶ ଶ୍ରେଷ୍ଠ
ବିନାୟକ ଧ୍ୟାୟି ବିନାୟକ କହି
ବିନାୟକ ଇଷ୍ଟ ଶ୍ରେଷ୍ଠ
ହେ । ଘେନ
ସେ ରାଘବ ମୋ ହୃଦେ ବିଶ୍ରାମ
ତାଙ୍କ ବନଜାଙ୍ଘ୍ରିରେ ମୋ ଧ୍ୟାନ । ସେ । ୨୬ ।



ଶବ୍ଦାର୍ଥ । (୨୪) ମେନାତ୍ମଜ—ମୈନାକ ଗିରି । ଅଗ୍ରରେ—ଶିଖରେ ।
(୨୫) ହରି—ମର୍କଟ ।

ପାଠାନ୍ତର—(୨୫) ଶୀଘ୍ର କଦ୍ରୁଗୃହି । ସୁବଳେ ସୁବଳେ ମିଳି । ହରିହର ସେ ବିହାର । ଦେଖିବାରେ ବଂଶେଜର ଜର । ଯଥା ବୈକୁଣ୍ଠେ ବୈକୁଣ୍ଠ ହର ।

ଶବ୍ଦାର୍ଥ । ବିଟପେ—ବୃକ୍ଷଶାଖାରେ । କୀଶ—ବାନର ।

# ରାଘବ ବିଳାସ

## ଦ୍ୱାତ୍ରିଂଶ ଛାନ୍ଦ

ଏହି ଛାନ୍ଦଟି **ରଣବାକେ ହରି ଚଉତିଶା** ରାଗରେ ଚୈାରିଶି ପଦରେ ସଂପୂର୍ଣ୍ଣ । ଏହି ଚୈାରିଶି ପଦ ଏପରି ବର୍ଣ୍ଣାନୁକ୍ରମ ଭାବରେ ବାଦ୍ଧିତ ଯେ ଛାନ୍ଦ ସହିତ ଥିଲା ଯେ ତାହା ଏଥିରେ ଏକତ୍ର କରାଯାଇଛି ।

ଗୋଟିଏ ସୁନ୍ଦର ବିମାନ ପରି ହନୁ ଆକାଶ ପଥରୁ ଲଙ୍କାରେ ଓହ୍ଲାଇଛି । ତାର ରୂପକୁ କବି 'ବିମ୍ବ ଓଡ୍ର ପରିପ୍ରେ ଯା ତମ୍ଭୁ' ବୋଲି ବର୍ଣ୍ଣନା କରି ସ୍ୱ ଜାତିସୁ ପୃଷ୍ଟର ଗୌରବ ବୃଦ୍ଧି କରିଛନ୍ତି । ତମ୍ଭୁ ଯାହାର ବିମ୍ବ ଓଡ୍ର ପରିପ୍ରେ ଦେଖା ଯାଉଥିଲା, ଅର୍ଥାତ୍ କୋଧରୁ ଯାହାର ପ୍ରତିବିମ୍ବ ବା ଅଙ୍ଗ ମନ୍ଦାର ଫୁଲ ପରି ଦେଖା ଯାଉଥିଲା । ଶୂନ୍ୟ ମଣ୍ଡଳରେ ଭାସି ଆସିବା ଯୋଗୁଁ ପୁଣି ଲଙ୍କା ନଗରୀକୁ ଦେଖି କୋଧାନ୍ଧ ହୋଇ ହନୁର ଅତ୍ୟନ୍ତ ପରିଶ୍ରମଜନିତ ଅଙ୍ଗ ମନ୍ଦାର ପାଖୁଡ଼ା ପରି ଲାଲ ହେବା ସ୍ୱାଭାବିକ ।

ହନୁକୁ ଦେଖି ନଗରର ଦ୍ୱାର କିଳି ଦେବା, ବନ୍ଦୀକୃତ ହସ୍ତୀମାନଙ୍କୁ ଅଙ୍କୁଶ ମାରି ଥପୁରେ ରଖିବା, ଏପରି ମହାଭୟ ଉପସ୍ଥିତ ହେବା ଯୋଗୁଁ ରାବଣକୁ ନିନ୍ଦା କରିବା ଆଦି ଯେ ସୁଖୀ ଲଙ୍କାର ନାଗରିକବୃନ୍ଦ କରିଅଛନ୍ତି ତାହା ଅତି ଗର୍ବିତ ଲଙ୍କା ପ୍ରତି ଏକାନ୍ତ ସମୀଚୀନ ହୋଇଛି । କାରଣ ବାଘର ଫାଗକୁ ଅଧିକ ଯେ ଭୟ ?

ହନୁ ଲଙ୍କାର ଇଷ୍ଟଦେବତାଙ୍କୁ ହାସ ଦେଇ ବର ପାଇଛି ଯେ, ନିଶ୍ଚୟ ଦେବୀ ଜାନକୀଙ୍କ ସହିତ ତାହାର ସାକ୍ଷାତ ହେବ ।

ସେ ତେଣୁ ରାବଣର ଅନ୍ତଃପୁର ଭ୍ରମଣ କରି ରାବଣ କୋଳରେ ଅତ୍ୟନ୍ତ ସୁନ୍ଦରୀ ଏକ ରମଣୀ ଦେଖି ତାଙ୍କୁ ସୀତା ବୋଲି ପ୍ରଥମେ ଭ୍ରମ କରିଛି । କିନ୍ତୁ ଅଗ୍ରର ବ୍ୟବହାରରେ ମାତତା ଦେଖିପାରି ନିଜର ଭ୍ରମ ବୁଝିପାରିଛି ଏବଂ ଅଶୋକ ବନରେ ସୀତାଙ୍କୁ ଦେଖିପାରିଛି ।

ସନେ—ସହିତରେ । ଏହି ପ୍ରୟୋଗଟି ବଙ୍ଗଳା ଭାଷାରେ ପ୍ରୟୋଗ ହେଉଥିବାର ଦେଖାଯାଏ । କିନ୍ତୁ ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଯଦୁମଣି ଏହା ପ୍ରୟୋଗ କରିଛନ୍ତି ।

ଚଳନେ ମାତ ସମିଧ<br>**ସନେ** କଳି ସମ ମୋଠାରୁ କେ ହୀନ<br>ଜାଣିଲି ମୁହିଁ ନିବୋଧ ।

ମନେ ହୁଏ ଏହା ଓଡ଼ିଆ ଭାଷାରେ ପଥ ପ୍ରୟୋଗ ହୋଇ ଆସିଅଛି । ତେଣୁ ଭାଷାତତ୍ତ୍ୱ-ଗବେଷକମାନେ ଏଥିପ୍ରତି ଦୃଷ୍ଟି ଦେବେ ।

ହନୁ ରାମଙ୍କଦ୍ୱାରା କଥିତ ଗୋପନୀୟ ସନ୍ଦେଶ ସହିତ ତାଙ୍କର ମୁଦ୍ରିକା ଦେଇଛି । ସୀତାଙ୍କୁ କାନ୍ଧରେ ବୋହି ନେଇଯିବାକୁ କହନ୍ତେ ସୀତା ନିଜର ସ୍ୱାମୀଙ୍କ ପ୍ରତି ତାହା ଅପମାନଜନକ ହେବ ବୋଲି ବୁଝାଇଛନ୍ତି । ଅନନ୍ତର ସେ ଦେଖିଛି ସୀତାଙ୍କ ସମକ୍ଷରେ ରାବଣରେ ପ୍ରଚଣ୍ଡ ଆକ୍ରମଣ ଏବଂ ସତୀ ସୀତାଙ୍କର ଧୈର୍ଯ୍ୟ ଏବଂ ମନୋବଳର ଚମତ୍କାର ଭୂତ ।

ହନୁକୁ ରାବଣ ଯେତେବେଳେ ପଥରେ ଧରି ଉଲଗ୍ନ କରି ଖୋଷଣ ଅଙ୍ଗାଗ୍ନିର କହିଥିଲା, ହନୁ ସେ କଥା ନ ଶୁଣି ତାର ଉଦ୍ୟାନ ରମଣୀୟ ଉପବନକୁ ଛାରଖାର କରି ଧ୍ୱସ୍ତବିଧ୍ୱସ୍ତ କରିଦେବାରୁ ଇନ୍ଦ୍ରଜିତ ବ୍ରହ୍ମାସ୍ତ୍ରରେ ବାନ୍ଧିନେଲା । ତାର ଲାଙ୍ଗୁଳରେ କପ୍ପାଡ଼ ଦେଇ ଅଗ୍ନି ସଂଯୋଗ କରନ୍ତେ ଲଙ୍କା ଦଗ୍ଧ ହେଲା ।

ହନୁ ଲଙ୍କା ଦଗ୍ଧ କରି ସେ'ଠି ରାମଚନ୍ଦ୍ରଙ୍କୁ ଆସି ବାର୍ତ୍ତା ଦେଲା । ଏହି ବର୍ଣ୍ଣନାରେ ସୀତା ମୁଦ୍ରିକା ଫେରାଇଦେବା କଥା ଅଛି ।

ପ୍ରମୋଦ ମନେ ମୁଦ୍ରିକ ମୁଦ ଫେଇ ।

କିନ୍ତୁ ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ଅଛି ଯେ ସୀତା କହିଲେ, 'ମୋର ଏ ସଙ୍କେତ ରାମଙ୍କୁ ଦେବ । ସେ ତା' ଦେଖି ଚିହ୍ନିବେ ।' ଏହା କହି ଶିରରୁ ମଥାମଣି କାଢ଼ି ହନୁ ହସ୍ତରେ ଦେଲେ ।

ତତୋ ବସ୍ତ୍ରଗତଂ ମୁକ୍ତ୍ୱା ଦିବ୍ୟଂ ଚୂଡ଼ାମଣିଂ ଶୁଭଂ
ପ୍ରଦେୟୋ ରାଘବାୟେତି ସୀତା ହନୁମତେ ଦଦୌ । ସୁ ।୩୪।୬୯

କିନ୍ତୁ ଏ କଥା ସତ୍ୟ ଯେ ରାମଚନ୍ଦ୍ର ନିଜର ମୁଦ ହନୁ ହାତରେ ସୀତାଙ୍କ ନିକଟକୁ ପଠାଇଥିଲେ । ସଦୁମଣିଙ୍କ ପରି ବିଚକ୍ଷଣ ବ୍ୟକ୍ତି ଏ ପ୍ରମାଦ କିପରି କରିଛନ୍ତି ଗ୍ରନ୍ଥ ଅସମ୍ପୂର୍ଣ୍ଣ, ଛାନ୍ଦ ଅସମ୍ପୂର୍ଣ୍ଣ ଥିବାବେଳେ କ'ଣ କହିବା ?



# ରାଘବ ବିଳାସ

## ଦ୍ୱାତ୍ରିଂଶ ଛାନ୍ଦ

( ରାଗ—ରଣବଜେ ହର ଚନ୍ଦ୍ରଭଶା )

ବିଦୂର ଦେଶାନ୍ତ ସାଗର ଦ୍ୱୀପେ ତ
ଲଙ୍କାରେ ବିଭାତେ ବୀର
ବିମଳ ବିମାନ ଅବା କ ନିବୃତ୍ତ
ଦୃଶ୍ୟେ ବିଭୋର ନଗର
ସେ । ହନୂ
ବିମ୍ବ ଓଡ୍ର ପର୍ଯ୍ୟେ ଯା ତମ୍ର ।
ବିଯୋଗୀରେ ଯେ ଚର ଅଷ୍ଟମୁ । ସେ । ୧ ।
ଉତ୍ସୁକେ ଛନକେ ଶୃହଁଲେ ଛନକେ
କେ ଗଲା କେ ଗଲା ବୋଲି
ବାରୁଣୀ ଅସ୍ତାଚଳ ଭୋଳ ଉଦରେ
ମାରୁତଜ ଯାଏ ଚଳି
ସେ । କଳି
ଜନ ନିରୋଧ ଦେଇ ଅର୍ଗଳି
ଯାତୁଧାନେ ଯାତୁଧାନେ ମିଳି । ସେ । ୨ ।

ହନୁ ଅତି ଦୂରବର୍ତ୍ତୀ ଭିନ୍ନ ରାଜ୍ୟ ସାଗରବେଷ୍ଟିତ ଲଙ୍କାରେ ସକାଳେ ସୁନ୍ଦର ଶୂନ୍ୟଗାମୀ ରଥ ଖସିଲା ପରି ଖସନ୍ତେ ଲଙ୍କା ନାଗରିକ ତା ଦେଖି ଆଶ୍ଚର୍ଯ୍ୟ ହେଲେ । କ୍ରୋଧରେ ହନୁର ଅଙ୍ଗ ମନ୍ଦାର ଫୁଲ ପରି ଦେଖାଯାଉଥିଲା । କାରଣ ସେ ବିରହୀ ରାମଚନ୍ଦ୍ରଙ୍କର ଆଠ ଜଣ ଦୂତଙ୍କ ମଧ୍ୟରୁ ଜଣେ ଥିଲା ।

ପଶ୍ଚିମ ଦିଗକୁ ହନୁ ଯିବାବେଳେ ରାକ୍ଷସମାନେ କିଏ ଗଲା କିଏ ଗଲା ବୋଲି ପାଟିକରି ନଗରର ବଡ଼ ବଡ଼ ଦ୍ୱାରମାନ କଳି କଳଣି ଦେଇଦେଲେ ।

---

ଶବ୍ଦାର୍ଥ । (୧) ବିଦୂର—ଅତି ଦୂରବର୍ତ୍ତୀ । ଦେଶାନ୍ତ—ଅନ୍ୟଦେଶ । ସାଗର ଦ୍ୱୀପ—ଲଙ୍କା । ବିଭାତେ—ସକାଳେ । ବିମଳ—ସୁନ୍ଦର । ବିମାନ—ଶୂନ୍ୟଗାମୀ ରଥ । ନିବୃତ୍ତ—ବିରତ, ନିଶ୍ରାନ୍ତ । ବିଭୋର—ବିହ୍ୱଳ, ଉନ୍ମତ୍ତ । ତମ୍ର—କ୍ରୋଧରୁ । ବିମ୍ବ—ରକ୍ତବର୍ଣ୍ଣର କଇଁଚି କାକୁଡ଼ି ଫଳ, ପ୍ରତିବିମ୍ବ । ଓଡ୍ର—ମନ୍ଦାର ଫୁଲ । ବିଯୋଗୀ—ବିରହୀ (ରାମ) । ଚର—ଦୂତ । ଅଷ୍ଟମୁ—ଆଠ ଜଣରୁ ଜଣେ ।

(୨) ଉତ୍ସୁକେ—ଉତ୍କଣ୍ଠାରେ । ଛନକେ—ଭୟରେ, ଛନଛନ ହୋଇ । ବାରୁଣୀ ଅସ୍ତାଚଳ—ପଶ୍ଚିମ ଦିଗରେ ସୂର୍ଯ୍ୟ ଅସ୍ତ ହେଉଥିବା ପର୍ବତ । ଭୋଳ—ବିହ୍ୱଳ । ଉଦରେ—ଗର୍ବରେ । ମାରୁତଜ—ହନୁମାନ । କଳି—କଳନା କରି । ଜନ ନିରୋଧ ଅର୍ଗଳି ଦେଇ—କୌଣସି ଲୋକ ଯାଇ ନ ପାରିବାର ପଥ ବନ୍ଦ କରି । ଅର୍ଗଳି—କବାଟ କଳଣି । ଯାତୁଧାନ—ରାକ୍ଷସ ।

କେ କହେ ସରମା ବିଡ଼ାଲ ଫେରବ
ବଳିମୁଖ ବଳିଯାଇ
ବାରଣେ ବାରଣ କରଣ ବାରଣ
ଅର୍ଗଳ କଲଣି ଦେଇ
ସେ । ଦ୍ୱାସ୍ଥ
ବିଷ ଆପ୍ୟାନ ସୁଧା ସ୍ରବିତ
କଲ ବୁଦ୍ଧି ସିଦ୍ଧି ପ୍ରକାଶିତ । ସେ । ୩ ।

ଲଙ୍କାରେ ଲଙ୍କାରେ ଲୁଲନ୍ତେ ଲଙ୍କାରେ
ଲଙ୍କ ଦେବତୀ ବିଧାରେ
ବେଦବର ବର ପ୍ରଦତ୍ତ ସୁଖ୍ୟାତ
ହତ ସେ କରମାଳିରେ
ସେ । ଦେବୀ
ବର ପ୍ରଦାନେ ଲଭ ତୁ ଦେବୀ
ଶାଖାମୃଗରେ ହୋଇ ପ୍ରଭବ । ସେ । ୪ ।

---

ଶବ୍ଦାର୍ଥ । (୩) ସରମା—ଶିକାରଯୋଗ୍ୟ । ବିଡ଼ାଳ—ବିରାଡ଼ି । ଫେରବ—ବିଲୁଆ । ବଳିମୁଖ—ମାଙ୍କଡ଼ । ବଳିଯାଇ—ଏମାନଙ୍କଠାରୁ ଏଥି ବଳିଯିବ । ତେଣୁ ବାରଣେ—ଅଙ୍କୁଶରେ । ବାରଣ—ହସ୍ତୀମାନଙ୍କୁ । ବାରଣ—ନିଷେଧ । ଦ୍ୱାସ୍ଥ—(ଦ୍ୱାରସ୍ଥ) ଦ୍ୱାରପାଳ କହିଲା—ସୁଧା ସ୍ରବିତ ବିଷ ଆପ୍ୟାନ (ପାନ) କଲ । ଏହିପରି ବୁଦ୍ଧି ଓ ସିଦ୍ଧି (ସଫଳତା) ପ୍ରକାଶିତ ହେଲ । ହନୁ ଆବିର୍ଭାବରେ ନଗର ଦ୍ୱାରର ହାତୀମାନେ ଚମକି ଉଠିବାରୁ ତାଙ୍କୁ ମାହୁନ୍ତ ଅଙ୍କୁଶରେ ଶାସନ କରି ବନ୍ଦ କଲଣି ଦେଇ ରଖିଲେ । ଦ୍ୱାରପାଳ କହିଲା । ସୀତା ହରଣରେ ଯେ ବୁଦ୍ଧିର ସାଫଲ୍ୟ ଜଣାଯାଇଛି, ତା ତ ଅମୃତ ମନେକରି ବିଷ ପିଇଛ । ଦେଖ କଣ ହେଉଛି ?

(୪) ଲଙ୍କାରେ—ଲଙ୍କାନଗରୀରେ । ଲଙ୍କାରେ—ବୃକ୍ଷଶାଖାରେ । ଲଙ୍କାରେ—ଶାକିନୀ ପିଶାଚୀରେ । ବିଧାରେ—ଆଘାତ କରନ୍ତେ । ଲଙ୍କଦେବୀ କହେ—ବେଦବର ବ୍ରହ୍ମାଙ୍କ ବର ପ୍ରଦତ୍ତ ହୋଇଛି ଏବଂ ତା ଜଣାଶୁଣା ଯେ ଏହି ରାବଣ ସୂର୍ଯ୍ୟବଂଶୀୟଦ୍ୱାରା ହତ ହେବ । ବର ପ୍ରଦାନ କଲ—ତୁ ଦେବୀ ସୀତାଙ୍କୁ ଲାଭକର । ଶାଖାମୃଗ—ମର୍କଟମାନଙ୍କରେ ପ୍ରଭାବିତ ହେଉ । ବେଦବର—ବ୍ରହ୍ମା । ପ୍ରଦତ୍ତ—ପ୍ରଦତ୍ତ । ସୁଖ୍ୟାତ—ପ୍ରସିଦ୍ଧ । କରମାଳି—ସୂର୍ଯ୍ୟ (ବଂଶୀୟ) ।

ପାଠାନ୍ତର—ନଗରାଗ୍ରଣୀ ବିଘାତରେ । ଦେବବର ବୀରବର ହେଲ ହାର ଦାରକାର ମାଳିକରେ ସେ । ଭ୍ରମି । ଦେବାର ରୋଷ ଭୁବନେ ଭ୍ରମି । ଫେରି ଦୃଷ୍ଟି ପାଶେ ପୁଣି ପୁଣି ।

ରଜେ ରଜନୀଚର    ପୁରରେ ସତ୍ୱର
ଭ୍ରମି ମହିଜା ଲୋକନେ
ଦୈତ୍ୟଶ୍ରେଣୀପୁର -    ଭୂଷଣ ସଦନେ
ସଦାଗତିଜ ତତ୍‌କ୍ଷଣ
ସେ । ନଷ୍ଟ
କୋଳେ ବିଲୋକି ରମଣୀଶ୍ରେଷ୍ଠ
ଘନେ ଅଚିର ଚିରଭା ଦୃଷ୍ଟ । ସେ । ୫ ।

ପୁଷ୍ପଜାତ ଶଯ୍ୟା    ପୁରତେ ତ୍ୱରିତେ
ଗମନ୍ତେ ସେହୁ ଉଷିତ
ଶଯ୍ୟା ତେଜ୍ୟା ଓଜ    ଗାମ୍ଭୀର୍ଯ୍ୟ ଏ ବିଶ୍ୱ
ତେଜ୍ୟା ବର୍ଜ୍ୟା ମର୍ଯ୍ୟାଦା ତ
ସେ । ବାସେ
ମଣ୍ଡି ବାଣୀ ସେ ବାଣୀ ନ ଭାଷେ
ଚମ୍ପା ଶମ୍ପା ଗୋରୀ ଅନୁକ୍ରୋଶେ । ସେ । ୬ ।

---

ଶବ୍ଦାର୍ଥ (୫) ରଜନୀଚର—ଅସୁର । ମହିଜା—ଜାନକୀ । ଲୋକନେ—ଦେଖିବାରେ । ଦୈତ୍ୟଶ୍ରେଣୀପୁର ଭୂଷଣ—ରାବଣ । ସଦନେ—ଗୃହରେ । ସଦାଗତିଜ—ହନୁମାନ । ନଷ୍ଟ—ଲୁଚିଗଲେ । ବିଲୋକି—ଦେଖି । ଘନେ—ମେଘରେ । ଅଚିର ଚିରଭା—ଚମକ ବିଜୁଳି ।

(୬) ପୁଷ୍ପଜାତ—ଫୁଲରେଣୁ । ପୁରତେ—ଅଗ୍ରତେ । ତ୍ୱରିତେ—ଶୀଘ୍ର । ଉଷିତ—ଆନନ୍ଦିତ । ଶଯ୍ୟାତେଜ୍ୟା—ଯାହାଙ୍କ ଶେଯରେ ଶୋଇବା ଉଚିତ୍ ସେଠାରୁ ଅନ୍ୟତ୍ର ଶୋଇବା । ଓଜ—ଶୋଭା, ଦୀପ୍ତି । ହନୁ ଭାବିଲେ—ଏହି ରମଣୀମଣି ନିଶ୍ଚୟ ସୀତା, ରାବଣ କୋଳରେ ଶୋଇଛନ୍ତି । ହାୟ ସେ କ'ଣ ନ କଲେ ! ରାମଙ୍କ ଶଯ୍ୟା ତ୍ୟାଗ କରି ଏ ବିଶ୍ୱର ଦୀପ୍ତି, ଗାମ୍ଭୀର୍ଯ୍ୟ ମର୍ଯ୍ୟାଦା ସବୁ ତ୍ୟାଗ କଲେ, ବର୍ଜନ କଲେ । ଛି, ଛି, କଣ ନ କଲେ ? ବାସେ—ଗୃହରେ । ମଣ୍ଡି—ମଣ୍ଡନ କରି । ଅନୁକ୍ରୋଶେ—ଦୟାକରି । ଚମ୍ପା—ଚମ୍ପକ । ଶମ୍ପା—ବିଦ୍ୟୁତ । ସେ କଥା କହି ମଧ୍ୟ କହିପାରିଲେ ନାହିଁ । କାରଣ ଅତ୍ୟନ୍ତ ପୂଜ୍ୟଶ୍ରୀ ସେହି ରମଣୀ ପ୍ରତି ଦୟା ପ୍ରକାଶ କରି । ସେ ଏତେ ବଡ଼ ଭୁଲ କରିଦେଲେ ମଧ୍ୟ ତାଙ୍କ ପ୍ରତି ନିନ୍ଦସୂ ହେବାର ଯୋଗ୍ୟତା ତାର ନ ଥିଲା । ଗୌରୀ—ଗୌରବର୍ଣ୍ଣା ।

ବଳରେ ବଳିଷ୍ଠ ବନ୍ଦିକରି ଦୁଷ୍ଟ
ଅବଳାକୁ ବଳତ୍କାରେ
ଅବଚ୍ଚ୍ୟର ନ ବଚ୍ଚ୍ୟର ବ୍ୟଭିଚ୍ଚ୍ୟରୀ
କଲା ହୀନ ପ୍ରକୃତରେ
ସେ । ଏତେ
ଭାଳି ବୀର ଆମୋଦ ବାରନ୍ତେ
ମନ୍ଦଗନ୍ଧବାତରେ ସ୍ପର୍ଶନ୍ତେ । ସେ । ୭ ।

ଭୋଗିନଜ ସୁଧା ହୀନେ ସମବେଧା
ଚନ୍ଦନେ ନୀଚ ସମିଧ
ସନେ କଲି ସମ ମୋଠାରୁ ସେ ହୀନ
ଜାଣିଲି ମୁହିଁ ନବୋଧ
ସେ । ଗଲା
ମଞ୍ଜୁ ବଞ୍ଜୁଳ ଆରାମେ ହେଲା
ସୁମୁଖୀରେ ବିମୁଖ ଦେଖିଲା । ସେ । ୮ ।

ହନୁ ଭାବିଲା—ବଳରେ ବଳିଷ୍ଠ ହୋଇ ଦୁଷ୍ଟ ଏହି ସୁନ୍ଦରୀ ଅବଳାକୁ ବଳତ୍କାରରେ ବନ୍ଦୀକରି ଭୋଗ କରୁଛି । ଏ ବ୍ୟଭିଚାରୀ ନିଷେଧ ଥିବା ନୀତରେ ବିଚାରବନ୍ତ ନ ହୋଇ ଯେ ହୀନ ପ୍ରକୃତ କରିଛି ତା ଅତୀବ ଘୃଣ୍ୟ । ଏପରି ଭାଳି ତାଙ୍କର ଆମୋଦ ବାରି କରି ଦେଖିଲା ଏବଂ ଦୂଷିତ ଗନ୍ଧ ପବନ ମଦ୍ୟାଦ ହେତୁ ଅନୁଭବ କଲା । ସେ କହିଲା—

ମୁଁ ଯାହା ଭୋଗିନଜ—ଭୋଗି (ଭୋଗିନ) ସର୍ପରୁ ଜାତ ଗରଳ । ଗରଳ ସହିତ ସୁଧା—ଅମୃତ । ହୀନେ—ନୀଚ । ସମ—ସମାନରେ । ବେଧା—ବ୍ରହ୍ମା ଏବଂ ଚନ୍ଦନ । ନୀଚ ସମିଧ—ଜାଳିବା କାଠ । ସନେ—ସହିତରେ ସମାନ କଲି । ହାୟ ମୋଠାରୁ ହୀନ କିଏ ଅଛି ! ମୁଁ ଜାଣିଲି ଏକାନ୍ତ ନବୋଧ ଅଟେ । ମଦ୍ୟ ଗନ୍ଧରେ ଏପରି ବ୍ୟଭିଚାରୀ ରାକ୍ଷସ କୋଳରେ ଏପରି ହିନ୍ନଭା ସୁରପାନ୍ଥୀ ନାରୀକୁ ମୁଁ ସୀତା ଭାବି କି ଅନ୍ୟାୟ କଲି ? ଏହା ଭାବି ସେ ମଞ୍ଜୁ—ସୁନ୍ଦର, ବଞ୍ଜୁଳ—ଅଶୋକ । ଆରାମେ—ଉପବନରେ । ହେଲା—ପ୍ରବେଶ କଲା । ତହିଁ ସୁମୁଖୀ—ଶୋକାକୁଳୀ । ବିମୁଖ—ବିମର୍ଷ ଥିବାର ଦେଖିଲା ।

ଉତ୍ତରଦେବର କନିଷ୍ଠ ମନ୍ଦିର
'ମଧ୍ୟେ ମିଳି ବାତ୍ତାମ୍ବକ
ସୀତା ଏ ବକ୍ଷେ ସୀତାରେ ଭ୍ରମି ସୀତା
କଲି ମନ୍ଦ ବୁଦ୍ଧି ଆଜ
ମୁଁ । ଧିକ ·
ଶିବ ମଲ୍ଲୀ କଲି ହୀରା ଲକ୍ଷ
ରକ୍ତ ଗୁଞ୍ଜେ ଗୁଞ୍ଜିଲି ମାଣିକ୍ୟ । ସେ । ୯ ।

ଅଶୋକେ ଅଶୋକେ ଅଶୋକ ଶୋକରେ
ମିଳି ଅଶୋକ ବନରେ
ରାମ ରାମ ରାମ ଉଚ୍ଚାରଣ ରାମେ
ସମ୍ଭ୍ରମେ ମନେ ବଗ୍ରରେ
ସେ । ଦେବୀ
ବାଣୀ ଶୁଣି ଶୁଣି ମନେ ଭାବ
କ୍ରବ୍ୟା ମାୟାରେ ମାୟାରେ ଭାବ । ସେ । ୧୦ ।

---

ଶବ୍ଦାର୍ଥ । (୯) ଉତ୍ତରଦେବ—(ଉତ୍ତରଦିଗପତି) କୁବେର । କୁବେରର କନିଷ୍ଠ—ରାବଣ । ସୀତା—ମଦ୍ୟ । ବକ୍ଷେ—ଗରଳରେ, ବିଷ୍ଠାରେ । ସୀତାରେ—ସୁନ୍ଦରୀ କାମିନୀରେ । ଭ୍ରମି—ଭ୍ରମରେ ସୀତା—ଜନକନନ୍ଦିନୀ ସୀତା । ଶିବ ମଲ୍ଲୀ—ଅର୍ଖ ଫୁଲ । ରକ୍ତ ଗୁଞ୍ଜ—ଲାଲ କାଇଁଚ । ଗୁଞ୍ଜିଲି—ଗଳାଇଲି, ଠେଲି ପୂରାଇଲି । ମାଣିକ୍ୟ—ରମଣୀୟ ମୂଲ୍ୟବାନ ମଣିବିଶେଷ ।

କୁବେରଙ୍କ ସାନ ଭାଇ ରାବଣ ଘରେ ହନୁ ମନ୍ଦୋଦରୀକୁ ସୀତା ବୋଲି ଭାବି ପକାଇ ଥିବାରୁ କହିଲେ—ଯେଉଁଠି ମଦ୍ୟ ଏବଂ ଗରଳ ଓ ବିଷ୍ଠା ପରି କୁତ୍ସିତ ପଦାର୍ଥ ମଧ୍ୟରେ ଅର୍ଥାତ୍ ମଦ୍ୟପ ରାବଣ ସହିତ ରହୁଥିବା ଏକ ସୁନ୍ଦରୀ କାମିନୀକୁ ଭ୍ରମରେ ଆଜ ମୁଁ ଜନକନନ୍ଦିନୀ ବୋଲି ଭାବିଲି, କି ମନ୍ଦବୁଦ୍ଧି ମୋର ନ ହେଲା ? ଅରଖ ଫୁଲକୁ ମୁଁ ଯାହା ହୀରା ବୋଲି ସ୍ଥିର କଲି ? ପୁଣି ଲାଲ କାଇଁଚ ଭିତରେ ଯାହା ପଦ୍ମରାଗ ମାଣିକ୍ୟକୁ ନେଇ ରଖିଲି ।

ଶବ୍ଦାର୍ଥ । (୧୦) ଅଶୋକେ—ଶୋକରହିତ ହୋଇ । ଅଶୋକେ ଅଶୋକେ—ଏକାନ୍ତ ଶୋକଗ୍ରସ୍ତ ହୋଇ । ଅଶୋକ—ଶୋକଗ୍ରସ୍ତ । ଶୋକରେ—ମନସ୍ତାପରେ, ଦୁଃଖରେ । ମିଳି—ପ୍ରାପ୍ତହୋଇ ରାମ ରାମ ରାମ ଉଚ୍ଚାରଣ କରି ରାମେ—ରାମଙ୍କୁ ସମ୍ଭ୍ରମ ସହିତ ମନରେ ଧ୍ୟାନ କରେ । କ୍ରବ୍ୟା—ଅସୁର । ମାୟା—ଦୁର୍ଗତିନାଶିନୀ ଦୁର୍ଗା । ହନୁ ଏକାନ୍ତ ଦୁଃଖରୁ ତ୍ରାଣ ପାଇ ଯେ ଏକାନ୍ତ ଶୋକଗ୍ରସ୍ତ ଥାଇ ଦୁଃଖରେ ଥିଲେ ସେହି ସୀତାଙ୍କୁ ଅଶୋକ ବନରେ ଭେଟିଲେ । ରାମ ରାମ ରାମ ଉଚ୍ଚାରଣ କରି ମନରେ ରାମଙ୍କୁ ସମ୍ମାନ ସହକାରେ ଧ୍ୟାନ କଲେ । ଦେବୀ ସୀତା ସେ କଥା ଶୁଣି ମନରେ ଭାବିଲେ ଏ ନିଶ୍ଚୟ ଅସୁର ମାୟା, ତେଣୁ ସେ ଦୁର୍ଗାଙ୍କୁ ସ୍ମରଣ କଲେ ।

ଗୁପ୍ତବାଣୀ ବାଣୀ　　　　ମନ୍ଦିର ଯେ ଛନ୍ଦ
ସମ୍ବରାରି ପୁରି ବାର୍ତ୍ତା ।
ଦଅନ୍ତେ ଅଙ୍ଗୁଷ୍ଠ　　　　ଭୂଷଣ ଭୂଷଣ
ଦୂଷଣ ଦେଲେ ଦେବତା
ସେ । କାଳେ
କହେ ଲଙ୍କଦେବୀ ଲଙ୍କପାଳେ
ତୋର ବଂଶ ଧ୍ୱଂସ ଏକାବେଳେ । ସେ । ୧୧ ।

ବିରାଜ ପୃଷ୍ଠରେ　　　　ବିରାଜ ହୃଷ୍ଟରେ
ବିରାଜ ରାଜ ବାମାରେ
ଭ୍ରମନ୍ତେ ଅଚଳ　　　　ସ୍ଥିତ ଏ ଅଚଳ
ଅରି ପୁରି ଲୋକନରେ
ସେ । ତୋଷେ ।
ମୁନି ଧୃତ ପତ୍ନୀଙ୍କ ରଭସେ
ଶୋକେ ଅଶୋକେ ସ୍ଥିତ ଆବାସେ । ୧୨ ।

---

(୧୧) । ଗୁପ୍ତ ବାଣୀ—ଗୁପ୍ତ କଥା । (ବାଣୀ ମନ୍ଦର ଯେ ଛନ୍ଦ)—ସଂସ୍କୃତ ଭାଷାଦ୍ୱାରା (ସମ୍ବରାରିପୁର ବାର୍ତ୍ତା) କାମପୁରର ଖବର ଅର୍ଥାତ୍ ରାମଚନ୍ଦ୍ର କହିଥିଲେ ଯାହା କି ରାମ ଜାଣନ୍ତି ଓ ସୀତା ଜାଣନ୍ତି ତାହା ହନୁ କହିବାର ରାମଙ୍କ ମୁଦ୍ରିକା (ଅଙ୍ଗୁଷ୍ଠି ଭୂଷଣ) ଅଳଙ୍କାର (ଭୂଷଣ) ଦେଲେ । ସେ ସମୟରେ ଦେବତା ଲଙ୍କଦେବୀ (ଲଙ୍କପାଳେ) ରାବଣକୁ କହିଲେ ତୋର ବଂଶ ଧ୍ୱଂସ ଏକାବେଳେ ହେବ ।

(୧୨) ହନୁ କହିଲେ—ହେ (ରାଜବାମା) ମହାରାଣୀ ! ବିରାଜମାନ କରନ୍ତୁ । ମୋ ପିଠିରେ (ପୃଷ୍ଠରେ) ଚଢ଼ନ୍ତୁ । ଆନନ୍ଦରେ (ହୃଷ୍ଟରେ) ବିଜେ କରନ୍ତୁ । ସୀତା କହିଲେ—ଏ (ଅଚଳ) ପର୍ବତ ପ୍ରାୟେ ମହାନ୍ ବୀରଙ୍କ ସହିତ (ଭ୍ରମନ୍ତେ) ବନବାସୀ ଥିଲି । (ଏ) ଏହାର ସେହି ଅଚଳ ମହାମେରୁ (ସ୍ଥିତ) ଏବେ ମଧ୍ୟ ଅଛନ୍ତି । (ଅରି) ଶତ୍ରୁ ପୁରବାସୀ ଦେଖୁଥିବେ (ଲୋକନରେ) ଏହା କଣ ଭଲ ହେବ ? ହନୁ ତା ଶୁଣି ତୋଷ ହେଲେ । ମୁନିଙ୍କ (ଧୃତ) ଧୈର୍ଯ୍ୟଶୀଳା ରମଣୀଙ୍କ ପ୍ରାୟ ସୀତାଙ୍କ (ରଭସେ) ଉତ୍ସାହ ବାକ୍ୟ ଶୁଣି ସେହି ଅଶୋକସ୍ଥିତ ଆବାସରେ ପୁନଶ୍ଚ ଏପରି କହିବାରୁ ଶୋକାକୁଳିତ ହେଲେ ।

ସ୍ୱପ୍ନାନ୍ତେ ସଚେତତେ ଉଚତେ ସଚେତତେ
ତୁରିତେ ଯାନ୍ତେ ଅଶୋକେ
ପ୍ରଚଣ୍ଡେ ଚଣ୍ଡେ ସେ ତରଜି ଉଦଣ୍ଡେ
ଉକ୍ତି କହଇ ସେ ବାକ୍ୟେ
। ସେ । ପଦ
ଦେଖାଇବୁ ବେନି ମାସ କତ
ଭିନ୍ନ ହେଲେ ହେବୁ ମୋର ସତ । ସେ ୧୩ ।

ବୁଦ୍ଧି ପ୍ରବୋଧି ମାରୁତେ ସନ୍ଧି ବିଧି
ପର୍ଯ୍ୟନ୍ତେ ଅନ୍ତର ହେଲ୍
ବଂଶତ ପୋଷିତ ବନେ ଉପଗତ
ଯଥା ରମ୍ଭା ନାଶ ହେଲ୍
ତା । ଜାଣି
ଶ୍ରେଷ୍ଠ ଜ୍ୟେଷ୍ଠକୁ ପେଷିଲ୍ ପୁଣି
ତ୍ୱିଷା ନଗମେ ତା ବାନ୍ଧି ଆଣି । ସେ । ୧୪ ।

(୧୩) ହନୁମାନ ଦେଖିଲେ ଯେ ରାବଣ ସ୍ୱପ୍ନରୁ ଉଠି ଚେତା ହୋଇ ସମ୍ପୂର୍ଣ୍ଣ ଚେତନା ଯୁକ୍ତ ଭାବରେ ଶୀଘ୍ର ଅଶୋକ ବନରେ ପ୍ରବିଷ୍ଟ ହେଲ । ଅବାଧ୍ୟ (ଉଦଣ୍ଡେ) ସୀତାଙ୍କୁ ନିରୀକ୍ଷଣ କରି କରି ଅତି ପ୍ରବଳ କ୍ରୋଧରେ ତର୍ଜନ ଗର୍ଜନ କରି କହିଲା—ଦୁଇ ମାସ ନିକଟରେ ତୋର ସ୍ୱାମୀକୁ ଦେଖାଇବୁ । ନଚେତ୍ ଏଥିରୁ କଥା ଭିନ୍ନ ହେଲେ ରେ ସତୀ ! ତୁ ନିଶ୍ଚୟ ମୋର ହେବୁ । ଉଦଣ୍ଡେ—ଅବାଧ୍ୟରେ । ଉକ୍ତି—ସ୍ପଷ୍ଟ । ତରଜି ପ୍ରଚଣ୍ଡେ ଚଣ୍ଡେ—ବାକ୍ୟେ କହଇ । ତରଜି—ଗର୍ଜି, ଧମକି ।

(୧୪) ମହାତ୍ମା ହନୁମାନ (ମାରୁତେ) ସ୍ୱ ବୁଦ୍ଧି ଅନୁକ୍ରମେ ସୀତାଙ୍କୁ ପ୍ରବୋଧନା ଦେଇ (ପ୍ରବୋଧି) ଶୁଭଜନକ ବିଧାତା ପ୍ରାପ୍ତେ (ସିଦ୍ଧି ବିଧି ପର୍ଯ୍ୟନ୍ତେ) ସେଠାରୁ ଅନ୍ତର ହେଲ ଏବଂ ରାବଣଦ୍ୱାରା ପାଳିତ ଏକ ରମଣୀୟ ବନରେ ଉପଗତ ହୋଇ ରାବଣ ଯେପରି ରମ୍ଭାକୁ ବଳତ୍କାରରେ ଧର୍ଷଣ (ଇଚ୍ଛା ବିରୁଦ୍ଧରେ ନାଶ) କରିଥିଲ ଲଗଲା ମୁକୁଳା କରି ସେପରି ସେ ବନକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲ । ତାହା ଜାଣିପାରି ରାବଣ ତାର ପୁତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ ଜ୍ୟେଷ୍ଠ ପୁତ୍ରକୁ ପଠାଇଲ । ସେ ବ୍ରହ୍ମାସ୍ତ୍ରରେ (ତ୍ୱିଷା—ତେଜ । ନିଗମ—ବେଦ । ବ୍ରହ୍ମତେଜ ଯନ୍ତ୍ରରେ ଥାଏ, ଏପରି ଅସ୍ତ୍ର ବ୍ରହ୍ମାସ୍ତ୍ର) ହନୁକୁ ବାନ୍ଧି ଆଣିଲ ।

ପାଠାନ୍ତର—ଭୂଷା ନକୁଳେ ତା ବାନ୍ଧିଆଣି । ଭୂଷା—ବଡ଼ ମୂଷା, ନକୁଳ—ନେଉଳକୁ ବାନ୍ଧି ଆଣିବା ପରି ଅର୍ଥାତ୍ ସବୁବେଳେ ଦେଖାଯାଏ ନେଉଳ ମୂଷାକୁ ଶିକାର କରେ, କିନ୍ତୁ ଏ କ୍ଷେତ୍ରରେ ଇନ୍ଦ୍ରଜିତରୂପୀ ମୂଷିକ ହନୁରୂପକ ନେଉଳକୁ ଶିକାର କଲା ।

ଯେତକ ଶିଖି      ଦତ୍ତ କରଣ ତାପ
ଉତ୍ତାପ ପ୍ରଜ୍ୱଳେ ଜଳେ
ଦହ୍ନିଲା କନକପୁର      ଲଙ୍କାଯାକ
ଦହନ ଦହନ ବେଳେ
ସେ । ସାର
ନିଗମରେ ଅଗମ୍ୟକୁ ପାର
ବେଳେ ସୁବେଳେ ବଳ ପାଶୋର । ସେ । ୧୫ ।

ତ୍ରିବଳ ତ୍ରିବେଳ      ହୋଇଣ ଆକୁଳ
ବ୍ୟାକୁଳେ ବାର୍ତ୍ତା ସଂକୁଳେ
ଦେଉ ଶୁଣା ମାତ୍ରେ      ହରି ପୁତ୍ର ମିତ୍ରେ
କହଇ ସମ୍ଭାଳ ଭଲେ
ସେ । ତହୁଁ
ଅଗ୍ରେ ଶୀଘ୍ରେ ଭେଟ ସହୁଁ
ସର୍ବେ ପ୍ରଣତ ହୁଅନ୍ତେ ସେହୁ । ସେ । ୧୬ ।

---

(୧୫) ହନୁକୁ ବାନ୍ଧି ଆଣି ତାର ଲାଞ୍ଜରେ ଯେତକ ବସ୍ତ୍ର ଗୁଡ଼ାଇ ଅଗ୍ନି (ଶିଖି) ଲଗାଇ (ଦତ୍ତ କରଣ) ଦେବାରୁ ତହିଁରେ ଉତ୍ତାପ ତାପ ପ୍ରଜ୍ୱଳେ ଜଳି ଉଠିଲା । ଫଳରେ ତାଦ୍ୱାରା କନକପୁର ଲଙ୍କାଯାକ ପୋଡ଼ିଗଲା । (ଦହ୍ନିଲା), (ବେଳେ) ସମସ୍ତ ଅନୁକ୍ରମେ (ଦହନ) ଅଗ୍ନିରେ ପୋଡ଼ିବା (ଦହନ) ସାର ଯୋଗାଦ୍ଧ ତିଷ୍ଠାରେ (ନିଗମରେ) ସମୁଦ୍ର (ଅଗମ୍ୟ)କୁ ପାର ହୋଇ ପୁଣି ସମୟରେ (ବେଳେ) ନିଜ ଭୂମିରେ ପହଞ୍ଚି (ସୁବେଳେ) ସେ ପୂର୍ବବଳକୁ ପାଶୋର ସ୍ୱଶକ୍ତି ଲାଭ କଲା ।

(୧୬) ରାମ ଲକ୍ଷ୍ମଣ ଏବଂ ସୁଗ୍ରୀବ (ତ୍ରିବଳ) ସନ୍ଧ୍ୟା, ସକାଳ, ମଧ୍ୟାହ୍ନ (ତ୍ରିବଳ) ସମୟରେ ଆକୁଳ ହୋଇ ବାର୍ତ୍ତା ସମୁଦାୟ (ସଂକୁଳେ) ବିଭିନ୍ନ ଭୂତଙ୍କଠାରୁ ପାଇବା ଲାଗି ବ୍ୟାକୁଳ ହେଉଥିଲେ । ଏପରି ସମୟରେ ହନୁ ଶୁଭବାର୍ତ୍ତା ଦେଉଁ ତାହା ଶୁଣିବା (ଶୁଣେ) ମାତ୍ରେ ସୁଗ୍ରୀବ (ହରି-ସୂର୍ଯ୍ୟ),-ପୁତ୍ର (ମିତ୍ର-ରାମଚନ୍ଦ୍ର)ଙ୍କୁ କହିଲେ ଚିନ୍ତା (ଭଲେ) ସମ୍ଭାଳ ନିଅ । ଏପରି ସମୟରେ ଶୀଘ୍ର ସମ୍ମୁଖରେ (ଅଗ୍ରେ) ହନୁ ସହୁଁ ଭେଟ ହେଲେ ସମସ୍ତଙ୍କ ଦୁଃଖ ଦୂର ହୋଇଗଲା । ଏବଂ ସେ ସମସ୍ତଙ୍କୁ (ସର୍ବେ) ପ୍ରଣାମ କଲେ ।

ପ୍ରମୋଦ ମଦେ ମୁଦ୍ରିକା ମୁଦ ଫେଇ
ଦେଲେ ସୁମିତ୍ରା ନନ୍ଦନ
ଧରି ରାମାରାମ ଧୀରେ ରାମରାମ୍ଭ
ହୃଦୟେ କଲେ ସ୍ମରଣ
ସେ । ଭଣି
ନୃପ ବିନାୟକ ସିଂହ ପୁଣି
ସ୍ମର ହୃଦୟରେ ଶୃପପାଣି । ସେ । ୧୭ ।



---

ଅତି ଆହ୍ଲାଦରେ (ପ୍ରମୋଦ ମଦେ) ମୁଦ ଫିଟାଇ (ଫେଇ) ମୁଦ୍ରିକାକୁ ଲକ୍ଷ୍ମଣ (ସୁମିତ୍ରା ନନ୍ଦନ) ଦେଲେ । ତାହା ଧରି ରାମ (ରାମରାମ୍ଭ) ଧୀରେ ତାଙ୍କର ରାମା ଯେ ଏକ ଉପବନରେ ବିଶ୍ରାମ କରିଛି (ରାମାରାମ) ଏହା ହୃଦୟରେ ସ୍ମରଣ କରି ଶାନ୍ତ ଲାଭ କଲେ । ଜାନକୀ ଯେ ଜୀବନରେ ଅଛି ଏହା ହିଁ ଶୁଣି ସେ ମୋହିତ ହେଲେ । ପୁନଶ୍ଚ ଶୃପପାଣି ରାମଙ୍କୁ ହୃଦୟରେ ସ୍ମରଣା କରି ନୃପ ବିନାୟକ ସିଂହ ଏ ଛାନ୍ଦ ଭଣିତ କରେ ।

ପାଠାନ୍ତର । ଧରି ରାମ ରାମ ଧରି ରାମ ରାମ୍ଭ ।

# ରାଘବ ବିଳାସ

## ତ୍ରୟସ୍ତ୍ରିଂଶ ଛାନ୍ଦ

ଏହି ଛାନ୍ଦଟି **କାମୋଦ ବୃତ୍ତରେ** ମୋଟେ ଦଶ ଗୋଟି ପଦରେ ରଚିତ ହୋଇଛି ।

ହନୁଙ୍କୁ ବାନ୍ଧି ନେଇ ରାବଣ ଯେତେବେଳେ 'ତୁ କିଏ ? କାହିଁକି ଆସିଛୁ ?' ବୋଲି ପ୍ରଶ୍ନ କରିଥିଲା, ସେ କହିଥିଲେ ଯେ ମୁଁ ତାଙ୍କର ଦୂତ, ତୁ ଯାହାଙ୍କ ପତ୍ନୀଙ୍କୁ ବଳାତ୍କାରରେ ଭେଳକି ଦେଖାଇ ଚୋରାଇ ଆଣିଛୁ ।'

ଯଦି ତୋର ଭଲ ଗତି ଅଛି ତେବେ ରାମଙ୍କଠାରେ ଶରଣ ଧ୍ୟାନ ରଖି ସୀତାଙ୍କୁ ଫେରାଇ ଦେ । ନଚେତ୍ ତୁ ଧ୍ୱଂସ ହେବୁ ।

ଏହି ଦଶଟି ପଦରୁ ୩ଟି ମାତ୍ର ପଦ **ନିଖୁଣ ମିଳିଥିଲା । ବାକିଟିମାନ** ଏତେ ଅସଂପୂର୍ଣ୍ଣ ଯେ ତାହା ବହୁ କଷ୍ଟରେ ସଜ୍ଜିତ କରାଯାଇଛି ।

ଏହି ଛାନ୍ଦଟି ଗାନ କଲେ ଏପରି ମଧୁର ଏବଂ ରୋମାଞ୍ଚକର ତାହା ଅନୁଭବ ନ କଲେ କହି ହେବ ନାହିଁ ବା ବୁଝି ହେବ ନାହିଁ ।



# ରାଘବ ବିଳାସ

## ଭ୍ରଷ୍ଟଭ୍ରଂଶ ଛାନ୍ଦ

### ରାବଣଙ୍କୁ ହନୁମାନର ଉକ୍ତି

( ରାଗ—କାମୋଦ )

ଦ୍ୟୁମଣିଙ୍କ ସମ୍ଭୂତ        ଦଶ ସ୍ୟନ୍ଦନ ସୁତ
ହୋଇଛୁ ପଦେ ଭକ୍ତିରତ
ବଳ ବଳିଷ୍ଠ ଶ୍ରେଷ୍ଠ        ନାହିଁ କେହି ବଶିଷ୍ଟ
ସରୋଜ ଉଦ୍‌ଭବ ସତ୍ୟ
ରେ ବଂଶପାଣି
ଯାହାର ପାଦ ମୂଳ ଜାଣି
ଯଷ୍ଟାଉ ପୁଣ୍ୟବନ୍ତ ଶ୍ରେଣୀ
ଯା କରେ ରଟ ରଟ        ମଟ ସୁଷ୍ଟୁ କାର୍ମୁକ
କର ଯା ଭଣିଛନ୍ତି ପୁଣି ରେ । ୧ ।

ଦେଖାଇଣ ହରଣ        ସୌବର୍ଣ୍ଣେ ବହୁରଣ
ମହି ସୁତା ନେଲୁ ହରଣ
ଏଥକୁ କି କାରଣ        ହେଉଛୁ ଗର୍ବକ୍ଷୀଣ
ବଧବା ହେବାର କାରଣ
ରେ ଦୈତ୍ୟରାଣ
ଅନୁଜ ଅଟନ୍ତି ଲକ୍ଷ୍ମଣ
ଯା ବାଣ ଦହେ ଭୂତକ୍ଷଣ
ରଣେ କ୍ଷଣେ କୀକ୍ଷଣେ        ବଣେ ବୀରାଧି ଗଣେ
ଭ୍ରମନ୍ତି ଯାର ଅନୁକ୍ଷଣ ରେ । ୨ ।

---

ଶବ୍ଦାର୍ଥ । (୧) ଦ୍ୟୁମଣି—ସୂର୍ଯ୍ୟ । ଦଶ ସ୍ୟନ୍ଦନ—ଦଶରଥ । ସୁଷ୍ଟୁ—ଭଲରୂପେ । କାର୍ମୁକ—ଧନୁ ।

ପ୍ରବଞ୍ଚକ ବିସଜ୍ଜେ        ଜଟା କପର୍ଦ୍ଦି ବ୍ୟାଜେ
ମୃଗାକ୍ଷୀରେ ନିର୍ମାଖୀ ଦେଖି
ନିର୍ବ୍ରିତ ମୂର୍ତ୍ତି ମଣି        ନିମ୍ନର୍ମେ ଭିକ୍ଷା ଆଣି
ଦିଅନ୍ତେ ସ୍ୟନ୍ଦେ ଦେଲୁ ରଖି
ରେ ବ୍ୟାଳ ଦୈତ୍ୟ
ରତ୍ନ ରତ୍ନ ତୋର ରାଜତ୍ୱ
କପି ବ୍ରାତେ ହେବୁ ନିହତ
ହୃତ ତୋତେ ଉଚିତ        ସୂତ ସ୍ନୁଷା ପ୍ରଦତ୍ତ
କରି ହୁଅ ତୁ ରାମେ ନତରେ । ୩ ।

ହୋଇ ନିରପତ୍ରପ        ନିରଙ୍କୁଶେ ନିରତ
ଯେତେ ଆତଙ୍କ ଅଛୁ ସୃଜି
ନିରଭିମାନ ପୂର୍ଣ୍ଣ-        ବ୍ରହ୍ମ ନିରବଚ୍ଛିନ୍ନ
ସନ୍ଧା ସାନ୍ଧିବ ତୋରେ ପାଜି
ରେ ଦୈତ୍ୟ ରାଟ
ସନ୍ତେ ସଂଭ୍ରମି ଅସଂତୁଷ୍ଟ
ସଂସ୍ପର୍ଶି ଦକ୍ଷଜାଙ୍କ ପଛ
ସମ୍ଭବ ସମ୍ଭାଷଣ        ସରୀସୃପ ତୁ ସମ
ତୋହ ବିନଷ୍ଟ ଏକା ବାଟ ରେ । ୪ ।

ଶବ୍ଦାର୍ଥ । (୩) ବିସଜ୍ଜେ—ବିଶେଷ ସଜ୍ଜିତ ହୋଇ । କପର୍ଦ୍ଦି—ମହାଦେବ, ଶିବ । ବ୍ୟାଜେ—ଛଳନାରେ । ନିର୍ବୃତ—ସନ୍ତୋଷମୟ । ସ୍ୟନ୍ଦେ—ରଥରେ । ବ୍ୟାଳ—ହିଂସ୍ର, କ୍ରୁର । ବ୍ରାତେ—ସମୂହରେ । ସୂତ—ସୂର୍ଯ୍ୟ । ସ୍ନୁଷା—ବଧୂ (ସୀତା) । ନିରପତ୍ରପ—ଲଜ୍ଜା ହୀନ । (୪) ନିରଙ୍କୁଶେ—ସ୍ୱେଚ୍ଛାଚାରୀ ହୋଇ । ସନ୍ଧା—ପ୍ରତିଜ୍ଞା । ସାନ୍ଧିବ—ଦଳିବ । ଦକ୍ଷଜା—ସତୀ, (ସୀତା) । ପଛ—ପାଟ ।

ପାରିଭଦ୍ର ଦାରୁରେ ନେଇ ସୀତା ତୀରରେ
ସୀତାଂଶୁ କସ୍ତୁରି ମଳାରେ
କ୍ଷୀର ଶର୍କର ରସ ଭରି ପ୍ରତି ନିମେଷ
ସିଞ୍ଚନ୍ତେ ଖଣ୍ଡ ଝୁରି ମରେ ରେ
ଗଣ୍ଡ ମୂର୍ଖ
ତହୁଁ ତୁ ଭକ୍ତ ଅଭକ୍ତ
ମାକନ୍ଦେ କାହୁଁ ହେବୁ ମିତ୍ର
ହେଉ ପୂରଟ ପୂର କୌଶିକେ ତା କୋଟର
ତେଣୁ ତୁ ଲମ୍ପଟେ ପ୍ରଶସ୍ତରେ । ୫ ।

ଶାବର ବିଦ୍ୟାସାଧି ଶାତକୁମ୍ଭେ ପ୍ରସିଦ୍ଧି
ମାୟା ମାରିଚେ ମୃଗ ସାଜି
ଧର୍ମିଷ୍ଠ ଆର୍ଯ୍ୟଜନ ମନ କଲୁ ହୃନନ
ତୋ ହର୍ଷ ଶାଖାମୃଗ ଗାଜି ରେ
ବାଜି ଠକ
ବାଜ ବାଗୁରା ବାଗୁରିକ
ବାଗେଟି ବାଡ଼ିଆ ଦେବେକ
ଭଲ ଗତ ଅଛୁ ତ ନିଦିଧ୍ୟାସନେ ରତ
ଲଗାଟି ଶାକେତ ନାୟକ ରେ । ୬ ।

ଶବ୍ଦାର୍ଥ । (୫) ପାରିଭଦ୍ର—ନିମ୍ବ । ସୀତା—ମନ୍ଦାକିନୀ । ସୀତାଂଶୁ—କର୍ପୂର, ମଳା । ମାକନ୍ଦ—ଆମ୍ବ । ପୂରଟ—ସ୍ୱର୍ଣ୍ଣ । କୌଶିକ—ପେଚା । (୬) ଶାବର—ଇନ୍ଦ୍ରଜାଲ ବିଦ୍ୟା । ଶାତକୁମ୍ଭ—ସୁବର୍ଣ୍ଣ । ଶାଖାମୃଗ—ବାନର । ବାଜି—ଇନ୍ଦ୍ରଜାଲ । ବାଜ—ଛଞ୍ଚାଣ । ବାଗୁରା—ଫାଶ । ବାଗୁରିକ—ବ୍ୟାଧ, ଲୁବ୍ଧକ । ନିଦିଧ୍ୟାସନ - ଗଭୀର ଧ୍ୟାନ । ଶାକେତ—ଅଯୋଧ୍ୟା ।

ହୀନ ଜମ୍ବୁକ ପର  କେଶରଣୀ ତୁ ହର
ଶ୍ୱବତୁ ବଚଣ୍ଡଲୁ ସୁଖେ
ଶିଳା ମାଳା ଗଳାରେ  ବାନ୍ଧି ପାରାବାରରେ
ପାଶକେ କି ପ୍ରସୁପ୍ତ ମୁଖେ ରେ
ଉନ୍ମାଦକ
ମୟୂର ମଦ୍‌ଗୁର କି ଏକ
ଗରୁଡ଼େ ଯେଉଁ ଭେଦ କାକ
ତୁ ଦୁର୍ଗନ୍ଧ କର୍ଦ୍ଦମ  ରାମ ସ୍ନିଗ୍ଧ ଚନ୍ଦନ
ମକ୍ଷୀକା ଆଜ୍ୟ ଅଜୀର୍ଣ୍ଣକ ରେ । ୭ ।

ଦୂଷଣ କର ଦୂର  କ୍ରୋଧ ତେଜି ଦୁଷ୍ଟର
ଦୃପ୍ତ ଦୃଢ଼ତା ପରଧନେ
ନିବାର ନିକେ ଗୂଳ  ହୋଇବୁ ନିକଞ୍ଜାଳ
ନିଗୂଢ଼ ଅକୀର୍ତ୍ତି ନିଧନେ ହେ
ଲଙ୍କାରାଣ
ଲହୁଲ ଲଳନା ଲଲାମ
ଲୂନ ଲାବଣ୍ୟ ଲୀଳା ଧାମ
ଲୁଚକାଳୀ ପରତରେ  ରାମ ରାମ ପଦ୍ମରେ
ଅରପି ଲୁଗ୍ଧ ଲାଞ୍ଛନ ହେ । ୮ ।

---

ଶବ୍ଦାର୍ଥ । (୭) କର୍ଦ୍ଦମ—କାଦୁଅ । ଜମ୍ବୁକ—ଶୃଗାଳ । ପ୍ରସୁପ୍ତ—ନିଦ୍ରିତ । ମଦ୍‌ଗୁର—ପାଣିକୁଆ । ଆଜ୍ୟ—ଘୃତ । (୮) ଲୂନ—ଛିନ୍ନ । ଲାଞ୍ଛନ—କଳଙ୍କ ।

ନାହିଁ ମୋ ପକ୍ଷପାତ ସେବକ ମାତ୍ର ଦୂତ
ପ୍ରସାରୁ ପାଣି ମୋ ବନତ
ସୀତା ନୁହଇ ସିତା ସିତକର ସଂଯୁକ୍ତା
ତୃଷା ମେଣ୍ଟିବ ପାଣି ଭର୍ତ୍ତି
ହେ ଦାନବେଶ
ସୀତା ତ ଶିତ ଅସିଧାର
ନଖୁ କେଶାଗ୍ର ଶାଣ ଖୁର
ତହିଁ ଜିହ୍ୱା ଲେହନ କରବା କି କାରଣ
ଅସୁ ନାଶ ହେବ ତୁମ୍ଭର ହେ । ୯ ।

ବାରିଧି ମଧ୍ୟେ ବାସ ଜଣାଗଲା ମୁହିଁ।ସ
ନାଶ ତୁ ଭଜିବୁ ଅକ୍ଲେଶ
ପାଶଧର ପାରୁଶ ଜୀବନକୁ ଆଦର୍ଶ
କଲେ କର୍କଶ ହେବ ଶେଷ
ରେ ଦଶଆସ୍ୟ
ବନାୟୁକଙ୍କ ଏହି ଭାଷ
ନୀଳାଚଳରେ ଯାର ବାସ
ସେ ଜଳଜ ଚରଣ ସଦା କରଣ ଧ୍ୟାନ
କଲ୍ମଷ ହେଉ ମୋର ଧ୍ୱଂସ ରେ । ୧୦ ।

---

ଶବ୍ଦାର୍ଥ । (୯) ସିତା—ଶର୍କରା । ସିତକର—କର୍ପୂର । ଶିତ—ତୀକ୍ଷ୍ଣ । ଅସୁ—ପ୍ରାଣ ।
(୧୦) ମୁହିଁ।ସ—ମୋହ, ଆଶକ୍ତ । ପାଶଧର—ଯମ । ଜଳଜ—ପଦ୍ମ ।

# ରାଘବ ବିଳାସ

## ଚତୁସ୍ତ୍ରିଂଶ ଛାନ୍ଦ

**କୁମ୍ଭ କାମୋଦ ବୃତ୍ତରେ** ଛତିଶ ପଦରେ ଏହି ଛାନ୍ଦଟି ରଚିତ ହୋଇଅଛି ।

ହଠାତ୍ ରାବଣ ସମ୍ବାଦ ପାଇଲା ଯେ ଏକ କପି ଆସି ଲଙ୍କା ଗଡ଼ରେ ଉପସ୍ଥିତ ହୋଇ ତାର ଶକ୍ତି କଳନା କରି ଚାଲିଛି । କ୍ରୁଦ୍ଧ ରାବଣ ଅଶୋକ ବନରେ ପହଞ୍ଚି ସୀତାଙ୍କୁ ଅସି ଘାତରେ ଦ୍ୱିଖଣ୍ଡିତ କରିଦେବାକୁ ଭୟ ଦେଖାଇ ବଶ କରିବାକୁ ଇଚ୍ଛା କଲା । କିନ୍ତୁ ସତୀ ସୀତା ବଶ ନ ହେବାରୁ ସେ ରାକ୍ଷସୀମାନଙ୍କୁ ଅତ୍ୟାଚାର କରି ତାଙ୍କୁ ମନାଇବାକୁ କହି ଚାଲିଆସିଲା ।

ଏହି ଅବସରରେ ରାମଙ୍କର ଜୀବନ କଥା ପରିଚୟ ସୂତ୍ରରେ ଦେଇ ହନୁ ସୀତାଙ୍କୁ ରାମଙ୍କ ମୁଦି ଦେଖାଇ ଚିହ୍ନା ହେଲେ । ସୀତା ମୁଦିଟି ପାଇ କାନ୍ଦି ଉଠିଲେ ।

ହନୁ ତାଙ୍କୁ କାନ୍ଧରେ ବସାଇ ନେଇ ଯିବାକୁ କହନ୍ତେ ସୀତା ଅନିଚ୍ଛା ପ୍ରକାଶ କଲେ । ଏବଂ ନିଜର ଶିରୋମଣିଟି ଦେଇ ଦେଲେ ।

ହନୁ ଏହାପରେ ଉପବନ ଧ୍ୱଂସ କରନ୍ତେ ବନ୍ଧନରେ ପଡ଼ିଲେ । ଏବଂ ଲଙ୍କା ଦଗ୍ଧ କରି ଫେରି ଆସିଲେ, ଏବଂ ରାମଙ୍କୁ 'ଦୁଇ ମାସ ମଧ୍ୟରେ ସୀତାଙ୍କୁ ଉଦ୍ଧାର ନ କଲେ' ରାବଣ ତାଙ୍କୁ ହତ କରିବା କଥା କହିଲେ ।

ଏହି ବିବରଣ ଅତ୍ୟନ୍ତ ବିସ୍ତୃତ ଭାବରେ ଏ ଛାନ୍ଦରେ କୁହାଯାଇଛି । ଅଥଚ ଅନ୍ୟ ଦୁଇଟି ଛାନ୍ଦରେ ଗୋଟିକରେ ହନୁ ରାବଣକୁ କରୁଥିବା କଟୂକ୍ତି ଏବଂ ଉପଦେଶ ଏବଂ ଅନ୍ୟଟିରେ ହନୁ ଲଙ୍କାରେ ପ୍ରବିଷ୍ଟ ହୋଇ ମୁଦି ମୁଦ୍ରିକା ସହିତ ଫେରିବା ଯାଏ ସଂକ୍ଷେପରେ ବର୍ଣ୍ଣିତ ଅଛି ।

ରଚନାରେ ଏପରି ଅନେକ ସମୟରେ ପୁନରୁକ୍ତି ଘଟିଥାଏ । ଅଥବା ଉକ୍ତ ଛାନ୍ଦଟି ଯଦୁମଣିଙ୍କ ନାମରେ ଭଣିତ ହୋଇଥିବା ଯୋଗୁଁ ତାହା ଗୋଟିଏ ସ୍ୱତନ୍ତ୍ର ରଚନା ମଧ୍ୟ ହୋଇପାରେ ।



# ରାଘବ ବିଳାସ

## ଚତୁସ୍ତ୍ରିଂଶ ଛାନ୍ଦ

## (ହନୁର ସୀତାଠାବ, ଲଙ୍କାଦଗ୍ଧ)

( ରାଗ—କୁମ୍ଭକାମୋଦ )

ବୁଧ ଶୁଦ୍ଧ ବୋଧ    ଚରିତ ପ୍ରସିଦ୍ଧ    ରାଘବ ବିଳାସ
ଶ୍ରବଣେ ଦୂରିତ    ବିନାଶ ତ୍ୱରିତ    ଆନନ୍ଦ ମାନସ
ଲଙ୍କପାଳ ଲଙ୍କ    ପାଳ ଅଗ୍ରେ ବ୍ୟଗ୍ରେ    ସମ୍ବେଶ ଆବେଶ
ଲଙ୍କା ଶଙ୍କା ବାଧା    ଆରେ ଦଶ ମୂର୍ଦ୍ଧା    ସିଦ୍ଧ ବେଧାଦେଶ । ୧ ।

ବଳୀ ମୁଖ ମିଳି    ତୋ ଭୁବନେ କଳି    ରାମାଦେଶ ପାଳି
ତୁ ହରି ବନିତା    ପାର୍ଶ୍ୱେ ଦେଇ ବାର୍ତ୍ତା    ଭୀତି ହୀନେ ଚଳି
ଅକଣ୍ଟକ ଗଡ଼େ    କଣ୍ଟକ ନିବଡ଼େ    ଆଜ ରାଜ ସ୍ଥିତି
ତାର ପ୍ରଭାବରେ    ତାର ପ୍ରଭା ମୋରେ    ବିହୀନ ବ୍ୟସ୍ଥିତ । ୨ ।

ସଚେତଣ ଭାଳି    ସେ ଦଶ ମଉଳି    ଚଳିଲି ଅଶୋକେ
ଅନୁଚର ମିଳି    ପ୍ରଜ୍ଜ୍ୱଳନ ଜାଳି    ମାର୍ଗରେ ଆଲୋକେ
ମନ୍ଦସୁତା-କୁଚ    କସ୍ତୁରି-ପ୍ରପଞ୍ଚ    ବୁଦ୍ଧି, ବିଂଶାକ୍ଷଣ
ଆରାମରେ ରାମ    ରାମା ସନ୍ନିଧାନ    ପ୍ରବେଶି ତତ୍କ୍ଷଣ । ୩ ।

ଅକଳ୍ପବ ଲୁପ୍ତ    କରି ଜଗନ୍ନାତ    ତା ଗର୍ବ ବିଲୋକି
ପୂର୍ବ ଦେବ ଈଶ    ଉକ୍ତିକ ପ୍ରକାଶ    ବଶ ନୋହୁ ତୁ କି ?
କରି-ବାଳ କରି    ଧୃଷ୍ଟେ ରେ ଅଶିର    କଲୁ କେ ସପକ୍ଷ
ନିଠୁର ଅନ୍ତକ    ମୁଁ ନିଠୁରାନ୍ତକ    କେ ମୋ ସମକକ୍ଷ । ୪

ଶବ୍ଦାର୍ଥ । ବଳୀମୁଖ—ବାନର । ତୁ ହରି—ତୁ ହରଣ କରିଥିବା । ମନ୍ଦସୁତା—ମନ୍ଦୋଦରୀ । ବିଂଶାକ୍ଷଣ—ରାବଣ । ରମ-ରମା—ସୀତା । ପୂର୍ବଦେବ ଈଶ—ଅସୁର ପ୍ରଭୁ । ଉକ୍ତିକ—ବଚନକୁ । ଅଶିର—ମୁଣ୍ଡସ୍ଥାନ ।

ଅଯୋଧ୍ୟା ପତି ସନ୍ତତି ସେ କି ପତି କୁତ୍ସିତ ବଚନ
ଅନ୍ତରରୁ ସେ ତ କରି ଦେଉ ତ୍ୟକ୍ତ ଦୁଃଖେ ବନଚରୀ
ସେ ଯେ ଏ କାନନ ବିପୁଳରେ ହୀନ ତୁ ସାରସା-ନନୀ
ବିଧୁ ବୈଶ୍ୱାନର ବିଧିରେ ଆଦର ବନମାଳୀ ଭଣି ।୫।

କନକ ପୂରିତ କନକ ପୂରିତ ଯୁକ୍ତି ଯୁକ୍ତ ଘେନ
ନୋହିଲେ ବରଦ କରିବ ନାରଦ ଦର୍ଶନେ ଶମନ
ଚତୁର ଚତୁର ପକ୍ଷରେ ଚତୁର ନ କରାଇ ଭେଟ
ବିନାଶ ନକର ବିନାଶନକର କରିବ ପ୍ରକଟ ।୬।

ଅଶ୍ରପି ମୁକୁଟ ଅଶ୍ରପି କି ମେଣ୍ଟ କରି କ୍ରୋଧେ ଭ୍ରୁଷି
ରଦ ଦେଖାଇଣ ଦର କରାଇଣ ବଶରେ ସୁକେଶୀ ।
କହିଣ ଏମନ୍ତ ପ୍ରତିରୁ ଗତ ସୁରତେ ସୁରତେ
ବିମୁଖର ଗିର ବିମୁଖି ପ୍ରଚୁର ସୁମୁଖି ଅଗ୍ରତେ ।୭।

ତୋ ଗାତ୍ରରୁ ପଳ କରିଣ ବିପଳ ପଳ ପଳ କରି
ସୁ ଅବକାଶରେ ନୋହିଲେ ବଶରେ କେ ପକ୍ଷ ତୋହରି ।
ସରମା ଦୁହିତା ପ୍ରୀତେ ହୋଇ ହିତା ବିହିତ ପ୍ରକାଶି
ଦୁଃଖାଗ୍ନି ଧୂପିତ ବାତାନ୍ତରେ ହତ କି କଷ୍ଟ ସୁହୃଷି ।୮।

ଶବ୍ଦାର୍ଥ । ନାରଦ—କୋନ୍ଦଳ । ଅଶ୍ରପ—ରାକ୍ଷସ । ଅଶ୍ରପି ମୁକୁଟ—ରାବଣ ।
ଅଶ୍ରପି—ରାକ୍ଷସୀ ।

ଗଣ୍ଡୁକ ଗଣ୍ଡରେ ଚଳଲେ ଗୃଣ୍ଡରେ ସୁଅଙ୍ଗ ଧୌତାର୍ଥେ
ବଳ ମୁଖ ଚଳ ବଳ ବଭୂତ କ ଭୂତ କୀର୍ତ୍ତି ସ୍ୱାର୍ଥେ
ବରାଟ ବରାଟ ରାଟ ଶ୍ରେଷ୍ଠ ଶ୍ରେଷ୍ଠ ଦଗ୍‌ବାସ ତନୁଜ
ଅଜ ଭୂପାତ୍ମଜ ଦେବ ରାମ ରାଜ ସଙ୍ଗତେ ଅନୁଜ ।୯।

ଭୂପ ମୁନ ସଙ୍ଗେ ଗମନ୍ତେ ସରାଗେ ଅଶ୍ରପି ବନାଶି
ତାଙ୍କ ମଖ ରଖି ଶିଳାକୁ ସୁମୁଖୀ ଶ୍ରୁତ ଧାର ତୋଷି
ତୋ ପିତା ପ୍ରଦତ୍ତ ପଣ କର ହତ କ୍ରୀଡ଼ା ଅନନ୍ତେଶ
ପରିଣତ ପର ଶଯ୍ୟାନ୍ତରେ ଫେର ଆନନ୍ଦ ବଶେଷ ।୧୦।

ସୁର ଦରେ ଯୁକ୍ତ ନିନେନ ସମ୍ଭୂତ ସ୍ୱରାଜ୍ୟ ବର୍ଣ୍ଣିକୁ
ଉପସର୍ଗ କର ଚତୁର୍ଥ ବର୍ଗର ନିବର୍ଣ୍ଣ ଯୁକ୍ତକୁ ।
ତା ସୁତ ବଖ୍ୟାତ ଗର୍ବ କର ହତ ଅନ୍ତେ ବର୍ଣ୍ଣାଶ୍ରମ
ମହୀଜା ସଙ୍ଗତ ଲକ୍ଷ୍ମଣ ନାମ ତ କରେ ଧନୁର୍ବାଣ ।୧୧।

ଭଗ୍ନି ଦେବାରୀଶ ଶୃହା କରୁଁ ନାଶ ଦଣ୍ଡକେ ଦଣ୍ଡକେ
ତୁମ୍ଭକୁ ଆଣନ୍ତେ କୀଶ ଈଶ ମିନେ ଗୃହ ଚତୁର୍ଦ୍ଦିକେ ।
ଅଞ୍ଚଳୁ ଚଞ୍ଚଳ ଅନାମିକା ଶୋଭା ଦେଇ କ୍ଷିତ ପାତ
ଶୋକେ ଗଲେ ବୁଡ଼ ହା ନାଥ ଉଚ୍ଚାର ହୃଦ ପଙ୍କଜତ ।୧୨।

ଶବ୍ଦାର୍ଥ । ଅଜ ଭୂପାତ୍ମଜ—ରାମ । ଅନୁଜ—ଲକ୍ଷ୍ମଣ । ଭୂପମୁନ—ବଶ୍ୱାମିତ୍ର । ଅଶ୍ରପି—ତାଡ଼କା । ମଖ—ଯାଗ । ଶିଳା—ଅହଲ୍ୟା । ସୁମୁଖୀ—ସୁନ୍ଦରୀ । ଶ୍ରୁତଧାର—ଗଙ୍ଗା । ତୋପିତା ପ୍ରଦତ୍ତ ପଣ—ହରଧନୁ । ହତକର—ଭାଙ୍ଗି । କୀଶ—ମର୍କଟ । ମହୀଜା—ସୀତା । ଦେବାରୀଶ—ରାବଣ । ଦେବାରୀଶ ଭଗ୍ନି—ସୂର୍ପଣଖା ।

ମୋ ଯୋଗେ ଅଙ୍ଗୁଳ ଶୋଭନ ମଣ୍ଡଳ ଏ ବିଚିତ୍ର ଗତି
ଏ ଅନୀତି ନତି କରେ କି ମୋ ପ୍ରତି ସେ ମନ୍ଦ ପ୍ରକୃତି ।
ନ ଧର ବିପକ୍ଷ ଗୁହ୍ୟତ ବିପକ୍ଷ କେବଣ୍ଟେ ଅର୍ଦ୍ଧି ଲଙ୍ଘି
ନାମ ଅଭିରସ ଗୁପତ ପ୍ରକାଶ ଶୁଣି ଭଣି ବେଗି ।୧୩।

ଇନ୍ଦ୍ରାରିର ସୁତ ନାମ ହନୁମନ୍ତ ମଧୁପୁର ବାର୍ତ୍ତା
ପ୍ରଦୀପ ସାକ୍ଷିରେ ଅନ୍ୟ ପତ୍ନୀ ବରେ ନାସ୍ତି କି ମମତା
ଚିତ୍ର କୂଟେ ଚିତ୍ର ବକ୍ଷରେ ବିଚିତ୍ର ଶୋଭି ଗଇଛି କି
ବିଭୁ ମାତା ପିତା କୃପାରେ ଲଙ୍ଘ ତା ସରିତେ ଶୋଦକ ।୧୪।

ସଗରଜ କୀର୍ତ୍ତି ପୃଷନ୍ତିର ମତି କୃପା ଉପମାରେ
ଦାସ ସ୍କନ୍ଧ ଦେଶ ବିକେ କର ମାତ ବିଭୁ ସମୀପରେ
ହେ କୀଶ ଉଚାର ଏ କପ ପ୍ରଚ୍ଛର ଚ୍ଛେର ଏ ଯୁଗ୍ମରେ
ଏ ନହେଁ ବିହିତ ମୋ ପକ୍ଷେ ଅହିତ ଅହିର ପ୍ରକାରେ । ୧୫ ।

ଦୁଃଖାଗ୍ନି ଉତ୍ତାପ ବେଳରେ ପ୍ରତାପ ଶାନ୍ତ ନୀର ଦେଲ
ଦୀର୍ଘାୟୁରେ କାଳ ଯାପନରେ ଭଲ କାନ୍ତେ ଦଅ ଗିର
ମୂର୍ଦ୍ଧମଣି ଦତ୍ତ ମଣି ସ୍ନେହ ଯୁକ୍ତ ଚଞ୍ଚଳ ସୁତରେ
ମଣ୍ଡଳ ଶୋଭିତ ତତକ୍ଷଣି ହାତ ଜଳ ଜଳ କରେ । ୧୬ ।

ଶବ୍ଦାର୍ଥ । ପୃଷନ୍ତ—ଜଳବିନ୍ଦୁ (ପୟଃ ପୃଷନ୍ତିଭିଃ ସ୍ପୃଷ୍ଟ୍ୱା ବାନ୍ତି ବାତାଃ ଶନୈଃ ଶନୈଃ ।)

ଅନୁକ୍ଷଣ ଗତ ସନ୍ତତ ଝଟତ ବାସାଗ୍ରେ ଗ୍ରନ୍ଥନ
ନତ ମସ୍ତକରେ କରେ ବଗତରେ ମିଳ ମଧୁରାମ
ପକ୍ୱ ଫଳାସନ କର ରାମ ଧ୍ୟାନ ରାମ ବନାସନ୍ତେ
ରାମ ରକ୍ଷ ରକ୍ଷ ଦନକୁ ବଲକ୍ଷ ଗଣି ଶାସ୍ତି ଦ୍ୟନ୍ତେ ।୧୭।

ବାୟୁଜ ବଘାତେ ପାଦପ ରକ୍ଷତେ ଚଳ ରବ ଅସ୍ତ
ଲୋକନାନ୍ତେ ଶୁଣା ନ ଥିଲା ଏମନ୍ତେ ଏ ବପଦ ଗ୍ରସ୍ତ
ଅକଣ୍ଟକ ମହ୍ୱ ଏକଣ୍ଟକ ହୋଇ ବାନରେ ପରାସ୍ତେ
ଗମିଣ ତତ୍‌କ୍ଷଣେ ଯେ ବଂଶ ଈକ୍ଷଣେ ଜଣାଇ ସମସ୍ତେ । ୧୮ ।

ବକଟ ମର୍କଟ ଉତ୍‌କଟ ପ୍ରକଟ ଧପଟେ ଧପଟ
ଦନ୍ତ ରଟମଟ ନସ୍ୟୂନ ତରାଟ ପାପିଷ୍ଠ ଏ ନଷ୍ଟ
ବନାଶି ବନାଶ ବଟପ ପ୍ରକାଶ ବଶାଖ ବଶାଖ
ରକ୍ଷକ ନିରକ୍ଷ ପରାସ୍ୟେ ବପକ୍ଷ ସମସ୍ତ ବଂଶାକ୍ଷ । ୧୯ ।

କୋପେ ରକ୍ଷନାଥ ଜର୍ଜରିତ ଗାତ୍ର କର ରକ୍ତନେତ୍ର
ଯା ତୁ ବୋଲି ଯାତୁ ଧାନ ସସ୍ରେ ପେଶୁ ଗମି ଧୃତ ଅସ୍ତ୍ର
ମୁଖରେ ଖରେ ପ୍ରଖରେ ମାର ମାର ଉଚ୍ଚାର ସଂଗ୍ରାମ
ସ୍ମରାର ତନୁଜ ସ୍ମରି ରାମ ରାଜ କେଶରୀ ବକ୍ରମ । ୨୦ ।

ଶବ୍ଦାର୍ଥ । ଗ୍ରାମ—ଉପବନ । ସସ୍ରେ—ସହସ୍ରେ ।

ସାବେଳ ମୁଦ୍‌ଗର ଅସି ଶୂଳ ଶର ପ୍ରହାର ପ୍ରଚଣ୍ଡେ
ଦନ୍ତାକ ଭିଣ୍ଡିତ ମୂର୍ତ୍ତି ସେ ମାରୁତ ମୁଷ୍ଟି ଭୁଜ ଦଣ୍ଡେ
ଦ୍ୱିମଣି ସନ୍ତତ ସଦନ ଭଜନ୍ତ ବଳ ବଳ ହତେ
ଦୂତ ଉକ୍ତ ଶ୍ରୁତ ମାତ୍ରରେ ବଦତ ହର ଆଣି ବ୍ୟକ୍ତେ ।୨୧।

ମହାବଳେ ବଳ ବଳୀଷ୍ଠରେ ଶ୍ରେଷ୍ଠ ଶ୍ରେଷ୍ଠ ଜ୍ୟେଷ୍ଠ ସୁତ
ତ୍ୱରତେ ପୁରତେ ଉଗ୍ର ଲୋଚନନ୍ତେ ବୋଲେ ଆଜ୍ଞା ଦତ୍ତ
କୀଶ କଶ କ୍ଳେଶ ଅକଷ୍ଟ ନିବାସ ଦୋଷୀ ବନ୍ଧିନନେ
ପଲକେ ପୁଲକେ ବପୁକେ ବଲୋକେ ବ୍ୟଗ୍ରେ ଉକ୍ତ ଭଣେ ।୨୨।

ବର ହର ବର ହର ହର ବାକି ଛନ୍ଦି ଛନ୍ଦା କୃତେ
ହେମ ଭୂ ଭୂଷଣ ଗୋଚରେ ତତ୍‌କ୍ଷଣ ମୋଦ ବଲୋକତେ
ତୁ ସେ ବନବାସି କି କୃତରେ ଆସି ବକୃତ ପ୍ରକାଶୁ
ଧର୍ମ୍ମରାଜ ଧର୍ମ୍ମ- ରାଜ ଆବାସରେ ନିର୍ଭୟେ ବଳସୁଁ ।୨୩।

ତୁ ଯେ ଯାତୁଧାନ ଚୌର ଅତ ହୀନ ଯା ନାରୀ ଆଣିଛୁ
ମୁଁ ଯେ ତାର ଦୂତ ଅନନ୍ତ ଲଂଘିତ ମୋତେ କି ମଣୁଛୁ
ଆରେ ଲଙ୍କପାଳ ସେ ରାମ ଭୂପାଳ ପାଳନ ଜଗତ
କାଳେ କାଳ ବାସ ଦେବେ ରେ ରାକ୍ଷସ ଦର୍ପରବ ଅସ୍ତ ।୨୪।

ଶବ୍ଦାର୍ଥ । ଦର୍ପରବ—ଗର୍ବିତ ଦର୍ପ ।

ଯାର ପୂର୍ବ ବଂଶ ମୋ ହସ୍ତେ ବିନାଶ ଏ କି ବଳେ ବଳ
ବିଭୂତି ବିଭୂତି ବିନେ ଏ ବିଭୂତି ଗାତ୍ରେ ଲିପ୍ତ ମେଳ
ସେ କି କରିପାରି ଅବଧ ପାର ପୂରି ପୂରିଲା ତା ଆଶ
ବଳେ ତାର ନାରୀ ଆଣିଛୁ ମୁଁ ହରି ନୈବ କି ମାନସ ।୨୫।

ବ୍ରହ୍ମପୁତ୍ର ଗ୍ରାସ କରୁ ଆରେ କୀଶ ସୁଧା ମଣି ଚିତ୍ତେ
ବିଗ୍ରହ ତୋ ମନ ଆଜି ତୋ ଶମନ ଭବନରେ ସ୍ଥିତେ
ବନ୍ଧନରେ ମୁଷ୍ଟି ଘାତଦେଉଁ ଦୈତ୍ୟ ବୋଲଇ ପାବନି
ଏମନ୍ତେ ମୁଁ ହତ ନୋହେ କଦାଚିତ ଆରେ ଲଙ୍କମଣି ।୨୬।

ପୁଚ୍ଛରେ ବସନ ଗୁଡ଼ାଇ ବହନ ସ୍ନିଗ୍ଧ କଡ଼ାଇ
ଶୁଚିତରେ ଶୁଚି ଦିଅନ୍ତେ ବିରଞ୍ଚି ରଚିଛୁ ନାଶ ହୁଁ
ଏ ବାଣୀ ବିଡ଼ର କରନ୍ତେ ଦୈତ୍ୟର ପ୍ରସନ୍ନ ଭଣିଲ
ବ୍ୟାକୁଳରେ ଜୀବ ଯିବାର ପ୍ଲବଗ ବାଣୀ ବିତରିଲ ।୨୭।

କୋଷାଧ୍ୟକ୍ଷେ କୋଶୁଁ ବିକୋଶ କରଣ କଲେ ସମର୍ପଣ
ତଇଲେ ବୁଡ଼ାଇ ପୁଚ୍ଛରେ ଗୁଡ଼ାଇ ଜଗାଦ୍ଧ ଇନ୍ଧନ
ଜ୍ୱଳନେ ଜ୍ୱଳନ ଶିଖ ପ୍ରକାଶିଣ ଅନିଳ ସମ୍ଭୂତ
ଗାତ୍ରୁଁ ଜୀବ ଗତ ହେଲା ପ୍ରାୟେ ମତ ହୋଇ ଭୂରେ ସ୍ଥିତ ।୨୮।

ଶବ୍ଦାର୍ଥ । ସ୍ନିଗ୍ଧ—ତୈଳ ।

କ୍ଷପାକର ମତ କ୍ଷପା ପ୍ରକାଶିତ ଗତ ଜଗତରେ
କୋପେ ବୈଶ୍ୱାନରେ ଲେଳିକନରେ ସ୍ଥିରେ ପୁଚ୍ଛ ଲଙ୍ଗୁଁ ହଲେ
ହୁ ହୁ ହୁତାଶନ ପ୍ରଖର ପ୍ରବେଶ କଟକ ବିନାଶ
ହେମାର ଦହେ କି କଟକ ଛଟକେ କଟକ ବିନ୍ୟାସ ।୨୯।

ଦହନେ ଦହନ କରି ହନୁମାନ ବିଭୂତ ବିଭୂତ
ସରିତେଶ ଲଂଘି ନଂଦନନ ଅଂଘ୍ରୀ ବିଭୁ ନାମ ଶକ୍ତ
ସିନ୍ଧୁ କୂଳେ ହିନ୍ଦୁ ଶରେ ଭେଟି ବନ୍ଧୁ କାର୍ଯ୍ୟସିଦ୍ଧ ଭଣି
ତୋଷାର୍ଣ୍ଣବେ ସର୍ବେ ଗମିଲେକ ଜବେ ଆନନ୍ଦିତ ମଣି ।୩୦।

ମର୍କଟ ମୁକୁଟ ଅଲଙ୍କାର ଶ୍ରେଷ୍ଠ ବିଶ୍ରାମି ଆରାମେ
ନାନା ପକ୍ୱ ଫଳ କରଣ କବଳ ଗମି ବୀରଗଣେ
ସତୀ ସୀତା କୁଚ କସ୍ତୁରୀ ରଜିତ ପୁରତେ ପ୍ରବେଶି
ଭୂମିଷ୍ଠ ପ୍ରଣାମ କରି ସର୍ବେ ପୁଣ ଫଳାଫଳ ଭାଷି ।୩୧।

ରମଣୀ ଶ୍ରେଣୀ ମଣି ମଣି ତକ୍ଷଣି ଦେଉଁ ବାଣୀ ଭଣି
ବନ ମଧ୍ୟ ଦୁଗ ହେବା ପୂର ବର୍ଗ ସ୍ଥିତ ଦୈତ୍ୟ ମଣି
ଶଙ୍କା ତେଜି ଲଙ୍କା ଭ୍ରମନ୍ତେ ମୁଁ ଲଙ୍କା ପାଳିତା ଭେଟିଣ
ଦେଉଁ ମୁଁ ପ୍ରଭାବ ଭାବରେ ସେ ସର୍ବ ସମସ୍ୟା ଭଣିଣ ।୩୨।

ଶବ୍ଦାର୍ଥ । କ୍ଷପାକର—ଚନ୍ଦ୍ରମା । କ୍ଷପା—ନିଶା ।

ନଗ୍ରରେ ସନ୍ଦେଶ ନ ପାଇ ବରଷ ବସୁମାସ୍ତ ଚଉରେ
ବଞ୍ଜୁଲ ବପିନେ ପ୍ରବେଶୁଁ ବହନେ ଦେଖିଲି ମାତାରେ
କ୍ଷଣକେ ଦଶାସ୍ୟ ହୋଇଣ ପ୍ରବେଶ ତର୍ଜନା କରିଣ
ବେଣ୍ଣ ମାଝେ ବର ଦେବରେ ଭେଟାଅ କୋପେ ଭଣି ପୁଣ ।୩୩।

ପାମର ମୋ ବଶ ନୋହୁ କାରେ ବଶ ବୁଝିବ ସାହସ
ଧରଣ ଅସିର କରିବ ଅଶିର ଏସନ ପ୍ରକାଶ
ଅଙ୍ଗୁରୀୟ ଦତ୍ତ କରିଣ ତ୍ୱରିତ କହିଣ ବୃତ୍ତାନ୍ତ
ସୀମନ୍ତକ ମଣି ଘେନଆସୁଁ ପୁଣି ଫଳ ଭୁଞ୍ଜୁ ତୃପ୍ତ ।୩୪।

ସମରେ ଅକ୍ଷସ୍ତ କରନ୍ତେ ମୁଁ କ୍ଷୟ ଦଶାସ୍ୟ ଜେ୍ୟଷ୍ଠକ
ଦ୍ୱନ୍ଦେ ଦ୍ୱାଦଶୁକେ ବାନ୍ଧି ନେଉଁ କୋପେ ବଲ୍ଲୋକି ଦନଜ
ମାର ବୋଲୁଁ ବୋଲ ପୁଚ୍ଛେ ବାସ ଘେର ତୈଳାଗ୍ନି ଯୋଗରେ
ହେବ ମୋ ବିନାଶ କହିଲି ସନ୍ଦେଶ କଲେ ସେ ପ୍ରକାରେ ।୩୫।

ଭବାର୍ଦ୍ଧାଙ୍ଗୀ କୃପାରୁ ପୋଡ଼ି ଲଙ୍କା ପୁରୁଁ ବଂଶ କ୍ଷାନ୍ତ୍ୟାନ୍ତରେ
କଲି ଦରଶନ ହୁଅ ପରସନ୍ନ ବିଗ୍ଧ୍ୱର ହୃଦରେ
ନବ ଦୁର୍ଗ ଜନ ପାଳକ ନାୟକ ଧ୍ୟାୟି ବିନାୟକ
ବିନାୟକ ସିଂହ ମାନଧାତା କହ ନାଶ ମୋ ବିପାକ ।୩୬।



ଶବ୍ଦାର୍ଥ ।ଦ୍ୱନ୍ଦେ—ବିରୋଧରେ । ଶୂକ—ପଗଡ଼ି, ଉଷ୍ଣିଷ । ଦ୍ୱାନ୍ଦ—ବିରୋଧୀ ।

# ରାଘବ ବିଳାସ

## ପଞ୍ଚତ୍ରିଂଶ ଛାନ୍ଦ

**ବଙ୍ଗଳାଶ୍ରୀ ରାଗରେ** ସତରଟି ମାତ୍ର ପଦରେ ଏହି ଛାନ୍ଦଟି ରଚିତ ହୋଇଛି ।

ରାମ, ସୀତାଙ୍କ ବିରହରେ କାତର ଭାବେ ବିଳାପ କରିବାରୁ ସୁଗ୍ରୀବ ସୈନ୍ୟଦଳ ସଜ୍ଜିତ କରି ଜୟଯାତ୍ରା ପାଇଁ ତାଙ୍କୁ ପ୍ରବୋଧନା ଦେଇଛନ୍ତି ଏବଂ ରାମଙ୍କ ନିର୍ଦ୍ଦେଶରେ ସୈନ୍ୟଦଳ ବିଭିନ୍ନ ଶିବିରରେ ବିଶ୍ରାମ କରି କରି ସିନ୍ଧୁକୂଳରେ ଉପସ୍ଥିତ ହୋଇଅଛନ୍ତି ।

ଅଙ୍ଗଦ ରାମଙ୍କୁ ଦେଖାଇ କହିଛି ଏହି ଆରପାରିରେ ତୁମର ପ୍ରିୟତମା ରହିଛନ୍ତି ।



# ରାଘବ ବିଳାସ

## ପଞ୍ଚତ୍ରିଂଶ ଛାନ୍ଦ

### ରାମଚନ୍ଦ୍ରଙ୍କର ଲଙ୍କାପ୍ରବେଶ ପାଇଁ ସୈନ୍ୟ ସହ ସିନ୍ଧୁକୂଳରେ ପ୍ରବେଶ

( ରାଗ—ବଙ୍ଗଳାଶ୍ରୀ )

ଦ୍ୱିଜବର ବର          ଶତ୍ରୁ ସ୍ୱଭାବର
ଧରି କାତର ତରରେ
ହା ହା ସୀତା ସୀତା          ହୃଦେ ବିକଶିତା
ହର ମୋ ହର ମୋହରେ । ୧ ।

ଅନାଥରେ ଅନା          ଦର କରି କରି
କରିଗତ କେଣେ ଗଲୁ
ତୋ ବିନା ହିତାରେ          କେ ଅଛୁ ହିତାରେ
ତେଜି ଅହିତା ହୋଇଲୁ । ୨ ।

ଚିନ୍ତା ଉଦଧିରେ          ଭସାଇ ସଧୀରେ
ଭବିଷ୍ୟ ଦେଲୁରେ ଧୀରେ
ଆଶା ବିନାଶାରେ          ଆଶା ବିନାଶାରେ
ଅବିନାଶିକେ ନାଶିରେ । ୩ ।

।

---

ଶବ୍ଦାର୍ଥ । ଦ୍ୱିଜବର—କ୍ଷତ୍ରିୟଶ୍ରେଷ୍ଠ । ମାତୁର୍ଯଦଗ୍ରେ ଜାୟନ୍ତେ ଦ୍ୱିତୀୟଂ ମୌଞ୍ଜିବନ୍ଧନାତ୍
ବ୍ରାହ୍ମଣ କ୍ଷତ୍ରିୟ ବିଶସ୍ତସ୍ମାଦେତେ ଦ୍ୱିଜାସ୍ମୃତା ।

ଅଥବା— ବ୍ରାହ୍ମଣ କ୍ଷତ୍ରିୟୋ ବୈଶ୍ୟସ୍ତ୍ରୟୋ ବର୍ଣ୍ଣା ଦ୍ୱିଜାତୟଃ ।

ହର—ହରଣକର । ହର-ମୋହ—କାମ ।

ଉଦଧି—ସମୁଦ୍ର ।

ହୃଦୟୁରେ ମଣି · ହୃଦୟୁରେ ମଣି
ମଣି ଅସ ନଗରଣି
ନୀରଜ ଗାତ୍ରରୁ ନୀରଜ ନେତ୍ରରୁ
ନୀର ଅଧୀର ଧାରଣି । ୪ ।

ଏ କାଳେ ସେ କାଳେ ମିଳି ତତ କାଳେ
ବିକଳେ ଆକୁଳେ କୂଳେ
ବୁଦ୍ଧି ପ୍ରବୋଧିଲେ ଅତିହିଁ ବୋଧରେ
ବଧିରେ ଧୀରରେ ବଳେ । ୫ ।

ଉତ୍ତମାଙ୍ଗେ ମାଙ୍ଗେ କରକୁ ପ୍ରସଙ୍ଗେ
ତରଣୀଜ ରଙ୍ଗେ ରଙ୍ଗେ
ସନ୍ତାପ ତାପକୁ ଏ ଦୁଃଖ ହେଲାକୁ
ଦେଇ ନାଶୁଛ ତ ଅଙ୍ଗେ । ୬ ।

ଶବ୍ଦାର୍ଥ । ଉତ୍ତମାଙ୍ଗ—ଶିର । (ବଭୌ ପତଦ୍‌ଗଙ୍ଗ ଇବୋତ୍ତମାଙ୍ଗେ, କୁମାରସମ୍ଭବ) ତରଣୀ—ସୂର୍ଯ୍ୟ । ତରଣୀଜ—ସୁଗ୍ରୀବ । ମାଙ୍ଗେ କରକୁ ପ୍ରସଙ୍ଗେ—ମୁଣ୍ଡ ବାଳ ମାଙ୍କରୁ ଲୁଣ୍ଠାଉ ଲୁଣ୍ଠାଉ ।

ଅଦେହ ନୃପଜା . ଶ୍ରୀକୁଚ କସ୍ତୁରୀ
ଶୁଣି ଶ୍ରବଣ ଶ୍ରବଣେ
ସତେ ଶିବ ହେବ ଶିବ ପ୍ରକାଶିବ
ଶିବ ଭୂତକ ଗ୍ରହଣେ । ୭ ।

ଭଲ ଲଗ୍ନ ଲଗ୍ନେ ବୁଝିଲି ସଂଲଗ୍ନେ
ସ୍ଥାନ ଉଚ୍ଚାରେ ହୃତରେ
କମ୍ବୁକ ସୁଖେଷଣ ହୋଇଣ ପ୍ରମୋଦ
ମୋଦେ ଦେବରୁତ କଲେ । ୮ ।

ଫେରିବ ଜୀବନ ନାସନ ଛେଦନ
ଅବାଚୀ ମାର୍ଗରେ ଧୃତ
ଅକୂଳେ କୂଳେ ସଂକୁଳେ ଅନୁକୂଳେ
ଚଳେ ଗୃଳ୍ପ ସେନାବ୍ରାତ । ୯ ।

ଶବ୍ଦାର୍ଥ । ଅଦେହ—ବିଦେହ । ଅଦେହ ନୃପଜା ଶ୍ରୀକୁଚ କସ୍ତୁରୀ—ରାମ । ଶିବ—ମଙ୍ଗଳ । ଶିବ ଭୂତ—ସୁଖଦାୟିନୀ । ଦେବରୁତ—ଶଙ୍ଖଧ୍ୱନି । ଅବାଚୀ—ଦକ୍ଷିଣ । ଛେଦନ—ଛେଦନ କର । ଅକୂଳେ—ସମୁଦ୍ର କୂଳରେ । ବ୍ରାତ—ସମୂହ ।

ସରଯୁତୀର ବିହାରୀ ବାହାର ଯେ
ପ୍ରବେଶେ ଜନକ କନ୍ଦରେ
ଗୌତମ ତନୁଜ ଆତ୍ମଜ ବରଜ
କରଜ ବାଣ କରରେ । ୧୦ ।

ସରିତ ପତି କୂଳରେ ପ୍ରବେଶିଲେ
ଚଳ ପ୍ରବଳ ସବଳେ
ହରି ପନ୍ତି ମତ ଅଙ୍ଗ ବଳ ଘେନି
ସଙ୍ଗେ ସଙ୍ଗେ ରଙ୍ଗେ ଚଳେ । ୧୧ ।

ପ୍ଲବଗ କୁଳ ତ ପ୍ରଗଣ୍ଡେ ବିଶ୍ରାମି
ସିନ୍ଧୁକୂଳେ ହୋଇ ମେଳ
ମୁଖର ଶବଦେ ସିନ୍ଧୁ ଗର୍ଭ ଭେଦେ
ସର୍ବେ ଆନନ୍ଦ ବିହ୍ୱଳ । ୧୨ ।

ଶବ୍ଦାର୍ଥ । ପ୍ଲବଗ—ମର୍କଟ । ପ୍ରଗଣ୍ଡ—ଶିବିର ।

ବାଦ୍ୟାନାଦ ଆଣ                କରି କେ ପ୍ରକଟ
ଝପଟ ଧପଟ କରେ
ବନ୍ଧ ନୀଳ ରଙ୍ଗ                ଅଟନ୍ତି ସୁରଙ୍ଗ
ସିନ୍ଦୂର କାନ୍ଧ ପ୍ରକାରେ । ୧୩ ।

ମହୀଜା ବିଳାସୀ                ଏ ସମସ୍ତେ ଭାଷି
ହାସି ବିଶେଷି ବିଶେଷି
ଏ ପ୍ରକାରେ ସ୍ତୁତି                ଆରତ ମୋ ସ୍ତୁତି
ହସ୍ତ ଅସ୍ତ୍ର ହେଲା ଆସି । ୧୪ ।

ସୁବଳସ୍ୟେ ସସ୍ର-                ଅକ୍ଷି ନପ୍ତା ଅତ
ସ୍ନେହ କହ ସେ ପାରରେ
ଏ ଅର୍ଣ୍ଣବ ପାରି                ଅଟେ ଲଙ୍କାପୁରୀ
ନାରୀ ତୁମ୍ଭର ସେ ପୁରେ । ୧୫ ।

ଶବ୍ଦାର୍ଥ । ମହୀଜା—ସୀତା । ସସ୍ର—ସହସ୍ର । ସସ୍ରଅକ୍ଷ—ଇନ୍ଦ୍ର । ଇନ୍ଦ୍ରନପ୍ତା—ଅଙ୍ଗଦ । ନପ୍ତା—ନାତି । ସୁବଳସ୍ୟେ—ଉତ୍ତମ ବଳସ୍ୱଧାରୀ ।

ବାର୍ତ୍ତାବହ ବହନରେ ନରେଶରେ
କହିବାରେ ବାରେ ଚଳେ
କୂବ୍ୟାଜ ଶ୍ରେଷ୍ଠରେ କହିବା ଶ୍ରେଷ୍ଠରେ
ରଥ ସୈନ୍ୟ ସିନ୍ଧୁକୂଳେ ।୧୬।

ବିନାତ୍ମକ ବିନାତ୍ମକ ଶ୍ରେଷ୍ଠ କଷ୍ଟ
ଫେଡ଼ ବିପତ୍ତି କି ତୋଷି
ରାଘବ ରାଘବ ବିଳାସ ଏ ରସ
ନାମ ହୃଦେ ଘୋଷି ଘୋଷି ।୧୭।



ଶବ୍ଦାର୍ଥ । ବାର୍ତ୍ତାବହ—ଦୂତ । ବହନ—ଶୀଘ୍ର । ନରେଶ—ରାବଣ । କୂବ୍ୟାଜ-ଶ୍ରେଷ୍ଠ—ଷଡଯନ୍ତ୍ରପରାୟଣତାରେ ଚତୁର ।

# ରାଘବ ବିଳାସ

## ଷଟ୍‌ତ୍ରିଂଶ ଛାନ୍ଦ

ବସନ୍ତ ଆହାରି ବୃତ୍ତରେ ବତିଶ ପଦରେ ଏହି ଛାନ୍ଦଟି ସମ୍ପୂର୍ଣ୍ଣ ଅଟେ ।

ଲଙ୍କାଧିପ ରାବଣର ଏକ ଦୂତ ଖବର ଦେଲା ଯେ ଅଶୋକ ବନରେ ଯେଉଁ ବଧୂ ରହିଛନ୍ତି ତାଙ୍କର ସ୍ୱାମୀ ସିନ୍ଧୁକୂଳରେ ପହଞ୍ଚିଲେଣି । ତା ଶୁଣି ରାବଣ ହସି କହିଲା—ଏପରି ରୂପବତୀ ଭାର୍ଯ୍ୟା ସେ ହରାଇଥିବାରୁ ସିନ୍ଧୁରେ ଆତ୍ମହତ୍ୟା କରିବାକୁ ଆସିଥିବ ।

ତାହା ଶୁଣି ବିଭୀଷଣ କହିଲେ—ଆତ୍ମହତ୍ୟା କଥାଟା ହନୁ ଲଙ୍କା ପୋଡ଼ିବା ବେଳରୁ ଜଣାଯାଇଛି । ରାବଣ କ୍ରୁଦ୍ଧ ହେବାରୁ ପ୍ରହସ୍ତ ଧୂମ୍ରମୁଆଁ କଥା କହି ସନ୍ତୋଷ କଲା । କିନ୍ତୁ ବିଭୀଷଣ ନାନା ଉପଦେଶାତ୍ମକ କଟୁ କଥା କହନ୍ତେ ରାବଣ ସଭାରୁ ତାଙ୍କୁ ବାହାର କରିଦେଲା । ତେଣୁ ସେ ରାମଙ୍କ ନିକଟକୁ ଆସି ଶରଣ ମାଗିଲେ ।

ଏପରି ଶବ୍ଦବୈଭବ ଖଞ୍ଜି କବି ଏ ଛାନ୍ଦକୁ ରଚନା କରିଛନ୍ତି ଯେ ଏହି ଛାନ୍ଦ ପ୍ରତ୍ୟେକ ପାଲାକାର ଏବଂ ଛାନ୍ଦରସିକ ତୁଣ୍ଡରେ ପ୍ରତିନିୟତ ଶୁଣା ଯାଇଥାଏ । ରାଘବ ବିଳାସର ଅସ୍ତିତ୍ୱକୁ ଏହି ଛାନ୍ଦ ଯେପରି ଭାବରେ ରକ୍ଷା କରି ଆସିଥିଲା ଅନ୍ୟ କେହି ନୁହେଁ ।

ପୂର୍ବ ଦେବତା ଶବସ୍ଥ ଭର୍ତ୍ତା ଆଗେ
ଦୂତ ବାର୍ତ୍ତା କଲା ପ୍ରକାଶ

ଏ ଗୀତ ଓଡ଼ିଶାରେ କିଏ ନ ଜାଣେ, କିଏ ନ ଶୁଣିଛି ଏପରି ନାହିଁ ।

ଏହି ଛାନ୍ଦରେ ବିଭୀଷଣକୁ ବିଶ୍ୱାସ କରି ରାମ ମିତ୍ର ସ୍ୱରୂପ ଶରଣ ଦେଇ ରଖିଲେ ଏବଂ ଲଙ୍କାର ରାଜା ବୋଲି ସ୍ୱୀକାର କରି ପ୍ରତିଜ୍ଞା କରନ୍ତେ ସୁଗ୍ରୀବ କହିଲେ—

ପ୍ରଭୁ, ଯେବେ ରାବଣ ସୀତାଙ୍କୁ ସମର୍ପି ଶରଣ ପଶିବ, ତେବେ କ'ଣ କରିବେ ? ସୂର୍ଯ୍ୟବଂଶୀୟ ହୋଇ ମଧ୍ୟ ପ୍ରତିଜ୍ଞା ତ ଭ୍ରଷ୍ଟ ହେବେ ?

ରାମ କହିଲେ—ରାଜଂଭ୍ରଷ୍ଟ କଷ୍ଟ ଯେବେ ଦୂର କରିବା ବିଧାତାର ଇଚ୍ଛା ନ ଥିବ, ତେବେ ମୁଁ ପ୍ରତିଜ୍ଞା ରକ୍ଷା କରି ଅଯୋଧ୍ୟାକୁ ମିତ୍ରଙ୍କୁ ଦେଇ ଚିର ବନବାସୀ ହେବି ।

ବୋଲେ ମିତ୍ର ପୁତ୍ର ହେଲି କି ବିଚିତ୍ର
ଚିତ୍ରଗିରୁ ଭୂଜାମ୍ବୁଜକୁ
ସମର୍ପି ଜନକ ତନୁଜା କନକ
ମହୀନ୍ଦ୍ର ଚରଣାମ୍ବୁଜକୁ
କଲେ ଆଶ୍ରିତ
କି ହେବ ? ଶ୍ରବଣେ ହୃଦବ
ଭଣିଲେ, ଜଣିବ ବନ୍ଧୁ ବନ୍ଧୁ ନାହିଁ
ରାଜଂଭ୍ରଷ୍ଟ କଷ୍ଟ ଲାଘବ । ୩୦ ।

ନାନା ଯୁକ୍ତି, ନାନା ସୁଶ୍ରାବ୍ୟ ଉକ୍ତି-ପ୍ରତ୍ୟୁକ୍ତିରେ ଏପରି ମନୋହର ଭଙ୍ଗୀରେ ଏହି ରଚନା ସଫଳତା ଲାଭ କରିଛି, ଯାହାକୁ ସମଗ୍ର ଉତ୍କଳ ଅତ୍ୟନ୍ତ ଆଦର କରିଅଛି ଏବଂ କରୁଅଛି ।



# ରାଘବ ବିଳାସ

## ଷଟ୍‌ତ୍ରିଂଶ ଛାନ୍ଦ

## ବିଭୀଷଣ ଶରଣ

(ରାଗ—ବସନ୍ତ ଆହାରି)

**ପୂର୍ବ-ଦେବତା-ଶର୍ବରୀ ଭର୍ତ୍ତା ଆଗେ ଦୂତ ବାର୍ତ୍ତା କଲା ପ୍ରକାଶ**
**ଅଶୋକ ବନେ ସଶୋକେ ଥିବା ବଧୂ-ବନ୍ଧୁ ସିନ୍ଧୁକୂଳେ ପ୍ରବେଶ**
**ହାସ୍ୟରସରେ**
**ହସି ଭାଷିଲା ଦଶଗ୍ରୀବ**
**ନାରୀ ବିହୀନେ ବାରିଧି ଝାସେ ତନୁ ନାଶିବ ବୋଲି ଆସିଥିବ । ୧ ।**

---

ଶବ୍ଦାର୍ଥ । ପୂର୍ବ ଦେବତା—କଶ୍ୟପଙ୍କ ପ୍ରଥମା ସ୍ତ୍ରୀ ଦିତିଙ୍କ ଗର୍ଭସମ୍ଭୂତ ପୁତ୍ରମାନେ ପ୍ରଥମେ ଦେବତା ନାମରେ ଅଭିହିତ ଥିଲେ । ତାଙ୍କର ଦ୍ୱିତୀୟା ସ୍ତ୍ରୀ ଅଦିତିଙ୍କ ଗର୍ଭସମ୍ଭୂତ ପୁତ୍ରମାନେ ସଦ୍‌ଗୁଣରେ ନିପୁଣ ହେବାରୁ ଉକ୍ତ ଦେବତା ନାମରେ ଅଭିହିତ ହେଲେ । ଅସଦ୍‌ଗୁଣ ଧାରଣ କରିବାରୁ ପ୍ରଥମ ଦେବତାମାନେ ଦୈତ୍ୟ, ଦାନବ ନାମରେ ପରେ ଜଣାଶୁଣା ହେଲେ । ତେଣୁ ସେମାନେ 'ପୂର୍ବ ଦେବତା' ନାମରେ ସୂଚିତ ହୁଅନ୍ତି । ପୂର୍ବଦେବତା-ଶର୍ବରୀଭର୍ତ୍ତା—ଦାନବ ଚନ୍ଦ୍ରମା, ରାବଣ । ଶର୍ବରୀ—ରାତି । ଅଶୋକ ବନରେ ଶୋକ ସହିତ ଥିବା ବଧୂ ସେ ସୀତା ତାଙ୍କର ବନ୍ଧୁ କି—ରାମ । ଦଶଗ୍ରୀବ—ରାବଣ ।

ଦାନବରାଜ ରାବଣ ଶୁଣୁଁନେ ଗୁପ୍ତଚର ବାର୍ତ୍ତା ପ୍ରକାଶ କଲା ଯେ—ଅଶୋକ ବନରେ ଥିବା ଶୋକାକୁଳା ବଧୂ ସୀତାଙ୍କ ପ୍ରିୟତମ ରାମ ସିନ୍ଧୁକୂଳରେ ପହଞ୍ଚି ଗଲେଣି । ତାହା ଶୁଣି ହଠାତ୍ ହାସ୍ୟରସରେ ହସି ଉକ୍ତ ରାବଣ କହିଲା—ଅରେ ! ତାର ନାରୀକୁ ହରିଥିବାରୁ ସେ ଦୁଃଖରେ ଅଧୀର ହୋଇ ସମୁଦ୍ରରେ ଝାସଦେଇ ଦେହତ୍ୟାଗ କରିବାକୁ ଆସିଥିବନ୍ତି ? ଏପରି ଭୂପତିତା ନାରୀକୁ ଛାଡ଼ି ଆଉ ସେ କିପରି ବା ବଞ୍ଚିବ ?

"ବଦନ୍ତି ଅନୁଜ ପବନ ତନୁଜ ଗମନୁ ଯାଇଛି ଦେଖା ଯେ"
ଟେକିଲା ଏଥର ନେତ୍ର ଗୋତ୍ରାନ୍ତକ ପ୍ରଜ୍ୱଳ ଜ୍ୱଳନ ଶିଖା ଯେ
କୋପେ ଲଙ୍କେଶ
କର୍ଣ୍ଣ ଅନାଇଲା ନନ୍ଦନେ
ପ୍ରଶସ୍ତ ହସ୍ତ ମସ୍ତକେ ନ୍ୟସ୍ତ କରି ଶାନ୍ତିକଲା ଭାଷା ଚନ୍ଦନେ । ୨ ।

**କଥା**— ରାବଣର ଏପରି ପରିହାସାତ୍ମକ ବାଣୀ ଶୁଣି ତାହାର ଅନୁଜ ବିଭୀଷଣ କହିଲା—ପବନପୁତ୍ର ହନୁମାନ ଆସିବା ଦିନରୁ ଅର୍ଥାତ୍ ଲଙ୍କାଦଗ୍ଧ କରିବା ସମୟରୁ ଏହା ଦେଖାଯାଇଛି । ଏହା ଶୁଣି ଗୋତ୍ରଧ୍ୱଂସି କୁଳାଙ୍ଗାର ଲଙ୍କେଶ ରାବଣ ତାର ଅଗ୍ନିଶିଖା ପରି ଜଳୁଥିବା ନେତ୍ରକୁ କ୍ରୋଧାନ୍ଧ ହୋଇ ଟେକିଲା ଏବଂ ତାର ପରିହାସକୁ ନିନ୍ଦା କରୁଥିବା ଭାଇକୁ କର୍ଣ୍ଣ ଅନାଇଲା ।

ରାକ୍ଷସରାଜର ଏପରି କ୍ରୁଦ୍ଧାବସ୍ଥା ଦେଖି ଜଣେକ ସେନାପତି ପ୍ରଶସ୍ତ (ପ୍ରହସ୍ତ) ନିଜର ନ୍ୟୂନତା ଦେଖାଇ ହାତ ଯୋଡ଼ି ଭାଷାସ୍ତୁଭୂଷଣରେ ତାକୁ ଶାନ୍ତକଲା ।

---

ଶବ୍ଦାର୍ଥ । ଅନୁଜ—ସାନଭାଇ, ବିଭୀଷଣ । ବଦନ୍ତି—କହିଲା । ପବନତନୁଜ—ହନୁ । ଗମନୁ—ଆସିବାବେଳୁ । ଦେଖାଯାଇଛି—ଜଣାପଡ଼ିଛି । ଟେକିଲା—ଉପରକୁ ଉଠାଇଲା । ଗୋତ୍ରାନ୍ତକ—ଗୋତ୍ର ବୈରୀ । ଅନ୍ତକ—ଯମ । ରାବଣ ନିଜ କୁଳ କ୍ଷୟର ହେତୁ ହୋଇଥିଲା । ପ୍ରଜ୍ୱଳ—ଜଳନ୍ତା । ଜ୍ୱଳନ—ଅଗ୍ନି । ଲଙ୍କେଶ—ରାବଣ । ନନ୍ଦନେ—ନିନ୍ଦାକାରୀ । ପ୍ରଶସ୍ତ—(ପ୍ରହସ୍ତ) ଜଣେକ ରାବଣର ମନ୍ତ୍ରୀ । ହସ୍ତ ମସ୍ତକେ ନ୍ୟସ୍ତକରି—ମୁଣ୍ଡରେ ହାତ ରଖି ଅର୍ଥାତ୍ ହାତ ଯୋଡ଼ି । ଭାଷାଚନ୍ଦନେ—ଭାଷାରୂପ ଘଟରେ । ଚନ୍ଦନେ—ଶୀତଳତାରେ ।

ପାଠାନ୍ତର—ପ୍ରଜ୍ୱଳ ଅନଳଶିଖା । ପ୍ରବଳ ଅନଳଶିଖା । ପ୍ରଶସ୍ତ—ପ୍ରହସ୍ତ । ପ୍ରଶସ୍ତ ମସ୍ତକେ ହସ୍ତ ନ୍ୟସ୍ତ କରି କହିଲା (ତୋଷିଲା) ଏ ଭାଷାଚନ୍ଦନେ । ବିଶ୍ୱନାଥ ଖୁଣ୍ଟିଆ ଆଦି, 'ପ୍ରଶସ୍ତ' ଲେଖିଛନ୍ତି ।

**ତାଙ୍କ ଦୃଷ୍ଟି ନ୍ୟାସ କମ୍ପା କଲ ଈଶ କାହାକୁ ହେବ ସେ ପାଞ୍ଚକ**
**ଯେବେ ଓଷ୍ଠେ ରଦ ଦେବ, ମୃତ୍ୟୁଦେବ ଦେବତା ମୃତାହ ପଞ୍ଚକ**
**ସତ୍ୟ ରାବଣ**
**ଭଣୁ ବିଭୀଷଣ ବୋଇଲା**
**ସିନ୍ଧୁ ମଧ୍ୟେ ସ୍ଥିତ ସ୍ୱର୍ଣ୍ଣକ୍ଷିତ ଶୀର୍ଣ୍ଣ ନାବ ସ୍ୱାତୀ ଯୋଗ ପାଇଲା । ୩ ।**

**କଥା**—ପ୍ରହସ୍ତ ଏପରି କହିଲା—ହେ ପ୍ରଭୁ ! ନିଜ ଭାଇ ବିଭୀଷଣଙ୍କୁ ଏପରି କ୍ରୁଦ୍ଧ ଦୃଷ୍ଟି ଯେ ଫୋଇଲ ଏତଦ୍ଦ୍ୱାରା କାହାର କ୍ଷତିକାରକ ହେବ ? ଯେବେ ତୁମ୍ଭେ ଓଷ୍ଠରେ ଦାନ୍ତ କାମୁଡ଼ି ଦେବ ଅର୍ଥାତ୍ ଅତି ରାଗିଯିବ, ଯମ ନିଶ୍ଚୟ ତାର ମୃତାହ ପଞ୍ଚକ ବା ମୃତ୍ୟୁ ପୂର୍ବର ଦଣ୍ଡଦାନ ଦେବ ବା ଅନ୍ୟ କା'କଥା ଯମର ମୃତ୍ୟୁ ହେବ । ତୁମେ ରାଗି ତୁମ ଭାଇକୁହିଁ ମାରିଦେବ । ଏହା ଶୁଣି ରାବଣ କହିଲା—ହିଁ ହିଁ, ସତ କଥା କି ? ରାବଣ ଏକଥା କହନ୍ତେ ବିଭୀଷଣ କହିଲା—ସିନ୍ଧୁ ମଧ୍ୟରେ ଥିବା ଲଙ୍କାକୁ ଯେବେ ସୀତା ହରଣ କରିବା ଦୁର୍ମତି ଯୋଗୁଁ ଗୋଟିଏ କ୍ଷୀଣ ନାବ ବୋଲି ଧରାଯାଏ ତେବେ ତାକୁ ଏତଦ୍ଦ୍ୱାରା ସ୍ୱାତୀ ଯୋଗ ଘଟିଥିଲା । କାରଣ ସ୍ୱାତୀ ଯୋଗରେ ଅମାବାସ୍ୟା, ଶନିବାର ଏବଂ ସ୍ୱାତୀ ନକ୍ଷତ୍ର ଏକତ୍ର ହେଲେ ମହାବାତ୍ୟା ବହିଥାଏ । ଫଳରେ ଏ ନୌକା ନିଶ୍ଚୟ ବୁଡ଼ିଯିବା ସମ୍ଭବ । ଅମାବାସ୍ୟା ପରି ଘୋର କୃଷ୍ଣମୂର୍ତ୍ତି ରାବଣ ଶନି ପରି ଅମଙ୍ଗଳସୂଚକ ଦୈତ୍ୟକୁଳ ବା ତୁମ୍ଭମାନେ ପ୍ରହସ୍ତ ସାଙ୍ଗକୁ ଯେଉଁ ସ୍ୱାତୀ ନକ୍ଷତ୍ରର ଅଧିଦେବତା ପବନ ତାର ପୁତ୍ର ହନୁମାନ ମିଶିଗଲେ ଯେଉଁ ଯୁଦ୍ଧ ହେବ ସେଥିରେ ଏ କୁଳ ନିଶ୍ଚୟ ଧ୍ୱଂସ ହେବ । ପ୍ରକୃତ ସତ୍ୟ ନ କହି ପ୍ରହସ୍ତ ଯେ ରାବଣର କଥା ରଖିବାକୁ ତୁମ୍ଭମୁଁ ଆ କଥା କହି ବସିଲା ତେଣୁ ବିଭୀଷଣ ଏହି ଭବିଷ୍ୟତ୍ ଆଶଂକା ପ୍ରକାଶ କଲା । ମୋଟରେ ବିଭୀଷଣ କହିଲା—ମୋର ହିତ ଉପଦେଶ ନ ଶୁଣିଲେ ଜଳରାଶି ମଧ୍ୟରେ ନୌକା ପରି ଯେଉଁ ଲଙ୍କା ଟିକକ ଅଛି, ତାହା ସ୍ୱାତୀ ଯୋଗରେ ବୁଡ଼ିଯିବ ।

ଶବ୍ଦାର୍ଥ । ନ୍ୟାସ—ନିକ୍ଷେପ । ଈଶ—ପ୍ରଭୁ । ପାଞ୍ଚକ—ଦୁର୍ଭିକ୍ଷ, କ୍ଷତିକାରକ । ରଦ—ଦନ୍ତ । କ୍ରୋଧରେ ହିଂସ୍ର କରିବାକୁ ଉଦ୍‌ଗ୍ରୀବ ବ୍ୟକ୍ତି ଓଷ୍ଠରେ ଦନ୍ତ ଧର୍ଷଣ କରିଥାଏ । ମୃତ୍ୟୁଦେବ—ଯମ ଦେବତା । ଯେବେ ଓଷ୍ଠେ ରଦ ଦେବ, ମୃତ୍ୟୁଦେବ ତା ମୃତାହ ପଞ୍ଚକ ଦେବ । ସ୍ୱର୍ଣ୍ଣକ୍ଷିତ—ସ୍ୱର୍ଣ୍ଣଲଙ୍କା । ଶୀର୍ଣ୍ଣ—କ୍ଷୀଣ । ସ୍ୱାତୀ—ସପ୍ତବିଂଶତିନକ୍ଷତ୍ର ମଧ୍ୟରୁ ପଞ୍ଚଦଶ ନକ୍ଷତ୍ର, ବର୍ଷା ଓ ବାତ୍ୟାକାରକ ।

**କେଶରୀ ଗର୍ଭୁଁ ଉଦ୍ଭବ ପରାଭବ ଶିବାରେ ହେବାର ପାଞ୍ଚଇ**
**ଯବନ ସେ ବନବାସୀର ଚରଣ ଶରଣରେ ଦିଅ ଭସାଇ**
**ମହୀରାବଣେ**
**ତହିଁ ରାବଣ ଆଜ୍ଞା ଦେଲା**
**କରନ୍ତେ ଉଭା କର ଧରି ସଭାରେ ଲୋଭବନ୍ତ ହୋଇ ଚଳିଲା । ୪ ।**

**କଥା**—ରାବଣ ତା ଶୁଣି ମହୀରାବଣକୁ ଏହି ଆଜ୍ଞା ଦେଲା—ଏଟା ସିଂହ ଗର୍ଭରୁ ଜନ୍ମ ଲଭିକରି ଦରିଜକି ଶୃଗାଳ ହେବାକୁ ଇଚ୍ଛା କରୁଅଛି । ଅତିଶୀଘ୍ର ତାକୁ ବନବାସୀର ଚରଣରେ ଶରଣ ନେବାକୁ ସେ ଯେଉଁ ବାଞ୍ଛା ହେଉ ବନ୍ୟା ଆସିବ ଭାବୁଛି ସେହି ଜଳସ୍ରୋତରେ ଭସାଇ ଦିଅ ଅର୍ଥାତ୍ ଏଠାରୁ ତଡ଼ିଦିଅ । ତା ଶୁଣି ମହୀରାବଣ ବିଭୀଷଣର ହାତ ଧରି ରାଜଦରବାରରେ ଛିଡ଼ା କରାଇ ଦିଅନ୍ତେ ସେ ଗୋଟାଏ ମହତ୍ ଲାଭ ହେବ ଭାବି ଲୋଭମାପ୍ନ ହୋଇ ସେଠାରୁ ଚାଲିଗଲା । ବିଭୀଷଣ ଜାଣିଥିଲା ଯେ ଏପରି ନିଷ୍ଠୁର ଅନ୍ୟାୟୀ ଲୋକ ନିକଟରେ ନ ରହି ସେ ଯେବେ ରାମଙ୍କ ନିକଟକୁ ଯାଏ ତାହା ତା ପକ୍ଷରେ ଯଶସ୍କର ହେବ ।

---

**ଶବ୍ଦାର୍ଥ** । କେଶରୀ—ସିଂହ । ଉଦ୍‌ଭବ—ଜାତହୋଇ । ପରାଭବ—ଯେ ସର୍ବଦା ପରାସ୍ତ ହୁଏ ଅର୍ଥାତ୍ ଦୁର୍ବଳ । ଶିବା – ଶୃଗାଳ । ରେ—ନୀଚର ସମ୍ବୋଧନ । ପାଞ୍ଚଇ—ଚିନ୍ତାକରଇ । ଯବନ—ଶୀଘ୍ର । ସେ ବନବାସୀ—ରାମ । ଚରଣ ଶରଣରେ ଭସାଇଦିଅ—ପରିହାସରେ ଲକ୍ଷ୍ୟଦେଇ ରାବଣ କହିଲା—ସେହି ଦରିଦ୍ର ବନବାସୀ କ୍ଷୁଦ୍ର ମଣିଷ ପାଦତଳେ ସେ ଯାଉ ଶରଣ ପଶୁ । **ମହୀରାବଣ**—ଏକ ଦୁର୍ଦ୍ଧର୍ଷ ଦୈତ୍ୟ । ଏହାର ନାମ ସଂସ୍କୃତ ଗ୍ରନ୍ଥରେ ନାହିଁ । କିନ୍ତୁ ଓଡ଼ିଆ ସାହିତ୍ୟରେ ସାରଳାଦାସ, ବିଶ୍ୱନାଥ ଖୁଣ୍ଟିଆ, ଉପେନ୍ଦ୍ର ଭଞ୍ଜ ତାହା କଥା ଲେଖିଛନ୍ତି । ହିନ୍ଦିରେ ମଧ୍ୟ ତାର ନାମ ରହିଛି । ସଭାରେ କରଧରି ଉଭା କରାନ୍ତେ ଲୋଭବନ୍ତ ହୋଇ ଚଳିଲା । ଲୋଭବନ୍ତ—ପ୍ରଲୋଭିତ ।

ପାଠାନ୍ତର (୧)(ଜବନ ସେ) ଯବନ ସେ ବନବାସୀର ଚରଣ ସରଣୀରେ ଦିଅ ଭସାଇ । (୨) ଜବନ ସେ ବନବାସୀର ଶରଣ ସରଣୀରେ ଦିଅ ଭସାଇ । (୩) ତହିଁ ରାବଣ, ମହୀରାବଣେ ଆଜ୍ଞା ଦେଲା । (୪) (କଲା) କହନ୍ତେ, କରଧରି ଉଭା ସଭାରୁ ଲୋଭବନ୍ତ ହୋଇ ଚଳିଲା(ଉଠିଲା) ।

ଦୁର୍ଗ ପ୍ରାକାର ପାରି କରି ଦିଅନ୍ତେ ଅନନ୍ତେ ବିଶ୍ରବାକୁମର
ରହି ଭାବିଲା-ରଥାଙ୍ଗ ଶଙ୍ଖ ଯବ ଧ୍ୱଜ ରେଖା ତ ପଦ୍ମାମ୍ବର
ଚିହ୍ନୁ ଚରଣେ
ଶରଣ ପଶିବି ଯାଇ ଯେ
ଦୟା ନିକେତନ କେତନ ଉଡ଼ୁଛି ଚିନ୍ତା ହେବ କାହିଁପାଇଁ ଯେ ।୫।

**କଥା**—ବିଭୀଷଣଙ୍କୁ ଲଙ୍କା ଦୁର୍ଗର ପାଚେରି ଡିଅାଇଁ ପାରି କରିଦିଅନ୍ତେ, ସେ ଆକାଶରେ ରହି ଭାବିଲେ—ଶଙ୍ଖ, ଚକ୍ର, ଯବ, ଧ୍ୱଜ, ଊର୍ଦ୍ଧ୍ୱରେଖା, ଛତ୍ର, ଅମ୍ବରାଦି ଅଷ୍ଟାଦଶ ଚିହ୍ନ ଯେଉଁ ସୁନ୍ଦର ପାଦରେ ଶୋଭା ପାଉଛି, ଯାଇ ତାହାଁ ଶରଣ ପଶିବି । ସେ ଦୟା ନିକେତନଙ୍କର କେତନ ଉଡ଼ୁଛି । ମୋର ଚିନ୍ତା ବା କାହିଁକି ହେବ ?

ବିଭୀଷଣ ଦୂତ ମୁଖରୁ ରାମଚନ୍ଦ୍ରଙ୍କର ସଦ୍‌ଗୁଣମାନଙ୍କର ପରିଚୟ ପାଇପାରିଥିଲେ । ତେଣୁ ସେ ତାଙ୍କଠାରେ ନିଶ୍ଚୟ ଶରଣ ପାଇପାରିବେ ବୋଲି ସ୍ଥିର ନିଶ୍ଚୟ ହୋଇ ପାରିଥିଲେ ।

---

ଶବ୍ଦାର୍ଥ । ଦୁର୍ଗ—ଗଡ଼ (ଲଙ୍କାଗଡ଼) । ପ୍ରାକାର—ପ୍ରାଚୀର, ପାଚେରି । ଅନନ୍ତେ—ଆକାଶରେ । ବିଶ୍ରବାକୁମର—ବିଶ୍ରବା ଋଷିଙ୍କ ପୁତ୍ର ବିଭୀଷଣ । ରଥାଙ୍ଗ—ଚକ୍ର । ରେଖା—ଊର୍ଦ୍ଧ୍ୱ-ରେଖା । ଆତପତ୍ର—ଛତ୍ର, ବିଷ୍ଣୁପଦରେ ଯେଉଁ ଅଷ୍ଟାଦଶ ଚିହ୍ନ ଥାଏ ତନ୍ମଧ୍ୟରେ କାହା କାହା ମତରେ ଛତ୍ର ମଧ୍ୟ ଥାଏ । ଏହି ସାମୁଦ୍ରିକ ବିଚାର ନାନା ଭାବରେ ରହିଅଛି । ନିକେତନ—ଗୃହ, ପ୍ରାସାଦ । କେତନ—ପତାକା ।

ପାଠାନ୍ତର—ଅନନ୍ତେ ବିଶ୍ରବା ତନୁଜ, ରେଖା ତ ପଦ୍ମାମ୍ବର ଧ୍ୱଜ ।

**କପି ବୃନ୍ଦଙ୍କ ଦୃଷ୍ଟି ବୃଷ୍ଟି ଏକାଳେ ହେଲା ବିଭୀଷଣ ପିଣ୍ଡେ ଯେ**
**' ଭାବିଲେ ରାବଣାନନ୍ଦ ଦଗ୍‌ଧାଗ୍ନି ର ଧୂମକେତୁ ସମ ଖଣ୍ଡେ ଯେ**
**ନଭେ ଶୋଭନ**
**ହୋଇ ଅଛି ଦେଖ ରାଜ ହେ**
**'ଶ୍ରୀରାମେ ଶରଣ ପଶିବି ଡାକିଲା' ଦନୁଜ ରାଜ ଅନୁଜ ଯେ । ୭ ।**

**କଥା**—କପିସମୂହର ଦୃଷ୍ଟି ଏପରି ସମୟରେ ବିଭୀଷଣ ଅଙ୍ଗରେ ପତନ ହେଲା । ସମସ୍ତେ ଭାବିଲେ ରାମ ଆମ୍ଭମାନଙ୍କୁ ନେଇ ଯୁଦ୍ଧୋଦ୍ୟମକୁ ଆସିବାରୁ ରାବଣର ଆନନ୍ଦ, ଦଗ୍‌ଧ ହୋଇ ଯେଉଁ ଅଗ୍ନି ବାହାରିଛି, ବୋଧହୁଏ ଧୂମକେତୁ ପରି ଏହା ସେଥିରୁ ଖଣ୍ଡେ ଆକାଶରେ ଶୋଭମାନ ହୋଇଅଛି । ତେଣୁ ସୁଗ୍ରୀବଙ୍କୁ ଡାକି କହିଲେ—ହେ ରାଜା ! ଏହା ଦେଖ । ଏତିକିବେଳେ ଆକାଶରୁ ବିଭୀଷଣ ଡାକିଉଠିଲା ଯେ 'ମୁଁ ରାମଙ୍କ ନିକଟରେ ଶରଣ ପଶିବି ।'

ଶବ୍ଦାର୍ଥ । କପିବୃନ୍ଦ—ବାନର ଜଗତ ସମୂହ । ଦୃଷ୍ଟି—ନଜର, ଚକ୍ଷୁ । ବୃଷ୍ଟି—ପତନ । ପିଣ୍ଡେ—ଅଙ୍ଗରେ । ରାବଣାନନ୍ଦ—ରାବଣର ଆନନ୍ଦ । ଦଗ୍‌ଧାଗ୍ନି—ପୋଡ଼ି ଯେଉଁ ଅଗ୍ନି ବାହାରେ । ନଭେ—ଆକାଶରେ । ଧୂମକେତୁ—ଉପଗ୍ରହ । ରାଜ—ରାଜା । 'ଦନୁଜ-ରାଜ'—ରାବଣ । ଦନୁଜରାଜ-ଅନୁଜ—ବିଭୀଷଣ ।

ବିଭୀଷଣ କପିମାନଙ୍କର ବିଚାର ଅନୁଭବ କଲା ସେମାନଙ୍କ ଇଙ୍ଗିତରୁ । ତେଣୁ ଭାବିଲା କାଳେ ଯୁଦ୍ଧୋଦ୍ୟମ ହୋଇ ଅଶାନ୍ତି ଅସି ତା'ର ସଙ୍କଳ୍ପ ନଷ୍ଟ ହୋଇଯାଏ, ତେଣୁ ସେ 'ମୁଁ ଶରଣ ପଶିବାକୁ ଆସିଛି' ବୋଲି ଆଗରୁ କହିପକାଇଲା ।

ପାଠାନ୍ତର—ଦନୁଜ ରାବଣାନୁଜ ଯେ । ଦଗ୍‌ଧ ଅଗ୍ନି—(ଦଗ୍‌ଧାଗ୍ନିର) ନଭେ ଶୋଭିତ—(ନଭେ ଶୋଭନ) ।

**କର ପ୍ରସାର ଆସ ଆସ ଉଚ୍ଚାର ମର୍କଟ ମୁକୁଟାଳଂକାର**
**ପୁଣ୍ୟଜନ ବାଣୀ ପୁଣ୍ୟଜନ ଶୁଣି ପ୍ରବେଶ ହୋଇଲେ ସତ୍ୱର**
**ରୋମା ରମଣ**
**ପ୍ରେମାନନ୍ଦେ କଲେ ଆଶ୍ଳେଷ**
**ରାବଣାନୁଜ ଛଳଲେ ହେ କିଷ୍କିନ୍ଧ୍ୟାପୁର ହରି ବୀରାବତଂସ । ୭ ।**

**କଥା**—ମର୍କଟମାନଙ୍କ ମୁକୁଟର ଅଳଂକାର ସ୍ୱରୂପୀ ଯେଉଁ କିଷ୍କିନ୍ଧ୍ୟା-ରାଜ ସୁଗ୍ରୀବ ଏହା ଶୁଣି ହସ୍ତ ପ୍ରସାରଣ କରି ଆସ ଆସ ବୋଲି କହିଲେ । ପୁଣ୍ୟଜନ ସୁଗ୍ରୀବଙ୍କ ବାଣୀ ରାକ୍ଷସ ବିଭୀଷଣ ଶୁଣିପାରି ସତ୍ୱର ପ୍ରବେଶ ହୋଇଲେ । ତହୁଁ ରୋମାରମଣ ସୁଗ୍ରୀବ ବିଭୀଷଣଙ୍କୁ ପ୍ରେମାନନ୍ଦରେ ଆଲିଙ୍ଗନ କଲେ ଏବଂ ବିଭୀଷଣ ଉପହାସରେ ଇଙ୍ଗିତ କରି କହିଲେ—ହେ କିଷ୍କିନ୍ଧ୍ୟାପୁର ମର୍କଟ ବୀର ବଂଶର ଯୋଗ୍ୟ ବ୍ୟକ୍ତି !

---

**ଶବ୍ଦାର୍ଥ** । ପ୍ରସାର—ମେଲାକର । ଉଚ୍ଚାର—ଉଚ୍ଚାରଣ କର । **ମର୍କଟ ମୁକୁଟାଳଂକାର**—ମର୍କଟ ଜାତିର ମୁକୁଟ ସ୍ୱରୂପୀ ଯେ ରାଜବଂଶ ତନ୍ମଧ୍ୟରେ ଅଳଂକାର ସଦୃଶ ସଦ୍‌ଗୁଣବାନ୍, ଅର୍ଥାତ୍ ସୁଗ୍ରୀବ । ପୁଣ୍ୟଜନ—ଧାର୍ମିକ । ପୁଣ୍ୟଜନ—ରାକ୍ଷସ । ସତ୍ୱର—ତ୍ୱରା (ଶୀଘ୍ର) ସହିତ, ଅତିଶୀଘ୍ର । ରୋମା—ସୁଗ୍ରୀବଙ୍କ ପ୍ରଥମ ବିବାହିତା ସହଧର୍ମିଣୀ । ତାଙ୍କୁ ବଳାତ୍କାରରେ ତାଙ୍କର ଦେଢ଼ଶୁର ବାଳୀ ନିଜ ସ୍ତ୍ରୀ କରି ରଖି ସହବାସ କରୁଥିବା ଦୋଷରେ ବାଳୀକୁ ରାମ ଶାସ୍ତ୍ରୀୟ ନୀତି ରକ୍ଷା କରି ଗୋପନରେ ହତ୍ୟା କରିଥିଲେ । ରୋମାରମଣ—ସୁଗ୍ରୀବ । **ପ୍ରେମାନନ୍ଦେ**—ପ୍ରେମ ସହିତ ଆନନ୍ଦରେ । ଆଶ୍ଳେଷ—ଆଲିଙ୍ଗନ । ରାବଣାନୁଜ—ବିଭୀଷଣ । ଛଳଲେ—ଉପହାସ କଲେ, ଇଙ୍ଗିତ କଲେ । ହରି—ମର୍କଟ । ଅବତଂସ—ବଂଶର ଯୋଗ୍ୟ ବ୍ୟକ୍ତି ।

**ପାଠାନ୍ତର** । ଉଚ୍ଚାର—ଭଣିଲେ । ପ୍ରବେଶ ହୋଇଥିଲେ ସତ୍ୱର—ପ୍ରବେଶ ହୋଇଲେ ତତ୍‌କାଳ (ପାଠ୍‌ବେଶ ହେଲା) ଛଳଲେ—ଛଳିଲ । ହେ କିଷ୍କିନ୍ଧ୍ୟା ପତି ବୀରବୀରାବତଂସ ।

ହେଲା ପବିତ୍ର ନେତ୍ର ଗାତ୍ର ତୁମ୍ଭର ଦରଶନ ପରିରମ୍ଭରେ
ଦମ୍ଭକର ମୋତେ ଶରଣ ରକ୍ଷଣ ବାନା ବନ୍ଧା ହେବା ସ୍ତମ୍ଭରେ
ରତ ବାର୍ତ୍ତାରେ
ନୁହ, କହି ଯାଇ ଚପଳେ
ଅରକ୍ଷ ରକ୍ଷକ ରକ୍ଷକ ନୋହିଲେ ଗତି ନାହିଁ ମହୀମଣ୍ଡଳେ । ୮ ।

କଥା – ତୁମ୍ଭଙ୍କୁ ଦେଖି କରି ଏବଂ ତୁମ୍ଭର ଆଲିଙ୍ଗନ ଲାଭ କରି ମୋର ନେତ୍ର ଏବଂ ଅଙ୍ଗ ପବିତ୍ର ହେଲା । ଶରଣରକ୍ଷଣୀ ବାନା ବନ୍ଧା ହୋଇଥିବା ଖମ୍ବରେ ଆଶ୍ରୟ ଦେଇ ମୋତେ ଦମ୍ଭ କରିଦିଅ । କଥା ଭାଷାରେ ଆଉ ଅଧିକ ଆସକ୍ତ ନୋହି ଶୀଘ୍ର ଏହି କଥା ଯାଇ କହ । ସେହି ଅରକ୍ଷରକ୍ଷକ ରାମ ଯେବେ ମୋର ରକ୍ଷାକର୍ତ୍ତା ନ ହେବେ ତେବେ ମହୀମଣ୍ଡଳରେ ମୋର ଗତି ନାହିଁ ।

---

ଶବ୍ଦାର୍ଥ । ନେତ୍ର—ଚକ୍ଷୁ । ଗାତ୍ର—ଅଙ୍ଗ, ଦେହ । ପରିରମ୍ଭ—ଆଲିଙ୍ଗନ । ବିଭୀଷଣ କହିଲେ ତୁମ୍ଭଙ୍କୁ ଦେଖି ମୋର ନେତ୍ର ଏବଂ ଆଲିଙ୍ଗନ କରି ମୋର ଦେହ ପବିତ୍ର ହୋଇଗଲା । ଦମ୍ଭ—ଦୃଢ଼ । ଶରଣରକ୍ଷଣବାନା-ବନ୍ଧା ହେବା ସ୍ତମ୍ଭରେ—ଯେଉଁ ଖୁମ୍ବରେ ଆଶ୍ରିତଙ୍କୁ ରକ୍ଷା କରିବାର ପତାକା ବନ୍ଧାଯାଏ ଅର୍ଥାତ୍ ଯେଉଁ ରାମ ତୁମ୍ଭଙ୍କୁ ଶରଣ ଦେଇପାରିଲେ ସେହି । ବାର୍ତ୍ତାରେ—କଥୋପକଥନରେ । ରତ—ଆସକ୍ତ । ନୁହ—ହୁଅ ନାହିଁ । ଚପଳେ—ଚଞ୍ଚଳରେ, ତୁରନ୍ତ । ଅରକ୍ଷ—ଅନାଥ, ଅସହାୟ । ରକ୍ଷକ—ରକ୍ଷାକର୍ତ୍ତା ।

ପାଠାନ୍ତର । ଶରଣ ଦେଖାଇ ରଖିବାନା ବନ୍ଧା ସ୍ତମ୍ଭରେ (ରକ୍ଷାବାନା ବନ୍ଧାସ୍ତମ୍ଭରେ) ରତବାର୍ତ୍ତାରେ (ରଣବାର୍ତ୍ତାରେ) ।

ଶୁଣି କପିପତି ତତକ୍ଷଣି ଗତ-ପ୍ରୀତରେ ମସ୍ତକ ମଳାଇ
ସୀତା ନାଥରେ କରଯୋଡ଼ି କହିଲେ ତୋଷାର୍ଣ୍ଣବେ ଭାଷା ରସାଇ
ବୀରାବତଂସ
ସଢ଼ିଲେ ରାକ୍ଷସେ ଏସ୍ତରେ
ଦଶମସ୍ତକ ଅସ୍ତ ପାଠ ପୁସ୍ତକ ନ୍ୟସ୍ତ ଆସି ହେଲା ହସ୍ତରେ । ୯ ।

ସୁଷେଣ ମୁଖକୁ ଚାହିଁ ରଘୁମଣି ଦ୍ୟୁମଣି-କୁମର କହିଲେ—
ହେ ଦୂଷଣ-ପର ଶରଣକୁ ଲଙ୍କାଭୂଷଣ ଅନୁଜ ଅଇଲେ
ହୋଇ ବିନତ
ମୋତେ ଭବ କତ ପେଷିଲେ
ଦସ୍ୟୁବିଗ୍ରହ ଅନୁଗ୍ରହ ନିଗ୍ରହ ହୋଇଲେ ଭୃସିଲ ଭୃଷିଲେ । ୧୦ ।

---

ଶବ୍ଦାର୍ଥ । ଗତପ୍ରୀତରେ—ଗମନ ସ୍ନେହରେ, ଯିବାରେ । ସୀତାନାଥ—ରାମ । ତୋଷାର୍ଣ୍ଣବେ—ସନ୍ତୋଷ ସମୁଦ୍ରରେ । ଅବତଂସ—ଜାତ । ଦଶ ମସ୍ତକ ରାବଣ ନାଶହେବ ତାହାର ପାଠ କରିବା ପୁସ୍ତକ ଆପଣଙ୍କ ହସ୍ତରେ ନ୍ୟସ୍ତ ହେଲା—ବିଭୀଷଣ ମେଠାକୁ ଆସିଯିବାରୁ ।

ଶବ୍ଦାର୍ଥ । ଦ୍ୟୁମଣି-କୁମର—ସୂର୍ଯ୍ୟପୁତ୍ର ସୁଗ୍ରୀବ । ହେ ଦୂଷଣପର—ଦୂଷଣ ରାକ୍ଷସର ଶତ୍ରୁ ରାମ । ଲଙ୍କା ଭୂଷଣ—ଲଙ୍କାର ରାଜା ରାବଣ । ରାବଣ ଅନୁଜ—ସାନଭାଇ ବିଭୀଷଣ । ନିଗ୍ରହ—ନିରାକରଣ (ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି) । କତ—ନିକଟ ।

ପାଠାନ୍ତର । ତତକ୍ଷଣି—ତତକ୍ଷଣେ । ପ୍ରୀତରେ ମସ୍ତକ ମଳାଇ—ରଚିଲେ ମସ୍ତକ ରସାଇ । କରଯୋଡ଼ି—ହସ୍ତଯୋଡ଼ି । ଭାଷା ରସାଇ—ଭାଷା ଭସାଇ । ସଢ଼ିଲେ—ପଢ଼ିଲେ । ପୁସ୍ତକ ନ୍ୟସ୍ତ ହେଲା ଆସି ହସ୍ତରେ—ପୁସ୍ତକ-ଖଣ୍ଡି ପାତ ହେଲେ ହସ୍ତରେ, ପୁସ୍ତକ-କାର ପାତ ହେଲା ହସ୍ତରେ ।

ପାଠାନ୍ତର । ସୁଷେଣ ମୁଖକୁ ଚାହିଁ ରଘୁମଣି—ଜାମ୍ବବକୁ ଚାହିଁ ରଘୁବଂଶ ପତି, ସୁଷେଣକୁ ଚାହିଁ ରଘୁବଂଶପତି । ଦସ୍ୟୁବିଗ୍ରହ—ଅରକ୍ଷରକ୍ଷକ ରକ୍ଷକ ନୋହିଲେ ଭୃସିଲ ଭୃସିଲ ଭୃଷିଲେ । ଦସ୍ୟୁବିଗ୍ରହ ଅନୁଗ୍ରହ ନୋହିଲେ ଭୃସିଲ ଭୃସିଲ ଭୃଷିଲେ । ପୂର୍ବରୁ ଅଷ୍ଟମ ପଦରେ "ଅରକ୍ଷ ରକ୍ଷକ ରକ୍ଷକ ନୋହିଲେ" ବୋଲି ବର୍ଣ୍ଣିତ ଥିବାରୁ ଏ ପାଠାନ୍ତର ସମୀଚୀନ ନୁହେଁ ।

ସୁଗ୍ରୀବ ମୁଖରୁ ଶୁଣି ଜାମ୍ବବନ୍ତ ବନ୍ଧୁତରେ ଚାଳ ନେଇଥାନ୍ତ
ଷଉରୀ ଉଛାଉଲା ଗର ସରତୁଁ ଝରେ କେବେ କାହିଁ ଅମୃତ
ଶୁଣି ମାରୁତ
ବଦନ୍ତ ଉଚନ୍ତ ହେଲା କି
ବିଶାଖା ଶାଖା କଳ୍ପଦ୍ରୁମ ନିରାଶ ଫଳ ଫଳିବାର ଶୋହେ କି ? ।୧୧।

ପ୍ରଫୁଲ୍ଲ ଫୁଲ୍ଲ ନୀଳେନ୍ଦିବର ତନୁ ମିତ୍ର ମୁଖ ଚାହିଁ କହିଲେ
ଜନକତନୂଜା ବିନୁ ସିତଭାନୁ ଭାନୁ ପ୍ରାପ୍ତେ ଗୁଣ ବହିଲେ
ଯେବେ ଶଉରୀ
ବଚନେ ଡେଇବା ଶ୍ରୁତିକି
ଲକ୍ଷଣାଙ୍କ ପଦ ଭୂଷଣ ତବ ଏ ଅଭୂଷଣ ହେବ କ୍ଷିତିକି । ୧୨ ।

---

ଶବ୍ଦାର୍ଥ । (୧୧) ଶଉରୀ—ସୁଗ୍ରୀବଙ୍କର ଏକ ଯୂଥପତି । ଗର—ବିଷ । ବଦନ୍ତ—କହିଲା । ବିଶାଖା—ପ୍ରିୟାବିହୀନ । ଶାଖା—ଡାଳ । କଳ୍ପଦ୍ରୁମ—ଯେଉଁ ବୃକ୍ଷ ନିକଟରେ ଯାହା ମାଗିଲେ ମିଳିଥାଏ ।

ଶବ୍ଦାର୍ଥ । (୧୨) ସିତଭାନୁ—ଚନ୍ଦ୍ରମା । ଭାନୁ—ସୂର୍ଯ୍ୟ । ଶଉରୀ—ଯୂଥପତି ବିଶେଷ । ଲକ୍ଷଣାଙ୍କ—ଲକ୍ଷଣବିଶିଷ୍ଟ । ପଦଭୂଷଣ—ଅଷ୍ଟାଦଶ ଚିହ୍ନବିଶିଷ୍ଟ ପାଦପଦ୍ମ । ଅଭୂଷଣ—ଅସୁନ୍ଦର ।

ପାଠାନ୍ତର—(୧୧) ବଦନ୍ତ ଉଚିତ ନୋହିଲା । ବିଶାଖା ଶାଖା (ସଖା) କଳ୍ପଦ୍ରୁମ (କଳ୍ପେଦ୍ରୁମ) ନିରାଶ ଫଳ ଫଳିବାର (ଫଳିବାରେ) ଶୋହିଲା । ବିଶାଖୀ ଶାଖା କଳ୍ପଶାଖା ନିରାଶ ଫଳ ଫଳିବାରେ ଶୋହିଲା ।

ପାଠାନ୍ତର—(୧୨) ଫୁଲ୍ଲ ପ୍ରଫୁଲ୍ଲି ନୀଳେନ୍ଦିବର ନେତ୍ର ମିତ୍ର ମୁଖ ଚାହିଁ ବୋଇଲେ
ଜନକ ତନୟା ବିନୁ ସିତଭାନୁଠାରୁ ଶତେ ଗୁଣ ବହିଲେ
ଯେବେ ଶଉରୀ
ବକ୍ତ୍ରରେ ଡେଇବା ଶ୍ରୁତିକି
ଲକ୍ଷ୍ମଣାଙ୍କ ପଦ ପୁଷଣ ଦୂଷଣ ଭୂଷଣ ହୋଇବ ମିତ କି ?
(ନୋହିବ ବିସ୍ମର ମତକି)

ବନ୍ଧା ହୋଇ ବନ୍ଧାଇଚ ପଦାହୀନ ଜନହୃତ କୃତ ବାନାକୁ
ଅବଧି ବଗ୍ରର ନ ଉଚାର କେହ୍ନ ପ୍ରଗ୍ରରତ ଘେନ ସେନାଙ୍କୁ
ଠାରୁ ଈକ୍ଷଣେ
ସଲକ୍ଷଣ ମୂର୍ତ୍ତି ଲକ୍ଷ୍ମଣେ
ବଶ୍ରବାନନ୍ଦନ ସନ୍ନିଧି ଗମନ-ସୁଧାନିଧି ହେଲେ ତକ୍ଷଣେ । ୧୩ ।

ସୀତା-କୁନ୍ଦନ-କୁଚ-କୁମ୍ଭ-ଚନ୍ଦନ ଛାମୁଁରେ ବେଦନ ତୁମ୍ଭର
ଶ୍ରବଣ କରାଉ ଦ୍ରବ ଯାଇ କରି ନେବାକୁ ତୁମ୍ଭଙ୍କୁ ସତ୍ୱର
ସଉମିତ୍ରି ଏ
ଗତ ଆରମ୍ଭ ଲେ ଉତ୍ସବେ
ରୋମାବଲ୍ଲଭ ଦୁର୍ଲ୍ଲଭ ଭବେ କହି ଦେଖାଇଲେ କର ପଲ୍ଲବେ ।୧୪।

---

ଶବ୍ଦାର୍ଥ । (୧୩) ପଦାସ୍ଥାନ—ଆଶ୍ରୟବିହୀନ । ବାନା—ପତାକା । ଠାରୁ—ଠାରିବାରୁ । ଈକ୍ଷଣେ—ଆଖିରେ (ଆଖିରେ ଠାରିବାରୁ) । ସଲକ୍ଷଣ—ଲକ୍ଷଣବନ୍ତ । ବଶ୍ରବାନନ୍ଦନ—ବିଭୀଷଣ । ଗମନ ସୁଧାକୁ ନିଧି ସ୍ୱରୂପ ହେଲେ—ଅତି ସ୍ନେହରେ ଯାତ୍ରାକଲେ ।

ଶବ୍ଦାର୍ଥ । (୧୪) ସୀତା-କୁନ୍ଦନ-କୁଚ-କୁମ୍ଭ-ଚନ୍ଦନ—ସୀତାଙ୍କର ସୁଗୋଲ ସୁଠାମ କୁଚ କୁମ୍ଭର ଚନ୍ଦନ ସ୍ୱରୂପୀ, ରାମ । ବେଦନ—ପ୍ରାର୍ଥନା । ଶ୍ରବଣ କରାନ୍ତୁ—କହନ୍ତୁ । ଦ୍ରବ ଯାଇ କରି—ଦୟାର୍ଦ୍ର ହୋଇ । ରୋମାବଲ୍ଲଭ—ସୁଗ୍ରୀବ । ଦୁର୍ଲ୍ଲଭ—ଅତିଶୟ ଭବେ ନ ମିଳିବା ।

ପାଠାନ୍ତର । (୧୩) ବନ୍ଧାଇଚ—ବନ୍ଧାଇଛୁ । ପଦାସ୍ଥାନ—ପଦସ୍ଥାନ । ଜନହୃତକୃତ-ବାନାକୁ—ଜନେ କେହ୍ନ ନିନ୍ଦା ବାନାକୁ, ଧନଜନ ହୃତ ବାନାକୁ । ଅବଧି ବଗ୍ରର—ଅବଧି ଉଚାର । ସେନାଙ୍କୁ—ଶ୍ରୀହାକୁ । ଠାରୁ ଈକ୍ଷଣେ—ଇତବାର୍ତ୍ତାରେ । ଲକ୍ଷ୍ମଣେ—ଲକ୍ଷ୍ମଣ । ସଲକ୍ଷଣ ମୂର୍ତ୍ତି ଲକ୍ଷ୍ମଣ—ଇତବାର୍ତ୍ତାରେ, ନୃହି ଅଣ ଯାଇ ବହନ । ତକ୍ଷଣେ—ତକ୍ଷଣ ।

ପାଠାନ୍ତର । (୧୪) ଛାମୁଁରେ ବନ୍ଦନ ତୁମ୍ଭର । ପାଣି ପଲ୍ଲବେ ।

ବନ୍ଧୁ ତୋଷ ବେନ ଦଶ ନେତ୍ରାନୁଜ ସୁମିତ୍ରାନନ୍ଦନ ପଦ୍ମରେ
ନମି କରପର୍ଣ୍ଣ ଯୋଡ଼ିଲେ ସୁପର୍ଣ୍ଣ ପ୍ରପନ୍ନ ପ୍ରକାର ଲକ୍ଷ୍ୟରେ
କପିଶେଖର
ଗୃହିଁ ଖରେ କହ କୁମୁଦ
ବାଳମ୍ବ ଅରୁଣ ବମ୍ବ ବରୋଧିଛୁ ଗମନ ପ୍ରମୋଦ କୁମୁଦ । ୧୫ ।

ଦୁର୍ବାସାଦ ପୂଜ୍ୟ ଦୂର୍ବାଦଳ ତେଜ ପୂର୍ବାଶା ମୁଖରେ ବସ ଯେ
ଗୃଢ଼କ ତ୍ରୋଟି ଲୋକତ ଘନ ଘୋଟି ପରସ୍ପେ ଭେଟିଲେ ଆସି ଯେ
ଦୂର ଦୁରତ
ତୁରତେ ବଶ୍ରବାକୁମର
ପୂର୍ବ ପର୍ବତବହାରୀ ହେଲେ ହର ଯଥା ଗର୍ବ ଖର୍ବ ରାବର । ୧୬ ।

---

ଶବ୍ଦାର୍ଥ । (୧୫) ବେନ ଦଶ—ବଂଶ । ବଂଶନେତ୍ର—ରାବଣ । ରାବଣ ଅନୁଜ—ବିଭୀଷଣ । ସୁମିତ୍ରାନନ୍ଦନ ପଦ୍ମରେ ନମି କର (ପର୍ଣ୍ଣ) ପତ୍ର ଯୋଡ଼ିଲେ । ସୁପର୍ଣ୍ଣ—ଗରୁଡ଼ । ପ୍ରପନ୍ନ—ଶରଣାଗତ, ଆଶ୍ରିତ । ଲକ୍ଷ୍ୟ—ମନୋଯୋଗ । କପିଶେଖର—ସୁଗ୍ରୀବ । ଖରେ—ଶୀଘ୍ର । କୁମୁଦ—ଶ୍ୱେତପଦ୍ମ । କୁମୁଦ—ଯୂଥପତି ବଶେଷ ।

ଶବ୍ଦାର୍ଥ । (୧୬) ଦୂର୍ବାସାଦ ପୂଜ୍ୟ ଦୂର୍ବାଦଳ ତେଜ—ଦୁର୍ବାସାଦ ଋଷିଙ୍କର ପୂଜନୀୟ ଶ୍ୟାମଳ ବର୍ଣ୍ଣବିଶିଷ୍ଟ, ରାମ । ପୂର୍ବାଶା—ପୂର୍ବଦିଗ । ତ୍ରୋଟି—ଥଣ୍ଟ, ଚଞ୍ଚୁ । ଦୁରିତ—ଦୁଃଖ, ଅନ୍ଧକାର । ପୂର୍ବ ପର୍ବତବିହାରୀ ହରି—ସୂର୍ଯ୍ୟ । ଯଥା ଗର୍ବ ଖର୍ବ ରାବର—ଯେପରି ରାବର ଗର୍ବ ଖର୍ବ ହୁଏ ।

ପାଠାନ୍ତର—(୧୫) ହୋଇ ତୋଷ । ସୁମିତ୍ରା କୁମର । ଦର୍ଶନ ପ୍ରକାର ଲକ୍ଷ୍ୟରେ । କପିଶେଖରେ । ଥିରେ ଗୃହିଁ କହେ କୁମୁଦ । ଅରୁଣ ଅମ୍ବୁଜ ବମ୍ବ ବରୋଧରୁ ଗମନ ପ୍ରମୋଦ କୁମୁଦ ।

ପାଠାନ୍ତର—(୧୬) ପୂର୍ବାଭିମୁଖରେ । ପରରେ—ପରସ୍ପେ । ଦୁରିତ—ଦୁର୍ଗତି । ତୁରିତେ—ତକ୍ଷଣେ । ରାବର—ରାବିର ।

ଭଣିଲେ କରଯୁଗ ଯୋଡ଼ି କପିଷ୍କିନ୍ଧ୍ୟା-ଈଶ ରଘୁବଂଶ ନାଥ ହେ
ଅଇଲେ ସକଳ ଦୁର୍ମୂଲ୍ୟ ପଦାର୍ଥ ଲଭିବାରେ ସେ ପ୍ରଶସ୍ତ ହେ
ଶୁଣି ଅଧରେ
ହାସ ଜାତ କଲେ ଶ୍ରୀରାମ
ନାନ୍ଦିଲା କଳ୍ପଦ୍ରୁମରୁ ଉଦ୍ଭବବା ମକରନ୍ଦସ୍ଥିତ କୁସୁମ । ୧୭ ।

ଶୋଭି ସକଳେ ନୀଳମଣି ନାବରେ ଖେଳା କଲା ପର ଚନ୍ଦ୍ରମା
ଆସ ଆସ ଭାଷ ପ୍ରଭୁଙ୍କୁ ବଢ଼ିଲା ଦାଢ଼ି ମୁଖ ପ୍ରଭା ବଢ଼ମା
ବନ୍ଧୁ ସୁମାଳୀ—
କୁମାରୀ କୁମର ଜାଣିଲା
ଧୂର୍ଜଟି ଶତ୍ରୁ ସଂପୃକ୍ତ ପଦ୍ମରାଗ ମଣି ପଦ୍ମରେ ପ୍ରଣମିଲା । ୧୮ ।

---

ପାଠାନ୍ତର—(୧୭) କହିଲେ କର ଯୋଡ଼ି ସେ କପିଷ୍କିନ୍ଧ୍ୟାନାଥ ଶୁଣ ରଘୁନାଥ ହେ । ଲଭିବାକୁ ସାମରଥ ହେ । ଶଶୀ ଅଧରେ । ହାସ୍ୟ ଜାତକଲେ ।

ଶବ୍ଦାର୍ଥ । (୧୮) ସୁମାଳୀ-କୁମାରୀ—ନୈକଷୀ । ନୈକଷୀକୁମର—ବିଭୀଷଣ ।
ପାଠାନ୍ତର—(୧୮) ଇନ୍ଦ୍ରନୀଳ ନାବରେ । ଲୀଳା କଲା ପରି । ମୁଖ ଶୋଭା ବଢ଼ମା । ଧୂର୍ଜଟି ହୃଦ ।

ନଖାବଳ ଝଳ କର ସେ କାଳରେ ଲଭିଲେ କୁଞ୍ଚିକା ବାଧିକ
ଫିଟାଇ ଲୁଟିଲେ ଜଟିଳ ପେଟୀ ତା କୁଟିଳ ସଂଶ୍ରବ ସିଦ୍ଧିକ
ପ୍ରେମ ବଶରୁ
ରସିଥିଲ ଶିର କମ୍ପନେ
ଅତୁଳାଇ ଯୋଗେ ଫଳାଇ ହେବାରୁ ଭୁଲାଇ ରଖିଲ ଗୁମାନେ । ୧୯ ।

ହେ ବଳଷ୍ଣୁ ଉଠ ଉଠ ବୋଲୁଁ ଉଠି କର ଯୁଗ ଯୋଡ଼ି ରହିଲ
କୂଟ ବିଦ୍ୟାକାର ମୁକୁଟକୁ କପାଁ । ତେଜ୍ୟାକଲ ବୋଲୁଁ ବୋଇଲ
କ୍ଷିତନନ୍ଦନା
ମତ୍ତ ସରସିଜ ରବ ହେ
ଦୈତ୍ୟ ଶର୍ବରୀଶ ଗର୍ବ ପର୍ବତକୁ ମୋ ବଚନ ହେଲ ପବି ହେ । ୨୦ ।

ଶବ୍ଦାର୍ଥ । (୧୯) କୁଞ୍ଚିକା—ଚାବି । ଜଟିଳ—(ଜଟଳ) କପାଳ, ଅଟଳ । ଅତୁଳାଇ—ଅନୁପମ, ଅତୁଳନୀୟ ।

ଶବ୍ଦାର୍ଥ । (୨୦) କୂଟ ବିଦ୍ୟାକାର ମୁକୁଟ—କୂଟ ବିଦ୍ୟାରେ ପ୍ରବୀଣ ମୁକୁଟଧାରୀ, ଲଙ୍କାପତି ରାବଣ । କ୍ଷିତନନ୍ଦନା—ସୀତା । ମତ୍ତ ସରସିଜ—ଚଣ୍ଡପଦ୍ମ । କ୍ଷିତନନ୍ଦନାମତ୍ତସରସିଜ ରବି—ରାମ । ଦୈତ୍ୟ ଶର୍ବରୀଶ—ଅସୁର ଚନ୍ଦ୍ରମା, ରାବଣ । ଗର୍ବ ପର୍ବତକୁ ମୋ ବଚନ ବଜ୍ର(ପବି) ସ୍ୱରୂପ ହେଲ ।

ପାଠାନ୍ତର—(୧୯) ଲଭିଲ କୁଞ୍ଚିକା ଗଢକ । ଫିଟାଇ ଲୁଟିଲ । ଜଟିଳା ପୁରୁତା କୁଟିଳ ସଂସର୍ଗ ଜଧିକ । ପ୍ରେମବଶରେ । ହୋଇଥିଲେ ଶିର କଂପନେ । ଝୁଲାଇ ରଖିଲ ଯତନେ (ସମାନେ) ।

ପାଠାନ୍ତର—(୨୦) ଉଠ ବୋଲୁଁ ଶିରେ । ମୁକୁଟ କପାଇଁ । ତ୍ୟାଗକଲ ବୋଲୁଁ କହିଲ । କ୍ଷିତମଣ୍ଡନା ।

ରୋଷେ ସ୍ୱେଦ ସ୍ରବ ନାଶ ତାମରସ କାନନେ ହେବାର ଦ୍ୱିରଦ
କପଁ । ନନ୍ଦବା ବନ୍ଦିବାର ଉଚିତ ନୋହିଲେ ସେ କେଉଁ ବରଦ
ନବ ନୀରଦ
ସୁନ୍ଦର ଚରଣ ଯୁଗକୁ
ଲଭିଲ ଯହିଁ ପାଇଁ ଜାଗିଅଛନ୍ତି ଯୋଗିବୃନ୍ଦ ଯୋଗେ ଯୋଗକୁ । ୨୧ ।

କଣା ହୋଇ ଜଗଜ୍ଜିଣା ଏ ବାଣୀରେ ଭଣିଲେ କପାଇଁ କାର୍ମୁକ
ନଦରେ କହ ତ ସୋଦରେ ଶୋଭିତ କେତେ ଗୁଣ ବଳ ବିବେକ
ଭ୍ରାତା କୁମର
ଚତୁରଙ୍ଗ ରଙ୍ଗବର୍ଦ୍ଧି ଯେ
ଶୁଣି ପାଣି ଯୋଡ଼ି ଭଣିଲ ବିଶେଷ ବଂଶପାଣି ଅଣସିଦ୍ଧି ଯେ । ୨୨ ।

---

ଶବ୍ଦାର୍ଥ । (୨୧) ରୋଷେ—କୋପରେ । ସ୍ୱେଦ—ଝାଳ । ତାମରସ—ପଦ୍ମ । ଦ୍ୱିରଦ—ହସ୍ତୀ । ନବ ନୀରଦ—ନବୀନ ମେଘ ।

ଶବ୍ଦାର୍ଥ । (୨୨)ଜଗଜ୍ଜିଣା—ଜଗତଜୟକାରୀ । କାର୍ମୁକ—ଧନୁ,ବାଣ । କହ ତ ତୁମ୍ଭ (ସୋଦରେ) ସୋଦରଠାରେ କେତେ ଗୁଣ ବଳ ବିବେକ (ଶୋଭିତ) ଶୋଭା ପାଉଛି । ନଦରେ—ନିର୍ଭୟରେ । ଭ୍ରାତା—ଭାଇ । କୁମର—ପୁଅ । ଚତୁରଙ୍ଗ—ହସ୍ତୀ, ଅଶ୍ୱ, ରଥ, ପଦାତି ଚାରିଅଙ୍ଗ-ବିଶିଷ୍ଟ ସେନା । ତାର ଭାଇ, ପୁଅ ଏବଂ ସୈନ୍ୟଦଳ କଥା ମଧ୍ୟ କହ ।

ପାଠାନ୍ତର—(୨୧) କାନନର ହେଲ ଦ୍ୱିରଦ । କପାଁ ନନ୍ଦବ । ନୋହିଲେ କି ଏଥି ବରଦ । ଲଭିଲ ଯାହା ଯୋଗେ ଯୋଗ (ଯାଗ) କରନ୍ତି ଯୋଗିବୃନ୍ଦ ଯୁଗ ଯୁଗକୁ ।

ପାଠାନ୍ତର—(୨୨) ଭଣିଲେ—ଭାଷିଲେ । ନଦରେ କହ ତ, ନଦରେ କହ ରୁ (ତୋ)ଭ୍ରାତ କୁମର । ଚତୁରଙ୍ଗ ସଙ୍ଗ (ବଳ)ବର୍ଦ୍ଧି ଯେ । ଶୁଣି ଆଣି ପାଣି ଭଣିଲ ଅଶେଷ ବଂଶପାଣି ଆଣି ସିଦ୍ଧି ଯେ ।

ବୃନ୍ଦାରକ ବୃନ୍ଦାନନ୍ଦ ଦର୍ପ ବାତେ ସର୍ପ ହେଲ୍ ପର ବାହାର
ମନ୍ଦୋଦରୀ କୁଚ କୁମୁଦ ନୀହାର କରନ୍ତା ଭ୍ରୂଲତା ବହାର
ଭୁଜଦଣ୍ଡର
ମଣ୍ଡନ କୋଦଣ୍ଡ ଚଗ୍ଲ
ବାଜିଗଲେ ଭଜିଯିବ ଓଜରାଜି ହେବ ପଞ୍ଚ ନଭମଣ୍ଡଳ ।୨୩।

ମହାବଳଷ୍ଠ କୁଳଶ୍ରେଷ୍ଠ କନଷ୍ଠ ଭ୍ରାତ ଘଟଶ୍ରୁତି ମୂର୍ତ୍ତିଙ୍କ
ଘଟନା ଲମ୍ପଟ ନୋହିବାରୁ ଧାତା ରତ ହୋଇ ନାହିଁ ସ୍ତୁତକ
ଯାହା ଜଗତୀ
ବଜାଯ୍ଯ ବାଜଣା ଧ୍ୱନିକି
ଶୁଣି ଲ୍କ୍ଷଣି ଭ୍ରମରୋଗ ଆରୋହେ ଦିନେଶସୁତ ମୂର୍ଦ୍ଧନୀ କ ।୨୪।

---

ଶବ୍ଦାର୍ଥ । (୨୩) ବୃନ୍ଦାରକ—ଦଳପତି । ବୃନ୍ଦ—ସମୂହ । ଆନନ୍ଦ ଦର୍ପ ବାତେ (ପବନରେ) ସର୍ପ ବାହାର ହେଲ ପର । ମନ୍ଦୋଦରୀ କୁଚ କୁମୁଦର ନୀହାର (ତୁଷାର) ରୂପୀ କରନ୍ତା (କର୍ତ୍ତା) ଯେ ନୃଶଂସ ଭାବରେ ମନ୍ଦୋଦରୀ କୁଚକୁ ଦଳି ପକାଏ, ରାବଣ ।

ରାବଣ ଏବଂ ରାମଙ୍କ ମଧ୍ୟରେ କ'ଣ ପ୍ରଭେଦ ତାହା ଦୁଇଟି ପ୍ରୟୋଗରୁ ଜଣାଯାଏ ।

ରାମଙ୍କ ପକ୍ଷରେ 'ସୀତା-କୁନ୍ଦନ-କୁଚ-କୁମ୍ଭ-ଚନ୍ଦନ' ଗ୍ରାମୁରେ, ରାବଣ ପକ୍ଷରେ ମନ୍ଦୋଦରୀ କୁଚ କୁମୁଦ ନୀହାର କରନ୍ତା ଭ୍ରୂଲତା ବହାର ।

ଭ୍ରୂଲତା ବହାର—ଆଖି ଓ ଆଖି ଚମକାଇବା । ଚଗ୍ଲ—ପତାକା । ଓଜ—ବଳ । ପଞ୍ଚ—ବିସ୍ତାରିତ ।

ଶବ୍ଦାର୍ଥ । (୨୪) ଘଟଶ୍ରୁତି—କୁମ୍ଭକର୍ଣ୍ଣ । ଦିନେଶସୁତ—ଯମ ।

ପାଠାନ୍ତର—(୨୩) ବୃନ୍ଦାବନ ଦର୍ପବାତେ । ମନ୍ଦୋଦରୀ ହୃଦ କୁମୁଦ ନିହାର (କୁମୁଦନୀ ହାର) କର ତା ଭ୍ରୂଲତା ବହାର । ହଲଗଲେ ଓଜରାଜି ଭାଜିଯିବେ ପଞ୍ଚନବ ମଞ୍ଚମଣ୍ଡଳ । ନବ ପଞ୍ଚ ମଞ୍ଚମଣ୍ଡଳ ।

ପାଠାନ୍ତର—(୨୪) ଭ୍ରାତ କୁମ୍ଭଶ୍ରୁତି (କୁମ୍ଭକର୍ଣ୍ଣ) । ଘଟନା ଲମ୍ପଟ ବିଧିରୁ ବିଧାତା ଗଢ଼ା ହୋଇନାହିଁ ଶ୍ରୁତିକ ।

ଯାହା କେଂଶୁସୁତ ଆସି କଷିବାରେ ରସିକର ପାଣି ପଲ୍ଲବ
ଘସି ନାଶିଲା ନାକପାଳ କପାଳ ଲେଖା ବର୍ଣ୍ଣାବଳି ବଇଭବ
ଯାହା ବୀରେନ୍ଦ୍ର
ବୀର ପ୍ରଶଂସା ଆଚରଣ
ବଳବନ୍ତକୁଳ ବଳ ଦୂର୍ବାଦଳ ଦଳନେ ଶତାଙ୍ଗ ଚଳନ ।୨୫।

ହସ୍ତ ସମୁଦସ୍ତ ବନ୍ଧନ ବିଧାନ ପ୍ରଧାନ କନକ ଶୃଙ୍ଖଳା
ପ୍ରତୀତ ହୁଅଇ ଯବନ ବିଦ୍ୟାରେ ଅନୁସରନ୍ତି ଚପଳା
ଗଜେ ଶୋଭିତ
ସମ ଇନ୍ଦ୍ର ଗଜ ସମରେ
ମେରୁ କଇଲାଶ ଆଦ୍ୟ ପ୍ରାନ୍ତ ଦୃଶ୍ୟ ହୁଅନ୍ତି ଯାହାଙ୍କ ଛାମୁଁରେ ।୨୬।

ଶବ୍ଦାର୍ଥ । (୨୫) ଶତାଙ୍ଗ—ରଥ । ନାକପାଳ—ଇନ୍ଦ୍ର । ଆସି କଷିବାରେ—ଆସି—ଖଣ୍ଡା ଧରେ କଷିକର ।

ଶବ୍ଦାର୍ଥ । (୨୬) ଯବନ—ଇନ୍ଦ୍ରଜାଲ । କନକ ଶୃଙ୍ଖଳା—ସ୍ୱର୍ଣ୍ଣ ଶାଙ୍କୋଳି ।

ପାଠାନ୍ତର—(୨୫) ଅସି କଶିବାରେ । ପାଣିପଲ୍ଲବେ । ଘସି—ଘଣି । ବିଭବ—ବିଭବେ । ପ୍ରଶଂସା ହୁଏ (ପଣ ପ୍ରଶଂସା) ଆଚରଣେ ।

ପାଠାନ୍ତର—(୨୬) ହସ୍ତ ସମୁଦାସ୍ତ । ଗଜ ଶୋଭିତା । ଆଦ୍ୟପ୍ରାନ୍ତେ ଦୃଶ୍ୟ । ଯାହାର (ତାହାଙ୍କ) ଛାମୁଁରେ ।

ପ୍ଲବଗଗଣ ଶକନ୍ତଧର ପଦେ ପ୍ରମାଦ ବର୍ତ୍ତିଭି ବନ୍ଧୁ ଯେ
ପଢ଼ି କୁମାର ନାମ ସୋମଶିଖର କରମ ବଶରୁ ବନ୍ଧୁ ଯେ
ଯାହା ପ୍ରତାପ
ଛାୟା ଛାୟା ଦେବୀ ନାୟକ
ଯୋଗ୍ୟବଶରୁ ଦ୍ୱିରଦ ମୁଖେ ଗୃରୁ ପଦେ ହୋଇଲେ ବ ନାୟକ ।୨୭।

ଅଣିମାଦ୍ୟ କର ଆଣି ପାଣି ଯୋଡ଼ି ଭଣୁଥାଇ ବାଣୀ ମଣିମା
କହିଲେ ଅଧିକ ସବୁ ହେବ ଧିକ ପଦ ବିପଦକେ ମଣିମା
ପର ପ୍ରମଦା
ପ୍ରମୋଦ ମଦରେ ଜଡ଼ି ଯେ
ରହିଛି ତୁମ୍ଭ ଆରମ୍ଭ ପରିରମ୍ଭେ ବନା ବାଟେ ଯିବ ଉଡ଼ି ଯେ ।୨୮।

---

ଶବ୍ଦାର୍ଥ । (୨୭) ପ୍ଲବଗ—ବାନର । ବନ୍ଧୁ—ବଧାଇ । ପ୍ରମାଦ—ଭ୍ରମ । ସୋମ—ଚନ୍ଦ୍ରମା । ଛାୟାପତି—ସୂର୍ଯ୍ୟ । ଦ୍ୱିରଦ—ହସ୍ତୀ । ବ—ଆକାଶ । ସୋମଶିଖର—ଶିବ । ବିନାୟକ—ଗଣେଶ ।

ଶବ୍ଦାର୍ଥ । (୨୮) ଅଣିମାଦ୍ୟ—ଅଷ୍ଟସିଦ୍ଧି । ପରିରମ୍ଭ—ଆଲିଙ୍ଗନ । ଆରମ୍ଭ ପରିରମ୍ଭ—ଅନୁକୂଳାଲିଙ୍ଗନ, ଅନୁକୂଳପ୍ରତି ଆସକ୍ତି ।

ପାଠାନ୍ତର—(୨୭) ପଦକ ଗଣ ସର୍ଗ ଶିର୍ଷରେ ହେବା । ପଢ଼ି—ପତି । ଦ୍ୱିରଦ—ବରଦ । ଗୃରୁପଦେ—ଗୃହପଦେ ।

ପାଠାନ୍ତର—(୨୮) ଅଣିମାଦ୍ୟ କର ହୋଇ ଯୋଡ଼ି ପାଣି ବାଣୀ ଭଣୁଥାନ୍ତି ମଣିମା । ଅଧିକ ହୋଇ କ ହେବ ସୁବୁଦ୍ଧିଙ୍କ ପଦ ବିପଦରେ ମଣିମା । ପ୍ରମୋଦ ମଦରେ ପଡ଼ି । ରହିଛୁ ତୁମ୍ଭ ଅମ୍ବର ବାନା ବାଟେ ସଙ୍ଗତରେ (ପରିରମ୍ଭେ) ଯିବ ଉଡ଼ି ଯେ ।

ଶୁଣି ରଘୁମଣି ଭଣିଲେ ଜାଣିବା ରଣେ ତା ବୀରେନ୍ଦ୍ର ପଣ ଯେ
ଏକା କାଣ୍ଡକେ ପ୍ରାଣପତ କଣ୍ଠରେ ପ୍ରାଣ ହେବ ସମର୍ପଣ ଯେ
ଆମ୍ଭ ପ୍ରମାଣ
ଜାଣ ଛୁଉଁ ଧନୁ କମାଣ
ଆଜଠାରୁ ଲଙ୍କା ମହୀରେ ମହୀନ୍ଦ୍ର ତବ ପଦ ହେଲା ନିର୍ମାଣ । ୨୯ ।

ବୋଲେ ମିତ୍ରପୁତ୍ର ହେଲା କି ବଚନ ଚନ୍ଦ୍ରଭାନୁ କୁଳାମ୍ବୁଜକୁ
ସମର୍ପି ଜନକତନୁଜା କନକ ମହୀନ୍ଦ୍ର ଚରଣାମ୍ବୁଜକୁ
କଲେ ଆଶ୍ରିତ
କି ହେବ ? ଶ୍ରବଣେ ରାଘବ
ଭଣିଲେ, ଜାଣିବା ହିହ୍ନ ବହି ନାହିଁ ରାଜ୍ୟଭ୍ରଷ୍ଟ ନଷ୍ଟ ଲାଘବ । ୩୦ ।

**କଥା**— ସୁଗ୍ରୀବ କହିଲେ, ସୂର୍ଯ୍ୟବଂଶର ପଦ୍ମ ସ୍ୱରୂପୀ ହେ ରାମ ! ତୁମ୍ଭ ପକ୍ଷରେ ଏ ଶପଥ ବଚନ ହେଲା । କାରଣ ଯେବେ ସ୍ୱର୍ଣ୍ଣ ଲଙ୍କାର ରାଜା ରାବଣ ଜନକତନୁଜା ସୀତାଙ୍କୁ ସମର୍ପଣ କରି ଆପଣଙ୍କ ଚରଣାମ୍ବୁଜକୁ ଆଶ୍ରୟ କରିବ ତେବେ କ'ଣ କରାଯିବ ? ଜପରି ଆପଣ ଏହି ପ୍ରତିଜ୍ଞା ରକ୍ଷା କରିବେ ? ତେଣୁ ସୂର୍ଯ୍ୟକୁଳରେ ଜନ୍ମି ଶପଥ ଭଙ୍ଗ କଳଙ୍କ ଅର୍ଜିବେ ? ତା' ଶୁଣି ରାଘବ ରାମ କହିଲେ, ଫଳରେ ବିଧାତା ରାଜ୍ୟଭ୍ରଷ୍ଟ କଷ୍ଟକୁ ଲାଘବ କରିବା କଥା ମୋ ଭାଗ୍ୟରେ ଲେଖି ନାହିଁ ବୋଲି ମୁଁ ଜାଣିବି । ଅର୍ଥାତ୍ ପ୍ରତିଜ୍ଞା ଅନୁସାରେ ଅଯୋଧ୍ୟାରେ ତାଙ୍କୁ ରାଜା କରି ମୁଁ ଚିରଦିନ ବନବାସୀ ହେବି ।

---

ଶବ୍ଦାର୍ଥ । (୨୯) ପ୍ରାଣପତ—ଯମ । ଲଙ୍କା ମହୀରେ ମହୀନ୍ଦ୍ର—ଲଙ୍କାପତି । ତବ ପଦ ନିର୍ମାଣ ହେଲା—ତୁମେ ରାଜା ହେବା ନିଶ୍ଚିତ ହେଲା ।

ଶବ୍ଦାର୍ଥ । (୩୦) ମିତ୍ରପୁତ୍ର—ସୁଗ୍ରୀବ । ମିତ୍ର—ସୂର୍ଯ୍ୟ । ଚନ୍ଦ୍ରଭାନୁ—ସୂର୍ଯ୍ୟ । କୁଳାମ୍ବୁଜ— କୁଳର ପଦ୍ମ ପରି ମହତ ଓ ସୁନ୍ଦର । କନକମହୀନ୍ଦ୍ର—ସ୍ୱର୍ଣ୍ଣଲଙ୍କାର ରାଜା । ଚରଣାମ୍ବୁଜକୁ—ତୁମ୍ଭ ଚରଣପଦ୍ମକୁ । ଲାଘବ—ନିରାକରଣ ।

ପାଠାନ୍ତର—ଜାଣିବା—ଜାଣିମା । ରଣେ ତା—ରଣରେ । ଏକା କାଣ୍ଡକେ— ଏକା କାଣ୍ଡକରେ ପ୍ରାଣପତ କଣ୍ଠ । ଆମ୍ଭ ପ୍ରମାଣ—ଏହା ପ୍ରମାଣ । ଜାଣି ଛୁଉଁଅଛୁ କମାଣ । ଜାଣି ଛୁଉଁ ଧନୁ କମାଣ ।

ପାଠାନ୍ତର—ବୋଲେ ଚନ୍ଦ୍ରସୁତ । କହେ ମିତ୍ରପୁତ୍ର । ମହୀନ୍ଦ୍ର ଅଭୟ ପଦକୁ । କି ହେବ ଶ୍ରମାଣେ ରାଘବ ।

ଭ୍ରମିବା ଭଙ୍ଗି ଭଜନ୍ତେ ବା ନରେନ୍ଦ୍ର ଦୁନ୍ଦୁବନ୍ଧ ବର୍ଣ୍ଣିବ କହିଲ
ଭଙ୍ଗରର ଏବେ କଲଟି ଯା ହେବ ମାନ୍ଧା ଯୋଗ ମହୀ ପାଇଲ
ଥିଲେ ଦୁର୍ଯୋଗ
କଳ୍ପନାର ଯୋଗ ହୋଇବ
କାଳଞ୍ଜନକୁ ବାଳୀସୁତ ବୋଇଲ ଅସୁର କୁଳେ ସେ ସମ୍ଭବ ।୩୧।

ହିରଣ୍ୟଗର୍ଭ ଯହିଁ ତ ହରିମୁଖ ହର ହରି କାନ୍ତ ସୁନ୍ଦର
ବିନାୟକ ପାଶେ ଅରତ ଭାରତୀ ନୃସିଂହଙ୍କ ଚକ୍ର ମନର
କ୍ଷିତିରକ୍ଷକ
ବୀର ଶିରୋମଣି ମାନ୍ଧାତା
ବିନାୟକ ସିଂହ ବୋଲେ ବେନ ମୂର୍ତ୍ତି ତାପ ତମକୁ ମୋ ସବିତା ।୩୨।



ଶବ୍ଦାର୍ଥ । (୩୧) ଭ୍ରମିବା ଭଙ୍ଗି—ସ୍ୱତନ୍ତ୍ର ଭାବେ କହିବା । ଦୁନ୍ଦୁବନ୍ଧ—ଏକ ଦଳପଦ । ମାନ୍ଧା—ପରିମାଣ । କାଳଞ୍ଜନ—ଏକ ଦଳପଦ । ବାଳୀସୁତ—ଅଙ୍ଗଦ ।

ଲଙ୍କା ହେଲ ଲଙ୍କାରେ ରାଜାହେବା କଥା, କିନ୍ତୁ ରାବଣ ଶରଣ ପଶିଲେ ବିଭୀଷଣଙ୍କୁ ଅଯୋଧ୍ୟା ଦିଆଯିବ । ତେବେ ସେ ଅଯୋଧ୍ୟା ଦେଉବାନ୍ତା ଅସୁର କୁଳ ବୋଲି ସମ୍ଭବ ହେବ ।

ଶବ୍ଦାର୍ଥ । (୩୨) ହିରଣ୍ୟଗର୍ଭ—ସ୍ୱର୍ଣ୍ଣ ଉଦ୍‌ଗାରକ ବ୍ରହ୍ମ ନୃସିଂହ ମୂର୍ତ୍ତି, ବ୍ରହ୍ମା । ହରିମୁଖ—ସିଂହ ମୁଖ ।

ପାଠାନ୍ତର— ଭ୍ରମିବା ଭଙ୍ଗ—ଭ୍ରମ ଭଙ୍ଗକ । ବର୍ଣ୍ଣଣ ଦୁନ୍ଦୁବନ୍ଧ କହିଲ । କହିବା ଭଙ୍ଗିରେ (ଭଣିବା ଭଙ୍ଗିରେ) ଯାହା କଲ ତାକୁ ମାନ୍ଧ ଖ୍ୟାତ ଯୋଗ ପାଇଲ । ହେଲେ ଦୁର୍ଯୋଗ । କଳ୍ପନାର ବଧ ହୋଇବ । ବାଳୀସୁତଙ୍କୁ କାଳଞ୍ଜନ କହିଲ ।

ପାଠାନ୍ତର— ହରିଦ୍ୱାର କାନ୍ତ ସୁନ୍ଦର । ଦରହର କାନ୍ତ ସୁନ୍ଦର । ହିରଣ୍ୟଗର୍ଭ କା ହରହରମୁଖ ଦରହାସ କାନ୍ତ ସୁନ୍ଦର । ଶୋଭିତ ଧରଣୀ । ବୋଲେ ଏହି ବେନ ତାପ ତମକୁ ସେ ସବିତା । ଏହି ବେନ ମୂର୍ତ୍ତି ତାପ ତମ ସବିତା ।

# ରାଘବ ବିଳାସ

## ଏକଚତ୍ୱାରିଂଶ ଛାନ୍ଦ

ଏହି ଛାନ୍ଦଟି ଚୋଖୀ ବୃତ୍ତରେ ଦଶଟି ମାତ୍ର ପଦରେ ସମ୍ପୂର୍ଣ୍ଣ । ଇନ୍ଦ୍ରଜିତ ସହିତ ଲକ୍ଷ୍ମଣଙ୍କର ପ୍ରାଥମିକ ଯୁଦ୍ଧ ବୃତ୍ତାନ୍ତ ଏଥିରେ ବର୍ଣ୍ଣିତ ହୋଇଛି ।

ଇନ୍ଦ୍ରଜିତ ପ୍ରାସାଦ ମଧ୍ୟରେ କପିମାନେ ଏପରି ଚିତ୍କାର କଲେ ଯେ ସେଠାର ପ୍ରହରୀମାନେ ଗଳ୍ପ କଲେ, ଏହା ଏକ ମହାବିପଦ ଉପସ୍ଥିତ ହୋଇଛି । ଏଗୁଡ଼ାକୁ ଭସ୍ମ କରି ଆମେ ବଞ୍ଚିରହିବା ଅତୀବ ଦୁଃଖପ୍ରଦ ଅଟେ ।

ଏ ଘଟଣା ଶନ୍ଦ୍ରତ ଇନ୍ଦ୍ରଜିତକୁ ରମଣୀମାନେ ଦେବାରୁ ସେ ଧନୁଶର ଧରି ରଥରେ ବସି ବାହାରିଛି । କବି ଇନ୍ଦ୍ରଜିତକୁ ସେ ସମୟରେ ବର୍ଣ୍ଣନା କରିଛନ୍ତି—

ଯମ ଦେବତାର ଯମ ହୋଇଲେ ସେ ହେବ ବାମ  
ଏଣୁ ବୀର ବେଶେ ଲେଶ କୁହା ନ ଗଲା  
ମଣିମୟ ରଥେ ବିହରି  
ବାହାରିଲା ସୁଲୋଚନା-କୁଚ-କସ୍ତୁରୀ ।

ଇନ୍ଦ୍ରଜିତର ଶୋଭମାୟା ସ୍ତ୍ରୀର ନାମ ସୁଲୋଚନା ବୋଲି ପୁରାଣପ୍ରସିଦ୍ଧ ଅଟେ ।

ଇନ୍ଦ୍ରଜିତ ସମ୍ମୁଖରେ ଲକ୍ଷ୍ମଣଙ୍କୁ ଦେଖି କହୁଛି—ତୁ ତ ଅତି କ୍ଷୁଦ୍ର, 'ତୁ ତ ଅତ୍ୟନ୍ତ ଲାଘବ', ତୋ ସହିତ ମୁଁ କ'ଣ ଯୁଦ୍ଧ କରିବି ? ଯାହା ହେଉ ମୋ ସମାନ କ୍ଷତ୍ରୀ ନ ହେଲେହେଁ ତୋ ଭାଇର ନାଁଟା ରାଘବ । ସେ ପ୍ରକୃତ ରାଘବ ତ ନୁହେଁ, ଆଜି ସେ ମୋ ସହିତ ଯୁଝିବାକୁ ଆଇଲା ନାହିଁ କାହିଁକି ?

ଲକ୍ଷ୍ମଣ କହୁଛନ୍ତି—ଆରେ ! ସୂର୍ଯ୍ୟବଂଶୀ ସେ ମହାବୀର ତୋପରି ହୀନ ଲୋକଠାରେ ଏକାନ୍ତ ଦୟାର୍ଦ୍ର ଏଥିରୁ ଜାଣିବୁ । ତୁ ଶିରିଷ ଫୁଲର ଦେହ ବହି ହିମବନ୍ତ ପରି ଦୁର୍ଗମ ଶରୀରର କଥା ଭାବନା କରୁଛୁ କାହିଁକି ?

ଇନ୍ଦ୍ରଜିତ କହିଲା—ଜାଣୁ, ଅହଲ୍ୟାରଞ୍ଜନଙ୍କ ଇନ୍ଦ୍ର ମୋ ଉଦ୍ଧରେ ମୂକୁଟ ବନ୍ଧନ କରିପାରି ନ ଥିଲା । ମୋର ଗୋଟିଏ ସେବକାଳର ଉଦ୍ଧର ଏପରି ପରାକ୍ରମ । ତୁ ଅଯଥା ଗର୍ବ କାହିଁକି ଦେଖାଉଛୁ ? ବଜ୍ରଧ୍ୱନି ଆକାଶରେ ହେଉଥିବା-ବେଳେ ବେଙ୍ଗମାନେ ଯେପରି ନିଜର ପରାକ୍ରମ ଦେଖାଇ ରଡ଼ି କରନ୍ତି, ସବୁଛି ତୋ ବାକ୍ୟସବୁ ସେହିପରି ।

ଏପରି ତର୍କ ବିତର୍କ ପରେ ଇନ୍ଦ୍ରଜିତ ଅଙ୍ଗଦକୁ ଦେଖି ପରିହାସ କରିଛି—ରେ ! ତୋ ଆନ ଅଙ୍ଗ ଅଙ୍ଗଦ, ଆସିଗଲା ତ ? ଏହା ପ୍ରକୃତରେ ଅଙ୍ଗଦ ଶୁଣିବା ମାତ୍ରେ ଗୋଟିଏ ବିରାଟ ପଥର ନେଇ ଇନ୍ଦ୍ରଜିତ ରଥରେ ଛେଚିଦେବା ମାତ୍ରେ ତାର ରଥ ଗୁଣ୍ଡ ହୋଇ ଭାଙ୍ଗିଗଲା । ଏବଂ ସେ

ବଳ ଭଙ୍ଗା ଅଶ୍ୱ ପ୍ରକାର
ବଶିଲା ଲଙ୍କ ବଳିଷ୍ଠ ଜ୍ୟେଷ୍ଠ କୁମର ।

ଏହି ଛାନ୍ଦଟି ପଦ୍ମମଣିଙ୍କ ନାମରେ ଭଣିତ ହୋଇଛି । ସେ ରାଘବ ବିଳାସକୁ ପ୍ରାପ୍ତ ତାଙ୍କର ପ୍ରିୟ ରାଜା ବିନାୟକ ସିଂହ ମାନଧାତାଙ୍କ ନାମରେ ଭଣିତ କରିଥିଲେ ହେଁ ସେ ଏହି ଗ୍ରନ୍ଥ ଯେ ନିଜେ ଲେଖିଛନ୍ତି, ତାହା ପ୍ରଥମ ଛାନ୍ଦରେ ପ୍ରକାଶ କରିଛନ୍ତି ।

କଳ୍ପି କଳ୍ପି କେତେ ଜଳ୍ପିଲା ଶିଳ୍ପିକାର କୁମର
କଳ୍ପେ କଳ୍ପତରୁ ଭଜିଲି ଦୁଃଖ ନ ଗଲା ମୋର ।
× × ×
ରାଘବ ବିଳାସ ପ୍ରବନ୍ଧ ରଚନାକୁ କରଣ
× × ×
ବିନାୟକ ସିଂହ ଶ୍ରୀ ମାନଧାତା ଗ୍ରନ୍ଥେ ପ୍ରଚୁର ।

ଏହି ଛାନ୍ଦଟି ସମ୍ପୂର୍ଣ୍ଣ ବୋଲି ମନେ ହୁଏ ନାହିଁ । ଇନ୍ଦ୍ରଜିତ ବଧ ପର୍ଯ୍ୟନ୍ତ ନିଶ୍ଚୟ ତାହା ଲେଖା ହୋଇଥିବ । କିନ୍ତୁ ଯାହା ମିଳିଥିଲା ତାକୁ କେହି ସହୃଦୟ ସଂଗ୍ରାହକ ଏପରି ସାଇତି ରଖି ଦେଇଛନ୍ତି । ରଚନା ସେ ଯାହା କରିଥିଲେ ତାର ମୂଳଲିପି ନ ଥିଲେ ପ୍ରମାଦ ହେବା ସ୍ୱାଭାବିକ ।



# ଏକଚତ୍ୱାରିଂଶ ଛାନ୍ଦ

( ରାଗ—ବଙ୍ଗଳାଶ୍ରୀ )

**କପି ବଳଙ୍କ ପ୍ରବଳ          ଚହଲ ଶୁଣି ଚପଳ**
**ପ୍ରହରୀ ଜଣେ ଜଣକୁ ପଚାରେ ତର୍କି**
**ମହା ବିଷମ ଗୁପତ          ପୁରେ ପଦ୍ମର ପୂରିତ**
**ସ୍ଥିତେ ହୋଇ ରବେ ରତ ହରି ଏ ଏକ**
**ଭୟଙ୍କର ହରିଙ୍କ ରଣ**
**ବିହରିବା ପୁରେ ଆମ୍ଭେ ଧିକ ପରାଣ । ୧ ।**

**ଶଚୀଶକଣ୍ଟକ ନିଦ୍ରା          ମୁଦ୍ରା ଅପଘନେ ଗଦା**
**ପ୍ରଦାନ କରି ପ୍ରମଦାମାନଙ୍କ ବାଣୀ**
**ମହତ୍ତ୍ୱ ହତ ବିଧାନ          ପ୍ରଧାନ ଗୁଣ ନିଧାନ**
**ହୋଇଲୁ ତ ଉତପନ୍ନ କୁମର ମଣି !**
**ଚକ୍ଷୁ ମଳି ଉଠେ କଳଷ୍ଟ**
**ପୁଣ୍ୟବନ୍ତ ମତିଗତି ଗଲୁ ବୈକୁଣ୍ଠ । ୨ ।**

---

ଶବ୍ଦାର୍ଥ । ଚପଳ—ଚଞ୍ଚଳ, ଅନବସ୍ଥିତ । ଗୁପତ—ଗୁପ୍ତ । ପଦ୍ମର—ପାଦ । ପୂରିତ—ପୂର୍ଣ୍ଣ । ସ୍ଥିତେ—ଊର୍ଦ୍ଧ୍ୱରେ । ରବେ ରତ—ଧ୍ୱନିରେ ଆସକ୍ତ । ହରି—ମର୍କଟ । ଶଚୀଶକଣ୍ଟକ—ଇନ୍ଦ୍ରଜିତ । ନିଦ୍ରାମୁଦ୍ରା—ନିଦ୍ରାଭଙ୍ଗୀ ! ଅପଘନେ—ଅଙ୍ଗରେ । ପ୍ରମଦା—ମନୋହାରିଣୀ ରମଣୀ । ପୁଣ୍ୟବନ୍ତ—ରାକ୍ଷସ । ବୈକୁଣ୍ଠ—ବିଷ୍ଣୁଧାମ ।

ପାଠାନ୍ତର—(୧) ପୁରେ ପଦ୍ମରେ—ପଦ୍ମରେ ପୁର । ସ୍ଥିତ ହୁଏ ରବ ଶତ । ଭୟଙ୍କର ହର କରଣ । ବିହରିବା ତୁଲେ ଏକ ଧିକ ପରାଣ ।

(୨) ପ୍ରମଦା ପର ପ୍ରମୋଦା । ପୁଣ୍ୟଜନ ମତି କିତ ଗଲୁ ବୈକୁଣ୍ଠ । ପୁଣ୍ୟବନ୍ତ ମତି ଗତ ଗଲୁ ବୈକୁଣ୍ଠ ।

ଘୃଷିଲେ ରାଘବାନୁଜ        କାହିଁକି ଏଡ଼େ ସ୍ପର୍ଦ୍ଧା
ବସିଲେଣି କାକପୁରେ ଅନୁକୂଳରେ
ଖଣ୍ଡ ଖଣ୍ଡ ହେଲେ ତନୁ        ପ୍ରଚଣ୍ଡ ଖଣ୍ଡ ବଦନୁ
ନ ଛାଡ଼ଇ ବଡ଼ପଣ ତୁମ୍ଭ କୁଳରେ
କୁମ୍ଭଶ୍ରୁତଠାରୁ ଏ ଦେଖା
ଜନକ ! ତୋ ବୀରକୁଳ କଳଙ୍କ ରେଖା । ୭ ।

ଭଙ୍ଗୀରଥର ପୂରତେ        ଚଙ୍ଗୀ ରହେ କି ବରତେ
ବରେନ୍ଦ୍ର ବଧ ବରତେ ନୈଷ୍ଠିକ ମୁଁ ଯେ
ତର୍କି ନ ପାରୁ ଆହବ        ଆସିଛୁ କରୁ ଆହ୍ଵାବ
ଇଚ୍ଛିଛୁ ଆଶ୍ରୟକୁ ମୁଁ ଦେଲିଣି ଭୁଜେ
ସ୍ୱଚ୍ଛ ଇଚ୍ଛା ଗଚ୍ଛ ତୁ ଆଣ
ଅଗ୍ରଜକୁ ଅଗ୍ରତକୁ କପିଁ ନ ଆଣ । ୮ ।

---

ଶବ୍ଦାର୍ଥ । କୁମ୍ଭଶ୍ରୁତ—କୁମ୍ଭକର୍ଣ୍ଣ । ଚଙ୍ଗୀ—ସର୍ପ-କୃଷ୍ଣସପନ୍ନ—ମର୍କଟ । ପୂରତେ—ଅଗ୍ରତେ । ଭଙ୍ଗୀ—ବାଣକର । ଆହବ—ଯୁଦ୍ଧ । ତର୍କ—ବିବେଚନା । ଆହ୍ଵାବ—ସାହସ । ଗଚ୍ଛ—ଘର । ଅଗ୍ରଜ—ବଡ଼ଭାଇ । ଅଗ୍ରତ—ସମ୍ମୁଖ ।

ପାଠାନ୍ତର—(୭) ବସିଲଣି କାକପୁର ଅନୁକୂଳରେ । ନ ଛାଡ଼ଇ—ନ ଛାଡନ୍ତି । ଶ୍ରୁତ—ସୁତ । କୁମ୍ଭସୁତଠାରୁ ତୋ ଦେଖା । ରେଖା—ଲେଖା ।
(୮) ଅଗ୍ରଜକୁ ଅଗ୍ରତକୁ ନ ଭଜା ଅଣୁ ।

ଏହି କାଳରେ ଅଙ୍ଗଦ 'ତୋ ଆନ ଅଙ୍ଗ ଅଙ୍ଗଦ'
ବୋଲୁ ନେଇ ରଥପରେ ଶିଳା ପେଶିଲା
ଶିଳା ପର୍ବତ ପତନ ଖଣ୍ଡ ଖଣ୍ଡ ସେ ସ୍ୟନ୍ଦନ
ମହୀ ଉଭାର ଶଙ୍କାର ଶୋଭା ପାଇଲା
ବଳଭଙ୍ଗା ଅହି ପ୍ରକାର
ଦଶିଲା ଲଙ୍କ ବଳ ଖ୍ୟ ଜ୍ୟେଷ୍ଠ କୁମର । ୯ ।

ପତିତ ତାରଣ ପାଇଁ ବେନି ଭୁଜ ଟେକିଦେଇ
ଚନ୍ଦ୍ରେ ବାନ୍ଧି ପତିତ ପାବନ ଚଉଳ
ବଳଭଦ୍ର ଚନ୍ଦ୍ର ଯୋଗେ ବାଣୀ ପଦ୍ମା ମଧ୍ୟଭାଗେ
ବସିଥିବାର ଇଷିତ ଭବ ଅଚଳ
ତାଙ୍କ ପଙ୍କେରୁହ ଚରଣେ
ପଦ୍ମମଣି ଭୃଙ୍ଗରାଜ ଆଚର ଭଣେ । ୧୦ ।



ଶବ୍ଦାର୍ଥ । ସ୍ୟନ୍ଦନ—ରଥ । ଉଭାର—ଠିଆହେବା । ମହୀ ଉଭାର—ଭଲେ ଠିଆହେଲା । ଶଙ୍କାର—ଉଦ୍ଭଜନ । ବଳଭଙ୍ଗା—ଗାତରୁ ବାହାରିଥିବା । ଅହି—ସର୍ପ । ଚଉଳ—ପତାକା । ଇଷିତ—ସହଜରେ । ଅଚଳ—ଅଚଳ ମହାମେରୁ । ପଙ୍କେରୁହ—ପଦ୍ମ । ଭୃଙ୍ଗରାଜ—ଭ୍ରମର ।

ପାଠାନ୍ତର—(୯) ଏ ସମୟରେ ଅଙ୍ଗଦ । ତୋ ଆଉ ଆଉ ଅଙ୍ଗଦ । ଏତେ କହି ରଥ ପରେ ଶିଳା ପିଟିଲା । ସ୍ୟନ୍ଦନ—ସଦନ । ପାଇଲା—ଦଶିଲା ।

(୧୦) ଭବ—ଭବ ।

—ଶେଷ—

ଉଚାର ଏ ଭାରତୀକ    ବେନ କନ୍ଦେ ଭାରତକ
ମଣ୍ଡନ ହୋଇ କୋଦଣ୍ଡ କାଣ୍ଡ ଧଇଲ
'ଯମ ଦେବତାର ଯବ    ହୋଇଲେ ସେ ହେବ ବାମ'
ଏଣୁ ବୀର ବେଶେ ଲେଶ କୁହା ନ ଗଲ
ମଣିମୟ ରଥେ ବହର
ବାହାରଲ ସୁଲୋଚନା କୁଚ କସ୍ତୁରୀ । ୩ ।

ଯୂଥାନ୍ତେ ମର୍କଟ ଶ୍ରେଣୀ    ପାଣି ଦେଖାଇଣ ଭଣି
ଦର କମ୍ପା ଅନୁକମ୍ପା ଦତ୍ତକୁ ଯୋଗ୍ୟ
ହିମାଚଳ ହୃଦ ତଟ    ଭେଦନ୍ତା ରମ୍ୟ ଲମ୍ପଟ
ଆୟୁଧ ଯେଣିଲେ ତବ ବଧେ ଦୁର୍ଯୋଗ
ଯୋଧାକୀର୍ତ୍ତି ସୁଧା କରଣ
ହେବେ ସେ ରାମ ଲକ୍ଷ୍ମଣେ ରାମ ଲକ୍ଷ୍ମଣ । ୪ ।

---

ଶବ୍ଦାର୍ଥ । ଭାରତୀ—ବାଣୀ । ଭାରତ—ଶରମୁଣା । ସୁଲୋଚନା—ଇନ୍ଦ୍ରଜିତପତ୍ନୀ । ସୁଲୋଚନା-କୁଚ-କସ୍ତୁରୀ—ସୁଲୋଚନା କୁଚର କସ୍ତୁରୀ ସ୍ୱରୂପ ଇନ୍ଦ୍ରଜିତ । ଯୂଥାନ୍ତେ—ଦଳ ମଧ୍ୟରେ । ପାଣି—ହସ୍ତ । ଦୟା—ଭୟ । ଅନୁକମ୍ପା—ଦୟା, କମ୍ପନ । ଦର—ଶଙ୍କା । ଦତ୍ତ—ନ୍ୟସ୍ତ, ଅର୍ପିତ । ଲମ୍ପଟ—ଅନୁରାଗୀ । ହିମାଚଳ ହୃଦତଟ ଭେଦନ୍ତା । ରମ୍ୟ—ପାର୍ବତୀ । ପାର୍ବତୀ-ଲମ୍ପଟ—ଶିବ ।

ପାଠାନ୍ତର-(୩) କାଣ୍ଡ କୋଦଣ୍ଡ ଧଇଲ । ବୋଇଲେ ହୁଅନ୍ତା ବାମ । ଏଣୁ ବୀରବେଶ ଲେଶ ଜଣା ନ ଗଲ । ବାହାରିଲ—ବାହାର ସେ ।

(୪) ଯୂଥନ୍ତେ ମର୍କଟଶ୍ରେଣୀ । ପାଣିକୁ ଦେଖାଇ ଭଣି । ଭେଦନ୍ତେ—ଭେଦନେ । ହେବେକି ତ ରାମ ଲକ୍ଷ୍ମଣ ରାମ ଲକ୍ଷ୍ମଣ ।

ଏ ସମୟେ ରାମାନୁଜ ସନ୍ଧି କୋଦଣ୍ଡେ ନାରାଜ
ବରାଜମାନ ଝଟତ ପୁରତେ ହେଲେ
'ଭୁ ତ ଅତ୍ୟନ୍ତ ଲାଘବ' ନାମ ମାତ୍ରକ ରାଘବ
ଯାହା ରଣେ ନଇଲାକ ବୋଲୁ ବୋଇଲେ
ହରୀଶ ସଦସ୍ଥ ହୀନରେ
ଶିରୀଷ ନାଶେ ଗିରୀଶ ଭାବୁ ମନରେ । ୫ ।

ହସି ଭାଷିଲା ଶିରୀଶ ଶେଷ ଶିରୀଶ ଶିରୀଶ
ଭ୍ରମ ରେଗ ମୋ ଭ୍ରମଣ କଷାଣ ନାଦେ
ଅହଲ୍ୟା-ରତ-ଲମ୍ପଟ ବହଲା ନାହିଁ ମୁକୁଟ
ପ୍ରକଟିଲା ଦନ୍ ମେଘନ ଦ ଶବଦେ
ଗବ ବନ୍ଧୁ କ ଭାଗ୍ୟବଳେ
ଭେକେ ରଟନ୍ତି ପ୍ରନଭ ଜନତ ବେଳେ । ୬ ।

---

ଶବ୍ଦାର୍ଥ । ରାମାନୁଜ—ଲକ୍ଷ୍ମଣ । ଝଟତ—ଶିଘ୍ର । ପୁରତେ—ସମ୍ମୁଖରେ । ଇନ୍ଦ୍ରଜିତ କହିଲା—'ଭୁ ତ ଅତ୍ୟନ୍ତ ଲଘବ—କ୍ଷୁଦ୍ର । ନାମ ମାତ୍ରକରେ ଯେ ରାଘବ ଯାହା ରଣେ ନଇଲାକ' କହନ୍ତେ ଲକ୍ଷ୍ମଣ ବୋଇଲେ—ହରୀଶ ଯେ ସୂର୍ଯ୍ୟବଂଶଶ୍ରେଷ୍ଠ ତୋ ପରି ହୀନରେ ସଦୟ ହୋଇଛନ୍ତି । ତୁ ବା ଶିରୀଷ ଫୁଲ ହୋଇ ଗିରୀଶ—ହିମାଳୟ କଥା ଭାବୁ କାହିଁକି ? ଶିରୀଶ—ତ୍ରିଲୋଚନାୟଣ ଇନ୍ଦ୍ରଜିତ । ଶିରୀଶ—ପର୍ବତଶିଖର । ଶିରୀଶ—ସୀତା । ଅହଲ୍ୟା ରତ ଲମ୍ପଟ—ଇନ୍ଦ୍ର । ଭେକ—ବେଙ୍ଗ । ପ୍ରକଟ—ବଜ୍ରଧ୍ୱନି । ଜନତ—ଜାତ । ବଜ୍ରଧ୍ୱନିବେଳେ କଣ ବେଙ୍ଗ ରଡ଼ି ଛାଡ଼ନ୍ତି ନାହିଁ କି ?

ପାଠାନ୍ତର—(୫) ସନ୍ଧି କୋଦଣ୍ଡେ ନାରାଜ । ବିରାଜମାନ ଆସିଣ ସନ୍ମୁଖରେ ହେଲେ । ଯାହାରକ ନଇଲାରୁ ବୋଲ ବୋଇଲେ । ଗିରୀଶ ମୁଁ ଦମ୍ଭ ସ୍ଥାନରେ । ଶିରୀଶ ନାଶୁ ଶିରୀଶ ।

(୬) ହସି ଭାଷିଲା ଶିରୀଶ । ପ୍ରକଟିଲା ଦନୁଁ । ଗବ ବନ୍ଧୁ କ ବାନ୍ଧବଳେ । ଭେକେ ତାଙ୍କର ସକଳ ଜନତ କାଳେ ।

ଘୃଷିଲେ ରାଘବାନୁଜ     କାହିଁ କି ଏଡ଼େ ଗାମ୍ଭୀର୍ଯ୍ୟ
ବସିଲେଣି କାକପୂରେ ଅନୁକୂଳରେ
ଖଣ୍ଡ ଖଣ୍ଡ ହେଲେ ତନୁ     ପ୍ରଚଣ୍ଡ ଖଣ୍ଡ ବଦନୁ
ନ ଛାଡ଼ଇ ବଡ଼ପଣ ତୁମ୍ଭ କୁଳରେ
କୁମ୍ଭଶ୍ରୁତଠାରୁ ଏ ଦେଖା
ଜନକ ! ତୋ ବୀରକୁଳ କଳଂକ ରେଖା । ୭ ।

ଚକ୍ରୀରଥର ପୂରତେ     ଚକ୍ରୀ ରହେ କି ସ୍ୱରତେ
ବିରେନ୍ଦ୍ର, ବଧ ବରତେ ନୈଷ୍ଠିକ ମୁଁ ଯେ
ତର୍କି ନ ପାର ଆହବ     ଆସିଛୁ କର ଆହ୍ୱାବ
ଇଚ୍ଛିଛୁ ଆଶ୍ରୟକୁ ମୁଁ ଦେଲଣି ଭୁଜେ
ସ୍ୱଚ୍ଛ ଇଚ୍ଛା ଗଚ୍ଛ ତୁ ଆଣ
ଅଗ୍ରଜକୁ ଅଗ୍ରତକୁ କପିଁ । ନ ଆଣ । ୮ ।

ଶବ୍ଦାର୍ଥ । କୁମ୍ଭଶ୍ରୁତ—କୁମ୍ଭକର୍ଣ୍ଣ । ଚକ୍ରୀ—ସର୍ପ-କୁଣ୍ଡଳପନ୍ନ—ମର୍କଟ । ପୂରତେ—ଅଗ୍ରତେ । ଚକ୍ରୀ—ବାଣକର । ଆହବ—ଯୁଦ୍ଧ । ତର୍କ—ବିବେଚନା । ଆହ୍ୱାବ—ସାହସ । ଗଚ୍ଛ—ଯାଅ । ଅଗ୍ରଜ—ବଡ଼ଭାଇ । ଅଗ୍ରତ—ସମ୍ମୁଖ ।

ପାଠାନ୍ତର—(୭) ବସିଲଣି କାକପୁର ଅନୁକୂଳରେ । ନ ଛାଡ଼ଇ—ନ ଛାଡ଼ନ୍ତି । ଶୃତ—ଶ୍ରୁତ । କୁମ୍ଭଶ୍ରୁତଠାରୁ ତୋ ଦେଖା । ରେଖା—ଲେଖା ।
(୮) ଅଗ୍ରଜକୁ ଅଗ୍ରତକୁ ନ ଭଜ ଆଣ ।

ଏହି କାଳରେ ଅଙ୍ଗଦ  'ତୋ ଆନ ଅଙ୍ଗ ଅଙ୍ଗଦ'
ବୋଲୁ ନେଇ ରଥପରେ ଶିଳା ଛେଟିଲା
ଶିଳା ପର୍ବତ ପତନ  ଖଣ୍ଡ ଖଣ୍ଡ ସେ ସ୍ୟନ୍ଦନ
ମହୀ ଉଭାର ଶଙ୍କାର ଶୋଭା ପାଇଲା
ବଳଭଙ୍ଗା ଅହି ପ୍ରକାର
ଦଶିଲା ଲଙ୍କ ବଳିଷ୍ଟ କେଶ୍ରୀ କୁମର । ୯ ।

ପର୍ବତ ଧାରଣ ପାଇଁ  ବେନି ଭୁଜ ଟେକିଦେଇ
ଚଟକେ ବାନ୍ଧି ପର୍ବତ ପାବନ ଚଳିଲା
ବଳଭଦ୍ର ଚନ୍ଦ୍ର ଯୋଗେ  ବାଣୀ ପଦ୍ମା ମଧ୍ୟଭାଗେ
ବସିଥିବାର ଇଷିତ ଭବ ଅଚଳ
ତାଙ୍କ ପଙ୍କେରୁହ ଚରଣେ
ପଦ୍ମମଣି ଭୃଙ୍ଗରାଜ ଅଟଇ ଭଣେ । ୧୦ ।



ଶବ୍ଦାର୍ଥ । ସ୍ୟନ୍ଦନ—ରଥ । ଉଭାର—ଠିଆହେବା । ମହୀ ଉଭାର—ଭଲେ ଠିଆହେଲା । ଶଙ୍କାର—ଅଳଙ୍କାର । ବଳଭଙ୍ଗା—ଗାତରୁ ବାହାରିଥିବା । ଅହି—ସର୍ପ । ଚରଳ—ପତାକା । ଇଷିତ—ସହଜରେ । ଅଚଳ—ଅଚଳ ମହାମେରୁ । ପଙ୍କେରୁହ—ପଦ୍ମ । ଭୃଙ୍ଗରାଜ—ଭ୍ରମର ।

ପାଠାନ୍ତର—(୯) ଏ ସମୟରେ ଅଙ୍ଗଦ । ତୋ ଆନ ଅଙ୍ଗ ଅଙ୍ଗଦ । ଏତେ କହି ରଥ ଉପରେ ଶିଳା ପିଟିଲା । ସ୍ୟନ୍ଦନ—ସଦନ । ପାଇଲା—ଦଶିଲା ।

(୧୦) ଭଣେ—ଭଣଇ ।

—ଶେଷ—